# ଭୁବନେଶ୍ୱର ବେହେରା



# ସାହିତ୍ୟ-ସମଗ୍ର

ସାରଳା ସମ୍ମାନ ୧୯୯୦

ଜଣେ ବାସ୍ତୁବିଜ୍ଞାନୀ ହୋଇ
ମଧ୍ୟ ସାହିତ୍ୟ ସରସ୍ୱତୀଙ୍କ
ସେବାରେ ଆପଣ ନିଜକୁ
ଉତ୍ସର୍ଗ କରିଦେଇ ଯେଉଁ
ଅପୂର୍ବ ଦୃଷ୍ଟାନ୍ତ ସ୍ଥାପନ
କରିଛନ୍ତି ତାହା କାଳ କାଳକୁ
ସ୍ମରଣୀୟ ହୋଇ ରହିବ ।

ଓଡ଼ିଶାର ନବ କୋଣାର୍କ
ଗଠନରେ ଆପଣଙ୍କର କୃତିତ୍ୱ,
ଆଧୁନିକ ଭାରତ ଗଠନରେ
ଆପଣଙ୍କର ଅକ୍ଲାନ୍ତ
ସହଯୋଗ, ଜଣେ ଛାତ୍ର
ବତ୍ସଳ ଅଧ୍ୟାପକ, ଦକ୍ଷ
ପ୍ରଶାସକ ରୂପେ ଆପଣଙ୍କର
ଅନମନୀୟ ଭୂମିକାକୁ ଏ ଜାତି
କସ୍ମିନ କାଳେ ଭୁଲିବ ନାହିଁ ।

ପଞ୍ଚଦଶ ଶାରଳା ପୁରସ୍କାର
ସାରସ୍ୱତ ଉତ୍ସବ ୧୯୯୪

ଇଂଜିନିୟରିଂରେ ଆପଣଙ୍କ
ଗବେଷଣା ନିବନ୍ଧ ଗୁଡ଼ିକ ଉଚ୍ଚ
ପ୍ରଶଂସିତ । ତନ୍ମଧ୍ୟରୁ ଦୁଇଟି
ଗବେଷଣା ନିବନ୍ଧ ପାଇଁ
ଭାରତ ସରକାର ଆପଣଙ୍କୁ
ସ୍ୱର୍ଣ୍ଣପଦକରେ ଭୂଷିତ
କରିଥିଲେ ।

ବିଜ୍ଞାନ ପ୍ରତିଭା ସହିତ
ଆପଣଙ୍କଠାରେ ସାହିତ୍ୟିକ
ପ୍ରତିଭାର ଅପୂର୍ବ ସମନ୍ୱୟ
ପରିଲକ୍ଷିତ ହୁଏ ।

ନନ୍ଦିଘୋଷ ପୁରସ୍କାର
୧୯୮୯

ଆପଣ ଇଂଜିନିୟରିଂ କ୍ଷେତ୍ରରେ
ସ୍ୱକୀୟ ପ୍ରତିଭାର ପରିଚୟ
ଦେଇ ଓଡ଼ିଶାର ଯନ୍ତ୍ର ବିଜ୍ଞାନ,
ବୈଷୟିକ ଶିକ୍ଷାର ଉନ୍ନତି ଓ
ଦେଶର ସମୃଦ୍ଧି ସଂପାଦନରେ
ଏକ ବଳିଷ୍ଠ ଭୂମିକା ଗ୍ରହଣ
କରିଛନ୍ତି । ଜଣେ ଦକ୍ଷ
ପ୍ରଶାସକ ଓ ବରିଷ୍ଠ ସାହିତ୍ୟିକ

ହିସାବରେ ଆପଣ ସମାଜରେ
ଯଶ ଓ ଗୌରବ ଅର୍ଜନ କରି
ପାରିଛନ୍ତି ।

**ସାହିତ୍ୟ ସୁଧାକର**

ଆପଣ ଓଡ଼ିଶାର ଅଖ୍ୟାତ ପଲ୍ଲୀ
ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ
ମଧ୍ୟ ସ୍ୱପ୍ରତିଭା ବଳରେ ଜଣେ
ଯଶସ୍ୱୀ ଇଞ୍ଜିନିୟର, ସଂଗଠକ,
ସଂସ୍କାରକ ଓ ସାହିତ୍ୟିକ
ଭାବରେ କେବଳ ଓଡ଼ିଶା
କାହିଁକି ସମଗ୍ର ଭାରତ ଏବଂ
ବିଦେଶରେ ପ୍ରତିଷ୍ଠା ଅର୍ଜନ କରି
ଉତ୍କଳର ମର୍ଯ୍ୟାଦା ବୃଦ୍ଧି
କରିଛନ୍ତି ।

**ଦି ଓଡ଼ିଶା ଇଂଜିନିୟରସ୍**
**ଫୋରମ୍, କଟକ**
**ବିଶ୍ୱେଶ୍ୱରାୟା ସମ୍ମାନ-୨୦୦୦**

ବିଂଶ ଶତାବ୍ଦୀର ଇଂଜିନିୟରିଂ
କ୍ଷେତ୍ରରେ ସମଗ୍ର ଦେଶର
ଆପଣ ଜଣେ କିମ୍ବଦନ୍ତୀ ପୁରୁଷ ।
ହୀରାକୁଦ ବନ୍ଧ ନିର୍ମାଣ
କାର୍ଯ୍ୟରେ ଆପଣଙ୍କ ଭୂମିକା
ଅବିସ୍ମରଣୀୟ । ସିଭିଲ
ଇଂଜିନିୟରିଂରେ ଉଚ୍ଚ ଶ୍ରେଣୀର
ଗବେଷଣା କରି ଆପଣ ଆମ
ରାଜ୍ୟ ପାଇଁ ଆଣି ପାରିଛନ୍ତି
ଅପୂର୍ବ ଗୌରବ ।

**ଉତ୍କଳ ସାହିତ୍ୟ ସମାଜ**
**ସତ୍ୟ ଶିବ ସୁନ୍ଦର**
**ଉତ୍କଳ ରତ୍ନ ୧୯୯୮**

ଚଳିତ ଶତାବ୍ଦୀରେ ଆପଣ ଏକ
ଶାଣିତ ସ୍ୱାକ୍ଷର । ଆଧୁନିକ
ଓଡ଼ିଶାର ଜୀବନ-ପ୍ରବାହରେ
ଆପଣ ଏକ ଦୀପ୍ତିମାନ
ଜ୍ୟୋତିଷ୍କ । ବିଗତ ପାଞ୍ଚ ଦଶନ୍ଧି
ବ୍ୟାପି ଆପଣଙ୍କ ସାଧନାରେ
ଓଡ଼ିଶାର ସାଂସ୍କୃତିକ ଦିଗ୍‌ବଳୟ
ହୋଇଉଠିଛି ସମୁଜ୍ଜ୍ୱଳ ।

ଭୁବନେଶ୍ୱର ବେହେରା
ସାହିତ୍ୟ-ସମଗ୍ର

ପ୍ରଥମ ସଂସ୍କରଣ : ମାର୍ଚ୍ଚ ୨୦୧୨
ଦ୍ୱିତୀୟ ସଂସ୍କରଣ : ଜୁଲାଇ ୨୦୧୨



**ISBN 978-93-80758-48-0**

**Bhubaneswar Behera Sahitya-Samagra**

---

1st edition : March 2012
2nd edition : July 2012

Complied & Edited by : Yashodhara Mishra

Published by **ink odisha**
115 (P) Acharya Vihar, Bhubaneswar-751013, Orissa, India
and printed at **Shovan**, Acharya Vihar, Bhubaneswar-13

**Rs. 900/-**

ଗୋଟିଏ ଜୀବନକାଳ ମଧ୍ୟରେ ଏତେ ବିବିଧ କ୍ଷେତ୍ରରେ ନିଜର ସ୍ୱକୀୟ ଅବଦାନ ଛାଡ଼ିଯାଇଥିବା ବ୍ୟକ୍ତି କେବଳ ଓଡ଼ିଶାରେ କାହିଁକି ସମଗ୍ର ବିଶ୍ୱରେ ବିରଳ ବୋଲି କୁହାଯାଇପାରେ । ନିଜ ଜୀବନ କାର୍ଯ୍ୟକାଳର ଶେଷ ଭାଗରେ ହିଁ ଇଞ୍ଜିନିୟରିଂ ତଥା ଆନୁସଙ୍ଗିକ କାର୍ଯ୍ୟକ୍ଷେତ୍ରର ପରିଧି ବାହାରେ ଏକ ବିସ୍ତୃତ ଜଗତରେ କାମ କରିବାର ସୁଯୋଗ ତାଙ୍କୁ ମିଳିଥିଲା ଯେବେ ୧୯୭୧ରେ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଯୋଗ ଦେଇଥିଲେ । ନୂଆ କିଛି ଚିନ୍ତା କରିବା, ପୁଣି ତା'ରି ଉପରେ ନିର୍ଭର କରି ଦୁଃସାହସିକ ପଦକ୍ଷେପ ନେବା ଥିଲା ତାଙ୍କର ସ୍ୱଭାବଗତ । ଛାତ୍ର ଜୀବନ ଶେଷ ହେବା ମାତ୍ରେ ଅନ୍ୟମାନଙ୍କ ଭଳି ନିଜ ସଙ୍କୀର୍ଣ୍ଣ ସ୍ୱାର୍ଥଚିନ୍ତାରେ ମଗ୍ନ ନହୋଇ ଯୁବକ ଇଞ୍ଜିନିୟର ଭୁବନେଶ୍ୱର ତଦାନୀନ୍ତନ କଳାହାଣ୍ଡିର ଦୁର୍ଗମ ମାଳ ଅଞ୍ଚଳ ଓ ଘଞ୍ଚ ଅରଣ୍ୟ ଭିତରେ ହାତୀ ପିଠିରେ ବସି ବୁଲିଥିଲେ, ପାଦରେ ଚାଲି ନଦୀନାଳମାନଙ୍କୁ ଚିହ୍ନି ଇନ୍ଦ୍ରାବତୀ ନଦୀବନ୍ଧର କଳ୍ପନା କରିଥିଲେ । ସେହିପରି ଜୀବନର ଉତ୍ତରାର୍ଦ୍ଧରେ କୁଳପତି ଭାବେ ଛାତ୍ରମାନଙ୍କ ଭିତରେ ସାହିତ୍ୟ ପ୍ରତିଭାକୁ ପ୍ରୋତ୍ସାହନ ଦେବା ଲାଗି ସେ ସପ୍ତର୍ଷି ପତ୍ରିକାର ପରିକଳ୍ପନା କଲେ ଓ ସମ୍ପାଦକୀୟ ଲେଖିବାକୁ ଯାଇ ସତାବନ ବର୍ଷ ବୟସରେ ଆରମ୍ଭ କଲେ ତାଙ୍କର ଲେଖକୀୟ ଜୀବନ । ମାତ୍ର ଦୁଇ ଦଶକର ରଚନା କାଳରେ ତାଙ୍କୁ ପ୍ରଭୂତ ପାଠକୀୟ ସ୍ୱୀକୃତି ମିଳିଲା ତଥା ଅନେକ ସମ୍ମାନ ଓ ପୁରସ୍କାର ଦେଇ ଓଡ଼ିଆ ସାହିତ୍ୟ ତାଙ୍କୁ ବରିଷ୍ଠ ଲେଖକର ପଂକ୍ତିରେ ସ୍ଥାନ ଦେଲା ।

ଭୁବନେଶ୍ୱର ବେହେରାଙ୍କ ଅଜସ୍ର ପାଠକଙ୍କ ଆଗ୍ରହ ଓ ପ୍ରତୀକ୍ଷା ସତ୍ତ୍ୱେ ଆଜି ତାଙ୍କ ତିରୋଧାନର ବାର ବର୍ଷ ପରେ ତାଙ୍କର ସାହିତ୍ୟ-ସମଗ୍ର ପ୍ରକାଶ କରିବା ସମ୍ଭବ ହୋଇଛି । ପୁସ୍ତକଟି ଆଦୃତ ହେବ ଏବଂ ଲେଖକ ସ୍ୱୀୟ ପ୍ରତିଭା ବଳରେ ନିଜ ପାଇଁ ସାହିତ୍ୟ ଜଗତରେ ସୃଷ୍ଟି କରିଥିବା ସ୍ଥାନକୁ ବଳବତ୍ତର କରିବ ବୋଲି ବିଶ୍ୱାସ ।

ଯଶୋଧାରା ମିଶ୍ର

# ବିଶିଷ୍ଟ ତିଥି ଓ ଘଟଣାବଳୀ

| | |
|---|---|
| ୧୯୧୬, ୧ ଜାନୁୟାରୀ | ଜନ୍ମ, ଗ୍ରାମ-କାଶୀବାହାଲ, କଳାହାଣ୍ଡି |
| ୧୯୩୫ | ମାଟ୍ରିକ୍ୟୁଲେଶନ୍, ଭବାନୀପାଟଣା |
| ୧୯୩୯ | ବି.ଏସ୍.ସି. (ଫିଜିକ୍ସ ଅନର୍ସ), ରେଭେନ୍‌ସା କଲେଜ, କଟକ |
| ୧୯୪୩ | ବି.ଏସ୍.ଏ. ଇଞ୍ଜିନିୟରିଂ, ବିହାର କଲେଜ ଅଫ୍ ଇଞ୍ଜିନିୟରିଂ, ପାଟନା |
| ୧୯୪୫ | କଳାହାଣ୍ଡି ଦରବାରରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ରୂପେ ନିଯୁକ୍ତି |
| ୧୯୪୫ | ଉମାଦେବୀଙ୍କ ସହ ବିବାହ |
| ୧୯୪୫-୪୬ | ଇନ୍ଦ୍ରାବତୀ ବନ୍ଧ ଲାଗି ଯୋଜନା ପ୍ରସ୍ତୁତି |
| ୧୯୪୬-୪୭ | ଆଇଓଆ ବିଶ୍ୱବିଦ୍ୟାଳୟ, ଆମେରିକାରେ ଶିକ୍ଷାପ୍ରାପ୍ତି |
| ୧୯୪୭ | କଳାହାଣ୍ଡି ରାଜ୍ୟରେ ଇଞ୍ଜିନିୟର ରୂପେ ଯୋଗଦାନ |
| ୧୯୪୮ | ହୀରାକୁଦ ବନ୍ଧ ଯୋଜନାରେ ନିଯୁକ୍ତି |
| ୧୯୪୮-୫୬ | ଆସିଷ୍ଟାଣ୍ଟ ଇଞ୍ଜିନିୟର ତଥା ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ରୂପେ କାର୍ଯ୍ୟ |
| ୧୯୫୬ | ବୁର୍ଲା ଇଞ୍ଜିନିୟରିଂ କଲେଜରେ ଯୋଗଦାନ |
| ୧୯୫୮ | ବୁର୍ଲା ଇଞ୍ଜିନିୟରିଂ କଲେଜରେ ପ୍ରଫେସର ରୂପେ ନିଯୁକ୍ତି |
| ୧୯୬୧ | ବୁର୍ଲା ଇଞ୍ଜିନିୟରିଂ କଲେଜରେ ଅଧ୍ୟକ୍ଷ ରୂପେ ନିଯୁକ୍ତି |
| ୧୯୬୨ | ରିଜିଓନାଲ ଇଞ୍ଜିନିୟରିଂ କଲେଜ, ରାଉରକେଲାରେ ଅଧ୍ୟକ୍ଷ ରୂପେ ଯୋଗଦାନ |

| | |
|---|---|
| ୧୯୭୧-୭୬ | ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି |
| | ସପ୍ତର୍ଷି ପତ୍ରିକାର ସ୍ଥାପନା ଓ ସମ୍ପାଦନା |
| ୧୯୭୭ | ଲାଇବେରିଆ ରିପବ୍ଲିକ୍‌କୁ ଗମନ |
| ୧୯୭୮ | ମେମ୍ବର, ୟୁ.ପି.ଏସ୍.ସି. ରୂପେ ମନୋନୀତ ଏବଂ ଦିଲ୍ଲୀରେ ଅବସ୍ଥାନ |
| ୧୯୮୧ | ଅବସର ଗ୍ରହଣ ଓ କଳାହାଣ୍ଡିରେ ଅବସ୍ଥାନ |
| ୧୯୮୪, ମାର୍ଚ୍ଚ ୨୫ | ସାହିତ୍ୟ ସୁଧାକର ସମ୍ମାନ |
| ୧୯୮୯, ଏପ୍ରିଲ ୪ | ନନ୍ଦିଘୋଷ ପୁରସ୍କାର |
| ୧୯୯୩, ନଭେମ୍ବର ୯ | ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ସାରସ୍ୱତ ସମ୍ବର୍ଦ୍ଧନା |
| | ପତ୍ନୀ ଉମାଦେବୀଙ୍କ ତିରୋଧାନ |
| ୧୯୯୪ | ଇଣ୍ଡିଆନ୍ ମେଟାଲସ୍ ପବ୍ଲିକ୍ ଚାରିଟେବଲ ଟ୍ରଷ୍ଟ ପକ୍ଷରୁ ପଞ୍ଚଦଶ ଶାରଳା ପୁରସ୍କାର |
| ୧୯୯୮, ଜୁନ୍ ୨୦ | ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଉତ୍କଳ ରତ୍ନ |
| ୧୯୯୮, ଅଗଷ୍ଟ ୨୪ | ସାରଳା ସମ୍ମାନ ୧୯୯୦ |
| ୨୦୦୦, ସେପ୍ଟେମ୍ବର ୯ | ବିଶ୍ୱେଶ୍ୱରାୟା ସମ୍ମାନ-୨୦୦୦ |
| ୨୦୦୧, ଏପ୍ରିଲ ୧୭ | ତିରୋଧାନ |

# ସୂଚୀ



ଆର୍.ଇ.ସି. ରାଉରକେଲାର ଅଧକ୍ଷ ପ୍ରଫେସର ବେହେରା



ଇଞ୍ଜିନିୟର
ଭୁବନେଶ୍ୱର ବେହେରା



ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର
ଛାତ୍ରୀ ଉମା



ଉମା ଓ ଭୁବନେଶ୍ୱର, ୧୯୪୫ ଆର୍.ଇ.ସି. ରାଉରକେଲାର ଅଧ୍ୟକ୍ଷ ପ୍ରଫେସର ବେହେରା



ନବବିବାହିତା **ଉମା ଦେବୀ**



**ଆଇଓଆ, ଆମେରିକାରେ ସମାବର୍ତ୍ତନ ଉତ୍ସବ**



ପଛଧାଡ଼ି : ଯୋଜନଗନ୍ଧା, ଅଦୀତି, ଦେବକୀ, ଚମ୍ପା (ଭଉଣୀମାନେ)
ଚଉକୀରେ : ମନୋରମା ଦେବୀ (ମା), ଲକ୍ଷ୍ମଣ ପ୍ରସାଦ ବେହେରା (ବାପା)
ତଳେ : ଭୁବନେଶ୍ୱର, ଯୋଗେଶ୍ୱର (ବଡ଼ ଭାଇ)
ପୃଷ୍ଠଭୂମିରେ : ଯଶୋଧାରା ଓ ମଳୟ



ଚଉକୀରେ : ଭୁବନେଶ୍ୱର ବେହେରା, ଉମା ଦେବୀ
ପଛରେ : ବିନୟ, ଯଶୋଧାରା, ଅଜୟ, ମଳୟ



ପ୍ରଫେସର ଭୁବନେଶ୍ୱର ବେହେରା



ଶ୍ରୀମତୀ ଉମା ଦେବୀ



ବିଶ୍ୱେଶ୍ୱରାୟା ସମ୍ମାନ, ଓଡ଼ିଶା ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟରସ୍, ୨୦୦୦



ଶାରଳା ପୁରସ୍କାର, ଶ୍ରୀ ସଚ୍ଚି ରାଉତରାୟଙ୍କ ହାତରୁ ୧୯୯୪



ବିଶ୍ୱେଶ୍ୱରାୟା ସମ୍ମାନ, ଓଡ଼ିଶା ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟରସ୍, ୨୦୦୦



ଶାରଳା ପୁରସ୍କାର, ଶ୍ରୀ ସଚ୍ଚି ରାଉତରାୟଙ୍କ ହାତରୁ ୧୯୯୪

# ସୂଚୀ

# ସହାବସ୍ଥାନ

ଛୁଟିଦିନଟା । ମୁଁ ବେଶ୍ ଖୁସ୍ ମିଜାସ୍‌ରେ ବାରନ୍ଦାର ଚୌକିଟିରେ ବସି ରାସ୍ତାରେ ଅନବରତ ଛୁଟିଚାଲିଥିବା ଯାନବାହନ ଆଡ଼କୁ ଅନାଇଁ ଭାବୁଛି ଆଉ କପେ ଚା' ପାଇଁ ହୁକୁମ୍ ଛାଡ଼ିବି ନା ନାହିଁ । ଧାରା ତା'ର ଟିକି ଛୁଆକୁ ନେଇ ପହଞ୍ଚିଗଲା । କହିଲା, "ବାପା, ଯା ପାଇଁ ଭଲ ନାଁଟିଏ ବାଛିଦିଅନ୍ତନି ?"

ମୁଁ ରାସ୍ତା ଉପରୁ ଆଖି ଫେରାଇ ଆଣିଲି । କହିଲି, "ନାଁ ? ନାଁଟାରେ କ'ଣ ଅଛି ? ଦେଇଦେଉନୁ କିଛି ଗୋଟାଏ । ଏଇ ଦେଖ ବେଙ୍ଗ – ତାକୁ ତୁ ଯେଉଁ ନାଁରେ ଡାକ୍ – ବେଙ୍ଗରାଜା କହ, ବେଙ୍ଗୁଲୀରାଣୀ କହ, ଫ୍ରଗ୍ କହ, ମଣ୍ଡୁକ କହ ଅଥବା ଆଉ କିଛି – ତା'ର କ'ଣ କିଛି ପରିବର୍ତ୍ତନ ହେବ ? ସେ ସେମିତି ଡେଉଁଥିବ । ତେବେ ଭଲ ନାଁଟିଏ ଖୋଜୁଛୁ ତ ? 'ଚିତ୍ରସେନ' ଦେଇଦେଉନୁ !"

ଧାରା ଭୃରୁ କୁଞ୍ଚାଇ ପ୍ରଶ୍ନ କଲା - "ଚିତ୍ରସେନ !"

ମୁଁ କହିଲି, "ହଁ... ଚିତ୍ରସେନ ପରି ଦେଖିବାକୁ ସୁନ୍ଦର ହୋଇଛି । 'ଚିତ୍ରସେନ' ବେଶ୍ ଭଲହେବ ।"

ଧାରା ବୋଧହୁଏ କିଛି କହିବାକୁ ଚେଷ୍ଟା କରୁଥିଲା । ମୁଁ କିନ୍ତୁ ତାକୁ କୁହାଇ ନଦେଇ କହିଲି, "ଶୁଣ୍, ଚିତ୍ରସେନ କିଏ ଜାଣିଛୁ ତ ? ଚିତ୍ରସେନ ଗନ୍ଧର୍ବ – ଇନ୍ଦ୍ରଙ୍କ ପୁଅ... ଯେମିତି ସୁନ୍ଦର ସେମିତି ବିଚକ୍ଷଣ ଧନୁର୍ଦ୍ଧର । ଜାଣିଛୁ ତ ସେ କେମିତି ଥରେ ଏକୁଟିଆ ଭୀଷ୍ମ, ଦ୍ରୋଣ, କର୍ଣ୍ଣଙ୍କ ସହ ସାରା କୌରବ ସେନାକୁ ହରାଇ ଦୁର୍ଯ୍ୟୋଧନଙ୍କୁ ରଥରେ ବାନ୍ଧିନେଇଥିଲା ! ଆଉ ଅର୍ଜୁନ..."

ଧାରା ପୁଣି କ'ଣ କହିବାକୁ ଚେଷ୍ଟାକଲା । କହିଲି, "ହଁ ଯେ ବାପା - ଏଇ ଚିତ୍ରସେନ..."

ମୋତେ କିନ୍ତୁ ବିରକ୍ତ ଲାଗିଲା । ଏ ଗୋଟାଏ କି କଥା ! କଥା ମଝିରେ ଉପରେ ପଡ଼ି କହିବା ଏମାନଙ୍କର ଗୋଟାଏ ବଦଭ୍ୟାସ ହୋଇଗଲାଣି । ସେ ତ ନିଜେ ନାଁଟିଏ ବାଛିଦେବାକୁ କହିଲା - ମୁଁ କ'ଣ ଉପରେ ପଡ଼ି ନାଁ ଦେଉଥିଲି ? ଭାବିଲି ତାକୁ ଟିକିଏ ଭଲକରି ଶୁଣାଇଦେବି । କହିଲି, "ଆଜିକାଲି ତମମାନଙ୍କର ସବୁଥିରେ

ଗୋଟାଏ ବେଖାତିର ମନୋଭାବ । ବାପ ମା' କାହାରି କଥା ଶୁଣିବନି - ସବ୍‌ଜାନ୍‌ତା ! ନିଜେ ଯାହା ଭାବୁଛ ତାହା ହିଁ ଠିକ୍, ଆଉ ସାରା ଦୁନିଆ ଭୁଲ୍ ।"

– "କିନ୍ତୁ ବାପା..."

ପୁଣି ଉପରେ ପଡ଼ି କହିବାକୁ ଚେଷ୍ଟା କରୁଥିଲା ଧାରା । ମୁଁ ଆହୁରି ବେଶି ଉତ୍ତେଜିତ ହୋଇ ଚିତ୍କାରକଲି, "ନିଜ ସଂସ୍କୃତି ପ୍ରତି ସମ୍ମାନ ନାହିଁ, ଐତିହ୍ୟରେ ଗର୍ବ ନାହିଁ, କେବଳ ପାଶ୍ଚାତ୍ୟ ଢଙ୍ଗଢାଙ୍ଗର ଅନୁକରଣ । ଖାଲି ଫମ୍ପା ଦେଖାଣିଆ ମନୋବୃତ୍ତି । ଇଂଲଣ୍ଡର ପଞ୍ଚମ ସମ୍ରାଟ କିଏ - ତା' ବାପାର ନାଁ କ'ଣ ଥିଲା - ସେ କେଉଁଠି ବାହା ହୋଇଥିଲା, ସବୁ କହିଦେବ - ଏଣେ ନିଜ ଅଜା ପଣଅଜାଙ୍କ ନାଁ ଜଣାନାହିଁ ।"

ମୋ ଗଳାର ଚଢ଼ାସ୍ୱର ଶୁଣି ବୋଧହୁଏ ଇଏ ଚାଲିଆସିଥିଲେ । ପଚାରିଲେ, "କ'ଣ ହେଲା କି ?" ମୁଁ କହିଲି, "କ'ଣ ଆଉ ହେବ, ଏମାନେ କ'ଣ ଆମ କଥା ଶୁଣିବେ ? କ'ଣ ନା ଜେନରେସନ୍ ଗେପ୍, ସତେ ଯେମିତି କେଉଁ ସହସ୍ର ଯୁଗର ବ୍ୟବଧାନ । 'ଚିତ୍ରସେନ' ନାଁଟା କ'ଣ ଖରାପ ହେଲା କହିଲ ? ତାକୁ ଗନ୍ଧଉଚି ।"

ଧାରାର ମା ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼କୁ ଅନାଇଲେ । ପଚାରିଲେ, "ଚିତ୍ରସେନ ? କାହାପାଇଁ ?"

ମୁଁ କହିଲି, "ସାତକାଣ୍ଡ ରାମାୟଣ ସରିଗଲାଣି, ଆଉ ପଚାରୁଛନ୍ତି କ'ଣ ନା ସୀତା ମାଇ କି ଅଣ୍ଡିରା ? କିହୋ ଆଉ କାହାପାଇଁ ହେବ - ଧାରାର ଛୁଆ ପାଇଁ ।"

ସେ ତବଡ଼ବ ଆଖିରେ ମୋ ଆଡ଼କୁ ଅନାଇଲେ । କହିଲେ, "ସେଇଟା ପରା ତମର ନାତୁଣୀ ! ଝିଅର ନାଁ କେମିତି 'ଚିତ୍ରସେନ' ହେବ ମ ?"

ମୁଁ ଟିକିଏ ମୁଣ୍ଡ କୁଣ୍ଡାଇଲି, କହିଲି, "ଆରେ ସତରେ ତ !" ଧାରାକୁ ବିରକ୍ତ ହୋଇ କହିଲି - "ଆଗରୁ କହୁନୁ !"

ସେ ଉତ୍ତର ଦେଲା - "ବାପା, ତମେ ଶୁଣିଲେ ତ ! କେତେଥର କହିବାକୁ ଚେଷ୍ଟାକଲି, କିନ୍ତୁ ତମେ କୁହାଇଦେଲେ ତ ?" ସୁଯୋଗଟିଏ ମିଳିଗଲା ଜାଣି ଇଏ ବି ଯୋଡ଼ିଦେଲେ – "ତମେ କାହା କଥା ଶୁଣିବା ଲୋକ ଯେ !"

ଭୁଲ୍ ତ ମୋର ହୋଇଛି – ମୁଁ ଆତ୍ମରକ୍ଷାସୂଚକ ହସ ଟିକିଏ ହସି କହିଲି, "ହେଉ, ତେବେ 'ଅହଲ୍ୟା' ନାଁ ଦେଉନୁ ? ନ ହେଲେ 'ଶକୁନ୍ତଳା', 'ବୈଜୟନ୍ତୀମାଳା', 'କୁନ୍ଦେନ୍ଦୁମେଖଳା', 'ତୁଷାର-ହାର-ଧବଳା' ।"

"ଏମିତି ଲମ୍ବା ନାଁ ?"

"ତା'ହେଲେ ଛୋଟ ଗୋଟିଏ ଦେ – ରୀତା, ନୀତା, ମୀତା, ଗୀତା, ଫିତା, କବିତା, ବନିତା..."

"ସେ ସବୁ ନିହାତି ପୁରୁଣାକାଳିଆ ନାଁଗୁଡ଼ାକ ବାପା !"

"ଆଚ୍ଛା, ତେବେ ଆଧୁନିକ ନାଁ କେତେଟା କହିଦେବା–କେହି ଯେମିତି ଆଗରୁ ଦେଇନଥିବେ – 'ଚଳନ୍ତି ମେଘ', 'ବୁଡ଼ନ୍ତି ତାରକା', 'ଦୁର୍ଗାବତୀ'। ଆଉ ସାମ୍ୟବାଦୀ ନାଁ ଯଦି କହୁଛୁ – ତେବେ 'ସୋମବାରୀ', 'ପଖାଳଖାଇ', 'ଗୋବର ଗୋଟେଇ'।"

ଧାରା ଟିକିଏ ହସିଲାମୁହଁ କରି କହିଲା, "ଥାଉ ତେବେ, ଭାତଖୁଆଣୀବେଳେ କିମ୍ବା ବର୍ଷ ପୂରିଲାବେଳେ ନାଁ ଦେଲେ ଚଳିବ।" ମୁଁ ବା କ'ଣ ଆଉ କହନ୍ତି – କହିଲି, "ଦେଖ – ତୋର ଇଚ୍ଛା।" ଆଉ ଯୋଡ଼ିଦେଲି, "ଗଲୁ ରଘୁକୁ କହିବୁ କପେ ଚା' ନେଇଆସିବ।"

ନାତୁଣୀର ନାମକରଣ ସମସ୍ୟା ପରେ ହିଁ ମୁଁ ଠିକ୍ କରିନେଇଥିଲି ଯେ ଏପରି ସବୁ ଧନ୍ଦାରେ ଆଉ ମୁଁ ପଶିବିନି। କିନ୍ତୁ କିଛି ଦିନ ପରେ ହିଁ ସେହି ସମସ୍ୟା ଏକ ନୂତନ ରୂପରେ ଦେଖାଗଲା – ବେଶ୍ ଜରୁରୀ ଢଙ୍ଗରେ ମଧ୍ୟ। ପ୍ରକାଶକ ଓଜନଦାର୍ କଥାଟିଏ କହିଥିଲେ – ଆଉ ଖାଣ୍ଟି କଥା – ବହିଟିର ନାଁ ନ ଦେଲେ ସେ ବହିଟିକୁ ପ୍ରକାଶ କରିବେ କେମିତି ? ଏଇଟା ତ ମଣିଷଛୁଆ ନୁହେଁ ଯେ ଜନ୍ମ ସାଙ୍ଗେ ସାଙ୍ଗେ ନାଁ ନଦେଲେ ମଧ୍ୟ ପରେ କେଉଁ ଏକୋଇଶା, ଭାତଖୁଆଣୀ କିମ୍ବା ବର୍ଷକ ପରେ ଜନ୍ମତିଥିର ସତ୍ୟନାରାୟଣ ପୂଜାବେଳେ ନାମକରଣ କଲେ ଚଳିବ ! ବହି କଥା ସମ୍ପୂର୍ଣ୍ଣ ଅଲଗା। ନାଁଟିଏ ଧରି ହିଁ ସେ ଆତ୍ମପ୍ରକାଶ କରିବ। ନାଁ ନାହିଁ ଅର୍ଥ ପ୍ରକାଶନ ମଧ୍ୟ ନାହିଁ।

ଅଡୁଆ କଥା।

କବିତା ବହି ଅବା ହୋଇଥାଆନ୍ତା ! କୌଣସି ଗୋଟାଏ ପୁଷ୍ପ ଅଥବା କୁସୁମ ଏବଂ ତା' ପଛକୁ ରେଣୁ କିମ୍ବା ପରାଗ, ମଞ୍ଜରୀ କିମ୍ବା କଳିକା, ଗୁଚ୍ଛ କିମ୍ବା ତୋଡ଼ା, ନ ହେଲେ ହାର ଯୋଡ଼ିଦେଲେ, ବାସ୍, ନାମଟିଏ ହୋଇଗଲା। ଆଉ ଫୁଲ ସବୁ ତ ହଜାର ହଜାର କିସମର ରହିଛି; କେବଳ ବିଭିନ୍ନ ଧରଣର ଗୋଲାପ କୁଆଡ଼େ କେତେ ହଜାର ହୋଇଯିବ। ଦେଶୀ ବିଦେଶୀ ଅଥବା କଳ୍ପନାର ଫୁଲଟିଏ ହେଲେ ବି ହେଲା।

ଗଦ୍ୟ କଥା କିନ୍ତୁ ଅଲଗା। ଗଳ୍ପକୁ କୌଣସି ଫଳ ସଙ୍ଗରେ କିମ୍ବା ପ୍ରବନ୍ଧକୁ କୌଣସି ପନିପରିବା ସାଙ୍ଗରେ ତୁଳନା କରାଯାଇଥିବା କଥା ଶୁଣାନାହିଁ। 'ଆମ୍ବ ଝୁଡ଼ି', 'କଦଳୀ କାନ୍ଦି' କିମ୍ବା 'ଆଳୁବସ୍ତା' ଏମିତି ବହିର ନାଁ କିଏ ଶୁଣିଛି ? ଅଗତ୍ୟା ନିଷ୍ପତ୍ତି ନେଲି ଯାଙ୍କୁ ଟିକିଏ ପଚାରିବି। ଡାକିଲି ମଧ୍ୟ ଏବଂ ସେ ବି ଯଥା ସମୟରେ ଉପସ୍ଥିତ ହେଲେ। କହିଲି–"ମୋ ବହି ପାଇଁ ଭଲ ନାଁଟିଏ ବାଛିଦେଲ।"

ବାସ୍ ଏତିକି ! ଭ୍ରୂରୁ କୁଞ୍ଚାଇ, ନାକ ଟେକି ସେ ଉତ୍ତର ଦେଲେ, "ମୋର ଆଉ କାମ ନାହିଁ ଯେ ତମ ପାଖରେ ବସିବି, ଆଉ କ'ଣ ସବୁ ଏଆଡୁ ସେଆଡୁ ଲେଖିଛ ଯେ ସେଥିପାଇଁ ଗୋଟାଏ ନାଁ ଖୋଜିବି ! ତେଣେ ତରକାରି ବସିଛି, ଆଉ ସେଇଟା ଟିକିଏ ପୋଡ଼ିଗଲେ, ଅଲଣା ହୋଇଗଲେ କି ଲୁଣିଆ ହେଲେ ସାତଥର ଖୁଣ୍ଟା ଦେବ, ଆଉ ଦିନସାରା ସେ କଥା ଘୋଷିହେଉଥିବ । ଆଜିକାଲି ତ ସମସ୍ତେ ଗୋଟାଏ ଗପର ନାଁକୁ ବହିର ନାଁ କରିଦେଉଛନ୍ତି - ତମେ ସେମିତି କରୁନ ?"

ବଢ଼ିଆ ଇସାରାଟିଏ ଏମିତି ବେପରବାଏ ଢଙ୍ଗରେ ଫିଙ୍ଗିଦେଇ ସେ ରନ୍ଧାଘରକୁ ଚାଲିଗଲେ । ମୁଁ ପ୍ରଶଂସା ନକରି ରହିପାରିଲିନି । ମହିଳା ହେଲେ କ'ଣ ହେବ - ସତରେ ଏମାନେ ଭାରି ଓସ୍ତାଦ୍ । ନ ହେଲେ କ'ଣ ଇନ୍ଦିରା ଗାନ୍ଧି, ବନ୍ଦରନାଏକ, ଗୋଲ୍ଡ଼ାମେଆର, ମାର୍ଗାରେଟ୍ ଥାଚରମାନେ ଏମିତି ପ୍ରଧାନମନ୍ତ୍ରୀ ହୋଇ ପୁଅମାନଙ୍କୁ ପାଣି ପିଆଇ ଦେଉଥାଆନ୍ତେ । କିନ୍ତୁ ସେତେବେଳେ 'ଦାନ୍ତୁରୀର ହାସ୍ୟ ଏବଂ ଅନ୍ୟାନ୍ୟ ଗଳ୍ପ' ବୋଲି ନାଁଟି ଠିକ୍ କଲି, ସେତିକି ବେଳେ ହିଁ ମନେପଡ଼ିଲା ଯେ ମୋ ବହିରେ କେବଳ ଗଳ୍ପର ଯେ ସମାବେଶ ହୋଇଛି ତା' ନୁହେଁ, ସେଥିରେ ପ୍ରବନ୍ଧ, ଅନୁଭୂତିର କାହାଣୀ, ଆଉ କେତେ ଆଲୋଚନା ବି ଗୁନ୍ଥିହୋଇଛି ।

ପୁଣି ଗୋଟାଏ ସମସ୍ୟା ।

ଏଥର ଯେତେବେଳେ ତାଙ୍କୁ ଆଉ ଥରେ ଡାକିଲି ରନ୍ଧାଘରୁ ଜବାବ୍ ଆସିଲା... 'କଅଣ'? ମୁଁ କହିଲି - 'ପାଞ୍ଚମିନିଟ୍ ପ୍ଲିଜ୍' । ଚଟୁର ଜୋର୍ ଚାଳନା ଶବ୍ଦ ସାଙ୍ଗକୁ ଉତ୍ତର ମିଳିଲା, 'ଏବେ ମୋର ବେଳ ନାହିଁ ।'

ନାଁ କଥାରେ ସମ୍ପୂର୍ଣ୍ଣ ଅସହଯୋଗ - ସଫା କଥା । ମୁଁ ବି ମନେ ମନେ ଠିକ୍ କରିନେଲି, ଏହାର ଯଥୋଚିତ ପ୍ରତିଶୋଧ ନେବି ।

(୨)

ସେଦିନ ଅଧ୍ୟାପକ ବର୍ମା ଏବଂ ଶ୍ରୀମତୀ ବର୍ମା ଆମ ଘରକୁ ବୁଲିବାକୁ ଆସିଥାଆନ୍ତି । ସାଙ୍ଗରେ ଆସିଥାଏ ତାଙ୍କର ଗପୁଡ଼ି ଝିଅ ନେଲୀ – ଧାରାର ସାଙ୍ଗ, ଇଂରାଜୀ ସାହିତ୍ୟରେ ଏମ୍.ଏ. କରିଛି । ଆମର ଅନେକ ଦିନର ପୁରୁଣା ବନ୍ଧୁ ଏ ବିହାରୀ ପରିବାର । ଚା' ଏବଂ ଜଳପାନ ସାଙ୍ଗକୁ ଗପସପ ବି ବେଶ୍ ଜମିଉଠିଥାଏ । ମୁଁ ହଠାତ୍ ମୋ ବହିର ଭଲ ନାଁଟିଏ ବାଛିଦେବା ପାଇଁ ମିସେସ୍ ବର୍ମାଙ୍କୁ ଅନୁରୋଧ କଲି । ଆମ ଶ୍ରୀମତୀ ମୋ ଆଡ଼ିକି ଟେରେଇ ଚାହିଁବା ମୁଁ ଲକ୍ଷ୍ୟ କଲି; କିନ୍ତୁ ନ ଦେଖିଲା ଢଙ୍ଗରେ ମିସେସ୍ ବର୍ମାଙ୍କୁ ଅନାଇ ରହିଲି ।

ମିସେସ୍ ବର୍ମା କିଛି କହିବା ପୂର୍ବରୁ ହିଁ ନେଲୀ ଝାମ୍ପିପଡ଼ିଲା । ପଚାରିଲା, "ଅଙ୍କଲ୍, କବିତା ନା ଉପନ୍ୟାସ ?" ମୁଁ ତାକୁ ଅନାଇ ଜବାବ୍ ଦେଲି - "କବିତା ନୁହେଁ କି ଉପନ୍ୟାସ ନୁହେଁ; ଗଳ୍ପ, ପ୍ରବନ୍ଧର ଗୋଟିଏ ସମାହାର ।"

ସେ ଏଥର କୌଣସି ବକ୍ତୃତା ପ୍ରତିଯୋଗିତାରେ ଭାଗ ନେଉଥିବା ବକ୍ତା ପରି ଆରମ୍ଭ କରିଦେଲା - "ବେକନ୍‌ଙ୍କ ମତରେ କେତେକ ଲେଖାକୁ ଚାଖିବାକୁ ହୁଏ, କେତେ ଲେଖାକୁ ଗୋଟାପଣେ ଗିଳିଦେବାକୁ ହୁଏ, ଆଉ କେତେ ଲେଖାକୁ ଚୋବାଇ ଚୋବାଇ ହଜମ କରିବାକୁ ପଡ଼େ ।" ପଚାରିଲା - "ଆପଣଙ୍କ ଲେଖାକୁ ଗିଳିଦେବାକୁ ହେବ ନା ଚୋବାଇବାକୁ ହେବ ?"

ମୁଁ କହିଲି - "ତୁ ସିନା ଇଂରାଜୀ ଖାନାର ଭାଷାରେ ଇଂରାଜୀ ସାହିତ୍ୟ କଥା କହୁଛୁ, ଆମ ଓଡ଼ିଆ ଖାନା ସମ୍ପୂର୍ଣ୍ଣ ଭିନ୍ନ ଧରଣର – ଇଂରାଜୀ ଢାଞ୍ଚାର ତୁନିତୁନି ଚୁପ୍‌ଚାପ୍ ଭୋଜନ ନୁହେଁ । ଆମ ଖାନାରେ ଉଗ୍ର ଆମ୍ବିଳକୁ ଚକାମାଡ଼ି ବସି ହାପୁଡ଼ିବାକୁ ହୁଏ – ସେ ଆମ୍ବିଳ ଯେମିତି ଜିଭକୁ ଡେଇଁ ସିଧା ତାଳୁର ଅନ୍ତର୍ଦେଶରେ କୁତୁକୁତୁ କରିଦେବ । ଦହି-ପଖାଳକୁ ସୁଡୁକିବାକୁ ପଡ଼େ, ଚଟଣି କିମ୍ବା ଆଚାର ଖାଇଲାବେଳେ ଜିଭରେ ଟାକରା ମାରିବାକୁ ହୁଏ, ଆଉ ବଢ଼ିଆ ମାଛ କିମ୍ବା ମାଂସଝୋଳ ଯଦି ଟିକିଏ ରାଗୁଆ ହୋଇଯାଇଥାଏ, ତେବେ ଆଖିରୁ ଲୁହ ଗଡ଼ିଯାଉଥିଲେ ଏବଂ ନାକରୁ ପାଣି ନିଗିଡ଼ି ଯାଉଥିଲେ ମଧ୍ୟ ଆସନରେ ଗୋଡ଼ର ଅବସ୍ଥିତିକୁ ଟିକିଏ ବଦଳାଇ ଆଉ ଟିକିଏ ଝୋଳ ଆଣିବାକୁ ଡାକରା ଛାଡ଼ିବାକୁ ପଡ଼େ । ଆମ ଓଡ଼ିଆ ସାହିତ୍ୟ ବି ସେମିତି – ଖୋଲା ଡକାହକା । ଦାଶକାଠିଆ, ପାଲା କିମ୍ବା ସୁଆଙ୍ଗ ଦେଖିଛୁ ?"

ନେଲୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା– "ଆପଣଙ୍କ ଲେଖା କ'ଣ ଓଡ଼ିଆରେ ?"

ମୁଁ କହିଲି– "ହଁ, ଆଉ କ'ଣ ବୋଲି ଭାବୁଥିଲୁ ଯେ ?"

ସେ ଆହୁରି ଆଶ୍ଚର୍ଯ୍ୟ ହୋଇଗଲା । ନିରୀହ ଭାବରେ ପଚାରିଲା– "ମଉସା, ଓଡ଼ିଆରେ କ'ଣ କବିତା, ନାଟକ, ଉପନ୍ୟାସ, ଗଳ୍ପ, ପ୍ରବନ୍ଧ, ସବୁ ଅଛି ?"

ପ୍ରଶ୍ନ ଶୁଣି ମୁଁ ସ୍ତବ୍ଧ ଚକିତ ହୋଇଗଲି । କ'ଣ ଜବାବ ଦେବି ପ୍ରଥମେ ଭାବିପାରିଲିନି । ଅନ୍ୟ କେହି ଏମିତି ପଚାରିଥିଲେ ଜାଣିଶୁଣି ପରିହାସ କରୁଛି ଭାବି ହୁଏତ ରାଗିଯାଇଥାନ୍ତି – କିନ୍ତୁ ଇଏ ଯେ ନେଲୀ ! ବିଚାରୀ ମୋ ମନରେ ଆଘାତ ଦେବାପାଇଁ କାହିଁକି ଅବା ଚେଷ୍ଟାକରିବ ? କହିଲି– "ତୁ ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ଏତେ ଅଜ୍ଞ ? ଅନ୍ୟ ଭାରତୀୟ ଭାଷା-ସାହିତ୍ୟ ସମ୍ବନ୍ଧରେ ବି ବିଶେଷ କିଛି ଜାଣିନଥିବୁ ? ଏଥିପାଇଁ ଭାରତୀୟ କେତେ ନେତା ଭାବନ୍ତି ଯେ ଇଂରାଜୀ ଶିକ୍ଷା

ଫଳରେ ହିଁ ତମେ ସବୁ ସାଧାରଣ ଲୋକଙ୍କ ଜୀବନଠାରୁ ଦୂରେଇଯାଉଛ ଏବଂ ଭାରତୀୟ ସଂସ୍କୃତି ପ୍ରବାହରୁ ଅଲଗେଇ ରହୁଛ । ସେଇପାଇଁ ହିଁ ସେମାନଙ୍କର 'ଇଂରେଜୀ-ହଟାଓ' ଅଭିଯାନ ।"

ନେଲୀର ମୁହଁ ଶୁଖିଗଲା । କହିଲା, "ମଉସା, ଆମମାନଙ୍କ ବ୍ୟବହାର ଏବଂ ଅଜ୍ଞତା ଯୋଗୁଁ ଯଦି ଇଂରାଜୀ ଆମ ଦେଶରୁ ନିର୍ବାସିତ ହୁଏ, ତେବେ ମୁଁ ଅତ୍ୟନ୍ତ ଦୁଃଖିତ; କିନ୍ତୁ ଏଥିପାଇଁ ଆମକୁ ଦୋଷୀ କରିବା ଏକତରଫା ବିଚାର ହେବ । ଏମ୍.ଏ.ରେ ଆମର ୧୬ଟି ପେପର୍ ଥିଲା, ବି.ଏ. ଅନର୍ସରେ ୬ଟି । କିନ୍ତୁ ସେ ଭିତରେ ଗୋଟିଏ ବି ସଂସ୍କୃତ କିମ୍ବା ଭାରତୀୟ ସାହିତ୍ୟ ଉପରେ ନଥିଲା । ଇଂରାଜୀରେ ବି.ଏ. ଅନର୍ସ ନେଲାବେଳେ ପାସ୍ ବିଷୟରେ ଭାରତୀୟ ସାହିତ୍ୟ କିମ୍ବା ଦର୍ଶନକୁ ମଧ୍ୟ ବାଧ୍ୟତାମୂଳକ କରାଯାଇନଥିଲା । ଆମେ ତେବେ ଭାରତୀୟ ସାହିତ୍ୟ ସମ୍ବନ୍ଧରେ କେଉଁଠି ପଢ଼ିଲୁ ଯେ ଜାଣିବୁ ? ଆଉ ନ ଜାଣିଲୁ ବୋଲି ଆମର କ'ଣ ଦୋଷ ହେଲା ?"

ଧାରାର ମା' ନେଲୀକୁ ସମର୍ଥନ କରି କହିଲେ–"ସତକଥା – ପ୍ରତ୍ୟେକ ବିଷୟରେ ବିଶେଷ ଜ୍ଞାନ ଦେବାକୁ ଯାଇ ବୋଧହୁଏ ଏମାନଙ୍କ ଦୃଷ୍ଟିକୋଣକୁ ସୀମିତ କରିଦିଆଯାଇଛି । ଏମାନଙ୍କର ବିଶେଷ ଜ୍ଞାନରେ ଗଭୀରତା ଥାଇପାରେ, କିନ୍ତୁ ବ୍ୟାପ୍ତି ନାହିଁ । ଏଇ ବ୍ୟାପ୍ତିର ଅଭାବ ଯୋଗୁ ବୋଧହୁଏ ଏମାନେ ଆମ ସମାଜରେ ଖାପ ଖାଇ ପାରୁ ନାହାନ୍ତି । ସେଥିପାଇଁ ଏମାନେ ଯେତେ ଦାୟୀ, ଯେଉଁମାନେ ଆଜି ଉଚ୍ଚଶିକ୍ଷାର ଦାୟିତ୍ୱରେ ଅଛନ୍ତି, ସେମାନେ ତା'ଠାରୁ ବେଶି ଦାୟୀ ।"

ଅଧ୍ୟାପକ ବର୍ମା ମୁଣ୍ଡ ଟୁଙ୍ଗାରୁଥିଲେ । କହିଲେ - "ହଁ, ଆମକୁ ସେ କଥା ମାନିନେବାକୁ ହେବ । ହୁଏତ ଆମେ ଆମର ଆତ୍ମାଭିମାନ ନେଇ ଯୁବକଗୋଷ୍ଠୀଠାରୁ ଦୂରେଇଯାଇଛୁ - ସେମାନଙ୍କ ଚିନ୍ତାଧାରା ତଥା ଦୃଷ୍ଟିକୋଣ ବୁଝିବାକୁ ଚେଷ୍ଟାକରିନୁ, ସେମାନଙ୍କ ମତକୁ ପର୍ଯ୍ୟାପ୍ତ ମାତ୍ରାରେ ଗୁରୁତ୍ୱ ଦେଇନୁ । ହୁଏତ ପରମ୍ପରାଗତ ବୟସର ଅଭିମାନ ନେଇ ଆମେ ଆମର ଏକପାଖିଆ ଧାରଣାକୁ ଅସହିଷ୍ଣୁ ଭାବରେ ଏମାନଙ୍କ ଉପରେ ଜୋରଜବରଦସ୍ତି ଲଦିଦେବାକୁ ଯାଉଛୁ । ଶତାବ୍ଦୀର ସ୍ୱାଧୀନ ଚିନ୍ତା ନେଇ ଏମାନେ ଆମର ଏକଛତ୍ରବାଦୀ ମନୋବୃତ୍ତି ବିରୁଦ୍ଧରେ ବିପ୍ଳବ କରିଛନ୍ତି - ସିଧାସଳଖ କିଛି କରି ନପାରି ଆମଠାରୁ ଦୂରେଇଯାଇଛନ୍ତି । ଦେଖାଦେଇଛି ଏଇ ଜେନରେସନ୍ ଗେପ୍ ।"

ଆମ ଶ୍ରୀମତୀ ହସୁଥିଲେ । ବୋଧହୁଏ ସେ ହସର ମାଧ୍ୟମରେ ନାତୁଣୀର ନାମକରଣ ବେଳର ଘଟଣାକୁ ପରୋକ୍ଷଭାବରେ ଚେତାଇଦେଉଥିଲେ । ମୁଁ କିନ୍ତୁ ଅଧ୍ୟାପକ ବର୍ମାଙ୍କ ମତ ସଙ୍ଗରେ ସହମତ ହେଲି ଏବଂ କହିଲି–"ଆପଣ ଠିକ୍

କହୁଛନ୍ତି । ଆମେ ପରସ୍ପରର ପାଖକୁ ଆସି ପରସ୍ପରକୁ ପାଖରୁ ଚିହ୍ନିବାକୁ ଚେଷ୍ଟା ନକରି ଦୂରରୁ କେବଳ ପରସ୍ପରର ଗତିବିଧିକୁ ସମାଲୋଚନା କରୁଛୁ । ଏ ସବୁଥିରେ କେଉଁଠି ପରସ୍ପର ଭିତରେ ବୁଝାମଣା କିମ୍ବା ଆଦାନ-ପ୍ରଦାନର ମନୋଭାବ ନାହିଁ – ଯାହାକୁ କି ସହାବସ୍ଥାନ କୁହାଯାଇପାରେ । କେମିତି ଗୋଟାଏ 'ଗୋଟାପଣେ ଗ୍ରହଣ କରିନିଅ ଅଥବା ପୂରାପୂରି ଫୋପାଡ଼ିଦିଅ' ଢଙ୍ଗ । ଏ 'ଅଂରେଜୀ ହଟାଓ' ମନୋବୃତ୍ତି ତହିଁର ଏକ ପରୋକ୍ଷ ପ୍ରତିଫଳନ ।"

ନେଲୀ ବୋଧହୁଏ ଏ ଆଲୋଚନାରେ ଅପ୍ରତିଭ ହେଉଥିଲା । କହିଲା – "ମଉସା ! ଆମେ ତ ବଙ୍ଗଳା ସାହିତ୍ୟ ସମ୍ବନ୍ଧରେ ବେଶ୍ କିଛି ଜାଣୁ – ଅବଶ୍ୟ ବଙ୍ଗାଳୀମାନଙ୍କଠାରୁ ଶୁଣି ଅଥବା ଇଂରାଜୀ ଅନୁବାଦ ପଢ଼ି – କିନ୍ତୁ..."

"ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ସେମିତି ଓଡ଼ିଆଙ୍କ ପାଖରୁ କାହିଁକି ବିଶେଷ କିଛି ଶୁଣିନୁ ବୋଲି ପଚାରୁଛୁ ତ ?" ମୁଁ ତା'ଠାରୁ କଥା ଛଡ଼ାଇଆଣି କହିଲି ଏବଂ ନିଜେ ନିଜେ ଜବାବ୍ ଦେଲି, "କେମିତି ଶୁଣିବୁ କହୁନୁ ? ବଙ୍ଗଳାର ସମସ୍ତେ ହେଲେ ବଙ୍ଗାଳୀ । ଦେଖୁଛୁ ତ ପୂର୍ବ-ପାକିସ୍ଥାନର ବଙ୍ଗାଳୀମାନେ ବଙ୍ଗଳା ଭାଷାର ମମତା ପାଇଁ ମୁସଲମାନ ହୋଇ ମଧ୍ୟ ପାକିସ୍ଥାନରୁ କେମିତି ଅଲଗା ହୋଇଗଲେ । ପଶ୍ଚିମ ବଙ୍ଗଳାରେ ନଜରୁଲ୍ ଇସ୍‌ଲାମ ଯେମିତି ବଙ୍ଗାଳୀ, ବାଂଲାଦେଶରେ ରବୀନ୍ଦ୍ରନାଥ ସେମିତି ବଙ୍ଗାଳୀ । ନିଜ ମାତୃଭାଷାର ପ୍ରଚାର ଏବଂ ପ୍ରସାରରେ ସେ ସେମସ୍ତେ ଏକ । ଆମ ଓଡ଼ିଶାରେ ସେ ମନୋଭାବ କାହିଁ ? ଆମେ ହେଲୁଁ କଟକିଆ, ବାଲେଶ୍ୱରିଆ, ଗଞ୍ଜାମିଆ ଅଥବା ସମ୍ବଲପୁରିଆ । ତହିଁରେ ପୁଣି ବ୍ରାହ୍ମଣ ଅଥବା କରଣ । ଓଡ଼ିଆ ଆସିବେ କେଉଁଠୁ ଯେ ଓଡ଼ିଆ ସାହିତ୍ୟ କଥା କହିବୁଲିବେ ?"

ପଚାରିଲି – "ଓଡ଼ିଶୀ ନାଚ ଦେଖିଛୁ ?"

ନେଲୀ ଖୁସିରେ ଉତ୍ତର ଦେଲା – "ମଉସା, କି ବଢ଼ିଆ !"

– "ଆଉ ଛଉ ?"

ନେଲୀ ଖୁସିରେ କହିଲା – "ହଁ, ସରେଇକଳା ଛଉ ଦେଖିଛି, ଆଉ ବାରିପଦାର ଛଉ ବି ଦେଖିଛି । ଅତି ଚମତ୍କାର ନାଚ ।"

– "ସେ ନାଚ ସଙ୍ଗରେ ଯେଉଁ ଗୀତ ସବୁ ବୋଲାଯାଏ ?"

– "ସେଗୁଡ଼ିକ ବି କେମିତି ନୂଆ ଧରଣର ।"

– "କୋଣାର୍କ ମନ୍ଦିର ?"

ପ୍ରଶ୍ନର ଏମିତି ଅପ୍ରତ୍ୟାଶିତ ପରିବର୍ତ୍ତନ ଯୋଗୁଁ ବୋଧହୁଏ ସେ ପ୍ରଥମେ ଥତମତ ହୋଇଗଲା । କହିଲା, "ହଁ, କୋଣାର୍କ ଦେଖିଛି–ଭୁବନେଶ୍ୱରର ମନ୍ଦିର ସବୁ

ଦେଖିଛି । ରାଜାରାଣୀ ମନ୍ଦିର ଦେଖିଛି–କି ସୁନ୍ଦର କାରୁକାର୍ଯ୍ୟ ! ସବୁ ସତେ ଯେମିତି ଜୀବନ୍ତ ! ସେମିତି କଳା କୁଆଡ଼େ ଖାଜୁରାହୋ ଛଡ଼ା ଅନ୍ୟ କେଉଁଠି ନାହିଁ ।"

– "ଜାଣିଲୁ କାହିଁକି ପଚାରିଲି ? ଓଡ଼ିଶାର ଅନ୍ୟ ନାମ ହେଉଛି ଉତ୍କଳ– କଳା ଯେଉଁଠି ଉତ୍କର୍ଷତା ଲାଭକରିଥିଲା–କଳା ଯେଉଁଠି ଉଦ୍‌ଗତ ହୋଇଥିଲା–ଜନ୍ମ ନେଇଥିଲା । ସେଇ କଳାର ଜନ୍ମସ୍ଥଳୀରେ ତୁ ପୁଣି ସାହିତ୍ୟ କଥା ପଚାରୁଛୁ ? ଓଡ଼ିଆ ସାହିତ୍ୟ ଅତି ଉଚ୍ଚକୋଟୀର । କିନ୍ତୁ ସାହିତ୍ୟର ସମ୍ମାନ ଅପେକ୍ଷା ଆମେ ଆତ୍ମସମ୍ମାନ ଏବଂ ଗୋଷ୍ଠୀସମ୍ମାନକୁ ଅଧିକ ଗୁରୁତ୍ୱ ଦେଇଛୁଁ – ଉଚ୍ଚତର ଆସନ ଦେଇଛୁଁ । ଫଳରେ ସେ ପ୍ରୌଢ଼ ସ୍ୱାମୀର ଯେଉଁ ଅବସ୍ଥା ହୋଇଥିଲା, ଆମ ସାହିତ୍ୟର ବି ସେଇ ଅବସ୍ଥା ହୋଇଛି । ଜାଣିଛୁନା ସେ ପ୍ରୌଢ଼ ସ୍ୱାମୀ କଥା ? କେମିତି ତାଙ୍କର ଦୁଇ ଭାରିଯା ଥିଲେ–ଜଣେ ଯୁବତୀ ଆଉ ଅନ୍ୟ ଜଣେ ପ୍ରୌଢ଼ା । ସ୍ୱାମୀ ଶୋଇଥିଲାବେଳେ ଯୁବତୀ ଭାରିଯା ତାଙ୍କୁ ଯୁବକର ରୂପ ଦେବା ଆଶାରେ ତାଙ୍କ ମୁଣ୍ଡର ଧଳାବାଳ ସବୁ ଉପାଡ଼ି ପକାଏ ତ ପ୍ରୌଢ଼ା ସ୍ତ୍ରୀ ତା' ସ୍ୱାମୀକୁ ପ୍ରୌଢ଼ ବୋଲି ଜଣାଇ ଦେବାପାଇଁ କଳାବାଳ ସବୁ ଉପାଡ଼ିଦିଏ । ଆମ ଓଡ଼ିଆ ସାହିତ୍ୟର ଗୋଷ୍ଠୀବିବାଦ ଅନେକ ଦିନରୁ ସେମିତି ଢ଼ଙ୍ଗ ନେଇଛି । ଗୋଟିଏ ଗୋଷ୍ଠୀ ଅନ୍ୟ ଗୋଷ୍ଠୀର ଲେଖା ସବୁକୁ ସାହିତ୍ୟ ନୁହେଁ କହି ଅଳିଆଗଦାରେ ଫିଙ୍ଗିବାକୁ ଚେଷ୍ଟା କଲାବେଳକୁ ସେହି ଅନ୍ୟ ଗୋଷ୍ଠୀ ମଧ୍ୟ ଏ ଗୋଷ୍ଠୀର ଲେଖା ସବୁକୁ ସେମିତି ଫିଙ୍ଗି ଦେବାରେ ଲାଗିପଡ଼ୁଛନ୍ତି । ଫଳରେ ବାହାରକୁ ଆମ ସାହିତ୍ୟଭଣ୍ଡାର ଶୂନ୍ ପରି ଜଣାପଡ଼ୁଛି ।"

ଅଧ୍ୟାପକ ବର୍ମା ଦୁଃଖର ଦୀର୍ଘଶ୍ୱାସ ଛାଡ଼ୁଥିଲେ । କହିଲେ, "ଏଇ ଗୋଷ୍ଠୀବିବାଦ ତ ଚିରଦିନ ଆମ ପ୍ରଗତିର କାଳ । ସାହିତ୍ୟ କହନ୍ତୁ ଅଥବା ଅନ୍ୟ ଯେ କୌଣସି ପ୍ରଗତିର କଥା କହନ୍ତୁ – ସେଇ ଏକା କଥା । ଦେଖୁନାହାନ୍ତି ଆମ ବିହାରର ଅବସ୍ଥା ।"

ଠିକ୍ ତା' ପରେ ପରେ ହିଁ ସେ ଘରକୁ ଫେରିଯିବା ପାଇଁ ଇଙ୍ଗିତ ଦେଇ କହିଲେ, "ଆଜି ଅନେକ ଡେରି ହୋଇଗଲାଣି । ଘରେ ଗୁଡ଼ିଏ ଖାତାଦେଖା କାମ ବାକିପଡ଼ିଛି - ପରେ ପୁଣି ଦେଖାହେବ ।"

ଶ୍ରୀମତୀ ବର୍ମା ଚୁପ୍‌ଚୁପ୍ ଏ ଆଲୋଚନା ସବୁ ଶୁଣୁଥିଲେ । ଠିଆ ହେଉଁ ହେଉଁ କହିଲେ, "ଆଜିର ଆଲୋଚନା ସତରେ ଖୁବ୍ ଭଲଲାଗିଲା । ସବୁଦିନ କେତେ ସେଇ ଜନତା ପାର୍ଟି–କଂଗ୍ରେସ (ଆଇ)–ଜନସଂଘ–ବି.ଏଲ.ଡି. କଥା ଶୁଣିବ ?"

ନେଲୀ କହିଲା – ଅଙ୍କଲ୍‌ଙ୍କ ଘର ଓଆସିସ୍ ପରି ଲାଗେ – ନା ଗୋ ?

ଶ୍ରୀମତୀ ବର୍ମା ହଠାତ୍ ମୋ ଆଡ଼ିକି ଚାହିଁ କହିଲେ – "ଆପଣଙ୍କ ବହିର ନାଁ 'ମରୁଦ୍ୟାନ' ଦେଉନାହାଁନ୍ତି ?"

ମୁଁ କହିଲି – "ମରୁଦ୍ୟାନ ? ବେଶ୍ ଭଲ ନାଁ ତ !"

ବର୍ମା, ମିସେସ୍ ବର୍ମା, ଆଉ ନେଲୀ ଚାଲିଗଲେ । ମୁଁ କହିଲି – "ଯା' ହେଉ ବହି ପାଇଁ ଭଲ ନାଁଟିଏ ମିଳିଗଲା ।"

ଶ୍ରୀମତୀ ପଚାରିଲେ – "କୋଉ ନାଁ ?"

ମୁଁ କହିଲି – "ମରୁଦ୍ୟାନ ।"

ସେ ମୁହଁ ଛିଞ୍ଚାଡ଼ି କହିଲେ – "ମରୁଦ୍ୟାନ ? ଅର୍ଥଟା କ'ଣ ଟିକେ ଶୁଣେଟି ?"

ମୁଁ ଉତ୍ତରଦେଲି – "ମରୁଦ୍ୟାନ – ଓଆସିସ୍ । ମରୁଭୂମିର ବାଲିଝଡ଼ ଆଉ ତାତିଲା ପବନ ଭିତରେ ଯେଉଁ ଓଟ ପିଠିରେ ଚଢ଼ି ଯାତ୍ରୀ ଯେତେବେଳେ ତା' ବାଟରେ ଯାଉଥାଏ, ଖରାରେ ମୁଣ୍ଡ ଜଳିଯାଉଥାଏ, ଶୋଷରେ ତଣ୍ଟି ଶୁଖିଯାଉଥାଏ, ସେ ଦେଖେ ମରୁଦ୍ୟାନ... ଖଜୁରି ଗଛର ଛାଇ, ଝରଣାର ପାଣି, ଆଉ ଗଛ ତଳେ ଝଡ଼ିପଡ଼ିଥିବା ପାଚିଲା ରସଭରା..."

– "ଯେ ତା ସାଙ୍ଗରେ ତମ ବହିର ସମ୍ବନ୍ଧ ?"

ମୁଁ କହିଲି – "ସାମଞ୍ଜସ୍ୟ ଯଥେଷ୍ଟ । ସଂସାର-ମରୁର ଯାତ୍ରୀ ଯେ ପାଠକ, ସେ ମାନସିକ ଉତ୍ତାପ ନେଇ ଯେତେବେଳେ କୌଣସି ଡ୍ରଇଂରୁମ୍‌ର ପଙ୍ଖାତଳେ ବସି ଏ 'ମରୁଦ୍ୟାନ' ବହିଖଣ୍ଡିକ ଧରି..."

– "ପାଠକ କାହିଁକି ମାନସିକ ଉତ୍ତାପଗ୍ରସ୍ତ ହେବ, ବାଜେ କଥାଗୁଡ଼ାକ ।"

– "ଗୃହ ଏବଂ ଗୃହିଣୀ ଜଞ୍ଜାଳ..."

"ସେମିତି ବାଜେ ନାଁ ଦେଇପାରିବନି କହିଦେଉଛି" – ତମତମ ହୋଇ ସେ ରନ୍ଧାଘର ଆଡ଼କୁ ଚାଲିଗଲେ ।

ମୁଁ ପଛଆଡୁ ଚିତ୍କାରକଲି - "ଅଲବତ୍ ଦେବି । ମୋ ବହିର ନାଁ ହେବ –"

ଆପଣ ବୁଝିଲେ ତ ମୁଁ କାହିଁକି ମୋ ବହିର ନାଁ 'ମରୁଦ୍ୟାନ' ଦେଲିନି ?

# ଗଳ୍ପ ରାଜା ନୁହେଁ

କଣ୍ଟାବାଡ଼ରେ ଲୁଗା ପକାଇ କଳି ଭିଆଣ କରିବା ବୋଧହୁଏ ମଣିଷର ସବୁଦିନିଆ ପ୍ରକୃତି । ସତେ ଯେମିତି କାହା ସଙ୍ଗରେ କଳିଗୋଳ ନ କଲେ ତା' ଭାତ ହଜମ ହୁଏନି ! ତେଣୁ ସେ ସବୁବେଳେ କଳି କରିବାପାଇଁ କିଛି-ନା-କିଛି ବାହାନା ଖୋଜି ବୁଲୁଥାଏ – ଚାଲିଯିବା ଶଗଡ଼ରେ ହାତ ମାରିଦିଏ – ଖୁଣ ନଥିବା ଜାଗାରେ ଖୁଣ ବାହାର କରେ – ସଜ ମାଛରେ ପୋକ ପକାଏ – ଆଖି ବଡ଼ କି କାନ ବଡ଼, ପେଟ ବଡ଼ କି ପାଟି ବଡ଼, ଗାନ୍ଧିଜୀ ବଡ଼ କି ରବୀନ୍ଦ୍ରନାଥ ବଡ଼, ଏପରି ଅବାନ୍ତର ତୁଳନା ସବୁ ଆରମ୍ଭ କରିଦିଏ । ସାହିତ୍ୟ କ୍ଷେତ୍ରରେ ଗଦ୍ୟ ବଡ଼ କି ପଦ୍ୟ ବଡ଼, ପ୍ରବନ୍ଧ ନା ନିବନ୍ଧ, ରଚନା କିମ୍ବା ଆଲୋଚନା, ନାଟକ ଅବା ଉପନ୍ୟାସ ଏ ଧରଣର ତୁଳନାତ୍ମକ ଚିନ୍ତାଧାରା ସେହି କଳିଭିଆଣ ପ୍ରକୃତିର ହିଁ ପରିପ୍ରକାଶ ବୋଲି ଧରିନିଆଯାଇପାରେ । କ୍ରିୟାକ୍ଷେତ୍ର ଯେଉଁଠି ବିଭିନ୍ନ, ସେଠାରେ ଯଥାର୍ଥ ତୁଳନା ସମ୍ଭବ ନୁହେଁ । ଯଦି ଅବା ତୁଳନା କରାଯାଏ, ସେ ତୁଳନା ଏକଦେଶଦର୍ଶୀ ହେବା ହିଁ ସ୍ୱାଭାବିକ । ତେଣୁ ସେ ତୁଳନାର ଫଳାଫଳ ତୁଳନାକାରୀର ବ୍ୟକ୍ତିଗତ ଦୃଷ୍ଟିକୋଣ ତଥା ମାନସିକ ଦୃଷ୍ଟିଭଙ୍ଗୀ ଉପରେ ହିଁ ନିର୍ଭର କରେ ।

ଅନ୍ଧ କିପରି ନିଶ୍ଚିତ ଭାବେ କହିପାରିବ ଯେ କାନ ଅପେକ୍ଷା ଆଖି ବଡ଼ ? ବଧିର କିପରି ନିର୍ବିବାଦରେ ଗ୍ରହଣ କରିଦେବ ଯେ ବଧିରହେବା ଅପେକ୍ଷା ଅନ୍ଧହେବା ଶ୍ରେୟସ୍କର ? ଯଦି ସେ ଏପରି କୌଣସି ନିର୍ଦ୍ଦିଷ୍ଟ ମତାମତକୁ ଗ୍ରହଣ କରିନିଏ, ଧରିନେବାକୁ ହେବ ଯେ ସେ ଯାହା ହଜାଇ ବସିଛି, ମାନସିକ ଅଶାନ୍ତି ଯୋଗୁଁ ତାକୁ ହିଁ ସେ ଅମୂଲ୍ୟ ବିଧି ବୋଲି ମନେକରୁଛି – ଡେଇଁ ପଳାଇଥିବା କେରାଣ୍ଡି ବିରାଟ ରୋହିମାଛ ନ୍ୟାୟରେ – ହଜିଯାଇଥିବା କଣାପଇସା ରତ୍ନମୁଦି ପରି ।

ଗଳ୍ପ ଏବଂ କବିତାକୁ ନ୍ୟାୟତଃ ତୁଳନା କରାଯାଇ ପାରେ ନା । ଏ ଦିଓଟି ଭିତରେ କେହି ବଡ଼ ନୁହେଁ, କି କେହି ସାନ ନୁହେଁ – ଗଳ୍ପ ରାଜା ନୁହେଁ, କି କବିତା ରାଣୀ ନୁହେଁ । ଦୁହେଁ ଦୁହିଁଙ୍କର ପରିପୂରକ ବୋଲି ମଧ୍ୟ କହିହେବନାହିଁ । ଏ ଦୁହିଁଙ୍କର କ୍ଷେତ୍ର ସମ୍ପୂର୍ଣ୍ଣ ଭିନ୍ନ । ପ୍ରତ୍ୟେକେ ନିଜ ଗୁଣ ବଳରେ ନିଜେ ସ୍ୱୟଂସମ୍ପୂର୍ଣ୍ଣ ।

ଏକଥା କିନ୍ତୁ ସତ୍ୟ ଯେ, ଏ ଦୁଇ ମଧ୍ୟରୁ ଯେକୌଣସି ଗୋଟିକର ଅଭାବରେ ସାହିତ୍ୟର ଅଙ୍ଗହାନି ହୁଏ – ଲାବଣ୍ୟ ହ୍ରାସପାଏ – ସୌଷ୍ଠବରେ ଆଞ୍ଚ ଆସେ – ଦୁଇ

ଆଖିରୁ ଗୋଟିଏ ନଷ୍ଟ ହୋଇଗଲେ ଯେଡ଼େ ସୁନ୍ଦର ହୋଇଥିଲେ ମଧ୍ୟ କଣା ମଣିଷର ଅବସ୍ଥା ଯେପରି ।

କିନ୍ତୁ ଏ ଦୁହିଁଙ୍କର ପାରସ୍ପରିକ ତୁଳନା ଅଯୌକ୍ତିକ ଏବଂ ଅସଙ୍ଗତ ହେଲେ ମଧ୍ୟ ପ୍ରତ୍ୟେକର ନିଜସ୍ୱ ବୈଶିଷ୍ଟ୍ୟ ରହିଛି – ଯେପରି ଚିନି ଏବଂ ଲୁଣ । ତେଣୁ ସେହି ବୈଶିଷ୍ଟ୍ୟର ଚିତ୍ରଣକୁ ବୈଚିତ୍ର୍ୟ ବୋଲି ଦର୍ଶାଇ କେହି ଯଦି ନିଜ ତେରେଛା ନଜରର ମାନଦଣ୍ଡରେ ଏ ଦୁହିଁଙ୍କୁ ଓଜନ କରିବସନ୍ତି ଏବଂ ସେଥିରୁ ଦୁହିଁଙ୍କର ମୂଲ୍ୟାଙ୍କନ କରି କିଏ ବଡ଼ କିଏ ସାନ ଘୋଷଣା କରନ୍ତି, ତହିଁକି ଉପାୟ ନାହିଁ । ଖଟା ଏବଂ ଲୁଣିଆ ପସନ୍ଦ କରୁଥିବା ଇଡ଼ଲି ଶମ୍ବର ଆଉ ବରା ସିଙ୍ଗଡ଼ାବାଲା, ପିଠା ଖିରି ଆଉ ସନ୍ଦେଶ ରସଗୋଲାବାଲାଙ୍କୁ ଛୋଟ ନଜରରେ ଦେଖିବାକୁ ଚେଷ୍ଟାକଲାପରି – ଯନ୍ତ୍ର-ସଙ୍ଗୀତ କଣ୍ଠ-ସଙ୍ଗୀତକୁ ଡାଉନ୍ କରିବା ଢ଼ଙ୍ଗରେ । ଏହି ପୃଷ୍ଠଭୂମିରେ କବିତାକୁ କୌଣସିମତେ ଗୌଣ ନକରି ଗଳ୍ପର ବିଶେଷତ୍ୱ କିଛି ଦର୍ଶାଇ ଦିଆଯାଇପାରେ ।

ଶିକ୍ଷିତ ଅଥବା ଅଶିକ୍ଷିତ, ଉନ୍ନତ ଅଥବା ଅନୁନ୍ନତ, ଆଧୁନିକ ଅଥବା ପୁରାତନ, ପୁରୁଷ ଅଥବା ସ୍ତ୍ରୀ – ଯେ କୌଣସି ମଣିଷ ଯେ କୌଣସି ଦେଶରେ ଯେ କୌଣସି ଭାଷାରେ ଏବଂ ଯେ କୌଣସି ବୟସରେ ଗପ କରିବାକୁ ଯେପରି ଭଲପାଏ, ସେପରି ଗପ ଶୁଣିବାକୁ ଭଲପାଏ । ତା'ର ମାନସିକ ବିକାଶ ଏବଂ ରୁଚିର ପରିପ୍ରେକ୍ଷୀରେ ଗଳ୍ପ ତା'ର ମନଲାଖି ହେଲେ ହେଲା । ଗାଳ୍ପିକ ଏ ସୁଯୋଗ ନିଏ – ଗଳ୍ପର ମାଧ୍ୟମରେ ମଣିଷକୁ କେବଳ ସେ ସୁଖ ଓ ଆନନ୍ଦ ଦିଏ, ହସାଏ ଏବଂ କନ୍ଦାଏ, ତା' ନୁହେଁ, ତାକୁ ତାକୁ ନିଜ ଈପ୍ସିତ ମାର୍ଗରେ ପରିଚାଳନ କରିବାକୁ ଚେଷ୍ଟାକରେ ।

ସେଦିନର ଘଟଣା । ତା' ମା'ର କଥାକୁ ଅମାନ୍ୟ କରି ଚାରିବର୍ଷର ଝିଅଟି ଘର ବାହାରେ ସମସ୍ତଙ୍କ ଯିବା-ଆସିବା ବାଟରେ ଲେପ୍‌ରା ମାରି ବସି ଧୂଳିଘର ତିଆରି କରୁଥାଏ । ତା' ମା କେତେ ଥର କଅଁଳେଇ ଡାକିଲେ, ଘରକୁ ଚକୋଲେଟ୍ ଆସିବା କଥା କହିଲେ, ଧମକ୍ ଦେଲେ; କିନ୍ତୁ କିଛି ଫଳ ହେଲାନି । ଅବସ୍ଥା ଆହୁରି ଜଟିଳ ହୋଇଗଲା ଯେତେବେଳେ ତା'ର ଦୁଇବର୍ଷର ଲଙ୍ଗଳୁ ଭାଇ ଧୂଳି ଖେଳିବା ପାଇଁ ତା' ପାଖରେ ଯାଇ ବସିପଡ଼ିଲା, ଆଉ ମୁଠା ମୁଠା ଧୂଳି ନିଜ ମୁଣ୍ଡରେ ବୋଳି ସାରିଲା ପରେ ନାନୀ ମୁଣ୍ଡରେ ସେଥିରୁ କିଛି ଜମାକରିଦେବାକୁ ଆରମ୍ଭ କରିଦେଲା । ଏଣେ ଖାଇବା ବେଳ ହୋଇଗଲାଣି । ଜୋର୍ ଜବରଦସ୍ତି କରି ଭିଡ଼ିଆଣିଲେ ସେ ଦିହେଁ ଆଉ ଖାଇବେନି । ଅବସ୍ଥା ଠଉରାଇ ଅଜାବୁଢ଼ା ପାଟିକରି ସ୍ୱଗତୋକ୍ତି ଆରମ୍ଭ କରିଦେଲେ – 'କାଉଟିଏ ଥିଲା, ଆଉ ମୂଷାଟିଏ ଥିଲା... ।' ନାନୀ ମୁଣ୍ଡଟେକି ବୁଢ଼ା ଅଜାଙ୍କ ଆଡ଼ିକି ଅନାଇଲାବେଳକୁ ପୁଣି ସେ ବଡ଼ ପାଟିରେ ଯୋଡ଼ିଦେଲେ... 'ଆଉ ହରିଣଟିଏ ଥିଲା... ।' ନାନୀ କେତେ ବା ଆଉ ସମ୍ଭାଳେ! ଧୂଳିଘର ଛାଡ଼ି

ଦଉଡ଼ିଆସିଲା ବେଳକୁ ତା' ଛୋଟ ଭାଇ ଗୁରୁଣ୍ଡିବା ଢ଼ଙ୍ଗରେ ଦେହ ବଙ୍କେଇ ଥଙ୍ଗେଇ ଥଙ୍ଗେଇ କହିଲା– 'ଅଜା... ଆଉ କଇଁଛ... ।'

ଛୁଆ ଦିଓଟି ଗପ ଶୁଣିବା ଆଶାରେ ବୁଢ଼ାଅଜାଙ୍କ ପାଖରେ ଲପେଟି ଯାଇଥିଲେ । ବୁଢ଼ାଅଜା କହିଲେ – 'ତମେ ଆଗ ଖାଅ, ମୁଁ ପରେ ଗପ କହିବି ।' ଛୁଆଙ୍କର କିନ୍ତୁ ଏକା ଜିଦ୍ – ସେମାନେ ଆଗେ ଗପ ଶୁଣିବେ । ନାନାଦି ଯୁକ୍ତି ଓ ଉକ୍ତି-ପ୍ରତ୍ୟୁକ୍ତି ପରେ ଫଇସଲା ହେଲା ଯେ ସେ ଦିହେଁ ଖାଉଥିବେ ଓ ବୁଢ଼ାଅଜା ଗପ କହୁଥିବେ । ତାହା ହିଁ ଶେଷରେ ହେଲା । ଛୁଆମାନେ ଖାଇସାରିଲାବେଳକୁ ବ୍ୟାଧ କଇଁଛକୁ ଧରି ନେଇ ସାରିଥିଲା । ଆଉ ହରିଣ ମଲାପରି ଶୋଇଗଲାବେଳକୁ ଛୁଆ ଦୁହେଁ ବୁଢ଼ା ଅଜାଙ୍କର ଦୁଇ ପାଖରେ ଶୋଇ ଆରାମରେ ଆଖି ବୁଜିସାରିଥିଲେ ।

ସାଧାରଣ ଭାବରେ ବୟସ ସଙ୍ଗରେ ମାନସିକ ବିକାଶର ସମ୍ପର୍କ ଥିବାରୁ ବିଭିନ୍ନ ବୟସରେ ଭିନ୍ନ ଭିନ୍ନ ଢ଼ଙ୍ଗର ଗପ ବେଶି ଜନପ୍ରିୟ ହୋଇଥାଏ । ମନେହୁଏ ଯେ ଛୋଟ ପିଲାମାନେ ମାଙ୍କଡ଼, ଭାଲୁ, ସାପ, ବେଙ୍ଗ, ପଶୁପକ୍ଷୀଙ୍କ ଗପ ଅତି ମାତ୍ରାରେ ଭଲପାଆନ୍ତି । ସେମାନଙ୍କ କଳ୍ପନାର ଜଗତ୍‌ରେ ଅସମ୍ଭବ ବୋଲି କିଛି ନଥାଏ । ତାଙ୍କ ବାଘ-ଭାଲୁମାନେ ତେଣୁ କେବଳ ନିଜ ନିଜ ଭିତରେ ଯେ ଗପସପ କରନ୍ତି ତା' ନୁହେଁ – ଏ ପିଲାଙ୍କ ସଙ୍ଗରେ ମଧ୍ୟ ସାଙ୍ଗ ହୁଅନ୍ତି – ତାଙ୍କ ସୁଖ ଦୁଃଖରେ ଭାଗ ନିଅନ୍ତି । 'ଚୁଡକୁ ମୂଷି' ଭରଣକ ଧାନ ବସି ବସି ଖାଉଥିଲାବେଳେ ତାକୁ ଯେତେବେଳେ କହିଦିଆଯାଏ – 'ତୁ ଥା ମୁଁ ଯାଉଚି ରୁଷି – ଧାନ ନ ଖାଆ କୁଣ୍ଡା ଖା, ଏବାଟେ ଏବାଟେ ପଳାଇ ଯା !' ସେ ଚଟ୍‌କିନା କଥା ମାନି ଛୁଆର ହାତ ପାପୁଲିଠାରୁ ଆରମ୍ଭକରି ଧୀରେ ଧୀରେ ତା'ର କହୁଣି ଦେଇ ଦେଖାଇ ଦେଇଥିବା ହାତ ବାଟରେ ଛୁଆର କାଖ ପାଖରେ କୁତୁକୁତୁ କରି ଚାଲିଯାଏ । ବିଲେଇ ନାନୀ ବାଡ଼ି ଧରି ଚାଲେ, ଆଉ ଛୁଆମାନେ ଖାଉଥିବା ଦେଖିଲେ 'ମ୍ୟାଉଁ ମ୍ୟାଉଁ – ଦୁଧ ଭାତ ଦେଲେ ଖଣ୍ଡିଏ ଖାଉଁ' ବୋଲି ଛୁଆଙ୍କ ଦୁଧ ଭାତ ଗୁଣ୍ଡାରୁ ଭାଗ ମାଗେ । ପିଲାମାନେ ଯେତେବେଳେ ଦୂରରେ ଥିବା ବିଲୁଆକୁ ଦେଖି ତାଳି ମାରି – 'ବିଲୁଆନନା – ବିଲୁଆନନା – ଘର ପୋଡ଼ିଗଲା ପଛକୁ ଅନା' ବୋଲି କହନ୍ତି, ସେ ଖୁସିରେ ପଛକୁ ଅନାଏ । ପିଲାଙ୍କ ସଭାରେ ବେଙ୍ଗୁଲୀ ନାନୀ ଗୀତ ବୋଲେ, ବୁଢ଼ା ଠେକୁଆ ପେଁକାଳି ବଜାଏ, ବିଲୁଆନନା ମୃଦଙ୍ଗ ଧରି 'ତା ତା ଧିନ୍ନା' କରେ । ଚକଟା ହୋଇଥିବା ଭାତ ଶୀଘ୍ର ନ ଖାଇଲେ ଘର ପଛଆଡ଼େ ଅନବରତ ବସିରହିଥିବା ଗଧିଆ କିମ୍ୱା ଦାଢ଼ିଆ ବୁଢ଼ା ଝୁଲା ମୁଣି ଧରି କୁନ୍‌ମୁନିକୁ ନେଇଯିବା ପାଇଁ ବାହାରିଆସନ୍ତି, ଆଉ ଖାଇସାରିଲା କ୍ଷଣି ସେମାନେ କୁନ୍‌ମୁନିର ଠେଙ୍ଗାକୁ ଡରି ପ୍ରାଣଭୟରେ ପଳାଇ ଯାଆନ୍ତି । ଭାତ ଖାଇଲାବେଳେ ଜହ୍ନମାମୁ ମଧ୍ୟ ସରଗରୁ ଅନାଇଁଥାନ୍ତି, ଆଉ ଭାତଗୁଣ୍ଡା

ନ ଗିଳିଲେ ସରଗରୁ ଆସି କାହ୍ନୁ ହାତରେ ଖସିପଡ଼ିବେ ନା ନାହିଁ ବିଚାର କରନ୍ତି । ବୁଢ଼ୀ ଆସେ -ଛିଣ୍ଡା ଖଟଟିଏ କାଖରେ ଜାକି । କହେ, "ବାବୁର୍ ମା, ବାବୁର୍ ମା, ଠାନ୍ ଖଣ୍ଡେ ଦିଅ ।" ଆଉ ବାବୁର୍ ମା ଯେତେବେଳେ ଉତ୍ତର ଦିଅନ୍ତି - 'ନାଇଁ ଲୋ ବୁଢ଼ୀ, ଆମର୍ ବାବୁ ବଡ଼ ଦୁଷ୍ଟ୍ - କହୁଣି ମାରେ ଗୁଟ୍ ଗୁଟ୍ - ଧାଇଁପଳା ବୁଢ଼ୀ ଧାଇଁ ପଳା ।' ବୁଢ଼ୀ କେଉଁ ଉଦ୍ଦେଶ୍ୟ ନେଇ ଆସିଥାଏ କେଜାଣି - ପଳାଇଯାଏ ।

ଛୋଟ ପିଲା ବଡ଼ ହୁଏ । ସେ ଏଥର ଉଡ଼ିବାକୁ ଚାହେଁ । ତା'ର କଳ୍ପନାର ଜଗତରେ ସମସ୍ତେ ଅସାଧ ସାଧନ ଆରମ୍ଭ କରିଦିଅନ୍ତି । ଭୁତ, ପ୍ରେତ, ବ୍ରହ୍ମରାକ୍ଷାସମାନେ ଦେଖାଦିଅନ୍ତି । ପରୀରାଇଜରୁ ପରୀମାନେ ଆସନ୍ତି - ପକ୍ଷୀରାଜ ଘୋଡ଼ା ଚଢ଼ି ରଜାପୁଅ ଉଡ଼ି ଉଡ଼ି ସାତସମୁଦ୍ର ପାରି ହୋଇଯାଏ, ଆଉ ରାକ୍ଷସ ରାକ୍ଷାସୁଣୀଙ୍କ ସଙ୍ଗରେ ଖଣ୍ଡା ଧରି ଯୁଦ୍ଧ କରେ । ଏ ପିଲାମାନେ ତାକୁ ଅନୁକରଣ କରନ୍ତି । କାଠ ବାଉଁଶ ଯାହା ମିଳେ ତାକୁ ଖଣ୍ଡା କରି ଧରି କେଉଁ ଶୁଖିଲା ପତ୍ର, ଗଛ, ଖୁଣ୍ଟ, ଟିଣଡବାମାନଙ୍କୁ ରାକ୍ଷସ ବୋଲି ଭାବି ସେମାନଙ୍କ ଛାତିରେ ଖଣ୍ଡା ଭୁଷି ଦିଅନ୍ତି ଅଥବା କଳ୍ପନାର ପିସ୍ତଲ ଦେଖାଇ ଢୋ-ଢୋ କରନ୍ତି । ଭୀମ, ହନୁମାନ, ହରକ୍ୟୁଲସ୍, ଟାର୍ଜନ୍ ରଣାଙ୍ଗନରେ ଅବତୀର୍ଣ୍ଣ ହୁଅନ୍ତି । ଦେଶାତ୍ମବୋଧ ଜାଗ୍ରତ କରି ଦେଖାଦିଅନ୍ତି ଛତ୍ରପତି ଶିବାଜୀ - ରାଣା ପ୍ରତାପ - ଭଗତ୍ ସିଂ ।

ଧୀରେ ଧୀରେ କିଶୋର ମନରେ ବାଳମତୀ କନ୍ୟାଙ୍କ ଆବିର୍ଭାବ ହୁଏ । ଫରୁଆ ଭିତରେ ଏ କନ୍ୟାର ଗୋଟିଏ ବାଳ ଦେଖି ତାକୁ ନ ପାଇଲେ ନିଜ ଜୀବନ ଅକାରଣ ବୋଲି ମନେକରି ରାଜପୁତ୍ର ଖାଇବା ପିଇବା ଛାଡ଼ିଦିଅନ୍ତି । ଜୀବନହାନିର ଆଶଙ୍କା ଦେଖାଦିଏ, ଆଉ ନିଜ ସାଥୀର ଜୀବନ ରକ୍ଷାକରିବା ପାଇଁ ମନ୍ତ୍ରୀପୁଅ ବାହାରିପଡ଼ନ୍ତି କନ୍ୟାର ସନ୍ଧାନରେ । କାଉର ଥଣ୍ଟ କିମ୍ବା କାଠୁରିଆର ବେଣ୍ଟ ଶୁଭୁ ନଥିବା ଅଗ୍ନାଗ୍ନି ବନସ୍ତ ଭିତରେ ସେ ଦେଖନ୍ତି ଗୋଟିଏ ପୋଖରୀ । ଜାମୁକୋଳି ପରି କଳାମଚମଚ ପାଣି, ସୂର୍ଯ୍ୟରଶ୍ମିରେ ଝିଲ୍‌ମିଲ୍ କରୁଥାଏ । ବାଳମତୀ କନ୍ୟା ବସିଥାଆନ୍ତି ପୋଖରୀ ତୁଠରେ—ଶଙ୍ଖ ମଲମଲ ପଥର ଚଟାଣ ଉପରେ । ସୁନା ଖିଅ ପରି ଲମ୍ବା ଲମ୍ବା ବାଳ— ପଦ୍ମ ଫୁଲ ପରି ତଳିପା, ପଥରରେ ଗୋଇଠି ଘଷୁ ଘଷୁ ଜଳ ଉପରେ ନିଜର ପ୍ରତିବିମ୍ବ ଦେଖି ମୁଗ୍ଧ ହେଉଥାଆନ୍ତି । ପାଣିରେ ମନ୍ତ୍ରୀପୁଅର ଛାଇ ପଡ଼େ । ବାଳମତୀ ଡେଇଁପଡ଼ନ୍ତି ପାଣି ଭିତରକୁ, ଆଉ ଅଳ୍ପ କ୍ଷଣ ଭିତରେ ସାତତାଳ ଗହୀରିଆ ଅଗାଧ ପାଣି ଭିତରେ କାହିଁ କେଉଁଠି ଲୁଚିଯାଆନ୍ତି ।

କୈଶୋର ଯାଇ ଯୌବନ ଆସେ । ଏଥର ବାଳମତୀ କନ୍ୟାମାନେ ନାନା ରୂପରେ ଦେଖାଦିଅନ୍ତି – ରମ୍ଭା, ଉର୍ବଶୀ, ମେନକା, ଶକୁନ୍ତଳା, ଯୋଜନଗନ୍ଧା, ହେଲେନ୍, କ୍ଲିଓପାଟ୍ରା – ଗଳ୍ପ ଲେଖାରେ କ୍ରାନ୍ତି ଆସେ । ହେଲେନ୍ ଓ କ୍ଲିଓପାଟ୍ରାଙ୍କ

ସ୍ଥାନ ନିଅନ୍ତି ରୀନା-ମୀନା, ସ୍ୱାତୀ-ଆରତୀ... କଲେଜ ଝିଅମାନେ । ବୁର୍ଜୁୟା ରୀନା-ମୀନାଙ୍କ ଦୂରକୁ ଠେଲି ଦେଖାଦିଅନ୍ତି ଚେମୀ, ଚେପ୍‌ଟିନାକୀ, ବିଜ୍‌ଲି, ବାସିଖାଇ । ରଜାପୁଅ, ମନ୍ତ୍ରୀପୁଅଙ୍କ ସ୍ଥାନ ନିଅନ୍ତି ଶୁକୁଜାନି, ସୁର୍‌କୁଟ ପ୍ରଧାନ ।

କ୍ରାନ୍ତି ଆସେ ଏକପ୍ରକାରର ଉଦ୍ଭଟ ରୂପ ନେଇ । ଭୂତ ପ୍ରେତ ବ୍ରହ୍ମରାକ୍ଷସଙ୍କ ପରି ନାୟକ-ନାୟିକାମାନେ ପୂରାପୂରି ଲୁଚିଯାଆନ୍ତି । କଥାବସ୍ତୁହୀନ ଗଳ୍ପ, ଘାଣ୍ଟିଚକଟି ଫେଣେଇଦେଲେ ହୁଏତ ଦେଖିବାକୁ ମିଳିପାରେ ସାତ ତାଳ ଗଭୀର ପୋଖରୀ ଭିତରେ ରାଜପୁତ୍ରମାନେ ପଥର ପାଲଟି ଯାଇଥାନ୍ତି, ରାଜକନ୍ୟା ମଧ୍ୟ କେଉଁ ଗୋଟାଏ ଫୁଲ ଶୁଙ୍ଘି ମେଣ୍ଢା ପାଲଟିଯାଇଥାଏ । ରାକ୍ଷାସୁଣୀ ଚାଲିଯାଇ ଥାଏ ତା'ର ଖାଦ୍ୟ ଅନ୍ୱେଷଣରେ । ଗଳ୍ପ ଆରମ୍ଭ ହୁଏ ଏଇଠି, ଆଉ ମନ୍ତ୍ରୀପୁଅ ଉଆସରେ ପହଞ୍ଚିବା ପୂର୍ବରୁ ହିଁ ଗଳ୍ପଟି ସରିଯାଇଥାଏ । ଖାଲି ଭାଷା ଓ ଶବ୍ଦର ମାୟାଜାଲ—ଯିଏ ସେଥିରୁ ଯାହା ବୁଝେ ।

ପୁଣି କ୍ରାନ୍ତି ଆସେ ଅନ୍ୟ ଏକ ରୂପ ନେଇ । ରୂପବନ୍ତୀ ବାଳମତୀ କନ୍ୟାଙ୍କ ରୂପଲାବନ୍ୟରୁ ଫୋକସ୍ ପୂରାପୂରି ଉଠିଯାଏ । ରଜାପୁଅ, ମନ୍ତ୍ରୀପୁଅ ଓ ତାଙ୍କ ଘୋଡ଼ା ମଧ୍ୟ ଗୌଣ ସ୍ଥାନ ଅଧିକାର କରନ୍ତି । ଶରୀର ବଦଳରେ ମନ ହୁଏ ମୁଖ୍ୟ ଏବଂ ତା' ଉପରେ ଏଥର ଫୋକସ୍ ପଡ଼େ । ତା'ର ପାଇଁ ଗୋଟି ଗୋଟି କରି ପଥର ପାଲଟି ଯାଇଥିବା ରାଜପୁତ୍ରମାନଙ୍କ ଦଶାର ପରିପ୍ରେକ୍ଷୀରେ ବାଳମତୀ କନ୍ୟାର ମାନସିକ ପ୍ରତିକ୍ରିୟା ତଥା ପ୍ରତ୍ୟେକ ପଥର ଭିତରେ ଉପାୟଶୂନ୍ୟ ହୋଇ ବନ୍ଦୀ ରହିଥିବା ରାଜପୁତ୍ରମାନଙ୍କ ବିକଳତାର ମାନସିକ ବିଶ୍ଳେଷଣର ଇଙ୍ଗିତ ହିଁ ଗଳ୍ପରେ ପ୍ରକାଶ ପାଏ । ଏ ମାନସିକ ଅବସ୍ଥାର ରୂପ ଚିତ୍ରଣ କରି ଏ ନୂତନ ଧରଣର ଗଳ୍ପ ସୂଚାଇଦେବାକୁ ଚାହେଁ ଯେ ଚେମୀ, ସ୍ୱାତୀ, କ୍ଲିଓପାଟ୍ରା, ବାଳମତୀ ସମସ୍ତେ ସମାନ, ତଥା ରାଜପୁତ୍ର, ମନ୍ତ୍ରୀପୁତ୍ର, ଶୁକୁଜାନି, ସୁର୍‌କୁଟ୍ ଏମାନେ ବି ସମାନ – ସମସ୍ତେ ମଣିଷ । ମଣିଷ କିଛି ପାଇବାକୁ ଚାହେଁ; ପାଇ ପାରେନି, ଫଳରେ ପଥର ପାଲଟିଯାଏ । ଅନ୍ୟ କେହି ଯାହା ଚାହେଁ, ପ୍ରକାଶ କରେ, ପାଏ ଓ ତା'ପରେ ତାକୁ ହରାଇବସେ – ବିଚ୍ଛେଦ ଆସେ । ସବୁଥିରେ ହାହୁତାଶ ଆଉ ସବୁ ହାହୁତାଶ ସମାନ – ମଣିଷ ବଡ଼ ହେଉ ଅବା ସାନ ହେଉ, ଧନୀ ହେଉ ଅବା ଦରିଦ୍ର ହେଉ, ଗୋରାଲୋକ ହେଉ ଅବା କଳାଲୋକ ହେଉ । ସେହି ବାଳମତୀ କନ୍ୟାର ଗଳ୍ପରୁ ଏ ଯେଉଁ ଜୀବନଦର୍ଶନ ମିଳେ, ଅନେକ ଯୁବକ ତଥା ଯୌବନ ଅତିକ୍ରାନ୍ତ ଅନେକ ମଣିଷ ତାକୁ ପସନ୍ଦ କରନ୍ତି । ପ୍ରତ୍ୟେକ ଗଳ୍ପରେ ସେମାନେ ଏପରି ଦର୍ଶନ ଖୋଜି ବୁଲନ୍ତି, ଆଉ ତା'ର ସୂଚନା ନ ମିଳିଲେ ନିରାଶ ହୁଅନ୍ତି । ଗଳ୍ପର ମାଧ୍ୟମରେ ଗାଳ୍ପିକ ଶ୍ରୋତାକୁ ପାଠକକୁ କେବଳ ଯେ ଆନନ୍ଦ ଦିଏ ତା' ନୁହେଁ, ତାକୁ କେବଳ ଯେ ନିଜ

ଇପ୍ସିତ ପଥରେ ପରିଚାଳିତ କରେ, ତା' ମଧ୍ୟ ନୁହେଁ – ତାକୁ ତା'ର ଅଜାଣତରେ ଦିଗ୍‌ଦର୍ଶନ ଦିଏ। ବିଷ୍ଣୁ ଶର୍ମାଙ୍କ ପଞ୍ଚତନ୍ତ୍ରର କାହାଣୀମାଳା, ଏସପ୍‌ଙ୍କ କାହାଣୀମାଳା, ଇତିହାସ ଏବଂ ପୁରାଣମାନଙ୍କର ଗଳ୍ପମାଳା ପ୍ରଭୃତି ତା'ର ଉଦାହରଣ। ଏ ସବୁ କାହାଣୀର ମୂଲ୍ୟ ତେଣୁ ଚିରନ୍ତନ। ଆଜି ମଧ୍ୟ ଯେଉଁ ସବୁ ଗଳ୍ପ ମଣିଷ ମନର ଯାବତୀୟ ଘାତ-ପ୍ରତିଘାତକୁ ବିଶ୍ଳେଷଣ କରି ତାକୁ ଆଜିର ସମାଜ ତଥା ସମୟର ପରିପ୍ରେକ୍ଷୀରେ କୌଣସି ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ଦେବାକୁ ପ୍ରୟାସ କରେ। ସେ ମୂଲ୍ୟବୋଧର ସଂଜ୍ଞା ଯେତେ କ୍ରାନ୍ତିକାରୀ ହେଉନା କାହିଁକି, ସେ ସବୁ ଗଳ୍ପର ମୂଲ୍ୟ ନିଶ୍ଚୟ ଚିରନ୍ତନୀ ହେବ। କଥାବସ୍ତୁହୀନ ଗଳ୍ପ ଏ ପର୍ଯ୍ୟାୟରେ ପଡୁନଥିବା ଯୋଗୁଁ ଉଚ୍ଚକୋଟୀର ହେଲେ ମଧ୍ୟ କେବଳ ସାମୟିକ ହେବାହିଁ ସମ୍ଭବ – ଯେହେତୁ ଭାଷା ଓ ଶବ୍ଦ ଯୋଜନାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେ ତାର ମୂଲ୍ୟ ହରାଇ ବସିବା ସ୍ୱାଭାବିକ। ତଥାପି ଏପରି ଗଳ୍ପସବୁ ସୁ-ସାହିତ୍ୟ ହୋଇପାରେ ଏବଂ ସମୟର ପରିପ୍ରେକ୍ଷୀରେ ଆଧୁନିକ ମଧ୍ୟ ହୋଇପାରେ।

ଦିଗ୍‌ଦର୍ଶନ ଦେଉନଥିଲେ ମଧ୍ୟ ଯେଉଁ ଗଳ୍ପର କଥାବସ୍ତୁ ତାତ୍‌କାଳିକ ସାମାଜିକ ଅବସ୍ଥାର ପ୍ରତିଫଳନ ଦିଏ, ତାହା ଯେ ସୁ-ସାହିତ୍ୟ ହୋଇପାରେ ଏଥିରେ ମଧ୍ୟ ସନ୍ଦେହ ନାହିଁ। କିନ୍ତୁ ଯେଉଁ ଗଳ୍ପରେ କଥାବସ୍ତୁ ଥାଏ ଅଥଚ ଦିଗ୍‌ଦର୍ଶନ ପାଇଁ କିଛି ନଥାଏ, ଯେପରି ଲକ୍ଷ୍ୟବିହୀନ ଗଳ୍ପ ଯେତେବେଳେ ଇନ୍ଦ୍ରିୟ-ଭୋଗ ଲିପ୍ସାକୁ ଜାଗରିତ କରି ଶ୍ରୋତା କିମ୍ବା ପାଠକଙ୍କୁ କେବଳ ସାମୟିକ ଉତ୍ତେଜନାଜନିତ ସୁଖ ଦେବାକୁ ଚେଷ୍ଟାକରି ଅଶ୍ଳୀଳତାର ଆଶ୍ରୟ ନିଏ, ସାହିତ୍ୟ କ୍ଷେତ୍ରରେ ସେପରି ଗଳ୍ପ ପ୍ରକୃତ ଗଳ୍ପପଦବାଚ୍ୟ ହେବା ଉଚିତ ନୁହେଁ। ଯଦି ଗଳ୍ପର ସାଧାରଣ ଅର୍ଥରେ ସେ ସବୁକୁ ଗଳ୍ପ ବୋଲି ଧରିନିଆଯାଏ, ତେବେ ସେ ସବୁ ଗଳ୍ପ ପଶୁଙ୍କ ପାଇଁ ଉଦ୍ଦିଷ୍ଟ ହୋଇପାରେ, ମଣିଷଙ୍କ ପାଇଁ ନୁହେଁ। ସାହିତ୍ୟ ଯେହେତୁ ମଣିଷକୁ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ତାର ହିତ ସାଧନ କରେ, ସେପରି ଅଶ୍ଳୀଳତା-ଆଶ୍ରୟୀ ଗଳ୍ପ ସାହିତ୍ୟରେ ଗୋଟିଏ ଗୋଟିଏ କଳଙ୍କ।

# ଦଇବଦଉଡ଼ି

ଅନେକେ କହନ୍ତି ଯେ ମଣିଷ ଯେତେବେଳେ ଏ ସଂସାରକୁ ଆସେ, ସେ ତା' ସାଙ୍ଗରେ ନିଜ ଭାଗ୍ୟଲିପି ମଧ ନେଇ ଆସେ । ପ୍ରତ୍ୟେକ ମଣିଷର ସୃଷ୍ଟିବେଳକୁ ଏହି ଭାଗ୍ୟଲିପି କୁଆଡ଼େ ତାର କପାଳରେ ଲେଖାହୋଇଥାଏ, ଆଉ ସେ କପାଳଲିଖନକୁ କେହି ଆନ କରିପାରନ୍ତିନି । ତେଣୁ ଏ ସଂସାରରେ ସେ ଯାହା କିଛି କରେ, ଘଟଣ ଅଘଟଣ ଘଟାଏ, ଭଲ ମନ୍ଦ ଚିନ୍ତେ, ସୁଖ ଦୁଃଖ ଭୋଗେ, ସେ ସବୁଥିରେ ତାର ନିଜର କିଛି ବ୍ୟକ୍ତିଗତ ବାହାଦୁରୀ ଅଥବା ଦୋଷ ଗୁଣ ନଥାଏ । ମଣିଷର ନାକରେ ଅଦେଖା ଦଉଡ଼ିଟିଏ ବାନ୍ଧି ଦଇବ ତାକୁ ଏ ଲିପିର ଇଙ୍ଗିତ ଅନୁସାରେ ଯେଉଁ ଆଡ଼କୁ ଓଟାରେ, ମଣିଷ ବିଚରା ନିରୀହ ଗାଈଟିଏ ପରି ସେ ଆଡ଼କୁ ଯିବାକୁ ବାଧହୁଏ – ତାହା ବିନା ତାର ଆଉ ଅନ୍ୟ ଗତି ନଥାଏ ।

ଭାଗ୍ୟବାଦୀ କେହି କେହି ମଣିଷର ଏ ଦଶାକୁ ମାଙ୍କଡ଼-ନାଚ ସାଙ୍ଗରେ ତୁଳନା କରନ୍ତି । ନଚାଳିର ଇଚ୍ଛା ଅନୁସାରେ ମାଙ୍କଡ଼ କେତେବେଳେ ପେଣ୍ଟ-କାମିଜ ଓ ଟୋପି ପିନ୍ଧି ବୋହୂ ଦେଖିଯାଏ ତ, ପୁଣି କିଛି ସମୟ ପରେ ସେହି ମାଙ୍କଡ଼ ଫ୍ରକ୍ ଖଣ୍ଡିଏ ପିନ୍ଧି ମୁଣ୍ଡରେ ବାସନ ଖଣ୍ଡିଏ ଧରି ନିଜେ ବୋହୂ ସାଜି ପାଣି ଆଣେ – ବାଡ଼ିର ତାଳେ ତାଳେ ନାଚେ ଓ ବାଡ଼ି ଟେକି ଧଇଲେ ସମୁଦ୍ର ଡେଇଁ ଲଙ୍କାକୁ ଯାଏ ।

ଅନ୍ୟ କେହି କେହି ଏ ସଂସାରରେ ମଣିଷର କାର୍ଯ୍ୟକଳାପ ସବୁକୁ କଣ୍ଢେଇ ନାଚ ସାଙ୍ଗରେ ମଧ ତୁଳନା କରନ୍ତି । କେହି ଜଣେ ଓସ୍ତାଦ୍ ଉହାଡ଼ରେ ରହି କଣ୍ଢେଇର ହାତ, ଗୋଡ଼, ମୁଣ୍ଡ ଓ ଅଣ୍ଟାରେ ବନ୍ଧାହୋଇଥିବା ଅଦୃଶ୍ୟ ଦଉଡ଼ିକୁ ଯେପରି ଭାବରେ ଟାଣେ, ସେପରି ଭାବରେ ନାଚେ – ରାଜସିଂହାସନରେ ବସେ, ଛାତି ପିଟେ, ଖଣ୍ଡା ଯୁଦ୍ଧ କରେ, ଆଉ ମଝିରେ ମଝିରେ କିରିକିରି ହସେ ।

ଭାଗ୍ୟ ଅନୁସାରେ ମଣିଷ କିପରି ଏ ସଂସାରରେ ଯାତାୟାତ କରେ, ତାହା ପ୍ରମାଣ କରିବାକୁ ଯାଇ ଭାଗ୍ୟବାଦୀମାନେ ଯେଉଁ ସୁନ୍ଦର କାହାଣୀ ସବୁ ବର୍ଣ୍ଣନା କରିଯାଇଛନ୍ତି ସେଥିରୁ ଗୋଟିଏ ଜଣାଶୁଣା କାହାଣୀ ଏଠାରେ କୁହାଯାଇ ପାରେ ।

ଗୋଟିଏ ସହରରେ ଜଣେ ପରମ ଶିବଭକ୍ତ ଥିଲେ । ସେ ଯେ କୌଣସି କାମରେ ଲାଗିଥିଲେ ମଧ ତାଙ୍କ ମନ ସଦାସର୍ବଦା ଶୟନେ, ସ୍ୱପନେ, ଜାଗରଣେ ସେହି ମହାଯୋଗୀଙ୍କ ପାଦତଳେ ହିଁ ଅଟକି ରହିଥାଏ ।

ତାଙ୍କର ଛୋଟ ସଂସାରଟିଏ । ଦିନଯାକ କଠୋର ପରିଶ୍ରମ କରି ସେ ଯାହା ପାଆନ୍ତି ସେଥିରେ ସେ, ତାଙ୍କ ସ୍ତ୍ରୀ ଓ ଦୁଇ ପୁଅ-ଝିଅଙ୍କ ସଂସାରଟି କଷ୍ଟେ-ମଷ୍ଟେ ଚଳିଯାଏ; କିନ୍ତୁ ବର୍ଷାଦିନେ ଯେତେବେଳେ ଘର ଛାତର ଅଜସ୍ର ବିବର-ଦ୍ୱାର ଦେଇ ପାଣିଧାରର ସୁଅ ଛୁଟେ, ଆଉ ପିଲାଙ୍କ ବସିବା ପାଇଁ ବି ଶୁଖିଲା ଜାଗା ଟିକିଏ ମିଳେନା, ଅଥବା ଶୀତଦିନେ ପିଲା ଦୁଇଟି ଯେତେବେଳେ ବାପା ମା'ଙ୍କ ପେଟ ପାଖରେ ଜାକିଜୁକି ହୋଇ ଶୀତଦାଉରୁ ରକ୍ଷାପାଇବା ପାଇଁ ଉଷୁମ ଟାଣିବାକୁ ଚେଷ୍ଟାକରନ୍ତି – ଘରର ଛପର ବଦଳାଇବା କିମ୍ବା ଘୋଡ଼େଇ ହେବା ଚାଦର ଖଣ୍ଡିଏ କିଣିବା ପାଇଁ ଅର୍ଥର ଘୋର ଅଭାବ ଯୋଗୁଁ ଶିବଭକ୍ତଙ୍କ ମନରେ ବେଳେ ବେଳେ କଷ୍ଟ ହୁଏ ।

ସେହି ସହରରେ ଆଉ ଜଣେ ବଣିକ ରହୁଥିଲେ । ବଣିକ ମହାରାଜ ବେଶ୍ ଧୂର୍ତ୍ତ ଓ ଧନୀ । ଧର୍ମ ନାମରେ ଥରେ ଅଧେ କିଛି କିଛି ଚାନ୍ଦା ଦିଅନ୍ତି ସତ, ଲୋକଦେଖାଣିଆ ପୂଜାବିଧି ବି କରନ୍ତି; କିନ୍ତୁ ଅର୍ଥ ହିଁ ଥିଲା ତାଙ୍କର ଏକମାତ୍ର ଆରାଧ୍ୟ ଦେବତା । ବଣିକ ଘରର ସମସ୍ତେ ବେଶ୍ ସୁଖ-ସ୍ୱାଛନ୍ଦ୍ୟରେ ରହନ୍ତି । ମା' ପାର୍ବତୀ ଏ ସବୁ ଲକ୍ଷ୍ୟ କରୁଥିଲେ । ଦିନେ ସେ ଦୁଃଖକରି ଶିବଙ୍କୁ ପଚାରିଲେ ଯେ ଶଠ ଶେଠଙ୍କୁ ଏପରି ଧନ ସମ୍ପଦ ଦେଉଥିଲାବେଳେ ସେ ତାଙ୍କ ପରମ ଭକ୍ତକୁ କାହିଁକି ଦାରିଦ୍ର୍ୟରେ କଷ୍ଟ ଦେଉଛନ୍ତି । ଶିବ ଉତ୍ତର ଦେଲେ ଯେ ଭକ୍ତଙ୍କ ଭାଗ୍ୟରେ ଧନ ସମ୍ପଦ ନାହିଁ, ତେଣୁ ସେ ବା କ'ଣ କରିବେ ! ପାର୍ବତୀ କିନ୍ତୁ ଏ କଥାରେ ବିଶ୍ୱାସ କଲେନି, ଆଉ ଜିଦ୍ ଧରି ବସିଲେ ଯେ ଭକ୍ତଙ୍କୁ କିଛି ଧନ ଦେବାକୁ ହେବ । ଧନ ଦେବା ଉଦ୍ୟମର ବିଫଳତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ପାର୍ବତୀଙ୍କ କଥିତମତେ ଚେଷ୍ଟା କରିବାକୁ ଶିବ ରାଜିହେଲେ ।

କୌଣସି ଗୋଟିଏ ଦିନ ଶିବଭକ୍ତଙ୍କୁ ତାଙ୍କ ସହରରୁ ପାଖର ଗୋଟିଏ ଗାଁକୁ ଯିବାର ଥିଲା । ଗାଁକୁ ଯିବା ମଝି ବାଟରେ ଗୋଟାଏ ବଡ଼ ଅଶ୍ୱତ୍ଥ ଗଛ ପଡ଼େ । ଦୂରରୁ ଆଖିକି ଚଟ୍ କରି ଦେଖାଯାଉଥିବା ଗୋଟିଏ ରଙ୍ଗୀନ ମୁଣିରେ ଅନେକ ଧନରତ୍ନ ଭର୍ତ୍ତିକରି ଏଇ ଅଶ୍ୱତ୍ଥ ଗଛ ତଳେ ମୁଣିଟିକୁ ଥୋଇଦେଇ ଶିବ ପାର୍ବତୀ ଗଛ ଉହାଡ଼ରେ ଅଦୃଶ୍ୟ ହୋଇ ରହିଲେ । ପାର୍ବତୀଙ୍କ ବିଶ୍ୱାସ ଥିଲା ଯେ ଭକ୍ତ ସେ ପାଖ ଦେଇ ଗଲାବେଳେ ରତ୍ନଭରା ମୁଣିଟି ନିଶ୍ଚୟ ପାଇବ ।

ଶିବଭକ୍ତ ମନ ଭିତରେ ମହାଦେବଙ୍କ ନାମ ଜପି ଜପି ଯାଉଥାଆନ୍ତି । ହଠାତ୍ ତାଙ୍କର ମନରେ ଗୋଟାଏ ଭାବନା ଆସିଲା – ସେ ପ୍ରକୃତରେ କେଡ଼େ ଭାଗ୍ୟବାନ୍ ! ମହାଦେବ ତାଙ୍କୁ ଦି' ଆଖି ଦେଇଛନ୍ତି, ଯାହା ଫଳରେ ସେ ସବୁ ଦେଖିପାରୁଛନ୍ତି, ଆଉ କେଡ଼େ ସହଜରେ ଏ ବାଟ ଦେଇ ଚାଲିଯାଉଛନ୍ତି । ଆହା ! ଭାଗ୍ୟହୀନ

ଅନ୍ଧମାନଙ୍କର ଦଶା କଣ ହେଉଥିବ ! ଅନ୍ଧମାନେ ଚାଲିଲାବେଳେ କ'ଣ କରୁଥିବେ, ଆଉ କିପରି କଷ୍ଟ ପାଉଥିବେ, ତାହା ଉପଲବ୍‌ଧି କରିବାପାଇଁ ହଠାତ୍ ସେ ତାଙ୍କ ନିଜର ଦୁଇ ଆଖି ବୁଜିଦେଲେ ଓ ହାତରେ ଧରିଥିବା ବାଡ଼ି ସାହାଯ୍ୟରେ ଠୁକ୍ ଠୁକ୍ କରି ବାଟ ଦରାଣ୍ଡି ଚାଲିବାକୁ ଚେଷ୍ଟାକଲେ । ତାଙ୍କର ଗତି ମନ୍ଥର ହୋଇଗଲା; କିନ୍ତୁ ସେ କୌଣସିମତେ ଏ ପାଖ ସେ ପାଖ ହୋଇ ସେହି ବାଟ ଅଣ୍ଡାଳି ଅଣ୍ଡାଳି ଆଗକୁ ଯିବାକୁ ଲାଗିଲେ । ଏମିତି ଅବସ୍ଥାରେ ହିଁ ଅଶ୍ୱତ୍‌ଥ ଗଛଟି ପାରହୋଇଗଲା, ଆଉ ସେ ସାଙ୍ଗରେ ରତ୍ନବୁଜୁଳାଟି ବି ପଛରେ ପଡ଼ିରହିଲା । ଅନ୍ଧମାନଙ୍କ ଦୁଃଖରେ ଅତି ଦୁଃଖିତ ହୋଇ, ଦେବ ଦେବ ମହାଦେବ ସେମାନଙ୍କୁ ଚକ୍ଷୁଦାନ ଦିଅନ୍ତୁ ବୋଲି ପ୍ରାର୍ଥନା କରି ଭକ୍ତ ଆଉ ଥରେ ଆଖି ଖୋଲି ନିଜ ବାଟରେ ତରତର ହୋଇ ଚାଲିଯିବାକୁ ବସିଲେ । ଭାଗ୍ୟର ପରୀକ୍ଷା ଏପରିଭାବରେ ହୋଇଗଲା ।

ଏହି ଭାଗ୍ୟବାଦୀମାନେ କହନ୍ତି ଯେ ପୂର୍ବଜନ୍ମକୃତ ଫଳ ହିଁ ମଣିଷ ଏ ଜନ୍ମରେ ଭୋଗକରେ । ତେଣୁ ଭାଗ୍ୟଲିପି ଅଥବା କପାଳଲିଖନ ପୂର୍ବଜନ୍ମର ଭଲ ମନ୍ଦ ଓ ପାପପୁଣ୍ୟଜନିତ ଫଳାଫଳର ଗୋଟିଏ ଲିପିବଦ୍ଧ ହିସାବ ତାଲିକା ମାତ୍ର । ସେମାନଙ୍କ ମତରେ ଏ ହିସାବ ତାଲିକା ଅନୁଯାୟୀ ମଣିଷ ସଂସାରକୁ ଆସେ ଓ ସଂସାରରୁ ଯାଏ । ତେଣୁ ତାହାର ବିପରୀତ ରୂପରେ ଏ ସଂସାରକୁ ମଣିଷର ଆଗମନ ସମୟ ଜାଣିପାରିଲେ ଗଣନାଦ୍ୱାରା ଏ ହିସାବ ତାଲିକାର ଗୋଟିଏ ଅବିକଳ ନକଲ ପ୍ରସ୍ତୁତ କରାଯାଇପାରେ ।

କେହି କେହି କହନ୍ତି ଯେ ଏ ଲିପିର ଗୋଟିଏ ନକଲ ହାତ ପାପୁଲିରେ ମଧ୍ୟ ଅଙ୍କିତ ହୋଇଥାଏ । ଐତିହାସିକ ଗବେଷଣା ବିଶାରଦମାନେ ଯେପରି ପଥର ଦେହରେ କେବେ କେଉଁ କାଳେ ଖୋଳା ହୋଇଥିବା ପ୍ରାକ୍-ଐତିହାସିକ ସଙ୍କେତମାନ ପଢ଼ିପାରନ୍ତି, ସେପରି ହାତ ପାପୁଲି ବିଶାରଦମାନେ ପାପୁଲିର ଲେଖାରୁ ଭାଗ୍ୟଲିପି ପଢ଼ି ଦେଇପାରନ୍ତି । ଏ ପାପୁଲିରେ କୁଆଡ଼େ ସର୍ଟହେଣ୍ଡଠାରୁ ଆହୁରି ଅତି ସଂକ୍ଷେପରେ ଜୀବନର ସବୁ କାହାଣୀ ଖୋଦିତ ହୋଇଥାଏ । ତେଣୁ ଜାତକ ଗଣନା କରି କିମ୍ବା ହାତ ଦେଖି କେତେ ବିଶାରଦ ବାହାଘର ଠାରୁ ଆରମ୍ଭ କରି ପୁଅ ଝିଅ, ନାତି ନାତୁଣୀ, ଗାଈ ଗୋରୁ, ବିଦେଶଯାତ୍ରା, ଚାକରି ନୌକରି ସବୁ କଥା ଆଗତୁରା କହିଦିଅନ୍ତି ବୋଲି ଶୁଣାଯାଏ । ମକଦ୍ଦମାରେ ହାର ଜିତ୍‌ଠାରୁ ପରୀକ୍ଷାରେ ପାସ୍ ଫେଲ୍ ପର୍ଯ୍ୟନ୍ତ ଓ ଏପରିକି ପାସ୍‌ର ଡିଭିଜନ୍ ମଧ୍ୟ ବେଳେବେଳେ ବାଦ୍‌ଯାଏନି ।

କେତେ ସଂସ୍କାରକାମୀ ଭାଗ୍ୟବାଦୀ ଏପରି ଚରମ ସିଦ୍ଧାନ୍ତମୂଳକ ଭାଗ୍ୟବାଦରେ ବିଶ୍ୱାସ କରନ୍ତିନି । ସେମାନେ କହନ୍ତି ଯେ ମଣିଷ ତାର ନିର୍ଦ୍ଦିଷ୍ଟ ଭାଗ୍ୟ ନେଇ ଏ ସଂସାରକୁ ଆସେ ସତ, କିନ୍ତୁ କର୍ମକର୍ମାଣି ଫଳରେ ଏ ଭାଗ୍ୟର ପରିବର୍ତ୍ତନ

କରାଯାଇପାରେ । ଗୋଟିଏ ଜଳନ୍ତା ଦୀପ ତେଲ ସରିଗଲେ ଲିଭିଯାଏ ଅଥବା ତେଲ ଥାଇ ବଳିତାଟି ସରିଗଲେ ଲିଭିଯାଏ, କିନ୍ତୁ ବେଳେ ବେଳେ ତେଲ ଓ ବଳିତା ଦୁଇଟିଯାକ ଥାଇ ମଧ୍ୟ ପବନର ଗୋଟିଏ ଧାପ୍‌ସାରେ ଦୀପଟି ଲିଭିଯାଇପାରେ । ସେମାନେ ମଣିଷର ଜୀବନକୁ ଏ ଦୀପ ସାଙ୍ଗରେ ତୁଳନା କରି କହନ୍ତି ଯେ, ଭାଗ୍ୟଲିପି ତେଲ ଓ ବଳିତା ସାଙ୍ଗରେ ପବନର ପ୍ରକୋପ ମଧ୍ୟ ଲିପିବଦ୍ଧ କରିଥାଏ । ତେଲ କିମ୍ବା ବଳିତା ସରିଗଲେ କେହି ତାକୁ ରକ୍ଷା କରିପାରନ୍ତି ନାହିଁ; କିନ୍ତୁ ବେଳେ ବେଳେ ଦୁଷ୍ଟ ପ୍ରକୃତିର ଗ୍ରହ-ମହାଗ୍ରହମାନଙ୍କ ପ୍ରକୋପରେ ପବନରେ ଦୀପ ଲିଭିଲାପରି ମଣିଷର ଖରାପ ଦଶା ଆସିଯାଇପାରେ । ତେଣୁ ସେମାନେ କହନ୍ତି ଯେ, ଗଣନାରେ ଖରାପ ଯୋଗ ଜଣାପଡୁଥିଲେ ଏହି ଶନି ରାହୁମାନଙ୍କୁ ସନ୍ତୁଷ୍ଟକରି ଭାଗ୍ୟର ଫଳାଫଳ ବଦଳାଇ ଦିଆଯାଇପାରେ । ଶନି ରାହୁମାନେ ବକ୍ରଦୃଷ୍ଟି ଦେଲେ ପାସ୍‌କୁ ଫେଲ୍ କରିଦେଇ ପାରନ୍ତି ଅଥବା ସନ୍ତୁଷ୍ଟ ହୋଇ ପଣତକାନି ଘୋଡ଼ାଇ ତାଙ୍କ ଫେଲ୍‌କୁ ପାସ୍ ମଧ୍ୟ କରାଇଦେଇ ପାରନ୍ତି ।

କେତେ କ୍ରାନ୍ତିକାରୀ ଏ ସବୁକୁ ପୂରାପୂରି ଧପ୍‌ପାବାଜି ବୋଲି କହନ୍ତି । ସେମାନେ କହନ୍ତି ଯେ ଭାଗ୍ୟ ବୋଲି କିଛି ନାହିଁ । ମଣିଷ ନିଜେ ନିଜ ଭାଗ୍ୟର ସୃଷ୍ଟିକର୍ତ୍ତା, ନିଜ ଉଦ୍ୟୋଗରେ ନିଜ ଭାଗ୍ୟ ଗଢ଼େ । କେବଳ କାପୁରୁଷମାନେ ହିଁ ଭାଗ୍ୟ ଉପରେ ଆଶ୍ରା କରି ପଡ଼ିରହନ୍ତି । ତାଙ୍କ କଥା ଅନୁସାରେ ଶୋଇ ରହିଥିବା ସିଂହର ମୁହଁ ପାଖରୁ କୌଣସି ଜନ୍ତୁ 'ମୋତେ ଖା' ବୋଲି କହି ଦଉଡ଼ିଆସେନି । ଆମ ଦେଶର ଏପରି ମତବାଦ ପାଶ୍ଚାତ୍ୟ ଦେଶର ରବର୍ଟ ବ୍ରୁଶ୍ ଓ ବୁଢ଼ିଆଣୀ କାହାଣୀକୁ ସମର୍ଥନ କରେ । ରବର୍ଟ ବ୍ରୁଶ୍ କୁଆଡ଼େ ଯୁଦ୍ଧରେ ଷଷ୍ଠ ଥର ହାରିସାରିଲା ପରେ ଶତ୍ରୁ ଭୟରେ ଯେତେବେଳେ ଗୋଟିଏ ଗୁମ୍ଫା ଭିତରେ ଲୁଚିରହିଥିଲେ, ସେଠାରେ ଗୋଟିଏ ବୁଢ଼ିଆଣୀ ତା' ଜାଲ ବାନ୍ଧିବା ପାଇଁ ଛଅ ଥର ଚେଷ୍ଟା କରି ବିଫଳ ହେଲାପରେ ସପ୍ତମ ଥର ପୁଣି ଚେଷ୍ଟା କରି ସଫଳ ହୋଇଥିବା ଦେଖି ସାହସ ସଞ୍ଚୟ କଲେ ଓ ସପ୍ତମ ଥର ପାଇଁ ଯୁଦ୍ଧ କରି ଜୟଲାଭ କରିଥିଲେ ।

ଏ ସବୁ ବାଦବିସମ୍ବାଦ ଭିତରେ ପ୍ରକୃତ ସତ୍ୟ କଣ ସେ କଥା କହିବା ସହଜ ନୁହେଁ । ଅନେକ ସମୟରେ ମନେହୁଏ ଯେ ମଣିଷର ନିଜ ଶକ୍ତି ଓ ଉଦ୍ୟମ ବାହାରେ ଅନ୍ୟ କୌଣସି ଅଦୃଶ୍ୟ ଶକ୍ତି ପ୍ରଚ୍ଛନ୍ନ ଭାବରେ କାମ କରୁଥାଏ ।

ପୁରାଣର କଥନ ଅନୁସାରେ ରାତି ପାହିଲେ ରାଜା ହେବା ପରିବର୍ତ୍ତେ ରାମଚନ୍ଦ୍ର ଯେପରି ବନବାସ ଯାଆନ୍ତି, ସତୀ ସ୍ୱାଧ୍ୱୀ ପତିସୋହାଗିନୀ ସୀତା ଯେପରି ବିନା କାରଣରେ ନିର୍ବାସିତା ହୁଅନ୍ତି, ସ୍ୱୟଂ ଗୋବିନ୍ଦ ଯାହାଙ୍କ ମାମୁ ଓ ଧନଞ୍ଜୟ ଯାହାଙ୍କ ପିତା ସେହି ଅଭିମନ୍ୟୁ ଯେପରି ଭାବରେ ଯୁଦ୍ଧରେ ମରି ଶୁଅନ୍ତି, ଆଜି ମଧ୍ୟ ନିତି ଦିନ

ଏପରି ଶହ ଶହ ଘଟଣା ଘଟିଯାଏ ଯାହାର କୌଣସି ସିଧାସଳଖ କାରଣ ଖୋଜି ବାହାର କରିହୁଏନି – ଯାହା ସବୁ ନିୟତିର କ୍ରୂର ଅଟ୍ଟହାସ୍ୟ ବୋଲି ହିଁ ମନେହୁଏ ।

ବଶିଷ୍ଠ ରାମଦେବଙ୍କ ପରି ମହାଜ୍ଞାନୀମାନେ ଗଣନା କରି ଅଭିଷେକ ଲଗ୍ନ ସ୍ଥିର କରିଥିଲେ ହେଁ ସେହି ଲଗ୍ନରେ ରାମଚନ୍ଦ୍ରଙ୍କ ବନବାସ ଯେପରି ଭାବରେ ହେଲା, ସେଥିରୁ ଗଣନା ପ୍ରତି ବିମୁଖତା ଆସେ । ତଥାପି ଭାଗ୍ୟକୁ ତାଚ୍ଛଲ୍ୟ କରି ବସି ଉଡ଼ାଇ ଦେଇହୁଏନି ।

ଏତେ ଦୂର ଆକାଶରୁ ପୂର୍ଣ୍ଣମୀର ଚନ୍ଦ୍ର ଯଦି ପୃଥିବୀକକ୍ଷସ୍ଥିତ ସମୁଦ୍ରରେ ଜୁଆର ସୃଷ୍ଟି କରିପାରେ, ବୃକ୍ଷଲତାମାନଙ୍କରେ ରସର ଅପୂର୍ବ ସଞ୍ଚାର କରି ନିଜର ଔଷଧୀଶ ନାମ ସାର୍ଥକ କରିପାରେ, ତେବେ କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ ପରି ପଞ୍ଚ ମହାଭୂତରେ ସୃଷ୍ଟ ମଣିଷ ଶରୀରରେ ଗ୍ରହ-ମହାଗ୍ରହଙ୍କ କୁ କିମ୍ବା ସୁ-ପ୍ରଭାବ ଅସ୍ୱାଭାବିକ ହେବ କାହିଁକି ? ତଥାପି ହୋମ କିମ୍ବା ଯଜ୍ଞ ସାହାଯ୍ୟରେ ଯେପରି ସମୁଦ୍ରର ଜୁଆରକୁ ଆଟକ କରିହୁଏନି – ଶନି ଓ ରାହୁ ଗ୍ରହଙ୍କୁ କିପରି ଶାନ୍ତ କରି ଦିଆଯାଇ ପାରିବ, ସେ ସମ୍ବନ୍ଧରେ ନିଶ୍ଚିତଭାବରେ ମନରେ ସନ୍ଦେହ ଜନ୍ମେ ।

ଗ୍ରହ-ମହାଗ୍ରହଙ୍କ ପ୍ରଭାବ ପରି ଆଉ କେତେ ଅଜଣା ଶକ୍ତିର ପ୍ରଭାବ ମଣିଷ ଉପରେ ପଡ଼େ । ଘରୁ ବାହାରିଲାବେଳେ କେହି ଛିଙ୍କିବା, ଗଲାବେଳେ ବିରାଡ଼ି ବାଟ କାଟିବା ପ୍ରଭୃତି ଅଶୁଭ ସଙ୍କେତ ମଣିଷ ସମାଜର ଅନ୍ଧବିଶ୍ୱାସ ହୋଇ ପାରେ, ତଥାପି ଶୁଭାକାଙ୍‌କ୍ଷୀଙ୍କ ସଦିଚ୍ଛା ଓ ଶୁଭେଚ୍ଛା ବିଶେଷ କରି ଗୁରୁଜନଙ୍କ ଆଶୀର୍ବାଦ ଯେ ମଣିଷର ଅଶେଷ ମଙ୍ଗଳ ସାଧନ କରେ, ଏଥିରେ ସନ୍ଦେହ ନାହିଁ ।

# ସୁନୀଲ୍

ନିର୍ଜନ ଦ୍ୱୀପରେ ନିର୍ବାସିତ ନ ହୋଇ ମଧ୍ୟ ମଣିଷ ବୁଝେ ଓ ଭଲକରି ବୁଝେ ଯେ ବୃଥା ଭାବନାରେ ଆନନ୍ଦ ମିଳୁ ବା ନମିଳୁ, ନିଶ୍ଚିତ ଭାବରେ ତହିଁରେ କିଛି ଲାଭ ହୁଏନାହିଁ । ତଥାପି ଚଞ୍ଚଳ ମନ ଫେନିଳ ଚିନ୍ତା-ରାଇଜରେ ଘୂରି ବୁଲିବାକୁ ଓର ଉଣ୍ଡୁଥାଏ, ଆଉ ସୁବିଧା ପାଇଲା ମାତ୍ରେ ମଣିଷକୁ ତା'ର ଅଜାଣତରେ ହର୍ଷ ଓ ବିଷାଦଭରା ଅତୀତର ସ୍ମୃତିଆଡ଼କୁ ଟାଣି ନେଇଯାଏ । ଗାଈ ବଳଦଙ୍କ ପରି ମଣିଷ ମଧ୍ୟ ଅନେକ ସମୟରେ ଟିକିଏ ଫୁରୁସତ ପାଇଲାକ୍ଷଣି କେଉଁଠି ପଡ଼ିରହି ଆଖି ବୁଜି ଅତୀତର ଭାବନା ସବୁକୁ ରୋମନ୍ଥନ କରିବସେ ।

ଦେଢ଼ ବର୍ଷ ତଳର ଗୋଟାଏ ଘଟଣା ।

ନୂଆ ଦି'ମହଲା ହଷ୍ଟେଲର ସାମନା ପଡ଼ିଆ ମଝିରେ ସେଦିନ ସକାଳେ ଗୋଟିଏ ଛୋଟ ତମ୍ବୁ ହଠାତ୍ ଦେଖାଦେଇଥିଲା । ତମ୍ବୁ ଭିତରେ ଲଗାଲଗି ହୋଇ ପଡ଼ିଥିବା କେତୋଟି ପଟାଖଟର ପ୍ଲାଟଫର୍ମ – ଆଉ ସେ ପ୍ଲାଟଫର୍ମ ମଝିରେ ଶୋଇରହିଥାନ୍ତି ଦୁଇଜଣ ଛାତ୍ର । ବେକର ଫୁଲମାଳ ଦୂରରୁ ବେଶ୍ ବାରିହେଉଥାଏ ।

ଚାରିଆଡ଼ିକି ଛାତ୍ରଙ୍କ ଭିଡ଼ ।

ତମ୍ବୁ ସାମନାରେ ଝୁଲାହୋଇଥିବା ବିରାଟ ପୋଷ୍ଟରଟିର ଫୁଲା ଫୁଲା ଅକ୍ଷରସବୁ ଗର୍ବର ସହିତ ଏ ଦୁଇଜଣଙ୍କ 'ଆମରଣ ଅନଶନ' ଘୋଷଣା କରୁଥାଏ । ବାଉଁଶ ଫାଳିଆମାନଙ୍କରେ ଲାଗିଥିବା କେତେଗୁଡ଼ିଏ ପୋଷ୍ଟର୍ ତମ୍ବୁ କଡ଼ରେ ଧାଡ଼ି ବାନ୍ଧି 'ଆମର ଦାବି.....' ସମୂହର ସୂଚନା ଦେଉଥାଆନ୍ତି । ଉତ୍ତେଜିତ ଛାତ୍ରଙ୍କ ଯିବା ଆସିବା ବେଳର କ୍ଷିପ୍ର ପଦକ୍ଷେପ ଓ ରାସ୍ତାକଡ଼ର କୌତୂହଳୀ ଦର୍ଶକଙ୍କ ଫୁସୁରୁଫାସୁରୁ ଆଲୋଚନା କେମ୍ପସ୍‌ରେ ଗୋଟିଏ ନୂତନ ପରିବେଶ ସୃଷ୍ଟି କରିଥାଏ ।

ଦୁଇ ପର୍ବତମାଳାର ପରିବେଷ୍ଟନୀ ମଧ୍ୟରେ ବିଶ୍ୱବିଦ୍ୟାଳୟର ନୂତନ ପରିସର ଦେଖିବାକୁ ଭାରି ସୁନ୍ଦର । ଯାନବାହନ ଯାତାୟାତ ପ୍ରାୟ ଶୂନ୍ । ହାଟ ବଜାର ନାହିଁ କି ଲୋକଗହଳି ନାହିଁ ।

ଯେଉଁ ଛାତ୍ର ଓ କର୍ମଚାରୀମାନେ ପ୍ରଥମ କରି ଏ ନୂଆ କେମ୍ପସ୍‌କୁ ଆସିଥିଲେ, ସେମାନଙ୍କ ମନରେ ପ୍ରଥମେ ନୂତନତାର ଉନ୍ମାଦନା ଦେଖାଦେଇଥିଲା; କିନ୍ତୁ

ସିନେମାଦେଖା ଓ ସହରର କଫିହାଉସ୍‌ମାନଙ୍କରେ ଗୋଟିଏ କପ୍ ଚା' ଧରି ଘଣ୍ଟା ଘଣ୍ଟା ଗପ କରିବାରେ ଯେଉଁମାନେ ଅଭ୍ୟସ୍ତ, ସେମାନେ ଚିଟା ଓ ହାଲିଆ ହୋଇସାରିଥିଲେ । ତେଣୁ ଯେଉଁଦିନ '...ଡାଉନ୍...ଡାଉନ୍...' 'ମୁର୍ଦ୍ଦାବାଦ' ଓ 'ଆମର ଦାବି...' ସ୍ଲୋଗାନ ବାରପାହାଡ଼ରେ ତାର ପ୍ରଥମ ପ୍ରତିଧ୍ୱନି ଦେଲା, ସମସ୍ତେ ଟିକିଏ ଚକିତ ହୋଇଥିଲେ ସତ, ସ୍ପନ୍ଦନହୀନ ଗତାନୁଗତିକ ଜୀବନ ମଝିରେ ସେମାନେ ସେଦିନ ଗୋଟିଏ ନୂତନ ଜୀବନର ସଞ୍ଚାର ମଧ୍ୟ ଅନୁଭବ କରିଥିଲେ ।

ଛାତ୍ରମାନଙ୍କର ସବୁ ଦାବି ଯେ ଅବାସ୍ତବ ଓ ଅଯୌକ୍ତିକ ଥିଲା – ସେକଥା ମଧ୍ୟ କହିହେବନି । ତଳମହଲାର କେଉଁ ଗୋଟିଏ କୋଠରିର ଇଲେକ୍‌ଟ୍ରିକ ସୁଇଚ୍ ଟିପିଲେ ଉପର ମହଲାର କାହା ଘରେ ଲାଇଟ୍ ଜଳିବା ପ୍ରଥମେ ପ୍ରଥମେ କୌତୁକ ସୃଷ୍ଟି କରିପାରେ; କିନ୍ତୁ ନିଜ କୋଠରିର ବତି ଜାଳିବାପାଇଁ କାହାକୁ ଯଦି ଅନ୍ୟ କାହା କୋଠରିକୁ ଯିବାକୁ ହୁଏ, ଆଉ ସେ କୋଠରିରେ ଯଦି ବେଳେବେଳେ ତାଲାପଡ଼ିଥାଏ, ତେବେ କେତେ ବା ଧୈର୍ଯ୍ୟ ରହିବ ? ଜଳ ବିଶୋଧନ ବ୍ୟବସ୍ଥା ସମୟସାପେକ୍ଷ; ତେଣୁ କେମ୍ପସ୍‌ର ଜଳଯୋଗାଣ ପାଣି ଗୋଳିଆ । ତା' ବୋଲି ଦେହରେ ସାବୁନ୍ ବୋଳା ହୋଇ ସାରିଥିବା ଅବସ୍ଥାରେ କଳପାଣି ଯଦି ହଠାତ୍ ବନ୍ଦହୋଇଯାଏ ଆଉ ଏ ଅନୁଭୂତିର ଘନଘନ ପୁନରାବୃତ୍ତି ହୁଏ, ମଣିଷ ବିରକ୍ତ ନହେବ ବା କିପରି ? ଅନ୍ୟ କୌଣସି ଅବସର-ବିନୋଦନ ନଥିବାବେଳେ କମନ୍ ରୁମ୍‌ରେ ରେଡ଼ିଓ ଯେ ଦରକାର ନାହିଁ, ସେ କଥା ମଧ୍ୟ କହିହେବନି । ଏ ଚଢ଼ାଦର ଦିନରେ ବାପା ମା'ଙ୍କ ସୀମିତ ଆର୍ଥିକ ସମ୍ବଳରେ ଘରଭଡ଼ା କମ୍ ହେବା ଦରକାର – କେମ୍ପସ୍‌ରେ କେଣ୍ଟିନ୍, ରାସ୍ତାରେ ଆଲୁଅ ବ୍ୟବସ୍ଥା – କୌଣସି ଦାବି ଅସଙ୍ଗତ ନୁହେଁ ।

ତଥାପି ଦାବି ପୂରଣପାଇଁ ଯେତେବେଳେ ପ୍ରୋସେସନ୍ ବାହାରିଲା, ଆଉ ସାତଦିନ ଭିତରେ ଏସବୁ ପୂରଣ ନ ହେଲେ 'ଆମରଣ ଅନଶନ' ହେବ ବୋଲି ଚରମପତ୍ର ଦିଆଗଲା, ଅନେକେ ତାକୁ ବିଶେଷ ଗୁରୁତ୍ୱ ଦେଲେନାହିଁ । ଯେଉଁ ଦେଶରେ ଓ ବିଶେଷକରି ଯେଉଁ ସମୟରେ କାର୍ଯ୍ୟଭାର ନ୍ୟସ୍ତ ଥିବା କୌଣସି କୌଣସି କର୍ମଚାରୀଙ୍କୁ ନିଦରୁ ଉଠାଇବା ପାଇଁ ମଧ୍ୟ ସାତ ଦିନରୁ ବେଶି ସମୟ ଲାଗେ, ସେତିକିବେଳେ ଇଚ୍ଛା ଥିଲେହେଁ ଏସବୁ ଦାବି ସାତ ଦିନ ଭିତରେ ପୂରଣ କରିହେବ କିପରି ? ତେଣୁ ଯେତେବେଳେ ହଷ୍ଟେଲ୍ ସାମନାରେ ଅଶୁଭ ତମ୍ବୁର ଆବିର୍ଭାବ ହେଲା, ଆଉ ସତକୁ ସତ ତା' ଭିତରେ ଦି'ଜଣ ଛିଣ୍ଡା ଖଟ, ଫଟା ଉହ୍ଳେଇ ବଦଳରେ ପଟା ଖଟରେ ଶୋଇ ରହିଲେ, ବାତାବରଣ ଖରାପ ଢ଼ଙ୍ଗ ନେଲା ।

ପ୍ରଥମ ଦିନ କିଛି ଗୋଟାଏ ବୁଝାମଣା କରାଇ ବିଷୟଟିର ସମାଧାନ କରି ଦେବାପାଇଁ କେତେ ଜଣ ଏ ପାଖ ସେ ପାଖ ଧାଁଧପଡ଼ କଲେ – କିନ୍ତୁ ସେ ସବୁ

ଚେଷ୍ଟା ବିଫଳ ହେଲା । ଗୋଟିଏ ପାଖ ଯେତେବେଳେ କହିଲେ – 'ଏ ଛୋଟ ଛୋଟ କଥା ପାଇଁ ଏପରି ଅନଶନ ଧର୍ମଘଟ କେମ୍ପସ୍‌ରେ ଖରାପ ପରମ୍ପରା ସୃଷ୍ଟି କରିଛି – ତେଣୁ ଆଗ ଧର୍ମଘଟ ପ୍ରତ୍ୟାହୃତ ହେଉ, ପରେ ଦେଖାଯିବ ।' ଅନ୍ୟ ପାଖରୁ ଜବାବ୍ ମିଳିଲା – 'ଆମର ଦାବି ପୂରଣ ନ ହେଲେ ଯେଉଁ ଭୟାବହ ପରିସ୍ଥିତି ସୃଷ୍ଟି ହେବ, ସେଥିପାଇଁ ଉପାଧ୍ୟୁତ୍ତର ଶ୍ରେଣୀ ଛାତ୍ର-ସମାଜ ଦାୟୀ ହେବେ ନାହିଁ ।' ସେ ପାଖର 'ହଉ ଦେଖିବା' – ଆଉ ଏ ପାଖର 'ଆଚ୍ଛା ହେଉ ଦେଖାଯିବ' ଭିତରେ ପ୍ରଥମ ଦିନଟି କଟିଗଲା ।

ଦ୍ୱିତୀୟ ଦିନର ସକାଳଟି ତମ୍ବୁ ଭିତରୁ ହସ-ଖୁସିର କୋଳାହଳ ଓ ରେଡ଼ିଓ ସଙ୍ଗୀତ ସହ ଆରମ୍ଭହେଲା । ସେ ଦିନ ଫୁଲମାଳ ଓ ସ୍ଲୋଗାନ ମଝିରେ ନୂଆ ଛଅଜଣ ଚବିଶ ଘଣ୍ଟିଆ ରିଲେ ଅନଶନ କରି ଆମରଣ ଅନଶନକାରୀଙ୍କୁ ସହଯୋଗ ଦେବା ଉଦ୍ଦେଶ୍ୟରେ ଦି' ପାଖର ପଟାଖଟମାନଙ୍କରେ ସେମାନଙ୍କ ଆସନ ଗ୍ରହଣକଲେ । ପୂର୍ବଦିନ ଦୁଇ ପାଖରୁ ଲାଞ୍ଛିତ ହୋଇଥିବା ଯୋଗୁଁ ସମାଧାନ ପାଇଁ କେହି ମଧ୍ୟସ୍ଥ ଆଉ ବାହାରିଲେନାହିଁ । ସନ୍ଧ୍ୟାବେଳେ ରାସ୍ତା କଡ଼ର ଦର୍ଶକମଣ୍ଡଳୀରୁ କେହି କେହି ମନ୍ତବ୍ୟ ଦେଲେ ଯେ ସେ ଦିନର ଶାନ୍ତ ବାତାବରଣ କେବଳ ଝଡ଼ର ପୂର୍ବାଭାସ ମାତ୍ର ।

ରାତିରେ ଡାକ୍ତର କହିଗଲେ ଯେ ଦୁଇଜଣ ଆମରଣ ଅନଶନକାରୀଙ୍କ ମଧ୍ୟରୁ ଜଣକର ନାଡ଼ି ଟିକିଏ ମନ୍ଥର ହୋଇଛି ।

ଆମ କେମ୍ପ୍‌ରେ ଟିକିଏ ଉଦ୍‌ବେଗ ଦେଖାଗଲା । ଏଇ ଜିଦ୍‌ଖୋର ପିଲାଙ୍କ ଭିତରୁ କାହାରି ଯଦି କିଛି ହୁଏ! ଆମେ ନିଷ୍ପତ୍ତି ନେଲୁ ଯେ ତା' ଆରଦିନ ଧର୍ମଘଟକୁ ଭାଙ୍ଗିବାକୁ ହିଁ ପଡ଼ିବ ।

ଦ୍ରୋଣାର୍ଜୁନ ମହାସମରର ତୃତୀୟ ଦିନ ।

ସେ ଦିନ ହିଁ ହୋଲି । ଆମେ ଫଗୁ ଧରି ଅନଶନକାରୀଙ୍କ ମୁହଁରେ ବୋଳିବା ପାଇଁ ଯେତେବେଳେ ସକାଳୁ ସକାଳୁ ତମ୍ବୁ ପାଖରେ ପହଞ୍ଚିଲୁ, ଅର୍ଜୁନଙ୍କ କେମ୍ପରେ ହଟ୍ଟଗୋଳ ଦେଖାଦେଲା । ଦାବି ପୂରଣର ପ୍ରତିଶ୍ରୁତି ନ ମିଳିଲେ ସେମାନେ ଅନଶନ ଭଙ୍ଗ କରିବେ କିପରି – ରଙ୍ଗ ଖେଳିବା ତ ଦୂରର କଥା । ଆମେ କିନ୍ତୁ ଜିଦ୍ ଧରି ବସିଲୁଁ ଯେ ହୋଲି ଦିନ ଏସବୁ ଚଳିବନି – ଆମ ସାଙ୍ଗରେ ସେମାନଙ୍କୁ ରଙ୍ଗ ଖେଳିବାକୁ ହିଁ ପଡ଼ିବ... ଦାବି କଥା ଯଥା ସମୟରେ ବିଚାରକରାଯିବ ।

ଚବିଶଘଣ୍ଟିଆ ଅନଶନକାରୀଙ୍କ ନୂଆ ଦଳ ଆସି ପହଞ୍ଚିଯାଇଥିଲେ । ଏପରି ଗୋଟିଏ ପରିସ୍ଥିତି ପାଇଁ କେହି ପ୍ରସ୍ତୁତ ନଥିଲେ । ଇତଃସ୍ତତତା ଭିତରେ କିଏ ଜଣେ ପଛଆଡୁ ଟିପ୍ପଣୀ ଦେଲା – 'ଦ୍ରୋଣ ଗୁରୁମାନେ ତ ପଛଘୁଞ୍ଚା ମାରିଲେ କାର୍ ସଙ୍ଗେ ଯୁଦ୍ଧବ ହୋ?' ହସର ଢେଉ ଖେଳିଗଲା ଓ ତା' ସଙ୍ଗରେ ମହାସମରର ପରିସମାପ୍ତି ଘଟିଲା ।

ସେ ରାତିର ପଂକ୍ତି ଭୋଜନ ବେଳେ ଭାତ ଆଣ, ଡାଲି ଆଣ ମଝିରେ ଜଣେ ଶିକ୍ଷକ କହିବାର ଶୁଣାଗଲା ଯେ ଛାତ୍ରମାନେ ହାରିଗଲେ । ଖାଇବା ସାମଗ୍ରୀ ପରଷୁଥିବା ଛାତ୍ର ଭିତରୁ କେହି କେହି ଉତ୍ତର ଦେଲେ ଯେ ସେମାନଙ୍କର ଜୟ ହୋଇଛି, ଆଉ ଶିକ୍ଷକମାନେ ହିଁ ହାରିଛନ୍ତି ।

ଏଇ କେତେ ମାସ ତଳର କଥା । ଠିକ୍ ବର୍ଷକ ପରେ ହୋଲି ଆସିଲା– ଜ୍ୟୋତିବିହାରରେ ଦ୍ୱିତୀୟ ହୋଲି ।

କେମ୍ପସ୍ ଏ ଭିତରେ ବେଶ୍ ବଡ଼ ହୋଇଯାଇଛି । ଆଉ ଦୁଇଟି ତିନି ମହଲା ଛାତ୍ରାବାସରେ ଛାତ୍ର ଭରପୂର ହୋଇଯାଇଛନ୍ତି । ଅନେକ ଶିକ୍ଷକ ଓ ଅଫିସ୍ କର୍ମଚାରୀ କେମ୍ପସ୍‌କୁ ଆସିଗଲେଣି ।

ଏଥର ହୋଲି ଦିନ ଅଦ୍ଭୁତ ମୁହଁମାନଙ୍କର ଅପୂର୍ବ ସମାବେଶ ନେଇ ଭଙ୍ଗାଟିଣ, ଘିଅଡବା, କାଠପଟା ଉପରେ ବାଜା ବଜେଇ ବଜେଇ କୁରେଇ ଡାଳ ମୁଣ୍ଡରେ ବାନ୍ଧି ହୋଲି ନାଚର ଉଦ୍ଦାମ ନୃତ୍ୟ ସହ ଛାତ୍ରଙ୍କ ବିରାଟ ପଟୁଆର ଯେତେବେଳେ ସଡ଼କରେ ଦେଖାଦେଲା, ଶିକ୍ଷକ ଓ ଅଫିସ କର୍ମଚାରୀମାନେ ସେମାନଙ୍କୁ ଭେଟିବା ପାଇଁ ତାଙ୍କ ଟିଣ ଟିଣ ରଙ୍ଗ ସହ ପ୍ରସ୍ତୁତ ହୋଇସାରିଥିଲେ । ବୁଟ୍ ପଲିସ୍‌ଠାରୁ ଆରମ୍ଭକରି ଧଳା ନାଲି ରଙ୍ଗର ଲେପ, ସୁନେଲି ରୁପେଲି ପାଉଡ଼ର, ରଙ୍ଗିନ୍ ବାଥ୍ ପରେ କେହି କାହାକୁ ଚିହ୍ନିବା ମଧ କଷ୍ଟକର ହୋଇପଡୁଥାଏ ।

କେମ୍ପସ୍‌ର ପ୍ରତ୍ୟେକ ଘର ସେ ଦିନ ହସ-ଖୁସିରେ ଭାସି ଉଠିଥିଲା । ଖେଳ ସରିଲା ପରେ ଆମେ ସମସ୍ତେ ଯେତେବେଳେ କମ୍ୟୁନିଟି ସେଣ୍ଟର୍‌ରେ କିଛି ଜଳଯୋଗ ପାଇଁ ବିଶ୍ରାମ ନେଲୁଁ – ସୁନୀଲ୍ ତା'ର ତାଲଖାଇ ନାଚ ଆରମ୍ଭ କରିଦେଲା । ଅନେକ ଛାତ୍ର ଶିକ୍ଷକମାନଙ୍କୁ ସେମାନଙ୍କ ସଙ୍ଗରେ ନାଚିବା ପାଇଁ ଟାଣି ନେଇଗଲେ । ଅଣ୍ଟାକୁ ଅଣ୍ଟା ହାତ ଭିଡ଼ି ଶିକ୍ଷକ ଓ ଛାତ୍ର ତାଙ୍କ ମିଳିତ ଅଭୂତପୂର୍ବ ନୃତ୍ୟ ପରିବେଷଣ କରିଥିଲେ ସୁନୀଲ୍‌ର ଗୀତ ସାଙ୍ଗରେ ତାଳ ପକାଇ ।

ଆମ ଭିତରୁ ଅନେକେ ସୁନୀଲ୍‌କୁ ଆଗରୁ ଚିହ୍ନିଥିଲୁଁ । ତାଙ୍କ ହଷ୍ଟେଲର ବାର୍ଷିକ ଉତ୍ସବ ଦିନ ଆମେ ପ୍ରଥମ କରି ତା' ନାଚ ଦେଖିଥିଲୁଁ । ଦୁଇ ହାତରେ ରୁମାଲ ଖଣ୍ଡିଏ ମୁଣ୍ଡ ଉପରେ ଟେକିଧରି ଅଣ୍ଟା ହଲେଇ ହଲେଇ ନାନା ଭଙ୍ଗୀରେ ସେ ଯେତେବେଳେ ଷ୍ଟେଜ୍ ଉପରେ ନାଚିଗଲା – ଆମେ ସମସ୍ତେ ହସି ହସି ବେଦମ୍ ହୋଇଯାଇଥିଲୁ । ସେଦିନ ମୁଁ ତାର ପୂରା ନାଁ ସୁନୀଲ୍ କୁମାର ମିଶ୍ର ବୋଲି ଜାଣିଥିଲି – ସମ୍ବଲପୁର ସହରର ଛାତୁଆପଡ଼ାରେ ତାର ଘର – ଇକନମିକ୍‌ସର ଛାତ୍ର ।

ତା' ପରଠୁ ମୁଁ ତାକୁ ଅନେକ ଥର ଦେଖିଛି । କେବେ କେଉଁ ମଉଜ ମଜଲିସ୍ ଦଳରେ ତ କେବେ ପରୀକ୍ଷା ଘୁଞ୍ଚାଇବା ଦାବି ଠାରୁ ଆରମ୍ଭ କରି ନାନା ରକମର ଦାବି

କରୁଥିବା ଦଳ ଭିତରେ । ତାର ହସ ହସ ମୁହଁ ଦେଖିଲେ କେମିତି ଗୋଟାଏ ଖୁସି ଲାଗେ – ଯେତେ ବିରକ୍ତିକର ପରିସ୍ଥିତିରେ ମଧ୍ୟ ମନ ଆପେ ଆପେ ନରମ ହୋଇଯାଏ ।

ଏଇ ଜୁଲାଇ ୨୩ ତାରିଖ ଦିନ ସୁନୀଲ୍ର ସାଙ୍ଗସାଥୀ ଓ ତାର ଶିକ୍ଷକମାନେ ତାକୁ ମହାନଦୀର ବାଲୁକା ଶଯ୍ୟାରେ ଚିରବିଦାୟ ଦେଇ ଆସିଲେ । ତାର ଏଡ଼େ ସୁନ୍ଦର ସୁସ୍ଥ ସବଳ ଦେହ କିଛି ସମୟ ଭିତରେ ପାଉଁଶ ହୋଇଯାଇଥିଲା । ମୁଁ ସେଦିନ ବୁର୍ଲାରେ ନଥିଲି – ତାକୁ ଦେଖିପାରିଲିନି । ୧୯ ତାରିଖରେ କିଛି ସମୟ ପାଇଁ ତାକୁ ହସ୍‌ପିଟାଲରେ ଦେଖିଥିଲି – ସେ କିନ୍ତୁ ମୋତେ ଚିହ୍ନି ବି ପାରିନଥିଲା ।

ଏ ଭିତରେ ମୁଁ ତାକୁ ଅନେକ ଥର ମନେପକାଇଛି । ଏପରି ମନେପକାଇ ମନ ଭିତରେ ବିଷାଦର ଛାୟା ସୃଷ୍ଟିକରିବା ଅର୍ଥହୀନ ବୋଲି ଜାଣିଲେ ସୁଦ୍ଧା ତାର ହସ ହସ ମୁହଁ ଆପେ ଆପେ ଆଗକୁ ଚାଲିଆସେ । ଅନ୍ୟ ଛାତ୍ରମାନଙ୍କ ଦଳ ଦେଖିଲାକ୍ଷଣି ମନେହୁଏ ସେ ବି ଏ ଭିତରେ ପଛଆଡ଼ିକି କେଉଁଠି ଲୁଚିରହିଛି ତାର ମଉଜିଆ ଟିପ୍‌ପଣୀ କାଟିବା ପାଇଁ ।

ଏବେ ବି ତାର ଶେଷ ଟିପ୍‌ପଣୀ ମନେପଡ଼ିଯାଉଛି । କେତୋଟି ଅଯୌକ୍ତିକ ଦାବି ନେଇ ଯେଉଁ କେତେଜଣ ସେଦିନ ମୋ ପାଖକୁ ଆସିଥିଲେ, ସେ ବି ତା' ଭିତରେ ଥିଲା । ପିଲାମାନଙ୍କ ଉତ୍ତେଜିତ ସ୍ୱର ଶୁଣି ମୁଁ ବି ଅତ୍ୟନ୍ତ ଉତ୍ତେଜିତ ହୋଇଯାଇଥିଲି । ସୁନୀଲ କହିଥିଲା – 'ଆମେ ଏ ବୟସରେ ଉତ୍ତେଜିତ ହୋଇ ଅନେକ ଅଯୌକ୍ତିକ କଥା ବି କହିବୁ ସାର୍ – ଆପଣ କାହିଁକି ସେଥିରେ ମାଇଣ୍ଡ୍ କରୁଛନ୍ତି ?' ଗୋଟିଏ ବାକ୍ୟରେ ସେ ମୋତେ ସେଦିନ ହରାଇ ଦେଇଥିଲା ।

ଶିକ୍ଷକ ଓ ଛାତ୍ରର ବନ୍ଧନ ସ୍ନେହର ବନ୍ଧନ; – ତେଣୁ ଅତି ପବିତ୍ର । ଆମ ପରମ୍ପରାରେ ଗୁରୁ ଶିଷ୍ୟ ପାଖରେ ହାରମାନିଲେ ଲଜ୍ଜିତ ହୁଏନି – ବରଂ ଗର୍ବ କରେ । ଆଜି ଏହି ବନ୍ଧନ ଅତି ଶିଥିଳ ହୋଇଯାଇଛି । ତଥାପି ଛାତ୍ରଙ୍କ ଭିତରେ ଆଜି ମଧ୍ୟ ସୁନୀଲ୍ ପରି ଅନେକ ଛାତ୍ର ଅଛନ୍ତି, ସେଉଁମାନେ ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ଏହି ବନ୍ଧନକୁ ଠିକ୍ ଚିହ୍ନିପାରନ୍ତି । ସେପରି ଛାତ୍ର ଥିବା ପର୍ଯ୍ୟନ୍ତ ଏ ବନ୍ଧନ ଛିନ୍ନ ହେବନି ।

ଶ୍ରୀରାମଙ୍କ ରାଜ୍ୟରେ ବାପ ବଞ୍ଚି ଥାଉଁ ଥାଉଁ ପୁଅ ଯେତେବେଳେ ମରିଗଲା, ବାପ କୁଆଡ଼େ ଏ ଅନ୍ୟାୟ ପାଇଁ ଶ୍ରୀରାମଙ୍କୁ ଦୋଷୀ କରିଥିଲା । ଛାତ୍ର ପାଠ ସାରିଲା ପରେ ତାର ଶିକ୍ଷକ ପାଖରୁ ବିଦାୟ ନେବା ଅତି ସାଧାରଣ କଥା । କିନ୍ତୁ ସୁନୀଲ୍ର ବିଦାୟ ପରି ବିଦାୟ ପଛରେ କି ନ୍ୟାୟ ରହିଛି ସେ କଥା ଆଜି କିଏ କହିବ ?

ସୁନୀଲ୍ର ପବିତ୍ର ସ୍ମୃତି ଜ୍ୟୋତିବିହାରରେ ତଥା ବିଶ୍ୱବିଦ୍ୟାଳୟମାନଙ୍କ ପରିସରଭୁକ୍ତ ସବୁ ଶିକ୍ଷା ଅନୁଷ୍ଠାନରେ ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ସ୍ନେହ ସୌହାର୍ଦ୍ଦ୍ୟ ଆଣୁ ।

# ସମୟ ଓ ତାଳ

ସମୟ କହିଲେ ସାଧାରଣ ଭାବରେ ଯାହା ବୁଝାଏ ପ୍ରତ୍ୟେକ ମଣିଷ ଭଲଭାବରେ ସେ କଥା ବୁଝେ। ତଥାପି ସମୟ ଯେ ଠିକ୍ କଣ, ସେ କଥା ଅନ୍ୟ କାହାକୁ ପରିଷ୍କାର ଭାବରେ ବୁଝାଇପାରେନି।

ସମୟର ସଂଜ୍ଞା ନିରୂପଣ କରିବା, ସମୟକୁ କୌଣସି ନିର୍ଦ୍ଦିଷ୍ଟ ରୂପରେଖ ଦେବା ଅଥବା ସମୟର ଆଦି ଓ ଅନ୍ତ ଖୋଜି ବାହାର କରିବା ସହଜ ନୁହେଁ। ସମୟର ଆକୃତି ତଥା ସମୟ ସମ୍ବନ୍ଧରେ ଧାରଣା ତେଣୁ ଅସ୍ପଷ୍ଟ ହୋଇ ହିଁ ରହିଯାଏ। ମନେହୁଏ ଯେ ବାସ୍ତବତାର ପ୍ରତୀତି ନେଇ ସୁଦ୍ଧା ଆକାଶ ପରି ସମୟ ମଧ୍ୟ ଅବାସ୍ତବ – ଏକ ମାନସ-ସନ୍ତାନ।

କେହି କେହି କହନ୍ତି, ସମୟ ଗୋଟାଏ ନଈ ପରି – ଦୁଇ କୂଳଭରି ବୋହିଯାଉଥାଏ। ସମୟର ସେହି ସୁଅରେ ଭାସିଚାଲିଥାଆନ୍ତି ବିଶ୍ୱର ଯାବତୀୟ ସଜୀବ ଓ ନିର୍ଜୀବ ସୃଷ୍ଟି – କିଏ ଖଣ୍ଡିଏ ଛିଣ୍ଡା କୁଟା ଅଥବା ଭଙ୍ଗା କାଠି ପରି ତ କିଏ ଜଳରେ ଭାସିଯାଉଥିବା ଧଳା ଫେଣ ଅଥବା ପାଣିଫୋଟକା ସଦୃଶ, କିଏ ଭାସିଚାଲିଥାଏ କୌଣସି କଣା ଡଙ୍ଗାରେ ପାଣି ନିଗାଡ଼ି ନିଗାଡ଼ି ତ ଆଉ କିଏ ଯାଉଥାଏ ଚକଚକିଆ ବୋଇତରେ ପାଲ ଉଡ଼ାଇ ଅଥବା ଇଞ୍ଜିନ୍ ଭିଡ଼ାଇ।

ସୁଖ ଆଉ ଦୁଃଖ କୁଆଡ଼େ ଏଇ ନଈର ଦୁଇ କୂଳ। କବିଙ୍କ ଭାଷାରେ ଗୋଟିଏ କୂଳରେ ଯେତେବେଳେ ପୂର୍ଣ୍ଣମୀ ଚାନ୍ଦର ଜ୍ୟୋତ୍ସ୍ନା ଖେଳେ, ଅନ୍ୟ କୂଳରେ ଉଆଁସ ଅନ୍ଧାର ମାଡ଼ିଯାଏ; ଏ କୂଳରେ ଯେତେବେଳେ ହସର ଲହରୀ ଭାଙ୍ଗେ, ସେ କୂଳରେ ଶୁଭେ ବୁକୁଫଟା କାନ୍ଦ। ସମୟର ସ୍ରୋତରେ ଭାସିଗଲାବେଳେ ଏହି କୁଟା-କାଠିମାନେ କେବେ ଏ କୂଳରେ ଲାଖିଯାଆନ୍ତି ତ କେବେ ସେ କୂଳରେ। ସୁଅରେ ଖେଳୁଥିବା ଭଉଁରି କେବେ ଏ କୂଳରେ ଲାଗିଥିବା ଖଣ୍ଡିଏ କୁଟାକୁ ଉଠାଇ ସେ କୂଳରେ ଅଜାଡ଼ି ଦିଏ ତ କେବେ ସେ କୂଳରୁ କାହାକୁ ଗୋଟେଇ ଆଣି ଏ କୂଳରେ ଛାଡ଼େ। ଭଉଁରି ସବୁ ଦେଖାଦିଅନ୍ତି କୁଟା-କାଠିମାନଙ୍କର ଭାଗ୍ୟ ରୂପରେ। ଦୂରରୁ ଫେଣ ଆଉ ବୁଦ୍‌ବୁଦ୍ ସବୁ ଆଖିକି ଦେଖାଯାଆନ୍ତି ଚିର ଓ ଅସରନ୍ତି – କିନ୍ତୁ ଭଉଁରି ଭିତରେ ପଡ଼ି ପୁରୁଣା ସବୁ ଫାଟିଗଲାବେଳେ ନୂଆ ନୂଆ ଫେଣ ଓ ବୁଦ୍‌ବୁଦ୍‌ର ସୃଷ୍ଟି ହୋଇଚାଲିଥାଏ।

ଏସବୁ ଭିତରେ ସମୟ-ସ୍ରୋତରେ ବୋଇତଯାତ୍ରା ହିଁ ନିରାପଦ ବୋଲି ମନେହୁଏ । କିନ୍ତୁ ସମୟର ସେ ନଈ ଏତେ ଆପଦସଙ୍କୁଳ ଯେ ତହିଁରେ କୁଟା, କାଠି, ଫେଣ ଓ ବୁଦ୍‌ବୁଦ୍ ପରି ବୋଇତ ମଧ୍ୟ ସମାନଭାବରେ ଅସହାୟ । କୁରୁକ୍ଷେତ୍ର ସମୟର ରଣନଦୀରେ ଭାସମାନ ପାଣ୍ଡବମାନଙ୍କ ବୋଇତର ଅସହାୟତା ସୂଚାଇ ଦେବାକୁ ଯାଇ ମହାଜ୍ଞାନୀ ବ୍ୟାସଦେବ ନଦୀର ବର୍ଣ୍ଣନା କରି କହିଥିଲେ ଯେ ଜୟଦ୍ରଥଙ୍କ ପରି ଈର୍ଷା ଓ ଅହମିକା ହଳାହଳରେ ପୂର୍ଣ୍ଣ ନଦୀର ସେ ଜଳ, ଶକୁନିଙ୍କ ପରି କୁଟିଳ ଦଳ-ଶୈବାଳଭରା, ଶଲ୍ୟ ଓ ଅଶ୍ୱତ୍‌ଥମାଙ୍କ ପରି ନିଷ୍ଠୁର କୁମ୍ଭୀର ଆକ୍ରାନ୍ତ, କୃପଙ୍କ ପରି ଜ୍ୱଳନ୍ତ ବାଡ଼ବାଗ୍ନି ଆଉ କର୍ଣ୍ଣଙ୍କ ପରି ଅଭେଦ୍ୟ ଓ ଦୁର୍ଭେଦ୍ୟ ଶିଳା ଓ ବେଳାଖଣ୍ଡ ତହିଁରେ ଲୁକ୍‌କାୟିତ, ଦୁର୍ଯ୍ୟୋଧନ ପରି ଖଳ-ଭଉଁରିଭରା ସେ ନଦୀ । ତାର ଦୁଇକୂଳ ଭୀଷ୍ମ ଓ ଦ୍ରୋଣଙ୍କ ପରି ଚଳନଶୀଳ – କ୍ଷଣକେ ଗଣ୍ଡ ତ ଅନ୍ୟ କ୍ଷଣରେ ବାଲିପଠା ।

ସମୟର ଏହି ନଦୀ ରୂପ-କଳ୍ପନା ଯୁକ୍ତିଯୁକ୍ତ ଜଣାପଡୁଥିଲେ ମଧ୍ୟ ଭ୍ରମାତ୍ମକ ବୋଲି ହିଁ ମନେହୁଏ । ନଦୀ ଯେତେ ବଡ଼ ହେଉ ନା କାହିଁକି ତାର ଆକୃତି ସୀମାବଦ୍ଧ । ସମୟକୁ କୌଣସି ସୀମା ଭିତରେ ବାନ୍ଧିରଖାଯାଇପାରେନା ।

'ଗିରିବରନନ୍ଦିନୀ' ତଟିନୀର ଜନ୍ମ 'ଗଭୀର ଗହ୍ୱର ଗର୍ଭରେ' । ପର୍ବତକନ୍ଦରରୁ ତାର ଆରମ୍ଭ ଓ ସାଗରବକ୍ଷରେ ତାର ଶେଷ । ଉପରୁ ସେ ତଳକୁ ଖସେ – ଉଚ୍ଚରୁ ନିମ୍ନକୁ ଗତି କରେ ।

ସାଗରର ପ୍ରେମ ଆହ୍ୱାନ କିପରି ଶୁଣେ କେଜାଣି; ନଦୀ ଯେତେବେଳେ ସାଗରର ପ୍ରସାରିତ ବକ୍ଷରେ ଲୀନ ହେବା ମାନସ ନେଇ ଧାଇଁଯାଏ, କେତେବେଳେ ସେ ନିର୍ଝରିଣୀର ବେଶରେ କୁଳୁକୁଳୁ ରାଗିଣୀ ଧରେ ତ କେତେବେଳେ ସେ ହୁଏ ଖରସ୍ରୋତା – ପର୍ବତର ଗୋଟିଏ ଶିଖରରୁ ଅନ୍ୟ ଏକ ଶିଖରକୁ ଆଲୁଳାୟିତକୁନ୍ତଳା ବେଗବତୀ ରୂପରେ ଫୁତ୍କାର ଛାଡ଼ି ଲମ୍ଫ ପ୍ରଦାନ କରେ । ପୁଣି କେତେବେଳେ ସେ ହୁଏ ପ୍ରେମପାଗଳିନୀ ସ୍ରୋତସ୍ୱିନୀ – ତାର ଅସଂବୃତ ବସ୍ତ୍ର ଉଡ଼ାଇ ଦୁଇକୂଳ ଭସାଇ ସ୍ଫୀତବକ୍ଷରେ ଅହରହ ଧାଇଁଥାଏ ତାର ବାନ୍ଧବ ପାଖକୁ । ଶେଷରେ ସେ ଯେତେବେଳେ ସାଗରର ଦର୍ଶନ ଲାଭ କରେ, ସେ ହୁଏ ମନ୍ଦହାସିନୀ, ଶିଥିଳ-ଶରୀରା ମନ୍ଦାକିନୀ । ସାଗର-ମିଳନ ପରେ ତାର ଶେଷ ହୋଇଯାଏ । ସେ ହୁଏ ଅନ୍ତଃସଳିଳା ।

ସମୟର ଅନ୍ତ ନାହିଁ – ତାର ଆଦି ନାହିଁ କି ଅନ୍ତ ନାହିଁ – ଉପର ନାହିଁ କି ତଳ ନାହିଁ – ତେଣୁ ନଦୀ ସଙ୍ଗରେ ତାର ତୁଳନା ହେବ କିପରି ?

ନିରାକାରକୁ ସାକାର କଲା ପରି ଅସୀମକୁ ମଣିଷ ଯେତେବେଳେ ବୁଝିପାରେନି, ତାକୁ ସୁବିଧାମତେ ଖଣ୍ଡ-ବିଖଣ୍ଡ କରି ସସୀମ କରିବାକୁ ଚେଷ୍ଟା କରେ ନିଜ ଦୃଷ୍ଟିର ପରିଧି ଭିତରକୁ ଆଣିବା ଉଦ୍ଦେଶ୍ୟରେ । ଅସୀମ ଆକାଶ ବିଭାଜିତ ହୋଇ ହୁଏ ପୂର୍ବାକାଶ, ପଶ୍ଚିମାକାଶ,... ସମୟ ସେପରି ଦିନରାତି ମାସ ବର୍ଷରେ ଖଣ୍ଡିତ ହୁଏ । ଜୀବନକୁ ସମୟର ସେପରି ଏକ ଖଣ୍ଡ ବୋଲି ବିଚାର କରାଯାଇପାରେ; ଆଉ ସେହି ଜୀବନ ହିଁ ନଦୀ ସଙ୍ଗରେ ତୁଳନୀୟ ।

ମାତୃଗର୍ଭରେ ହୁଏ ଏ ଜୀବନର ଜନ୍ମ । ଶୈଶବରେ ନିର୍ଝରିଣୀ ପରି ଦରୋଟି ବଚନ କହେ, କୈଶୋରରେ ଖରସ୍ରୋତାର ଜଳପ୍ରପାତ ପରି ଡେଇଁବୁଲେ, ଯୌବନରେ ସ୍ରୋତସ୍ୱିନୀ ପରି ହୁଏ ମତ୍ତ ଓ ବିଭୋର, ପ୍ରୌଢ଼ର ପ୍ରାପ୍ତିରେ ହୁଏ ଶିଥିଳ-ଶରୀର ମନ୍ଦାକିନୀ । ମୃତ୍ୟୁରେ ହୁଏ ତାର ଅନ୍ତ । ନଦୀର ଦୁଇ କୂଳ ପରି ଜୀବନରେ ଦେଖାଦିଏ ସୁଖ ଓ ଦୁଃଖ ।

ଅନ୍ୟ କେଉଁମାନେ କହନ୍ତି ଯେ ସମୟ ଗଡ଼ିଚାଲେ – କୌଣସି ଗୋଟାଏ ଚକ ଥିବା ଗାଡ଼ି ପରି । ତେବେ କାଠ ଚକରେ ଲୁହାପଟି-ଭିଡ଼ା ବଳଦଗାଡ଼ିର ଚକ ପରି ସେ ଚକ, ରବର ଟାୟାରଦିଆ ଘୋଡ଼ାଟଣା ଗାଡ଼ିର ଚକ ପରି ସେ ଚକ, ଜିପ୍ କିମ୍ବା ମଟରଗାଡ଼ିର ଟିଉବ୍-ଟାୟାର-ଖଞ୍ଜା ଚକ ଅଥବା ଲୁହା ଧାରଣା ଉପରେ ଚାଲୁଥିବା ରେଳଗାଡ଼ିର ଲୁହା ଚକ ପରି ସେ ଚକ, ସେ କଥା କେହି କହନ୍ତିନି । ଆହୁରି ମଧ୍ୟ ଜଣାଯାଏନି ଯେ କିଭଳି ରାସ୍ତାରେ ସେ ଚକ ଗଡ଼େ – ପିଚୁଦିଆ ସେ ରାସ୍ତା କିମ୍ବା ଖାଲ ଢ଼ିପ, ଗୋଡ଼ି ମାଟି କାଦୁଅ ଭରା ସେ ବାଟ । ଭିନ୍ନ ଭିନ୍ନ ଯାତ୍ରୀଙ୍କ ସମୟ ଭିନ୍ନ ଭିନ୍ନ ବେଗରେ ଗତିକରୁଥିଲା ପରି ମନେହେଉଥିବାରୁ ଆଉ ସେହି ଏକା ଯାତ୍ରୀ ପାଇଁ ମଧ୍ୟ ସମୟର ଗତି ବେଗ ଭିନ୍ନ ଭିନ୍ନ ଅବସ୍ଥାରେ ବିଭିନ୍ନ ହେଉଥିବାରୁ ମନେହୁଏ ଯେ ସମୟର ଚକ ମଝିରେ ମଝିରେ ବଦଳୁଥାଏ । କାହାରି କାହାରି ଜୀବନରେ ସମୟ ଏରୋଡ୍ରମ୍‌ର ରନ୍‌ୱେ ଛାଡ଼ିଲାଖଣି ଜେଟ୍ ବିମାନର ବେଗ ଧରେ ତ ଅନ୍ୟ କାହାରି ପାଇଁ କୌଣସି ଅଖଭଙ୍ଗା ବଳଦଗାଡ଼ିରେ ସମୟ ମନେହୁଏ ଗତିହୀନ । ଯେଉଁ ସମୟ ସୁଖବେଳେ ଆଉ ସିନେମା ହଲ୍‌ରେ ତୀରବେଗରେ ଛୁଟିଚାଲିଥାଏ, ସେହି ପୁଣି ଦୁଃଖବେଳେ ଓ ପରୀକ୍ଷା ସମୟରେ ହୁଏ ମନ୍ଥର ।

ଅନ୍ୟ କାହାରି ମତରେ ସମୟ ଗୋଟିଏ ତରଙ୍ଗ ପରି – ଚାରିଦିଗକୁ ଢେଉ ଖେଳାଇ ଏକାସଙ୍ଗରେ ବିଛୁରି ହୋଇପଡ଼େ । ତରଙ୍ଗର ଢେଉରେ ସମସ୍ତେ ଉପର ତଳ ହୋଇ ନାଚନ୍ତି – ସୁଖ ଆଉ ଦୁଃଖରେ । ଅନ୍ୟ କେହି କହନ୍ତି ଯେ ସମୟ ଗୋଟାଏ ଅଜଗର ସାପ ପରି – ହଲ୍‌ଚଲ୍ ନହୋଇ ଗୋଟିଏ ଜାଗାରେ ପଡ଼ିରହିଥାଏ । ତା ମୁହଁ ପାଖକୁ ଯିଏ ଆସେ ତାକୁ ସେ ଗୋଟାପଣେ ଗିଳିଦିଏ ।

ଭୟଙ୍କର ଗୋଟାଏ ଟନେଲ୍ ପରି ତାର ମୁଖଗହ୍ୱର । ଅନିଚ୍ଛାସତ୍ତ୍ୱେ ସମସ୍ତେ ସେ ଗହ୍ୱର ଆଡ଼କୁ ଟାଣିହୋଇ ଯାଆନ୍ତି ।

ଅନେକଙ୍କର କିନ୍ତୁ ବିଶ୍ୱାସ ଯେ ସୂର୍ଯ୍ୟଦେବ ନିଜେ ହିଁ ସମୟ । ସପ୍ତଅଶ୍ୱଯୁକ୍ତ ରଥ ନେଇ ଅରୁଣ ସାରଥି କୁଆଡ଼େ ଭୋର ପାହାନ୍ତିଆ ବେଳେ ସୂର୍ଯ୍ୟଦେବଙ୍କ ଉଆସ ପାଖରେ ପହଞ୍ଚିଯାଆନ୍ତି । ସୂର୍ଯ୍ୟଦେବ ଯେତେବେଳେ ସେ ରଥରେ ବସନ୍ତି ଆରମ୍ଭ ହୁଏ ଦିନ । ଗ୍ରୀଷ୍ମ ଅବକାଶ ନାହିଁ କି ପୂଜାଛୁଟି ନାହିଁ, ପ୍ରତ୍ୟେକ ଦିନ ସେ ରଥ ଯାଏ ଆକାଶମାର୍ଗରେ – ସୂର୍ଯ୍ୟଦେବ ପୃଥିବୀ ପ୍ରଦକ୍ଷିଣ କରନ୍ତି ଆଉ ସନ୍ଧ୍ୟା ହେଲେ ନିଜ ଉଆସକୁ ବାହୁଡ଼ିଯାଆନ୍ତି – ବୋଧହୁଏ ବିଶ୍ରାମ ଉଦ୍ଦେଶ୍ୟରେ । ସେତେବେଳେ ରାତି ହୁଏ । ୧୨ ଘଣ୍ଟା ଦିନକୁ ୧୨ ଘଣ୍ଟା ରାତି – ଧରାବନ୍ଧା ନିୟମ । ଶୀତଦିନେ ଶୀତ ଯୋଗୁଁ ଟିକିଏ ଡେରିରେ ଉଠନ୍ତି ବୋଧହୁଏ, ଆଉ ଶୀଘ୍ର ଉଆସକୁ ଫେରିଯାଆନ୍ତି– ରାତି ତେଣୁ ୧୨ ଘଣ୍ଟାରୁ ବେଶୀ ହୁଏ । ଆଉ ଖରାଦିନେ ତ ପାହାନ୍ତିଆ ପବନ ବେଶ୍ ଭଲ ଲାଗେ – ଘରୁ ଶୀଘ୍ର ବାହାରିପଡ଼ନ୍ତି । ଗରମରେ ଶୀଘ୍ର ଉଆସକୁ ଫେରିବାକୁ ଚାହାନ୍ତି ନାହିଁ – ଦିନ ୧୨ ଘଣ୍ଟାରୁ ବେଶୀ ହୋଇଯାଏ ।

ସୂର୍ଯ୍ୟ ଯେ ସତକୁ ସତ ପୃଥିବୀକୁ ପ୍ରଦକ୍ଷିଣ କରନ୍ତି ନାହିଁ, ଏକଥା ଜଣାଶୁଣା । ସେ ନିଜେ ଯେ ସମୟ, ସେ ଧାରଣା ମଧ୍ୟ ଭ୍ରାନ୍ତ, ଏଥିରେ ସନ୍ଦେହ ନାହିଁ । ସୂର୍ଯ୍ୟଙ୍କ ପୃଥିବୀ ପ୍ରଦକ୍ଷିଣ ସମୟର ଏକ ମାପକାଠି । ସୂର୍ଯ୍ୟ ନିଜେ ସମୟ ହୋଇଥିଲେ ସୂର୍ଯ୍ୟଙ୍କ ଜନ୍ମ ସଙ୍ଗେ ସଙ୍ଗେ ସମୟର ମଧ୍ୟ ଜନ୍ମ ହୋଇଥାନ୍ତା । ଏକଥା କିନ୍ତୁ ନିଶ୍ଚିତ ଯେ ସୂର୍ଯ୍ୟଙ୍କ ଜନ୍ମବେଳକୁ ଓ ଅସଂଖ୍ୟ ଗ୍ରହ ନକ୍ଷତ୍ରଙ୍କ ଜନ୍ମବେଳକୁ ଆକାଶର ସୃଷ୍ଟି ହୋଇସାରିଥିଲା । ସେଥିପାଇଁ ଭକ୍ତକବି ଗାଇଛନ୍ତି–'ସାକ୍ଷୀ ତୁହିରେ ଗଗନ ସୃଷ୍ଟି ପ୍ରକ୍ରିୟାର... ।' ଗ୍ରହ ନକ୍ଷତ୍ରଙ୍କ ଜନ୍ମବେଳକୁ ଆକାଶ ଯେପରି ଥିଲା ସାକ୍ଷୀ, ଆକାଶର ଜନ୍ମବେଳକୁ ସମୟ ବୋଧହୁଏ ଥିଲା ସାକ୍ଷୀ ।

ତେବେ ସମୟର ଜନ୍ମ !

ସମୟର ଜନ୍ମ, ଆରମ୍ଭ ଓ ଶେଷ ଯେଉଁଠି ହେଉ ନା କାହିଁକି, ଏକଥା କିନ୍ତୁ ନିଶ୍ଚିତ ଯେ ସମୟ କାହାକୁ ଅପେକ୍ଷା କରେ ନାହିଁ । ସାଧାରଣ ମଣିଷଙ୍କ କଥା ତ ଛାଡ଼; ରାମ, କୃଷ୍ଣ, ବୁଦ୍ଧ, ଯୀଶୁ, ମହମ୍ମଦ, ଗାନ୍ଧି – କାହାକୁ ନୁହେଁ । ତା' ଆଗରେ ସମସ୍ତେ ସମାନ । ଅବତାର ପରେ ଅବତାର ଆସନ୍ତି ଓ ଯାଆନ୍ତି – ସମୟ ଗଡ଼ିଚାଲିଥାଏ, ବୋହିଯାଉଥାଏ ।

ସମୟ କେବେ ଉଜାଣି ବୋହେନି – ରୁକୁଣା ରଥ ପରି ସେ ଅଣବାହୁଡ଼ା । କେବେ ଫେରେନି ଅବା ଓଲଟି ଚାହେଁନି । ଯେଉଁ ମୁହୂର୍ତ୍ତ ଥରେ ଯାଏ, ତାହା ଚିରଦିନ ପାଇଁ ଯାଏ । ଏହି କ୍ଷଣରେ ଯାହା ବର୍ତ୍ତମାନ, ପରକ୍ଷଣରେ ତାହା ଅତୀତ ।

ସାଧ୍ୱୀ ସୀତାଙ୍କ ପାତାଳପ୍ରବେଶ ପରେ ଶ୍ରୀରାମଚନ୍ଦ୍ର ଯେପରି ତାଙ୍କୁ ଫେରାଇ ଆଣିପାରନ୍ତିନି, ମହାରଥୀ ଅଭିମନ୍ୟୁ ରଣକ୍ଷେତ୍ରରେ ଶୋଇଗଲା ପରେ ମାତୁଳ ଗୋବିନ୍ଦ ଓ ପିତା ଧନଞ୍ଜୟ ମଧ୍ୟ ସେ ମୃତ୍ୟୁର ପୂର୍ବ ସମୟକୁ ଆଉ ଫେରାଇ ଆଣିପାରନ୍ତିନି ।

ଅସୀମ ସମୟ ମଧ୍ୟରେ ଜୀବନର ସମୟ ସୀମିତ । ସେହି ସୀମିତ ସମୟର ମୁହୂର୍ତ୍ତଗୁଡ଼ିକ ପୁଣି ଅଣବାହୁଡ଼ା । ଶୈଶବ ଥରେ ଗଲେ ଯେପରି ଆଉ ଫେରେନି, ଯୌବନ ମଧ୍ୟ ଥରେ ଗଲେ ଚିରଦିନ ପାଇଁ ଯାଏ – ବିରଳା, ଟାଟାଙ୍କ ସମସ୍ତ ଅର୍ଥରେ ମଧ୍ୟ ତାକୁ ଫେରାଇ ଆଣି ହୁଏନି । ସମୟର ମୂଲ୍ୟ ତେଣୁ ଅକଳନ । ସମୟର ମୂଲ୍ୟବୋଧ ହିଁ ପାଶ୍ଚାତ୍ୟ ପ୍ରଗତିର ମୂଳ ଭିତ୍ତି ।

ମନେହୁଏ ସୃଷ୍ଟିକର୍ତ୍ତା ନିଜେ ହିଁ ସମୟ – ନିଜେ ହିଁ କାଳ... 'କାଳୋଽସି, ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ...' ସେ ଯେତେବେଳେ ସୃଷ୍ଟି-ପ୍ରକ୍ରିୟା ଆରମ୍ଭ କରନ୍ତି, ସେ ହୁଅନ୍ତି ବ୍ରହ୍ମାରୂପୀ ସମୟ । ଆଉ ଯେତେବେଳେ ସେ ସୃଷ୍ଟିରେ ସଂହାର କାମନା କରନ୍ତି, ସେ ହୁଅନ୍ତି ମହେଶ୍ୱରରୂପୀ କାଳ ।

ସମୟର ସଦୁପଯୋଗ ହିଁ ସମୟର ଉପାସନା । ଆଉ ସମୟର ଉପାସନା ଭଗବତ୍-ଉପାସନା ।

# ଏକ ଓ ଅନେକ

ଏକକମାନଙ୍କ ସମଷ୍ଟି ହିଁ ଅନେକ । ତେଣୁ ଆକାର ଓ ପ୍ରକାରର ଭେଦ ସତ୍ତ୍ୱେ ଜ୍ଞାନୀମାନେ ଏକ ଓ ଅନେକ ମଧ୍ୟରେ କିଛି ଗୁଣାତ୍ମକ ପ୍ରଭେଦ ଦେଖନ୍ତି ନାହିଁ । ସେମାନଙ୍କ ଆଖିରେ ଜଳବିନ୍ଦୁ ଓ ସାଗର ଯେପରି ସମାନ, ସ୍ଫୁଲିଙ୍ଗ ଓ ଅଗ୍ନି, ରଶ୍ମି ଓ ସୂର୍ଯ୍ୟ, ଜୀବ ଓ ପରମ ସେପରି ସମାନ । ଐକ୍ୟର ସନ୍ଧାନୀ ଏହି ଜ୍ଞାନୀମାନେ କହନ୍ତି ଯେ ଅନେକରୁ ହିଁ ଏକର ସୃଷ୍ଟି । ତେଣୁ ସାଗର, ସାଗରରୁ ଉତ୍‌ଥିତ ଊର୍ମି ଓ ଊର୍ମିରୁ ବିକ୍ଷିପ୍ତ ଜଳକଣା ମଧ୍ୟରେ କୌଣସି ପ୍ରଭେଦ ନାହିଁ । ସେମାନେ ଏକକର ମାଧ୍ୟମରେ ଅନେକର ଯେପରି ସନ୍ଧାନ ପାଆନ୍ତି, ଅନେକର ମଧ୍ୟରେ ପ୍ରତ୍ୟେକ ଏକକର ଅସ୍ତିତ୍ୱ ମଧ୍ୟ ସେପରି ଉପଲବ୍ଧି କରନ୍ତି ।

ସାଧାରଣ ମଣିଷ କିନ୍ତୁ ଏକକ ଓ ସମଷ୍ଟି ମଧ୍ୟରେ ଆକାର ପ୍ରକାର ଭେଦ ସହ ଗୁଣାତ୍ମକ ପ୍ରଭେଦ ମଧ୍ୟ ଲକ୍ଷ୍ୟ କରେ । ଗୋଟିଏ ଚୁମ୍ବକକୁ ଆଉ ଗୋଟିଏ ଚୁମ୍ବକ ପାଖରେ ରଖିଲେ ସେ ଯେପରି ଆକର୍ଷିତ ଅଥବା ବିକର୍ଷିତ ହୁଏ, ସେପରି ଏକକ ପାଖରେ ଆଉ ଗୋଟିଏ ଏକକ ରଖିଲେ ପାରସ୍ପରିକ ପ୍ରତିକ୍ରିୟା ଫଳରେ ଦିଓଟି ଯାକ ଏକକର ଗୁଣାତ୍ମକ ପରିବର୍ତ୍ତନ ଘଟେ ଓ ସମ୍ମିଶ୍ରଣଟି ସବୁବେଳେ ଦୁଇ ନହୋଇ ବିଭିନ୍ନ ରୂପ ଧାରଣ କରେ । ଗୋଟିଏ ଗଧିଆ ପାଖରେ ଗୋଟିଏ ଛେଳିଛୁଆ ରଖିଲେ ସେ ଦୁହେଁ ମିଶି ଦୁଇଟି ପ୍ରାଣୀ ହୁଅନ୍ତି ନାହିଁ – କେବଳ ଗଧିଆ ହିଁ ଅବଶିଷ୍ଟ ରହେ । ଶହେ ରୋହି ଯାଆଁଳ ଛଡ଼ାହୋଇଥିବା ପୋଖରୀରେ ଶେଉଳଟିଏ ଛାଡ଼ିଦେଲେ ପୋଖରୀରେ ମାଛ ସଂଖ୍ୟା ୧୦୧ ନହୋଇ ଗୋଟିଏ ଶେଉଳରେ ହିଁ ପର୍ଯ୍ୟବସିତ ହୁଏ । ପାଚିଲା ଆମ୍ବଭରା ଟୋକେଇରେ ଗୋଟିଏ ସଢ଼ା ଆମ୍ବ ରଖିଦେଲେ ଟୋକେଇ ଯାକର ଆମ୍ବ ଶିଘ୍ର ସଢ଼ିଯାଏ ।

ଠିକ୍ ସେପରି ଦେଖାଯାଏ ଯେ ମଣିଷଗୋଷ୍ଠୀରେ ବ୍ୟକ୍ତି ଓ ବ୍ୟକ୍ତିର ମିଳନ ହେଲେ ପରସ୍ପର ଉପରେ ପରସ୍ପରର ପ୍ରଭାବ ପଡ଼େ । ତେଣୁ ଏକକମାନଙ୍କ ସମଷ୍ଟି ଅନେକ ହେଲେହେଁ ଅନ୍ୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଅନେକ ଭିତରେ ପ୍ରତ୍ୟେକ ଏକ ବେଳେ ବେଳେ ତାର ପୂର୍ବ ଗୁଣ ହରାଇବସେ – ଅନ୍ୟମାନଙ୍କ ବ୍ୟକ୍ତିତ୍ୱ ପାଖରେ ନିଜର ବ୍ୟକ୍ତିତ୍ୱ ଜଳାଞ୍ଜଳି ଦିଏ । ନିଜର ବିଚାର ଶକ୍ତି ହରାଇ ଅନ୍ୟର

ଗୋଡ଼ାଣିଆ ହୁଏ – ଗୋଟାଏ ମେଣ୍ଢା ପଛରେ ଅନ୍ୟ ମେଣ୍ଢାମାନେ ଗୋଡ଼ାଇ ଚାଲିଲା ପରି ଅନ୍ୟମାନେ ଯାହା କହନ୍ତି କିଛି ନବୁଝି ନସୁଝି ସେପରି କରେ ।

ଏ ସମ୍ବନ୍ଧରେ ଗୋଟିଏ ପୁରୁଣା ଜଣାଶୁଣା କାହାଣୀ ମନେପଡ଼େ ।

ପାହାନ୍ତିଆ ବେଳ । ରାଜ-ରଜକର ଘରେ କାନ୍ଦ-ବୋବାଳି ପଡ଼ିଛି । ବୋବାଳି ଭିତରୁ ଫୁଟିଉଠୁଛି ଧୋବଣୀର ବାହୁନା...

...ଯାହା ପାଇଁ ସେମାନେ ବଞ୍ଚିରହିଥିଲେ ସେହି ନାରାୟଣ ଏମାନଙ୍କୁ ସଙ୍ଗରେ ନନେଇ ସେପାରିକି ଚାଲିଯାଇଛି । ନାରାୟଣ ବିନା ସେମାନେ ବଞ୍ଚିବେ କିପରି ?

ନାରାୟଣର ଗୁଣ ବର୍ଣ୍ଣନା କଲାବେଳେ ଧୋବଣୀ ତାର ଛାତି ପିଟିବା, ବୁକୁ କୋଡ଼ିବା, କପାଳରେ କର ମାରିବା ଯିଏ ଦେଖୁଥାଏ ଆଉ ତାର ବିକଳ କାନ୍ଦଣା ଶୁଣୁଥାଏ, ସେ ଧୈର୍ଯ୍ୟ ଧରି ରହିପାରେ ନାହିଁ । ତା' ଆଖିରୁ ଲୁହଧାର ଗଡ଼ିଯାଏ ।

ଏପରି ଦୁଃଖବେଳେ ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବ, ସାଇ ପଡ଼ିଶା ପାଖରେ ଠିଆହେବା ସ୍ୱାଭାବିକ । ପାଖଆଖର ସମସ୍ତେ ଧୋବା ଧୋବଣୀଙ୍କୁ ସାନ୍ତ୍ୱନା ଦେବା ପାଇଁ ଜମାହୋଇଗଲେ । ସେମାନଙ୍କ ମଧ୍ୟରୁ କେହି କେହି 'କାନ୍ଦନା, କାନ୍ଦିଲେ କଣ ନାରାୟଣ ଆଉ ଫେରିଆସିବ – ଯିଏ ଗଲା ସିଏ ଗଲା' – 'ସଂସାରକୁ ଦେଖ' ପ୍ରଭୃତି କହି ସମବେଦନା ପ୍ରକାଶ କଲେ ତ ଆଉ ଅନେକ ଆବହମାନ କାଳରୁ ଚାଲିଆସିଥିବା ରୀତି ଅନୁଯାୟୀ କ୍ରନ୍ଦନରୋଳରେ ଯୋଗ ଦେଲେ ।

ପ୍ରାତଃ ଭ୍ରମଣରେ ଘୋଡ଼ା ପିଠିରେ ବସି ଯାଉଁ ଯାଉଁ ଏ ଲୋକଗହଳି ଦେଖି ଓ କାନ୍ଦଣା ଶୁଣି ମନ୍ତ୍ରୀ ଧୋବାଘରର ପାଖରେ ଅଟକିଗଲେ – ବୁଝିଲେ ନାରାୟଣ ମରିଯାଇଛି । ସେ ମଧ୍ୟ ତାଙ୍କ ଆଖିର ଲୁହ ସମ୍ଭାଳି ପାରିଲେନି । ରାଜାଙ୍କ ସଭାସଦ୍‌ବର୍ଗଙ୍କ ମଧ୍ୟରୁ ଅନେକଙ୍କର ସେହି ଦଶା ହେଲା ।

ଯଥାସମୟରେ ସଭାଗୃହରେ ରାଜା ଏ ଦୁଃଖପ୍ରଦ କାହାଣୀ ଶୁଣିଲେ । ଆଖି ତାଙ୍କର ଛଳଛଳ ହେଲା । ଧୋବଣୀର ବିଳାପ ଖବର ପହଞ୍ଚିବା ପରେ ଉଆସ ଭିତରେ ପୋଇଲୀ ପରିବାରୀମାନେ କାନ୍ଦିବାକୁ ଆରମ୍ଭ କଲେ ଓ କୋମଳ ହୃଦୟା କେତେ ରାଣୀ ମଧ୍ୟ ସେଥିରେ ଯୋଗଦେଲେ ।

ପଣ୍ଡିତଙ୍କ ଭିତରେ ବି ଜଣେ ଅଧେ ମୂର୍ଖ ପଣ୍ଡିତ ଥାଆନ୍ତି । ଏପରି ଜଣେ ମୂର୍ଖ ପଣ୍ଡିତ କଥା କିଛି ବୁଝିନପାରି ରାଜସଭାରେ ବସିଥିବା ପାଖ ପଣ୍ଡିତଙ୍କୁ ପଚାରିଲେ, 'ଏ ନାରାୟଣଟି କିଏ ?' ପଣ୍ଡିତ ନିଜେ ସେ କଥା ଜାଣିନଥିଲେ – କିନ୍ତୁ ଅଜ୍ଞତା ରାଜସଭାରେ ସୂଚାଇଦେବେ ବା କିପରି ? ପ୍ରଶ୍ନକର୍ତ୍ତାଙ୍କୁ ଏପରି ପ୍ରଶ୍ନ ସବୁ ରାଜସଭାରେ ନପଚାରିବାକୁ ପରାମର୍ଶ ଦେଲେ; ଆଉ କିଛି ଫଳ ନ ହେବାରୁ ବାଧ

ହୋଇ ତାଙ୍କ ପାଖ ପଣ୍ଡିତଙ୍କୁ ଏ କଥା ପଚାରିଲେ । ଜଣେ ଆଉ ଜଣକୁ ପଚାରିଲା – ଶେଷରେ ରାଜା ପଚାରିଲେ ମନ୍ତ୍ରୀଙ୍କୁ । ମନ୍ତ୍ରୀ ପଚାରିଲେ କଟୁଆଳଙ୍କୁ । ଆଉ କଟୁଆଳ ପଚାରିଲେ ପ୍ରହରୀଙ୍କୁ । ନାରାୟଣ କିଏ କୌଣସି ପ୍ରହରୀ ବି କହିପାରିଲେନି । ରାଜ-ରଜକର ପୁଅ ନାହିଁ ସେ କଥା ସମସ୍ତଙ୍କୁ ଜଣା ।

ରାଜା ଆଦେଶ ଦେଲେ – ମନ୍ତ୍ରୀ ଆଦେଶ ଦେଲେ – ଆଦେଶ ଦେଲେ ନଗରରକ୍ଷକ ।

ପ୍ରହରୀମାନେ ଦଉଡ଼ିଗଲେ ଧୋବାଘରକୁ ଜଣକ ପଛକୁ ଜଣେ । ସାନ୍ତ୍ୱନା ଦେବାପାଇଁ ଜମା ହୋଇଥିବା କେହି କିନ୍ତୁ ସେ ନାରାୟଣଟି କିଏ କିଛି କହିପାରିଲେନି । ଶେଷରେ ସେ ଧୋବାକୁ ହିଁ କାନ୍ଦ ବନ୍ଦ କରି କହିବାକୁ ପଡ଼ିଲା । ଖବର ଆସିଲା ଯେ ଧୋବାର ଗଧ 'ନାରାୟଣ' ରାତିରେ ମରିଯାଇଛି – ପେଟଫୁଲା ରୋଗରେ । ସେଇ ଗଧର ପିଠିରେ ଲଦି ଧୋବା ରାଜାଙ୍କ ପୋଷାକ-ପରିଚ୍ଛଦ ଉଆସକୁ ଆଣୁଥିଲା ।

କିଛି ନବୁଝି ଓ ଫଳାଫଳ ସମ୍ବନ୍ଧରେ କିଛି ନବିଚାରି ଅନ୍ୟମାନେ କରୁଛନ୍ତି ବୋଲି କେବଳ ଯନ୍ତ୍ରବତ୍ ସେପରି କରିବସିବା ରୋଗ ଆଜିକାଲି ଆମ ସମାଜର ସବୁ ସ୍ତରରେ ବ୍ୟାପିଯାଇଛି । ଗୋଷ୍ଠୀ ଭିତରେ ବ୍ୟକ୍ତି ଧୀରେ ଧୀରେ ତାର ନିଜ ସତ୍ତା ହରାଇବସିଛି ।

ଭାରତୀୟ ସଂସ୍କୃତି ଓ ପରମ୍ପରା ଚିରଦିନ ବ୍ୟକ୍ତିଗତ ସ୍ୱାଧୀନତାକୁ ପ୍ରାଧାନ୍ୟ ଦେଇ ଆସିଥିଲା । ଫଳରେ ଏହି ବିରାଟ ପୃଥିବୀ ମଧ୍ୟରେ କେବଳ ଆମ ଦେଶରେ ହିଁ ଗୋଟିଏ ପରିବାର ମଧ୍ୟରେ ଆସ୍ତିକ, ନାସ୍ତିକ, ଶୈବ, ବୈଷ୍ଣବ, ଶାକ୍ତ ପ୍ରଭୃତି ବିଭିନ୍ନ ଧର୍ମବିଶ୍ୱାସୀ ଓ ଅବିଶ୍ୱାସୀଙ୍କ ସହାବସ୍ଥାନ ଦେଖାଯାଏ । ଖ୍ରୀଷ୍ଟିଆନ୍‌ମାନଙ୍କ ମଧ୍ୟରେ ଯେପରି ପ୍ରତ୍ୟେକ ରବିବାରରେ ଆଉ ମୁସଲମାନମାନଙ୍କ ମଧ୍ୟରେ ପ୍ରତ୍ୟେକ ଶୁକ୍ରବାରରେ ଗିର୍ଜା ଓ ମସ୍‌ଜିଦ୍‌କୁ ଯିବାର ନିୟମ ଅଛି, ଭାରତୀୟ ସନାତନଧର୍ମର ପରମ୍ପରାରେ ଏପରି କୌଣସି ଧରାବନ୍ଧା ନିୟମ ନାହିଁ । ଖାଇବା ପିଇବା, ବେଶଭୂଷା, ଢଙ୍ଗରଙ୍ଗ, ଚାଲିଚଳଣ ସବୁଥିରେ ଏହି ବ୍ୟକ୍ତିଗତ ସ୍ୱାଧୀନତା ଫୁଟିଉଠେ । ଧୋତି, ଲୁଙ୍ଗି, ଲେଙ୍ଗୁଟିଠାରୁ ଆରମ୍ଭ କରି ନଙ୍ଗା ବାବା ପର୍ଯ୍ୟନ୍ତ ଆମ ଦେଶରେ ଦେଖାଯାଆନ୍ତି । କିଏ ଲଣ୍ଡିତ ମସ୍ତକ ତ, କାହା ମୁଣ୍ଡରେ ବିରାଟ ଜଟାଭାର । କିଏ ଖାଲି ପାଦରେ ଚାଲିଛି ତ କିଏ କଠଉ ପାଦରେ, ଆଉ କିଏ ଚପଲ ମାଡ଼ି ଅଥବା ଜୋତା ପିନ୍ଧି । କିଏ ଭାତ ଖାଉଛି ତ କିଏ ଖାଉଛି ପଖାଳ, ମାଣ୍ଡିଆ ଜାଉ, ବୁଟଛତୁ, ରୁଟି ଅବା ତନ୍ଦୁରି । ଅନ୍ୟ ଦେଶମାନଙ୍କ ପରି ଆମ ଦେଶର ସମାଜ କଠୋର ଶୃଙ୍ଖଳାବଦ୍ଧ ନୁହେଁ । ଆମ ସଂସ୍କୃତି ବିଶ୍ୱାସ କରେ ଯେ ପ୍ରତ୍ୟେକ ମଣିଷ ଗୋଟିଏ

ଗୋଟିଏ ସ୍ୱୟଂ-ସମ୍ପୂର୍ଣ୍ଣ ଏକକ, ନିଜ ନିଜ ବାଟରେ ଆଗେଇ ଚାଲିଛନ୍ତି, ଆଉ କୌଣସି ମୁହୂର୍ତ୍ତରେ କିଏ କୋଉଠି ପହଞ୍ଚୁଛନ୍ତି । ଏ ଦେଶରେ ମଣିଷ ତେଣୁ ନିଜ ସ୍ୱାଧୀନ ସ୍ଥିତି ଓ ବ୍ୟକ୍ତିତ୍ୱ ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତନ । ତେଣୁ ସେ ଗୁରୁ ବ୍ୟତୀତ ଅନ୍ୟ କାହାରି ଗୋଡ଼ାଣିଆ ହୁଏନି । ସେ ଭଲ କରି ବୁଝେ ଯେ ଜୀବଜଗତରେ କେବଳ ମଣିଷ ହିଁ ଚିନ୍ତା କରିପାରେ; ଆଉ ଚିନ୍ତା କରିପାରେ ବୋଲି ହିଁ ସେ ସ୍ରଷ୍ଟାର ସର୍ବଶ୍ରେଷ୍ଠ ସୃଷ୍ଟି ।

ଏପରି ପରମ୍ପରାରେ ଯେ କୌଣସି ଗୋଷ୍ଠୀ ମଧ୍ୟରେ ବ୍ୟକ୍ତି ତା'ର ବ୍ୟକ୍ତିତ୍ୱ ନହରାଇବା ହିଁ ସ୍ୱାଭାବିକ । ତେଣୁ ଆଜିର ଏ ଗର୍ଦ୍ଦଭ ନାରାୟଣର ମୃତ୍ୟୁରେ ସମଗ୍ର ସମାଜର ଅବୁଝା କ୍ରନ୍ଦନ ବୁଝିହୁଏନି । ସବୁଠାରେ ସେହି ଏକା ଦୃଶ୍ୟ । ମୁଷ୍ଟିମେୟ କେତେଜଣ ଗୋଷ୍ଠୀକୁ କେଉଁ ଏକ ଅଜଣା ପଥରେ କଢ଼ାଇ ନେଉଛନ୍ତି । ମନ୍ତ୍ରମୁଗ୍ଧ ପରି ଗୋଷ୍ଠୀ ଚାଲିଛି ବ୍ୟକ୍ତି ପଛରେ । ଦୁଇ ଚାରିଜଣ ହାତମୁଠା ଟାଣ କରି ସ୍ଲୋଗାନ ଦେଉଛନ୍ତି, ଆଉ ପଛରେ ଚାଲିଛନ୍ତି ନୀରବ କିମ୍ବା ସରବ ଜନତା – ବିରାଟ ପଟୁଆରରେ ଠିକ୍ ମେଣ୍ଢାପଲ ପରି – କିଛି ବୁଝୁନଥିଲେ ମଧ୍ୟ ବୁଝୁଥିବାର ଛଳନା କରି ।

ବ୍ୟକ୍ତି-ସର୍ବସ୍ୱ ଏ ଦେଶରେ ଏକଥା ସମ୍ଭବ ହେଲା କିପରି ଠିକ୍ ବୁଝିହୁଏନି । ଫଳରେ ଆଜି ଏପରି ଏକ ଅସ୍ଥିରତା ଦେଖାଦେଇଛି, ଯା'ର ସମାଧାନର ପନ୍ଥା ଖୋଜି ବାହାର କରିବା ସହଜ ନୁହେଁ । ଚାରିଆଡ଼େ ନାନା ରକମର ଦାବି ଉଠୁଛି । ଅଧିକାଂଶ ଦାବି ପଛରେ କେବଳ ଭାବପ୍ରବଣତା ଭରିରହିଛି – ଯୁକ୍ତିଯୁକ୍ତତା ନାହିଁ ।

ସମାଜବାଦର ଦ୍ୱାହି ଦେଇ ଜନକଲ୍ୟାଣ ସଂସ୍ଥାମାନଙ୍କର ଜାତୀୟକରଣ ନିମନ୍ତେ କେହି କେହି ଆହ୍ୱାନ ଦେଉଛନ୍ତି । ଜାତୀୟକରଣ ହେଉଛି । ତା'ପରେ ଆରମ୍ଭ ହେଉଛି ବୋନସ୍ ତଥା ସୁଖ-ସ୍ୱାଚ୍ଛନ୍ଦ୍ୟର ଦାବି ଓ ଧର୍ମଘଟ । ସଂସ୍ଥା ସବୁ ଘନ ଘନ ବନ୍ଦ ହୋଇଯାଉଛି – ଲାଭର ଦେଖା-ଦର୍ଶନ ନାହିଁ । ଲାଭ ବିନା ବୋନସ୍ ଦିଆହେବ କିପରି ? ପୁଣି ଚାଲୁଛି ଶ୍ରମିକ-ଧର୍ମଘଟ ।

କୃଷକ ଦାବି କରୁଛି ଜଳସେଚନର ସୁବିଧା । ପାଣି ଯେତେବେଳେ ଯୋଗାଇ ଦିଆଯାଉଛି, ନେତା ଡାକରା ଦେଉଛନ୍ତି କଳ-ଖଜଣା ନ ଦେବା ପାଇଁ । ଅର୍ଥ ବିନା ନୂଆ ଯୋଜନା କାର୍ଯ୍ୟକାରୀ ହେବ କେମିତି ?

ଛାତ୍ର-ଧର୍ମଘଟ ଯୋଗୁଁ ପାଠ୍ୟକ୍ରମ ସରିପାରୁନି । ପାଠ୍ୟକ୍ରମ ସରିନି ବୋଲି ଦାବି ହେଉଛି ଯେ ପରୀକ୍ଷା ଘୁଞ୍ଚୁ, ଆଉ ପରୀକ୍ଷା ଘୁଞ୍ଚିଲେ ଦାବି ହେଉଛି ଫଳ ଶୀଘ୍ର ବାହାରୁ । ପରୀକ୍ଷା ପୂର୍ବରୁ ଫଳ ବାହାରିବ ବା କିପରି ? ସେପରି ଦାବି ହେଉଛି ଯେ

ବସ୍ ସବୁ ଘନ ଘନ ଚାଲୁ – କିନ୍ତୁ ଟିକଟ କାଟିବାକୁ କେହି ପ୍ରସ୍ତୁତ ନୁହନ୍ତି । କେଣ୍ଟିନ୍ ଖୋଲିବା ପାଇଁ ଦାବି, ତା' ସାଙ୍ଗକୁ ଦାବି ଯେ ଚା' ଜଳଖିଆ ଉଧାର ମିଳୁ ।

ଶିକ୍ଷିତ ଜନତା ଚାହେଁ ଯେ ଦେଶରେ କେହି ଭୋକିଲା ନ ରହନ୍ତୁ; କିନ୍ତୁ ସେହି ପୁଣି ଦାବି କରେ ଯେ ସମସ୍ତଙ୍କ ବେତନ ବଢୁ – ସରକାରୀ କର୍ମଚାରୀମାନେ ସବୁ ଧନ ନିଜ ଭିତରେ ବାଣ୍ଟି କୁଣ୍ଟି ନିଅନ୍ତୁ ।

ଶିକ୍ଷକ ଚାହେଁ ଯେ ସେ ସମାଜର ସର୍ବଶ୍ରେଷ୍ଠ ଓ ସର୍ବମାନ୍ୟ ହେଉ; କିନ୍ତୁ ସେ ନିଜ ମରଜି ଅନୁସାରେ କାମ କରୁ – ସମସ୍ତେ ତା ପ୍ରତି ତାଙ୍କର କର୍ତ୍ତବ୍ୟ କରନ୍ତୁ – କିନ୍ତୁ ତା' ନିଜର କର୍ତ୍ତବ୍ୟ ବୋଲି କିଛି ନରହୁ ।

ଏ ସବୁ ଭିତରର ପରସ୍ପରବିରୋଧୀ ଯୁକ୍ତିମାନ ପ୍ରତ୍ୟେକ ବ୍ୟକ୍ତିକୁ ଜଳଜଳ ଦିଶେ; କିନ୍ତୁ ଗୋଷ୍ଠୀ ଭିତରେ ବ୍ୟକ୍ତି ନିଜ ସ୍ୱାଧୀନ ଚିନ୍ତା ବ୍ୟକ୍ତ କରିବାକୁ ଚାହେଁନି ଅଥବା ସାହସ କରେନି – ପୁରୁଷକାର ଉପରେ ମନ୍ତବ୍ୟ ପ୍ରକାଶ ପାଇବା ଭୟରେ ଅଥବା ଶାଢ଼ି ଚୂଡ଼ି ପାର୍ଶଲ ମିଳିବା ଡରରେ । ମୁଷ୍ଟିମେୟ କେତେଜଣ ଗୋଷ୍ଠୀକୁ ଭେଳିକି ଲଗାଇଦିଅନ୍ତି ।

ଆଜିର ଏ ପରିସ୍ଥିତିରେ ଚୋର ନିଜେ ଚୋରି କରି 'ଚୋର ଚୋର' ବୋଲି ପାଟିକରୁଛି, ଆଉ ସେ ଡାକ ଶୁଣି ଅନ୍ୟମାନେ 'ଚୋର ଚୋର' ବୋଲି ରଡ଼ି ଛାଡୁଛନ୍ତି ସତେ ଯେମିତି ନିଦବାଉଳାରେ । ନିଜେ ଚୋର ସମସ୍ତଙ୍କୁ ଆଙ୍ଗୁଠି ଦେଖାଇ କହୁଛି 'ହେଇ ସେ ବାଟରେ ଚୋର ଦଉଡ଼ି ଚାଲିଗଲା...' ।

କୌଣସି ସରକାରୀ ଗୋଷ୍ଠୀ କିମ୍ବା ବେସରକାରୀ ଗୋଷ୍ଠୀ ଯେ ଏ ବ୍ୟାଧିରେ ବ୍ୟାଧିଗ୍ରସ୍ତ ତାହା ନୁହେଁ – ଏହା ଏବେ ଏକ ସାମାଜିକ ବ୍ୟାଧିରେ ପରିଣତ ହୋଇଛି । ଏ ବ୍ୟାଧିର ନିରାକରଣ ନ ହେଲେ ଦେଶର ପ୍ରଗତି ଅସମ୍ଭବ ।

ସମାଜର ଏ ବ୍ୟାଧି ଦୂର କରିବା ନିମନ୍ତେ କେବଳ ଶିକ୍ଷକ ଓ ଛାତ୍ରସମାଜ ହିଁ କ୍ଷମ । ଆଜିର ଛାତ୍ର କାଲିର କର୍ମଚାରୀ – ଆଜିର ଛାତ୍ର-ଜନତା କାଲିର ମନ୍ତ୍ରୀ । କିନ୍ତୁ ମନେହୁଏ ଯେ ଶିକ୍ଷକ ଓ ଛାତ୍ରସମାଜ ହିଁ ଏ ବ୍ୟାଧିରେ ସବୁଠାରୁ ବେଶି ବ୍ୟାଧିଗ୍ରସ୍ତ ।

# ମଣିଷ-ଦୁଇ

(ବି:ଦ୍ର: କେହି କେହି ସଜ୍ଜନ 'ମଣିଷ-ଦୁଇ'କୁ ଦୁଇ ମଣିଷ ବୋଲି ଭାବି ବିଷୟବସ୍ତୁଟି ରାଧା-କୃଷ୍ଣ, ସୀତା-ରାମ କିମ୍ବା ଶିବ-ପାର୍ବତୀ ସମ୍ବନ୍ଧୀୟ, ନତୁବା ବୁଦ୍ଧ ଓ ଯୀଶୁ, ଶିବାଜୀ ଓ ରାଣା ପ୍ରତାପ, ଗାନ୍ଧୀ ଓ ଜବାହର, ନ ହେଲେ ଗୋପବନ୍ଧୁ ଓ ମଧୁସୂଦନ ସମ୍ବନ୍ଧୀୟ ବୋଲି ବିବେଚନା କରିପାରନ୍ତି । ପୁଣି କେହି କେହି ଖଳପୁରୁଷ ଏହି 'ମଣିଷ-ଦୁଇ'କୁ ମଣିଷର ଦୁଇ ଅଥବା ମଣିଷ ଭିତରେ ଥିବା 'ଦୁଇ' ବୋଲି ଜ୍ଞାନ କରି ମଣିଷ ଓ ତା'ର ଡ଼ାଳ କିମ୍ବା ମଣିଷ ଓ ତା'ର ଶୌଚାଗାର ବୋଲି କଳ୍ପନା କରିପାରନ୍ତି । ପ୍ରବନ୍ଧପଠନର ଅନ୍ତେ ପଠନ ପୂର୍ବର ସମସ୍ତ ସଞ୍ଚିତ ଆଶା ଭଗ୍ନୁର ହୋଇଯାଇଥିବା ଦେଖି ସେ ସମସ୍ତେ ହତାଶ ହେବା ସମ୍ଭାବନା ରହିଛି । ତେଣୁ ସେପରି ହତାଶା ଦୂରୀକରଣ ଉଦ୍ଦେଶ୍ୟ ନେଇ ବିଷୟବସ୍ତୁର ଅବତାରଣା କରିବା ପୂର୍ବରୁ ବିଦଗ୍ଧ ପାଠକଙ୍କ ଅବଗତି ନିମନ୍ତେ ତଥା ସେମାନଙ୍କ ସଂଶୟ ମୋଚନାର୍ଥେ ଏହି ସ୍ପଷ୍ଟୀକରଣ କରିଦିଆଯାଉଛି ଯେ 'ମଣିଷ-ଦୁଇ'ର ଅର୍ଥ ମଣିଷ ସମ୍ବନ୍ଧରେ ଏକ ପ୍ରବନ୍ଧ'ର ଦ୍ୱିତୀୟ-ଭାଗ । – ଲେଖକ)

ପୂର୍ବରୁ କୁହାଯାଇଅଛି ଯେ ମଣିଷ ଏକ ଅଦ୍ଭୁତ ଜନ୍ତୁ ଏବଂ ସାଧାରଣତଃ ସେ ଦେଖିବାକୁ ଗୋଟିଏ ଥୁଣ୍ଟାଗଛ ପରି । ଏହା ମଧ୍ୟ କୁହାଯାଇଛି ଯେ ସାମାନ୍ୟ କେତେ ପ୍ରାଣୀଙ୍କୁ ଛାଡ଼ିଦେଲେ ସୃଷ୍ଟିର ସମସ୍ତ ପ୍ରାଣୀ ବିନମ୍ରତାର ସହ ହାମୁଡ଼େଇ ଚାଲୁଥିଲାବେଳେ ମଣିଷ ଆକାଶକୁ ଫଣା ଟେକି ଚାଲେ ଓ 'ମୁଁ-ମୁଁ' ବୋଲି ଗରଜୁଥାଏ । କୌଣସି ନିରୀହ ପ୍ରାଣୀ ଏପରି ଏକ ଜନ୍ତୁକୁ ଗୋଟିଏ ଥୁଣ୍ଟାଗଛ ବୋଲି ଭାବି ତା'ର ଅତି ନିକଟକୁ ଚାଲିଗଲେ ବିପଦର ଆଶଙ୍କା ରହିଥିବା ଦୃଷ୍ଟିରୁ ମଣିଷକୁ ଉତ୍ତମରୂପେ ଚିହ୍ନାଇଦେବା ଉଦ୍ଦେଶ୍ୟରେ ଇତିପୂର୍ବରୁ ତା'ର ଅବୟବସମୂହର ବର୍ଣ୍ଣନା କରାଯାଇଥିଲା ଏବଂ ମଣିଷକୁ ଭଲ କରି ନ ଜାଣିବା ପର୍ଯ୍ୟନ୍ତ ହୁସିୟାର ହୋଇ ଚଳିବା ନିମନ୍ତେ ସମସ୍ତଙ୍କୁ ଯଥାବିଧି ସତର୍କ ମଧ୍ୟ କରିଦିଆଯାଇଥିଲା । ବିଶେଷ ପର୍ଯ୍ୟାଲୋଚନା କଲେ କିନ୍ତୁ ଦେଖିବାକୁ ମିଳେ ଯେ ସାମାନ୍ୟ କେତୋଟି ଅବୟବମାନଙ୍କର ସମ୍ୟକ୍ ନିରୀକ୍ଷଣ ଦ୍ୱାରା କୌଣସି ପ୍ରାଣୀକୁ ଯଥାର୍ଥ ରୂପରେ ଚିହ୍ନିବା ଆଶା କେବଳ ଯେ ବିଡ଼ମ୍ବନା ତା' ନୁହେଁ, ସେପରି ବିଶ୍ୱାସ ଭ୍ରମ ଏବଂ ପ୍ରମାଦପୂର୍ଣ୍ଣ ମଧ୍ୟ ।

ଶୁଣିବାକୁ ମିଳେ ଯେ କେହି ଜଣେ ଭଦ୍ରଲୋକ ହାତୀର ଗୋଡ଼କୁ ଛୁଇଁ ହାତୀ ଦେଖିବାକୁ ଖମ୍ବ ପରି ବୋଲି କହିଦେଲେ । ଅନ୍ୟ ଜଣେ ହାତୀର କାନ ଆଉଁସି ହାତୀ କୁଲା ପରି କହିଲାବେଳକୁ ଶୁଣ୍ଢ ସାଉଁଟିଥିବା ଆଉ ଜଣେ ଭଦ୍ରଲୋକ ହାତୀ ଅଜଗର ସାପ ପରି ବୋଲି ଜିଦ୍ ଧରି ବସିଲେ । କହିବା ବାହୁଲ୍ୟ ଯେ ଏତଦ୍ୱାରା ସେ ସମସ୍ତଙ୍କ ମଧ୍ୟରେ ଅଯଥା କଳହର ସୂତ୍ରପାତ ହୋଇଥିଲା । କେବଳ କେତେକ ଅବୟବକୁ ନିରେଖି କୌଣସି ପ୍ରାଣୀକୁ ମଣିଷ ବୋଲି କହିଦେଲେ ସେପରି ଅବସ୍ଥାର ପୁନରାବୃତ୍ତି ଯେ ନ ହେବ, ସେ କଥା କିଏ କହିବ ? ତେଣୁ ଏହା ସୁନିଶ୍ଚିତ ଯେ ମଣିଷକୁ ନିର୍ଭୁଲ ରୂପରେ ଚିହ୍ନିବା ନିମନ୍ତେ କେବଳ ତାର ବାହ୍ୟ ରୂପକୁ ନ ଦେଖି ତା'ର ଅନ୍ତରର ସ୍ୱରୂପକୁ ମଧ୍ୟ ନିରୀକ୍ଷଣ କରିବାକୁ ପଡ଼ିବ ।

ଜ୍ଞାନୀମାନେ କହନ୍ତି ଯେ, ଏ ସଂସାର ଗୋଟିଏ ଖେଳଘର ଓ ତହିଁରେ ସମସ୍ତେ ନାନା ରକମର ଖେଳ ଖେଳୁଛନ୍ତି – କେବେ ଦଳ ଦଳ ହୋଇ ଅଥବା କେବେ ବ୍ୟକ୍ତିଗତ ଭାବରେ । ଏମାନଙ୍କ ମତ ଯେ କେତେ ଖେଳାଳି ହାରଜିତ୍‌କୁ ସମାନ ଆଖିରେ ଦେଖି ଖେଳର ନିୟମକାନୁନ୍ ମାନି ଖେଳୁଥିବାବେଳେ କୌଣସିମତେ ଜିଣିବା ଉଦ୍ଦେଶ୍ୟ ନେଇ ଖେଳୁଥିବା ଅନ୍ୟ କେହି ଖେଳାଳି କେବଳ ଅନ୍ୟମାନଙ୍କର ଗୋଡ଼ ଟାଣିବାରେ ଲାଗିଯାଉଛନ୍ତି । ଭଲ ହେଉ ଅଥବା ମନ୍ଦ ହେଉ ଏସବୁ କିନ୍ତୁ ଗୋଟିଏ ଗୋଟିଏ ଖେଳ ।

ଆଉ କେହି ଜ୍ଞାନୀ କହନ୍ତି ଯେ ଏ ସଂସାର ଗୋଟିଏ ରଙ୍ଗମଞ୍ଚ ଓ ସେ ମଞ୍ଚରେ ସମସ୍ତେ ଅଭିନୟ କରିଚାଲିଛନ୍ତି – କିଏ ନାୟକ, କିଏ ନାୟିକା, କିଏ ଖଳନାୟକ, କିଏ ମୃତସୈନିକ ଭାବରେ । କିଏ ଅବା ଖାଲି ନେପଥ୍ୟରେ କୋଳାହଳ କରୁଛି । ସେମାନଙ୍କ ମତ ଯେ ଏହି ଅଭିନେତା ଓ ଅଭିନେତ୍ରୀମାନେ ନିଜ ନିଜ ଅଭିନୟ ଯଥା ସମୟରେ ଶେଷ କରି ସେମାନଙ୍କ ପୂର୍ବ-ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କୁ ବାହୁଡ଼ିଯିବେ । କେବଳ ଫାଇନାଲ୍ ଖେଳ ତଥା ସର୍ବଶେଷ ନାଟକ ଅଭିନୀତ ହେବା ପୂର୍ବରୁ ଏହି ଖେଳାଳି ଏବଂ ଅଭିନେତା ଅଭିନେତ୍ରୀ ଦଳ କ୍ଷଣିକ ବିଶ୍ରାମ ନିମନ୍ତେ ନିଜ ନିଜ ଘର ବୋଲାଉଥିବା ପାନ୍ଥନିବାସମାନଙ୍କୁ କିଛି ସମୟ ପାଇଁ ଫେରିଆସନ୍ତି ଯାହା ।

ଖେଳ ଖେଳିବା ପାଇଁ ଏ ଖେଳାଳିମାନେ ଅଥବା ଅଭିନୟ କରିବା ନିମନ୍ତେ ଏ ନାଟୁଆଦଳ କେଉଁଠୁ ଆସୁଥିଲେ ଓ ଖେଳ କିମ୍ବା ଅଭିନୟ ସରିଲା ପରେ ସେମାନେ ଠିକ୍ କେଉଁଠିକି ବାହୁଡ଼ିଯିବେ, ସେ ବିଷୟରେ ଏଥିରେ କୌଣସି ନିର୍ଦ୍ଦିଷ୍ଟ ଇଙ୍ଗିତ ନ ଥିଲେ ମଧ୍ୟ ଏ ଉକ୍ତିମାନଙ୍କରୁ ମଣିଷ ସମ୍ବନ୍ଧରେ କେତେକ ଗୁରୁତ୍ୱପୂର୍ଣ୍ଣ ସୂଚନା ମିଳେ ।

ସମସ୍ତେ ଯଦି ଅଭିନୟ କରୁଛନ୍ତି, ତେବେ ଯିଏ କିରିକିରି ହସି ଦାନ୍ତ ଦେଖାଉଛି, ଯିଏ ବିରାଟ ପ୍ରାସାଦର କୋଠରୀ ଭିତରେ ନ୍ୟସ୍ତ ହୋଇଥିବା ଗଦି ଏବଂ ତକିଆରେ

ଅନ୍ତୁଲ ପେଟ ଲଦି ମୁଣ୍ଡ ଟୁଙ୍ଗାରୁଛି, ଯିଏ ଆଖି ତରାଟି ବାହାସ୍ଫୋଟ ମାରି ନିଶ ମୋଡୁଛି, ଯିଏ ହାତ ପତାଇ ଭିକ ମାଗୁଛି, ଯିଏ ମନ୍ତ୍ରୀ ହୋଇ ଫୁଲମାଳ ପିନ୍ଧି ମୁରୁକି ହସୁଛି, ଅଥବା ଯିଏ ଯୁବନେତା ବନି ଠିଆ ଠାଣି ଦେଖାଉଛି, ସେ ସମସ୍ତେ ନାଟକର ଗୋଟିଏ ଗୋଟିଏ ଚରିତ୍ର – ନିଜ ନିଜ ଭୂମିକା ଉପଯୋଗୀ ବେଶ ପିନ୍ଧି ଅଭିନୟ କରିଚାଲିଛନ୍ତି । ସେମାନେ ଯେପରି ଦିଶୁଛନ୍ତି ହୁଏତ ପ୍ରକୃତରେ ସେପରି ନୁହନ୍ତି । ଯିଏ ବାହାର-ଦେଖାଣିଆ ହସୁଛି, ହୋଇପାରେ ସିଏ ଭିତରେ ଭିତରେ କାନ୍ଦୁଛି । ଯିଏ ରାଜା ଦୁର୍ଯ୍ୟୋଧନ ଅଥବା ଗନ୍ଧର୍ବ ଚିତ୍ରସେନ ସାଜିଛି, ତା’ ଘରେ ହୁଏତ ଖାଇବା ପାଇଁ ପଖାଳ ଗଣ୍ଡିଏ ନାହିଁ । ଯିଏ ମହାରଥୀ କର୍ଣ୍ଣର ଢଙ୍ଗ କାଢୁଛି, ସିଏ ହୁଏତ ସତରେ ଏକ ଡରକୁଳା – ‘ହେଇ ଆସିଲା’ କହି ତାଳି ମାରିଦେଲେ ଦୀର୍ଘ ଲମ୍ଫ ପ୍ରଦାନକରି ଏକାଡ଼ିଆଁରେ ନଈ ନାଳ ଡେଇଁ ପଳାୟନ କରିବ । ଯିଏ ରମ୍ଭା ଅପ୍ସରୀ ପରି ରୂପରେ ଆଖି ଝଲସାଇ ଦେଉଛି, ହୋଇପାରେ ସେ ଏକ ମହାକାଳ ଫଳ – ‘ଚିରି ଭିତରେ ଦେଖ କି ନାରଖାର’, ଆଉ ‘ଶୁକ୍ଳକେଶ ଅଟେ ଯାର ଶିର’ ଭଦ୍ରଲୋକ ହୁଏତ ମୂଳରୁ ହିଁ ବୃଦ୍ଧ ନୁହନ୍ତି ।

ଏଥିରୁ ସନ୍ଦେହ ଜନ୍ମେ ଯେ ଯିଏ ମଣିଷ ପରି ଦିଶୁଛି, ସେ ପ୍ରକୃତରେ ମଣିଷ ନ ହୋଇ ମଣିଷ ପରି ଅଭିନୟ କରୁଥିବା ଅନ୍ୟ କୌଣସି ଜନ୍ତୁ ମଧ ହୋଇପାରେ ।

ଜନ୍ତୁମାନଙ୍କ ଅଭିନୟ ସମ୍ବନ୍ଧରେ ଅନେକ ଜଣାଶୁଣା ଉଦାହରଣ ରହିଛି । ଥରେ ମେଣ୍ଢାଛାଲ ପିନ୍ଧି ଗୋଟିଏ ଗଧିଆ ମେଣ୍ଢାବେଶରେ ମେଣ୍ଢାଶାଳରେ ପଶିଥିଲା । ଏକ ହାତରେ କମଣ୍ଡଳୁ ଏବଂ ଅନ୍ୟ ହାତରେ ରୁଦ୍ରାକ୍ଷମାଳା ଧରି ବୈଷ୍ଣବଧର୍ମରେ ଦୀକ୍ଷିତ ବୋଲି ନିଜକୁ ପରିଚିତ କରାଉଥିବା ବିରାଡ଼ି ପହଞ୍ଚିଥିଲା ଅଶ୍ୱତ୍ଥ ବୃକ୍ଷର ପକ୍ଷୀଶାବକମାନଙ୍କ ତତ୍ତ୍ୱାବଧାନରେ ରହିଥିବା ଜରଦ୍‌ଗବ ଗୃଧ୍ର ପାଖରେ । ଗଳିତ-ନଖଦନ୍ତ ଧର୍ମପରାୟଣ ବ୍ୟାଘ୍ର ଶୀତଦିନର ପ୍ରଭାତରେ ସୂର୍ଯ୍ୟପ୍ରଣାମ କରିବା ଉଦ୍ଦେଶ୍ୟରେ ପାଣି ଭିତରେ ଠିଆହୋଇ ରହି ବାଘ ମଣିଷ ଖାଏ ବୋଲି ପ୍ରଚଳିତ ଲୋକାପବାଦ ସତ୍ତ୍ୱେ ବ୍ରାହ୍ମଣ ମଣିଷକୁ ତା’ର ସୁନା କଙ୍କଣ ଯାଚିଥିଲା । ଆଉ କୌଣସି ଏକ କୁକୁର କେଉଁ ଗୋଟିଏ ରାଜ୍ୟର ଅଧୀଶ୍ୱର ହେଲା ପରେ ମଧ ରାଜମୁକୁଟ ପିନ୍ଧି ସିଂହାସନରେ ବସି ସମସ୍ତଙ୍କ ସମ୍ମୁଖରେ ଆପଣାର ଉପାନହ ଚୋବାଇଥିଲା ।

ଅନ୍ୟ ପକ୍ଷରେ ମଣିଷ ଯେ ବେଳେ ବେଳେ ଅନ୍ୟ ଜନ୍ତୁମାନଙ୍କ ପରି ବ୍ୟବହାର କରେ ସେ କଥା ମଧ ଜଣାଶୁଣା । ସେଥିପାଇଁ କୌଣସି କୌଣସି ମଣିଷକୁ ଅନ୍ୟ ମଣିଷମାନେ ବଳଦ, ଗଧ, ମାଙ୍କଡ଼, ବେଙ୍ଗଠାରୁ ଆରମ୍ଭ କରି ପୁରୁଷସିଂହ, ପୁରୁଷବ୍ୟାଘ୍ର ଏପରିକି କୁକୁର ଘୁଷୁରି ବୋଲି ମଧ ସମ୍ବୋଧନ କରିଥାଆନ୍ତି । ଏହା ମଧ

ନିଷ୍ଚିତ ଯେ ମଣିଷ ନିଜ ଦେହରେ ଶିଙ୍ଗ ଓ ଲାଞ୍ଜ ଖଞ୍ଜି ହାମୁଡ଼େଇ ଚାଲି ସହଜରେ ଅନ୍ୟ କୌଣସି ଜନ୍ତୁ ପରି ଅଭିନୟ କରିପାରେ; ମହାଦେବଙ୍କ ନନ୍ଦୀ ବନିପାରେ, ସୁଗ୍ରୀବ ଓ ହନୁମାନ ହୋଇପାରେ, ଜାମ୍ବବାନ ସାଜିପାରେ – ତେଣୁ କେବଳ ଅବୟବ ଦେଖି କୌଣସି ଜନ୍ତୁକୁ ମଣିଷ ବୋଲି ନିଷ୍ଚିତଭାବେ କହିଦେବା ଭ୍ରମାତ୍ମକ ହେବ ।

ମଣିଷର ଅବୟବ ପରି ଅନ୍ୟ ଜନ୍ତୁଙ୍କର ମଧ୍ୟ ଊଣା ଅଧିକେ ସେପରି ଅବୟବମାନ ରହିଛି । ତେଣୁ ଅନ୍ୟ କୌଣସି ଜନ୍ତୁ ମଣିଷର ବେଶ ପିନ୍ଧି ମଣିଷ ପରି ଅଭିନୟ କରୁଥିଲେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ବେଶ-ଭୂଷାକୁ କେହି କେହି ଅଙ୍ଗର-ଆଭରଣ ରୂପରେ ଅଙ୍ଗୀ ବୋଲି କହନ୍ତି । ସ୍ଥଳବିଶେଷରେ ଅଙ୍ଗୀକୁ ଖୋଳ ଅଥବା ଖୋଳପା ବୋଲି ମଧ୍ୟ କୁହାଯାଏ । ଅବୟବସମୂହ ଅଙ୍ଗର ବାହ୍ୟ ରୂପ ପ୍ରକାଶ କରୁଥିବାରୁ ସେ ସବୁକୁ ମଧ୍ୟ ଏକ ଆଭରଣ ରୂପରେ ଖୋଳପା ବୋଲି କୁହାଯାଇପାରେ । ଚିଙ୍ଗୁଡ଼ିର ଖୋଳପା ଭିତରେ ଚିଙ୍ଗୁଡ଼ି ଏବଂ ସାପକାତି ଭିତରେ ସାପ ଯେପରି ଜଡ଼ିରହିଥାଏ, ମନେହୁଏ ଯେ ଅବୟବରୂପୀ ଖୋଳପାର ଆବରଣ ତଳେ ପ୍ରକୃତ ପ୍ରାଣୀ ସେପରି ଛପିରହିଥାଏ । ତେଣୁ କୌଣସି ପ୍ରାଣୀକୁ ଉତ୍ତମ ରୂପେ ଚିହ୍ନିବାକୁ ହେଲେ ଏହି ଖୋଳପା ଭିତରକୁ ଉଙ୍କି ମାରିବା ଏକାନ୍ତ ପ୍ରୟୋଜନ ।

ନିର୍ଜୀବ ବସ୍ତୁ ସାଧାରଣତଃ ଚଳତ୍‌ଶକ୍ତି-ବିହୀନ । ଅଚଳନ୍ତିକୁ ଚଳନ୍ତି କରିବାକୁ ହେଲେ ଗୋଟିଏ ଇଞ୍ଜିନ୍ ଲୋଡ଼ା, ଅଥବା ଅଚଳନ୍ତି ଶଗଡ଼ରେ ବଳଦ ଯୋଚି ତାକୁ ଚଳନ୍ତି ବଳଦଗାଡ଼ି କଲା ପରି ଅଚଳନ୍ତିକୁ କୌଣସି ଚଳନ୍ତି ସହ ଯୋଚିବା ପ୍ରୟୋଜନ । ମଣିଷ ଯେହେତୁ ଚଳତ୍‌ଶକ୍ତି ସମ୍ପନ୍ନ, ଏକଥା ସ୍ପଷ୍ଟ ଯେ ମଣିଷର ଖୋଳପା ଭିତରେ କୌଣସି ଇଞ୍ଜିନ୍ ଖଞ୍ଜାହୋଇଛି; ଅଥବା କେହି ଜଣେ ଚଳନ୍ତି ପ୍ରାଣୀ ଲୁଚିରହି ଏହି ଖୋଳପାକୁ ଟେକି ଧରିଛି – ଶୀତଳଷଷ୍ଠୀ ଯାତ୍ରାବେଳର ବାଘ ଆଉ ଷଣ୍ଢନାଚ ରୀତିରେ । ପ୍ରତ୍ୟକ୍ଷ ପ୍ରମାଣରୁ ଜଣାପଡ଼େ ଯେ ପ୍ରତ୍ୟେକ ଜନ୍ତୁଙ୍କ ଖୋଳପା ଭିତରେ ଗୋଟିଏ ଗୋଟିଏ ଇଞ୍ଜିନ୍ ରହିଛି । ମଣିଷର ଖୋଳପା ଭିତରେ ମଧ୍ୟ ଇଞ୍ଜିନ୍ ଥିବା ତେଣୁ ସ୍ୱାଭାବିକ ।

ମଣିଷକୁ ଏଠାରେ ଗୋଟିଏ ମଟରଗାଡ଼ି ସଙ୍ଗରେ ତୁଳନା କରାଯାଇପାରେ । ଆମ୍ବାସେଡ଼ର୍, ଫିଏଟ୍, ଜିପ୍ ପ୍ରଭୃତି ପ୍ରତ୍ୟେକ ଚଳନ୍ତି ମଟରଗାଡ଼ିରେ ଗୋଟିଏ ଗୋଟିଏ ଇଞ୍ଜିନ୍ ରହିଥାଏ । ଏ.ସି. ପମ୍ପ, କର୍‌ବୁରେଟର୍, ଡାଇନାମୋ, ପିଷ୍ଟନ୍ ପ୍ରଭୃତିର ସମଷ୍ଟି ହିଁ ଏହି ଇଞ୍ଜିନ୍ । ମଟରଗାଡ଼ି ଇଞ୍ଜିନ୍‌ର ବିଭିନ୍ନ କଳକବ୍‌ଜା ପରି ମଣିଷର ଖୋଳପା ଭିତରେ ମଧ୍ୟ ଯେଉଁ ଇଞ୍ଜିନ୍ ରହିଛି କଲିଜା, ହୃତପିଣ୍ଡ, ଫୁସ୍‌ଫୁସ୍, ଅନ୍ତନାଡ଼ୀ ପ୍ରଭୃତି ତହିଁର ଅଂଶବିଶେଷ ।

କାର୍‌ବୁରେଟର୍, ଏ.ସି. ପମ୍ପ ପରି କୌଣସି ଯନ୍ତ୍ରପାତି ଖରାପ ହେଲେ ମଟରଗାଡ଼ିରେ ତେଲ ଢାଳିଲେ ମଧ୍ୟ ସେ ଯେପରି ଆଉ ଚାଲିପାରେନି, ମଣିଷ ଭିତରର ଯନ୍ତ୍ରପାତି ଖରାପ ହୋଇଗଲେ ତା' ମୁହଁରେ ପଖାଳ, ଶୁଖୁଆ, ତନ୍ଦୁରି, ରୁଟି କିମ୍ବା ଚିକେନ୍ କରି ଗୁଞ୍ଜିଲେ ମଧ୍ୟ ସେପରି କିଛି ଲାଭ ହୁଏ ନାହିଁ। ତଫାତ୍ ଭିତରେ କିନ୍ତୁ ଏତିକି – ଗାଡ଼ିର ଇଞ୍ଜିନ୍ ଖରାପ ହୋଇଗଲେ ତାକୁ ସେହି ସ୍ଥାନରେ ସାଧାରଣ ଭାବରେ ମରାମତି କରାଯାଇପାରେ ଅଥବା ତାକୁ ଠେଲିପେଲି କିମ୍ବା ଅନ୍ୟ କୌଣସି ଗାଡ଼ିର ପଛପଟେ ବାନ୍ଧି ଟାଣିଆଣି କୌଣସି ଗେରେଜ୍‌ରେ ପହଞ୍ଚାଇଦେଲା ପରେ ସେଠାରେ ଖରାପ ହୋଇଯାଇଥିବା ପାର୍ଟ ବଦଳରେ ନୂଆ ପାର୍ଟ ଖଞ୍ଜି ମରାମତି କରାଯାଇପାରେ। ମଣିଷ ଭିତରର ଇଞ୍ଜିନ୍ କିନ୍ତୁ ହଠାତ୍ ବନ୍ଦହୋଇଗଲେ ତାକୁ ଠିକ୍ ସେଇଠି ମରାମତି କରିଦେବା ତ ଦୂରର କଥା, ତାକୁ ସେପରି ଠେଲିପେଲି ଅଥବା ଅନ୍ୟ କୌଣସି ମଣିଷ ପଛରେ ବାନ୍ଧି ଟାଣିଆଣି କରି କୌଣସି ଗେରେଜ୍‌ରେ ପହଞ୍ଚାଇ ହୁଏ ନାହିଁ। ଯଦିବା କୌଣସି ମତେ ପହଞ୍ଚାଇ ହୁଏ, ତେବେ ଇଞ୍ଜିନ୍ ଯଦି ପୂରାପୂରି ବନ୍ଦ ହୋଇ ଯାଇ ନ ଥାଏ, ତା'ର କୌଣସି କୌଣସି ପାର୍ଟ ସାମାନ୍ୟ ମରାମତି କରି ହୁଏ ଏବଂ କୌଣସି ବିଶେଷ ଧରଣର ଗେରେଜ୍‌ରେ ଗୋଟିଏ ଅଧେ ପାର୍ଟ ବଦଳାଇବାକୁ ଚେଷ୍ଟା କରାଯାଇଥାଏ; କିନ୍ତୁ ସେପରି ନୂଆ ପାର୍ଟ ଖଞ୍ଜିବା ଚେଷ୍ଟା ପ୍ରାୟଶଃ ବିଫଳ ହୁଏ।

ମଣିଷର ଖୋଳପା ଭିତରେ ଯେପରି ଇଞ୍ଜିନ୍ ରହିଛି, ଅନ୍ୟ ଜନ୍ତୁମାନଙ୍କ ଖୋଳପା ଭିତରେ ମଧ୍ୟ ପ୍ରାୟ ସେ ରକମର ଇଞ୍ଜିନ୍ ରହିଛି। ଆମ୍ବାସେଡର, ଫିଏଟ୍ କିମ୍ବା ଜିପ୍‌ର ଇଞ୍ଜିନ୍ ଗୁଡ଼ିକ ସମାନ ଦିଶୁଥିଲେ ହେଁ ସେମାନଙ୍କ ମଧ୍ୟରେ ଯେପରି କିଛି ନା କିଛି ପାର୍ଥକ୍ୟ ରହିଥାଏ, ଏହି ଭିନ୍ନ ଭିନ୍ନ ଜନ୍ତୁମାନଙ୍କର ଇଞ୍ଜିନ୍‌ଗୁଡ଼ିକ ଏକାରକମର ଜଣାପଡୁଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ନିଶ୍ଚୟ ସେପରି ବିଭିନ୍ନତା ରହିଥିବ। ତଥାପି ବିଭିନ୍ନ ପ୍ରାଣୀଙ୍କ ଅବୟବ ତଥା ଇଞ୍ଜିନ୍‌ରେ ସାମଞ୍ଜସ୍ୟ ରହିଥିବାରୁ କେବଳ ସେତିକି ଦେଖି ସେ ମଧ୍ୟରୁ ମଣିଏ କିଏ ଓ ଗଧିଆ କିଏ, ସେ କଥା ନିର୍ଧାର୍ଯ୍ୟଭାବେ କହିଦେବା ଅନୁଚିତ ହେବ। ପୁନଶ୍ଚ, ମଣିଷ ପରି ଦିଶୁଥିବା କୌଣସି ଜନ୍ତୁର ଛାତି ଚିରି ସେ ଭିତରର ଇଞ୍ଜିନ୍ ଦେଖିବାକୁ କିପରି ତାହା ଜାଣିବା ଉଦ୍ଦେଶ୍ୟରେ ସେ ଭିତରକୁ ଉଙ୍କିମାରିବା ଆପଦସଙ୍କୁଳ।

ଖୋଳପା ଓ ଇଞ୍ଜିନ୍ ଏ ଦିଓଟିର ସମ୍ମିଶ୍ରଣକୁ ଶରୀର କୁହାଯାଏ। ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ଯେ କେବଳ ଶରୀରରୁ ମଣିଷ ଚିହ୍ନିହେବ ନାହିଁ। ତେଣୁ ଏ ସମ୍ବନ୍ଧରେ ଗଭୀରତର ଅନୁଧ୍ୟାନ ପ୍ରୟୋଜନ।

ବର୍ତ୍ତମାନ ପ୍ରଶ୍ନ ଉଠେ ଯେ ଖୋଳପାରେ ଇଞ୍ଜିନ୍‌ଯୁକ୍ତ ଶରୀର ଯଦି ସମାନ ହେଲା ଅଥବା ସମାନ ଧରଣର ହେଲା, ତେବେ ବିଭିନ୍ନ ଜନ୍ତୁମାନଙ୍କର ଗୁଣ ଓ ପ୍ରକୃତି ଭିନ୍ନ

ଭିନ୍ନ ହୁଏ କାହିଁକି ? ଗଧ କାହିଁକି ଗଧ ଖାଟେଣି ଖଟେ, କୁକୁର ପାଦ ଚାଟେ, ବିଲୁଆନନା ପଛକୁ ଅନାଏ, ମାଙ୍କଡ଼ ଗଛରୁ ଗଛକୁ ଡିଏଁ ଆଉ ନାଚେ, ବାଘ ଅନ୍ୟ ଜନ୍ତୁଙ୍କୁ ଗୋଡ଼ାଇ ଖାଏ, ବଳଦ ଜୁଆଳି ଲଦିବାପାଇଁ କାନ୍ଧ ଦେଖାଇଦିଏ, ଛେଳି ହାଣମୁହଁରୁ ପଳାଇଯିବା ପାଇଁ ଚେଷ୍ଟାକରେ ନାହିଁ – ଆଉ ମଣିଷ... ସବୁବେଳେ ଅଭିନୟ କରିଚାଲେ ।

ପ୍ରଶ୍ନଟି ଅତି ଜଟିଳ । ତଥାପି ସାଧାରଣ ଭାବରେ ମନେହୁଏ ଯେ ଇଞ୍ଜିନ୍‌ର ନିର୍ମାଣ କୌଶଳ ତଥା ବିଭିନ୍ନତା ଏବଂ ଇଞ୍ଜିନ୍‌କୁ ଖାପ ଖାଇଲାଭଳି ଚେସିସ୍ ଯନ୍ତ୍ର ଜଗତରେ ଯେପରି ବିଭିନ୍ନତା ସୃଷ୍ଟି କରେ, ପ୍ରାଣୀଜଗତରେ ମଧ୍ୟ ସେପରି ବିଭିନ୍ନତା ସୃଷ୍ଟି କରେ । ଜିପ୍ ଗାଡ଼ି ମହିଷୀ ପରି କାଦୁଅ ଭିତରେ ଠେଲି ପେଲି ଚାଲିଯାଇ ପାରୁଥିଲେଂ ମଧ୍ୟ, ଛେଳି କିମ୍ବା ମେଣ୍ଢା ପରି ଅପେକ୍ଷାକୃତ ଛୋଟ ଫିଏଟ୍ ପକ୍ଷରେ ତାହା ସମ୍ଭବ ନୁହେଁ । ପୁଣି ଇଞ୍ଜିନ୍ କହିଲେ କେବଳ କେତୋଟି ମଟର ଗାଡ଼ିର ଇଞ୍ଜିନ୍ କଥା ଭାବିବସିଲେ ଭୁଲ ହେବ । ଟ୍ରାକ୍ଟର ଗଣ୍ଡାର ପରି ନଈ ନାଳ ଡେଇଁଯାଏ, ପାହାଡ଼ ଚଢ଼େ । କୌଣସି ଧରଣର ଟେଙ୍କ୍ ପାହାଡ଼ ଉଠିଯିବା ସଙ୍ଗେ ସଙ୍ଗେ ଜଳ ହସ୍ତୀପରି ପାଣିରେ ଭାସେ, କାଦୁଅରେ ହଂସ ଚାଲିଲା ପରି ଥପ୍ ଥପ୍ କରି ଚାଲେ । ଲିଲେଣ୍ଡ ଟ୍ରକ୍ ଓ ଡମ୍ପର ବିଶାଳକାୟ ହାତୀପରି ବିରାଟ ଓଜନ ନେଇ ଆଗକୁ ମାଡ଼ି ଚାଲେ । ଜୋଙ୍ଗା ଜିପ୍, ନିଶାନ୍ ଟ୍ରକ୍ ଚିତା ବାଘର କ୍ଷିପ୍ରତା ଓ ହିଂସ୍ରତା ଦେଖାଏ । ତିମି ମାଛ ଓ ଶାର୍କ ପରି ଯୁଦ୍ଧଜାହାଜ ବୁଡ଼ାଜାହାଜ ସମୁଦ୍ରବକ୍ଷରେ ଭାସି ବୁଲି ଅଥବା ବୁଡ଼ି ରହି ପଇଁତରା ମାରେ । ଈଗଲ ପକ୍ଷୀପରି ଆକାଶ-ବିମାନ ତା'ର ଇଞ୍ଜିନ୍ ବଳରେ ତଥା ଶରୀର ଗଠନ ଯୋଗୁ ଆକାଶରେ ଉଡ଼େ । କ୍ଷୁଦ୍ରକାୟ କଜ୍ଜଳପାତିଆ ମଶକ ବିମାନ ସେବର୍ ଜେଟ୍ କାଉକୁ ତଡ଼ିନିଏ ।

ଆଉ ଦେଖାଦିଏ ଜୁମ୍ବୋ ଜେଟ୍, ଇଲ୍ୟୁଶିନ, କଙ୍କର୍ଡ – ନାନାରକମର ରକେଟ୍ ଓ ଆହୁରି କେତେ ରକମର ଇଞ୍ଜିନ୍ – ଅତି ଶକ୍ତିଶାଳୀ, ଶବ୍ଦର ବେଗରୁ ଆହୁରି ବେଗବାନ୍, କମ୍ପ୍ୟୁଟର୍ ଖଞ୍ଜା, ନିଜେ ନିଜେ ମିଶାଣ, କଟାଣ, ହରଣ, ଗୁଣନ ମଧ୍ୟ କରିଦେଇପାରେ । ତେଣୁ ଏହା ସମ୍ଭବ ଯେ ବିଭିନ୍ନ ଇଞ୍ଜିନ୍ ତଥା ସେ ସବୁକୁ ଖାପଖାଇଲା ଭଳି ଶରୀର ହିଁ ପ୍ରାଣୀଙ୍କ ମଧ୍ୟରେ ବିଭିନ୍ନତା ସୃଷ୍ଟି କରିବାର ପ୍ରଧାନ କାରଣ ।

ଯେଉଁମାନେ ଏ ମତବାଦରେ ବିଶ୍ୱାସ କରନ୍ତି, ସେମାନଙ୍କ ମତ ଯେ ଶରୀର ଭିତରେ ଥିବା ଏହି ଇଞ୍ଜିନ୍‌ଟି ସ୍ୱୟଂସମ୍ପୂର୍ଣ୍ଣ, ନିଜେ ଦେଖିପାରେ, ଶୁଣି ପାରେ, ସୁଖଭୋଗ କରିପାରେ, ଦୁଃଖ କଷ୍ଟ ସହିପାରେ, ହସିପାରେ, କାନ୍ଦିପାରେ, ନାଚିପାରେ, କୁଦିପାରେ, ଖାଇପାରେ, ନିଜ ସଂଖ୍ୟା ବୃଦ୍ଧି କରିପାରେ । ସେସବୁ ଗୁଣ

ଓ ବିକାର ଇଞ୍ଜିନ୍‌ର ସ୍ୱଭାବଗତ ପ୍ରକୃତି । ସେ ଯେତେବେଳେ ତିଆରି ହୁଏ, ଚାଲୁ ଅବସ୍ଥାରେ ହିଁ ତିଆରିହୁଏ – ସବୁ ଗୁଣ ଓ ପ୍ରକୃତି ସଙ୍ଗରେ ନେଇକରି ହିଁ ଆସେ । ଇଞ୍ଜିନ୍ ଯେତେବେଳେ ବନ୍ଦ ହୋଇଯାଏ – ବାସ୍ – ବନ୍ଦହୋଇଯାଏ । ସେ ଯଦି ତା' ନିଜ ପରି ଅନ୍ୟ କୌଣସି ଇଞ୍ଜିନ୍ ସୃଷ୍ଟି କରି ନ ଥାଏ, ତା'ହେଲେ ସେଠାରେ ହିଁ ତା'ର କାହାଣୀ ଶେଷ ହୋଇଯାଏ । ଏହି ମତବାଦ ଅନୁସାରେ ଗଧର ଇଞ୍ଜିନ୍‌ରେ ହିଁ ଗର୍ଦ୍ଦଭତ୍ୱ ରହିଛି, ବାଘର ଇଞ୍ଜିନ୍‌ରେ ବ୍ୟାଘ୍ରତ୍ୱ ଓ ମଣିଷର ଇଞ୍ଜିନ୍‌ରେ ମନୁଷ୍ୟର ।

ଅନ୍ୟମାନେ କିନ୍ତୁ ଏହି ମତବାଦର ପ୍ରତିବାଦ କରନ୍ତି । ପ୍ରଶ୍ନକରନ୍ତି ଯେ, ତେବେ ପ୍ରତ୍ୟେକ ମଣିଷ ଭିତରେ ମନୁଷ୍ୟତ୍ୱ ଦେଖିବାକୁ ମିଳେନାହିଁ କାହିଁକି ? ଏତେ ତୋଟି କଟାକଟି ଖେଳ ଚାଲେ କାହିଁକି ? ଏତେ ଅଭିନୟ ହୁଏ କାହିଁକି ?

ପୂର୍ବୋକ୍ତ ମତବାଦୀମାନେ ଉତ୍ତର ଦିଅନ୍ତି – 'ଜିନ୍' । ଫୁଲ ସେହି ଗୋଲାପ ହେଲେ ମଧ୍ୟ ଯେପରି ଭିନ୍ନ ଭିନ୍ନ ରଙ୍ଗ, ବିଭିନ୍ନ ଆକାର, ବିଭିନ୍ନ ପ୍ରକାରର ହୁଏ, ଭିନ୍ନ ବାସନା ଦିଏ – ମଣିଷ ବି ସେପରି ।

ଏ ଉତ୍ତର କିନ୍ତୁ ନିର୍ବିବାଦରେ ଗ୍ରହଣ କରିହୁଏନି । ଜିନ୍ ଯୋଗୁଁ ଗୋଲାପ ତ ଆଉ ଗେଣ୍ଡୁ ଫୁଲ ହୋଇ ଯାଏନି କିମ୍ବା ଗନ୍ଧହୀନ ପଳାଶ ହୁଏନି, ଅଥବା ଦୁର୍ଗନ୍ଧଯୁକ୍ତ ବାହାଡା ଫୁଲ ପାଲଟିଯାଏନି । ତେବେ ମଣିଷ କାହିଁକି ଗଧିଆ ହୁଏ – କେବେ ଚେଙ୍ଗିସ୍ ଖାନ୍ ତ କେବେ ୟାହିଆ ଖାନ୍ ବନେ ? ଦସ୍ୟୁ ହୁଏ ବାଲ୍ମୀକି, ରାଜପୁତ୍ର ହୁଏ ବୁଦ୍ଧ, ବଣିଆପୁଅ ହୁଏ ଗାନ୍ଧି ।

ଜଡ଼ ଇଞ୍ଜିନ୍ ଯେତେ ଶକ୍ତିଶାଳୀ ହେଲେ ମଧ୍ୟ ଏବଂ କମ୍ପ୍ୟୁଟର୍ ବୁଦ୍ଧି ତଥା ସାମର୍ଥ୍ୟ ଅଧିକାର କରିଥିଲେ ସୁଦ୍ଧା, ଏ କଥା ଗ୍ରହଣ କରିହୁଏନାହିଁ ଯେ ଇଞ୍ଜିନ୍‌କୁ ଚାଲୁ କରିଦେଲେ ସେ ନିଜେ ଆପଣାଛାଏଁ ଅଙ୍କାବଙ୍କା ଗଳିଗନ୍ଦି ଦେଇ ଅନ୍ୟ ଯାନବାହନ ସଙ୍ଗରେ ଧକ୍କା ନ ଲଗାଇ ନିଜ ମାଲିକ ପାଖରେ କିମ୍ବା ଅନ୍ୟ କେଉଁଠି ପହଞ୍ଚିବ – ଭଲ ମନ୍ଦର ବିଚାର ବିବେଚନା କରି କ'ଣ କରିବ ନକରିବ ତା'ର ନିଷ୍ପତ୍ତି ନିଜେ ହିଁ ନେବ । କମ୍ପ୍ୟୁଟର୍‌କୁ ବୁଦ୍ଧି ଦିଆଯାଇ ପାରେ ସତ – କିନ୍ତୁ ତାକୁ ବିବେକ ଦିଆଯିବ କିପରି ? ଜଡ଼ ଇଞ୍ଜିନ୍ ନିର୍ଭୀକ ହେବ ସତ; କିନ୍ତୁ ତହିଁରେ ସ୍ନେହ, ମମତା ଏବଂ ତତ୍‌ଜନିତ ଭୟ ଦେଖାଦେବ କିପରି ? ନିଉଟନ୍‌ଙ୍କ ନିୟମ ଅନୁଯାୟୀ ସେ ପ୍ରତ୍ୟେକ ଘାତରେ ସମାନ ପ୍ରତିଘାତ ହେବ – କିନ୍ତୁ ପ୍ରତିଘାତ ବଦଳରେ ଦୟା ଦେଖାଇବ କିପରି – କ୍ଷମାଦାନ କରିବ କେମିତି ? ଜଡ଼କୁ କମ୍ପ୍ୟୁଟରର ବିଦ୍ୟୁତ୍ ଚେତନା ଯୋଗାଇଦେଲେ ସେ ପ୍ରତ୍ୟେକ କ୍ରିୟାରେ ପ୍ରତିକ୍ରିୟା ଯୋଗାଇଦେବ; କିନ୍ତୁ ସେ ପ୍ରତିକ୍ରିୟା ହେବ ଏକାଧରଣର – ବିଭିନ୍ନ ସମୟରେ ବିଭିନ୍ନ ପରିବେଶରେ ସେ ପ୍ରତିକ୍ରିୟା ଭିନ୍ନ ଭିନ୍ନ ହେବ କିପରି ?

ତେଣୁ ମନେହୁଏ ଯେ, ଶରୀର ଭିତରେ ଇଞ୍ଜିନ୍ ବ୍ୟତୀତ ଆଉ କିଛି ଅଛି ବା ଆଉ କିଏ ଲୁଚିରହିଛି, ଯିଏ କେତେକାଂଶରେ ପ୍ରାଣୀମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟିକରେ – ଇଞ୍ଜିନ୍‌କୁ ତେଲ ପାଣି ପରି ଖୋରାକ୍ ଯୋଗାଏ, ଆଦେଶ ଦିଏ, ନିର୍ଦ୍ଦେଶ ନିଏ, ବୁଦ୍ଧି ସଙ୍ଗରେ ବିବେକ ଯୋଡ଼ି ଭଲ ମନ୍ଦ ବିବେଚନା କରିବାକୁ ଶିଖାଏ, ହିଂସ୍ରତା ସଙ୍ଗରେ ମା'ର ସ୍ନେହ ଓ ମମତା ଦିଏ, କପଟତା ଓ କୁଟିଳତା ସଙ୍ଗରେ ଦୟା ଦେଖାଇବାକୁ, କ୍ଷମା ଆଚରିବାକୁ ଶିଖାଏ, ଇଞ୍ଜିନ୍‌କୁ ନଷ୍ଟ କରେ ଅବା ସ୍ପଷ୍ଟ କରେ । ଢୋଲ ଭିତରେ ମୂଷା ଥିଲା ପରି ଅଥବା ଥୁଣ୍ଟା ଗଛର କୋରଡ଼ରେ ଚଢ଼େଇ ବସା ବାନ୍ଧିଥିଲା ପରି ମଣିଷର ଶରୀର ଭିତରେ ମଧ୍ୟ ସେପରି କିଛି ବସା ବାନ୍ଧିଥିବା ସମ୍ଭବ । ତେବେ ଢୋଲ ଭିତରେ ଯଦି ମୂଷା ପଶିପାରିଲା, ସେ ଭିତରକୁ ସାପ ପଶିବ ନାହିଁ କାହିଁକି ? ଯଦି ଗଛ କୋରଡ଼ରେ ଚଢ଼େଇ ବସା ବାନ୍ଧିଲା, ସେ ଚଢ଼େଇ ହଂସ କିମ୍ବା ଲୋଟଣୀ ପାରା ନ ହୋଇ ପେଚା, ଡାହୁକ କିମ୍ବା ଶାଗୁଣା ନ ହେବ କାହିଁକି ?

ତେଣୁ ମଣିଷକୁ ଚିହ୍ନିବାକୁ ହେଲେ ମଣିଷର ଶରୀର ଭିତରେ ଲୁଚି ଛପି ରହିଥିବା ଏହି ଅଜ୍ଞାତକୁଳଶୀଳକୁ ଖୋଜି ବାହାର କରି ତାକୁ ଚିହ୍ନିବାକୁ ହେବ ।

ଏହି ଲୁକ୍‌କାୟିତକୁ କିନ୍ତୁ ଖୋଜି ବାହାର କରିବା ତ ଦୂରର କଥା, ତା'ର ସନ୍ଧାନ ମଧ୍ୟ ନେଇହୁଏ ନାହିଁ । ତେଣୁ ତା'ର ରୂପରେଖ ଦେବା ଅସମ୍ଭବ । ଏ କଥା କିନ୍ତୁ ନିଶ୍ଚିତ ଯେ ଚଳନ୍ତି ମଟରଗାଡ଼ିକୁ ମଟରଗାଡ଼ିର ଡ୍ରାଇଭର ଯେପରି ଗତି ଦିଏ, ଗତିର ଦିଗ ଦିଏ, ତଥା ବେଗ ଦିଏ; ବଳଦଗାଡ଼ିକୁ ଶଗଡ଼ିଆ ଅଥବା ଘୋଡ଼ାଗାଡ଼ିକୁ କଚୁଆନ ଯେପରି ପରିଚାଳିତ କରେ, ମଣିଷ ଶରୀର ଭିତରେ ଲୁକ୍‌କାୟିତ ହୋଇ ରହିଥିବା ଏହି ଅଜଣା ଭୂତ ମଣିଷକୁ ଠିକ୍ ସେପରି ଦିଗ୍‌ଦର୍ଶନ ଦିଏ – ପରିଚାଳିତ କରେ ।

ମନେହୁଏ ଯେ ମଣିଷ ଶରୀରର ଇଞ୍ଜିନ୍‌କୁ ଜଡ଼ ମଟର ଇଞ୍ଜିନ୍ କିମ୍ବା ରକେଟ ଇଞ୍ଜିନ୍ ସଙ୍ଗରେ ତୁଳନା ନ କରି ବଳଦଗାଡ଼ିର ବଳଦ ଅଥବା ଘୋଡ଼ାଗାଡ଼ିର ଘୋଡ଼ା ସଙ୍ଗରେ ତୁଳନା କରିବା ହିଁ ଯଥାର୍ଥ ହେବ । କାର୍‌ବୁରେଟର୍, ଏ.ସି. ପମ୍ପ ପରି ଜଡ଼ ଇଞ୍ଜିନ୍‌ର ବିଭିନ୍ନ ପାର୍ଟ ସମୂହ ସମୟ ଅନୁଯାୟୀ ନିଜେ ନିଜେ ସାନ ହୁଏନି କିମ୍ବା ବଡ଼ ହୁଏନି, ଶିଶୁ ହୁଏନି ଅଥବା ବୁଢ଼ା ହୁଏନି । ମଣିଷ ଶରୀରର ଇଞ୍ଜିନ୍ କିନ୍ତୁ ସମୟର ଗତି ସଙ୍ଗେ ସଙ୍ଗେ ଖୋଳପା ସଙ୍ଗରେ ନିଜେ ବି ସାନ ବଡ଼ ହୁଏ । ଶୈଶବର କଲିଜା ହୃତ୍‌ପିଣ୍ଡ ପ୍ରଭୃତି ବଡ଼ ହେବା ସଙ୍ଗେ ସଙ୍ଗେ ଆପେ ଆପେ ବଢ଼ିଚାଲେ । ଘୋଡ଼ା ଯେପରି ପିଲାଦିନେ ଲଗାମଛଡ଼ା ହୋଇ ସ୍ୱାଧୀନ ଭାବରେ ଡେଇଁ ବୁଲେ, ଯୌବନରେ ପବନ ବେଗରେ ଛୁଟିଯାଏ – ବିରକ୍ତ ହେଲେ ଯୁଇ

ଗୋଡ଼ରେ ଠିଆହୁଏ – ହିନ୍‌ହିନାଏ ଆଉ ବୁଢ଼ା ହୋଇଗଲେ ନିଜ ଗାଡ଼ି ମଧ୍ୟ ଟାଣିପାରେନି, ଆଉ ଶେଷରେ ହୁଏ ତା'ର ମୃତ୍ୟୁ – ସଇସ କିମ୍ବା କଚୁଆନ ନଥିଲେ ସେ ଯେପରି ନିଜେ ଦିଗ୍‌ବିଦିଗ ନବାରି ଭଲ ମନ୍ଦ ନବୁଝି ତା'ର ଗାଡ଼ି ନେଇ ଏଣେତେଣେ ଦୌଡ଼ି ବୁଲେ, ମଣିଷର ଇଞ୍ଜିନ୍ ମଧ୍ୟ ଜଣା ଅଧିକେ ସେପରି ଆଚରଣ ଦେଖାଏ। ହିତାହିତ ଜ୍ଞାନଶୂନ୍ୟ ଅବୁଝା ଶିଶୁ ହୁଏ ଯୌବନରେ ଉଦ୍ଧତ ଏବଂ ଉଚ୍ଛୃଙ୍ଖଳ – ବାର୍ଦ୍ଧକ୍ୟରେ ହୁଏ ଦୁର୍ବଳ ବ୍ୟାଧିଗ୍ରସ୍ତ। ମଣିଷର ଶରୀରକୁ ତେଣୁ ଘୋଡ଼ାଗାଡ଼ି ସଙ୍ଗରେ ହିଁ ତୁଳନା କରାଯାଇପାରେ। ମଣିଷ ଶରୀର ଯଦି ଗୋଟିଏ ଘୋଡ଼ାଗାଡ଼ି, ସେ ଶରୀର ଭିତରେ ଲୁଚି ବସିଥିବା ସେହି ପୂର୍ବୋକ୍ତ ଲୁକ୍‌କାୟିତ ହିଁ ଡ୍ରାଇଭର - କଚୁଆନ୍। ସେ ହିଁ ମଣିଷ ଶରୀରକୁ ପରିଚାଳିତ କରେ – ଦିଗ୍‌ଦର୍ଶନ ଦିଏ।

କୌଣସି ଗାଡ଼ି ଡ୍ରାଇଭର୍ ଯେତେବେଳେ ଗାଡ଼ି ଚଳାଇବା ପାଇଁ ତା'ର ଗାଡ଼ିକୁ ଆସେ, ସେ ତା'ର ବ୍ୟକ୍ତିଗତ ଚାଲିଚଳଣ ଢଙ୍ଗରଙ୍ଗ ବେଶଭୂଷା ସବୁ ନେଇକରି ହିଁ ଆସେ। କେହି ଟୋପି ପିନ୍ଧିଥାଏ ତ କେହି ପଗଡ଼ି ଭିଡ଼ିଥାଏ। କେହି ଟ୍ରାଉଜର୍ ଗଳାଇଥାଏ ତ କେହି ଲୁଙ୍ଗି ଗୁଡ଼ାଇଥାଏ। କିଏ ଆସେ ଖାଲି ଆଖିରେ ତ କିଏ ରଙ୍ଗିନ୍ ଚଷମା ପିନ୍ଧି। ଦୂରକୁ ଯିବାକୁ ହେଲେ ସେ ତା' ଘରୁ ସଙ୍ଗରେ ଆଣିଥାଏ ନିଜ ବ୍ୟକ୍ତିଗତ ବୁକୁଳା – ହେଣ୍ଡ୍ ବେଗ୍, ବିଛଣା। କାହାର ବିଛଣାରେ ଥିବା ତକିଆ, ଚାଦର ଛିଣ୍ଡା ମଇଳା କୋତରା ତ କାହାର ସଫା ଫିନ୍ ଫିନ୍। କାହାର ବେଗ୍‌ରେ ଥାଏ ଗୀତା ବାଇବେଲ୍ ତ କାହା ବେଗ୍‌ରେ ଥାଏ ମଦବୋତଲ। ଏହି ଡ୍ରାଇଭର୍‌ମାନଙ୍କ କାମ ମଧ୍ୟ ଅଲଗା ଅଲଗା। କିଏ ମ୍ୟୁନିସିପାଲିଟି ଗାଡ଼ି ଚଳାଏ ତ ଆଉ କିଏ ମନ୍ଦିର ତିଆରି ପାଇଁ ପଥର ବାଲି ଟାଣେ। କାହାର ଗାଡ଼ିରେ ଯାଆନ୍ତି ଖୁଣୀ ଆସାମୀ, ଚୋର ଡକାୟତ; ଆଉ କାହାର ଗାଡ଼ିରେ ବସିଥାଆନ୍ତି ଗାନ୍ଧି-ଅରବିନ୍ଦ।

ଡ୍ରାଇଭର୍ ଉପରେ ଅନେକାଂଶରେ ଗାଡ଼ିର ଭାଗ୍ୟ ନିର୍ଭର କରେ। ମତୁଆଲା ଡ୍ରାଇଭର୍ ହାତରେ ଗାଡ଼ି ମଧ୍ୟ ମାତାଲ ପରି ବ୍ୟବହାର କରେ – ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ହୋଇ ଏଇଠି କଚାଡ଼ି ହୁଏ – ସେଇଠି ପିଟି ହୋଇଯାଏ – ଅନ୍ୟ କୌଣସି ପ୍ରାଣୀକୁ ଦଳିଚକଟିଦିଏ।

ପ୍ରାଣୀର ଶରୀରମାନଙ୍କୁ ପରିଚାଳିତ କରୁଥିବା ଡ୍ରାଇଭର୍ କିମ୍ବା କଚୁଆନ୍‌ମାନେ ମଧ୍ୟ ଠିକ୍ ସେପରି। ବେଳେ ବେଳେ ଗାଡ଼ିରେ ଯୋଚା ହୋଇଥିବା ଘୋଡ଼ାମାନେ ଏତେ ଶକ୍ତିଶାଳୀ ହୋଇପଡ଼ନ୍ତି ଯେ ସେମାନେ ଲଗାମ୍‌ଛଡ଼ା ହୋଇଯାଆନ୍ତି – ଦୁର୍ବଳ କଚୁଆନ୍ ସେମାନଙ୍କୁ ନିଜ ଆକଟରେ ରଖିପାରେ ନାହିଁ।

ପ୍ରାଣୀ ଶରୀରର ଏହି ଅଜଣା ଡ୍ରାଇଭର୍ ବା କଚୁଆନ୍‌କୁ କେହି କେହି ପୁରୁଷ ଅଥବା ଜୀବାତ୍ମା ବୋଲି କହନ୍ତି । ଏହି ଜୀବାତ୍ମା ସବୁ କୁଆଡ଼େ ତାଙ୍କ ନିଜ ନିଜ ବ୍ୟକ୍ତିଗତ ଢଙ୍ଗରଙ୍ଗ, ଚାଲିଚଳଣ, ପୂର୍ବ ଅର୍ଜିତ ପୁଞ୍ଜିପାଣ୍ଠି ଘେନି ପ୍ରକୃତି ପୁରୁଷ ଶରୀରରେ ଆସନ ପାତି ବସିଥାଆନ୍ତି । ଇଞ୍ଜିନ୍ କିମ୍ବା ଶରୀରକୁ ନେଇଁ ହିଁ ସେମାନେ ଖେଳ ଖେଳନ୍ତି ଓ ଶରୀରର ସବୁ ଗୁଣ ଓ ବିକାର ଭୋଗ କରନ୍ତି । ଶରୀରର ନିର୍ଦ୍ଧାରିତ ସୀମା ଇଞ୍ଜିନ୍‌ର ଶକ୍ତି ମଧ୍ୟରେ ସେମାନଙ୍କ ଖେଳ ତେଣୁ ସୀମାବଦ୍ଧ ହୋଇଥାଏ । ଟ୍ରାକ୍ଟର ଡ୍ରାଇଭର୍ ଯେପରି ତା'ର ଗାଡ଼ିକୁ ଫିଏଟ୍ ପରି ଦ୍ରୁତବେଗରେ ଛୁଟାଇ ନେଇପାରେନି, ଫିଏଟ୍ ଡ୍ରାଇଭର୍ ସେପରି ତା' ଗାଡ଼ିକୁ ଜୁମ୍ବୋ ଜେଟ୍ ପରି ଉଡ଼ାଇ ପାରେନି । ଡ୍ରାଇଭର୍ କିମ୍ବା କଚୁଆନ୍ ସମାନ ଧରଣର ହେଲେ ମଧ୍ୟ ସେମାନଙ୍କ କରାମତି ଭିନ୍ନ ଭିନ୍ନ ପ୍ରାଣୀଙ୍କ ଇଞ୍ଜିନ୍‌ର ଶକ୍ତି ସୀମା ତଥା କ୍ରୀଡ଼ା-କ୍ଷେତ୍ର ଭିତରେ ସୀମିତ ହୋଇଯାଏ ।

ପ୍ରାଣୀଜଗତରେ ମଣିଷ ସର୍ବଶ୍ରେଷ୍ଠ ବୋଲି ସମସ୍ତେ କହନ୍ତି । ଏକଥା ସ୍ପଷ୍ଟ ଯେ ଶରୀରର ପରାକ୍ରମ ଉପରେ ତଥା ଇଞ୍ଜିନ୍‌ର ଶକ୍ତି ଉପରେ ଏହି ଶ୍ରେଷ୍ଠତ୍ୱ ନିର୍ଭର କରେ ନାହିଁ; ଯେହେତୁ ସେପରି ହେଉଥିଲେ ହାତୀ, ଗଣ୍ଡାର, ସିଂହ, ବାଘ, ତିମି, ଶାର୍କ ପରି ପ୍ରାଣୀମାନେ ମଣିଷଠାରୁ ଶୀର୍ଷତର ସ୍ଥାନ ଅଧିକାର କରିଥାଆନ୍ତେ । ତେଣୁ ଏହା ସ୍ୱୀକାର୍ଯ୍ୟ ଯେ ମଣିଷ କୌଣସି ଶରୀରର ଖୋଳପା ନୁହେଁ, ଶରୀରର ଇଞ୍ଜିନ୍ ନୁହେଁ କିମ୍ବା ଖୋଳପା ଓ ଇଞ୍ଜିନ୍‌ଯୁକ୍ତ ଶରୀର ମଧ୍ୟ ନୁହେଁ । ଶରୀର ମଧ୍ୟରେ ଯନ୍ତ୍ରାରୂଢ଼ ହୋଇ ବସିଥିବା ଡ୍ରାଇଭର୍‌ମାନଙ୍କ ମଧ୍ୟରେ ସବୁଠାରୁ କୁଶଳୀ ତଥା ଉତ୍ତମ ଡ୍ରାଇଭର୍‌ମାନେ ହିଁ ନିଶ୍ଚୟ ମଣିଷ ହୋଇଥିବେ । ତେଣୁ ଏହି ଡ୍ରାଇଭର୍‌ମାନଙ୍କ ମଧ୍ୟରେ ହିଁ ମଣିଷକୁ ଖୋଜି ବାହାର କରିବାକୁ ପଡ଼ିବ ।

ଯଦି ଧରିନିଆଯାଏ ଯେ ଏ ସବୁ ଡ୍ରାଇଭର୍‌ମାନଙ୍କର କେହି ଜଣେ ମାଲିକ ଥିବେ ଓ ସେହି ଭିନ୍ନ ଭିନ୍ନ ଡ୍ରାଇଭର୍‌ମାନଙ୍କୁ ବିଭିନ୍ନ ଗାଡ଼ିର ଦାୟିତ୍ୱ ନେବା ପାଇଁ ନିର୍ଦ୍ଦେଶ ଦେଉଥିବେ, ମଣିଷ ଯେହେତୁ ପ୍ରାଣୀ-ଜଗତରେ ସର୍ବଶ୍ରେଷ୍ଠ, ସେହି ମାଲିକ ନିଶ୍ଚୟ ତାଙ୍କର ସର୍ବଶ୍ରେଷ୍ଠ ଡ୍ରାଇଭର୍‌ମାନଙ୍କୁ ମଣିଷ ଶରୀରର ଇଞ୍ଜିନ୍ ଚଳାଇବାକୁ ଆଦେଶ ଦେଉଥିବେ । ମଣିଷ ଶରୀରର ଡ୍ରାଇଭର୍‌ମାନେ ତେଣୁ ଆପେ ଆପେ ବୁଝିନେବା କଥା ଯେ ସେମାନେ ଖୁବ୍ ଭଲ ଡ୍ରାଇଭର୍ ବୋଲି ତାଙ୍କ ମାଲିକ ପାଖରୁ ସ୍ୱୀକୃତି ପାଇପାରିଛନ୍ତି; କିନ୍ତୁ ପ୍ରାୟତଃ ଡ୍ରାଇଭର୍‌ମାନେ ସେ କଥା ଭୁଲିଯାଇ ଗାଡ଼ିଟି ତାଙ୍କ ନିଜର ବୋଲି ଭାବି ନିଅନ୍ତି, ଆଉ 'ମୁଁ-ମୁଁ' 'ମୋର-ମୋର' ଶବ୍ଦକରି ଗାଡ଼ିର ହର୍ଣ୍ଣ ବଜାଇ ଥାଆନ୍ତି । ଗାଡ଼ି ଯେଉଁଥିପାଇଁ ଉଦ୍ଦିଷ୍ଟ, ତହିଁରେ ତା'ର ଉପଯୋଗ ନକରି ଶକ୍ତିଶାଳୀ ବୋଲି ନିଶ ମୋଡ଼ନ୍ତି, ଅନ୍ୟମାନଙ୍କୁ କୁସ୍ତି ଆଖଡ଼ାରେ କିମ୍ବା ଦ୍ରୁତ ଚାଳନା ପ୍ରତିଯୋଗିତାରେ ଯୋଗଦେବା ପାଇଁ ଡାକରା ଦିଅନ୍ତି ।

କାହାରି କାହାରି ଗାଡ଼ିର ଅଖ ତେଲ ବିନା ଚାଲିଲାବେଳେ କେଁ କଟର କରି ଦୁଃଖ କଷ୍ଟରେ ବିକଳ ରାବ ହେଲାପରି ଗର୍ଜୁଥାଏ, ଆଉ କାହାରି କାହାରି ବିଏରିଂରେ ଭଲ ଗ୍ରିଜ୍‌ଦିଆ ଗାଡ଼ି ବିନା ଶବ୍ଦରେ ଅତି ସହଜ ଓ ସରଳ ଭାବରେ ଗଡ଼ି ଚାଲିଥାଏ – ସତେ ଅବା ମନର ଉତ୍ତାପରେ ।

ଗାଡ଼ି କେତେବେଳେ ପୁରୁଣା ହୋଇ ଅଚଳ ହୋଇଯାଏ ତ କେତେବେଳେ ଭଲ ରକ୍ଷଣାବେକ୍ଷଣ ବିନା କେବେ କୌଣସି ଦୁର୍ଘଟଣାରେ ଅଥବା ଆଉ କେବେ କୌଣସି ପାର୍ଟ ଖରାପ ହୋଇଯିବା ଫଳରେ ଅଚଳ ହୋଇଯାଏ । ସାଧାରଣ ଗାଡ଼ିମାଲିକ ଯେପରି ଏପରି ଗାଡ଼ି ଖରାପ ହୋଇଗଲେ ଅଥବା ଅଚଳ ହୋଇଗଲେ, ଡ୍ରାଇଭରର କ୍ରିୟାକଳାପ ଆଉ ତା'ର ପୁରୁଣା ରେକର୍ଡ଼ ସବୁ ଦେଖି ଆଉ କୌଣସି ନୂଆ ଗାଡ଼ିକି ପଠାଇଦିଅନ୍ତି ଏବଂ କୌଣସି ନୂତନ ଦାୟିତ୍ୱ ଦିଅନ୍ତି, ପ୍ରାଣୀ-ଜଗତରେ ଏହି କଟୁଆନ୍‌ମାନଙ୍କ ମାଲିକ ମଧ୍ୟ ଗାଡ଼ିର ଦାୟିତ୍ୱ ଦେଲାବେଳେ ନିଶ୍ଚୟ ସେପରି କରୁଥିବେ, ଯାହା ଫଳରେ କେଉଁ ପ୍ରାଣୀ ହୁଏ ମଣିଷ ତ ଆଉ କିଏ ହୁଏ ଘୁଷୁରି । ମନେହୁଏ ଯେ ଏହି ନୂତନ ଦାୟିତ୍ୱ ଗ୍ରହଣ କଲାବେଳେ କଟୁଆନ୍ ପୁଣି ତା'ର ପୁରୁଷ ବୁଜୁଳା ସବୁ ସଙ୍ଗରେ ଧରି ନୂଆ ଗାଡ଼ିରେ ଆସନ ମାଡ଼ିବସେ ।

ମଟର ଗାଡ଼ିର ଡ୍ରାଇଭର୍‌ମାନଙ୍କୁ ଯେମିତି ଦେଖିହୁଏ, ଏ ଶରୀର ଭିତରେ କେଉଁଠି ଗୋପନରେ ବସିରହିବା ଏହି କଟୁଆନ୍‌ମାନଙ୍କୁ ଦେଖିହୁଏ ନାହିଁ । ସେଥିପାଇଁ ମଣିଷ ଚିହ୍ନିବା ବ୍ୟାପାର ଅତ୍ୟନ୍ତ କଷ୍ଟକର ହୋଇପଡ଼େ; କିନ୍ତୁ ଡ୍ରାଇଭରକୁ ନଦେଖି ଗାଡ଼ିର ଗତିବିଧି ଲକ୍ଷ୍ୟ କରି ଯେପରି ଡ୍ରାଇଭର୍ ସମ୍ବନ୍ଧରେ କିଛି ଧାରଣା କରିହୁଏ, ସେପରି କଟୁଆନ୍‌କୁ ଦେଖି ନ ପାରିଲେ ମଧ୍ୟ ଶରୀର ମାଧ୍ୟମରେ ତା'ର କ୍ରିୟାକଳାପ ଲକ୍ଷ୍ୟ କରି ସେ କିପରି ଓ କେଉଁ ଧରଣର କଟୁଆନ୍ – ସେ ସମ୍ବନ୍ଧରେ ଉଚିତ ଧାରଣା କରିପାରିବା ନିଶ୍ଚୟ ସମ୍ଭବ । ସେ ବିଷୟରେ ଏଠାରେ ଗୋଟିଏ ଉଦାହରଣ ଦିଆଯାଇପାରେ ।

ଦୂର ଦେଶକୁ ଗଲାବେଳେ ଅଥବା କୌଣସି ଦୂର ଦେଶରୁ ଫେରିବା ସମୟରେ ବେଳେ ବେଳେ ଜନପ୍ରାଣୀଙ୍କ ଦେଖାଦର୍ଶନ ନ ଥିବା ଅରଣ୍ୟ ଭିତରେ କୌଣସି ଗାଡ଼ିର ଯେତେବେଳେ ହଠାତ୍ ତେଲ ସରିଯାଏ, ଫେନ୍‌ବେଲ୍‌ଟ ଛିଣ୍ଡେ, ଚକା ଫାଟେ, ଇଞ୍ଜିନ୍‌ର କୌଣସି ପାର୍ଟ ଖରାପ ହୋଇଯାଏ ଅଥବା ଅନ୍ୟ କୌଣସି କାରଣରୁ ଗାଡ଼ି ବନ୍ଦ ହୋଇଯାଏ, ଗାଡ଼ିର ଚାଳକ କୌଣସି ଯନ୍ତ୍ରପାତି ଅଥବା ଅନ୍ୟ କିଛି ସାହାଯ୍ୟ ପାଇବା ଆଶାରେ ସେ ବାଟରେ ଯାଉଥିବା ଅନ୍ୟ ଗାଡ଼ିମାନଙ୍କୁ ଅଟକାଇବା ପାଇଁ ହାତ ଦେଖାଏ । କେଉଁ ଗାଡ଼ିର ଡ୍ରାଇଭର୍ ଧୂଳି ଉଡ଼ାଇ ତା' ବାଟରେ ଚାଲିଯାଏ – ଏ ଗାଡ଼ି ଆଡ଼ିକି ଅନାଏନି ମଧ୍ୟ । କିଏ ବା ତା'ର ବିରାଟ ଟ୍ରକ୍

ଭିତରୁ ଦାଢ଼ି ପଗଡ଼ି ବାହାର କରି – 'ଏ ବୁଢ୍ଢୁ – ମଝି ରାସ୍ତାରେ ଗାଡ଼ି ରଖିଛୁ – ଠୋକ୍କର ଲାଗିଯିବ' କହି ମୁଣ୍ଡ ପୁଣି ଭିତରକୁ ଟାଣିନେଇ ଟ୍ରକ୍ ସହ ଅଦୃଶ୍ୟ ହୋଇଯାଏ। କିଏ କହେ – 'କିବେ, କେତେ ତମିତୋଫାନ କାଢ଼ି ମୋ ଗାଡ଼ିକି ଡେଇଁଆସିଥିଲୁ – ବେଶ୍ ହୋଇଛି – ପଡ଼ିଥା।' ଆଉ କିଏ ଅବା 'ପଛରେ ସରକାରୀ ବସ୍ ଆସୁଛି' କହି ବିଦାୟ ନିଏ; କିନ୍ତୁ କେହି ସହାନୁଭୂତିଶୀଳ ଡ୍ରାଇଭର୍ ନିଜ ଗାଡ଼ି ରାସ୍ତାକଡ଼ରେ ଅଟକାଇ ଦେଇ ନିଜେ ତା ସିଟ୍‌ରୁ ଓହ୍ଲାଇଆସେ, ଆଉ ଏଇ ଡ୍ରାଇଭରକୁ ପଚାରେ, 'ଭାଇ – କ'ଣ ହେଲା? ମୁଁ କିଛି ସାହାଯ୍ୟ କରିପାରିବି କି?' ଏହି ଶେଷୋକ୍ତ ଡ୍ରାଇଭର୍ ହିଁ ପ୍ରକୃତ ଡ୍ରାଇଭର୍-ପଦବାଚ୍ୟ।

ପ୍ରାଣୀ-ଜଗତରେ ମଧ୍ୟ ଏପରି ଘଟଣା ସବୁ ଦେଖିବାକୁ ମିଳେ। କୌଣସି ପ୍ରାଣୀ ଯେତେବେଳେ ଦୁଃଖ-ଦୁର୍ଦ୍ଦଶାରେ ପଡ଼ି ଛଟପଟ ହେଉଥାଏ, ତାକୁ ଦେଖି କେତେ ପ୍ରାଣୀ କେତେ ରକମର ବ୍ୟଙ୍ଗ କରନ୍ତି, କଟୂକ୍ତି କରନ୍ତି, ନାନା ଟିପ୍ପଣୀ କାଟନ୍ତି, କଟା ଘା'ରେ ଚୂନ ଦିଅନ୍ତି – ଅନ୍ୟର ସେହି ଦୁଃଖକଷ୍ଟରୁ ଆନନ୍ଦ ଉପଭୋଗ କରନ୍ତି, ଆଉ ସେହି ଦୁଃଖୀ ପ୍ରାଣୀଠାରୁ କିଛି ମାରିନେବାପାଇଁ ଏହା ହିଁ ଅପୂର୍ବ ସୁଯୋଗ ବୋଲି ଭାବିବସନ୍ତି। ଅନ୍ୟ କେହି କିନ୍ତୁ କାହାରି ଦୁଃଖ କଷ୍ଟ ସହିପାରନ୍ତିନି। ପ୍ରାଣୀର ଦୁଃଖ ଲାଘବ କରିବା ଆଶାରେ କେହି ନିଜେ କଣ୍ଟାର ମୁକୁଟ ପିନ୍ଧନ୍ତି, କେହି ସ୍ୱର୍ଣ୍ଣ ସିଂହାସନ, ଦାରା, ସୁତ ଛାଡ଼ି ଭିକ୍ଷାପାତ୍ର ଧରି ଦ୍ୱାର ଦ୍ୱାର ଘୂରିବୁଲନ୍ତି ଦୁଃଖ ଲାଘବର ପଥ ଦର୍ଶାଇଦେବା ଉଦ୍ଦେଶ୍ୟରେ। କିଏ ଅନ୍ୟର ଦୁଃଖ ନିଜେ ବରଣ କରି 'ସବ୍‌କୋ ସନ୍‌ମତି ଦେ ଭଗବାନ' ଗାଇ ଗାଇ ଆତତାୟୀର ଗୁଳିକୁ ଛାତି ଦେଖାଇ ଦିଅନ୍ତି। କେହି ପ୍ରାଣର ଆବେଗରେ ଗାଆନ୍ତି – 'ପ୍ରାଣୀର ଆରତ ଦୁଃଖ ଅପ୍ରମିତ ଦେଖି ଦେଖି କେବା ସହୁ, ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ।' ଆଉ କେହି ପୁଣ୍ୟାତ୍ମା ଅନ୍ୟର ଦୁଃଖ ସହି ନପାରି ଅନବରତ ଆଖିରୁ ଲୁହ ଝରାଇ ଦୁଃଖୀ ପାଖରେ ଠିଆହେବାପାଇଁ ଅନ୍ୟମାନଙ୍କୁ ପ୍ରେରଣା ଦେଲାବେଳେ ଗାଆନ୍ତି 'ନିଜ ହିତ ପାଇଁ ଜାତ ନୁହେଁ ହିନ୍ଦୁ, ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ।'

ସଂସାରଯାତ୍ରାରେ ଯାଉଥିଲାବେଳେ ବାଟରେ ଘାଟରେ ପଡ଼ି କୌଣସି ପ୍ରାଣୀ ଦୁଃଖକଷ୍ଟ ଭୋଗୁଥିବା ସମୟରେ ଯେଉଁ କଚୁଆନ୍ ତା' ଗାଡ଼ି ସେହି ଦୁଃଖୀ ପାଖରେ ଅଟକାଇରଖେ, ଆଉ ସମବେଦନା ଦେଖାଇ ନିଜ ସାଧମତେ ତା'ର ଦୁଃଖକଷ୍ଟ ଲାଘବ କରିବାପାଇଁ ପାଖରେ ଠିଆହୋଇଥାଏ, ସିଏ ହିଁ ଏକ ଶ୍ରେଷ୍ଠ କଚୁଆନ୍ – ତେଣୁ ନିଶ୍ଚୟ ଜଣେ ମଣିଷ। ଅନ୍ୟମାନେ ମଣିଷ ପରି ଦିଶୁଥିଲେ ମଧ୍ୟ ମଣିଷ ପରି ଅଭିନୟ କରୁଥିବା ମଣିଷ-ବେଶଧାରୀ ଅନ୍ୟ କୌଣସି ଜନ୍ତୁ ମାତ୍ର।

# ବିନାଶକାଳେ

କେହି କେହି କହନ୍ତି ଯେ ବିନାଶ କାଳ ଉପସ୍ଥିତ ହେଲେ ବୁଦ୍ଧି ବିପରୀତ ହୋଇଯାଏ । ଅନ୍ୟ କାହାରି ମତରେ ବିନାଶ ପୂର୍ବରୁ ବୁଦ୍ଧିର ନାଶ ହୁଏ ଓ ତା' ପୂର୍ବରୁ ସ୍ମୃତି ବିଭ୍ରମ ହୋଇସାରିଥାଏ । ଏଥିରୁ ମନେହୁଏ ଯେ ବୁଦ୍ଧି ବିପରୀତ ହେବା ଓ ବୁଦ୍ଧିନାଶ ହେବା ପ୍ରାୟ ଏକା କଥା । ଶୂନ୍ୟ ଓ ବିଯୁକ୍ତ ସଂଖ୍ୟାର ଫଳାଫଳ ସମାନ ହେଉଥିବାରୁ ବୁଦ୍ଧି କହିଲେ ଠିକ୍ କଣ ବୁଝାଏ ସେ ସମ୍ବନ୍ଧରେ ସ୍ୱାଭାବିକ ଭାବରେ ଜିଜ୍ଞାସା ଜନ୍ମେ ।

ଜ୍ଞାନୀମାନେ କହନ୍ତି ଯେ ଯାହାଦ୍ୱାରା ମଣିଷ ଭଲ ଓ ମନ୍ଦ, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ, ହିତ ଓ ଅହିତ, ପ୍ରବୃତ୍ତି ଓ ନିବୃତ୍ତି ତଥା ବନ୍ଧନ ଓ ମୁକ୍ତିକୁ ଉଚିତ ଭାବରେ ନିର୍ଦ୍ଧାରଣ କରିପାରେ, ତାହା ହିଁ ବୁଦ୍ଧି । ତେଣୁ ବୁଦ୍ଧି ଯେତେବେଳେ ନାଶ ହୋଇଯାଏ, ମଣିଷ ହିତାହିତ ଜ୍ଞାନ ହରାଇବସେ ଓ ବୁଦ୍ଧି ଯେତେବେଳେ ବିପରୀତ ହୋଇଯାଏ, ସେ ମନ୍ଦକୁ ଭଲ ବୋଲି ବୁଝେ, ଅହିତକୁ ହିତ ବୋଲି ଜ୍ଞାନ କରେ, ଅକର୍ତ୍ତବ୍ୟକୁ କର୍ତ୍ତବ୍ୟ ବୋଲି ଧରିନିଏ । ବିପରୀତ ବୁଦ୍ଧି ଓ ବୁଦ୍ଧିନାଶର ପରିଣାମ ତେଣୁ ସମାନ – ବିନାଶ ।

ବ୍ୟକ୍ତିବିଶେଷର ବୁଦ୍ଧି ପରି ସମାଜ ଓ ଜାତିର ବୁଦ୍ଧି ମଧ୍ୟ କଳ୍ପନା କରାଯାଇପାରେ । ତେଣୁ କୌଣସି ବ୍ୟକ୍ତିର ବିନାଶ ହେବା ପୂର୍ବରୁ ତାର ବୁଦ୍ଧି ଯେପରି ବିପରୀତ ହୁଏ, କୌଣସି ଜାତିର ପତନ ହେବା ପୂର୍ବରୁ ସେ ଜାତିର ବୁଦ୍ଧି ମଧ୍ୟ ନିଶ୍ଚୟ ବିପରୀତ ହେଉଥିବ ।

ଏ କଥା ନିଶ୍ଚିତ ଯେ ଦିନେ ଶିକ୍ଷା, ସଭ୍ୟତା ଓ ସଂସ୍କୃତି କ୍ଷେତ୍ରରେ ଭାରତ ପୃଥିବୀରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା । ବେଦ ଓ ଉପନିଷଦ୍‌ର ଜ୍ଞାନଠାରୁ ଜ୍ଞାନ ନାହିଁ ବୋଲି ଆଜି ମଧ୍ୟ ଅନେକେ ସ୍ୱୀକାର କରନ୍ତି । ସେ ଦିନର ଭାରତୀୟ ପ୍ରଗତି ଏକଦେଶଦର୍ଶୀ ନଥିଲା । କେବଳ ଭୃଗୁ ଓ ଅଙ୍ଗିରା, ବ୍ୟାସ ଓ କାଳିଦାସ, ପାଣିନି ଓ ଆର୍ଯ୍ୟଭଟ୍ଟ, ଚ୍ୟବନ ଓ ଚରକ, ବୁଦ୍ଧ ଓ ମହାବୀରଙ୍କ ପରି କେତେ ବ୍ୟକ୍ତିବିଶେଷ ଯେ ଜ୍ଞାନ ଓ ବିଜ୍ଞାନର ଚରମ ସ୍ଥଳକୁ ପହଞ୍ଚିଥିଲେ ତା' ନୁହେଁ, ଭାରତୀୟ ସମାଜ ତଥା ଆର୍ଯ୍ୟ ଜାତି ପ୍ରଗତିର ଶୀର୍ଷଦେଶରେ ପହଞ୍ଚି ପାରିଥିଲା । ପ୍ରଶାନ୍ତ ମହାସାଗରର ସେପାରିରେ ମେକ୍‌ସିକୋ ଓ ଦକ୍ଷିଣ ଆମେରିକାର ପେରୁ, ଚିଲି

ପ୍ରଭୃତି ଦେଶମାନଙ୍କରେ ଆବିଷ୍କୃତ ମାୟା-ସଭ୍ୟତା ଉପରେ ଭାରତୀୟ ସଭ୍ୟତାର ପ୍ରଭାବ ଆଜି ମଧ୍ୟ ତାର ସାକ୍ଷ୍ୟ ଦିଏ ।

ଦିନ ଥିଲା ଯେତେବେଳେ ବ୍ରହ୍ମଲୋକ, ଦେବଲୋକ, ଗନ୍ଧର୍ବଲୋକ ପ୍ରଭୃତି ଲୋକମାନଙ୍କ ସହିତ ଭୂର୍ଲୋକର ସମ୍ପର୍କ ତଥା ଅନ୍ତରୀକ୍ଷ ଯାତ୍ରୀମାନଙ୍କ ଗମନାଗମନର ବର୍ଣ୍ଣନାକୁ ଭାରତୀୟ ପୁରାଣ ଲେଖକମାନଙ୍କ ସ୍ୱପ୍ନ ଓ କଳ୍ପନାର ବିଳାସ ବୋଲି ଲୋକେ ଉପହାସ କରୁଥିଲେ । ପାଶ୍ଚାତ୍ୟ ଜଗତର ସୁବିଖ୍ୟାତ ବୈଜ୍ଞାନିକ-ପ୍ରବନ୍ଧ-ଲେଖକ ଡକ୍ଟର ଏରିଚ୍ ଭନ୍ ଡେନିକେନ୍ ଏବେ କହିଛନ୍ତି ଯେ, ତାଙ୍କର ପୂର୍ଣ୍ଣ ବିଶ୍ୱାସ ଅନ୍ୟ ସୌରଜଗତବାସୀ ଅନ୍ତରୀକ୍ଷ ଯାତ୍ରୀମାନେ ଦିନେ ଏ ଭୂପୃଷ୍ଠକୁ ଯିବା ଆସିବା କରୁଥିଲେ ଓ ପୁଷ୍ପକ ବିମାନର ଅସ୍ତିତ୍ୱ କେବଳ କଳ୍ପନାପ୍ରସୂତ ନଥିଲା ।

ତପ ଓ ସାଧନାଲବ୍ଧ ଜ୍ଞାନ ଓ ଶକ୍ତି ବଳରେ ମଣିଷ ଯେ ଅସାଧ୍ୟ ସାଧନ କରିପାରେ ଆଜି ମଧ୍ୟ ତହିଁର ସୂଚନା ମିଳେ । ମଣିଷର ଅନ୍ତର୍ନିହିତ ଶକ୍ତି ତଥା ମନର ଶକ୍ତି ଯେ ଅସୀମ ସେ ତଥ୍ୟ ଉଣା ଅଧିକେ ସ୍ୱୀକୃତି ପାଇସାରିଛି । ପ୍ରକୃତିର ଗବେଷଣାଗାର ପ୍ରସୂତ ସର୍ବଶ୍ରେଷ୍ଠ ଯନ୍ତ୍ରମଣିଷର ମସ୍ତିଷ୍କ ଯେ କଳ୍ପନାତୀତ ଭାବରେ ଗୋଟିଏ ଶକ୍ତିଶାଳୀ 'ରିସିଭିଂ' ଓ 'ଟ୍ରାନ୍ସମିଟିଂ' ବେତାର କେନ୍ଦ୍ର ଓ କମ୍ପ୍ୟୁଟର୍ ସେ କଥା ଜଣାଶୁଣା । ଏହି ମସ୍ତିଷ୍କ ଟେଲିଭିଜନ୍ ସେଟ୍ ପରି ମଧ୍ୟ କାମ କରିପାରେ । ଉପଯୁକ୍ତ ଯନ୍ତ୍ରଚାଳକ ବିନା ଯେ କୌଣସି ଯନ୍ତ୍ର ଯେପରି ମୂଲ୍ୟହୀନ ଓ ଅର୍ଥହୀନ, ମଣିଷର ମସ୍ତିଷ୍କ ମଧ୍ୟ ଠିକ୍ ସେପରି । ମସ୍ତିଷ୍କର ଉପଯୁକ୍ତ ବ୍ୟବହାର କରି ନ ଜାଣି ଦୁଇକୁ ଦୁଇରେ ଗୁଣିବା ଜଣକ ପାଇଁ କଷ୍ଟସାଧ୍ୟ ହେଉଥିବାବେଳେ କୁମାରୀ ଶକୁନ୍ତଳାଙ୍କ ପରି ଅନ୍ୟ କେହି ଅସାଧ୍ୟ ଓ ଅତ୍ୟନ୍ତ ଜଟିଳ ଅଙ୍କସବୁ ମୁହଁରେ ମୁହଁରେ ସମାଧାନ କରିଦିଅନ୍ତି । କେହି କେହି ପୁସ୍ତକକୀଟ ଦିନ ରାତି ଘୋଷି ଘୋଷି ପ୍ରଥମ ପାନିପଥ ଯୁଦ୍ଧ କେବେ ଓ କେଉଁଠି ଘଟିଥିଲା ମନେ ରଖି ପାରୁନଥିଲାବେଳେ ୧୨ ବର୍ଷ ବୟସ୍କା ସରୋଜବାଳା ବେଦ, ଉପନିଷଦ୍, କୋରାନ୍, ବାଇବଲ୍ ଗ୍ରନ୍ଥସାହେବ ପ୍ରଭୃତି ମୁହଁରେ ମୁହଁରେ ଗାଇଯାଆନ୍ତି ।

ଦନ୍ତୁରା ଲୁହାକୁ ପଥରରେ ମାଜି ଘଷି ଧାରୁଆ କଲାପରି ସାଧନା ବଳରେ ମସ୍ତିଷ୍କକୁ ମନ ସାହାଯ୍ୟରେ ତୀକ୍ଷ୍ଣ ଓ ମାର୍ଜିତ କରାଯାଇପାରେ । ଭାରତୀୟ ଜ୍ଞାନ ଓ ବିଜ୍ଞାନ ମୁଖ୍ୟତଃ ଏ ଦିଗରେ ହିଁ ପ୍ରଗତି କରିଥିଲା । ସେହି ଜ୍ଞାନ-ବିଜ୍ଞାନର ବିନାଶ କାହିଁକି ହେଲା, କାବୁଲ ଆଡୁ ଆସିଥିବା କେତେ ଶହ ଘୋଡ଼ସବାର ଏ ଜାତିକୁ ଥରକୁ ଥର ପରାଧୀନ କିପରି କଲେ ଓ ଏ ଜାତି ଧୀରେ ଧୀରେ କେମିତି ପଙ୍ଗୁ ହୋଇଗଲା ସେ ସମ୍ବନ୍ଧରେ ମନ ଭିତରେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉଠେ ।

ଏପରି ଏକ ଜଟିଳ ପ୍ରଶ୍ନର ଉତ୍ତର ଖୋଜି ପାଇବା ସହଜ ନୁହେଁ; ତଥାପି ଏ କଥା ନିର୍ବିବାଦରେ କୁହାଯାଇପାରେ ଯେ ଜାତି ଏ ଦଶାରେ ପହଞ୍ଚିବା ପୂର୍ବରୁ ତା'ର ବୁଦ୍ଧି ନିଶ୍ଚୟ ବିପରୀତ ହୋଇଯାଇଥିବ । ସେହି ବିପରୀତ ବୁଦ୍ଧି କ'ଣ ହୋଇପାରେ ଓ ତା' କିପରି ଭାବରେ ଘଟିଥିବାର ସମ୍ଭାବନା, ସେ ବିଷୟରେ କିଛି ଆଲୋଚନା କରାଯାଇପାରେ ।

ଏ କଥା ନିଶ୍ଚିତ ଯେ ସେଦିନର ଭାରତୀୟ ସମାଜ ଚତୁର୍ବର୍ଣ୍ଣ ଉପରେ ପ୍ରତିଷ୍ଠିତ ଥିଲା । ଏହି ବର୍ଣ୍ଣ ବିଭାଗ କିନ୍ତୁ ଗୁଣ ଓ କର୍ମ ଅନୁଯାୟୀ କରାଯାଇଥିଲା । ଯେଉଁମାନେ ଜ୍ଞାନାର୍ଜନ, ଶିକ୍ଷା, ଦାନ, ତପ ଓ ସାଧନାରେ ରତ ଥିଲେ, ସେମାନେ ହେଉଥିଲେ ବ୍ରାହ୍ମଣ । ବ୍ରାହ୍ମଣର ପୂର୍ବାବସ୍ଥାରେ ବ୍ରହ୍ମଜ୍ଞାନାନ୍ୱେଷୀ ସାଧକମାନଙ୍କୁ ବ୍ରହ୍ମଚାରୀ କୁହାଯାଉଥିଲା । ସାଧନାର ସର୍ବଶେଷ ପର୍ଯ୍ୟାୟରେ କେହି କେହି ବ୍ରାହ୍ମଣ ବ୍ରହ୍ମରଷି ହେଉଥିଲେ । ଇନ୍ଦ୍ରିୟ ଦମନ, ସରଳ ଜୀବନ ଯାପନ, ଶାରୀରିକ ଓ ମାନସିକ ପବିତ୍ରତାରେ ବିଶ୍ୱାସୀ ସାତ୍ତ୍ୱିକ ଗୁଣାବଳୀର ଅଧିକାରୀ ବ୍ୟକ୍ତିବିଶେଷ ହିଁ ବ୍ରାହ୍ମଣ ହେବା ପାଇଁ ଚେଷ୍ଟିତ ଥିଲେ । ପ୍ରକୃତିଗତ ଗୁଣ ସବୁ ନେଇ ଲୋକେ ନିଜ ନିଜ ସ୍ୱାଭାବିକ କର୍ମସବୁ ବାଛି ନେଉଥିଲେ । ସେ ଅନୁସାରେ ସେମାନେ ହେଉଥିଲେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ କିମ୍ବା ଶୂଦ୍ର ।

ଅନେକ ସମୟରେ ପିତାମାତାଙ୍କ ଗୁଣ ସନ୍ତାନ ସନ୍ତତିଙ୍କ ମଧ୍ୟରେ ପ୍ରାକୃତିକ ଗୁଣ ଆକାରରେ ପ୍ରକାଶ ପାଇଥାଏ । ଘରର ପରିବେଶ, ସାଙ୍ଗସାଥୀ ଓ ସମାଜର ପରିବେଷ୍ଟନୀ ମଧ୍ୟ ମଣିଷର ଗୁଣ ଉପରେ ପ୍ରଭାବ ପକାଏ । ତେଣୁ ସାଧାରଣତଃ ବ୍ରାହ୍ମଣର ସନ୍ତାନ ବ୍ରାହ୍ମଣ-ଗୁଣାବଳୀ ଓ କ୍ଷତ୍ରିୟର ସନ୍ତାନ କ୍ଷତ୍ରିୟ-ଗୁଣାବଳୀର ଅଧିକାରୀ ହେଉଥିବାରୁ ପ୍ରାୟତଃ ବ୍ରାହ୍ମଣର ସନ୍ତାନ ବ୍ରାହ୍ମଣ, କ୍ଷତ୍ରିୟର ସନ୍ତାନ କ୍ଷତ୍ରିୟ ଓ ବଣିକର ସନ୍ତାନ ବୈଶ୍ୟ ହେଉଥିଲା । ତଥାପି ବେଳେ ବେଳେ ସନ୍ତାନ ସନ୍ତତିଙ୍କ ଗୁଣ ବାପା ମା'ଙ୍କ ଗୁଣଠାରୁ ଭିନ୍ନ ହୋଇଥାଏ । ସେପରି ସ୍ଥଳେ ସେ ଦିନର ଭାରତୀୟ ସମାଜରେ ବାପ ଓ ପୁଅର ଗୁଣ ଭିନ୍ନ ଭିନ୍ନ ହେଉଥିଲେ ସେମାନଙ୍କ କର୍ମ ମଧ୍ୟ ଭିନ୍ନ ହୋଇପାରୁଥିଲା ଓ କ୍ଷତ୍ରିୟ ପ୍ରଭୃତି ଅନ୍ୟ ବର୍ଣ୍ଣର ସନ୍ତାନ ବ୍ରାହ୍ମଣ ହେବାରେ କୌଣସି ବାଧା ନଥିଲା । ବିଶ୍ୱାମିତ୍ରଙ୍କ ଜୀବନ ତହିଁର ସର୍ବଶ୍ରେଷ୍ଠ ଦୃଷ୍ଟାନ୍ତ । ବ୍ରହ୍ମତେଜ ଫଳରେ ସେ ଯେଉଁ ଅଦ୍ଭୁତ କର୍ମ ସବୁ କରିଯାଇଥିଲେ, ତା'ର ପଟାନ୍ତର ନାହିଁ । ସେ ସମ୍ବନ୍ଧରେ ତ୍ରିଶଙ୍କୁଙ୍କ କାହାଣୀ ମନେପଡ଼େ ।

ବ୍ରହ୍ମଜ୍ଞାନୀ ଅସମ୍ଭବକୁ ମଧ୍ୟ ସମ୍ଭବ କରିପାରେ ଜାଣି ସୂର୍ଯ୍ୟବଂଶୀ ରାଜା ତ୍ରିଶଙ୍କୁ ସ୍ୱଶରୀରେ ସ୍ୱର୍ଗକୁ ଯିବା ଉଦ୍ଦେଶ୍ୟରେ ଯଥାରୀତି ଯାଗ କରିବାକୁ ତାଙ୍କ କୁଳପୁରୋହିତ ବଶିଷ୍ଠଙ୍କୁ ଅନୁରୋଧ କଲେ । ଏପରି ଏକ ଅବାଞ୍ଛିତ କାମନାରୁ କ୍ଷାନ୍ତ

ହେବାପାଇଁ ବଶିଷ୍ଠ ଉପଦେଶ ଦେଲେ; କିନ୍ତୁ ସେ କାମନାରୁ କ୍ଷାନ୍ତହେବା ପରିବର୍ତ୍ତରେ ତ୍ରିଶଙ୍କୁ ବଶିଷ୍ଠଙ୍କ ଜ୍ଞାନକୁ ଅବମାନନା କଲେ । ପିତାଙ୍କୁ ଭର୍ତ୍ସନା କରିଥିବାରୁ ବଶିଷ୍ଠଙ୍କ ପୁତ୍ରମାନେ ତ୍ରିଶଙ୍କୁଙ୍କୁ ଅଭିଶାପ ଦେଲେ ଓ ତ୍ରିଶଙ୍କୁ ହେଲେ ଚଣ୍ଡାଳ ।

ଚଣ୍ଡାଳ ତ୍ରିଶଙ୍କୁ ତଥାପି ଜିଦ୍ ଧରି ବସିଲେ, ସେ ସ୍ୱଶରୀରରେ ସ୍ୱର୍ଗକୁ ଯିବେ । ଚଣ୍ଡାଳର ଯଜ୍ଞ କରିବାକୁ କୌଣସି ଋଷି ରାଜି ହେଲେନି । ସର୍ବଶେଷରେ ତ୍ରିଶଙ୍କୁ ମହାକୋପୀ ଓ ମହାତେଜା ବିଶ୍ୱାମିତ୍ରଙ୍କୁ ଯଜ୍ଞ ପାଇଁ ବରଣ କଲେ । ଯଜମାନ ଚଣ୍ଡାଳ ହେଲେ ମଧ୍ୟ ତାର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରିବା ଅନୁଚିତ ବୋଲି ବିଶ୍ୱାମିତ୍ର ନିମନ୍ତ୍ରଣ ଗ୍ରହଣ କଲେ । ଚଣ୍ଡାଳ ପାଇଁ କରୁଥିବା ବିଶ୍ୱାମିତ୍ରଙ୍କ ଏ ଯଜ୍ଞକୁ ବାସନ୍ଦ କରି ଅନେକ ଋଷି ଆସିଲେନି, ଦେବତାମାନେ ମଧ୍ୟ ଚରୁ ଗ୍ରହଣ କରିବାକୁ ମନାକରିଦେଲେ । ତଥାପି ଯଜ୍ଞ ଶେଷ ହେଲା ଓ ବିଶ୍ୱାମିତ୍ର ଦେଲେ ପୂର୍ଣ୍ଣାହୁତି । ଯଜ୍ଞକୁଣ୍ଡରୁ ତ୍ରିଶଙ୍କୁ ସ୍ୱଶରୀରରେ ଛୁଟିଗଲେ ଆକାଶକୁ – ସ୍ୱର୍ଗଲୋକ ଅଭିମୁଖରେ ଆଜିର ରକେଟ୍ ପରି । ସ୍ୱର୍ଗ ଯେତେବେଳେ ପାଖେଇ ଆସିଲା, ଇନ୍ଦ୍ର ଦେବତା ପାଟିକରି ଉଠିଲେ – 'ତ୍ରିଶଙ୍କୁ, ତୁ ଫେରିଯା ।' ଅଧୋମୁଖୀ ତ୍ରିଶଙ୍କୁଙ୍କ ପତନ ଆରମ୍ଭ ହେଲା । ବିଶ୍ୱାମିତ୍ର ଏ ପାଖରୁ ଚିତ୍କାର କଲେ – 'ତ୍ରିଶଙ୍କୁ, ତଳକୁ ଖସନା – ଉପରକୁ ଯାଅ ।' ତ୍ରିଶଙ୍କୁ ଉପରକୁ ଯାଇ ପାରିଲେନି କି ତଳକୁ ଖସି ପାରିଲେନି, ରହିଗଲେ ଅଧା ସ୍ୱର୍ଗରେ ନ ଯଯୌ ନ ତସ୍ଥୌ ଅବସ୍ଥାରେ । ବିଶ୍ୱାମିତ୍ର ସୃଷ୍ଟି କଲେ ନୂତନ ସ୍ୱର୍ଗ । ବ୍ରହ୍ମତେଜ ଦେଖାଇଦେଲା ସେଦିନ ତାର ଅସୀମ ପ୍ରଭାବ ।

ବିଶ୍ୱାମିତ୍ର ଥିଲେ କ୍ଷତ୍ରିୟର ସନ୍ତାନ । ସାଧନା ବଳରେ ସେ ହୋଇଥିଲେ ବ୍ରାହ୍ମଣ ଓ ବ୍ରହ୍ମଋଷି । ଅନ୍ୟ ଦିଗରେ ବ୍ରାହ୍ମଣର ସନ୍ତାନ ହୋଇ ମଧ୍ୟ ରାବଣ ରାକ୍ଷସ ମଧ୍ୟରେ ଗଣ୍ୟ ହୋଇଥିଲା ।

ପରେ କିନ୍ତୁ ଅବସ୍ଥା ବଦଳିଗଲା ।

ଜାତିର ପବନ ପୂର୍ବରୁ ଅର୍ଥର କଦର୍ଥ ହେଲା । ବ୍ରାହ୍ମଣର ପୁଅ, ତା' ପୁଅ ଓ ତା' ପୁଅ ତାମସିକ ଗୁଣ ସବୁ ନେଇ ମଧ୍ୟ ବ୍ରାହ୍ମଣ ହେଲେ । ବ୍ରାହ୍ମଣ ହେବା ହେଲା ଗୋଟିଏ ବଂଶଗତ ବୃତ୍ତି – ପେଶା । ବ୍ରହ୍ମଜ୍ଞାନ ତ ଦୂରର କଥା – ସାଧାରଣ ଶିକ୍ଷାଦୀକ୍ଷାରୁ ଦୂରେଇ ଯାଇ ମଧ୍ୟ ସେମାନେ ହେଲେ ବ୍ରାହ୍ମଣ । ନାକ ଚିପି, ଘଣ୍ଟି ବଜାଇ, ଓଁ ହ୍ରିଁ କ୍ଲୀଂ–କଂ ଖଂ ଗଂ ଘଂ...କହି କରତଳ କର ପୃଷ୍ଠାଭ୍ୟାଂ ଫଟ୍ କରି ହାତରେ ଧନୁମୁଦ୍ରା ଓ ମହାମୁଦ୍ରା ଦେଖାଇ ଯଜମାନ ପାଖରୁ ଯାହା ସାଉଁଟି ନେଇପାରିଲେ ନେଇଗଲେ । ଦାନ ଦକ୍ଷିଣାର ଆଶାୟୀ ଏପରି ଅନେକେ ଶମ, ଦମ, ତପ, କ୍ଷାନ୍ତି, ଜ୍ଞାନ ଓ ବିଜ୍ଞାନ ସଙ୍ଗରେ କୌଣସି ସମ୍ପର୍କ ମଧ୍ୟ ରଖିଲେନି ।

ଯଥା ସମୟରେ ଜ୍ଞାନ-ବିଜ୍ଞାନ-ବିହୀନ ଏପରି ବ୍ରାହ୍ମଣମାନେ ବ୍ରାହ୍ମଣତ୍ୱକୁ ତାଙ୍କର ଏକଚାଟିଆ ଅଧିକାର କରିନେଲେ ଓ ନିଜେ ଜ୍ଞାନଚର୍ଚ୍ଚା ନ କରିବା ସଙ୍ଗେ ସଙ୍ଗେ ଅନ୍ୟ କାହାରିକୁ ମଧ ତପ କିମ୍ୱା ଜ୍ଞାନ ଚର୍ଚ୍ଚା କରାଇଦେଲେନି । ଶୂଦ୍ର ତପସ୍ୟା କରୁଥିବାରୁ ରାମଙ୍କ ରାଜ୍ୟରେ ବ୍ରାହ୍ମଣ ସନ୍ତାନର ଅକାଳ ମୃତ୍ୟୁ ହେଲା ବୋଲି ସେମାନେ ଯୁକ୍ତି ବାଢ଼ିବସିଲେ ।

ବ୍ରାହ୍ମଣ ଶବ୍ଦର ଅର୍ଥକୁ ଯେ କେବଳ କଦର୍ଥ କରାଗଲା, ତାହା ନୁହେଁ, ସେ ସଙ୍ଗରେ ଚିନ୍ତାଧାରାର ଯେଉଁ ବିକୃତ ପ୍ରକାଶ ପାଇଲା, ତାହାରି ଫଳରେ ଅନ୍ୟାନ୍ୟ ବର୍ଣ୍ଣାଶ୍ରମର ସାଧନା ମାର୍ଗରେ ଦ୍ୱନ୍ଦ୍ୱ ଦେଖାଦେଲା । ସାଧନାର ସମସ୍ତ ପଥ କଣ୍ଟକିତ ହେଲା ।

ଯେଉଁ ମହାନ୍ ସଂସ୍କୃତି ଚତୁର୍ବର୍ଣ୍ଣ ସୃଷ୍ଟି କରିଥିଲା – ସେହି ସଂସ୍କୃତି ହିଁ ବିଭିନ୍ନ ଗୁଣ ବିଶିଷ୍ଟ ବ୍ୟକ୍ତି ବିଶେଷଙ୍କ ପାଇଁ ସାଧନାର ଭିନ୍ନ ଭିନ୍ନ ମାର୍ଗ ଦର୍ଶାଇ ଦେଇଥିଲା ।

ମୁକ୍ତିପାଇଁ ଜ୍ଞାନ, ଭକ୍ତି ଓ ତପ ସଙ୍ଗରେ ଦେଖା ଦେଇଥିଲା କର୍ମର ମାର୍ଗ – ଜାତି ଓ ସମାଜକୁ କର୍ମରୁ ବିମୁଖ ନ କରିବା ଉଦ୍ଦେଶ୍ୟରେ । କାମନା-ବିହୀନ ନିଷ୍କାମ-କର୍ମ ଯେ କୌଣସି କଠୋର ତପସ୍ୟାଠାରୁ ନ୍ୟୁନ ନଥିଲା ବୋଲି ସେମାନେ ଘୋଷଣା କରିଯାଇଥିଲେ । କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ସମସ୍ତଙ୍କ ପାଇଁ ଏହି କର୍ମଯୋଗର ଦ୍ୱାର ଉନ୍ମୁକ୍ତ ଥିଲା । କର୍ତ୍ତବ୍ୟ କର୍ମ ପାଳନରୂପକ ସାଧନା ଯେ ଧ୍ୟାନ ଧାରଣା ଓ ତପସ୍ୟାଠାରୁ ଶ୍ରେୟସ୍କର ଏ ସମ୍ୱନ୍ଧରେ ଗୋଟିଏ ଜଣାଶୁଣା କାହାଣୀ ମନେପଡ଼େ ।

ବ୍ରାହ୍ମଣ ପରିବାରର ବୁଢ଼ା ଓ ବୁଢ଼ୀ । ଏକମାତ୍ର ପୁଅ ହିଁ ସେହି ବୁଢ଼ାବୁଢ଼ୀଙ୍କ ଶେଷ ଆଶା ଓ ଭରସା । ପୁଅ କିନ୍ତୁ ଠିକ୍ କରିନେଲା ଯେ ବୁଢ଼ା ବାପ ଓ ବୁଢ଼ୀ ମା'ଙ୍କ ପାଖରେ ଘାଣ୍ଟି ନ ହୋଇ ସେ ଯିବ ତପସ୍ୟା କରି – ନିଜର ମୁକ୍ତି ଉଦ୍ଦେଶ୍ୟରେ ।

ବରଗଛ ତଳେ ଧ୍ୟାନରେ ବସି ଅଥବା ଗୋଟିଏ ଗୋଡ଼ରେ ଠିଆହୋଇ ରହି ସେ ଆରମ୍ଭ କଲା ତାର କଠୋର ସାଧନା । ବର୍ଷ ବର୍ଷ ବିତିଗଲା । ବ୍ରହ୍ମା, ବିଷ୍ଣୁ କିମ୍ୱା ମହେଶ୍ୱର କେହି ଦେଖାଦେଲେନି । ଦିନେ ଏକଗୋଡ଼ରେ ଠିଆ ହୋଇ ପ୍ରାଣାପାନ ରୁନ୍ଧି ସେ ସାଧନା କରୁଛି, ହଠାତ୍ ଗଛ ଉପରେ ବସିଥିବା ଗୋଟିଏ ବଗ ତା' ମୁଣ୍ଡ ଉପରେ ମଳତ୍ୟାଗ କଲା । ଏକେ ତ ଘୋର ତପରେ ମଧ କେହି ଦେଖା ଦେଉନଥିବାରୁ ସାଧକର ଧୈର୍ଯ୍ୟଚ୍ୟୁତି ହୋଇ ସାରିଥିଲା – ତହିଁରେ ପୁଣି ଏପରି ହେୟଜ୍ଞାନ – ସେ ଗଛ ଉପରେ ବସିଥିବା ବଗଟିକୁ ରୋଷକଷାୟିତ ନୟନରେ ଚାହିଁଦେଲା ଓ ଦୈବାତ୍ ସେ କୋପାନଳରେ ବଗଟି ଜଳିଯାଇ ତଳେ ଖସିପଡ଼ିଲା । ସାଧନାର ଆଶୁ ଫଳଲାଭର ଚାକ୍ଷୁଷ ପ୍ରମାଣ ପାଇ ଗର୍ବରେ ଫୁଲିଉଠିଲା ସାଧକ ।

କିଛିଦିନ ପରର କଥା । ଭିକ୍ଷାପାଇଁ ସାଧକ ପାଖର ଗୋଟିଏ ଗାଁକୁ ଯାଇ କୌଣସି ଗୃହସ୍ଥର ଦ୍ୱାରରେ ନିଜର ଉପସ୍ଥିତିର ସଙ୍କେତ ଦେଇଛି । ସମୟ ଗଡ଼ିଚାଲିଛି, ତଥାପି ଗୃହିଣୀଙ୍କ ଦେଖାଦର୍ଶନ ନାହିଁ । ସାଧକଙ୍କର ପୁଣି ଧୈର୍ଯ୍ୟଚ୍ୟୁତି ହୋଇବସିଲା । ଏତିକିବେଳେ ଗୃହିଣୀ ଭିକ୍ଷାପାତ୍ର ନେଇ ଦେଖାଦେଲେ । ସାଧକ ସାଧନାର ଫଳ ଦେଖାଇଦେବା ଉଦ୍ଦେଶ୍ୟରେ ପୁଣି ରୋଷ-କଷାୟିତ ନୟନରେ ଯେତେବେଳେ ଗୃହିଣୀଙ୍କୁ ଚାହିଁଲେ, ଗୃହିଣୀ ପ୍ରଶାନ୍ତ ବଦନରେ ସ୍ୱାମୀ-ସେବାପାଇଁ ବିଳମ୍ବ ହୋଇଥିବାରୁ କ୍ଷମାଭିକ୍ଷା ମାଗି କହିଲେ ଯେ, ସେ ବଗ ନୁହନ୍ତି ଯେ ଜଳିଯିବେ । ବଗ କଥା ତ ତାଙ୍କ ଛଡ଼ା ଆଉ କେହି ଜାଣନ୍ତିନି, ସାଧକ ବୁଝିପାରିଲେ ଯେ ଗୃହିଣୀ ଜଣେ ଭୂତ ଭବିଷ୍ୟତ ଜ୍ଞାନୀ । ନିଜ ଭୁଲ ପାଇଁ ଲଜ୍ଜିତ ହୋଇ ସେ ଗୃହିଣୀଙ୍କୁ କିଛି ଧର୍ମଶିକ୍ଷା ଦେବାପାଇଁ ଅନୁରୋଧ କଲେ ।

ଗୃହିଣୀ କିନ୍ତୁ ତାଙ୍କୁ ପାଖ ଗାଁର ଜଣେ ମହାଜ୍ଞାନୀଙ୍କ ନାମ କହି ତାଙ୍କ ପାଖକୁ ଯିବାକୁ ଉପଦେଶ ଦେଲେ ।

ସାଧକ ସେହି ଗାଁକୁ ଗଲେ । ଗାଁରେ କିନ୍ତୁ ସେହି ମହାଜ୍ଞାନୀଙ୍କ ବିଷୟରେ କେହି କିଛି କହିପାରିଲେନି । ସାଧକ ଯେଉଁ ନାଁଟି କହିଲେ, ସେ ନାଁର ଜଣେ ମାତ୍ର ଲୋକ– ଜାତିରେ ଶବର – ଗାଁ ଦାଣ୍ଡରେ ମାଂସ କାଟି ବିକ୍ରୀ କରେ । ଗୃହିଣୀ ବୋଧହୁଏ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଜଣେ ଇତର ଲୋକ ପାଖକୁ ପଠାଇଛନ୍ତି ଭାବି ସାଧକ ଯେତେବେଳେ ତା' ପାଖକୁ ଗଲେ, ଶବର ବଗ ମାରିବା ଓ ଗୃହିଣୀ ପଠାଇବା କଥା ବଖାଣି ମାଂସ ବିକ୍ରୀ ଶେଷହେବା ପର୍ଯ୍ୟନ୍ତ ତାଙ୍କୁ କିଛି ସମୟ ଅପେକ୍ଷା କରିବାକୁ କହିଲେ ଓ ଶେଷରେ ଉପଦେଶ ଦେଲେ ଯେ କୌଣସି କାମନା କିମ୍ବା ବାସନା ନ ରଖି ନିଜ କର୍ତ୍ତବ୍ୟ କର୍ମ କରିଯିବାଠାରୁ ବଳି ଆଉ ବଡ଼ ତପସ୍ୟା ନାହିଁ । ଜ୍ଞାନୀ ଶବର ସାଧକଙ୍କୁ ତାଙ୍କ ଘରକୁ ଫେରିଯାଇ ବୁଢ଼ାବାପ ଓ ବୁଢ଼ୀମାଙ୍କ ସେବା କରିବାପାଇଁ ନିର୍ଦ୍ଦେଶ ଦେଲେ ।

ବ୍ରାହ୍ମଣ ଶବ୍ଦର କଦର୍ଥ ପରେ ପରେ କର୍ମ ଶବ୍ଦର ମଧ୍ୟ କଦର୍ଥ ହେଲା । 'କର୍ମ'ର ଅର୍ଥ କରାହେଲା କର୍ମକାଣ୍ଡରେ ଦଶାହ ବ୍ରତ ବିବାହାଦି କର୍ମକର୍ମାଣି । 'କର୍ତ୍ତବ୍ୟ କର୍ମ' ହେଲା ଚନ୍ଦନ ଓ ବିଭୂତି ଲେପନ ସହ ସନ୍ଧ୍ୟା ଗାୟତ୍ରୀ ପୂଜା ଆଦି 'ନିତ୍ୟକର୍ମ', କର୍ମକର୍ତ୍ତା ଗାୟତ୍ରୀ ମନ୍ତ୍ର ବୁଝୁ ବା ନବୁଝୁ । ଯେଉଁ ସଂସ୍କୃତି ଇନ୍ଦ୍ରପଦକୁ ମଧ୍ୟ କାଳର ଅଧୀନ ବୋଲି କହି ସ୍ୱର୍ଗପ୍ରାପ୍ତି କ୍ଷଣସ୍ଥାୟୀ ତେଣୁ ତ୍ୟଜ୍ୟ ବୋଲି ମନ୍ତବ୍ୟ ଦେଇ ସୁଖ ସହିତ ପ୍ରତ୍ୟେକ କାମନାରୁ ରହିତହେବାପାଇଁ ଶିକ୍ଷାଦେଇ ମୁକ୍ତିର ସନ୍ଧାନ ଲୋଡ଼ିଥିଲା, ସେହି ସଂସ୍କୃତିର ସନ୍ତାନ ରାତିଦିନ 'ପୁତ୍ରଂ ପୌତ୍ରଂ ପ୍ରପୌତ୍ରଂ ଚ ଦେହି ମେ ଗଣନାୟକ' ବୋଲି ଘୋଷି ହେଲେ । ଯଜମାନ ପାଇଁ ସବୁ କର୍ମ-କର୍ମାଣି ପୁରୋହିତ

କରୁଥିବାରୁ ପୁରୋହିତ 'ଦେହି ମେ' କହିଲାବେଳେ ଯଜମାନ ମଧ 'ମେଁ' ବୋଲି ରଡ଼ିଛାଡ଼ିଲେ ।

ବିପରୀତ ବୁଦ୍ଧି ଫଳରେ ଜାତି ଧରିନେଲା ଯେ ସାଧାରଣ କର୍ମ ମାତ୍ରକେ ସଂସାରର ବନ୍ଧନର କାରଣ – ବିଶ୍ୱାସ କଲା ଯେ ଜୀବନ ମୁକ୍ତି କେବଳ ସାଧାରଣ କର୍ମରୁ ପଳାୟନରେ – କର୍ମର ତ୍ୟାଗରେ ।

ଧୀରେ ଧୀରେ ଜାତିର ରକ୍ଷାକବଚ କ୍ଷତ୍ରିୟ ଯୁଦ୍ଧରୁ ପଳାୟନ କଲା । କୃଷି, ଗୋରକ୍ଷା ଓ ବାଣିଜ୍ୟ କର୍ମରୁ ବୈଶ୍ୟମାନେ ଦୂରେଇଗଲେ । ଜ୍ଞାନ ଓ ବିଜ୍ଞାନ ଚର୍ଚ୍ଚା ଲୋପ ପାଇବାକୁ ଲାଗିଲା । ଜାତିର ପତନ ହେଲା ଓ ଆରମ୍ଭ ହେଲା ଭାରତର ଅନ୍ଧକାର ଯୁଗ ।

ଜ୍ଞାନ-ବିଜ୍ଞାନର ଅତଳ ସମୁଦ୍ରଗର୍ଭରେ ତିମି ତିମିଙ୍ଗିଳ ରୂପରେ ଯେଉଁ ଦେଶର ଋଷି ମୁନିମାନେ ଅଜ୍ଞାତରେ ବିଚରଣ କରୁଥିଲେ, ସେହି ଦେଶରେ ଦେଖାଦେଲା ପାଶ୍ଚାତ୍ୟ ସଭ୍ୟତାର ସଫରୀ, ସାମାନ୍ୟ ପାଣିରେ ଫର ଫର କରି ।

ସେ ଅନ୍ଧକାର ଯୁଗର ଅବସାନ ପରେ ଆଜି ନୂତନ ପ୍ରଭାତର ଫଗୁରଙ୍ଗ ଦିଗ୍‌ବଳୟରେ ଦେଖାଦେଇଛି ।

ମାନବର ପରମ ସଖା ଶ୍ରୀକୃଷ୍ଣ କର୍ମହୀନତାର ବିପଦ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କର୍ମର କୁଶଳତାକୁ ଯୋଗ ଆଖ୍ୟା ଦେଇଯାଇଥିଲେ ଓ ଫଳାଫଳ ଉପରେ ଆଶାୟୀ ନ ହୋଇ ନିଜ ନିଜ କର୍ତ୍ତବ୍ୟ କର୍ମ ସୁଚାରୁରୂପେ ସମ୍ପାଦନ କରିଯିବାକୁ ପରାମର୍ଶ ଦେଇଥିଲେ । ସେ କଥା ମନେରଖି ଜାତି ଯଦି ଏତିକିବେଳେ ପୁଣି ଥରେ କଠୋର କର୍ମ ସାଧନାରେ ରତ ହୁଏ ଓ ଶ୍ରମକାତର ନ ହୁଏ, ତେବେ ଦେଶ ତାର ପୂର୍ବ ଆସନରେ ଆଉ ଥରେ ଅଧିଷ୍ଠିତ ହୋଇପାରିବ ।

# ଶାମୁକା ଓ ମୁକ୍ତା

ସୃଷ୍ଟିର ଲୀଳା ଅତି ବିଚିତ୍ର । ଏପରି ଘଟଣା ସବୁ ଘଟିଯାଏ ଯାହା ସହଜରେ କଳ୍ପନା କରୁହୁଏନି, ସହଜରେ ବୁଝିହୁଏନି ।

ନୀଚତା ଓ ହେୟତାର ପ୍ରତୀକ ପଙ୍କରୁ ଜନ୍ମ ନିଏ ପବିତ୍ରତା ଓ ସୌନ୍ଦର୍ଯ୍ୟର ପ୍ରତୀକ ପଦ୍ମ । ଯେଉଁ କମଳରେ ବାସକରନ୍ତି ବୋଲି ଲକ୍ଷ୍ମୀଙ୍କ ନାମ କମଳା, ଆଉ ସଂସାରର ସୃଷ୍ଟିକର୍ତ୍ତା ସ୍ୱୟଂ ବ୍ରହ୍ମା ଯେଉଁ କମଳରୁ ସମ୍ଭୂତ, ସେହି କମଳର ଜନ୍ମଦାତ୍ରୀ ଯେ କର୍ଦ୍ଦମ, ସେ କଥା କଳ୍ପନା କରିବା ମଧ୍ୟ କଷ୍ଟକର ହୋଇପଡ଼େ ।

ଶତବାର ଧୋଇଲେ ମଧ୍ୟ ଯାହାର ମଳିନତା ଯାଏନି, ସେହି ଅନ୍ଧକାର ଓ କାଳିମାର ପ୍ରତୀକ କୋଇଲାରୁ ଜନ୍ମ ନିଏ ଆଲୋକ ଓ ଜ୍ୟୋତିର ପ୍ରତୀକ ହୀରା । ଶେତା ଶାମୁକାରୁ ଜନ୍ମ ନିଏ ଆଭାମୟୀ ମୁକ୍ତା ।

କେବଳ ବସ୍ତୁଜଗତ ଓ ଉଦ୍ଭିଦଜଗତ ମଧ୍ୟରେ ଯେ ଏ ବୈଚିତ୍ର୍ୟ ସୀମାବଦ୍ଧ, ତା ନୁହେଁ । ପ୍ରାଣୀଜଗତ କଥା ପ୍ରାଣୀଜଗତର ଶ୍ରେଷ୍ଠ ସୃଷ୍ଟି ମାନବର ଇତିହାସରେ ମଧ୍ୟ ଏହାର ଅନେକ ଦୃଷ୍ଟାନ୍ତ ମିଳେ ।

କୁହାଯାଏ ଯେ ବାଟୋଇମାନଙ୍କୁ ଡଙ୍ଗାରେ ପାରିକରୁଥିବା ଧୀବରକନ୍ୟା ମତ୍ସ୍ୟଗନ୍ଧାଙ୍କ ଗର୍ଭରୁ ହିଁ ଜନ୍ମିଥିଲେ ପୃଥିବୀର ସର୍ବଶ୍ରେଷ୍ଠ କବି ମହାଭାରତର ରଚୟିତା ବ୍ୟାସଦେବ ।

ପୁରାଣରେ ବର୍ଣ୍ଣିତ ଅଛି ଯେ ଘୋର ତପସ୍ୟାର ସମାପ୍ତି ପରେ ରାବଣ ଯେତେବେଳେ ବର ମାଗିଲା, ସେ ମାଗିଥିଲା ଯେ ଦେବ, ଦାନବ କିମ୍ବା ଗନ୍ଧର୍ବ କେହି ତାକୁ ଯୁଦ୍ଧରେ ଜିଣି ପାରିବେନି କିମ୍ବା ସେମାନଙ୍କ କାହାରି ହାତରେ ତାର ମରଣ ହେବନି । ନର ଓ ବାନରଙ୍କୁ ସେ ଏତେ ହୀନ-ଚକ୍ଷୁରେ ଦେଖୁଥିଲା ଯେ ସେମାନଙ୍କ ହାତରେ ତାର ପରାଚୟ କିମ୍ବା ମରଣ ସେ କଳ୍ପନା ମଧ୍ୟ କରିପାରି ନଥିଲା । ତେଣୁ ସେମାନଙ୍କୁ ଜିଣିବା ପାଇଁ ବର ମାଗିବା ପ୍ରଶ୍ନ ହିଁ ଉଠି ନ ଥିଲା । ସେହି ନର-ବାନରଙ୍କ ହାତରେ ହିଁ ତାର ପରାଜୟ ଘଟିଥିଲା ।

ପୁରାଣର ଆଉ ଗୋଟିଏ ସୁନ୍ଦର ଉଦାହରଣ–

କଂସର କାରାଗାର । ଭାଦ୍ର କୃଷ୍ଣ ଅଷ୍ଟମୀର ସେ ବିଭୀଷିକାମୟ ଅର୍ଦ୍ଧରାତ୍ରି – ବାହାରେ ଝଡ଼ ଓ ବର୍ଷା । ଦର୍ଦ୍ଦୁର ରବ ଓ ଝିଲ୍ଲୀ ସ୍ୱନ ସଙ୍ଗରେ ପ୍ରହରୀଙ୍କ ନାସିକା

ଗର୍ଜନ । ପବନରେ କେତେବେଳୁ ଦୀପ ଲିଭିଯାଇଛି । ସାତ ଥର ପ୍ରସବ-ବେଦନା ଭୋଗି ସାରିଥିଲେ ମଧ ଏ ଅଷ୍ଟମ ଗର୍ଭର ବେଦନା ଦେବକୀଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିଛି । ନିଃସହାୟ ବାସୁଦେବ ଜାଣୁଛନ୍ତି ସନ୍ତାନ ପ୍ରସବ ପରେ ପରେ ହିଁ କଂସ ଧାଇଁଆସି ସଦ୍ୟଜାତ ଶିଶୁକୁ ଶିଳାରେ କଚାଡ଼ି ପକାଇବ । ଏତେବେଳେ କେବଳ ଭଗବାନ ହିଁ ଏକମାତ୍ର ଆଶ୍ରା – ଏହି ଜ୍ଞାନରେ ଦେବକୀଙ୍କୁ ସାମାନ୍ୟ ଆଶ୍ୱାସନା ଦେବାପାଇଁ ସେ ତାଙ୍କର କଙ୍କାଳକୁ ଧରିଛନ୍ତି – ଏପରିବେଳେ ପୁତ୍ର ଜନ୍ମକରି ଦେବକୀଙ୍କର ଚେତା ବୁଡ଼ିଗଲା ।

ସୁଶୀତଳ ପବନ ସ୍ପର୍ଶରେ କିଛିକ୍ଷଣ ପରେ ସେ ଯେତେବେଳେ ଚେତା ଫେରିପାଇଲେ, ଦେଖିଲେ ସେହି ବନ୍ଦୀଘର ଏବେ ଶୁଭ୍ର ଶୀତଳ ଆଲୋକରେ ଉଦ୍ଭାସିତ । ଜନ୍ମିତ ଶିଶୁକୁ ଅନାଇ ତାଙ୍କର ନେତ୍ର ଆନନ୍ଦ ବିସ୍ମୟରେ ବିସ୍ଫାରିତ ହୋଇଗଲା । ନୀଳ-ଜୀମୂତ ପରି ଦେହର ରଙ୍ଗ, ହୃଦୟରେ ଶ୍ରୀବତ୍ସଲାଞ୍ଛନ, ହାତରେ ଶଙ୍ଖ ଓ ଚକ୍ର । ଅଜାଣତରେ ଜନ୍ମିତ ପୁତ୍ର ଉଦ୍ଦେଶ୍ୟରେ ଦେବକୀଙ୍କ ହାତ ଯୋଡ଼ିହୋଇଗଲା । ସେ କହିଲେ –

'ମୋର ଉଦରୁ ତୋର ଜାତ । ଲୋକେ କରିବେ କାହୁଁ ସତ ॥

(ଶ୍ରୀମଦଭାଗବତ)

ଇଉରୋପ କିମ୍ବା ଆମେରିକାର କିଏ ବିଶ୍ୱାସ କରିବ ଯେ ଆମର ଏହି ଭାରତ ଜନ୍ମ ଦେଇଥିଲା ମହାବୀର ଓ ଖାରବେଳଙ୍କୁ, ବୁଦ୍ଧଦେବ ଓ ଅଶୋକଙ୍କୁ, ଶଙ୍କର ଓ ଶିବାଜୀଙ୍କୁ, ନାନକ ଓ ଗୁରୁ ଗୋବିନ୍ଦ ସିଂହଙ୍କ, ମୀରାବାଈ ଓ ଝାନ୍‌ସିର ରାଣୀଙ୍କୁ, ମହାତ୍ମା ଗାନ୍ଧୀ ଓ ଭଗତ ସିଂହଙ୍କୁ ।

ଭାରତର କିଏ ସହଜରେ ବିଶ୍ୱାସ କରିବ ଯେ ଓଡ଼ିଆପୁଅ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରିଥିଲା – କୋଣାର୍କ ମନ୍ଦିର ତୋଳିଥିଲା – ଜଗନ୍ନାଥଧର୍ମ ପ୍ରଚାର କରିଥିଲା – ଆ କା ମା ଭୈ ଗାଇ ଭାରତ ମହାସାଗରର ବୁକୁରେ କଳିଙ୍ଗର ଜାହାଜ ଭେଳା ମେଲିଦେଇଥିଲା, ଆଉ କେଉଁ ଓଡ଼ିଆ ସହଜରେ ବିଶ୍ୱାସ କରିବ ଯେ ବଣ-ଜଙ୍ଗଲପୂର୍ଣ୍ଣ ବାଘଭାଲୁଙ୍କ ଆଶ୍ରୟସ୍ଥଳୀ, ସମ୍ବଲପୁରୀ ଭାଷାଭାଷୀ ରେଢ଼ାଖୋଲ୍‌ର ଗୋଟିଏ ଅଜ୍ଞାନ ଅନ୍ଧକାରରେ ଆଚ୍ଛନ୍ନ ଆଦିବାସୀ କନ୍ଧ ପରିବାର ଜନ୍ମଦେଇଥିଲା ବିପ୍ଳବୀ ସନ୍ଥକବି ଭୀମ ଭୋଇଙ୍କୁ ?

ପ୍ରାୟ ଶହେ ବର୍ଷ ତଳର କଥା ।

ସେତେବେଳେ ଓଡ଼ିଶା ବୋଲି କୌଣସି ପ୍ରଦେଶ ନଥିଲା । ସମ୍ବଲପୁର ଅଞ୍ଚଳ ହିନ୍ଦୀ ଭାଷାଭାଷୀ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ଥିଲା, ଆଉ ସେହି ଅଞ୍ଚଳ ଭିତରେ ଗାଁକୁ

ଗାଁ ବୁଲି ସ୍ୱରଚିତ ଓଡ଼ିଆ ଭଜନମାନ ଗାଇ ଖଞ୍ଜଣି ପିଟୁଥିଲେ ମହିମାଧର୍ମର ସର୍ବଶ୍ରେଷ୍ଠ ପ୍ରଚାରକ କବି ଭୀମଭୋଇ ।

କେହି କେହି କହନ୍ତି ଭୀମ ଜନ୍ମରୁ ଅନ୍ଧ । କାହାରି କାହାରି ମତରେ ଗାଈଚରୁଆ ଭୀମ ଓଡ଼ିଆ ବର୍ଣ୍ଣମାଳା ସହିତ ମଧ ପରିଚିତ ନଥିଲେ । ଭୀମଙ୍କର ଆଧ୍ୟାତ୍ମିକ ଚେତନା, ସରଳ ସହଜାତ ପ୍ରତିଭା, ଭାବପ୍ରକାଶ ଭଙ୍ଗୀ ଓ କବିତା ରଚନାର ପ୍ରାଚୁର୍ଯ୍ୟ ଅନୁମାନ କଲେ ଏକଥା ବିଶ୍ୱାସ କରିହୁଏନି ।

ଭୀମଙ୍କର ବ୍ରହ୍ମ ଏକ ଓ ଅଖଣ୍ଡ । ସେହି ବ୍ରହ୍ମ ହିଁ ଅଲେଖ ନିରଞ୍ଜନ । ସେ ହିଁ ନିର୍ବେଦ, ଅରୂପ, ଅଣାକ୍ଷର, ଅଜପା, ନିଃଶବ୍ଦ ନିରାକାର । ସେଥିପାଇଁ ଭୀମ ଭଗବାନଙ୍କ ଅବତାରରେ ବିଶ୍ୱାସ କରୁନଥିଲେ, ପ୍ରତିମାପୂଜାର ଘୋର ବିରୋଧୀ ଥିଲେ, ଆଉ ଦେବଦେବୀ, ଭୂତପ୍ରେତ, ଶ୍ରାଦ୍ଧ-କ୍ରିୟା, କର୍ମକର୍ମାଣି ମାନୁ ନଥିଲେ । ଅଲେଖ ବ୍ରହ୍ମ ସମସ୍ତଙ୍କ ପିତା ଓ ସମସ୍ତେ ସେହି ବ୍ରହ୍ମଙ୍କର ହିଁ ସନ୍ତାନ – ତେଣୁ ତାଙ୍କ ଧର୍ମରେ ଜାତିଭେଦ ବା ଅସ୍ପୃଶ୍ୟତାର ପ୍ରଶ୍ନ ହିଁ ନଥିଲା ।

ଶ୍ରାଦ୍ଧାଦି କ୍ରିୟାରେ ଦାନ ଗ୍ରହଣ କରୁଥିବା ଓ ଭୋଗରାଗର ଅବଶିଷ୍ଟାଂଶ ଲଭୁଥିବା ବ୍ରାହ୍ମଣମାନେ ତାଙ୍କ ଉପରେ ଯେପରି ବିରକ୍ତ ହେଉଥିଲେ, ଗାଁମୁଣ୍ଡର ବରଗଛ କିମ୍ବା ଅଶ୍ୱତ୍‌ଥ ଗଛତଳେ ସିନ୍ଦୁର ମଣ୍ଡିହୋଇ କୁକୁଡ଼ା ଛେଳି ବଳି ଖାଉଥିବା ଠାକୁରାଣୀଙ୍କ ଉପାସକମାନେ ମଧ ସେପରି ଭାବରେ ରାଗୁଥିଲେ; ଆଉ ରାଗୁଥିଲେ ଖ୍ରୀଷ୍ଟିୟାନ୍ ମିଶନାରୀମାନେ, ଯେଉଁମାନେ ହିନ୍ଦୁଧର୍ମର ଉଚ୍ଚନୀଚ ଭେଦଭାବ ଓ ଅସ୍ପୃଶ୍ୟତାର ସୁବିଧା ନେଇ ରାଞ୍ଚି, ହଜାରିବାଗ, ସୁନ୍ଦରଗଡ଼ ପରି ସମ୍ବଲପୁର ଅଞ୍ଚଳରେ ମଧ ଲୋକଙ୍କୁ ଧର୍ମ ପରିବର୍ତ୍ତନ କରିବାକୁ ପ୍ରବର୍ତ୍ତାଇଥିଲେ । ଭୀମ ସେଥିପାଇଁ ଅନେକ ସ୍ଥଳରେ ଶାରୀରିକ ନିର୍ଯ୍ୟାତନା ଭୋଗୁଥିଲେ – ମାଡ଼ ଖାଉଥିଲେ ।

ତାହା ତାଙ୍କର ଦେହସୁହା ହୋଇଯାଇଥିଲା । ସେ ଏଥିପାଇଁ ବେଳେ ବେଳେ ତାଙ୍କର ପରଂବ୍ରହ୍ମଙ୍କ ଉପରେ ଅଭିମାନ କରୁଥିଲେ, ଆଉ ଗାଉଥିଲେ –

'କିପାଁ ନିରାପକ୍ଷ କରୁଅଛ ମୋତେ କେଉଁ ଦୋଷ ମନେ ଧରି
ନିଷ୍ଠୁର ତୋ ହିଆ ନ ବସେ ତୋ ଦୟା ଭକ୍ତପ୍ରାଣଖିଆ ହରି ।
ହେଉଅଛି ଯାହା ନ ଜାଣୁ କି ତାହା ଅନ୍ତର୍ଯ୍ୟାମୀ ନାମ ବହି
ମୋତେ କୋପ କରି କି ଯଶ ଅର୍ଜିବୁ ଭଗତ ଜୀବନ ଖାଇ ।'

(ସ୍ତୁତିଚିନ୍ତାମଣି)

ଯେଉଁ ହିନ୍ଦୁଧର୍ମ ଘୋଷଣା କରେ ଯେ ଭଗବାନ ସମସ୍ତଙ୍କ ଦେହରେ ସମାନ ଭାବରେ ବିରାଜିତ, ଯେଉଁ ଧର୍ମ 'ମୁଁ ସେହି ସତ୍ୟ, ମୁଁ ସେହି ଶିବ ଓ ମୁଁ ସେହି

ସୁନ୍ଦର' ବୋଲି ଚିନ୍ତା କରିବାକୁ ଶିଖାଏ, ସେହି ଧର୍ମରେ ଜାତି-ଭେଦ ଓ ଅସ୍ପୃଶ୍ୟତା କିପରି ଜନ୍ମନେଲା ସେ କଥା କହିବା କଠିନ । ଜାତିଭେଦ ପ୍ରଥା ଋଗ୍‌ବେଦ କାଳରୁ ଆରମ୍ଭ ବୋଲି କହନ୍ତି । ଭଗବାନଙ୍କ ମୁହଁରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଜଙ୍ଘରୁ ବୈଶ୍ୟ ଓ ପାଦରୁ କୁଆଡ଼େ ଶୂଦ୍ରର ଜନ୍ମ । ଗୀତା ସ୍ପଷ୍ଟଭାବରେ କହେ ଯେ ଗୁଣ ଓ କର୍ମର ବିଭାଗରୁ ଚାରିବର୍ଣ୍ଣର ସୃଷ୍ଟି – ଆଜିକାଲିର କୃଷକ, ଶ୍ରମିକ, ସୈନିକ ଓ ଶିକ୍ଷକ ପରି । ସେହି ଭଗବାନଙ୍କ ସନ୍ତାନମାନଙ୍କ ମଧ୍ୟରେ ସାନବଡ଼ର ଭେଦଭାବ କିପରି ଆସିଲା, ଜନ୍ମ ସାଙ୍ଗରେ ସେ ଭେଦ ଜଡ଼ିତ ହେଲା କିପରି; ସେ କଥା କିନ୍ତୁ ବୁଝିହୁଏନି – ଆଉ କଳ୍ପନା କରିହୁଏନି ଏ ମହାନ୍ ଧର୍ମ ଭିତରକୁ ଅସ୍ପୃଶ୍ୟତାରୂପୀ କଳଙ୍କ ପଶିଲା କିପରି ?

ଏହି ଜାତିଭେଦ ଓ ଅସ୍ପୃଶ୍ୟତା ଯୋଗୁଁ ହିଁ ଦିନେ ହିନ୍ଦୁଧର୍ମ ବୌଦ୍ଧ ଧର୍ମରେ ରୂପାନ୍ତରିତ ହୋଇଥିଲା; ଆଉ ପରେ କୋଟି କୋଟି ହିନ୍ଦୁ ମୁସଲମାନ ଓ ଖ୍ରୀଷ୍ଟିୟାନ୍ ହୋଇଗଲେ । ରାମାନୁଜ, ଚୈତନ୍ୟ, ନାନକ, ଦୟାନନ୍ଦ, ରାମମୋହନ ସଂସ୍କାର ଆଣିବାକୁ ଚେଷ୍ଟାକରି ଧର୍ମକୁ ବଞ୍ଚାଇ ରଖିଲେ ସତ, ଅସ୍ପୃଶ୍ୟତା କଳଙ୍କ କିନ୍ତୁ ଗଲାନି । ସେ ସଂସ୍କାରକଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ସଂସ୍କୃତଜ୍ଞ ପଣ୍ଡିତ ଓ ବିଦ୍ୱାନ୍ । ବେଦ ଓ ଉପନିଷଦ୍‌ର ନିଗୁଢ଼ ତତ୍ତ୍ୱ ଭିତରକୁ ସେମାନଙ୍କର ପ୍ରବେଶ ଥିଲା । ଦୟାନନ୍ଦ ଓ ରାମମୋହନ ଆଧୁନିକ ଇଂରାଜୀ ଶିକ୍ଷାରେ ମଧ୍ୟ ଶିକ୍ଷିତ ଥିଲେ । ଭୀମ ଭୋଇ ଥିଲେ ଊଣାଅଧିକେ ନିରକ୍ଷର । ତେଣୁ ମାନବ ଇତିହାସରେ ଭୀମ ଭୋଇଙ୍କ ପରି ଧର୍ମ-ସଂସ୍କାରକ ଯେ ବିରଳ ତା' ନୁହେଁ, ସେ ମାନବଜାତିର ଗୋଟିଏ ଆଶ୍ଚର୍ଯ୍ୟ ।

'ବ୍ରହ୍ମ, ନିରୂପଣ ଗୀତା'ରେ ସେ ବ୍ରହ୍ମଙ୍କୁ ନିରୂପଣ କରିବାକୁ ଯାଇ ଗାଇଛନ୍ତି–

"ଅଣରୂପ ରୂପବର୍ଣ୍ଣ ଚିହ୍ନ ନାହିଁ କିଛି
ଜ୍ୟୋତି ଭିତରେ ଅଜ୍ୟୋତି ଅଚିହ୍ନାରେ ଅଛି ।
x x x
ଚନ୍ଦ୍ର ସୂର୍ଯ୍ୟ ନାହିଁ ତହିଁ ଶରଦ ଉଷ୍ମମ
ହେମ ନ ଭେଦଇ ତାକୁ ଶିଶିର ଲସମ ।
x x x
ନୀଚ ଉଚ୍ଚ ନାହିଁ ତହିଁ ବାଛନ୍ଦ ବିକାର
ସର୍ବ କର୍ମ ସମାଚାର ଅଟେ ଅବିକାର ।
x x x
ଆପଣେ ବନ୍ଧନ କରେ, ଆପେ ବନ୍ଦୀ ହୋଏ
ଆପଣେ ବହଇ ଭାର ଆପଣେ ନ ବହେ ।

ଆପଣେ ମହା ନିଷ୍କାମ ଆପଣେ ସକାମ
ଆପେ ଅନାମିକା ବ୍ରହ୍ମ, ଆପେ ବହେ ନାମ ।"

x x x

ଭୀମ ଭୋଇଙ୍କ ଭାଷା ଅତି ସରଳ । ସେ ନିଜେ ସେଦିନର ବୁଭୁକ୍ଷିତ ଓ ଅତ୍ୟାଚାରିତ ଜନତାର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ଜନତାର କଷ୍ଟରେ ତାଙ୍କ ଆଖିରୁ ଲୁହ ଝରୁଥିଲା । ଉପନିଷଦ୍‌ର ମହାବାଣୀ ପରି ସେ ପ୍ରାଣର ଆବେଗରେ ଗାଇଥିଲେ–

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।"

ନ୍ୟସ୍ତସ୍ୱାର୍ଥଗୋଷ୍ଠୀଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ଭୀମ ଭୋଇଙ୍କ ପ୍ରାଣର ଆବେଗ ସର୍ବହରାଙ୍କ ହୃଦୟ ସ୍ପର୍ଶ କରୁଥିଲା; ଆଉ ସେମାନେ ତାଙ୍କର ଭଜନ ଶୁଣୁଥିଲେ ।

ମନେହୁଏ ଯେ ଲକ୍ଷ୍ମୀଙ୍କରାଙ୍କର ସହଜଯାନ ବୌଦ୍ଧଧର୍ମ ପରି ଭୀମ ମଧ୍ୟ ଏ ପିଣ୍ଡରେ ବ୍ରହ୍ମାଣ୍ଡ ରହିଛି ବୋଲି ମତ ବ୍ୟକ୍ତ କରୁଥିଲେ । ସେ କହୁଥିଲେ–

"ଏ ଘଟେ ଜଗନ୍ନାଥ ଅଛି । ପ୍ରତିମା ମିଛରେ ପୂଜୁଛି ॥

x x x

ଘଟରେ ବ୍ରହ୍ମଙ୍କୁ ନ ଚିହ୍ନି । ବାହାରେ ଭ୍ରମୁଥାନ୍ତି ପ୍ରାଣୀ ।"

ଓଡ଼ିଆ ଜାତି ଓ ଓଡ଼ିଆ ଭାଷାର ସନ୍ଧିକ୍ଷଣରେ ଏହି ଜାତି ଓ ଭାଷାର ସ୍ଥିତିକୁ ଭୀମ ଭୋଇଙ୍କ ଅବଦାନ କେହି ଏବେ କଳନା କରିପାରିବେନି । ବୀରଭୂମ, ସିଂହଭୂମ, ଧଳଭୂମ ଓ ଅନ୍ୟାନ୍ୟ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ଆଜି ଲୁପ୍ତପ୍ରାୟ । ଭୀମ ଭୋଇ ଯଦି ସମ୍ବଲପୁର ଅଞ୍ଚଳର ଗାଁ-ଗାଁରେ ମହିମା ଧର୍ମ ପ୍ରଚାର କରିବାକୁ ଯାଇ ଓଡ଼ିଆ ଭାଷାକୁ ଏ ଅଞ୍ଚଳର ଜନତାର ଭାଷା ବୋଲି ପ୍ରମାଣିତ କରିନଥାନ୍ତେ, ତେବେ ଏ ଅଞ୍ଚଳ ଓଡ଼ିଶାକୁ ଆସିଥାଆନ୍ତା କି ନାହିଁ ଓ ଏ ଅଞ୍ଚଳ ବିନା ଓଡ଼ିଶା ପ୍ରଦେଶ ଗଠନ କେତେଦୂର ସମ୍ଭବପର ହୋଇଥାଆନ୍ତା ସେ କଥା ଆଜି କିଏ କହିବ ?

ଭୀମ ଭୋଇଙ୍କ ଭଜନାବଳୀ ହିନ୍ଦୀ, ବଙ୍ଗଳା ଓ ତେଲୁଗୁ ଭାଷାରେ ଅନୂଦିତ ହୋଇସାରିଛି । ଜୟଦେବଙ୍କୁ ବଙ୍ଗାଳୀ ବୋଲି ବଙ୍ଗଳାର ଲୋକେ ଆଜି ଦାବିକଲା ପରି କେତେ ଶହବର୍ଷ ପରେ ଭୀମ ଭୋଇ ଯେ ବିହାର ପ୍ରଦେଶର ସୋନପୁରଠାରେ ଜନ୍ମଗ୍ରହଣ କରିଥିଲେ ବୋଲି ସେ ଦିନର ଗବେଷକମାନେ ନକହିବେ, ସେ କଥା ଆଜି କିଏ କହିବ ?

# 'ଘୁ-ଶୁ'-ର ସପକ୍ଷରେ

ସୁଖ-ଦୁଃଖ, ଦିନ-ରାତି, ଜୟ ପରାଜୟ ପରି ପ୍ରତ୍ୟେକ ବିଷୟର ଯେପରି ପରସ୍ପର ବିରୋଧୀ ଗୋଟିଏ ଏପାଖ ଏବଂ ଗୋଟିଏ ସେ ପାଖ ସଦାସର୍ବଦା ପାଖାପାଖି ହୋଇ ରହିଛନ୍ତି, ପ୍ରତ୍ୟେକ ମଣିଷର ସେପରି ଭଲ ଆଉ ମନ୍ଦ ଦୁଇ ଦିଗ ପାଖାପାଖି ହୋଇ ଯେ ରହିଥିବ, ଏଥିରେ ସନ୍ଦେହ ନାହିଁ। ଏଣୁ ଅଳସୁଆର ମଧ୍ୟ ମନ୍ଦ ଦିଗ ରହିବା ସ୍ୱାଭାବିକ; କିନ୍ତୁ ତା' ବୋଲି ଯେ ଶୟତାନ ରୀତିମତ ତା' ମୁଣ୍ଡର ଖପୁରି ଭିତରେ ବିରୁଡ଼ିବସା ପରି ବସାବାନ୍ଧି ରହିଥିବ, ଏ କଥା କଦାପି ସ୍ୱୀକାର କରାଯାଇ ନ ପାରେ।

ପାଦେରୁ ଦୁଇ ପାଦ ଆଗକୁ ଯିବା ପାଇଁ ଯିଏ ସଦା କୁଣ୍ଠିତ, କୁଟା ଖଣ୍ଡିଏକୁ ଦି'ଖଣ୍ଡ କରିବାରେ ଯା'ର ଆଗ୍ରହର ଅଭାବ, ଅନ୍ୟର ପିଠିରେ ସବାର ହୋଇ ତା'ର ବାଗ୍‌ଡୋରି ଟାଣି ତାକୁ ନିଜ ଈପ୍‌ସିତ ପଥରେ ଚାଳିତ କରିବା ପାଇଁ ଯିଏ କେବେ କୌଣସି ଅଭିଳାଷ ପୋଷଣ କରେନି, କୌଣସି ଉଚ୍ଚ ଆସନରେ ଅଧିଷ୍ଠିତ ହୋଇ ଉଚ୍ଚପଦବୀରେ ଭୂଷିତ ହୋଇ ଅନ୍ୟ ଉପରେ ପ୍ରଭୁତ୍ୱ ବିସ୍ତାରକରିବା ଅପେକ୍ଷା ଟିକିଏ ଘୁମେଇବାକୁ ଯିଏ ବେଶି ପସନ୍ଦ କରେ, ସେହି ଚିରତନ୍ଦ୍ରାସକ୍ତ, ଚିର ଆଳସ୍ୟଗ୍ରସ୍ତ ମଣିଷ କାହିଁକି କା'ର ଅମଙ୍ଗଳ କରିବା ପାଇଁ ଏ ପାଖ ସେ ପାଖ ଧାଇଁ ବୁଲିବ – କାହା ବିରୁଦ୍ଧରେ କୁଚକ୍ରାନ୍ତ କରିବାକୁ ଯାଇ ରାତି ଉଜାଗର ରହିବ ?

ସଜ ମାଛରେ ପୋକ ପକାଇବାରେ ଯେଉଁ ଧୂର୍ତ୍ତମାନେ ସିଦ୍ଧହସ୍ତ, ସେମାନେ ହିଁ ଅଳସୁଆର ମସ୍ତିଷ୍କ ଭିତରେ ଶୟତାନୀ କାରଖାନାର ଅସ୍ତିତ୍ୱ ଆବିଷ୍କାର କରନ୍ତି।

ଅଳସୁଆ ବିଚାରା ତ ଯେଉଁଠି ବସିଛି ଉଠିବାକୁ ନାରାଜ। ସୁଯୋଗ ଟିକିଏ ମିଳିଲେ ଶୋଇଯାଉଛି। ଆଉ ଶୋଇଛି ତ ଶୋଇଛି–ଆଖି ପୂରାପୂରି ବୁଜିଦେଇ ଅଥବା ସାମାନ୍ୟ ମେଲାକରି, ଘୁଂଗୁଡ଼ି ମାରି, ନାକରେ ପେଁକାଳି ବଜାଇ, ପାଟିବାଟେ ଫୁର୍‌ର ଫୁଟ୍ ଶବ୍ଦ କରି ଅଥବା ନିଘୋଡ଼ ନିଦରେ। କେବେ ଅବା କୌଣସି ଚେଆରରେ ବସି ସାମନା ଟେବୁଲ ଉପରେ ଦି' ଗୋଡ଼ ଲଦି ମୁଣ୍ଡଟିକୁ କାନ୍ଧ ଉପରକୁ ଝୁଲାଇ ଆଣିଛି, ଆଉ ପାଟିବାଟେ ବୋହିଆସୁଥିବା ଲାଳକୁ ବେଳେ ବେଳେ ଚାଟି ଦେଇ କିଏ ଦେଖୁଛି ନା ନାହିଁ ଜାଣିବା ଉଦ୍ଦେଶ୍ୟରେ ମଝିମଝିରେ ଆଖି

ଦି'ଟାକୁ ଜବରଦସ୍ତି ମେଲାକରି ମୁଣ୍ଡ ଟିକିଏ ଚାରିଆଡ଼କୁ ଘୂରାଇ ଆଣୁଛି । ନତୁବା ତଳେ ବସି କାହୁକୁ ଆଉଜି ଢୁଳାଉ ଢୁଳାଉ ନିଜ ଅଜାଣତରେ ଚଟାଣ ଉପରେ ଲୋଟିଯାଉଛି କିମ୍ବା ବସ୍‌ରେ ଯାଉ ଯାଉ ବସ୍ ମୋଡ଼ ନେଲାବେଳେ ପାଖରେ ବସିଥିବା ଭଦ୍ରଲୋକଙ୍କ ପେଟ ଉପରେ ଅଜାଡ଼ି ହୋଇପଡୁଛି, ଆଉ ସେ ପଟର ମାଲିକ ତାକୁ ଆଉ ଥରେ ସଜାଡ଼ି ଦେଲେ ନିରୀହ ହସଟିଏ ହସି ପୁଣି ଆଖି ବୁଜିଦେଉଛି । ତା'ର ପ୍ରୟୋଜନ କ'ଣ ଯେ ସେ ଶୟତାନର ହାତବାରିସି ହେବ ? ତା'ର ସମୟ କାହିଁ ଯେ ଶୟତାନର ଶ୍ରମିକମାନଙ୍କୁ ତା' ମସ୍ତିଷ୍କ ଭିତରକୁ ପଶିବା ପାଇଁ କବାଟ ଖୋଲିଦେବ ? ତେଣୁ ଯେଉଁମାନେ କହନ୍ତି ଯେ 'ଆଇଡ଼ିଲ୍ ମେନ୍‌ସ ବ୍ରେନ୍ ଇଜ୍ ଦି ଡେଭିଲ୍‌ସ ୱାର୍କସପ୍' ସେମାନେ ନିଶ୍ଚୟ ଅଳସୁଆର ବିରୁଦ୍ଧରେ ଜାଣିଶୁଣି ଅପପ୍ରଚାର ଚଳାଇଛନ୍ତି ।

ସତରେ କିନ୍ତୁ ନିରୀହ ଅଳସୁଆମି ନକରି ଅଯଥା ଡିଆଁ ଡେଇଁ କରୁଥିବା, ଏଇଠି ସେଇଠି ଅକାରଣ ଲୁଙ୍ଗୁରୁଫୁଙ୍ଗୁରୁ ହେଉଥିବା, ଅନ୍ୟର ବ୍ୟାପାରରେ ଅଲୋଡ଼ା ନାକ ପୂରାଉଥିବା ଚୁଙ୍ଗୁଚୁଙ୍ଗୁଆ ଭଦ୍ରଲୋକମାନଙ୍କ ମୁଣ୍ଡ ହିଁ ସବୁ ଶୟତାନୀ ବୁଦ୍ଧିର ଗନ୍ତାଘର । ସେମାନଙ୍କ ମସ୍ତିଷ୍କର କୌଣସି ଗୋଟିଏ କୋଣରେ ସବୁ ଶୟତାନୀ ଯୋଜନାର ପରିକଳ୍ପନା ପ୍ରସ୍ତୁତ ହୁଏ । ଆଉ ସାରା ମସ୍ତିଷ୍କର ବିସ୍ତୃତି ବ୍ୟବହୃତ ହୁଏ ଘର ସିନ୍ଧି କରିବା ଯନ୍ତ୍ରପାତିଠାରୁ ଆରମ୍ଭ କରି ବନ୍ଧୁକ, କମାଣ, ଏଟମ୍ ବୋମା, ହାଇଡ୍ରୋଜେନ୍, ନିଉଟ୍ରନ୍ ବୋମା ପର୍ଯ୍ୟନ୍ତ ଦୁନିଆଯାକର ଯାବତୀୟ ମାରଣାସ୍ତ୍ର ଆଉ ହାତହତିଆରର ଟିକିନିଖି ନକ୍‌ସା ତିଆରି କରାଯାଉଥିବା କାରଖାନା ରୂପରେ ।

ଆଜିର ପ୍ରଚାରସର୍ବସ୍ୱ ଯୁଗରେ ଏହି ଚାଲବାଜ୍ ଶଠମାନେ ନିଜ ପଛଆଡ଼େ ଅଦୃଶ୍ୟ ରହିଥିବା ଶତଛିଦ୍ରକୁ ଢାଙ୍କିବା ଉଦ୍ଦେଶ୍ୟରେ ଅନ୍ୟର କଳ୍ପିତ ଛିଦ୍ରଆଡ଼ିକି ଆଙ୍ଗୁଳି ନିର୍ଦ୍ଦେଶ କରନ୍ତି ଏବଂ ପ୍ରଚାର ବଳରେ ଧଳାକୁ କଳା କରିଦିଅନ୍ତି । ଏହି ଧୂର୍ତ୍ତମାନେ ହିଁ ବେଳେବେଳେ ଡାକଘର କିମ୍ବା ବେଙ୍କ୍ ବାରନ୍ଦାରେ, ଟ୍ରେନ୍ ଆସିଲାବେଳେ ରେଲୱେ ଷ୍ଟେସନ୍‌ରେ, ସିନେମା ଟିକେଟ ବିକ୍ରି କାଉଣ୍ଟର୍ ପାଖରେ, ରେଳ କିମ୍ବା ବସ୍ ଟିକେଟ କିଣିଲାବେଳେ ଏବଂ ଆଉ ଆଉ ଯେଉଁଠି ପକେଟ୍‌ମାର୍ ବେଶି ହୁଏ, ସେଇଠି ଅନ୍ୟମାନଙ୍କ ହିତାକାଙ୍କ୍ଷୀ ସାଜି ସେମାନଙ୍କୁ ସାବଧାନ କରାଇଦେବା ବାହାନାରେ ଘୋଷଣା କରନ୍ତି – 'ପକେଟ୍‌ମାର୍‌ଙ୍କୁ ସାବଧାନ – ଉପର ପକେଟ୍, ତଳ ପକେଟ୍ କିମ୍ବା ଅଣ୍ଟା ସନ୍ଧିରେ ଟଙ୍କା ଥଳି ରଖନ୍ତୁନି ।' ନିରୀହ ହତଭାଗା ଯେଉଁଠି ଟଙ୍କା ରଖିଥାଏ, ଟଙ୍କା ଥଳି ନିରାପଦ ଅଛି ନା ନାହିଁ ଜାଣିବା ଉଦ୍ଦେଶ୍ୟରେ ସାଙ୍ଗେ ସାଙ୍ଗେ ସେଇଠି ଯେତେବେଳେ ଦରାଣ୍ଡି ବସେ, ଏଇ ପକେଟ୍‌ମାର୍‌ଦଳ ଜାଣିନିଅନ୍ତି କିଏ କେଉଁଠି ତା'ର ପଇସାପତ୍ର ରଖିଛି । ପରେ ବେଳ ଉଣ୍ଡି ସେ ଭିତରୁ

ଜଣେ କେହି 'ହେଇ ନେଲା ନେଲା...ମନିବେଗ୍ ନେଇଗଲା' ବୋଲି ବିକଳ ଚିତ୍କାର କରେ। ସମସ୍ତଙ୍କ ଆଖି ଓ ମନ ଯେତେବେଳେ ସେଇ ମିଥ୍ୟାଚୋରୀ ଆଡ଼ିକି ସମବେଦନା ଜଣାଇବା ଉଦ୍ଦେଶ୍ୟରେ ଆପଣାଛାଏଁ ଚାଲିଯାଏ, ସିଦ୍ଧହସ୍ତ ପକେଟ୍‌ମାରୁସବୁ ସେ ସୁଯୋଗରେ ସମସ୍ତଙ୍କ ପକେଟ୍ ସାଫ୍ କରିଦିଅନ୍ତି।

ମନେହୁଏ ଯେ ଶୟତାନର ସହକର୍ମୀମାନେ ମଧ୍ୟ ତାଙ୍କ ଶୟତାନୀ କାରସାଦି ଖେଳିଲାବେଳେ ସର୍ବସାଧାରଣଙ୍କ ନଜର ନିଜ ପ୍ରକୃତ ଆଖଡ଼ାରୁ ଏଡ଼ାଇ ରଖିବା ଉଦ୍ଦେଶ୍ୟରେ ଏଇ ଅଳସୁଆଙ୍କ ମସ୍ତିଷ୍କ ଆଡ଼କୁ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରାଇଦିଅନ୍ତି। ନିରୀହ ମଣିଷ ଏ ଅପପ୍ରଚାରରେ ବିଶ୍ୱାସ କରେ – ଭୁଲିଯାଏ ଯେ ଅଳସୁଆଙ୍କ ମସ୍ତିଷ୍କ ଯଦି ସତକୁସତ ଶୟତାନଙ୍କ ଆଖଡ଼ାସ୍ଥଳୀ ହୁଅନ୍ତା, ତେବେ ଶୟତାନମାନେ ରାତିଦିନ ସେଇଠି ଢୁଳାଉଥାନ୍ତେ – ଘୁମ ଯୋଗୁ ଆଖି ଖୋଲିପାରନ୍ତେନି – ଶୟତାନୀ କରନ୍ତେ କେତେବେଳେ ?

ସଂସାରର ଯେତେ ଗୋଳମାଳ – ଦୁଃଖ ଦୁର୍ଦ୍ଦଶା ସବୁ ଏପରି ଭୁଲ ବୁଝାମଣାରେ। ସତରେ କିନ୍ତୁ ଦୁନିଆଯାକର ଯାବତୀୟ ଅନର୍ଥ କେବଳ ଚଞ୍ଚଳତାରେ – ଗତିରେ – କିଏ କାହା ଘରେ ପଶିଲା, କିଏ କାହାର କବାଟ ଭାଙ୍ଗିଲା, କିଏ କାହାର ଖପୁରି ଉଡ଼ାଇଦେଲା, କିଏ ନିଶ ମୋଡ଼ି ବାହାସ୍ଫୋଟ ମାରିଲା, କିଏ ଛାତି ପିଟି ତର୍ଜନ ଗର୍ଜନ କଲା ଭିତରେ – ଅଳସୁଆର ଘୁଙ୍ଗୁଡ଼ିମରାରେ ନୁହେଁ – କେଉଁଠି ଲାଖିଯାଇଥିବା ତାର ସ୍ଥାୟୀ ସ୍ଥିତିରେ ନୁହେଁ – ତା'ର ସ୍ଥାଣୁତ୍ୱରେ ନୁହେଁ।

ଗତି ପ୍ରଗତିର ରାଜପଥ ବୋଲି ନିଜର ଧ୍ୱଜା ନିଜେ ଉଡ଼ାଏ, କିନ୍ତୁ ଗତି ହିଁ ମୁଖ୍ୟତଃ ସବୁ ଦୁର୍ଗତି ଏବଂ ଅଧୋଗତିର ମୂଳ କାରଣ। ପାଣିର ଗତି ଯେତେ ଧୀର ହେଲେ ମଧ୍ୟ ପଥର କାଟେ। ସେହି ଗତି ଯେତେବେଳେ ପ୍ରଖର ହୁଏ ପ୍ରଳୟଙ୍କରୀ ବନ୍ୟା ରୂପରେ ଗାଁ ଗଣ୍ଡା ଭସାଇ ନିଏ – ବାଟରେ ଯାହା ପାଏ, ତାକୁ ଧ୍ୱସ୍ତବିଧ୍ୱସ୍ତ କରିଦିଏ। ସେହି ଜଳ ପୁଣି ଯେତେବେଳେ ହୁଏ ସ୍ଥିର, ଶିଉଳି ଜନ୍ମନିଏ। ପ୍ରକୃତିର ଅନ୍ୟ ଉପାଦାନମାନଙ୍କୁ ନେଇ ସୃଷ୍ଟିର ପ୍ରାଣ ପ୍ରତିଷ୍ଠା କରେ। ଅନନ୍ତଶଯ୍ୟା ଉପରେ ଚିରନିଦ୍ରାଗତ ବିଷ୍ଣୁ ଯେପରି ସୃଷ୍ଟିର ସ୍ଥିତି ତଥା ପାଳନକର୍ତ୍ତା, ତାଣ୍ଡବ ନୃତ୍ୟକାରୀ ମହାଦେବ ସେପରି ସଂହାର ଏବଂ ଲୟର ଦେବତା।

ପର୍ବତାଦି ସ୍ଥାବର ସୃଷ୍ଟି ବିନାଶର କାରଣ ନୁହନ୍ତି, ସେ ସବୁ ଚିରଦିନ ସୃଷ୍ଟିର ହିତ ଏବଂ ମଙ୍ଗଳ ସାଧନ କରିଆସିଛନ୍ତି। ଜଙ୍ଗମ ହିଁ ବିନାଶର ହେତୁ। ସେ ସ୍ଥାବରର ବିନାଶ ସାଧନ କରିବାରେ ଯେପରି ସଦା ଚେଷ୍ଟିତ, ନିଜ ବିନାଶର ସେପରି ମୁଖ୍ୟକାରଣ। କୀଟପତଙ୍ଗ ରୂପରେ ସେ କେତେବେଳେ ଗଛପତ୍ର ଚରି ଯାଉଥାଏ ତ

କେତେବେଳେ ଜୀବାଣୁ ରୂପରେ କାହାର ଛାତି କଣାକରି ରକ୍ତ ଶୋଷଣ କରୁଥାଏ। ଅନ୍ୟମାନଙ୍କୁ ସମୂଳେ ଧ୍ୱଂସକରି ସେ ହେବାକୁ ଚାହେଁ ବିଶ୍ୱସମ୍ରାଟ – ଏକାଙ୍ଗ ଚକ୍ରବର୍ତ୍ତୀ। ବିରାଟକାୟ ଡାଇନୋସେର୍‌ଙ୍କ ପରି ସେ ବଢ଼ି ବଢ଼ି ଚାଲେ, ଆଉ ଶେଷରେ ହୁଏ ତାର ବିଲୟ।

ଶୟତାନର ହାତବାରିସି ତେଣୁ ଆଳସ୍ୟଜନିତ ସ୍ଥିତି ନୁହେଁ – ଅବାଞ୍ଛିତ ଅପ୍ରୟୋଜନୀୟ ଗତି।

ସେଦିନର କେଉଁ ଜଣେ ରାଜା ଏ ବିଷୟ ବେଶ୍ ବୁଝିପାରିଥିଲେ। ଏକଥା ସତ ଯେ ରାଜାମାନେ ସାଧାରଣତଃ ଖାମଖିଆଲୀ ଏବଂ ଆଳସ୍ୟର ଅଭାବରୁ ହେଉ ଅଥବା ଅନ୍ୟ ଯେ କୌଣସି କାରଣରୁ ବେଳେବେଳେ ଦୁଷ୍ଟ ହୋଇପଡ଼ନ୍ତି। କାମ ନଥିଲେ କ'ଣ କରିବେ କିଛି ବୁଝିନପାରି କେହି କେହି କେଉଁ କେଉଁ ପ୍ରଜାମାନଙ୍କର ନିଶ ଓପାଡୁଥିବା ଦୃଷ୍ଟାନ୍ତ ମଧ୍ୟ ରହିଛି। ଏ ରାଜା କିନ୍ତୁ ଥିଲେ ଭିନ୍ନ ମିଜାଜର। ଅଳସୁଆମାନେ ଭଲ ମଣିଷ ହେଲେ ମଧ୍ୟ ଭୋକ ଉପାସରେ ମରୁଛନ୍ତି ଶୁଣି ସେ ତାଙ୍କ ରାଜଧାନୀରେ ଗୋଟିଏ ଅଳସୁଆ-ନିବାସ ତିଆରିକଲେ, ଆଉ ରାଜ୍ୟର ସବୁ ଅଳସୁଆଙ୍କ ପାଇଁ ସେଠାରେ ମାଗଣା ଖାଇବା ପିଇବାର ବନ୍ଦୋବସ୍ତ କରିଦେଲେ। ଯଥା ସମୟରେ ନିବାସଟି ଅଳସୁଆଙ୍କ ଦ୍ୱାରା ଭରପୂର ହୋଇଗଲା। ବର୍ଷାଦିନରେ ଉଇହୁଙ୍କାରୁ ଝଡ଼ିପୋକ ବାହାରି ଆସିଲାପରି ରାଜ୍ୟ ବାହାରୁ ମଧ୍ୟ ଅଳସୁଆ ସବୁ ଏହି ନିବାସ ଆଡ଼କୁ ଧାଡ଼ିବାନ୍ଧି ଛୁଟିଆସିଲେ। ସେମାନେ ନିବାସର ବାରନ୍ଦାରେ ଶୋଇଲେ, କାନ୍ଥକୁ ଆଉଜି ଘୁମାଇଲେ ଏବଂ କାନ୍ଥ ଚାରିପଟେ ଯେତେବେଳେ ଭରିଗଲା, ନିବାସର ଗଛତଳମାନଙ୍କରେ ଗଡ଼ିଲେ। ସେଠାରେ ମଧ୍ୟ ଯେତେବେଳେ ସ୍ଥାନର ଅଭାବ ଦେଖାଗଲା, ସିଧାସଳଖ ଖୋଲା ଆକାଶ ତଳେ ଖରାରେ ଗଡ଼ି ମୁହଁ ଉପରେ ଗାମୁଛା ଢ଼ାଙ୍କି ଘୁଙ୍ଗୁଡ଼ି ମାରିଲେ।

ଯଥା ସମୟରେ ବୁଦ୍ଧିମନ୍ତ ମନ୍ତ୍ରୀ ପ୍ରମାଦ ଗଣିଲେ ଏବଂ ଅବସ୍ଥାର ଗୁରୁତ୍ୱ ଉପଲବ୍‌ଧି କରି ରାଜାଙ୍କୁ ପରାମର୍ଶ ଦେଲେ ଯେ କିଛି ଗୋଟିଏ ପ୍ରତିକାର ନ କଲେ ଦେଶର ସମସ୍ତ ପ୍ରଜା ରାସ୍ତାଘାଟ, ନଈନାଳ ସବୁଠେଇଁ ଶୋଇବାକୁ ଆରମ୍ଭ କରିବେ ଏବଂ ସୂଚାଇଦେଲେ ଯେ ଏପରି ପରିସ୍ଥିତି ଦେଶରେ ଶୃଙ୍ଖଳା ରକ୍ଷାପାଇଁ ହିତକର ବୋଲି ଜଣାପଡୁଥିଲେ ମଧ୍ୟ ଶତ୍ରୁ ଆକ୍ରମଣ ଆକର୍ଷଣ କରିପାରେ। ଆହୁରି ମଧ୍ୟ ଯୋଡ଼ିଦେଲେ ଯେ ଲୋକଙ୍କୁ ସବୁଦିନ ମାଗଣାରେ ଖାଇବାକୁ ଦେବା ଫଳରେ ଦିନେ ନା ଦିନେ ରାଜାଙ୍କର ଗନ୍ତାଘରେ ଚାଉଳର ଅଭାବ ଦେଖାଦେବ।

ରାଜା ଚିନ୍ତିତ ହେଲେ। 'ଉପାୟ ?' ବୋଲି ପ୍ରଶ୍ନ କରି ମନ୍ତ୍ରୀଙ୍କ ଆଡ଼କୁ ଅନାଇଲେ – ପାରିଷଦବର୍ଗଙ୍କୁ ଚାହିଁ ମୁଣ୍ଡ ଟୁଙ୍ଗାରିଲେ।

ରାଜାଙ୍କ ଅଳସୁଆ ପ୍ରୀତି ଜାଣିଲା ପରେ ପାରିଷଦବର୍ଗଙ୍କ ମଧ୍ୟରୁ ଅନେକ ନିଜ ନିଜ ଆସନରେ ବସି ସସମ୍ମାନେ ଢୁଳାଉଥିଲେ । ଚାଟୁକାର କେତେ ଦାନ୍ତ ଘିଷିଡ଼ି ପାପୁଲି ଘଷୁଥିଲେ । ରାଜାଙ୍କ ଚିନ୍ତାରେ ସେ ସମସ୍ତେ ଚିନ୍ତିତ ହେଲେ । ତାଙ୍କ ବିଷାଦରେ ସେ ସମସ୍ତେ ବିଷଣ୍ଣ ହେଲେ । 'ଉପାୟ ?' ପ୍ରଶ୍ନରେ ସେ ସମସ୍ତେ ମଧ୍ୟ 'ଉପାୟ' ବୋଲି ପ୍ରଶ୍ନକରି ପରସ୍ପରକୁ ଅନାଇଲେ ।

ସଂସାରର ସମସ୍ତେ ଘୁମାଇଲେ ମଧ୍ୟ ସମୟ ତ କେବେ ଘୁମାଏ ନାହିଁ – ତେଣୁ ଇତିମଧ୍ୟରେ ସମୟ ଗଡ଼ିଚାଲିଥିଲା । ଯଥା ସମୟରେ ରାଜ୍ୟଘଣ୍ଟ ଉତ୍ତର ଦେଲେ – ମହାରାଜ, ଏ ଅଳସୁଆଙ୍କ ମଧ୍ୟରୁ ଅନେକେ ଠକ – ମାଗଣା ଖାଇବା ଆଶାରେ ଏମିତି ଜୁଟିଛନ୍ତି । ନିବାସରେ ନିଆଁ ଲଗାଇ ଦିଅନ୍ତୁ – ସତ ମିଛ ଧରାପଡ଼ିଯିବେ; ମିଛ ସବୁ ପ୍ରାଣ ଭୟରେ ପଳାଇଯିବେ, ଆଉ ସତଗୁଡ଼ିକ ଶୋଇରହିବେ । ପାରିଷଦମଣ୍ଡଳୀ ସମସ୍ତେ ପୁଣି ଥରେ ପରସ୍ପରକୁ ଅନାଇ କହିଲେ, 'ମୁଁ ଠିକ୍ ସେଇ କଥା କହିବାକୁ ଯାଉଥିଲି ।'

ରାଜା ପରାମର୍ଶ ଶୁଣି ଖୁସିହେଲେ, ମୃଦୁହାସ୍ୟ କଲେ ଏବଂ ଆଦେଶିଲେ – ମନ୍ତ୍ରୀ ! ଅଳସୁଆ ନିବାସରେ ନିଆଁ ଲଗାଇଦିଅ ।

ନିଆଁ ଲାଗିବାକୁ ଯାଉଥିବା ଖବର ଶୁଣି ଅଳସୁଆ ନିବାସର ପ୍ରାଙ୍ଗଣ ପ୍ରଭୃତି ଅଚିରେ ଖାଲିହୋଇଗଲା । ସତକୁ ସତ ଯେତେବେଳେ ନିବାସର ଛାତରେ ନିଆଁ ଲାଗିଲା, ନିବାସରୁ ପ୍ରାୟ ସବୁ ଅଳସୁଆ ଦୌଡ଼ି ପଳାଇଗଲେ ।

ଧୀରେ ଧୀରେ ଚାରିଆଡ଼େ ନିଆଁ ଲାଗିଗଲା । ଏଥର ମହା ମହା ଅଳସୁଆମାନେ ମଧ୍ୟ ପ୍ରାଣଭୟରେ ପଳାୟନ କଲେ । ପରିଶେଷରେ ରହିଲେ ମାତ୍ର ଦୁଇଜଣ ।

ନିଆଁ ଅତି ପାଖକୁ ଚାଲିଆସିଲାଣି । ପିନ୍ଧିଥିବା ଲୁଗାପଟାରେ ନିଆଁ ଲାଗିବା ଉପରେ । ଜଣେ ଅତି କଷ୍ଟରେ ସାମାନ୍ୟ ଆଖି ଖୋଲି କହିଲା – 'ପି-ପୋ-'

ଅନ୍ୟ ଜଣକ ବୁଝିଲା ସାଥୀ କହୁଛି 'ପିଠି ପୋଡୁଛି' – କିନ୍ତୁ ତନ୍ଦ୍ରାର ଆତିଶଯ୍ୟରୁ ପୁରା ବାକ୍ୟ ଉଚ୍ଚାରଣ କରିପାରୁନି । ସେ ଆଖି ନ ଖୋଲି କଡ଼ ଲେଉଟାଉ ଲେଉଟାଉ ଉତ୍ତର ଦେଲା – 'ଘୁ-ଶୁ-'

ଅଳସୁଆ ଶିରୋମଣିଙ୍କ ତାରବାର୍ତ୍ତା 'ପି-ପୋ' ବନ୍ଧୁ ବୁଝିନେଲେ । ସେ ପରାମର୍ଶ ଦେଉଛନ୍ତି 'ଘୁଞ୍ଚି-ଶୁଅ' । ତେଣୁ ଟିକିଏ ଘୁଞ୍ଚି ଶୋଇଗଲେ ।

ଏ ଜଣାଶୁଣା ଘଟଣା ସୂଚିତ କରେ ଯେ ପ୍ରକୃତ ଆଳସ୍ୟ କେବଳ ଯେ ସୁଖ ଓ ଶାନ୍ତି ପ୍ରଦାୟିନୀ ତା' ନୁହେଁ, ମୃତ୍ୟୁ ଭୟ ନିବାରିଣୀ ମଧ୍ୟ ।

ଏଥିରେ କିନ୍ତୁ ନିନ୍ଦୁକଙ୍କ ଆଖିରେ ଆଉ ନିଦ ହୁଏନି । ସେମାନେ ଆଳସ୍ୟ ବିରୁଦ୍ଧରେ ଦୁର୍ନାମ ରଟାଇ ବସନ୍ତି । ଏ କଥା ଜଣାଶୁଣା ଯେ ମନୁଷ୍ୟର କେବଳ

ଷଡ଼ରିପୁ ଅଛନ୍ତି ଏବଂ ସେମାନେ ହେଲେ କାମ, କ୍ରୋଧ, ଲୋଭ, ମୋହ, ମଦ ଏବଂ ମାତ୍ସର୍ଯ୍ୟ। ସେ ଭିତରେ ଆଳସ୍ୟର ସ୍ଥାନ ନାହିଁ। ତଥାପି କେହି କେହି କହିଦିଅନ୍ତି ଯେ ଆଳସ୍ୟ ହିଁ 'ମନୁଷ୍ୟାଣାଂ ଶରୀରସ୍ଥୋ ମହାନ୍ ରିପୁ।' ଧାଁଧପଡ଼, ଡିଆଁଡେଇଁ, ଧରାଧରି କରିବାପାଇଁ ଯିଏ ଅପାରଗ, ସେ କେମିତି ଆଜିର ଏହି ସଂସାରରେ ବଡ଼ ହେବା କାମନା ପୋଷଣ କରିବ? ଶୋଇବା ପାଇଁ ଟିକିଏ ସୁଯୋଗ ହିଁ ତାର ଏକମାତ୍ର କାମନା। କାମନାରୁ କୁଆଡ଼େ କ୍ରୋଧର ଜନ୍ମ। ଯାହାର କାମନା ନାହିଁ, ତାହାର କ୍ରୋଧ ଆସିବ କେଉଁଠୁ? ଶୋଇବାରେ ସାମାନ୍ୟ ବ୍ୟାଘାତ ଆସିଲେ ଅଥବା କେହି ନିଦ ଭାଙ୍ଗିଦେଲେ ତାର ଟିକିଏ କ୍ରୋଧ ଦେଖା ଦେଇ ପାରେ – ବାସ୍ ସେତିକି। ସେ ପଲଙ୍କ ସୁପାତି ଲୋଡ଼େନା – ମୁକ୍ତ ଆକାଶ ତଳେ ଟାଙ୍ଗରାଭୁଇଁ ଉପରେ ଖଣ୍ଡେ ଗାମୁଛା ହେଲେ ତାର ହେଲା। ସେତିକି ନ ହେଲେ ମଧ୍ୟ ସେ ବସି ବସି ଆଖି ବୁଜିଦେଇପାରେ। ତେଣୁ ଠୁଳକରିବାର ଲୋଭ ଓ ସେ ଠୁଳ ସମ୍ପତ୍ତିର ମୋହ ତାର ନାହିଁ। ତାର ସମୟ କାହିଁ ଯେ ସେ ଆତ୍ମାଭିମାନ କରି ବସିବ ଅଥବା ଅନ୍ୟ କେହି ବେଶି ଶୋଉଛି ବୋଲି ପର ଶିରୀ କାତର ହେବ? ତେଣୁ ମଦ ଏବଂ ମାତ୍ସର୍ଯ୍ୟ ତାର ନାହିଁ। ଅଳସୁଆ ତେଣୁ ଷଡ଼ରିପୁଙ୍କ କ୍ରୀଡ଼ାସ୍ଥଳୀରୁ ଅତି ଉର୍ଦ୍ଧ୍ୱରେ।

ଆଉ କେହି କେହି ସିଧାସଳଖ କିଛି ନକହି ଅଙ୍କେଇ ବଙ୍କେଇ ଅଳସୁଆକୁ ପରିହାସ କରନ୍ତି। କିଏ କହେ 'ଶୋଇଲା ପୁଅର ଭାଗ ନାହିଁ' ତ ଆଉ କିଏ କହେ 'ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ' – ସତେ ଯେମିତି ଚେଇଁ ରହିଥିବା ସିଂହ ମୁହଁକୁ ଜନ୍ତୁମାନେ ଧସାଇ ପଶନ୍ତି! କିଏ ଅବା ପରାମର୍ଶ ଦେବା ଛଳରେ ଗାଇଯାଏ "ଉଠ୍ ଜାଗ୍ ମୁସାଫିର୍ ଭୋର୍ ଭଇ, ଅବ୍ ରୈନ କହାଁ ଯୋ ତୁ ଶୋବତ ହୈ। ଯୋ ଜାଗତ ହୈ, ସୋ ପାବତ ହୈ, ଯୋ ଶୋବତ ହୈ ସୋ ଖୋବତ ହୈ।" ଆଉ ତା ସାଙ୍ଗରେ ଯୋଡ଼ନ୍ତି 'ଜବ୍ ଚିଡ଼ିଆନେ ଖେତ ଚୁଗ୍‌ଲିଆ, ଫିର୍ ପଛତାବେ କ୍ୟା ହୋବତ ହେ।' ସେମାନେ ବୁଝିବାକୁ ଚେଷ୍ଟା ମଧ୍ୟ କରନ୍ତିନି ଯେ ଯିଏ କୌଣସି ପଦାର୍ଥ ସଂଗ୍ରହ କରିବା ଅଭିଳାଷ ପୋଷଣ କରେନି, ସେ କାହିଁକି ଅବା ପସ୍ତାଇବ? ଅନ୍ୟମାନେ ଆଳସ୍ୟକୁ ତାମସିକ ବୋଲି କହି ଯୁଗ ଯୁଗ ଧରି ଅଳସୁଆକୁ ତା ନିଦରୁ ଉଠାଇବାକୁ ଚେଷ୍ଟା କରିଆସିଛନ୍ତି।

ସେମାନେ କେବେହେଲେ ଅଳସୁଆ କାହିଁକି ଶୋଇଛି ସେ କଥା ବୁଝିବାକୁ ଚେଷ୍ଟା ମଧ୍ୟ କରନ୍ତିନି। ବୁଝିଲେ ହୁଏତ ଦରଦଭରା ମନରେ ତାକୁ ଶୋଇବାକୁ ଦିଅନ୍ତେ।

ହେଲା ବା ଅଳସୁଆର ନିଦ୍ରା ତାମସିକ – କୁମ୍ଭକର୍ଣ୍ଣ ଯଦି ଶୋଇଛି ତାକୁ ଶୋଇବାକୁ ଦିଅନ୍ତୁ। ସେ ତା'ର ରାବଣ ଭାଇ, ମେଘନାଦ ପୁତୁରା, ସୂର୍ପଣଖା

ଭଉଣୀ, ଆଉ ତାଡ଼କା ପ୍ରଭୃତି ରାକ୍ଷସ ରାକ୍ଷସୀମାନଙ୍କର କ୍ରିୟାକଳାପ ସବୁ ଦେଖିସାରିଛି । ଏମାନଙ୍କ ଲୁଟ୍‌ତରାଜ, ହରଣ ଶୋଷଣ ପ୍ରଭୃତି ଅତ୍ୟାଚାରରେ ସେ ଭାଗ ନେବାକୁ ଚାହେଁନା ଅଥବା ସ୍ୱାର୍ଥାନ୍ଧ ବିଭୀଷଣ ପରି ନିଜ ଭାଇ ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରିବାକୁ ମଧ୍ୟ ଚାହେଁନା । ତେଣୁ ସେ ଶୋଇଛି । ତାକୁ କାପୁରୁଷ କହିବେ, କୁହନ୍ତୁ । ତା'ର ଶକ୍ତି କେତେ ସେ ଜାଣେ । ସେ ଶୋଇବାକୁ ଚାହୁଁଛି – ତାକୁ ଦୟାକରି ଶୋଇବାକୁ ଦିଅନ୍ତୁ । ଏଇ ଢୋଲ, ଦମା, ଟମକ, ନିଶାଣ ବଜାଇ ତା'ର ନିଦ ଭାଙ୍ଗନ୍ତୁନି ।

ଅନ୍ୟ କେଉଁଠି ଶୋଇଛନ୍ତି ମୁଚୁକୁନ୍ଦ – ସହସ୍ର ବର୍ଷ ଯୁଦ୍ଧ କଲା ପରେ କ୍ଲାନ୍ତ ଓ ବିରକ୍ତ ହୋଇ । ଦେବଙ୍କ ସପକ୍ଷରେ ରହି ସେ ଦାନବଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲେ; କିନ୍ତୁ ସେ ବେଶ୍ ବୁଝିଛନ୍ତି ଯେ ବୈମାତୃକ ଭାଇ ଦାନବଙ୍କ ପ୍ରତି ଏହି ଦେବମାନେ ବେଶ୍ ଅନ୍ୟାୟ କରିଛନ୍ତି । ଆଉ ଥରେ ନିଦରୁ ଉଠି ପୁଣି ଏହି ଦେବଙ୍କ ସ୍ୱାର୍ଥ ସିଦ୍ଧିପାଇଁ ସେ ଆଉ ଯୁଦ୍ଧ କରିବାକୁ ନାରାଜ । ତେଣୁ ସେ ଶୋଇଯାଇଛନ୍ତି । ଯେ ତାଙ୍କୁ ନିଦରୁ ଉଠାଇବ, ସେ ଜଳି ପୋଡ଼ି ଭସ୍ମ ହୋଇଯିବ । ତେଣୁ ହୋସିଆର, ତାଙ୍କୁ ଉଠାନ୍ତୁନି ।

ଶୋଇଛନ୍ତି କୃଷ୍ଣ-ପ୍ରେମ-ବିହ୍ୱଳା ରାଇ ବିନୋଦିନୀ ରାଧା – ସାରା ରାତି ଶ୍ରୀକୃଷ୍ଣଙ୍କ ବାଟ ଅନାଇଁ ଅନାଇଁ । ଶଠଶିରୋମଣି କୃଷ୍ଣ କିନ୍ତୁ ଆସିଲେନି । ବିଚାରୀ ଶେଷରେ ଢୁଳାଇ ପଡ଼ିଛନ୍ତି । କୌଣସି ଆବାଜ ଶୁଣିଲେ ଶ୍ରୀକୃଷ୍ଣଙ୍କ ନୂପୁର ଧ୍ୱନି ବୋଲି ଭାବି ଚମକିଉଠି ଆତ୍ମହରା ହୋଇଯିବେ । ଉଠାନ୍ତୁନି, ପୋଡ଼ା ଘାରେ ଚୂନ ଦେଲେ ଆପଣଙ୍କର ଲାଭ ବା କ'ଣ ହେବ ?

ଠିକ୍ ଶୋଇନାହାନ୍ତି; କିନ୍ତୁ ଆଖିରେ ଅନ୍ଧପୁଟୁଳି ବାନ୍ଧି ଦେଇଛନ୍ତି ଗାନ୍ଧାରୀ । ବିଚକ୍ଷଣା ସର୍ବଜ୍ଞା । ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ଦୁଷ୍ଟ ପୁଅଙ୍କ ଚକ୍ରାନ୍ତ ସେ ବେଶ୍ ବୁଝିଛନ୍ତି । ଭାଇ ଶକୁନି କେଉଁ ମତଲବ ନେଇ ସେମାନଙ୍କ ସଙ୍ଗରେ ଜୁଟିଛି, ତା' ମଧ୍ୟ ସେ ଜାଣନ୍ତି । ଭୀଷ୍ମ, ଦ୍ରୋଣ ଭଲଲୋକ ହୋଇ ମଧ୍ୟ ଦୁର୍ଯ୍ୟୋଧନକୁ ବଦଳାଇ ପାରିବେନି । ଧୃତରାଷ୍ଟ୍ର ବୁଢ଼ା ତ ପୁତ୍ରସ୍ନେହରେ ଅନ୍ଧ । ଦୁଷ୍ଟମାନେ କୁଳବଧୂ ଦ୍ରୌପଦୀଙ୍କୁ ମଧ୍ୟ ଅପମାନ ଦେବାକୁ ପଛାଇବେନି । ତେଣୁ ଏମାନଙ୍କ ସମୂଳ ବିନାଶ ଅନିବାର୍ଯ୍ୟ । ମାନସିକ ଯନ୍ତ୍ରଣାରେ ଗାନ୍ଧାରୀ ଶୋଇ ପାରୁନାହାନ୍ତି – ତାଙ୍କ ଆଖିକି ନିଦ ଅବା ଆସିବ କିପରି ? ଅନ୍ତତଃ କିଛି ଦେଖିବେନି ବୋଲି ଆଖିରେ ଅନ୍ଧପୁଟୁଳି ବାନ୍ଧିଦେଇଛନ୍ତି । ସେ ପୁଟୁଳି ଖୋଲିବାକୁ କୁହନ୍ତୁ ନାହିଁ, ତାଙ୍କ ଚକ୍ଷୁ ସମ୍ମୁଖରେ ପଡ଼ିଲେ ଜଳିଯିବେ ।

ଆଉ ଶୋଇଛନ୍ତି ଶ୍ରୀକୃଷ୍ଣ । ମହାଭାରତ ଯୁଦ୍ଧ ଶେଷ ହୋଇସାରିଛି । ଅଧର୍ମର ବିନାଶ ଏବଂ ଧର୍ମର ସଂସ୍ଥାପନା ପାଇଁ ସେ ଯଦୁବଂଶକୁ ମଧ୍ୟ ଧ୍ୱଂସ କରିଦେଇ ସାରିଛନ୍ତି । ପ୍ରଦ୍ୟୁମ୍ନ ପରି ପୁଅ ମଧ୍ୟ ଆଉ ନାହାନ୍ତି – ତାଙ୍କୁ ମାରିଦେଇ ସୁଦର୍ଶନ ଚକ୍ର ବୈକୁଣ୍ଠଧାମକୁ ଫେରିଗଲାଣି । ଏ ସଂସାରରେ ତାଙ୍କର କାମ ଶେଷ ହୋଇଯାଇଛି । ଯୋଗନିଦ୍ରାରେ ସେ ଶୋଇଯାଇଛନ୍ତି । ଗଛପତ୍ରର ଉହାଡ଼ରେ – ପୀତବସ୍ତ୍ର ପରିହିତ, ବନମାଳା ସୁଶୋଭିତ ସୁନ୍ଦର ଶ୍ୟାମଳ ତନୁ ପ୍ରକୃତିର ଅଙ୍ଗରେ ଲୀନ ହୋଇଗଲା ପରି ମନେହେଉଛି । ପାଦପଦ୍ମ ଦିଓଟି କିନ୍ତୁ ଝଟକି ଉଠୁଛି । ହରିଣ ଶାବକର କର୍ଣ୍ଣ ବୋଲି ସେହି ପାଦପଦ୍ମରେ ତୀର ମାରନ୍ତୁନି । ଯୋଗନିଦ୍ରା ଭାଙ୍ଗିଗଲେ ମଣିଷର ପରମ ସଖା ନିଜ ଧାମକୁ ଫେରିଯିବେ – ଅର୍ଜୁନ ମଧ୍ୟ ତାଙ୍କୁ ଅଟକାଇ ରଖିପାରିବେନି ।

ଆଉ ଏଣେ ଦେଖନ୍ତୁ କିଏ ଶୋଇଛି ! ଏତେ ଖରା ପଡ଼ିଗଲାଣି, ତଥାପି ଭଦ୍ରଲୋକ ଶୋଇଛନ୍ତି । ତାଙ୍କୁ ମଧ୍ୟ ଉଠାନ୍ତୁନି । ଯେଉଁଥିରେ ଯିଏ ଯେମିତି ଶାନ୍ତି ପାଉଛି, ସେ ସେହି ଶାନ୍ତି ଉପଭୋଗ କରୁ – ସେ ଶାନ୍ତିରେ ଆପଣ ବ୍ୟାଘାତ ଆଣିବେ କାହିଁକି ? ଆପଣ ଯଦି ବ୍ରାହ୍ମମୁହୂର୍ତ୍ତରେ ଉଠିବାକୁ ଚାହିଁଛନ୍ତି, ଉଠନ୍ତୁ । ସ୍ନାନ ଶୌଚାଦି ନିତ୍ୟକର୍ମ ସାରିଦେଇ ପଦ୍ମାସନରେ ବସି ନାକ ଚିପି ଓଁ-ହ୍ରିଂ-କ୍ଲିଂ କରିବାକୁ ଚାହୁଁଛନ୍ତି, କରନ୍ତୁ – ନିଶ୍ଚୟ କରନ୍ତୁ ! ଯଂ-ରଂ-ବଂ-ଶଂ-ଷଂ ଘୋଷନ୍ତୁ, କରତଳ କରପୃଷ୍ଠାଭ୍ୟାଂ ଫଟ୍ କରି ଓଲଟା ତାଳି ବାଡ଼ାନ୍ତୁ, ଧେନୁମୁଦ୍ରା ମହାମୁଦ୍ରା ଦେଖାଇ ବୃଦ୍ଧାଙ୍ଗୁଷ୍ଠି ହଲାନ୍ତୁ । ଧ୍ୟାନମଗ୍ନ ହୁଅନ୍ତୁ ଅଥବା 'ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁ ମେ' ଠାରୁ ଆରମ୍ଭ କରି 'ବିହାର ଶଯ୍ୟାସନ ଭୋଜନେଷୁ' ଯାହା ଯେଉଁଠି ଭୁଲରେ ଅଥବା ଜାଣିଶୁଣି ଦୋଷ ସବୁ କରିଛନ୍ତି, ସେ ସବୁପାଇଁ କ୍ଷମାଭିକ୍ଷା କରନ୍ତୁ; କିନ୍ତୁ ଦୟାକରି ଥିରି ଥିରି । ଯିଏ ଶୋଇଛି ତା'ର ନିଦ ଯେମିତି ନ ଭାଙ୍ଗେ । ହୁଏତ ସେ ଠିକ୍ ସେଇ ମୁହୂର୍ତ୍ତରେ ତା'ର ମନପବନ ଘୋଡ଼ା ଚଢ଼ି, ସ୍ୱପ୍ନ ରାଇଜ ଡେଇଁ ଅଳକାପୁରୀର ସ୍ୱାଗତ ତୋରଣ ଦ୍ୱାରରେ ପହଞ୍ଚିଲାଣି, ଆଉ ସେଆଡୁ ତାଙ୍କୁ ବରଣ କରି ନେବା ଉଦ୍ଦେଶ୍ୟରେ ଐରାବତ ହାତୀ, ଉଚ୍ଚୈଃଶ୍ରବା ଘୋଡ଼ା ସହ ଦେବରାଜଙ୍କ ପ୍ରୋସେସନ୍ ମଧ୍ୟ ପାଖେଇ ଆସିଲାଣି । ହେଇ ବୁଢ଼ା ଇନ୍ଦ୍ର ତାଙ୍କ ହଳଦିଆ ପାଟବସ୍ତ୍ର ସଙ୍ଗରେ ଶଚୀ ଦେବୀଙ୍କ ନାରଙ୍ଗୀ ପାଟ ଗଣ୍ଠିଲା କରି ବନ୍ଦନା ଆଳି ହାତରେ ଆଗେଇ ଆସୁଛନ୍ତି–ବୃହସ୍ପତି କ'ଣ ସବୁ ମଙ୍ଗଳ ସ୍ତୋତ୍ର ଚିତ୍କାର କରୁଛନ୍ତି – କିଛି ସଫା ଶୁଭୁନି – ଖାଲି-ଓଁ-ଓଁ–ପଛରେ ଅପ୍ସରାଙ୍କ ଭିଡ଼ । ଓଢ଼ଣୀ ଭିତରେ ସେ ଯେଉଁ ସୁନେଲୀ ନାକ ଟିକିଏ ଝଲକି ଯାଉଛି – ସେ ନୁହେଁ ତ ?

ଆଉ ଏତିକିବେଳେ ଆପଣ ଯଦି କହିବେ – "ହଇବେ ଅଳସୁଆ – ଉଠ୍, ଆଠଟା ବାଜିଲାଣି – ପଟ୍ଟନାୟକ ସାର୍‌ଙ୍କ କେମିଷ୍ଟ୍ରି କ୍ଲାସ୍" – ବାଧିବନି ?

ଯିଏ କେବେ ଆଳସ୍ୟ ଉପଭୋଗ କରିନି, ସେ କିପରି ବା ଆଳସ୍ୟର ଗୁଣ ଗାନ କରିବ ? ଯିଏ ପ୍ରଜାପତି ପରି ସୁନ୍ଦର ଡେଣା ହଲାଇ, ଫର୍ ଫର୍ ହୋଇ ରସିକ ସାଜି, ଏ ଫୁଲରୁ ସେ ଫୁଲ ଆଉ ସେ ଫୁଲରୁ ଏ ଫୁଲ ରସ ସଂଗ୍ରହ କରୁଥିବ, ସେ କେମିତି କୋଷାବଦ୍ଧ ଗୋଟିପୋକର ମାନସିକ ଶାନ୍ତି ବୁଝିବ ?

ଯିଏ କୁକୁରଙ୍କ ପରି ଅଳିଆଗଦା ଭିତରୁ ହାଡ଼ ଖଣ୍ଡିଏ ଦରାଣ୍ଡୁଥିବ ଅଥବା ହୋଟେଲ ପାଖରେ ପଡ଼ିଥିବା ଖଲିଦନାମାନଙ୍କରେ ଲାଗି ରହିଥିବା ଖାଦ୍ୟକଣିକା ସଂଗ୍ରହରେ ବ୍ୟସ୍ତ ରହିଥିବ, ସେ କେମିତି ବଳଦଙ୍କ ଆଖିବୁଜା ରୋମନ୍ଥନର ସ୍ୱାଦ ଜାଣିପାରିବ ?

ମେରିଜୁଆନା, ଏଲ୍.ଏସ୍.ଡ଼ି. ମେଣ୍ଡ୍ରେକ୍ସ ଆଉ କେତେ କଣ ଖାଇଲେ ମଧ୍ୟ ଯା'ର ନିଦ ହୁଏନି, ସିଏ କେମିତି ଏଇ ରାସ୍କେଲ୍ ଅଳସୁଆ ବିନା ଆୟାସରେ ଆରାମରେ ରାତି ଦିନ ଘୁଙ୍ଗୁଡ଼ି ମାରୁଥିବା ଦେଖି ଈର୍ଷାନ୍ୱିତ ନହେବ ?

କାହା ପକେଟରେ କେତେ ଗୁଞ୍ଜିଲେ ଆପଣଙ୍କୁ କେତେ ମିଳିବ ସେ କଥା ଥରେ ଭୁଲିଯାଆନ୍ତୁ – ଦେଖିବେ ଆପଣଙ୍କର ମଧ୍ୟ ନିଦ ହେବ । ଆଉ ଆପଣ ଜାଣିବେ ଏ ସୃଷ୍ଟିଚକ୍ରରେ ଆରମ୍ଭ ଓ ଶେଷ ବିନ୍ଦୁ ପ୍ରାୟ ଏକ । ତମର ଶେଷ ଯେଉଁଠି ସତ୍ତ୍ୱର ଆରମ୍ଭ ମଧ୍ୟ ପ୍ରାୟ ସେଇଠି । ସମାଧି ଓ ତନ୍ଦ୍ରା, କର୍ମହୀନତା ଓ କର୍ମଶୂନ୍ୟତା, ଯୋଗ ନିଦ୍ରା ଏବଂ ଅଳସୁଆର ଘୁଙ୍ଗୁଡ଼ିମରା ତେଣୁ ବେଶ୍ ପାଖାପାଖି ।

# ବୁଭୁକ୍ଷିତଃ କିଂ...

କଥାରେ ଅଛି ଯେ ମରଣଠାରୁ ବେଳେ ବେଳେ ଅପମାନ ବଳିଯାଏ ।

ଜଠର ଯନ୍ତ୍ରଣାରେ ନିର୍ଯ୍ୟାତିତ ଅଗଣିତ ଲୋକ ତାଙ୍କର ସମସ୍ତ ସମ୍ପତ୍ତି ବିକ୍ରୀ ବନ୍ଧକ କରିଦେଇ, ଯେତେବେଳେ ବାସ୍ତୁହରା ଓ ସର୍ବହରା – ଦିନ ପରେ ଦିନ ଉପାସରେ ସେମାନଙ୍କର କଙ୍କାଳ ଯେତେବେଳେ ଦୋହଲିଯାଏ, ଆଉ ଛୋଟ ଛୋଟ ପୁଅ ଝିଅ ଓ ବୁଢ଼ା ବାପ ବୁଢ଼ୀମା'ଙ୍କ ପାଇଁ ମୁନ୍ଦିଏ ତୋରାଣି କିମ୍ବା ତେନ୍ତୁଳି ଗଛର ପତ୍ର କିଛି ଖୋଜିବାକୁ ଯାଇ ସେମାନେ ଯେତେବେଳେ ରାସ୍ତା କଡ଼ର ଗଛ ତଳେ ଶୁଖିଲା ପତ୍ର ପରି ଝଡ଼ିପଡ଼ନ୍ତି, ସେତିକିବେଳେ 'ଏ ସୁଯୋଗରେ ଯାହା ଶସ୍ତାରେ ମିଳୁଛି କିଣିନିଅ' ବୋଲି ପରସ୍ପର ମଧ୍ୟରେ ଆଖି ଠରାଠରି ହେଉଥିବା ସମାଜ ଚିତ୍କାର କରି କହେ–

'ବୁଭୁକ୍ଷିତଃ କିଂ ନ କରୋତି ପାପଂ'

ସଂସ୍କୃତ ସାହିତ୍ୟର ଗାଳ୍ପିକଶିରୋମଣି ବିଷ୍ଣୁଶର୍ମା ଏ ଶ୍ଳୋକର ଜନ୍ମଦାତା । ତାଙ୍କ କଳ୍ପନାମାନଙ୍କରେ ଚପଳା ଛଇଳାଙ୍କ ପ୍ରେମକାହାଣୀ ନାହିଁ କିମ୍ବା ରସିକ ପ୍ରେମିକର ଦିଗ୍‌ବିଜୟ ଉପାଖ୍ୟାନ ନାହିଁ । ଚାରୁକୁନ୍ତଳା, କୁରଙ୍ଗୀନୟନା, କୁନ୍ଦଦନ୍ତୀ ବିମ୍ବୋଷ୍ଠୀଙ୍କ ଅପାଙ୍ଗ ଚାହାଣି ବଦଳରେ ବିଷ୍ଣୁଶର୍ମାଙ୍କ ନାୟିକା କେତେବେଳେ ତାର ତୀକ୍ଷ୍ଣ ନଖଦନ୍ତ ଉନ୍ମୋଚନ କରେ ତ, କେତେବେଳେ ଲାଙ୍ଗୁଡ଼ ହଲାଏ । ତାଙ୍କ ଗଳ୍ପମାନଙ୍କରେ ସାପ, ବେଙ୍ଗ, ଠେକୁଆ, ବିଲୁଆ, ମାଙ୍କଡ଼, କୁମ୍ଭୀର, ସିଂହ, ବାଘ ପ୍ରଭୃତି ପଶୁ ଓ ପକ୍ଷୀ ପ୍ରଧାନ ଚରିତ୍ର ରୂପରେ ଦେଖାଦିଅନ୍ତି । ଜୀବନ ଓ ବଞ୍ଚିରହିବାର ବାସନା ତେଣୁ ତାଙ୍କ ବିଷୟବସ୍ତୁମାନଙ୍କର ମୂଳ ଉତ୍ସ । ପ୍ରାଣୀଜଗତର ଏହି ଆଦି ପ୍ରକୃତି ଓ ଚିରନ୍ତନୀ ଜୀବନ ଦର୍ଶନ ମାଧ୍ୟମରେ ହିଁ ବିଷ୍ଣୁଶର୍ମା ମଣିଷ ସମାଜକୁ ତାଙ୍କର ଅମୂଲ୍ୟ ଶିକ୍ଷାସମ୍ପଦ ଦେଇଯାଇଛନ୍ତି । ଏକଥା ସତ ଯେ ତାଙ୍କର ମାଙ୍କଡ଼ ଓ ବେଙ୍ଗ ବେଳେବେଳେ ବେଦ ବେଦାନ୍ତର ମହାନ୍ ବାଣୀ ସବୁ ଘୋଷଣା କରନ୍ତି; ତଥାପି ଏ ବଞ୍ଚି ରହିବାର ବାସନା ଓ ସେଥିପାଇଁ ବୁଦ୍ଧି କୌଶଳର ପ୍ରୟୋଗ ହିଁ ସେ ଜୀବନ-ଦର୍ଶନର ପଟ୍ଟଭୂମି ହୋଇ ରହେ । ତେଣୁ ସେଥିରେ ମନୁଷ୍ୟୋଚିତ ଦୟା, କ୍ଷମା, ତ୍ୟାଗ, ଆତ୍ମାହୁତି ପ୍ରଭୃତି ଯେଉଁସବୁ ଜୀବନର ମୂଲ୍ୟବୋଧ ଜୀବନଠାରୁ ମଧ୍ୟ ମହାନ୍,

ସେ ସବୁର ସ୍ଥାନ ନଥିବା ସ୍ୱାଭାବିକ । ଏହି ପରିପ୍ରେକ୍ଷୀରେ ଗୋଟିଏ ବେଙ୍ଗର ଉକ୍ତି 'ବୁଭୁକ୍ଷିତଃ କିଂ ନ କରୋତି ପାପଂ' ମନୁଷ୍ୟ ପାଇଁ କେତେଦୂର ପ୍ରଯୁଜ୍ୟ ତାହା ଆଲୋଚନାଯୋଗ୍ୟ । ପଟଭୂମିର ଗୁରୁତ୍ୱ ଦୃଷ୍ଟିରୁ ବିଷ୍ଣୁଶର୍ମାଙ୍କର ସେହି ଗଳ୍ପର ସାଧାରଣ ପୁନରାବୃତ୍ତି ଏଠାରେ କରାଯାଇପାରେ ।

ମଣ୍ଡୁକରାଜ ଗଙ୍ଗଦତ୍ତ ନିଜ ଜ୍ଞାତି-କୁଟୁମ୍ବଙ୍କ ଦ୍ୱାରା ପ୍ରପୀଡ଼ିତ ଓ ଅପମାନିତ ହୋଇ ପ୍ରିୟଦର୍ଶନ ସର୍ପର ମୈତ୍ରୀ ଭିକ୍ଷା କରିଛି । ସାପ ଓ ବେଙ୍ଗର ମୈତ୍ରୀ କିପରି ଅସମ୍ଭବ ସେ କଥା ପ୍ରିୟଦର୍ଶନ ପ୍ରଥମେ ବୁଝାଇବାକୁ ଚେଷ୍ଟାକରିଛି; କିନ୍ତୁ ପରେ ନିଜର ସ୍ୱାର୍ଥ ଦୃଷ୍ଟିରୁ ନିମନ୍ତ୍ରଣ ରକ୍ଷାକରି ଗଙ୍ଗଦତ୍ତ ପ୍ରଦର୍ଶିତ ପଥ ଦେଇ ତାର କୂଅ ଭିତରକୁ ପ୍ରବେଶ କରିଛି । ଗଙ୍ଗାଦତ୍ତ ଦେଖାଦେଇଥିବା ଗୁମ୍ଫାରେ ଆଶ୍ରୟ ନେଇ ପ୍ରିୟଦର୍ଶନ ବେଙ୍ଗମାନଙ୍କୁ ଗୋଟି ଗୋଟି କରି ଶେଷକରିଯାଇଛି । ପଳାୟନର କୌଣସି ବାଟ ନାହିଁ । ପ୍ରଥମ ପାଳିରେ ଯାଇଛନ୍ତି ଗଙ୍ଗଦତ୍ତର ଶତ୍ରୁମାନେ – ତା'ପରେ ଯାଇଛନ୍ତି ତାର ଅନ୍ୟାନ୍ୟ ଜ୍ଞାତି କୁଟୁମ୍ବ । ଡାକି ଆଣିଥିବାରୁ ପ୍ରିୟଦର୍ଶନକୁ ଖାଇବାକୁ ଦେବାପାଇଁ ଗଙ୍ଗଦତ୍ତ ବାଧ – ସେଥିପାଇଁ ଏଥର ପାଳିପଡ଼ିଛି ତାର ନିଜ ପରିବାରବର୍ଗ ଉପରେ । ପ୍ରିୟ ପୁତ୍ର ଯମୁନାଦତ୍ତ ଯାଇଛି... ପରିଶେଷରେ ତାର ସ୍ତ୍ରୀ ମଧ୍ୟ ରକ୍ଷା ପାଇ ନାହାନ୍ତି; ରହିଯାଇଛି କେବଳ ଗଙ୍ଗଦତ୍ତ । ନିଜେ ପ୍ରିୟଦର୍ଶନକୁ ଡାକି ଆଣିଥିବାରୁ ତାକୁ ପ୍ରତିଦିନ ଖାଇବାକୁ ଦେବା ଦାୟିତ୍ୱ ଯେ ଗଙ୍ଗଦତ୍ତର ସେ କଥା ଦୋହରାଇବାର ତାତ୍ପର୍ଯ୍ୟ ଉପଲବ୍ଧି କରି ଗଙ୍ଗଦତ୍ତ ଅନ୍ୟ କୂପକୁ ଯାଇ ଅନ୍ୟାନ୍ୟ ବେଙ୍ଗମାନଙ୍କୁ ଡାକି ଆଣିବା ବାହାନାରେ କୂଅ ଭିତରୁ ବାହାରିଆସି ପ୍ରାଣ ରକ୍ଷା କରିଛି । କିଛିଦିନ ଅପେକ୍ଷା କଲାପରେ କୌଣସି ବେଙ୍ଗ କୂଅ ଭିତରକୁ ନଆସିବା ଦେଖି ପ୍ରିୟଦର୍ଶନ ଭଦ୍ର ଗୋଧି ହାତରେ ଗଙ୍ଗଦତ୍ତ ପାଖକୁ ଖବର ପଠାଇଛି ଯେ ଅନ୍ୟ ବେଙ୍ଗ କେହି ନଆସୁଥିଲେ ସେ ନିଜେ ଫେରିଆସୁ । ଗଙ୍ଗଦତ୍ତ ଦର୍ଶନ ମେଲି ଉତ୍ତର ଦେଇଛି–

ବୁଭୁକ୍ଷିତଃ କିଂ ନ କରୋତି ପାପଂ
କ୍ଷୀଣା ଜନା ନିଷ୍କରୁଣା ଭବନ୍ତି
ଆଖ୍ୟାହି ଭଦ୍ରେ! ପ୍ରିୟଦର୍ଶନାୟ
ନ ଗଙ୍ଗଦତ୍ତଃ ପୁନରେତି କୂପଂ ।

ଏଠାରେ ବୁଭୁକ୍ଷିତ ଶବ୍ଦର ପ୍ରୟୋଗ କେବଳ ଜଠର କ୍ଷୁଧାରେ କ୍ଷୁଧାତୁର ଅର୍ଥରେ କରାଯାଇଛି, କିମ୍ବା ଶବ୍ଦଟି ତା'ଠାରୁ ଆହୁରି ବେଶି ବ୍ୟାପକ ଅର୍ଥରେ ବ୍ୟବହୃତ ହୋଇଛି, ସେ ସମ୍ବନ୍ଧରେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉଠେ ।

ଗଙ୍ଗଦତ୍ତ କୂଅ ଭିତରକୁ ଫେରିଗଲେ ପ୍ରିୟଦର୍ଶନ ଯେ ତାକୁ ଖାଇଦେବ, ସେ କଥା ସୁନିଶ୍ଚିତ । ଏପରି ଜଣେ ମିତ୍ରକୁ ଖାଇଦେବା ଦ୍ୱାରା ପ୍ରିୟଦର୍ଶନ ମିତ୍ରଦ୍ରୋହ

ରୂପକ ଯେଉଁ ପାପ କରିବ, ସେ ପାପ ଆଚରଣ କେବଳ ଯେ ଭୋକ ପାଇଁ, ଯେ ମୀମାଂସା କିନ୍ତୁ ସିଦ୍ଧାନ୍ତ ରୂପରେ ଗ୍ରହଣ କରାଯାଇନପାରେ । ଭୋକ ଅପେକ୍ଷା ପାପର ଶୟତାନୀ ବୁଦ୍ଧି ଓ ଜିହ୍ୱାଲାଳସା ଯେ ସେ ପାପ ପାଇଁ ବେଶି ଦାୟୀ ତାହା ଅସ୍ୱୀକାର କରିହେବନି । ପୂର୍ବରୁ ଦେଖାଯାଇଥିଲା ଯେ ଗଙ୍ଗଦତ୍ତ ଦେଖାଇଥିବା ଗୋଟିଏ ବେଙ୍ଗକୁ ଖାଇ ସାରିଲା ପରେ ମଧ୍ୟ ପ୍ରିୟଦର୍ଶନ ଗଙ୍ଗଦତ୍ତର ପୁଅ ଯମୁନାଦତ୍ତକୁ ଲୁଚାଛପାରେ ଖାଇଦେଇଥିଲା । ସେତେବେଳେ ସେ ଯେଉଁ ପାପ କରିଥିଲା, ତାହା ଭୋକ ପାଇଁ ହୋଇନପାରେ । ମନେହୁଏ ଯେ ଦୁଇ ଚାରୋଟି ବେଙ୍ଗକୁ ସାଙ୍ଗରେ ନେଇ କୂଅକୁ ଫେରିଯାଇଥିଲେ ମଧ୍ୟ ଗଙ୍ଗଦତ୍ତର ଶେଷ ପରିଣତି ସେହି ଏକାଧରଣର ହିଁ ହୋଇଥାଆନ୍ତା; ବିଷ୍ଣୁ ବର୍ମା ଏକଥା ନିଶ୍ଚୟ ଜାଣିଥିଲେ । ତେଣୁ ତାଙ୍କର ବୁଭୁକ୍ଷିତ ଶବ୍ଦ ବେଶି ବ୍ୟାପକ ଅର୍ଥରେ ହିଁ ପ୍ରୟୋଗ କରାଯାଇଛି ବୋଲି ଧରିନିଆଯାଇପାରେ । ଏ ସମ୍ବନ୍ଧରେ ପୃଥ୍ୱୀରାଜଙ୍କ ବିରୁଦ୍ଧରେ ମହମ୍ମଦ ଘୋରୀକୁ ଜୟଚନ୍ଦ୍ରର ନିମନ୍ତ୍ରଣ କଥା ମନେପଡ଼େ । ପୃଥ୍ୱୀରାଜଙ୍କୁ ହରାଇ ସାରିଲା ପରେ ଦିଲ୍ଲୀର ସିଂହାସନ ପାଇଁ ମହମ୍ମଦ ଘୋରୀର ଯେଉଁ କ୍ଷୁଧା ଜନ୍ମିଥିଲା, ତାହାହିଁ ବୁଭୁକ୍ଷିତର କ୍ଷୁଧା ।

ବିଷୟ-ବାସନା, କ୍ଷମତା-ଲାଳସା ତଥା କାମନାଦୀପ୍ତ କ୍ଷୁଧାରେ ବୁଭୁକ୍ଷିତ ମଣିଷ ହିଁ ଯେ କୌଣସି ପାପ ବିନା ଦ୍ୱିଧାରେ କରିଯାଇପାରେ ।

ମନେହୁଏ ଯେ ଓଡ଼ିଆ ଆଧୁନିକ ସାହିତ୍ୟର ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ମଧ୍ୟ ଏହି 'ବୁଭୁକ୍ଷିତଃ କିଂ ନ କରୋତି ପାପଂ'ର ଆକ୍ଷରିକ ଅର୍ଥ କରି ପାର୍ବତୀ କାବ୍ୟର ହତଭାଗିନୀ ନିରୀହା କୌଶଲ୍ୟା ପ୍ରତି ଘୋର ଅନ୍ୟାୟ କରି ଯାଇଛନ୍ତି । ଯେଉଁ ଦେଶର ଦସ୍ୟୁ ରତ୍ନାକର ନ ଖାଇ ନ ପିଇ ତପସ୍ୟା କରୁଁ କରୁଁ ବଲ୍ମୀକ ପାଲଟିଯିବାରୁ ବାଲ୍ମୀକି ହେଲେ, ଯେଉଁ ଦେଶର କନ୍ୟା ଉମା ପତ୍ର ନଖାଇ ତପସ୍ୟା କରିଥିବାରୁ ଅପର୍ଣ୍ଣା ନାମରେ ଖ୍ୟାତ ହେଲେ, ସେହି ଦେଶର ଝିଅ କୌଶଲ୍ୟା ଭୋକ ପାଇଁ ଏମିତି ପିଶାଚ ହେବ କିପରି ଯେ କହିବ–

ଜିଣିଲା ଶୋକକୁ ଜଠର ଯାତନା
ହୃଦୟ ହେଲା ଅସ୍ଥିର
କେମନ୍ତେ କହିବି କିପାଁ ଦରାଣ୍ଡିଲି
ଶିଶୁର ସଢ଼ା ଶରୀର ।

x x x

ସେ କୌଶଲ୍ୟା ଏବେ ଜଠର-ଜ୍ୱାଳାରେ
ଓଟାରିଲା ଶିଶୁ ଶବ
ବଳବାନ ଦେବ ପକ୍ଷେ ଭବେ ମାଗୋ
କେଉଁ କଥା ଅସମ୍ଭବ ?

ପିତା ହୋଇ ସୁତା-ପ୍ରାଣ ଏହି ରୂପେ
ନାଶିବାର ଅନଶନେ
ମାତା ହୋଇ ମନ ବଳାଇବା ମୃତ
ତନୟ ତନୁ ଭୋଜନେ । (ପାର୍ବତୀ)

ମାନସିକ ବିକାରଗ୍ରସ୍ତ ପକ୍ଷରେ ଏପରି ଆଚରଣ ସମ୍ଭବ । କୌଶଲ୍ୟାର ସୁବର୍ଣ୍ଣିତ କରୁଣ କାହାଣୀ ପାଗଳାମିର କୌଣସି ଇଙ୍ଗିତ ଦିଏନି । ତେଣୁ ଏପରି ଉକ୍ତି ତଥା ଭାବନା ମନୁଷ୍ୟ ସମାଜ ପ୍ରତି ତଥା ମାତୃଜାତି ପ୍ରତି ଏକ ଅପମାନ ବୋଲି ହିଁ ମନେହୁଏ ।

ଭୋକ-ଶୋଷରେ ପ୍ରାଣ ଗଲାବେଳେ ମଧ୍ୟ ମଣିଷ କେମିତି ମଣିଷ ହୋଇ ରହେ, ଆଉ ପିଶାଚ ହୁଏନି, ତାର ଅନେକ ଦୃଷ୍ଟାନ୍ତ ରହିଛି ।

ମହାଭାରତର ଗୋଟିଏ ବର୍ଣ୍ଣନା । ଭୀମଙ୍କ 'ବସୁଛି ଗୋଲକପୁଅ' ଉତ୍ତରରେ କ୍ରୋଧାନ୍ୱିତ ଦୁର୍ଯ୍ୟୋଧନ ଶକୁନିଙ୍କ ସଙ୍ଗରେ ତାର ଶହେ ମାମୁଁ ଓ ମାତାମହଙ୍କୁ ନିମନ୍ତ୍ରଣ କରିଆଣି ବିନା ଅପରାଧରେ ବନ୍ଦୀ କଲା । ଭୋକ ଉପାସରେ ସମସ୍ତଙ୍କୁ ତିଳ ତିଳ କରି ମାରିବା ଉଦ୍ଦେଶ୍ୟରେ ପ୍ରତିଦିନ ଖାଦ୍ୟ ଯୋଗାଇଲା କେବଳ ଜଣକ ପାଇଁ । ବନ୍ଦୀ ବାପ ଓ ପୁଅମାନେ ନିଷ୍ପତ୍ତି କଲେ ଯେ ସେ ଜଣକର ଖାଦ୍ୟ କେବଳ ଶକୁନି ଖାଇ ବଞ୍ଚିରହିବ ଓ ଏ ଅନ୍ୟାୟର ପ୍ରତିଶୋଧ ନେବ । ସମସ୍ତେ ଭୋକରେ ମଲେ, ଆଉ ବଞ୍ଚିରହିଲା କେବଳ ଶକୁନି । ମଲା ବାପର ହାଡ଼ରେ ତିଆରି କରିଥିବା କାଉଁରି ପଶାକାଠି ଧରି ସେହି ଶକୁନି ଶେଷରେ କିପରି ମନ୍ତ୍ରୀ ହେଲା, ପାଣ୍ଡବ-କୌରବଙ୍କୁ ପଶା ଖେଳାଇ ମହାଭାରତ ଯୁଦ୍ଧର ମୂଳଦୁଆ ଦେଲା ଓ କୌରବଙ୍କ ସର୍ବନାଶ କଲା, ସେ କଥା ସମସ୍ତଙ୍କୁ ଜଣା ।

ମହାଭାରତର ଆଉ ଗୋଟିଏ ଦୃଷ୍ଟାନ୍ତ । ଦୁର୍ଭିକ୍ଷ ପଡ଼ିଛି । ଦିନ ଦିନ ଧରି ଭିକ ମିଳୁନି । ବ୍ରାହ୍ମଣ, ବ୍ରାହ୍ମଣୀ, ପୁଅ ଓ ବୋହୂ ଭୋକରେ କଙ୍କାଳ ମାତ୍ର ଧରି ରହିଲେଣି । ଶେଷରେ ମୁଠେ ଖୁଦ ମିଳିଛି । ସେଥିରେ ଅବା କାହାର ପେଟ ପୂରିବ ? ସମସ୍ତେ ସମସ୍ତଙ୍କୁ ଯାଚିଛନ୍ତି, ଖାଇବାକୁ ଅନୁରୋଧ କରିଛନ୍ତି । ବ୍ରାହ୍ମଣ-ବ୍ରାହ୍ମଣୀ କହିଛନ୍ତି– ସେମାନେ ତ ବୁଢ଼ାବୁଢ଼ୀ ହେଲେଣି, ତାଙ୍କର ଆଉ ବଞ୍ଚିରହିବାର ଦରକାର କ'ଣ – ସେମାନେ ମରନ୍ତୁ, ପୁଅ ବୋହୂ ସେତକ ଖାଇ ବଞ୍ଚନ୍ତୁ । ପୁଅ ବୋହୂ କହିଛନ୍ତି – ବାପା-ମା'ଙ୍କୁ ଆଗ ଖାଇବାକୁ ଦେବା ସେମାନଙ୍କ କର୍ତ୍ତବ୍ୟ । ଶେଷରେ ସେହି ମୁଠେ ଖୁଦର ଯାଉ ଭାଗ ବଣ୍ଟା ହୋଇଛି । ଗୋଟିଏ ଗୋଟିଏ ପତ୍ରରେ ତାଙ୍କର ଯାଉ ଟିକିଏ ଟିକିଏ ଧରି ସେମାନେ ଖାଇବାକୁ ଯାଉଛନ୍ତି – ହଠାତ୍ ଅତିଥିଙ୍କ ଆବିର୍ଭାବ ହୋଇଛି । ଜଣକ ପରେ ଜଣେ ସେହି ଅତିଥିଙ୍କୁ ତାଙ୍କ ଯାଉ ଭାଗ ଖାଇବାକୁ ଦେଇ ନିଜେ

ଭୋକରେ ମରିବାକୁ ଡରି ନାହାନ୍ତି । ଏ ପୁଣ୍ୟର ପ୍ରଭାବ ଏପରି ହୋଇଛି ଯେ ଅତିଥି ଖାଇଥିବା ଅଇଁଠା ପତ୍ରରେ ଗଡ଼ିଯିବା ଫଳରେ ଗୋଟିଏ ନେଉଳର ଫାଳେ ଦେହ ସୁନା ହୋଇଯାଇଛି । ଯୁଧିଷ୍ଠିରଙ୍କ ରାଜସୂୟ ଯାଗ ମଧ୍ୟ ନେଉଳର ଅନ୍ୟ ଫାଳକୁ ସୁନା କରିପାରିନି ।

ପାଶ୍ଚାତ୍ୟ ଜୀବନଦର୍ଶନରେ ମଧ୍ୟ ଏପରି ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଭୋକ-ଶୋଷରେ ଜୀବନ ଗଲାବେଳେ ମଧ୍ୟ ସାର୍ ପିଲିପ୍ ସିଡ୍‌ନୀ ତାଙ୍କ ପାଣି ବୋତଲର ସାମାନ୍ୟ ଟିକକ ପାଣିକୁ ଅନ୍ୟ ଜଣକୁ ଦେଇ ନିଜେ ମରଣ ବରଣ କରିଛନ୍ତି ।

ତେଣୁ ଭୋକିଲା ଲୋକ ଯେ କୌଣସି ପାପ ମଧ୍ୟ କରିପାରେ ବୋଲି କହିବା ଅନ୍ୟାୟ । ଭାରତର ଧର୍ମବିଶ୍ୱାସକୁ ଥଟ୍ଟା କରୁଥିବା ବିଦେଶୀୟମାନେ ଭୋକରେ ପ୍ରାଣ ଗଲେ ମଧ୍ୟ ଭାରତୀୟ ଲୋକେ ତାଙ୍କ ଗାଈଗୋରୁଙ୍କୁ ମାରି ଖାଉ ନଥିବା ଦେଖି ଭାରତୀୟ ଦର୍ଶନ ତଥା ଜୀବନର ଏପରି ମହାନତାକୁ ଅନେକ ସମ୍ମାନ ଦିଅନ୍ତି ।

ଦୁର୍ଭିକ୍ଷ-ପ୍ରପୀଡ଼ିତ ଅଞ୍ଚଳରେ ବେଳେବେଳେ ଲୁଟ୍‌ତରାଜ୍, ଡକାଏତି ଦେଖାଦିଏ, ଆଉ ସେଥିପାଇଁ ଦୋଷ ଲଦି ଦିଆଯାଏ ଏହି ଭୋକିଲା ଜନତା ଉପରେ; କିନ୍ତୁ ଅନେକ ସ୍ଥଳରେ ଦେଖାଯାଏ ଯେ ପ୍ରକୃତରେ ଏ ଦଳର ନେତାମାନେ ହେଉଛନ୍ତି ସୁସ୍ଥ, ସବଳ, ସୁଶିକ୍ଷିତ, ଧନ ଓ ଭୋଗଲାଳସାଯୁକ୍ତ ଉନ୍ମତ୍ତ କେତେକ ଯୁବକ ।

ଚାହିଁଲେ ମଧ୍ୟ ଏପରି ସବୁ ଅନ୍ୟାୟ କରିବା ପାଇଁ ଭୋକିଲା ଲୋକର ଶାରୀରିକ ବଳ କାହିଁ ? ଶାରୀରିକ ବଳର କ୍ଷୟ ସଙ୍ଗେ ସଙ୍ଗେ ମାନସିକ ବଳ ଓ ସାହସ ମଧ୍ୟ ଉଭେଇଯାଏ । ସେପାରିକି ଯିବା ପାଇଁ ସମୟ ଯେତେ ପାଖେଇ ଆସେ, ମଣିଷର ଧର୍ମଭୟ ସେତିକି ବଢ଼େ । ଭୋକିଲା ଲୋକ ତେଣୁ ସେଇ ଧର୍ମକୁ ହିଁ ଶେଷ ଆଶ୍ରା ଭାବରେ ଜାବୁଡ଼ି ଧରେ । ତେଣୁ ସେ ପାପ କରିବ କିପରି ?

କାମନା-ଜର୍ଜରିତ ଓ ବାସନା-ପ୍ରପୀଡ଼ିତ ମଣିଷ ହିଁ ଧନ, କ୍ଷମତା ଓ ଭୋଗବିଳାସ ପାଇଁ ବୁଭୁକ୍ଷିତ । ସେହି ଲୋକ 'କିଂ ନ କରୋତି ପାପଂ ?'

# ଶୟତାନ ଓ ତାର ପ୍ରାପ୍ୟ

'ଶୟତାନକୁ ମଧ୍ୟ ତାର ପ୍ରାପ୍ୟ ଦେବା ଉଚିତ' ବୋଲି ଇଂରାଜୀରେ ଗୋଟିଏ ଉକ୍ତି ଅଛି । ଏ ଉକ୍ତି ଇଙ୍ଗିତ ଦିଏ ଯେ କୌଣସି ବିଷୟ ଅତ୍ୟନ୍ତ ଦୋଷଯୁକ୍ତ ଦେଖାଯାଉଥିଲେ ହେଁ, ସେ ଭିତରେ କିଛି ଭଲ ଗୁଣ ଛପି ରହିଥାଏ । ତେଣୁ ମନ୍ଦ ଭିତରୁ ସେହି ଭଲ ଅଂଶଟିକୁ ବାଛିନେଇ ତାକୁ ଗ୍ରହଣ କରିନେବା ବିଧେୟ ।

ଇଂରେଜ ଶାସନରେ ମେକଲେଙ୍କ ଦ୍ୱାରା ପ୍ରବର୍ତ୍ତିତ ଆଧୁନିକ ଶିକ୍ଷା ସେପରି ଗୋଟିଏ ବିଷୟ । ଭାରତୀୟ ଜୀବନଧାରାକୁ କଳୁଷିତ କରିବା ଲକ୍ଷ୍ୟ ନେଇ ଓ ଭାରତୀୟ ଯୁବଶକ୍ତିକୁ ପଙ୍ଗୁ କରିବା ଉଦ୍ଦେଶ୍ୟରେ ଏ ଶିକ୍ଷା ପ୍ରବର୍ତ୍ତିତ ହୋଇଥିଲା ବୋଲି ଅନେକେ କହନ୍ତି । ତଥାପି ଏ ଶିକ୍ଷା ଯେ ସେ ଦିନର ଅନ୍ଧକାରମୟ କୁସଂସ୍କାରପୂର୍ଣ୍ଣ ସାମାଜିକ ପଟ୍ଟଭୂମିରେ ଏକ ଶାନ୍ତିପୂର୍ଣ୍ଣ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିଥିଲା, ଏଥିରେ ସନ୍ଦେହ ନାହିଁ ।

କେବଳ ଚାଳିଶ ବର୍ଷ ତଳର କଥା ।

ସେତେବେଳେ ସମାଜ କହିଲେ କେବଳ ଜାତିଆଣ ସମାଜକୁ ହିଁ ବୁଝାଉଥିଲା – ବ୍ରାହ୍ମଣ, କରଣ ପରି ଯେତେ ଜାତି ସେତିକି ସମାଜ । ବ୍ରାହ୍ମଣ ସମାଜରେ ପୁଣି ଉତ୍କଳୀୟ, ଆରଣ୍ୟକ, ହଳୁଆ, ସାରୁଆ, ଦାନୁଆ, ଭଦ୍ରି ଆଉ କେତେ କଣ ଗୋଷ୍ଠୀ ଥିଲେ । କିଏ ଯଜୁର୍ବେଦୀ ତ କିଏ ସାମବେଦୀ, କିଏ ଶାସନୀ ଶ୍ରେଷ୍ଠ ବ୍ରାହ୍ମଣ ତ ଆଉ କିଏ କଣ । ଏପରି ସମାଜ ସବୁ ପ୍ରତ୍ୟେକ ଅଞ୍ଚଳ ପାଇଁ ଅଲଗା ଅଲଗା ହୋଇ ରହିଥିଲା । ଗୋଟିଏ ଗୋଷ୍ଠୀର ଅନ୍ୟ ଗୋଷ୍ଠୀ ସହିତ ବିବାହ ସମ୍ପର୍କ ନାହିଁ । ବିବାହବେଳେ କାହାକୁ ଆଗ ଫୁଲ ଚନ୍ଦନ ଦିଆହେବ, ଭୋଜିରେ କାହାର ଠା' ଆଗ ପଡ଼ିବ, କିଏ ଆଗ ହାତ ଚାଳିବେ, ସେସବୁ ପାଇଁ ଟଣାଓଟରା ।

ଏପରି ସାମାଜିକ ଶ୍ରେଣୀବିଭାଗ ପ୍ରତ୍ୟେକ ସ୍ତରରେ ଥିଲା । ପ୍ରତ୍ୟେକ ସମାଜର ଅଲଗା ଅଲଗା ନିୟମ । ଗୋଟିଏ ସମାଜର ଲୋକ ଅନ୍ୟ ସମାଜରେ ଏକା ସଙ୍ଗରେ ବସି ଖାଇପାରିବେନି । କିଏ କାହା ହାତରୁ ପାଣି ପିଇପାରିବ, କିଏ ଛୁଇଁଲେ ପାଣି ମାରା ହୋଇଯିବ, ସେସବୁ ପାଇଁ ନିୟମ କଟକଣା ରହିଥିଲା । ଏ ପାଖ ସେ ପାଖ ହେଲେ ଘର ବାସନ୍ଦ – ଧୋବା ଲୁଗା କାଚିବାକୁ ନେବନି, ଭଣ୍ଡାରି ଖିଅର କରିବନି ।

ହରିଜନମାନଙ୍କ ଅବସ୍ଥା ତ ଛାଡ଼!

ଏ ସବୁ ସମାଜରେ ଝିଅମାନଙ୍କ ପାଇଁ କୌଣସି ସ୍ଥାନ ହିଁ ନ ଥିଲା। ଛୋଟ ଦିନୁ ଝିଅମାନଙ୍କୁ ବାହାକରାଇ ଦିଆଯାଉଥିଲା। ନଅ ଦଶ ବର୍ଷର ଗୌରୀ କନ୍ୟାମାନଙ୍କୁ ବିବାହ ନ କରାଇଲେ କୁଆଡ଼େ ଝିଅର ବାପା ମା' ଆଉ ସେମାନଙ୍କ ସପ୍ତପୁରୁଷ ସିଧାସଳଖ ନର୍କକୁ ଅଡ଼ାଇ ନିଆହେଉଥିଲେ।

ଶାଶୁଘରେ ଏଇ ଟିକି ବୋହୂମାନଙ୍କର ସ୍ଥାନ ଚାକରାଣୀଠାରୁ ଆହୁରି ହୀନ ଥିଲା। ଏଡ଼ିକି ଓଢ଼ଣୀ – ନାକ ବି ଦିଶିବନି। ଘରୁ ଦାଣ୍ଡକୁ ଆସିବା ତ ଦୂରର କଥା – କେତେ ଜାଗାରେ ବୋହୂ ପାଟି ଖୋଲି ପଦେ କଥା ମଧ କହି ପାରେନି। ସମାଜର ପ୍ରଥା ଅନୁସାରେ କେତେ ବର୍ଷ ତାକୁ ଠାରରେ - ଚୁ ଚୁ କରି - କଥା ବୁଝାଇବାକୁ ପଡ଼େ। କାହାରି ସାଙ୍ଗରେ ଭୁଲରେ କଥା ପଦେ ହେଲେ ଘରର ମହତ ଯାଉଥିଲା। କେତେ ଶାଶୁଙ୍କ ନୃଶଂସ ଅତ୍ୟାଚାରର କାହାଣୀ ମଝିରେ ମଝିରେ ଶୁଣିବାକୁ ମିଳେ। ଶାଶୁ ଉପରେ ରାଗିଲେ ଖାଲି ଚୁଲିକୁ ଲାତ ମାରିବା ଛଡ଼ା ବୋହୂର ଅନ୍ୟ କିଛି ବାଟ ନଥିଲା।

ଆଜି କିନ୍ତୁ ଏ ସବୁ କଥା ଆରବ ଉପନ୍ୟାସର କାହାଣୀ ପରି ଲାଗେ!

ଏବେ ସମାଜର ସଂଜ୍ଞା ହିଁ ବଦଳିଯାଉଛି। ଆଜି ସମାଜ କହିଲେ କେଉଁ ଜାତିଆଣ ସମାଜକୁ ବୁଝାଏନା – ସର୍ବଭାରତୀୟ ସମାଜର କୌଣସି ଅଂଶବିଶେଷକୁ ହିଁ ବୁଝାଏ।

ଆଜିର ଏ ସମାଜରେ ଜାତିଆଣ ଭେଦଭାବ ଆଉ ନାହିଁ। ଏଇଠି ନାରୀ ପୁରୁଷ ପାଖରେ ତାର ଉପଯୁକ୍ତ ଆସନ ନେଇସାରିଛି। ବାଲ୍ୟ ବିବାହ କେଉଁ କାଳରୁ ଉଠିଗଲାଣି। ବୋହୂ ଉପରେ ଶାଶୁର ଅତ୍ୟାଚାର ବଦଳରେ ଘରେ ଶାଶୁର ଅବସ୍ଥା ଆଜି ଦୟନୀୟ ହୋଇପଡ଼ିଛି। ଆଉ ସେ ଭୋଜିଭାତ ବେଳର ଅଲଗା ଆସନ ବଦଳରେ ଦେଖାଦେଇଛି ବଫେ ଷ୍ଟାଇଲ୍।

ଏତେ ବଡ଼ ବୈପ୍ଳବିକ ପରିବର୍ତ୍ତନ ବିନା ରକ୍ତପାତରେ ସମ୍ଭବ ହେଲା କିପରି?

ଏହି ଶାନ୍ତିପୂର୍ଣ୍ଣ ବିପ୍ଳବ ପଛରେ ଯେ ଭାରତର ସ୍ୱାଧୀନା ସଂଗ୍ରାମୀ ଆଉ ସମାଜସେବୀମାନଙ୍କ ମଜଭୁତ ହାତ ରହିଥିଲା, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଏ ପରିବର୍ତ୍ତନରେ ଆଧୁନିକ ଶିକ୍ଷାର ଅବଦାନ ଯେ ସବୁଠାରୁ ବେଶି, ଏ କଥା ସମସ୍ତେ ସ୍ୱୀକାର କରିବେ। ଏ ଆଧୁନିକ ଶିକ୍ଷା କହିଲେ ସାଧାରଣ ଭାବରେ କଲେଜ ଶିକ୍ଷାକୁ ହିଁ ବୁଝାଏ।

କଲେଜମାନଙ୍କରେ ପ୍ରଥମ କରି ସକ୍ରିୟ ଭାବରେ ଜାତିଆଣ ଭାବ ଲୋପ ପାଇଥିଲା। କଲେଜର କ୍ଲାସ ରୁମ୍‌ରେ ଯେପରି ସବୁ ସମ୍ପ୍ରଦାୟର ଛାତ୍ର ଏକାଠି

ବସିଲେ – ହଷ୍ଟେଲମାନଙ୍କରେ ଯେପରି ସମସ୍ତେ ଏକାଠି ରହିଲେ, ଏକାଠି ବସି ଖାଇଲେ, ଆଉ ପରସ୍ପରର ସୁଖ ଦୁଃଖରେ ସମାନ ଭାବରେ ଭାଗ ନେଲେ। କଲେଜର ଅଧ୍ୟାପକମାନେ ହିଁ ଛାତ୍ରମାନଙ୍କୁ ଏଥିରେ ନେତୃତ୍ୱ ଦେଉଥିଲେ।

ଏକା ସଙ୍ଗରେ ରହିବା ଫଳରେ ଜାତି ଓ ଧର୍ମ ନିର୍ବିଶେଷରେ ଏ ସବୁ ପିଲାମାନଙ୍କ ଢଙ୍ଗଢାଙ୍ଗ ଚାଲିଚଳଣ ଏକା ରକମର ହେଲା। ଲୁଗାପଟା ପିନ୍ଧିବା ଢଙ୍ଗଠାରୁ ଆରମ୍ଭକରି ସେମାନଙ୍କର କଥାବାର୍ତ୍ତା, କାର୍ଯ୍ୟକଳାପ, ଆଉ ଚିନ୍ତାଧାରାରେ ମଧ୍ୟ ପ୍ରଭାବ ପରସ୍ପର ଉପରେ ପଡ଼ିଲା।

କଲେଜରେ ପଢ଼ିଲାବେଳେ ଛାତ୍ରଙ୍କ ଭିତରେ ଉଦାର ମନୋଭାବ, ସମଭାବ, ତଥା ଚାଲିଚଳଣରେ ସମତା କିପରି ଆସୁଥିଲା ଏ ସମ୍ବନ୍ଧରେ କେତୋଟି ଉଦାହରଣ ଦିଆଯାଇପାରେ। ରେଭେନ୍‌ସା କଲେଜର ପଶ୍ଚିମ ଛାତ୍ରାବାସରେ ପ୍ରଥମେ ହରିଜନ ଛାତ୍ର ଯେତେବେଳେ ଅନ୍ତେବାସୀ ହୋଇ ରହିଲେ – ଗୋଟିଏ ଚାଞ୍ଚଲ୍ୟ ଖେଳିଯାଇଥିଲା ସତ; କିନ୍ତୁ କିଛିଦିନ ପରେ ଖାଇଲାବେଳେ ସେ ଛାତ୍ରର ପାଖରେ ବସିବା ପାଇଁ ରୀତିମତ ପ୍ରତିଯୋଗିରା ଦେଖାଦେଇଥିଲା।

ପାଟନା ଇଞ୍ଜିନିୟରିଂ କଲେଜର ଗୋଟିଏ ଘଟଣା।

ବିହାରର କଲେଜ ହୋଇଥିଲେ ହେଁ ସେ କଲେଜରେ ଭାରତର ସବୁ ପ୍ରାନ୍ତରୁ ଛାତ୍ର ଥାଆନ୍ତି; ଆଉ ବିହାରୀ ଛାତ୍ରଙ୍କ ସଂଖ୍ୟା ଅନ୍ୟମାନଙ୍କ ତୁଳନାରେ କମ୍ ଥାଏ। ଏହି ବିହାରୀ ଛାତ୍ରଙ୍କ ମଧ୍ୟରୁ କେତେକ କଲେଜରେ ନାମ ଲେଖାଇଲା ବେଳେ ଲମ୍ବା ଲମ୍ବା ଚୁଟି ରଖିଥାନ୍ତି, ଆଉ ଏଇ ଚୁଟି ସବୁ ଅନ୍ୟ ପିଲାଙ୍କ ଚକ୍ଷୁଶୂଳ ହୁଏ। ଗାଁ ମୁରବୀମାନଙ୍କ ଡରରେ ଚୁଟି କାଟିଦେବାକୁ କହିଲେ ମଧ୍ୟ ଏମାନେ ସହଜରେ ରାଜିହୁଅନ୍ତିନି। 'ଝା' ବୋଲି ଜଣେ ଛାତ୍ର ଏମିତି ଚୁଟି ତ ରଖେ, ବେଳେବେଳେ ଚୁଟିରେ ଗେଣ୍ଡୁଫୁଲଟିଏ ବି ବାନ୍ଧିଦିଏ, ଆଉ ଚୁଟିର ବୈଜ୍ଞାନିକ ତାତ୍ପର୍ଯ୍ୟ ସମ୍ବନ୍ଧରେ ଲେକ୍‌ଚର ଦିଏ। ଦିନେ ସକାଳେ ହଷ୍ଟେଲ ନୋଟିସ୍ ବୋର୍ଡ଼ରେ ଦେଖାଗଲା ଯେ ଗୋଟିଏ ଚୁଟି ଝୁଲୁଛି; ଆଉ ସେଥିରେ ଗେଣ୍ଡୁ ଫୁଲଟିଏ ବି ବନ୍ଧାହୋଇଛି। ନୋଟିସ୍‌ରେ ଲେଖା ହୋଇଥିଲା – ଯାହାର ଚୁଟି ସେ ଆସି ନେଇଯାଇପାରେ।

ଏଇ ଘଟଣା ପାଇଁ କେତେ ଜଣ ଛାତ୍ର ରାତିରେ ଶୋଇଥିଲାବେଳେ ଚୁଟିକାଟିବା ଅପରାଧରେ ଜୋରିମାନା ଦେଇଥିଲେ; କିନ୍ତୁ ବିଚାରକ ଅଧ୍ୟାପକମାନେ ମଧ୍ୟ ଗମ୍ଭୀରତା ଭିତରେ ହସ ଚାପିପାରୁ ନଥିଲେ। ଚୁଟି ପାଇଁ ସାଙ୍ଗସାଥୀମାନେ ଜୋରିମାନା ଦେଲେ ବୋଲି ସମସ୍ତେ ଦୁଃଖ କରିଥିଲେ; ଆଉ ତାର ପ୍ରଭାବ ବି ଏପରି ଛାତ୍ରଙ୍କ ଉପରେ ପଡ଼ିଥିଲା।

ମଣିଷ ଭାବରେ ସମସ୍ତେ ଯେ ସମାନ, ଏଇ ଉଦାର ଭାବର ମାନସିକ ଛାପ ନେଇ କଲେଜ ପିଲାମାନେ ଯେତେବେଳେ ଛୁଟିମାନଙ୍କରେ ଗାଁଗହଳିମାନଙ୍କୁ ଗଲେ, ତାର ପ୍ରଭାବ ଗ୍ରାମୀୟ ସମାଜରେ ଦେଖାଦେବାକୁ ଆରମ୍ଭ କଲା । ଏମାନେ ପ୍ରଥମ କରି ସମାଜରେ ଛୁଆଁ ଅଛୁଆଁ, ଆଉ ଖାଇଲାବେଳେ ବଡ଼ ସାନ ଭେଦରେ ବିଦ୍ରୋହ କଲେ । କଲେଜ ପିଲାମାନଙ୍କ ପ୍ରଭାବ ତ ସ୍କୁଲ ପିଲାମାନଙ୍କ ଉପରେ ପଡ଼ିବା ସ୍ୱାଭାବିକ – ଗୋଟିଏ ନୂଆ ଜେନେରେସନ ଏପରିଭାବରେ ନୂତନ ସାମାଜିକ ଚିନ୍ତାଧାରା ନେଇ ଦେଖାଦେଲା । ଘରର ରକ୍ଷଣଶୀଳ ମୁରବୀମାନେ ଯେ ଏଥିରେ ବିରକ୍ତ ହୋଇ ନ ଥିବେ ତା' ନୁହେଁ; କିନ୍ତୁ ରକ୍ଷଣଶୀଳତା ଆଗରେ ମୁଣ୍ଡ ନ ନୁଆଇଁବାକୁ ଏହି ଛାତ୍ରମାନେ ସମାଜସେବୀମାନଙ୍କଠାରୁ ଯଥେଷ୍ଟ ସାହାଯ୍ୟ ସହାନୁଭୂତି ପାଇଥିଲେ । ପୃଥିବୀର ବିଭିନ୍ନ ପ୍ରଗତିବାଦୀ ରାଷ୍ଟ୍ରମାନଙ୍କର ଛାତ୍ରମାନଙ୍କ କ୍ରିୟାକଳାପ, ବେଶଭୂଷା, ଢଙ୍ଗଢ଼ଙ୍ଗର ପ୍ରଭାବ ମଧ୍ୟ ଏମାନଙ୍କ ଉପରେ ପଡ଼ିଥିଲା ।

ଅନ୍ୟାନ୍ୟ ଦେଶରେ ଯେପରି ଡାକ୍ତର ଓ ଶିକ୍ଷକ ହେବାପାଇଁ ଅନେକ ଝିଅ ବାହାରିଥାନ୍ତି, ଏ ଦେଶରେ ମଧ୍ୟ ଠିକ୍ ସେଇୟା ହେଲା । ରକ୍ଷଣଶୀଳ ଲୋକଙ୍କ ଚାପାରେ ଝିଅମାନଙ୍କ ପାଇଁ ଅଲଗା କଲେଜ କରିବାକୁ ଯଥେଷ୍ଟ ସମ୍ବଳ ଅଭାବ ଯୋଗୁଁ ବୋଧହୁଏ ସେତେବେଳେ ମହିଳା କଲେଜ ବିଶେଷଭାବରେ ଦେଖାଦେଲାନାହିଁ । ଫଳରେ ଝିଅମାନେ ବିଜ୍ଞାନ ପଢ଼ିବା ପାଇଁ ଓ ସାଧାରଣ ଉଚ୍ଚଶିକ୍ଷା ପାଇଁ ପୁଅମାନଙ୍କ କଲେଜରେ ପଢ଼ିବାକୁ ବାଧହେଲେ । ଏହି ଝିଅମାନେ ପ୍ରଥମରେ ଅନେକ ଅସୁବିଧା ଓ କଟୂକ୍ତି ଭିତର ଦେଇ ଗତିକଲେ; କିନ୍ତୁ ଯଥାସମୟରେ କଲେଜମାନଙ୍କରେ ସହଶିକ୍ଷା ନିର୍ଦ୍ଦିଷ୍ଟ ରୂପରେଖ ନେଲା । ଝିଅମାନେ ପ୍ରତ୍ୟେକ ସ୍ତରରେ ପାଠପଢ଼ାରେ ପୁଅଙ୍କ ସମକକ୍ଷ ହେଲେ । ବାପା ମା'ମାନେ ରକ୍ଷଣଶୀଳ ହେଲେ ମଧ୍ୟ ଭଲ ପାଠ ପଢୁଥିବା ଝିଅମାନଙ୍କ ପଢ଼ାରେ ଆଗ୍ରହ ଭାଙ୍ଗିବାକୁ ଚାହିଁଲେ ନାହିଁ । ଝିଅଙ୍କ ବିବାହ ସମୟ ପଛେଇଗଲା – ଅସବର୍ଣ୍ଣ ବିବାହ ମଧ୍ୟ ଦେଖାଦେଲା ।

ସମାଜର ଏ ପରିବର୍ତ୍ତନ ନିଜ ପୁଅଝିଅଙ୍କ ମାଧ୍ୟମରେ ହୋଇଥିବାରୁ ସେ ଦିନର ସମାଜମୁଖ୍ୟସବୁ ଏ ପରିବର୍ତ୍ତନରେ ବିଶେଷ ବାଧା ଦେଇ ପାରିଲେନି – ସ୍ନେହ ମମତା ହିଁ ହିଂସାତ୍ମକ ସଂଘର୍ଷ ଏଡ଼ାଇଦେଲା ।

ଅନ୍ଧବିଶ୍ୱାସ ଓ କୁସଂସ୍କାରପୂର୍ଣ୍ଣ ଜାତିଆଣ ସମାଜ ଏପରିଭାବରେ ଧୀରେ ଧୀରେ ସର୍ବଭାରତୀୟ ସମାଜର ରୂପରେଖ ନେଲା । ଜାତୀୟତାବାଦୀ ନେତୃବୃନ୍ଦ ଏ ପରିବର୍ତ୍ତନରେ ଦିଗ୍‌ଦର୍ଶନ ଦେଲେ । ଆଧୁନିକ ଶିକ୍ଷା ଏ ପରିବର୍ତ୍ତନକୁ କେବଳ ଯେ ତ୍ୱରାନ୍ୱିତ କଲା ତା' ନୁହେଁ – ପରିବର୍ତ୍ତନର ମାଧ୍ୟମ ରୂପରେ ମଧ୍ୟ କାମ କଲା ।

ଆଧୁନିକ ଶିକ୍ଷାର ଦୋଷ ଦୁର୍ଗୁଣ ଆଲୋଚନା କଲାବେଳେ ଅନେକେ ସର୍ବଭାରତୀୟ ସମାଜକୁ ଏ ଶିକ୍ଷାର ଅବଦାନ ସମ୍ବନ୍ଧରେ ଜାଣି ଶୁଣି ନୀରବ ରହୁଥିଲା ପରି ମନେହୁଏ ।

ଯେଉଁ ସବୁ ଗୁଣ ଓ କାରଣ ବ୍ୟକ୍ତିବିଶେଷଙ୍କୁ ଶୃଙ୍ଖଳିତ କରି ସମାଜର ଭ୍ରାତୃତ୍ୱ ବନ୍ଧନରେ ବାନ୍ଧିରଖେ, ସେ ସବୁ ଆଜି ଧୀରେ ଧୀରେ ଉଭେଇ ଯାଉଛି । ଶିଥିଳତା ଓ ଆସନ୍ନ ଉଚ୍ଛୃଙ୍ଖଳତାର ଗୋଟିଏ ଚିତ୍ର ଆଖି ଆଗରେ ଦେଖାଦେଉଛି ।

ସ୍ୱାଧୀନତାର ୨୭ ବର୍ଷ ଭିତରେ ଶିକ୍ଷାକୁ ନୂତନ ଆଭିମୁଖ୍ୟ ନ ଦେଇ, ଜାତୀୟ ଚରିତ୍ରକୁ ନିଷ୍କଳଙ୍କ କରିବା ପାଇଁ ଯଥୋଚିତ ଉଦ୍ୟମ ନ କରି ଶୃଙ୍ଖଳାରକ୍ଷାର ଭାରପ୍ରାପ୍ତ ଦେଶର କର୍ଣ୍ଣଧାରମାନେ ସମାଜର ଏ ଅଧୋଗତି ପାଇଁ କେବଳ ଆଧୁନିକ ଶିକ୍ଷାକୁ ଆଜି ଦୋଷଯୁକ୍ତ କରିବା ଯୁକ୍ତିଯୁକ୍ତ ବୋଲି ମନେହୁଏନାହିଁ ।

# ଲାଳସା

ଶୁଣାଯାଏ ଯେ ସବୁ ଦେଶ କିଣିସାରିଲା ପରେ ବିଶ୍ୱବିଜୟୀ ସିକନ୍ଦର ଯେତେବେଳେ ଜାଣିପାରିଲେ ଯେ ଜୟ କରିବାକୁ ଆଉ କୌଣସି ଦେଶ ନାହିଁ, ସେତେବେଳେ ତାଙ୍କ ଆଖିରୁ ଲୁହ ଗଡ଼ିପଡ଼ିଥିଲା । ସେହି ବିଶ୍ୱବିଜୟୀ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ କୁଆଡ଼େ କହିଯାଇଥିଲେ ଯେ, ମରିଗଲା ପରେ ତାଙ୍କ ଶବକୁ ଯେତେବେଳେ କୋକେଇରେ ରଖି ସମାଧିସ୍ଥଳକୁ ବୋହିନିଆହେବ, ସେତେବେଳେ ଶବର ଦୁଇ ହାତକୁ କୋକେଇର ଦୁଇ ପାଖରେ ଝୁଲାଇଦିଆଯିବ; ଯାହା ଦେଖି ଲୋକେ ଜାଣିବେ ଯେ ମହାବୀର ଆଲେକ୍‌ଜାଣ୍ଡାର ଯେଉଁ ଶୂନ୍ୟହସ୍ତରେ ଏ ସଂସାରକୁ ଆସିଥିଲେ, ସେହି ଶୂନ୍ୟହସ୍ତରେ ହିଁ ସଂସାରରୁ ବିଦାୟ ନେଉଛନ୍ତି ।

ମଣିଷ ଯେ ଖାଲି ହାତରେ ଏ ସଂସାରରୁ ବିଦାୟ ନିଏ, ତାହା ସମସ୍ତଙ୍କୁ ଜଣା । ତେଣୁ ତହିଁର ପ୍ରମାଣ ଦେବାପାଇଁ ଶବର ହାତକୁ କାହିଁକି ଯେ କୋକେଇର ବାହାରେ ଝୁଲାଇଦେବା ଦରକାର, ସେ କଥା ଠିକ୍ ବୁଝିହେଉନି । ଯଦି କେହି କେହି ସନ୍ଦେହୀ ସନ୍ଦେହ କରନ୍ତି ଯେ, ମୃତ୍ୟୁ ପୂର୍ବରୁ ଜଣେ ତାର ସବୁ ସମ୍ପତ୍ତି କୌଣସି ଗୋଟିଏ ଘରେ ଭର୍ତ୍ତିକରି ସେ ଘରର ଚାବିକାଠି ମଲାବେଳକୁ ହାତମୁଠାରେ ଲୁଚାଇ ରଖିପାରେ, ତେବେ ଏପରି ହାତ ଝୁଲାଇ ରଖିବାର ଆବଶ୍ୟକତା ରହିଛି – ଯେପରି କେହି କେହି ସନ୍ଦେହୀ କଳିହୁଡ଼ୀ ଭଦ୍ରମହିଳା ବେଳେ ବେଳେ ଅନ୍ୟ କାହା ଘରୁ ବାହାରିଗଲାବେଳେ ଲୁଗାପଟା ଝାଡ଼ିଝୁଡ଼ି ଦେଇ 'ଦେଖ, ଆମେ କିଛି ନେଉନୁଁ, ପରେ ଆମକୁ ଦୋଷ ଦେବ' ବୋଲି କହିଥାଆନ୍ତି । ଏମିତି ଚାବିକାଠି ନେଇଯିବା ଯଦି ସମ୍ଭବପର ହେଉଥାଆନ୍ତା, ମଣିଷ ମରିବା ଆଗରୁ ଚାବିକାଠିଟି ସମାଧି ପାଖରେ ବା ଅନ୍ୟ କେଉଁଠି ଲୁଚାଇ ରଖିଦେଇ ପାରନ୍ତା । ମହାବୀର ସିକନ୍ଦର ଯେ ଏ କଥା ବୁଝିଥିଲେ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ତେଣୁ ଏ ହାତ ଝୁଲାଇବା ପଛରେ ସେ ନିଜ ବ୍ୟକ୍ତିଗତ ସଚ୍ଚୋଟପଣିଆ ପ୍ରମାଣ କରିବାକୁ ଚେଷ୍ଟା ନ କରି ବୋଧହୁଏ ଦର୍ଶନର ଗୋଟିଏ ନିଗୁଢ଼ ତତ୍ତ୍ୱ ବୁଝାଇ କହିବାକୁ ଚାହୁଁଥିଲେ ଯେ ପ୍ରତ୍ୟେକ ମଣିଷ ଏ ଦୁନିଆକୁ ଯେମିତି ଖାଲି ହାତରେ ଆସେ, ସେମିତି ଖାଲି ହାତରେ ହିଁ ବିଦାୟ ନିଏ । ତେଣୁ ଗୁଡ଼ିଏ ଅର୍ଥ ସଞ୍ଚୟ କରି ରଖିବାରେ କିଛି ଲାଭ ନାହିଁ ।

ଏକଥା ଯଦି ସେ ନିଜେ ବୁଝି ଅନ୍ୟକୁ ବୁଝାଇବାକୁ ଚେଷ୍ଟା କରୁଥିଲେ, ତେବେ ସେ ନିଜେ ଏତେ ଲୋକଙ୍କୁ ପ୍ରାଣରେ ମାରି, ଏତେ ନିରୀହ ଲୋକଙ୍କୁ ଦୁଃଖ-ଯନ୍ତ୍ରଣା ଦେଇ ଓ କନ୍ଦାଇ, ହଜାର ହଜାର ଘରଦ୍ୱାର ଛାରଖାର କରି, ଅନ୍ୟର ଧନରତ୍ନ ଲୁଟି ନେଇ ଦେଶ ପରେ ଦେଶ ଜୟ କରୁଥିଲେ କାହିଁକି ?

ମନେହୁଏ ଯେ ବୁଦ୍ଧଙ୍କ ପରି କେତେ ଜଣଙ୍କୁ ଛାଡ଼ିଦେଲେ, ସାଧାରଣ ମଣିଷ ନିତିଦିନ ସଂସାରର ଅସାରତା ଦେଖି ମଧ୍ୟ କିଛି ଶିଖେ ନାହିଁ । ନିଜ ପାଇଁ ଯାହା ଦରକାର, ସେତିକି ପାଇସାରିଲା ପରେ ମଧ୍ୟ ସେ ଅନ୍ୟର ସମ୍ପତ୍ତି ଛଡ଼ାଇ ଆଣି ନିଜ ଘରେ ଠୁଳ କରିବାକୁ ଚେଷ୍ଟାକଲେ, ଆଉ ମଲାବେଳକୁ ଯେତେବେଳେ ନେଡ଼ି ଗୁଡ଼ କହୁଣୀକୁ ବୋହିଯାଇସାରିଥାଏ, ସେତେବେଳେ ହିଁ ତାକୁ ବୁଦ୍ଧି ଦିଶେ ।

ଅନେକେ କହନ୍ତି ଯେ ପେଟ ଚାଖଣ୍ଡକ ପାଇଁ ହିଁ ଦୁନିଆର ସବୁ ନବରଙ୍ଗ । ସେମାନଙ୍କ ମତରେ ପ୍ରତ୍ୟେକ ମଣିଷ ଯଦି ଦି'ଓଳି ପେଟପୂରା ଖାଇବାକୁ ପାଆନ୍ତି, ଲଜ୍ଜା ଢାଙ୍କିବା ପାଇଁ କିଛି କନା ଆଉ ଖରା ଓ ବର୍ଷାରେ ମୁଣ୍ଡ ଗୁଞ୍ଜିବା ପାଇଁ ଟିକିଏ ଆଶ୍ରୟସ୍ଥଳ ପାଆନ୍ତା, ତେବେ ସଂସାରର ସମସ୍ତ ବାଦବିବାଦ ଆଉ ଅଶାନ୍ତି ରହନ୍ତା ନି !

ଉପରଠାଉରିଆ ଦେଖିଲେ ଏ କଥାରେ ଯଥେଷ୍ଟ ଗୁରୁତ୍ୱ ଥିଲା ପରି ମନେହୁଏ; କିନ୍ତୁ କଥାଟି ଯେ ପୂରାପୂରି ଠିକ୍, ତାହା କହିହେବନି ।

ଏ କଥା ସତ ଯେ ଭୋକିଲା ମଣିଷ ଖାଇବାକୁ ପାଇଲେ ମାନସିକ ଶାନ୍ତି ପାଏ; କିନ୍ତୁ କ୍ରମାଗତ ଦି'ଓଳି ପେଟପୂରା ଖାଇବା ପାଇଁ ମିଳିଗଲା ପରେ ସକାଳ ସଞ୍ଜ ଦି'ଥର ଚା' ଜଳଖିଆ ଖାଇବାକୁ ଚାହେଁ; ଆଉ ଖାଲି ଲୁଣ ପଖାଳରେ ସନ୍ତୁଷ୍ଟ ନ ହୋଇ ଛ'ତିଅଣ ନ'ଭଜାର ଯୋଗାଡ଼ରେ ଲାଗିପଡ଼େ । ସେପରି, ଯାହାର ପିନ୍ଧିବା ପାଇଁ କନା ନାହିଁ ସେ ଲୁଗାଖଣ୍ଡିଏ ପାଇଗଲେ ଖୁସି ହୁଏ ସତ; କିନ୍ତୁ ପରେ ଲୁଗାର ଅଭାବ ମେଣ୍ଟିସାରିଲା ପରେ ଟେରିଲିନ୍ କିମ୍ବା ରେଶମର ପୋଷାକ ଖୋଜିବସେ । ଚାଳଘର ଯାହାର ଆଶ୍ରୟ, ସେ ସେପରି ଟାଇଲି ଘର ଓ ଶେଷରେ ପକ୍‌କା ଘର ଖୋଜେ । ଠିକ୍ ସେପରି ଜୋତା ଛତାଠାରୁ ଆରମ୍ଭକରି ସାଇକେଲ, କାର୍‌ର ଦରକାର ପଡ଼େ । ସ୍ତ୍ରୀର ଗହଣା, ପୁଅଝିଅଙ୍କ ଖୋରାକ ପୋଷାକ, ସ୍କୁଲ କଚେରି, ଡାକ୍ତରଖାନା ଆଉ ବର୍ଷାଦିନ ପାଇଁ କିଛି ସଞ୍ଚିତ ଧନର ଆବଶ୍ୟକତା ଦେଖାଦିଏ । ଗୋଟିଏ ଅଭାବ ପୂରଣ ହେଲେ ନୂତନ ଅଭାବ ମୁଣ୍ଡ ଟେକେ; ଆଉ ଅତୃପ୍ତିର ଖିଅ ଉର୍ଣ୍ଣନାଭର ନାଭିରୁ ବାହାରୁଥିବା ସୂତାଖିଅ ପରି ଅସରନ୍ତି ହୋଇଯାଏ ।

ମନେହୁଏ ଯେ ଯେତେ ପାଇଲେ ମଧ୍ୟ ମଣିଷ ସନ୍ତୁଷ୍ଟ ହୋଇପାରେନି—ଆଉ ବେଶି ଚାହେଁ ।

କଣ ପାଇଲେ ଓ କେତେ ପାଇଲେ ମଣିଷ ସନ୍ତୁଷ୍ଟ ହେବ ସେ କଥା କହିବା ସହଜ ନୁହେଁ ।

ମଣିଷର କେତେ ଜମି ଲୋଡ଼ା, ସେ ସମ୍ବନ୍ଧରେ ଆମର ଲେଖକ ଟଲଷ୍ଟୟ ଗୋଟିଏ ସୁନ୍ଦର କାହାଣୀ ଲେଖିଯାଇଛନ୍ତି । ସେ ଲେଖାର ସାରମର୍ମକୁ ସାଧାରଣ ଭାବରେ ଏଠାରେ କୁହାଯାଇପାରେ ।

ରୁଷ୍ ଦେଶ । ଭଲ୍‌ଗା ନଦୀ ସେ ପାରି ବସ୍‌କିର୍ ରାଜ୍ୟର ଜନମାନବଶୂନ୍ୟ ତରାଇ ଅଞ୍ଚଳର ଗୋଟିଏ ଛୋଟ କୁଦ ଉପରେ ପଡ଼ିଥିବା ତମ୍ବୁ ଭିତରେ ଶୋଇରହି ପାହମ୍ ପୂର୍ବାକାଶକୁ ଅନାଇ ରହିଥାଏ । ସକାଳ ହେଲେ ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ତାକୁ ଚାଲିବାକୁ ପଡ଼ିବ, ଆଉ ସେ ସମୟ ଭିତରେ ସେ ଯେତେ ଅଞ୍ଚଳ ମାଡ଼ିପାରିବ, ସେ ସବୁ ହେବ ତାର, ତା' ନିଜର । ଭଗବାନଙ୍କ ଅସୀମ ଦୟା । ଏ ବସ୍‌କିର୍ ଲୋକ ସବୁ ପ୍ରକୃତରେ ବଡ଼ ନିରୀହ; ସେମାନେ ପାଳୁଥିବା ଘୋଡ଼ା ଓ ଛେଳି ମେଣ୍ଢା ପରି । ସାମାନ୍ୟ ରେଶମ ଲୁଗା, ତମ୍ବୁରେ ପକାଇବା ପାଇଁ ଦରି – ଆଉ କେତେ ପାଉଣ୍ଡ ଚା – ବାସ୍, ସେତିକି ଉପଢୌକନ ଆଉ ସାମାନ୍ୟ କିଛି ରୁବଲ୍ ମୁଦ୍ରା, ସେଥିରେ ଜଣେ ମଣିଷ ମନ ମୁତାବକ ଜମି ନିଜର କରିନେଇପାରେ ।

ପାହମ୍ ମନେ ମନେ ହିସାବ କରି ଦେଖିଲା ଦିନ ଭିତରେ ସେ ପ୍ରାୟ ୪୦ ମାଇଲ ଯାଏ ଚାଲିପାରିବ । ୧୦ ମାଇଲ ଲମ୍ବା ଆଉ ୧୦ ମାଇଲ ଓସାର ଭିତରର ସବୁ ଜମି ହେବ ତା'ର । ଓଃ, ମାତ୍ର ହଜାରେ ରୁବଲ୍ ପାଇଁ କେତେ ହଜାର ଏକର ଅନାବାଦୀ ନଦୀକୂଳିଆ ଉର୍ବର ଜମି ! !

ପୂର୍ବଦିନର କଥାସବୁ ତାର ମନେ ପଡ଼ିଯାଉଥାଏ । ତା'ର ସ୍ତ୍ରୀର ବଡ଼ ଭଉଣୀ ସେଦିନ କେମିତି ତାଚ୍ଛଲ୍ୟଭରା କଥାସବୁ କହିଗଲା । ହଁ – ସେମାନେ ସହରରେ ରହନ୍ତି – ଭଲ ଲୁଗାପଟା ପିନ୍ଧନ୍ତି, ନାଟ-ତାମସା ଦେଖନ୍ତି, ମଉଜ-ମଜଲିସ୍ କରନ୍ତି ସତ, ତା' ବୋଲି କ'ଣ ଗାଁରେ ରହୁଥିବା ଲୋକେ ତାଙ୍କ ଗାଈ ଓ ଘୁଷୁରି ପରି ପେଟେ ଖାଇ କେବଳ ବଞ୍ଚିରହନ୍ତି ? ସହରର ଲୋକ ସବୁ ଯେମିତି ଜାଲିୟାତ୍, କେଉଁ ଗୋଟାଏ ଜୁଆ ଆଡ୍‌ଡ଼ା, ମଦଭାଟି କିମ୍ବା ରାତ୍ରିସେବିକାମାନଙ୍କ ଭୟାନକ ଆଖଡ଼ା ଭିତରକୁ କେବେ ଯଦି ଏହି ବଡ଼ ଭଉଣୀର ସ୍ୱାମୀ ଭୁଲରେ ବି ଥରେ ପଶିଯାଏ, ତେବେ ସବୁ ଶେଷ । ଛୁଆମାନେ ମୁଠାଏ ଖାଇବା ପାଇଁ ବି କିଛି ରହିବ ନାହିଁ । ଜୀବନର ଉପଭୋଗ । ଛି...

ସେଦିନ ସେ ଭାବିଥିଲା–ତାର କିଛି ନିଜର ଜମି ଥାଆନ୍ତା କି – ସେ କାହାକୁ ଖାତିର କରନ୍ତାନି – ଶୟତାନକୁ ବି ନୁହେଁ । ସେଇଟା ଅନେକ ଦିନର କଥା । ସେତେବେଳକୁ ସେ ସାମାନ୍ୟ ଗୋଟିଏ ଭାଗଚାଷୀ ମାତ୍ର ଥିଲା । ପରେ ସେ ହେଲା

୪୦ ଏକର ଜମିର ମାଲିକ। ଗାଁବାଲାଏ ଅବଶ୍ୟ ତା' ଜୀବନକୁ ବିବ୍ରତ କରିଦେଲେ। ଆଉ ସବୁବେଳେ ହିଂସାରେ ତା' ଜମି ଭିତରେ ଗାଈଗୋରୁ ଛାଡ଼ିଦେଇ ନଡ଼ା ଓ କୁଟା ନଷ୍ଟ କରିପକାଇଲେ; ଆଉ ତାକୁ ମକଦ୍ଦମା କରିବାକୁ ବାଧ କଲେ। ଶେଷରେ ତାକୁ ସେ ଗାଁର ଜମି ବିକିଦେଇ ଭଲ୍‌ଗା ନଦୀକୂଳକୁ ଯିବାକୁ ପଡ଼ିଲା; ଆଉ ସେଇଠି ଚାଷକରିବାକୁ ସେ ପାଇଲା ଯଥେଷ୍ଟ ଉର୍ବର ଜମି – ୧୨୫ ଏକର। କିନ୍ତୁ ଭଲ ଗହମ ହେଉଥିବା ତା' ଜମି ପାଖର ଜମିକୁ ସେ ହାତକରିପାରିଲାନି। ଟିକିଏ ଦୂରରେ ଅବଶ୍ୟ ହଜାରେ ରୁବଲ୍ ମୁଦ୍ରା ଦେଇ ସେ ପ୍ରାୟ ୧୩୦୦ ଏକର ପାଇଥାଆନ୍ତା; କିନ୍ତୁ ଏଇଠି ସେହି ହଜାରେ ରୁବଲ୍ ଓ ସାମାନ୍ୟ ଉପହାର ଦେଇ ପାଇବ କେତେ ହଜାର ଏକର।

ବେଳେ ବେଳେ ସାମାନ୍ୟ ଟିକିଏ ଛାଇନିଦ ଆସିଗଲେ ପାହମ୍ ଚମକି ଉଠୁଥାଏ – କାଳେ ପାହାନ୍ତିଆ ବେଳକୁ ସେ ଶୋଇପଡ଼ିଥିବ ଆଉ ଠିକ୍ ସୁର୍ଯ୍ୟୋଦୟ ବେଳକୁ ଆରମ୍ଭ ସ୍ଥାନରୁ ସେ ବାହାରି ପାରିବନି। ଏମିତି ଛାଇନିଦ ଭିତରେ ମଝିରେ ଥରେ ତାର କେମିତି ମନେହେଲା ଯେ ସେ ଚାଲି ଚାଲି ଥକିଯାଇ ରକ୍ତ ବାନ୍ତି କରି ମରିଯାଉଛି; ଆଉ କିଏ ଜଣେ ସମବେଦନା ଦେଖାଇବା ବଦଳରେ ମୁହଁରେ ହାତ ଦେଇ ହସ ଚାପିବାକୁ ଚେଷ୍ଟା କରୁଛି।

ପାହମ୍‌ର ଚାକର ଯେତେବେଳେ ତାକୁ ଡାକିଲା, ସେତେବେଳେ ଭୋର୍ ହୋଇସାରିଥାଏ। ପାହମ୍ ଧଡ଼ପଡ଼ ହୋଇ ଉଠି ତାର କୋଟ ଖଣ୍ଡିକ ଗଳାଇ, ଜୋତା ପିନ୍ଧି, ପିଇବା ପାଣି ବୋତଲଟି ହାତରେ ଧରି ବାହାରକୁ ଦଉଡ଼ିଆସିଲାବେଳେ ତମ୍ବୁ ଖୁଣ୍ଟରେ ପ୍ରାୟ ପିଟି ହୋଇଯାଇଥିଲା।

କ୍ୟାମ୍ପ୍‌ର ଟିକିଏ ଦୂରରେ ଗୋଟିଏ ଛୋଟ ପାହାଡ଼ ଉପରେ କେତେଜଣ ବସ୍‌କିର୍ ଜମା ହୋଇସାରିଥିଲେ; ଆଉ ବସ୍‌କିର୍ ସର୍ଦ୍ଦାର ମଧ୍ୟ ସେମାନଙ୍କ ଭିତରେ ଥିଲେ। ଯେଉଁ ସ୍ଥାନରୁ ପାହମ୍ ତାର ଯାତ୍ରା ଆରମ୍ଭ କରିବା କଥା, ସେ ସ୍ଥାନଟି ଦେଖାଇଦେଇ ସର୍ଦ୍ଦାର ୧୦୦୦ ରୁବଲ୍ ସେଠାରେ ଜମା ରଖିବା ପାଇଁ ଆଦେଶ ଦେଲେ ଓ ପାହମ୍ ତା' ଟୋପିରେ ଟଙ୍କା ରଖି ସେଠାରେ ଥୋଇଦେଲା ପରେ ସର୍ଦ୍ଦାର ବୁଝାଇ କହିଲେ ଯେ ଠିକ୍ ସୂର୍ଯ୍ୟୋଦୟ ବେଳକୁ ସେ ତାର ଯାତ୍ରା ଆରମ୍ଭ କରି ସୂର୍ଯ୍ୟାସ୍ତ ପୂର୍ବରୁ ଠିକ୍ ଏହି ସ୍ଥାନକୁ ଫେରିଆସିବ। ସେ ସମୟ ଭିତରେ ପାଦରେ ଚାଲିଥିବା ଘେର ଭିତରର ସବୁ ଜମିର ମାଲିକ ହେବାପାଇଁ ସେ ହକ୍‌ଦାର ହେବ; କିନ୍ତୁ ସୂର୍ଯ୍ୟାସ୍ତ ପୂର୍ବରୁ ଏହି ସ୍ଥାନକୁ ଫେରିଆସି ନ ପାରିଲେ ସେ କିଛି ଜମି ପାଇବନି, ଆଉ ତାର ସମସ୍ତ ଟଙ୍କା ବାଜ୍ୟାପ୍ତ ହୋଇଯିବ।

ଭୀଷଣ ଥଣ୍ଡା, ତଥାପି ଜୋର୍‌ରେ ଚାଲିବାକୁ ସହଜ ହେବ ଭାବି ପାହମ୍ ତା କୋଟ୍‌ଟିକୁ ଚାକର ହାତକୁ ବଢ଼ାଇଦେଲା। ପାଣି ବୋତଲକୁ କାନ୍ଧରେ ଝୁଲାଇ

କୋଦାଳଟିଏ ଧରି ସେ ବାହାରିପଡ଼ିଲା ସିଧା ପୂର୍ବ ଆଡ଼କୁ – ପ୍ରାୟ ଦଉଡ଼ିବା ଗତିରେ । ଚିହ୍ନ ଦେଇ ଦେଇ ଯାଉଥାଏ । ୫/୬ ମାଇଲ ଗଲା ପରେ ଆଉ ବେଶି ଜୋର୍‌ରେ ତାକୁ ଯିବାକୁ ହେବ ଭାବି ଯୋତା ଖୋଲି ଅଣ୍ଟାରେ ବାନ୍ଧି ନେଲା । ସାମାନ୍ୟ ଖଣ୍ଡିଏ ଗେଞ୍ଜି, ଛୋଟ ପେଣ୍ଟ ଆଉ କୋଦାଳ । ଏ ଭିତରେ ସେ ଅନେକ ଦୂର ମାଡ଼ିଆସିଛି – ବୋଧହୁଏ ୧୦ ମାଇଲ ହେବ । ଫେରି ଚାହିଁଲା, ଆରମ୍ଭ ସ୍ଥାନର ଛୋଟ ପାହାଡ଼ଟି କେତେବେଲୁ ଲୁଚିଗଲାଣି । ଏଥର ସେ ଉତ୍ତରକୁ ଦିଗ ବଦଳାଇଲା । ତାର ମନେହେଲା ଗତି ଟିକିଏ ଶିଥିଳ ହୋଇଯାଇଛି – ତାକୁ ଆହୁରି ଜୋର୍‌ରେ ଚାଲିବାକୁ ହେବ । ଅନେକ ବାଟ ଗଲା ପରେ ପଶ୍ଚିମକୁ ମୁହାଁଇବ ବୋଲି ଭାବିଲା ବେଳକୁ ଦେଖିଲା ଆଗରେ ସୁନ୍ଦର ଉର୍ବର ଜଳା ଜମି – ଏପରି ଜମି ଛାଡ଼ିହୁଏନା । ଆଉ ୨/୩ ମାଇଲ ଗଲା – ଆହୁରି ସୁନ୍ଦର ମାଟି । ନା, ଏଥର ତାକୁ ପଶ୍ଚିମକୁ ଦିଗ ବଦଳାଇବାକୁ ହିଁ ହେବ ।

ସୂର୍ଯ୍ୟେଦେବ ମଝି ଆକାଶରୁ ଢେର୍ ତଳକୁ ଖସିଲେଣି । ଗୋଡ଼ କେମିତି ଘୋଷାରି ହୋଇଯାଉଛି । ତାକୁ କିନ୍ତୁ ଚାଲିବାକୁ ହେବ ।

୭/୮ ମାଇଲ ପରେ ସେ ଦେଖିଲା ବେଳ ରତରତ – ଆଉ ଦକ୍ଷିଣକୁ କାହିଁ କେତେ ଦୂରରେ ସେମାନଙ୍କ ଆରମ୍ଭ କରିଥିବା ସ୍ଥାନର ପାହାଡ଼, ସାମାନ୍ୟ କଳା ଚିହ୍ନଟିଏ ପରି ଦିଶୁଛି । ଗାଈ ଚରିବା ପାଇଁ ଉପଯୁକ୍ତ ଭଲ ଘାସ ଉଠିଥିବା ଜମିଟିକକ ଦେଖି ତାକୁ ଘେର ଭିତରେ ପକାଇବା ଉଦ୍ଦେଶ୍ୟରେ ଆଉ ସାମାନ୍ୟ ଦୂର ଯାଇ ସେ ଏଥର ଦକ୍ଷିଣକୁ ମୁହାଁଇଲା ।

ପଶ୍ଚିମ ଆକାଶରେ ରଙ୍ଗ ଖେଳିଗଲାଣି । ତାକୁ ଆହୁରି ୭/୮ ମାଇଲ ବାଟ ଯିବାକୁ ହେବ – ଗୋଡ଼ କିନ୍ତୁ ଆଉ ଚଳୁନି । ତଥାପି ସେ ଚାଲିଲା ।

ଦୂର ପାହାଡ଼ ପାଖେଇ ଆସିଲାଣି । ଗୋଡ଼ ଘୋଷାରି ହୋଇଯାଉଛି – ତୋଟି ଶୁଖି ଜିଭ ଅଠାଳିଆ ହୋଇଗଲାଣି । ମନେହେଉଛି, ସେ ଆଉ ନିଶ୍ୱାସ ନେଇପାରିବନି ।

ହେଇ, ଦୂରରୁ ସମସ୍ତେ ହାତ ହଲାଇ ଜୋର୍‌ରେ ଦଉଡ଼ିବାକୁ ଇଙ୍ଗିତ ଦେଉଛନ୍ତି । ସୂର୍ଯ୍ୟଦେବ ଠିକ୍ ବୁଡ଼ିଯିବା ଉପରେ । ଶେଷ ନିଶ୍ୱାସଟିକକ ନେଇ ସେ ଛୋଟ ପାହାଡ଼ଟିକୁ ଦଉଡ଼ି ଦଉଡ଼ି ଚଢ଼ିବାକୁ ଆରମ୍ଭ କଲା । ପାହାଡ଼ ଚଢ଼ିସାରି ଦେଖିଲା ଏହି ପାହାଡ଼ ଉପରେ ଏବେ ମଧ୍ୟ ଟିକିଏ ଆଲୁଅ ଅଛି । ମନେହେଲା ତାର ଚେତା ବୁଡ଼ିଯାଉଛି ।

ସୂର୍ଯ୍ୟଦେବଙ୍କ ଶେଷ ରକ୍ତରେଖା ଚକ୍ରବାଳ ତଳକୁ ଖସିଯିବା ଉପରେ । ସମସ୍ତଙ୍କର ଉତ୍ସାହ-ରଡ଼ି – ଶେଷ ଚେଷ୍ଟା କରି ସେ ଆଉ ଧୀରେ ଦଉଡ଼ି ଯାଇ ନିଜ

ଟୋପି ଉପରେ ପଡ଼ିଗଲା । ସମସ୍ତେ ସାବାସ୍ କଲେ । କିନ୍ତୁ ତାକୁ କେହି ଆଉ ଉଠାଇ ପାରିଲେନି । ପାଟିଦେଇ ଯେଉଁ ଝଲକାଏ ରକ୍ତ ବାହାରିଆସିଥିଲା, ସେ ସଙ୍ଗରେ ଉଡ଼ିଯାଇଥିଲା ତାର ପ୍ରାଣବାୟୁ ।

ପାହମ୍‌ର ଅବଶ ହାତରୁ କୋଦାଳିଟି ଉଠାଇ ନେଇ ପାହମ୍‌ର ଚାକର ଗୋଟିଏ ଗାତ ଖୋଳି ଶବକୁ ସେଥିରେ ଶୁଆଇ ଦେଇ କିଛି ମାଟି ଘୋଡ଼ାଇ ଦେଇଥିଲା ।

ଶେଷରେ ପାହମ୍ ଯେତେ ଜମି ଦରକାର କରିଥିଲା, ତାର ଆୟତନ ଥିଲା ଲମ୍ବରେ ଛଅ ଫୁଟ୍ ଓ ଓସାରରେ ଦୁଇ ଫୁଟ ।

ଜମି ଅପେକ୍ଷା ଧନସମ୍ପତ୍ତି ଓ କୋଠାବାଡ଼ି ମଣିଷ ପାଇଁ ଆହୁରି କମ୍ ଲୋଡ଼ା ବୋଲି ମନେହୁଏ, ଯେହେତୁ କୋକେଇରେ ଗଲାବେଳେ କାନ୍ଧରେ ପକାଇ ନେବା ପାଇଁ ଝୁଲିମୁଣିଟିଏ ବି ଦରକାର ପଡ଼େନି । ଧନ ସଞ୍ଚୟର ଲାଳସା ଓ ସେଥିପାଇଁ ଏତେ ବାଦ-ବିସମ୍ବାଦ ତେଣୁ ସମ୍ପୂର୍ଣ୍ଣ ଅର୍ଥହୀନ ପରି ଜଣାପଡ଼େ ।

ଆମ ପୂର୍ବପୁରୁଷମାନେ ଲାଳସାକୁ ଅଗ୍ନି ସାଙ୍ଗରେ ତୁଳନା କରିଯାଇଛନ୍ତି । କାଠି କୁଟା ପକାଇ ଓ ଘିଅ ଢାଳି ନିଆଁକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରି ତାକୁ ଯେମିତି ଲିଭାଇ ହୁଏନି; ଲାଳସା-ବହ୍ନିର ତୃପ୍ତି ବିଧାନ କରାଇ ତାର ବିନାଶ ସାଧନ କରି ହୁଏନି; ସେପରି କଲେ ନିଆଁ ପରି ଲାଳସା ମଧ୍ୟ ଆହୁରି ଜଳିଉଠେ–ଆଉ ଆଗକୁ ମାଡ଼ି ଚାଲେ ।

ନିଆଁକୁ ଆହୁରି ଖାଇବାକୁ ନ ଦେଲେ ସେ ଯେପରି ଜଳି ଜଳି ଶେଷରେ ଆପେ ଲିଭିଯାଏ, କର୍ମର ଫଳାଫଳ ଉପରେ ଆଶା ନ ରଖିଲେ ଲାଳସା ସେପରି ଆପେ ଆପେ ମରିଯାଏ ବୋଲି ଜ୍ଞାନୀମାନେ କହନ୍ତି । ଫଳଲାଭ ଉପରେ ଆଶା ନ ରଖି କାମ କରବା ସହଜ ନୁହେଁ – ତଥାପି ସେ ଦିଗରେ ଅନବରତ ଚେଷ୍ଟା କରିବା ଉଚିତ ବୋଲି ହିଁ ମନେହୁଏ ।

# ଜାତୀୟ ଚରିତ୍ର

ଯେ କୌଣସି ବସ୍ତୁର ମୂଲ୍ୟ କିମ୍ବା ଗୁରୁତ୍ୱ ନିର୍ଦ୍ଧାରଣ କରିବାକୁ ହେଲେ ଯେପରି ସମୟ, ପାରିପାର୍ଶ୍ୱିକ ସ୍ଥିତି, ଆନୁଷଙ୍ଗିକ ଅବସ୍ଥା ପ୍ରଭୃତି ବିବେଚନାକୁ ନିଆଯାଇଥାଏ, କୌଣସି ବିଷୟରେ ବିଚାର କରିବାକୁ ଗଲେ ମଧ୍ୟ ଠିକ୍ ସେହିପରି କରିବାକୁ ପଡ଼େ । ବିଷୟଟି ସମାନ ହୋଇଥିଲେହେଁ ଭିନ୍ନ ଭିନ୍ନ ପରିସ୍ଥିତି ଭିନ୍ନ ଭିନ୍ନ ସମୟରେ ତହିଁର ତାତ୍ପର୍ଯ୍ୟ କିମ୍ବା ଗୁରୁତ୍ୱ ଭିନ୍ନ ପ୍ରକାରର ହୋଇଥାଏ । ସାଧାରଣ କଥାରେ ଦେଖିବାକୁ ହେଲେ, ଲୋକଟିଏ ସମାନ ହୋଇଥିଲେ ମଧ୍ୟ କାହା ଆଖିରେ ସେ ପୁଅ ତ ଆଉ କାହା ଆଖିରେ ସେ ଭାଇ, ଭଣଜା, ପୁତୁରା – ସେହି ଲୋକ; କିନ୍ତୁ ବିଭିନ୍ନ ସ୍ଥାନରେ ବିଭିନ୍ନ ସମ୍ବନ୍ଧ । ଆହୁରି ମଧ୍ୟ ଦେଖାଯାଏ ଯେ, ଆମେ ଯାହାକୁ ଧନୀ ବୋଲି ଭାବୁଁ ବା କହୁଁ, ସେହି ଲୋକ ଟାଟା, ବିରଳା, ଡାଲମିଆଁଙ୍କ ପାଖରେ ଗରିବ ପରି ଜଣାପଡ଼େ । ପ୍ରତ୍ୟେକ ବିଷୟର ବିଚାର ତେଣୁ ଆପେକ୍ଷିକ । ୧୦୦ ନମ୍ବର ତୁଳନାରେ ୧ ନମ୍ବର କିଛି ନୁହେଁ – ତଥାପି ଜଣେ ଛାତ୍ର ଯଦି କୌଣସି ବିଷୟରେ ୩୦ ନମ୍ବର ନରଖି ୨୯ ନମ୍ବର ରଖେ, କିମ୍ବା ୬୦ ନରଖି ୫୯ ରେଖ, ସେହି ଏକ ନମ୍ବର ବିଶେଷ ଗୁରୁତ୍ୱପୂର୍ଣ୍ଣ ହୋଇଯାଏ । ସେହିପରି ୪୦୦ ଗଜ ତୁଳନାରେ ଏକ ଫୁଟ ନଗଣ୍ୟ ହେଲେହେଁ ଦୌଡ଼-ପ୍ରତିଯୋଗିତାରେ ଖେଳାଳିମାନଙ୍କ ମଧ୍ୟରେ ଏହି ଫୁଟେ ବ୍ୟବଧାନ ନୂତନ ରୂପ ନେଇ ନିଷ୍ପତ୍ତିମୂଳକ ହୋଇଯାଇପାରେ ।

ଗୋଟିଏ ଜାତିର ଇତିହାସରେ ୨୫ ବର୍ଷ କିଛି ନୁହେଁ ସତ, ତେବେ ସେହି ୨୫ ବର୍ଷ ଯଦି ଶହ ଶହ ବର୍ଷର ପରାଧୀନତା ପରେ ସ୍ୱାଧୀନତା ପ୍ରାପ୍ତିର ଠିକ୍ ପରବର୍ତ୍ତୀ ଆଶା ଓ ଆକାଂକ୍ଷାଭରା ୨୫ ବର୍ଷ ହୋଇଥାଏ, ତାହା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ହେବା ସ୍ୱାଭାବିକ ।

ଦଶମ ଶତାବ୍ଦୀର ଭାରତ ସାଙ୍ଗରେ ଯଦି ସେହି ଶତାବ୍ଦୀର ବ୍ରିଟେନ, ରୁଷିଆ, ଚୀନ ଓ ଜାପାନ ପ୍ରଭୃତି ଦେଶମାନଙ୍କର ତୁଳନା କରାଯାଏ, ତେବେ ଶିକ୍ଷା, ସଭ୍ୟତା, ସଂସ୍କୃତି, ଶିଳ୍ପ, ବିଜ୍ଞାନ ଆଦି ପ୍ରତ୍ୟେକ କ୍ଷେତ୍ରରେ ଭାରତ ଅଗ୍ରଗଣ୍ୟ ଥିବାର ପରିଲକ୍ଷିତ ହୁଏ । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଆକ୍‌ବର, ଆଉରଙ୍ଗଜେବଙ୍କ ସମୟର ଭାରତ ମଧ୍ୟ ଅନ୍ୟ ଦେଶମାନଙ୍କ ତୁଳନାରେ ଅପେକ୍ଷାକୃତ ଉନ୍ନତ ଓ

ସମୃଦ୍ଧିଶାଳୀ ଥିଲା । ୧୯୧୭ର ପରାଧୀନ ଭାରତ, ଆମେରିକା ତଥା ବ୍ରିଟେନ ଓ ଇଉରୋପୀୟ ଦେଶମାନଙ୍କର ବହୁତ ପଛରେ ପଡ଼ିଯାଇଥିଲେହେଁ ସେହି ସମୟର ରୁଷିଆ ଓ ଚୀନଠାରୁ ବିଶେଷ ପଛରେ ପଡ଼ିନଥିଲା । କିନ୍ତୁ ୧୯୧୭ର ରୁଷ୍ ଦେଶ ଓ ଠିକ୍ ପରବର୍ତ୍ତୀ ୨୫ ବର୍ଷ ପରେ ୧୯୪୭ର ରୁଷିଆ ମଧ୍ୟରେ ଆକାଶ-ପାତାଳର ପ୍ରଭେଦ ଦେଖିବାକୁ ମିଳେ । ୧୯୪୭ ଅଗଷ୍ଟରେ ଭାରତ ଯେତେବେଳେ ସ୍ୱାଧୀନ ହୁଏ, ଯୁଦ୍ଧବିଧ୍ୱସ୍ତ ଜର୍ମାନୀ ତଥା ବିଧ୍ୱସ୍ତ ଜାପାନ ଓ ଚ୍ୟାଙ୍ଗ୍ କାଇଶେକ୍‌ଙ୍କ ଚୀନଠାରୁ ଭାରତର ସ୍ଥିତି ଖରାପ ଥିଲା ବୋଲି କହିହେବ ନାହିଁ । କିନ୍ତୁ ୧୯୪୭ର ପରବର୍ତ୍ତୀ ୨୫ ବର୍ଷ ମଧ୍ୟରେ ଜର୍ମାନୀ ଓ ଜାପାନର ଆଶ୍ଚର୍ଯ୍ୟଜନକ ପୁନରୁତ୍‌ଥାନ ଓ କମ୍ୟୁନିଷ୍ଟ ଚୀନର ପ୍ରଗତି ସାଙ୍ଗରେ ଭାରତର ପ୍ରଗତି ଯଦି ତୁଳନା କରାଯାଏ, ତେବେ ଦୁଃଖ ନ କରି ରହିହୁଏନାହିଁ । ଏହି ୨୫ ବର୍ଷରେ ଭାରତର ଅଗ୍ରଗତି ଉଲ୍ଲେଖଯୋଗ୍ୟ ହୋଇଥିଲେ ମଧ୍ୟ ସନ୍ତୋଷଜନକ ବୋଲି କୁହାଯାଇ ନ ପାରେ ।

ମାତ୍ର ୩୦ ବର୍ଷ ତଳର କଥା । ପରାଧୀନ ଭାରତରେ ଉଷା ସିଲେଇ ମେସିନ ଉଷା ବିଜୁଳି ପଙ୍ଖା ପରି ସାମାନ୍ୟ କେତୋଟି ଜିନିଷ ଛାଡ଼ିଦେଲେ, ଭାରତ-ତିଆରି କୌଣସି ଯନ୍ତ୍ରପାତି ଦେଖିବାକୁ ମିଳେନାହିଁ । ମୋଟରକାର୍, ରେଳ ଇଞ୍ଜିନ୍ କଥା ତ ଛାଡ଼, ସାଇକେଲଟିଏ ମଧ୍ୟ ଭାରତରେ ତିଆରି ହେଉନଥାଏ । ଖିଅର ହେବା ବ୍ଲେଡ୍‌ଠାରୁ ଆରମ୍ଭକରି ପିନ୍‌କଣ୍ଟା ପର୍ଯ୍ୟନ୍ତ ସବୁ ବିଦେଶରୁ ଆମଦାନୀ ହୋଇ ଆସୁଥାଏ । ଝିଅମାନଙ୍କର ବେଣୀରେ ଖୋସାହେବା ପାନିଆରେ ମଧ୍ୟ 'ପତିପରମଗୁରୁ' ତଳକୁ 'Made in Germany' ଦେଖିବାକୁ ମିଳେ । ଭାରତର କଞ୍ଚାମାଲ ସବୁ ବାହାରକୁ ଚାଲିଯାଇ ସେଇ ସବୁ ଜିନିଷରୁ ତିଆରି ମାଲ ପୁଣି ଭାରତକୁ ଫେରିଆସୁଥାଏ । ସେତେବେଳେ ସାମାନ୍ୟ ଛତାଟିଏ ମଧ୍ୟ ଭାରତରେ ତିଆରି ବୋଲି ଦେଖିଲେ ଗର୍ବରେ ଛାତି ଫୁଲିଉଠୁଥାଏ । ତେଣୁ ଆଜି ସ୍ୱାଧୀନତା ପ୍ରାପ୍ତିର ୨୫ ବର୍ଷ ପରେ ଭାରତରେ ତିଆରି ମଟର କାର୍, ଟ୍ରକ୍, ରେଳ ଇଞ୍ଜିନଠାରୁ ଆରମ୍ଭ କରି ଉଡ଼ାଜାହାଜ, ଜଳଜାହାଜ, ଟ୍ୟାଙ୍କ୍, ଭାକ୍ରା, ହୀରାକୁଦ ପରି ବନ୍ଧ, ରାଉରକେଲା, ଭିଲାଇ ପରି କାରଖାନା, କୋଚିନ, ପାରାଦ୍ୱୀପ କରି ବନ୍ଦର ତଥା ତୈଳ ଉତ୍ପାଦନ ଓ ବିଶୋଧନ କେନ୍ଦ୍ରଠାରୁ ଆରମ୍ଭ କରି ଆଣବିକ ଶକ୍ତି ଉତ୍ପାଦନ କେନ୍ଦ୍ର ପର୍ଯ୍ୟନ୍ତ ଓ ପ୍ରଗତିର ପ୍ରତୀକ ସ୍ୱରୂପ ବିଞ୍ଛି ହୋଇ ପଡ଼ିଥିବା ଶିକ୍ଷାନୁଷ୍ଠାନମାନ ଦେଖିଗଲେ ମନରେ ସ୍ୱତଃ ଉଲ୍ଲାସ ଜାଗିଉଠେ । ପରାଧୀନ ଭାରତର ଅବସ୍ଥା ସହ ୧୯୪୩ର ବଙ୍ଗ ଦୁର୍ଭିକ୍ଷ ଯେଉଁମାନେ ନିଜ ଆଖିରେ ଦେଖିଛନ୍ତି କିମ୍ବା ବ୍ୟକ୍ତିଗତ ଭାବରେ ଅନୁଭବ କରିଛନ୍ତି, ସେମାନେ ଆଜି ଭାରତର ସବୁଜ ବିପ୍ଳବ ଦେଖିଲେ ନିଶ୍ଚୟ ଆନନ୍ଦିତ ହେବେ । କିନ୍ତୁ ଯେଉଁମାନେ ସ୍ୱାଧୀନ ଭାରତରେ ଜନ୍ମ ନେଇଛନ୍ତି

ଓ ପରାଧୀନ ଭାରତର ଜୀର୍ଣ୍ଣ ଓ ମଳିନ ରୂପ ନିଜ ଆଖିରେ ଦେଖିନାହାନ୍ତି, ସେମାନେ ଭାରତର ପରିବର୍ତ୍ତନକୁ ଯଥାଯଥ ଭାବରେ ଉପଲବ୍ଧି କରିପାରିନାହାନ୍ତି । ତେଣୁ ସେମାନେ ମହାକାଶରେ ରୁଷିଆ ଓ ଆମେରିକାର ରୋମାଞ୍ଚକର କୃତିତ୍ୱ, କ୍ଷୁଦ୍ର ଜାପାନର ଅର୍ଥନୈତିକ ବିକାଶ ଏବଂ ରୁଷିଆ ଓ ଆମେରିକାର ବିରୋଧ ସତ୍ତ୍ୱେ ସାମାନ୍ୟ କେତେ ବର୍ଷ ପୂର୍ବେ ଭାରତ ପରି ଅନୁନ୍ନତ ଥିବା ଚୀନର ଶିଳ୍ପ, ବିଜ୍ଞାନ, ସାମରିକ ଶକ୍ତି ଓ ପରମାଣୁ ଅସ୍ତ୍ର ଉତ୍ପାଦନ କ୍ଷେତ୍ରରେ ଅସାଧାରଣ ଅଗ୍ରଗତି ସହ ଭାରତର ପ୍ରଗତିକୁ ତୁଳନା କରି ଆମ ଗତିର ମନ୍ଥରତାରେ ନିରାଶ ହୋଇପଡୁଛନ୍ତି ।

ଆଜିର ଏ କ୍ଷିପ୍ର ପରିବର୍ତ୍ତନଶୀଳ ଦୁନିଆରେ ଭାରତର ପ୍ରଗତି ଯେ ଶିଥିଳ, ଏଥିରେ ସନ୍ଦେହ ନାହିଁ । ଅନେକ କ୍ଷେତ୍ରରେ 'ଗୋଦରା କୋଡ଼େ ଯେତେ, ମାଡ଼େ ସେତେ' ନ୍ୟାୟରେ ଆମେ ଯେତେ ଆଗେଇବୁ, ସେତିକି ପଛେଇଯାଇଛୁ ପରି ମନେହୁଏ । ସ୍ୱନାମଧନ୍ୟ ଶଙ୍କର ପିଲାଇଙ୍କ ବ୍ୟଙ୍ଗଚିତ୍ର ପରି ବସିବା ଘରର ଦୋଳାୟମାନ ପାଠଘୋଡ଼ାରେ ଚଢ଼ି ଆମେ ସବୁ ଆଖି ବୁଜି ଦୋହଲୁଁ ଦୋହଲୁଁ ମନେକରୁଛୁଁ ଯେ ଆମେ ଆଗକୁ ଜୋର୍‌ରେ ମାଡ଼ିଚାଲିଛୁଁ । ଆଖି ଖୋଲି ଦେଖିଲାବେଳକୁ କିନ୍ତୁ ଯୋଉଠିକି ସେଇଠି । ମନେହୁଏ ଆମେ ଯେପରି ଲକ୍ଷ୍ୟଭ୍ରଷ୍ଟ ଭାବରେ ଚାଲିଛୁଁ । ପୂର୍ବରୁ ମାଇଲିଏ ଗଲା ପରେ ହଠାତ୍ ଉତ୍ତରକୁ କିଛି ଦୂର ଆଗେଇଯାଇ ପୁଣି ପଶ୍ଚିମକୁ ଧାପେ ଯାଉଛୁଁ ଓ ଶେଷରେ ଦକ୍ଷିଣିଆ ଆସି ପୁରୁଣା ବାଟର ମଝିରେ ପହଞ୍ଚିଯାଉଛୁଁ । ବଢ଼ିପାଣିରେ କୁଟାଖିଅ ପରି କେତେବେଳେ ବୁଡ଼ିଯାଉଛୁଁ ତ କେତେବେଳେ ଉପରକୁ ଉଠି ଗର୍ବରେ ଥୋଡ଼େ ବାଟ ଆଗେଇଗଲା ପରେ କେଉଁ ଘୂର୍ଣ୍ଣି ମୁହଁରେ ପଡ଼ି ଚକ୍‌କର ଖାଉଛୁଁ । କେଉଁଠି ପଥର ଉପରେ ବାଡ଼େଇ ହୋଇଯାଉଛୁଁ ତ କେଉଁଠି କୂଳରେ ଅଟକାଡ଼ି ହୋଇ ଆଉ ଗୋଟିଏ ହାଲ୍‌କା ପାଣିସୁଅ ଭିତରକୁ ଟାଣି ନେବା ପର୍ଯ୍ୟନ୍ତ ସେଇ କୂଳରେ ହିଁ ଖାପଛଡ଼ା ଭାବରେ ପଡ଼ିରହିଛୁଁ । ଆମେ ଆଜି ଯେପରି ବାଟକଣା – ଅନ୍ୟର ଚଲାବାଟ ଦେଖି ସେଇଟା ହିଁ ଆମ ବାଟ ବୋଲି ଧରିନେଉଛୁଁ ।

ଅନେକ ସମୟରେ ଆମେରିକାର ଧନ ଓ ପ୍ରାଚୁର୍ଯ୍ୟରେ ଆମ ଆଖି ଝଲସି ଯାଉଛି । ଆତ୍ମ-ମର୍ଯ୍ୟାଦା, ଆତ୍ମ-ସମ୍ମାନ ଓ ଆମର ଗୌରବମୟ ଐତିହ୍ୟ ତଥା ସଭ୍ୟତା ଭୁଲି କିଛିଦିନ ଗୋଡ଼ାଣିଆ ଭାବରେ ସେମାନଙ୍କ ଚଲାବାଟକୁ ପ୍ରଗତିର ରାଜପଥ ଭାବି, ବ୍ୟକ୍ତିଗତ ପ୍ରଚେଷ୍ଟା, ସାଧନା ତଥା ବ୍ୟକ୍ତିଗତ ଅଧିକାର ଉପରେ କିଛିଦିନ ପାଇଁ ଜୋର୍ ଦେଇ କେତେକଙ୍କୁ କୋଟିପତି କରି, ଧନୀକୁ ବେଶି ଧନୀ ଓ ଗରିବକୁ ଆହୁରି ଗରିବ କରି ଥୋଇଦେଇ ସାରିଲା ପରେ ଧନୀ ଓ ଗରିବର ବ୍ୟବଧାନକୁ ଲକ୍ଷ୍ୟ କରି ଭୟରେ ନିଜ ସ୍ଥିତିର ନିରାପଦର ଆଶଙ୍କାରେ ସାମ୍ୟବାଦର

ଦୋହା ଦେବାକୁ ଆରମ୍ଭ କରିଛୁଁ। କେତେବେଳେ ଫମ୍ପା ଆୱାଜ କରି କାହାକୁ ଡରାଇବାକୁ ଚେଷ୍ଟା କରିଛୁ ତ କେତେବେଳେ କାହାରି ଭୟରେ ଅନ୍ୟର ପଣତକାନି ଧରିଛୁଁ। ଧର୍ମନିରପେକ୍ଷ ନାଁରେ ଜାତିର ଚରିତ୍ରକୁ ବଳିଦେଇଛୁଁ ଓ ନିଜ ଦୋଷ-ଦୁର୍ବଳତା, ଶୃଙ୍ଖଳାହୀନତା ଓ ପରିଶ୍ରମ-କାତରତାକୁ ଢାଙ୍କିବାକୁ ଯାଇ ଅନ୍ୟ ମୁଣ୍ଡରେ ଅଠା ବୋଳିବାକୁ ଚେଷ୍ଟା କରିଛୁଁ। ପ୍ରଗତି ପାଇଁ ନିଜେ ବାହାଦୁରୀ ନେବାକୁ ଚେଷ୍ଟା କରିଛୁଁ ଓ ଦୁର୍ନୀତି ପାଇଁ କେତେବେଳେ ଶିକ୍ଷାନୀତିକୁ ଦୋଷ ଦେଇଛୁଁ ତ କେତେବେଳେ ରାଜନୀତିକୁ। ଏ ପ୍ରକ୍ରିୟାରେ ଆମେ ଆମର ଜାତୀୟ ବ୍ୟକ୍ତିତ୍ୱ ହରାଇ ବସିଛୁ।

ଜାତିର ଗଠନ ପାଇଁ ଜାତୀୟ ଚରିତ୍ର ଯେ ସର୍ବପ୍ରଧାନ, ସେ କଥା ଉପେକ୍ଷା କଲେ ପରିଣତି ନିଶ୍ଚୟ ବିଷମୟ ହେବ। ଗୋଟିଏ କର୍ମଠ, ଚରିତ୍ରବାନ୍ ଓ ଶୃଙ୍ଖଳିତ ଜାତିକୁ ଯେଉଁ ଶାସନ-ପଦ୍ଧତି ଦେଲେ ମଧ୍ୟ ସେ ଜାତି ଆଗେଇଯିବ, ଏଥିରେ ସନ୍ଦେହ ନାହିଁ। ପ୍ରତ୍ୟେକ ଶାସନପଦ୍ଧତିରେ ଗୁଣ ସହିତ ଦୋଷ ତ୍ରୁଟି ରହିଛି। ରାଜତନ୍ତ୍ର ଦୋଷଯୁକ୍ତ ହେଲେ ହେଁ ରାମରାଜ୍ୟ ଆଦର୍ଶ ଶାସନର ଚରମ ପରିପ୍ରକାଶ ବୋଲି ବର୍ଣ୍ଣନା କରାଯାଏ। ଗଣତନ୍ତ୍ର ଶାସନର ପ୍ରତୀକ ଆମେରିକା ଆଧୁନିକ ପ୍ରଗତିର ଶୀର୍ଷରେ ରହିଥିଲେ ହେଁ ଗଣ-ଶିକ୍ଷା ଓ ଗଣ-ଚେତନାର ଅଭାବରେ ଗଣତନ୍ତ୍ର ଶାସନ ଯେ ସୀମାବଦ୍ଧ ହୁଏ ତାହା ଜଣାଶୁଣା କଥା। ଅନୁନ୍ନତ ଦେଶର ଦ୍ରୁତ ବିକାଶ ପାଇଁ ସାମ୍ୟବାଦ ସର୍ବଶ୍ରେଷ୍ଠ ବୋଲି ରୁଷିଆ ଓ ଚୀନ ପ୍ରମାଣ କରିଦେଇଥିଲେ ହେଁ ସାମ୍ୟବାଦରେ ବ୍ୟକ୍ତିଗତ ସୁବିଧା, ସୁଯୋଗ ଓ ଅଧିକାରର ଲୋପ ସାଧନ ତଥା ଯନ୍ତ୍ରବତ୍ ଶୃଙ୍ଖଳା ଅପରିହାର୍ଯ୍ୟ।

ଆମେ କିନ୍ତୁ ପ୍ରତ୍ୟେକ ପଦ୍ଧତିର ରୁଚିକର ଅଂଶ ଗ୍ରହଣ କରି ପୁଷ୍ଟିକାରକ ହିତକର କିନ୍ତୁ ସାମାନ୍ୟ ପିତା ଅଂଶକୁ ଛାଡ଼ିବାକୁ ଚେଷ୍ଟା କରିଛୁଁ। ରାମରାଜ୍ୟ ଆଣିବୁ କହି ରାମଚନ୍ଦ୍ରଙ୍କ ଏକଛତ୍ର ଶାସନକ୍ଷମତା ହାସଲ କରିବାକୁ ଚେଷ୍ଟାକରିଛୁ ସିନା, ପ୍ରଜାଗତପ୍ରାଣ ଓ ପ୍ରଜାବତ୍ସଳ ରାମଙ୍କ ପ୍ରଜାଙ୍କ ହିତପାଇଁ ତ୍ୟାଗକୁ ଜାଣିଶୁଣି ପାସୋରି ପକାଇଛୁଁ। ଗଣତନ୍ତ୍ର ଶାସନର ବ୍ୟକ୍ତିଗତ ଅଧିକାର ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତନ ଥିଲେ ହେଁ, ନିଜ କର୍ତ୍ତବ୍ୟ ସମ୍ବନ୍ଧରେ ଉଦାସୀନ ରହିଛୁଁ। ସାମ୍ୟବାଦରୁ ଶିଳ୍ପ ଜାତୀୟକରଣ ଆଣିଛୁଁ; କିନ୍ତୁ ଭୋଟ ହରାଇବା ଭୟରେ ଉତ୍ପାଦନ ହ୍ରାସକାରୀ କ୍ରମାଗତ ଶ୍ରମିକ ଧର୍ମଘଟକୁ ବନ୍ଦ କରିବାକୁ ସାହସ କରିନାହୁଁ। ମୁହଁରେ ଗାନ୍ଧି, ଅରବିନ୍ଦଙ୍କ କଥା କହି ହୃଦୟରେ ଗଡ୍‌ସେର କପଟତା ଭରିରଖିଛୁଁ। ଧର୍ମନିରପେକ୍ଷତାର ଦ୍ୱାହି ଦେଉଛୁଁ; କିନ୍ତୁ ସର୍ବ ଧର୍ମର ସାର ମାନବିକତାକୁ ବିକ୍ରି ଖରିଦର ସାମଗ୍ରୀ କରିଦେଇଛୁଁ। ଇଉରୋପ ଓ ଆମେରିକାର ଢଙ୍ଗଢାଙ୍ଗ ଗ୍ରହଣ

କରିଛୁଁ; କିନ୍ତୁ ତାଙ୍କ କର୍ତ୍ତବ୍ୟନିଷ୍ଠା, ଶାରୀରିକ ଶ୍ରମ, ସମୟାନୁବର୍ତ୍ତିତା ଗ୍ରହଣ କରିନାହୁଁ। ଆମେ ନିଜେ ସର୍ବବିଧ ସ୍ୱାଧୀନତା ଉପଭୋଗ କରିବାକୁ ଚାହିଁଛୁ; କିନ୍ତୁ ଆମ ପଡ଼ୋଶୀକୁ ସେହି ସ୍ୱାଧୀନତା ଦେବାକୁ ପ୍ରସ୍ତୁତ ନୋହୁଁ।

ମୋଟାମୋଟି କହିବାକୁ ଗଲେ ଗତ ୨୫ ବର୍ଷ ମଧ୍ୟରେ ଆମର ଉଲ୍ଲେଖଯୋଗ୍ୟ ପ୍ରଗତି ହୋଇଛି ସତ; କିନ୍ତୁ ଏହି ଅଳ୍ପ ସମୟ ମଧ୍ୟରେ ଆମେ ଆମର ଜାତୀୟତାବୋଧ ହରାଇ ବସିଛୁଁ। ଯେଉଁ ପ୍ରାଚୀନ ପରମ୍ପରା ଓ ସଂସ୍କୃତି ପାଇଁ ଆମର ପୂର୍ବପୁରୁଷମାନେ ଚିରଦିନ ଗର୍ବ କରିଯାଇଛନ୍ତି ସେ ସବୁ ପ୍ରତି ଆଜି ଆମର ଆସ୍ଥା ଓ ବିଶ୍ୱାସ ନାହିଁ।

କୌଣସି ଜାତି ନିଜ ଜାତୀୟତାବୋଧ ହରାଇ କେବେ ବଡ଼ ହୋଇପାରେନା। ଚୀନ ଦେଶର ଘଟଣାବଳୀରୁ ପ୍ରମାଣିତ ହୁଏ ଯେ ଶୃଙ୍ଖଳିତ ଶାସନ ସହ ଜାତୀୟତା ବୋଧର ସୁଷମ ସମ୍ମିଶ୍ରଣ ହିଁ ଗୋଟିଏ ଅନୁନ୍ନତ ଅଥଚ ସଭ୍ୟ ଦେଶର କ୍ଷିପ୍ର ପ୍ରଗତିର ଚାବିକାଠି। ଗାନ୍ଧିଜୀ ମଧ୍ୟ ଆମକୁ ଏହି ଶିକ୍ଷା ଦେଇଯାଇଛନ୍ତି। ତେଣୁ ସବୁଜବିପ୍ଳବ ଓ ଶିଳ୍ପବିପ୍ଳବ ସହ ଜାତୀୟ ଚରିତ୍ରର ପୁନର୍ଗଠନ ଆଜି ଆମର ଧ୍ୟେୟ ହେବା ଉଚିତ ବୋଲି ମନେହୁଏ।

# ଏକ ସାହିତ୍ୟ ପତ୍ରିକା ଉଦ୍ଦେଶ୍ୟରେ

ଏହି ଡିସେମ୍ବର ସଂଖ୍ୟାର ପ୍ରକାଶନ ସଙ୍ଗେ ସପ୍ତର୍ଷିର ଦୁଇବର୍ଷ ପୂରିଗଲା ।

ଅନେକ ଆଶା ଓ ବେଶ୍ କିଛି ଆଶଙ୍କା ଭିତରେ ୧୯୬୨ ଜାନୁୟାରୀ ଏକ ତାରିଖ ଦିନ ଏ ମାସିକ ପତ୍ରିକାଟି ଆତ୍ମପ୍ରକାଶ କରିଥିଲା । ସ୍ୱଭାବକବି ଗଙ୍ଗାଧରଙ୍କର ଦୁଇଧାଡ଼ି 'ଉଚ୍ଚ ହେବା ପାଇଁ କର ଯେବେ ଆଶା, ଉଚ୍ଚ କର ଆଗେ ନିଜ ମାତୃଭାଷା' ଦେଇଥିଲା ପ୍ରେରଣା ।

ପ୍ରଥମ ସଂଖ୍ୟା ଯେତେବେଳେ ବାହାରିଲା, କେହି କେହି ମନ୍ତବ୍ୟ ଦେଲେ ଯେ ପତ୍ରିକାଟି ଖଣ୍ଡିଏ ସାଧାରଣ କଲେଜ ମେଗାଜିନ୍ ପରି ଦିଶୁଛି । ଆଜି ମଧ୍ୟ ମଝିରେ ମଝିରେ ଗଳ୍ପ ଓ କବିତାର ମାନ ଦେଖି ସେପରି ଟିପ୍‌ପଣୀ ଶୁଣିବାକୁ ମିଳେ । ଏଥିରେ କିନ୍ତୁ ଦୁଃଖ କରିବାର କିମ୍ବା ଲଜ୍ଜିତ ହେବାର କିଛି ନାହିଁ ।

ସପ୍ତର୍ଷି ମୁଖ୍ୟତଃ ଶିକ୍ଷକ ଓ ଛାତ୍ରମାନଙ୍କର ସାହିତ୍ୟ-ଚର୍ଚ୍ଚା ପାଇଁ ଉଦ୍ଦିଷ୍ଟ । ତେଣୁ ଅନେକ ସମୟରେ ଛାତ୍ରମାନଙ୍କ ପ୍ରଥମ ଲେଖାର ମାନ ଏଥିରେ ପ୍ରତିଫଳିତ ହେବା ସ୍ୱାଭାବିକ । ଏ କଥା ଜଣାଶୁଣା ଯେ ଯେଉଁ ଭାଗ୍ୟବାନ୍ ଲେଖକଙ୍କ ପ୍ରଥମ ଗୋଟିଏ ଦିଓଟି ଲେଖା କୌଣସି ପତ୍ରିକାରେ ଛପାହୋଇ ବାହାରିଯାଏ, ସେମାନେ ଆତ୍ମବିଶ୍ୱାସ ଲାଭ କରି ଭବିଷ୍ୟତ ଜୀବନରେ ସୁସାହିତ୍ୟିକ ରୂପରେ ପ୍ରତିଷ୍ଠିତ ହୋଇଯାଆନ୍ତି; ଆଉ ଯେଉଁମାନଙ୍କର ସେଇ ଗୋଟିଏ ଦିଓଟି ପ୍ରଥମ ଚେଷ୍ଟା ପତ୍ରିକା ସମ୍ପାଦକଙ୍କ ଅଳିଆ ଟୋକେଇରେ ସ୍ଥାନ ପାଏ, ସେମାନଙ୍କ ମଧ୍ୟରୁ ଅନେକେ ହତୋତ୍ସାହ ହୋଇ ସାହିତ୍ୟ-ଚର୍ଚ୍ଚାରୁ ଚିରଦିନ ପାଇଁ ବିଦାୟ ନିଅନ୍ତି – ଦୁଃଖରେ ଓ ଅଭିମାନରେ । କେତେ ଛାତ୍ରଙ୍କର ଏହି ପ୍ରଥମ ଗୋଟିଏ ଦିଓଟି ଉଦ୍ୟମ ପ୍ରକାଶ କରି ସପ୍ତର୍ଷି ଯଦି ଏ ଦୁଇ ବର୍ଷ ଭିତରେ କେତେ ନୂତନ ସାହିତ୍ୟିକ ସୃଷ୍ଟିର ମୂଳଦୁଆ ହୋଇପାରିଛି, ତେବେ ତାହାହିଁ ଆତ୍ମସନ୍ତୋଷର ଯଥେଷ୍ଟ କାରଣ ହେବ । ସାହିତ୍ୟିକ ହିସାବରେ ନାମ କଲା ପରେ ଏହି ଲେଖକମାନେ ହିଁ ଅନ୍ୟ ସୁପ୍ରତିଷ୍ଠିତ ମେଗାଜିନ୍‌ମାନଙ୍କୁ ତାଙ୍କ ଲେଖା ପଠାଇବେ – ଆଉ ସପ୍ତର୍ଷି ଭାଗ୍ୟରେ ସେହି ଅନ୍ୟ କାହାର 'ପ୍ରଥମ ଲେଖା' ଛାପିବାର ଭାର ପଡ଼ିବ । ସେଥିରେ ଦୁଃଖ କରିବାର କ'ଣ ବା କାରଣ ରହିପାରେ ?

ସପ୍ତର୍ଷିର ପ୍ରବନ୍ଧ ଓ ଗବେଷଣାତ୍ମକ ଲେଖା ଗୁଡ଼ିକୁ ଅନେକେ ଆଦର କରନ୍ତି। ଏ ବିଭାଗରେ ଓଡ଼ିଆ ମାସିକ ପତ୍ରିକାମାନଙ୍କ ମଧ୍ୟରେ ସପ୍ତର୍ଷିର ସ୍ଥାନ ବେଶ୍ ଉପରେ।

ସମ୍ବଲପୁର ବିଶ୍ୱବିଦ୍ୟାଳୟ ପରିସରଭୁକ୍ତ ଅଞ୍ଚଳ ଊଣା ଅଧିକେ ସମ୍ବଲପୁରୀ ଭାଷାଭାଷୀ ଅଞ୍ଚଳ। ଏ ଅଞ୍ଚଳର ଯୁବସମାଜ ଭିତରୁ ଅନେକେ ସୁରେନ୍ଦ୍ର ସାଏ, ଗଙ୍ଗାଧର ମେହେରଙ୍କ ପରି କେତେ ଜଣ କୃତୀ ସନ୍ତାନଙ୍କୁ ଛାଡ଼ିଦେଲେ ତାଙ୍କ ଅନ୍ୟାନ୍ୟ ପୂର୍ବପୁରୁଷଙ୍କ କୀର୍ତ୍ତିକଳାପ ସମ୍ବନ୍ଧରେ ଅନେକାଂଶରେ ଅଜ୍ଞ। ଓଡ଼ିଶାର କୌଣସି ପତ୍ରପତ୍ରିକା ଏହି ମନୀଷୀମାନଙ୍କ ବିଷୟରେ ବିଶେଷ କିଛି ସୂଚନା ଦିଅନ୍ତି ନାହିଁ – ଏ ଯୁବସମାଜ ସେମାନଙ୍କୁ ଜାଣିବେ ବା କିପରି? ତେଣୁ କାହାକୁ ନେଇ, କଣ ନେଇ ସେମାନେ ନିଜ ଐତିହ୍ୟର ଗର୍ବ କରିବେ?

ସମ୍ବଲପୁରର 'ପଞ୍ଚସଖା' ଏ ଅଞ୍ଚଳରେ ହିନ୍ଦୀଭାଷା ଲଦିଦେବାକୁ ଚେଷ୍ଟା ଚାଲିଥିଲାବେଳେ କିପରି ଓଡ଼ିଆ ଭାଷାକୁ ବଞ୍ଚାଇରଖିଲେ, ସେ ବିଷୟ ସପ୍ତର୍ଷିର ପୃଷ୍ଠାରୁ ପଢ଼ି ସେଦିନ ଓଡ଼ିଶାର ଜଣେ ବିଶିଷ୍ଟ ଲେଖକ ଖୋଲାଖୋଲି ପ୍ରକାଶ କଲେ ଯେ ଓଡ଼ିଶା ତଥା ଓଡ଼ିଆ ଭାଷା ପ୍ରତି ସମ୍ବଲପୁରର ଏ ବିପୁଳ ଅବଦାନ ସେ ଆଗରୁ ଜାଣିନଥିଲେ।

ଏ ଅଞ୍ଚଳର ବରେଣ୍ୟ ସନ୍ତାନମାନଙ୍କୁ ଚିହ୍ନାଇଦେବା ପାଇଁ ସପ୍ତର୍ଷି ଉଦ୍ୟମ କରୁଛି – ତଥାପି ବୌଦ୍ଧଧର୍ମର ବଜ୍ରଯାନ-ପ୍ରବର୍ତ୍ତକ ଓ ଜଗନ୍ନାଥଙ୍କ ପ୍ରଧାନ ପୂଜକ ସମ୍ବଲରାଜା ଇନ୍ଦ୍ରଭୂତି; ସହଜଯାନ ପ୍ରବର୍ତ୍ତକ, ମୂର୍ତ୍ତିପୂଜା-ବିରୋଧୀ ଓ 'ଏହି ମଣିଷର ପିଣ୍ଡ ହିଁ ବ୍ରହ୍ମାଣ୍ଡ' ବୋଲି ପ୍ରଚାର କରିଥିବା ସୋନପୁରର ମଥାମଣି ଲକ୍ଷ୍ମୀଙ୍କରା; ଲକ୍ଷ୍ମୀଙ୍କରାଙ୍କ ଶିଷ୍ୟ କାଉଁରୀପାଟନା ବା ପାଟନା ରାଜ୍ୟର ଶୁକୁଟୀ ଚମାରୁଣୀ, ନିତେଇ ଧୋବଣୀ, ଜ୍ଞାନଦେଈ ମାଳୁଣୀ ପ୍ରଭୃତି ତାନ୍ତ୍ରିକ କନ୍ୟାମାନଙ୍କ ତନ୍ତ୍ରବିଦ୍ୟା, ନରସିଂହନାଥର ମାଧ୍ୟନ୍ଦିନ ଦର୍ଶନ ବିଶାରଦ ଦାର୍ଶନିକ ନାଗାର୍ଜୁନ, ତିବ୍‌ବତରେ ଲାମାଧର୍ମର ପ୍ରବର୍ତ୍ତକ ସମ୍ବଲର ପଦ୍ମସମ୍ଭବ, ସୋନପୁରର ଜୟଦ୍ରଥ, ପିତୋପାଦ; 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ' ବାଣୀର ସ୍ରଷ୍ଟା ଭୀମା ଭୋଇ; ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ବୋଲି କହି ବୌଦ୍ଧଧର୍ମକୁ ବୈଷ୍ଣବଧର୍ମର ରୂପ ଦେଇଥିବା ଖଡ଼ିଆଳର ଭକ୍ତକବି ଚୈତନ୍ୟ ଦାସ ପ୍ରଭୃତିଙ୍କୁ ସପ୍ତର୍ଷି ଏପର୍ଯ୍ୟନ୍ତ ଯଥୋଚିତ ଅର୍ଘ୍ୟ ଦେଇପାରିନାହିଁ।

ପ୍ରାକ୍-ଐତିହାସିକ ସଂସ୍କୃତିର ବାହକ କଳାହାଣ୍ଡିର ଅସୁରଗଡ଼, ବୁଡ଼ମଲଗଡ଼ ଓ ସୁରେନ୍ଦ୍ର ସାଏ ଆଶ୍ରୟ ନେଇଥିବା ଖଡ଼ିଆଳର ମାନିକଗଡ଼, ହିମଗିର୍ ଜମିଦାରୀର ସରଫଗଡ଼, ବିକ୍ରମଖୋଲ ପ୍ରଭୃତିର ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ଦିନେ ଏ ଅଞ୍ଚଳକୁ

ଭାରତର ଇତିହାସରେ ଯଥୋଚିତ ଆସନ ଦେବ, ଏଥିରେ ସନ୍ଦେହ ନାହିଁ ।

ଆଜିପର୍ଯ୍ୟନ୍ତ ଏ ଅଞ୍ଚଳର ଲୋକଗୀତି, ଢଗଢ଼ମାଳି, ଲୋକକାହାଣୀ ପ୍ରଭୃତି ସଂଗୃହୀତ ହୋଇପାରିନି, ଭାଷାକୋଷ ପ୍ରଣୟନ ହୋଇନି । ସ୍ୱାଧୀନତା ସଂଗ୍ରାମୀମାନଙ୍କ ଜୀବନୀ ପ୍ରକାଶିତ ହୋଇପାରିନି ।

ସଂକ୍ଷେପରେ କହିବାକୁ ଗଲେ ଆଖିଦୃଶିଆ କିଛି ଏ ପର୍ଯ୍ୟନ୍ତ ହୋଇନି ।

ତେଣୁ ସ୍ୱାଭାବିକ ଭାବରେ ଯେପରି ପ୍ରଶ୍ନ ଉଠେ – ଏ ସବୁ କିଏ କରିବ ? ସେପରି ଜବାବ ମିଳେ – 'ସମ୍ବଲପୁର ବିଶ୍ୱବିଦ୍ୟାଳୟ' ।

କିନ୍ତୁ ଏଠାରେ ପ୍ରଶ୍ନ କରାଯାଇପାରେ – ବିଶ୍ୱବିଦ୍ୟାଳୟ କହିଲେ କାହାକୁ ବୁଝାଏ ?

ଯେତେବେଳେ କ୍ରିକେଟ କିମ୍ୱା ଫୁଟବଲ କିମ୍ୱା ହକିରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ହାରିଯାଏ, କିଏ ହାରେ ? ଯେତେବେଳେ ଦୁର୍ଭିକ୍ଷ ବିରୁଦ୍ଧରେ ଯୁବସଂଗ୍ରାମ କାର୍ଯ୍ୟକ୍ରମରେ ବିଶ୍ୱବିଦ୍ୟାଳୟ ସୁନାମ ଅର୍ଜନ କରେ, ମାଟି କିଏ ଖୋଳେ ? ଗବେଷଣା ଓ ଶିକ୍ଷାକ୍ଷେତ୍ରରେ ବିଶ୍ୱବିଦ୍ୟାଳୟ ଯେତେବେଳେ ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରେ, ସେ ଗବେଷଣା କିଏ କରିଥାଏ, ଆଉ ସୁନାମ କିଏ ଆଣେ ।

ଶିକ୍ଷକ ଓ ଛାତ୍ରଙ୍କ ସମ୍ମିଳିତ ଗୋଷ୍ଠୀକୁ ହିଁ ବିଶ୍ୱବିଦ୍ୟାଳୟ କୁହାଯାଏ ।

ତେଣୁ ଏ ସବୁ କାର୍ଯ୍ୟକ୍ରମ ସଂଗ୍ରହ ତଥା ସଙ୍କଳନ ବିଶ୍ୱବିଦ୍ୟାଳୟର ନାମରେ ଶିକ୍ଷକ ଓ ଛାତ୍ରମାନଙ୍କୁ ହିଁ କରିବାକୁ ପଡ଼ିବ; ଆଉ ତହିଁର ଉପଯୁକ୍ତ ମୁଖପତ୍ର ହେବ ସପ୍ତର୍ଷି ।

ଏ ଦିଗରେ ପ୍ରତ୍ୟେକେ ଯଦି ନିଜ ଇଚ୍ଛାଅନୁଯାୟୀ କିଛି ଉଦ୍ୟମ କରନ୍ତେ, କୌଣସି ପଦକ୍ଷେପ ନିଅନ୍ତେ ଓ ତାଙ୍କର ବ୍ୟକ୍ତିଗତ ଅବଦାନ ଦିଅନ୍ତେ, ତେବେ ଅନେକ କିଛି ହୋଇପାରନ୍ତା । ବେଳେବେଳେ କିନ୍ତୁ ମନେହୁଏ ଯେ ଅନେକଙ୍କ ଆତ୍ମପ୍ରତ୍ୟୟ ନାହିଁ । ସମସ୍ତେ ସତେ ଯେପରି ବାଳକ ହନୁମାନ ପରି ଅଭିଶପ୍ତ – ନିଜ ନିଜ ଅନ୍ତର୍ନିହିତ ଶକ୍ତି ସମ୍ବନ୍ଧରେ ଅଚେତନ ।

ଏ ସମ୍ବନ୍ଧରେ ମହାବୀର ହନୁମାନଙ୍କ ଜୀବନ କାହାଣୀ ମନେପଡ଼େ ।

ପବନ-ପୁତ୍ର ହନୁମାନ ଜନ୍ମହେଲାକ୍ଷଣି ଭୋକରେ ଅଧୀର ହୋଇ କିଛି ଖାଇବାକୁ ଯେତେବେଳେ ଚାରିଆଡ଼ିକି ଚାହିଁଲେ, ଦେଖିଲେ ଚକ୍ରବାଳ ଉପରେ ସୂର୍ଯ୍ୟଦେବ ଉଇଁଆସୁଛନ୍ତି । ସୁନ୍ଦର ପାଚିଲା ଫଳଟିଏ ବୋଲି ଭାବି ସେ ସାଙ୍ଗେ ସାଙ୍ଗେ ସୂର୍ଯ୍ୟଙ୍କୁ ଖାଇବା ଆଶାରେ ଆକାଶକୁ କ୍ଷେପିଗଲେ । ହନୁମାନଙ୍କୁ ପାଖରେ ଦେଖି ସୂର୍ଯ୍ୟ ଭୀତତ୍ରସ୍ତ ହୋଇ ଇନ୍ଦ୍ରଦେବଙ୍କ ପାଖରେ ଯାଇ ଗୁହାରି କଲେ ଯେ ଅସମୟରେ ରାହୁ ତାଙ୍କୁ ଗ୍ରାସ କରିବାକୁ ବସିଛି । ଇନ୍ଦ୍ର କ୍ରୋଧରେ ହନୁମାନଙ୍କ ଉପରେ ବଜ୍ରାଘାତ

କଲେ । ହନୁମାନଙ୍କ ହନୁହାଡ଼ ଭାଙ୍ଗିଗଲା ଓ ସେ ପ୍ରାୟ ମୃତ-ଅବସ୍ଥାରେ ତଳେ କଚାଡ଼ି ହୋଇ ପଡ଼ିଲେ । ଗୋଟିଏ ମାତ୍ର ପୁଅର ଏପରି ଅକାଳ ବିୟୋଗରେ ପବନଦେବତା ଦୁଃଖ ଓ ଅଭିମାନରେ ପବନ ରୁନ୍ଧିଦେଲେ । ପବନ ଅଭାବରେ ସୃଷ୍ଟିର ବିନାଶ ହେବାକୁ ବସିଲା । ଦେବତାମାନେ ବ୍ରହ୍ମା ଓ ରୁଦ୍ରଙ୍କୁ ଧରି ପବନଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ହନୁମାନଙ୍କୁ ଜୀବନ ଦାନ ଦେଲେ, ତାଙ୍କୁ ବଜ୍ରାଙ୍ଗ ଓ ଅମର କଲେ । ଦେବଗଣ ନିଜ ନିଜ ଶକ୍ତି ଓ ଅସ୍ତ୍ର ତଥା ଜ୍ଞାନ ପ୍ରଦାନ କଲେ – ହନୁମାନ ହେଲେ ମହାବଳୀ ଓ ଅଜେୟ ।

ଏକେ ବାଳକ – ତେଣୁ ଦୁଷ୍ଟ ଓ ଚପଳମତି । ତହିଁରେ ପୁଣି ମାଙ୍କଡ଼ । ମହାଶକ୍ତିଧାରୀ ବାଳକ ହନୁମାନ ଧୀରେ ଧୀରେ ଋଷି ଆଶ୍ରମମାନଙ୍କରେ ଗୋଟିଏ ଆତଙ୍କ ହୋଇ ବସିଲେ । ଫଳ ବଗିଚାରେ ପଶି ଫଳ ଖାଉଁ ଖାଉଁ ଗଛ ଉପାଡ଼ି ପକାଉଥିଲେ – ଆଶ୍ରମ ଘର ଭାଙ୍ଗିବାକୁ ଭଲ ପାଉଥିଲେ, ଆଉ ଯଜ୍ଞଶାଳା ଉପରେ ପାହାଡ଼ଖଣ୍ଡ ସବୁ ଜମା କରିଦେଉଥିଲେ । ତାଙ୍କର ଦୁଷ୍ଟାମି ଦିନକୁ ଦିନ ଅସହ୍ୟ ହୋଇପଡ଼ିଲା । ଶେଷରେ ଋଷିମାନେ ଅଭିଶାପ ଦେଲେ ଯେ ଯେହେତୁ ଶ୍ରୀରାମଚନ୍ଦ୍ରଙ୍କ କାର୍ଯ୍ୟ କରିବା ପାଇଁ ହନୁମାନଙ୍କ ଜନ୍ମ, ଶ୍ରୀରାମଙ୍କୁ ଭେଟି ତାଙ୍କର ସେବା କରିବା ପର୍ଯ୍ୟନ୍ତ ସେ ନିଜର ଶକ୍ତି ଓ ସାମର୍ଥ୍ୟ ସମ୍ବନ୍ଧରେ ଅଚେତନ ହୋଇ ରହିଥିବେ । ଏପରି ଭାବରେ ଅଭିଶପ୍ତ ହୋଇ ମହାଜ୍ଞାନୀ, ପରମଯୋଗୀ, ମହାବୀର ବାଳକାଳରେ ନିଜର ଶକ୍ତି ସାମର୍ଥ୍ୟ ଭୁଲିଯାଇଥିଲେ ।

ଆମ ଯୁବ-ସମାଜରେ ଅନେକଙ୍କ ଅବସ୍ଥା ଠିକ୍ ଏପରି ବୋଲି ମନେହୁଏ । ଅନେକେ କୌଣସି କାରଣରୁ ନିଜ ଅନ୍ତର୍ନିହିତ ଶକ୍ତି କଥା ଭୁଲିଯାଇଛନ୍ତି ଓ ନିଜର ସାମର୍ଥ୍ୟ ସମ୍ବନ୍ଧରେ ସନ୍ଦିହାନ ହୋଇପଡ଼ିଛନ୍ତି । ସେମାନେ ଯଦି ଲୋକଗୀତି, ଲୋକକଥା, ଲୋକସାହିତ୍ୟ, ପ୍ରଚଳିତ ଢଗଢମାଳି ତଥା ଶବ୍ଦମାଳା ପ୍ରଭୃତି ସଂଗ୍ରହ କରି ସପ୍ତର୍ଷିରେ ପ୍ରକାଶ କରିବା ପାଇଁ ଦିଅନ୍ତେ, ତେବେ ତାହା ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ଗୋଟିଏ ବଳିଷ୍ଠ ପଦକ୍ଷେପ ହୁଅନ୍ତା ।

ସାଧନା ହିଁ ସିଦ୍ଧିର ବିଶେଷ ଅଂଶ ବୋଲି କୁହାଯାଇଥାଏ । ପ୍ରାୟ କେହି ଜନ୍ମସିଦ୍ଧ ନୁହନ୍ତି – କ୍ରମାଗତ ସାଧନା ଫଳରେ ହିଁ ଅନେକେ ସିଦ୍ଧିଲାଭ କରିଥାଆନ୍ତି । ସାହିତ୍ୟ କ୍ଷେତ୍ରରେ ମଧ୍ୟ ଏହାର ବ୍ୟତିକ୍ରମ କ୍ୱଚିତ୍ ଦେଖାଯାଏ । ସାହିତ୍ୟର ଉନ୍ନତି ବିନା ଜାତିର ଉନ୍ନତି ଅସମ୍ଭବ । ତେଣୁ ପ୍ରତ୍ୟେକେ ଆତ୍ମବିଶ୍ୱାସ ନେଇ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଯେ କୌଣସି ଦିଗରେ କିଛି ନା କିଛି ଉଦ୍ୟମ କରିବେ ବୋଲି ଆଶା ।

# କଲେଜ ଭାରଣ୍ଡ

ସଂସ୍କୃତରେ ଭାରଣ୍ଡ ପକ୍ଷୀ ବିଷୟରେ ଗୋଟିଏ ସୁନ୍ଦର ଓ ଅତି ଜଣାଶୁଣା ଗପ ଅଛି । ଏ ପକ୍ଷୀର କୁଆଡ଼େ ଗୋଟିଏ ପେଟ, କିନ୍ତୁ ଦିଓଟି ମୁଣ୍ଡ ଥିଲା । ସବୁବେଳେ ପାଖରେ ପାଖରେ ଥିବାରୁ ଦିଓଟି ମୁଣ୍ଡ ଭିତରେ ବେଳେ ବେଳେ ଫୁଟ୍‌ଫାଟ୍, ଟଣାଓଟଣା ହୋଇ ମନୋମାଳିନ୍ୟ ଅଟେ ।

ଥରେ ସମୁଦ୍ରକୂଳରେ ବୁଲୁବୁଲୁ ଏ ପକ୍ଷୀର ଗୋଟିଏ ମୁଣ୍ଡ ଭଲ ସୁସ୍ୱାଦୁ ଅମୃତଫଳଟିଏ ପାଇଲା ଓ ଅନ୍ୟ ମୁଣ୍ଡକୁ ସେଥିରୁ କିଛି ଭାଗ ନ ଦେଇ ପୂରାପୂରି ନିଜେ ଖାଇନେଲା । କଥାଟି ସେଥିରେ ଶେଷ ହେଲାନି । ଏହି ଅମୃତ ଫଳ ଖାଇଥିବା ମୁଣ୍ଡଟି ତା'ପରେ ଅନ୍ୟ ମୁଣ୍ଡକୁ ଚିହାଇଲା ଭଳି ସବୁବେଳେ ସେହି ଅମୃତ ଫଳର ସ୍ୱାଦକଥା ବର୍ଣ୍ଣନା କରିବସିବା ସଙ୍ଗେ ସଙ୍ଗେ ଜିଭ ଟାକରା ମାରିବା ମଧ୍ୟ ବନ୍ଦ କଲାନି । ଏହା ଅନ୍ୟ ମୁଣ୍ଡଟିକୁ ଅସହ୍ୟ ହୋଇପଡ଼ିଲା ଓ ସେ ଏଥର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ନିଜେ ବିଷଫଳ ଖାଇବ ବୋଲି ନିଷ୍ପତ୍ତି କଲା ଓ ତାହା ଅନ୍ୟ ମୁଣ୍ଡ ପାଖରେ ଘୋଷଣା କଲା । ଏ ବିଷଫଳ ଖାଇବାର ବିଷମୟ ପରିଣାମ ସମ୍ବନ୍ଧରେ ଅନ୍ୟ ମୁଣ୍ଡଟି ଯେତେ ବୁଝାଇଲେ ମଧ୍ୟ ଆଉ କିଛି ଫଳ ହେଲା ନାହିଁ । ଶେଷରେ ସେ ମୁଣ୍ଡଟି ବିଷଫଳ ଖାଇଦେବା ଫଳରେ ଭାରଣ୍ଡ ପକ୍ଷୀର ଦଶା କ'ଣ ହେଲା ସେ କଥା ସମସ୍ତଙ୍କୁ ଜଣା ।

ଆମର ଶିକ୍ଷାନୁଷ୍ଠାନ ସବୁକୁ ଏ ଦୁଇମୁଣ୍ଡବିଶିଷ୍ଟ ଭାରଣ୍ଡ ପକ୍ଷୀ ସଙ୍ଗରେ ତୁଳନା କରାଯାଇପାରେ । ଭାରଣ୍ଡ ପକ୍ଷୀର ପେଟ ପରି କଲେଜ ଗୋଟିଏ ହେଲେ ବି ଶିକ୍ଷକ ତଥା ଛାତ୍ର ପାଖାପାଖି ଥିବା ଦୁଇ ମୁଣ୍ଡ ।

ଶିକ୍ଷକମାନେ କେବେ ଓ କିପରି ଭାବରେ ଛାତ୍ରମାନଙ୍କୁ ଭାଗ ନ ଦେଇ ଅମୃତଫଳ ପୂରାପୂରି ନିଜେ ଖାଇଯାଇଥିଲେ କେଜାଣି, କେତେକ ସ୍ଥାନର ଛାତ୍ରସମାଜ ଆଜି ତାର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ନିଜେ ବିଷଫଳ ଖାଇବାକୁ ବାହାରିପଡ଼ିଛି । ପରୀକ୍ଷାରେ ଅସଦୁପାୟ ଅବଲମ୍ବନ ହିଁ ଏହି ବିଷଫଳ ।

ପରୀକ୍ଷା ଫଳରେ ଶ୍ରେଣୀବିଭାଗ ଗୋଟିଏ ଧରାବନ୍ଧା ନିୟମ । ଡିଗ୍ରୀ ଓ ଡିଗ୍ରୀରେ ହାସଲ କରିଥିବା ପ୍ରଥମ ଶ୍ରେଣୀ, ଦ୍ୱିତୀୟ ଶ୍ରେଣୀ କିମ୍ବା ତୃତୀୟ ଶ୍ରେଣୀ ଛାତ୍ରର

ଶିକ୍ଷାଗତ ଯୋଗ୍ୟତା ତଥା ମାନ ଇଙ୍ଗିତ କରିଥାଏ । ପରୀକ୍ଷାରେ ଅସତ୍ ଉପାୟ ଅବଲମ୍ବନ ଫଳରେ ଏ ସବୁର ଓଲଟପାଲଟ ହୋଇଯାଏ ଓ ସମୟ ସମୟରେ ଯୋଗ୍ୟ ଛାତ୍ରର ପ୍ରଥମ ଶ୍ରେଣୀକୁ କୌଣସି ଅଯୋଗ୍ୟ ଛାତ୍ର ଛଡ଼ାଇନିଏ । ବେଳେବେଳେ ଡିଗ୍ରୀ ପାଇବା ପାଇଁ ଅନୁପଯୁକ୍ତ ଛାତ୍ର ଏପରି ଅସଦ୍ ଉପାୟରେ ଡିଗ୍ରୀରେ ପ୍ରଥମ ଶ୍ରେଣୀ ପାଇ ଉଚ୍ଚସ୍ଥାନ ଅଧିକାର କରିଥିବା ଯୋଗୁ ଶିକ୍ଷକଙ୍କ ସ୍ଥାନ ପୂରଣ କରିବା ପାଇଁ ମଧ୍ୟ ବିବେଚିତ ହୁଅନ୍ତି ।

କପି କରୁଥିବା ଛାତ୍ର-ଶିକ୍ଷକ-ସମାଜକୁ, ଶିକ୍ଷାନୁଷ୍ଠାନକୁ ତଥା ବିଶ୍ୱବିଦ୍ୟାଳୟକୁ ଠକୁଛି ବୋଲି ଭାବୁଥିଲେ ମଧ୍ୟ ପ୍ରକୃତରେ ତା' ନିଜ ସାଙ୍ଗସାଥୀ ଓ ସହପାଠୀମାନଙ୍କୁ ହିଁ ଠକେ ଓ ସେମାନଙ୍କ ନ୍ୟାଯ୍ୟ ପ୍ରାପ୍ୟରୁ ସେମାନଙ୍କୁ ବଞ୍ଚିତ କରି ନିଜେ ଅନ୍ୟାୟ ଭାବରେ ତାହା ଆତ୍ମସାତ୍ କରେ ।

ଯଦି ଛାତ୍ର-ସମାଜ ଏ ବିଷଫଳ ଖାଇବାର ବିଷମୟ ପରିଣତି ସମ୍ବନ୍ଧରେ ନିଜେ ସଚେତନ ନହୁଏ, ତେବେ ଶିକ୍ଷକ ଓ ଛାତ୍ର ଏହି ଦୁଇମୁଣ୍ଡସହ ଶିକ୍ଷାନୁଷ୍ଠାନ ଭାରଣ୍ଡ ପକ୍ଷୀଟି ଅଚିରେ ଆଖି ବୁଜିଦେବ ।

# ମଣିଷର ପଥ

ମଣିଷର ସୃଷ୍ଟି ଠିକ୍ କେବେ ହେଲା ଏବଂ କିପରି ଭାବରେ ହେଲା, ସେ କଥା ନିଶ୍ଚିତଭାବେ କହିବା ସହଜ ନୁହେଁ। ସେ ସମ୍ବନ୍ଧରେ ନାନା ଋଷି ନାନା ମତ ଦିଅନ୍ତି। ଭକ୍ତକବି ମଧୁସୂଦନଙ୍କ ଭାଷାରେ କେବଳ ଗଗନ ହିଁ ସେ ସୃଷ୍ଟି ପ୍ରକ୍ରିୟାର ସାକ୍ଷୀ; କିନ୍ତୁ ସେ ସାକ୍ଷୀ ନିଜେ ଖୋଲାଖୋଲି କିଛି ପ୍ରକାଶ କରେନି, ସେ ମୂକ।

ବିବର୍ତ୍ତନବାଦର ପ୍ରବର୍ତ୍ତକ ଡାରଓ୍ୱିନ୍‌ଙ୍କ ମତ ଯେ ସୃଷ୍ଟିର କ୍ରମବିକାଶ ଘଟିଛି ଏବଂ ସେହି କ୍ରମବିକାଶର ଶେଷ ପରିଣତି ସ୍ୱରୂପ ଦେଖାଦେଇଛି ମଣିଷ। ଋଷି ଅରବିନ୍ଦ ଏ ସମ୍ବନ୍ଧରେ ଆହୁରି ପାଦେ ଆଗେଇଯାଇ କହନ୍ତି ଯେ ଏ କ୍ରମବିକାଶ ଆହୁରି ଆଗେଇଯିବ ଏବଂ ପରିଶେଷରେ ମଣିଷ ଅତିମାନସର ଅଧିକାରୀ ହୋଇ ହେବ ଅତିମାନବ, ଦେବତା।

'ଗୀତଗୋବିନ୍ଦ'ର ରଚୟିତା ବୈଷ୍ଣବ କବି ଜୟଦେବ ମଧ ତାଙ୍କ ଦଶ ଅବତାର ବର୍ଣ୍ଣନାରେ ପ୍ରାଣୀର କ୍ରମବିକାଶର ହିଁ ସୂଚନା ଦେଇଛନ୍ତି। ସେ କହନ୍ତି ଯେ ଧରଣୀ ଯେତେବେଳେ ପ୍ରଳୟ ପ୍ରୟୋଧିଜଳେ ପରିପୂର୍ଣ୍ଣ, ଭଗବାନ ଦେଖାଦିଅନ୍ତି ମୀନରୂପରେ। ଧୀରେ ଧୀରେ ସ୍ଥଳଭାଗ ଦେଖାଦିଏ। ଭଗବାନ ଏଥର ଜଳ ଓ ସ୍ଥଳରେ ବିଚରଣ କରିପାରୁଥିବା କଚ୍ଛପରୂପରେ ନିଜକୁ ପ୍ରକାଶ କରିସାରିଲା ପରେ କର୍ଦ୍ଦମଯୁକ୍ତ ସ୍ଥଳରେ ରହୁଥିବା ଶୂକରର ରୂପ ଧାରଣ କରନ୍ତି। କ୍ରମବିକାଶ ଆଗେଇଯାଏ। ଭଗବାନ ଦେଖାଦିଅନ୍ତି ଅର୍ଦ୍ଧ-ମଣିଷ ଓ ଅର୍ଦ୍ଧ-ପଶୁରୂପୀ ନରସିଂହ ରୂପରେ। ତା'ପରେ ଛୋଟ ବାମନ ଶରୀରର ଆବିର୍ଭାବ ହୁଏ ଏବଂ ପରେ ପରେ ଦେଖାଦିଅନ୍ତି କ୍ଷତ୍ରିୟ-ରୁଧିରରେ ଧରଣୀକୁ ସିକ୍ତ କରିଦେଇଥିବା କୁଠାରଧାରୀ ପରଶୁରାମ – ପୂର୍ଣ୍ଣମାନବ; କିନ୍ତୁ ହିଂସ୍ରତାର ଜ୍ୱଳନ୍ତ ପ୍ରତିମୂର୍ତ୍ତି। ବିକାଶର ପୂର୍ଣ୍ଣତାପ୍ରାପ୍ତି ହୁଏ କମନୀୟରୂପୀ ଭଗବାନ ଶ୍ରୀରାମଙ୍କ ମାନବ ଶରୀରରେ। ମଣିଷ ସେତେବେଳେ ସୃଷ୍ଟିର ଶିଖରଦେଶରେ ପହଞ୍ଚିଯାଏ।

ଶ୍ରୀ ଜୟଦେବଙ୍କ ବର୍ଣ୍ଣନାରୁ ମନେହୁଏ ଯେ ସେଠାରୁ ମଣିଷର ସ୍ଖଳନ ଆରମ୍ଭ ହୁଏ। ଶ୍ରୀରାମଙ୍କ ଅବତାର ପରେ କବି ଶ୍ରୀକୃଷ୍ଣଙ୍କୁ ଅବତାର ରୂପରେ ଗ୍ରହଣ ନ କରି ବଳରାମଙ୍କୁ ଅବତାର ବୋଲି ନେଇଛନ୍ତି। ଏହି ଅବତାରର ଶେଷ ପାଦରେ କାମ-

କ୍ରୋଧ-ଲୋଭ-ମୋହ-ମଦ-ମାତ୍ସର୍ଯ୍ୟର ବୁଜୁଳା ଧରି କବି ଭୂପୃଷ୍ଠରେ ଅବତରଣ କରେ। ସଦୟ-ହୃଦୟ ବୁଦ୍ଧ ଦେଖାଦିଅନ୍ତି ମଣିଷକୁ ପୁଣି ଥରେ ତା'ର ଦେବତ୍ୱର ଆସନରେ ପ୍ରତିଷ୍ଠିତ କରିବା ପାଇଁ; କିନ୍ତୁ ମଣିଷ ଶେଷରେ ମ୍ଳେଚ୍ଛ ପାଲଟିଯାଏ। ଏହି ମ୍ଳେଚ୍ଛନିବହର ନିଧନ ଉଦ୍ଦେଶ୍ୟରେ ଧୂମକେତୁର କରାଳ ରୂପରେ କରବାଳଧାରୀ ଭଗବାନ ଆବିର୍ଭୂତ ହୁଅନ୍ତି ତାଙ୍କ କଲ୍‌କିଅବତାରରେ। ଧରଣୀ ପୁଣି ଥରେ ପ୍ରଳୟ-ପୟୋଧିଜଳେ ନିମଗ୍ନ ହୋଇଯାଏ।

ଡାରୱିନ୍-ଅରବିନ୍ଦଙ୍କ କ୍ରମବିକାଶ ତତ୍ତ୍ୱ ଓ ଜୟଦେବଙ୍କ ତତ୍ତ୍ୱ ଆରମ୍ଭରେ ସମାନ ଜଣାପଡୁଥିଲେ ହେଁ ପରିଣତିରେ ସମ୍ପୂର୍ଣ୍ଣ ଓଲଟା। ଗୋଟିକରେ ମନୁଷ୍ୟ ସମାଜର ଦେବତ୍ୱପ୍ରାପ୍ତିର ଇଙ୍ଗିତ ଥିଲାବେଳେ ଅନ୍ୟଟିରେ ମନୁଷ୍ୟର ପତନ ଏବଂ ମ୍ଳେଚ୍ଛତ୍ୱରେ ତାର ସମାଧିର ସୂଚନା ମିଳେ।

ଭାରତୀୟ ସଂସ୍କୃତିର ପରିପ୍ରେକ୍ଷୀରେ ଡାରୱିନ୍‌ଙ୍କ କ୍ରମବିକାଶ ତତ୍ତ୍ୱ ଅପେକ୍ଷା ଜୟଦେବଙ୍କ ତତ୍ତ୍ୱ ହିଁ ଅଧିକ ଯୁକ୍ତିଯୁକ୍ତ ବୋଲି ମନେହୁଏ। ଡାରୱିନ୍ ତାଙ୍କ କ୍ରମବିକାଶରେ ସେହି ଅଜଣା ଉପାଦାନ ଭଗବାନଙ୍କୁ କୌଣସି ସ୍ଥାନ ଦେଇନାହାନ୍ତି; କିନ୍ତୁ ପ୍ରକୃତିରେ ଜୀବନର ଆରମ୍ଭ କିପରି ହେଲା ସେ ସମ୍ବନ୍ଧରେ ନୀରବ ରହିଯାଇଛନ୍ତି। ଆଜି ମଧ ବୈଜ୍ଞାନିକମାନେ ସେ ସମ୍ବନ୍ଧରେ ନୀରବ। ଏପରିକି ପ୍ରକୃତିର ଆରମ୍ଭ କଥା ମଧ ସେମାନେ ନକହି ତାର ସ୍ଥିତିକୁ ହିଁ ଗ୍ରହଣ କରିନିଅନ୍ତି ଓ ତାର ସମ୍ପ୍ରସାରଣ ସମ୍ବନ୍ଧରେ ହିଁ ମତ ବ୍ୟକ୍ତ କରନ୍ତି। ଭାରତୀୟ ସଂସ୍କୃତି କିନ୍ତୁ କହେ ଯେ ପ୍ରକୃତି ଗୁଣ ଓ ବିକାରର ସମଷ୍ଟିଗତ ଆଧାର ଏବଂ ପୁରୁଷ ଜୀବନର ଉତ୍ସ। ଯୁକ୍ତ ଓ ବିଯୁକ୍ତ ତଡ଼ିତ୍‌ଶକ୍ତି ପରି ଏ ଦୁଇ ବିଭିନ୍ନ। ସ୍ୱାଧୀନ ସ୍ଥିତି ଥାଇ ମଧ ପରସ୍ପର ପରସ୍ପରର ପରିପୂରକ। ପୁରୁଷ ବିନା ପ୍ରକୃତି ଯେପରି ଜଡ଼, ପ୍ରକୃତି ବିନା ପୁରୁଷ ସେପରି ଏକ ଆକାରବିହୀନ ଚେତନା-ଆଧାର-ବିହୀନ ଶକ୍ତି। ପ୍ରକୃତିର ଗୁଣ ଓ ବିକାର ସାହାଯ୍ୟରେ ହିଁ ପୁରୁଷକୁ କଳ୍ପନା କରାଯାଇପାରେ। ପ୍ରକୃତି ମାଧମ ନ ହେଲେ ପୁରୁଷ ହୁଏ କଳ୍ପନାର ଅତୀତ। ପ୍ରକୃତି ଓ ପୁରୁଷ ଯେତେବେଳେ ଏକତ୍ର ହୁଅନ୍ତି, ପ୍ରାଣର ସଞ୍ଚାର ହୁଏ; ପ୍ରାଣୀ ଜନ୍ମ ନିଏ। ପ୍ରାଣୀର ଶରୀର ଭିତରେ ଆବଦ୍ଧ ପୁରୁଷକୁ ଭାରତୀୟ ସଂସ୍କୃତି ଜୀବାତ୍ମା ବୋଲି କହେ। ଜୀବାତ୍ମା ତେଣୁ କୋଷବଦ୍ଧ ଆତ୍ମା। କୋଷମୁକ୍ତ ହେଲେ ସେ ପରମାତ୍ମା-ପରମ, ଚେତନା-ପରମ ଶକ୍ତି ସଙ୍ଗରେ ମିଳିତ ହୋଇଯାଏ। ଜୀବାତ୍ମା ଓ ପରମାତ୍ମା ଭିତରେ ତେଣୁ ଗୁଣାତ୍ମକ ପ୍ରଭେଦ ନାହିଁ। ଜୟଦେବଙ୍କ ଅବତାରମାନଙ୍କୁ ପ୍ରାଣୀର କ୍ରମବିକାଶରେ ପ୍ରାଣୀର ପ୍ରତୀକ ବୋଲି ଧରିନେଲେ ତେଣୁ କୌଣସି ଅନ୍ୟାୟ ହେବନାହିଁ।

ଏଠାରେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉଠେ – ପ୍ରକୃତି ଓ ପୁରୁଷର ମିଳନରେ ଯଦି ପ୍ରାଣର ସଞ୍ଚାର ହୁଏ, ପ୍ରାଣୀର ଜନ୍ମ ହୁଏ, ତେବେ ସେ ପ୍ରାଣୀର କ୍ରମବିକାଶ ହୁଏ କାହିଁକି ଓ କିପରି ? ପୁରୁଷ ତ ନିଜେ ଏକ ଅପରିବର୍ତ୍ତନୀୟ ଉପାଦାନ, ତେବେ କଣ ପ୍ରକୃତିର କ୍ରମବିକାଶ ହୁଏ ?

ପ୍ରକୃତି ଗୁଣ ଓ ବିକାର ସମୂହର ଗନ୍ତାଘର, ଆଧାରର କଞ୍ଚାମାଲ । ମାଟିରୁ ଯେପରି ଭିନ୍ନ ଭିନ୍ନ ଆକାର ଓ ପ୍ରକାରର ସୋରେଇ, ହାଣ୍ଡି ପ୍ରଭୃତି ତିଆରି ହୁଏ, ପ୍ରକୃତିରୁ ସେପରି ଭିନ୍ନ ଭିନ୍ନ ଆକାର-ପ୍ରକାରର ଆଧାର ସୃଷ୍ଟି ହୋଇ ଚାଲିଥିବ । ତେବେ ସେ ଆଧାରର ରୂପରେଖ କିଏ ଦିଏ ? ତାର ଆକାର ପ୍ରକାର କିଏ ନିର୍ଦ୍ଧାରଣ କରେ ? ଜୀବାତ୍ମାକୁ କୌଣସି କୌଣସି ନିର୍ଦ୍ଦିଷ୍ଟ ଆକାରକୁ ଆକୃଷ୍ଟ କରେ କିଏ ? ମନେହୁଏ ଯେ ଏହି ଅଜଣାର ହିଁ କ୍ରମବିକାଶ ଘଟୁଥିବ । ସେହି ଅଜଣା ହିଁ ଜୀବର ମନ, ବୁଦ୍ଧି, ବିବେକ, ବାସନାର ଏକ ସମଷ୍ଟି ପରି ଜଣାପଡ଼େ ।

ଦିନ ଥିଲା ଏହି ପୃଥିବୀପୃଷ୍ଠରେ ଡାଇନୋସେର ପରି ବିଶାଳକାୟ ଜୀବ ସବୁ ବିଚରଣ କରୁଥିଲେ । ଏହି ପ୍ରାଣୀମାନଙ୍କର କଙ୍କାଳ ଆଜି ମଧ୍ୟ ଦେଖିବାକୁ ମିଳେ । ତେଣୁ ସେମାନଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ସନ୍ଦିହାନ ହେବାର କୌଣସି କାରଣ ନାହିଁ । ଏହି ବିରାଟକାୟ ପ୍ରାଣୀଙ୍କ ମସ୍ତିଷ୍କ କିନ୍ତୁ ଥିଲା ନିହାତି ଛୋଟ; ଅତି ବଡ଼ ଶରୀର ଥିଲେ ମଧ୍ୟ ବୁଦ୍ଧି କମ୍ । ତେଣୁ ଶେଷରେ ସେମାନଙ୍କର ବିଲୟ ଘଟିଲା । ମନେହୁଏ ଆଜି ପ୍ରାଣୀର ଶରୀର ବଡ଼ ହେଉନଥିଲେ ମଧ୍ୟ ତାର ମସ୍ତିଷ୍କ ବଡ଼ ହୋଇ ଚାଲିଛି – ବୁଦ୍ଧି ତୀକ୍ଷ୍ଣରୁ ତୀକ୍ଷ୍ଣତର ହେଉଛି – ମଣିଷ ଆକାଶକୁ କ୍ଷେପିଯାଉଛି – ଚନ୍ଦ୍ରପୃଷ୍ଠରେ ଓହ୍ଲାଇଲା ପରେ ଗ୍ରହ ମହାଗ୍ରହମାନଙ୍କରେ ଓହ୍ଲାଇବାକୁ ଚେଷ୍ଟା କରୁଛି । କିନ୍ତୁ ତାର ମନ ? ତାର ବିବେକ ? ତାର ହୃଦୟ ?

ଏଇଠି ହିଁ ସବୁ ଗୋଳମାଳ । ରାବଣ କ'ଣ ତାର ଶକ୍ତି ଓ ବୁଦ୍ଧିବଳରେ ଏମିତି ଆକାଶକୁ କ୍ଷେପି ଯାଉ ନଥିଲା ? କିନ୍ତୁ ତାର ପରିଣତି ହେଲା କ'ଣ ?

ମନେହୁଏ ଯେ ମଣିଷର ମନ ଓ ହୃଦୟର ବିକାଶ ନ ଘଟିଲେ, ତାର ପରିଣତି ମଧ୍ୟ ରାବଣର ପରିଣତି ପରି ହେବ ।

ଆଖି ଥାଇ ମଧ୍ୟ ମଣିଷ ଆଜି ଅନ୍ଧ । ସେ ଦେଖି ମଧ୍ୟ କିଛି ଦେଖିପାରୁନି – ତାହା ହିଁ ଆଜିର ବିଡ଼ମ୍ବନା ।

ଏ ସମ୍ବନ୍ଧରେ ଗୋଟିଏ ଜଣାଶୁଣା ଗପ ମନେପଡ଼େ ।

ରାତ୍ରର ଶେଷ ପ୍ରହର । ନାଇଟ୍ କ୍ଲବ୍‌ର ଟେବୁଲ୍ ଚୌକି ସବୁ ସମ୍ପୂର୍ଣ୍ଣ ଅସ୍ତବ୍ୟସ୍ତ । ପ୍ରାୟ ସବୁ ଗ୍ରାହକ ଗୋଟିଏ ଗୋଟିଏ ହୋଇ କୌଣସି ମତେ ଚାଲିଗଲେଣି । ଜଣାଶୁଣା କେହି କେହି ଆସି କାହା କାହାକୁ ତାଙ୍କ ଘରମାନଙ୍କୁ କଢ଼ାଇ

ନେଇଯାଉଛନ୍ତି । ଦୁଇ କୋଣରେ ଦୁଇଜଣ ଏବେ ମଧ୍ୟ ପଡ଼ିରହିଛନ୍ତି; ପ୍ରାୟ ବେହୋସ । ଜଣେ ଯୁବକ – ଅନ୍ୟ ଜଣେ ପ୍ରୌଢ଼ । ମେନେଜର ସେମାନଙ୍କୁ ଜଗି ରହୁ ରହୁ ନିଜେ ମଧ୍ୟ ଢୁଳେଇପଡ଼ିଲାଣି । ଟେବୁଲ୍ ବୟ୍ ସବୁ କେତେବେଳୁ ବିଦାୟ ନେଇସାରିଛନ୍ତି । ଯୁବକଟି କୌଣସିମତେ ମୁଣ୍ଡ ଟେକି ଗିଲାସେ ପାଣି ମାଗିଲା ।

ଏତେ ରାତିରେ ପାଣି ଅବା ଦେବ କିଏ ? ବିରକ୍ତିରେ ମେତେଜର ମୁଣ୍ଡ ଟେକି ପୁଣି ଥରେ ଘୁମେଇ ପଡ଼ିଲେ । ପ୍ରୌଢ଼ କହୁଣିରେ ଭରାଦେଇ ମୁଣ୍ଡ ଉଠାଇ ଅସ୍ପଷ୍ଟ ସ୍ୱରରେ କହିଲେ, 'ଏ...ଏ...ଏମ୍...ତି ପାଟି କରୁଛୁ କାହିଁକି ? ଚୁପ୍ କର ।'

ଯୁବକର ଲାଲ ଆଖି ଆଉ ଟିକିଏ ଲାଲ ହୋଇଗଲା । ପାଟି ଅଠାଳିଆ ଧରିଯାଇଥିଲା । ରାଗରେ ସେ ଚିତ୍କାର କରିବାକୁ ଚାହିଁଲା; କିନ୍ତୁ ପାରିଲାନି । 'ଆଃ...ବବେ, ତେରା ବାପ୍‌ର କଅଣ ଗଲା' କହି ପ୍ରୌଢ଼ଙ୍କ ପାଖକୁ ଢଳିଢଳି ଆଗେଇଆସିଲା । ପାଖରେ କିନ୍ତୁ ଅଟକିଗଲା, ଆଙ୍ଗୁଠି ଦେଖାଇ କହିଲା, 'ତୁମକୁ ମୁଁ କେଉଁଠି ଦେଖିଛି ।' ପ୍ରୌଢ଼ ବି ଭଲକରି ଆଖି ଫୋକସ୍ କଲେ, ଟିକିଏ ନରମ ଗଳାରେ ଥଥମେଇ କହିଲେ, 'ହଁ, ତମର ମୁହଁ ବି ମତେ ଚିହ୍ନା ଲାଗୁଛି ।'

ଯୁବକ ପଚାରିଲା – 'ଆପଣଙ୍କ ସହର ?'

ପ୍ରୌଢ଼ ଉତ୍ତର ଦେଲେ – 'ସରୋଜପାଟଣା ।'

ଯୁବକ – 'କେଉଁ ରୋଡ୍ ?'

ପ୍ରୌଢ଼ –'ଭୋକରାଜ ଷ୍ଟ୍ରୀଟ୍ ।'

ଯୁବକ ଆଶ୍ଚର୍ଯ୍ୟ ହେଲା । ସ୍ୱଗତୋକ୍ତି କଲା–'ଆରେ, ମୋର ନିଜ ଷ୍ଟ୍ରୀଟ୍ !' ପଚାରିଲା – 'ଗଳି ?'

ପ୍ରୌଢ଼ –'ବାମଦେବ ଲେନ୍ ।'

ଯୁବକ ଅଧିକ ଆଶ୍ଚର୍ଯ୍ୟ ହୋଇ ପଚାରିଲା – 'ଘର ନମ୍ବର ?'

– '୩୦୪ ।'

– 'ଆଚ୍ଛା !! ମୋର ଘରର ବି ତ ସେଇ ନମ୍ବର । ଆପଣଙ୍କ ନାମ ?'

ପ୍ରୌଢ଼ କହିଲେ – 'କାହିଁକି ? ଲକ୍ଷ୍ମୀନାରାୟଣ...'

ଯୁବକ – 'ଲକ୍ଷ୍ମୀନାରାୟଣ ? ପାତ୍ର ନୁହନ୍ତି ତ ?'

ପ୍ରୌଢ଼ – 'ହଁ ପାତ୍ର...କେମିତି ଜାଣିଲ ?'

ଯୁବକ – 'ଆରେ, ତା'ହେଲେ ତ ଆପଣ ମୋ ବାପା !'

ପ୍ରୌଢ଼ – 'ଏଁ, ତୁ କଣ ତେବେ ଜଗତରାମ ? ଏଠି କଣ କରୁଛୁ ?'

ଯୁବକ – 'ଆପଣଙ୍କୁ ଘରକୁ ନେବାକୁ ଆସିଥିଲି ।'

ଏ ତ ଆଜିର ସଂସାର ! ଦେଖୁଥିଲେ ମଧ ମଣିଷ ଭଲ ମନ୍ଦ ଚିହ୍ନିବ କେମିତି ?

ଏ ସବୁରୁ ମନେହୁଏ ଯେ, ମଣିଷ ଆଜି ଯଦି ନିଜ ଆଖି ନ ଖୋଲେ, ନିଜ ମନ ଓ ହୃଦୟର ବିକାଶ ସାଧନ ନକରେ, ତେବେ ସେ ଶ୍ରୀ ଅରବିନ୍ଦଙ୍କ ଅତିମାନସର ଅଧିକାରୀ ନ ହୋଇ ଶ୍ରୀ ଜୟଦେବଙ୍କ ଭବିଷ୍ୟତବାଣୀ ଅନୁସାରେ ମ୍ଳେଚ୍ଛତ୍ୱରେ ହିଁ ଶେଷ ସମାଧି ହେବ ।

ମଣିଷ ତାର ଯାତ୍ରାପଥରେ ଗଲାବେଳେ ଆଜି ଗୋଟିଏ ଛକରେ ଆସି ପହଞ୍ଚିଛି । ଗୋଟିଏ ଆଡ଼ିକି ଶଙ୍କର, ବିବେକାନନ୍ଦ, ଶିବାନନ୍ଦ, ଅରବିନ୍ଦ ଯାଇଥିବା ଚଲାବାଟ – ସଙ୍କୀର୍ଣ୍ଣ, ବନ୍ଧୁର, କଣ୍ଟକିତ । ସେ ଦୁର୍ଗମ ପଥରେ ଗଲେ ଆଜି ବି କୁଆଡ଼େ କେଉଁଠି ଶୁଣିବାକୁ ମିଳେ ଜଣେ ଅନ୍ଧ କବି ଦରାଣ୍ଡି ଦରାଣ୍ଡି ଯିବା ବେଳେ ଗାଇଥିବା ତାଙ୍କ ଗୀତର ପ୍ରତିଧ୍ୱନି – 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।' ତା'ପର ଉଠାଣିରେ ଶୁଭେ – 'ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖ ଭାକ୍ ଭବେତ୍ ।'

ଅନ୍ୟ ଦିଗରେ ଏକ ସୁବିସ୍ତୃତ ମସୃଣ ରାଜପଥ – ଦର୍ପୀ ଦଶାନନର ପୁଷ୍ପକ-ବିମାନ କୁଆଡ଼େ ଦିନେ ଯାଇଥିଲା ସେ ଦାଣ୍ଡରେ । ଆଜି ନାନା ରକମର ଯାନବାହନ ସବୁ ସେ ପଥରେ ଅଣନିଃଶ୍ୱାସୀ ହୋଇ ଛୁଟିଚାଲିଛି । 'ଏ ବାଟ କେଉଁ ଆଡ଼କୁ ଯାଇଛି – ବୋଲି କୌଣସି ବାଟୋଇ ପଚାରିଦେଲେ ଉତ୍ତର ଦେବାପାଇଁ ମଧ କାହାରି ବେଳ ନାହିଁ । ଟିକିଏ ଦୂରରେ ପୋଷ୍ଟରଟିଏ କହୁଛି, 'ଦି ମିନିଟ ୟୁ ସେଭ୍ ମେ ବି ୟୋର୍ ଲାଷ୍ଟ ।'

ପ୍ରତ୍ୟେକ ମଣିଷକୁ ଆଜି ତାର ନିଜ ବାଟ ବାଛିନେବାକୁ ପଡ଼ିବ ।



# ଫର୍ ଫର୍ ଉଡ଼େ

ଶ୍ରୀ ଭୁବନେଶ୍ୱର ବେହେରା

ପ୍ରକାଶକ :

ଗ୍ରନ୍ଥମନ୍ଦିର, କଟକ - ୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୦

## ସୂଚୀ

# ଫର୍ ଫର୍ ଉଡ଼େ ପଣତକାନି

ରାତ୍ରିର ଗହୀରିଆ ଅନ୍ଧାରକୁ ଚହଲାଇଦେଇ କୁକୁଡ଼ାଟିଏ ଡାକିଲା 'କଅକ୍‌ରେ-କକ୍।' କେମିତି ଗୋଟାଏ ଅଦ୍ଭୁତିଆ ସେଲ୍‌କା ସ୍ୱରର ସେ ଡାକ। ବହୁ ଆରମ୍ଭେ ଲଘୁକ୍ରିୟା ପରି ଡାକର ଆରମ୍ଭଟି ଥିଲା ଯଦିଓ ବେଶ୍ ଲମ୍ବା ଆଉ ଜାକ୍‌ଜମକିଆ, ଶେଷଭାଗଟି ଯେମିତି ଭାବରେ ମିଳେଇଗଲା। ମନେହେଲା 'କଅକ୍-ରେ' କହିଦେଲା ପରେ କୁକୁଡ଼ାଟି ତାର ଭୁଲ ବୁଝିପାରି ଆଉ ଆଗକୁ କିଛି ଡାକିବାକୁ ଚାହିଁନି; କିନ୍ତୁ ପୂରା କରି ନ ଦେଲେ କାଳେ କେହି କଣ ସବୁ କହିବସିବେ ସେ ଡରରେ ଡାକଟିକୁ କୌଣସିମତେ ଶେଷ କରିଦେଇ ନିଶ୍ଚିନ୍ତ ହୋଇଯାଇଛି।

ସେତିକି ଡାକ କିନ୍ତୁ ଭଏଁରୀ ପାଇଁ ଥିଲା ଯଥେଷ୍ଟ। ସେ ତା ପତଳା ନିଦରୁ ଚମକି ଉଠି ଟୁଲୁକୁ ଜୋର୍‌ରେ ହଲାଇଦେଇ କହିଲା - 'ଏ ଉଠ୍। ସକାଳ ହେଇଗଲା - ବସ୍ ଆସିଯିବ।'

ବିକଳିଆ ଝୁଲା ଠିକିରି ଖଟରେ କରିଆ ଖଣ୍ଡିଏ ବିଛାଇଦେଇ ଶୋଇଥିଲା ଟୁଲୁ। ଆଖି ଖୋଲି ବାହାରର ଅନ୍ଧାର ଆଡ଼କୁ ଟିକିଏ ଅନାଇଁ ଦେଇ କଡ଼ ଲେଉଟାଇ ସେ କହିଲା 'ବାଉଳା ହେଲୁ! ଏବେ ତ ଅଧରାତି ହେଇଛି। କେଉଁ ଗୋଟାଏ କୁକୁଡ଼ା ନିଦବାଉଳାରେ ତାର ପହିଲି ଡାକ ଡାକିଦେଲା ଯେ ତୁ ଛାନିଆ ହେଉଛୁ। ଗୋବିନ୍ଦର ସେ କଣା କୁକୁଡ଼ା ହୋଇଥିବ। ଗୋବିନ୍ଦ ଯେମିତି କି ତାର ସେ କୁକୁଡ଼ା ବି ସେମିତି। ସକାଳ ହୋଇନି - ଶୋଇଯା।'

ଭଏଁରୀ ଟିକିଏ ବିରକ୍ତ ହେଲା। ତଳେ ବିଛାହୋଇଥିବା ତା ମଇଳା କୋତରା କନ୍ଥାକୁ ଗୋଟାଇ ନେଉ ନେଉ ଗୁଣୁଗୁଣେଇ କହିଲା, 'ଶୋଇଥା। ବସ୍ ବାହାରିଗଲେ ଭବାନୀପାଟଣା ଚାଲି ଚାଲି ଯିବୁ। ମୋର ଗୋଡ଼ ବଥାଇବ ନା ତୋ ଗୋଡ଼? କେତେବେଳେ ସାତ ବାଜେ ଯେ ସେତେବେଳକୁ ତ ବସ୍ ରତନଗୁଡ଼ା ପହଞ୍ଚିଯାଏ। ସାତ କଣ ତା ବେଳରେ ନ ବାଜି ତୋ ପାଇଁ ଜଗିବସିଥିବ? ଆଉ ରତନଗୁଡ଼ା ବି କଅଣ ଏଇଠି ଅଛି? ଧାପେ ବାଟ। ଗଡ଼ିକାଠ ପରି ପଡ଼ିଥା। ଅଳସୁଆ ବୋଲି ତ କେହି ତୋତେ ହଲିଆ ରଖନ୍ତିନି।

ପାଣିମାଠିଆର ତଳୁଆ ପାଣିରୁ ଦି'ଅଞ୍ଜୁଳା ଆଖିରେ ଛାଟିଦେଇ ମୁହଁ ପୋଛିଦେଲା ଭଏଁରୀ। ଛୋଟ ମାଟି ଆଟିକାରେ ମାଠିଆରୁ ପାଣି ଟିକିଏ ଢ଼ାଳି ମେଞ୍ଚାଏ

ଗୋବର ଗୋଳି ଦାଣ୍ଡରେ ଛେରା ଦେଉଁ ଦେଉଁ ସେ କେତେ କଥା ଭାବି ଯାଉଥିଲା। ନୂଆ ଶାଢ଼ି ଖଣ୍ଡିଏ ପିନ୍ଧିବା ବୋଧହୁଏ ତା ଭାଗ୍ୟରେ ନାହିଁ। ପଦ୍ମ ଘୁଞ୍ଚି ଘୁଞ୍ଚି ଗଲା ପରି ସେ ଯେମିତି ନୂଆ ଶାଢ଼ି ଆଡ଼ିକି ହାତ ବଢ଼ାଇଛି, ଶାଢ଼ି ଘୁଞ୍ଚି ଘୁଞ୍ଚି ଯାଉଛି। କିନ୍ତୁ ଖାଲି ଟୁଲୁକୁ ଦୋଷ ଦେଇ ଲାଭ କଣ; ତା'ର ବି ଦୋଷ। ସେଦିନ ହରି ଭୁଲିଆ ଯେଉଁ ଶାଢ଼ି ଆଣିଥିଲା ସେଇଟା କିଣିଦେଇଥିଲେ ଯାଇଥାଆନ୍ତା। କେଡ଼େ ମୋଟା ଥିଲା ସେ ଶାଢ଼ି - ପିନ୍ଧିଥିଲେ ଦୁଇ ବର୍ଷରୁ କମ୍ ଯାଇନଥାନ୍ତା। ଲମ୍ବା ବି ଥିଲା ଆଠହାତ, ଛାତି ଘୋଡ଼ାଇଲା ପରେ ବି ଅଣ୍ଟାରେ କାନି ସହଜରେ ଭିଡ଼ିହୁଅନ୍ତା। ଚୌଡ଼ା ତ ଗୋଡ଼ର ପେଣ୍ଠା ଢ଼େଙ୍କି ଯାଉଥିଲା। ଆଉ କେଡ଼େ ସୁନ୍ଦର ହାତେ ଚୌଡ଼ାର ମୁହଁ - ଦେହଯାକ ହଳଦିଆ ଫୁଲବୁଟି। ଖାଲି କଳା ରଙ୍ଗରେ ନାଲି ଧଡ଼ି ବୋଲି ନାପସନ୍ଦ କଲା ଟୁଲୁ। କହିଲା ତାକୁ କୁଆଡ଼େ ନାଲି ରଙ୍ଗରେ କଳା ଧଡ଼ି ଭଲମାନେ। ନାଲି ରିବନ୍ ଦି'ହାତ ହାଟରୁ ସେଦିନ କିଣି ଆଣି କହିଲା ତେଲ ହଳଦି ଜର୍ ଜର୍ କରି ମାଖି ଦେଇଥିବୁ - "ଲାଲ୍ ଶାଢ଼ି ଖଣ୍ଡେ ପିନ୍ଧିଥିବୁ, ଏ ରିବନ୍ ଖଣ୍ଡିକ ତୋ ପଛପାଖ ବେଣୀରେ ଗୁନ୍ଥିଦେଇ ଚକାବେଣୀ କରିଥିବୁ, ମଝିରେ ପାରିଦେଇଥିବୁ ସେ ରୂପା ପାନିଆ ଆଉ ଆଡ଼ିକି ଖୋସିଦେଇଥିବୁ ଦୁଇ ଝୁମ୍ପା କୋରେଇ ଫୁଲ। ତୋର ଅଣ୍ଟାହଲା ଚାଲି ଦେଖିଲାକ୍ଷଣି ଏ ଅଞ୍ଚଳଯାକର ଭେଣ୍ଡିଆମାନେ ମୂର୍ଚ୍ଛା ହେଇଯିବେନି ତ ମୋର ନାଁ ଟୁଲୁ ଶବର ନୁହେଁ - ମାଏ କି!"

ଅଜାଣତରେ ଭଏଁରୀ ମୁହଁରେ ଟିକିଏ ହସ ଖେଳିଗଲା। ଅଳସୁଆ ହେଲେ କ'ଣ ହେଲା, ଟୁଲୁ ସତରେ ଭାରି ରସିକ। ଆଉ ତାକୁ ସେ କେତେ ଭଲପାଏ! ଯେ-ଏ ହରି ଭୁଲିଆକୁ ବି କଣ କମ୍ ବୋଲି କହିବ? କହିଲା 'ଅଠର ଟଙ୍କା।' ମୁଁ କହିଲି ଏ କଳାଶାଢ଼ିକି ଅଠର ଟଙ୍କା! ରେବ ତ ଠିକ୍ ସେମିତି ଖଣ୍ଡିଏ ଶାଢ଼ି ହାବସ୍‌ପୁର ହାଟରୁ ୧୪ ଟଙ୍କାରେ ଆଣିଛି। 'କହିଲା ଏମିତି ଶାଢ଼ିକି ଚଉଦ ଟଙ୍କା! ତୋର ସୁନ୍ଦର ମୁହଁଦେଖି କିଏ ତୋତେ ଧରାଇଦେବ। ଛୁଇଁଲୁ ଏ ଶାଢ଼ି - କେଡ଼େ ଚିକ୍‌କଣ ଆଉ କେମିତି ବୁଣା ହେଇଛି ଦେଖିଲୁ। ଯେତିକି କାଚିବୁ ସେତିକି ମୋଟା ଆଉ ଚିକ୍‌କଣ ହେବ। କଣ ତମ ବୁଣା ଶାଢ଼ି ବୋଲି ଭାବିଛୁ? ଏଇଟା ଭୁଲିଆ ଶାଢ଼ି।' ଆଉ କହୁଛି 'ପିନ୍ଧିକରି ଦେଖ୍ ଲୋ ନନି - ତୋ ତରଳ ଛାତିରେ କେମିତି ସରଳିଯିବ ଦେଖିବୁ।' ମଲାନି ଅଲାଜୁକ ଭେଣ୍ଡା! ମୁଁ କହିଲି 'ହେଉ ପନ୍ଦର ଟଙ୍କାକୁ ଦେ।' କହିଲା - 'ସତର ଟଙ୍କାରୁ ଗୋଟିଏ ପଇସା କମ୍ କରିବିନି। ଟୁଲୁ ରାଗିଗଲା - କହିଲା - 'ହ- ନେଇଯା ତୋ ଶାଢ଼ି, ହାବସ୍‌ପୁର ହାଟରେ ଭାର ଭାର। ଦେଖିବୁ ପନ୍ଦର ଟଙ୍କାରେ ନାଲିଶାଢ଼ି ଆଣିବି ନା ନାହିଁ। କହିବୁ ଯଦି ତୋ ପାଇଁ ଖଣ୍ଡିଏ ବି ଆଣିଦେବି।'

ସାତ ଦିନ ବି ଯାଇନଥିବ ସେଇ ହରି ଭୁଲିଆ ହାବସ୍‌ପୁର ହାଟରେ ସେଇ କଳା ଶାଢ଼ିକୁ ହାଙ୍କିଲା କୋଡ଼ିଏ ଉପରେ ଏକ। କିଏ ଜଣେ ନାଲି ଶାଢ଼ି ଆଣିଥିଲା ଯେ

ସେ କୁଆଡ଼େ ଦାମ୍ କଲା କୋଡ଼ିଏ ତିନି। ଗାଁରେ ବରଂ ଶସ୍ତା ବୋଲି ଟୁଲୁ ହାଟରୁ ଫେରିଆସିଥିଲା। ଗତ କାଲି କିନ୍ତୁ ହରି ଭୁଲିଆ ପୁଣି ଆସିଥିଲା ଗାଁକୁ ଯେ ସେମିତି କଳାଶାଢ଼ି ଖଣ୍ଡିଏକୁ ଏଥର କହିଲା କୋଡ଼ିଏ ତିନ୍।

'କୋଡ଼ିଏ ତିନ୍! ଖଜା ଲିଆ ଖାଉଥାରେ ଭୁଲିଆ' - ଗୁଣୁଗୁଣେଇ କହିଥିଲା ଟୁଲୁ। 'ଭାବିଛି ଆମେ ଆଉ ଦୁନିଆଁ ଦେଖିନୁ କି ଦୁନିଆର ହାଲ୍ କିଛି ଜାଣିନୁ। ନବରଙ୍ଗପୁର ଯା - ଦେଖିବୁ ତୋର ଏ ଶାଢ଼ିକି କେହି ପଚାରିବେ ଯଦି! ଭବାନୀପାଟଣାରେ ତ ଲାଲ ଶାଢ଼ି ବି କୋଡ଼ିଏରୁ କମ୍‌ରେ ମିଳିବ। ବେଶି ହେଲେ ଏକ କମ୍ କୋଡ଼ିଏ। ବସ୍ ଭଡ଼ା ନେବ ଏଆଡୁ ଦୁଇ ତ ସେଆଡୁ ଦୁଇ - କେତେ ହେଲା ? ଏକ କମ୍ କୋଡ଼ିଏ, କୋଡ଼ିଏ, କୋଡ଼ିଏ ଏକ, କୋଡ଼ିଏ ଦୁଇ। ଆଉ ଟଙ୍କାକର ଭଏଁରୀ ପାଇଁ ସୋନୋ ପାଉଡ଼ର୍ ଆଣିବିନାଇଁ ଯେ ଏ ଭୁଲିଆକୁ ଦେବି କୋଡ଼ିଏ ତିନି।' ଟୁଲୁ ଠିକ୍‌କଲା ପାହାନ୍ତିଆର ହିଁ ସେ ବାହାରିପଡ଼ିବ ଭବାନୀପାଟଣାକୁ। ବସ୍ ଚଢ଼ିବ, ସହର ଦେଖିବ, କେତେ ଦୋକାନ ବଜାର ବୁଲିବ....।

ହଁ... ଟୁଲୁ ପାଇଁ ଚଉଳ ଠିକ୍ କରିବାକୁ ହେବ - ମନେପକାଇଲା ଭଏଁରୀ। ସେ ତ ପୁଣି ବାଟରେ କେଉଁଠି ରାନ୍ଧି ଖାଇବ। ଆଜି ଦିଓଳି ଆଉ କାଲି ଦିଓଳି। ଟୁଲୁ କିନ୍ତୁ କହୁଥିଲା ସେ ବାଟରେ ରାନ୍ଧିପାରିବନି - ହୋଟେଲରେ ଖାଇବ। ହୋଟେଲରେ କୁଆଡ଼େ ଟଙ୍କେ ଆଉ ଆଠଅଣା ପକାଇ ଦେଲେ ଥାଳି ଭର୍ତ୍ତିକରି ଭାତ ଦେବେ ଆଉ ତା ସାଙ୍ଗରେ ଡାଲି, ତରକାରି। ଥାଳିର ଭାତ ସରିଗଲେ ମାଗିଲେ ଆଉ ଥାଳିଏ। ପେଟ ପୂରେଇ ହାକୁଟି ମାରିବା ଯାଏ ଖାଉଥାଅ - ଟଙ୍କେ ଆଉ ଆଠ ଅଣା।

ତେବେ ଥରେ ଖାଇଲେ ସିନା ଟଙ୍କେ ଆଉ ଆଠ ଅଣା। ଏମିତି ଏମିତି ଚାରିଥର ଯେ - ଭାବି ନେଲା ଭଏଁରୀ। କିନ୍ତୁ ଶେଷଥରଟା ତ ସେ ଘରେ ଖାଇବ। କାହିଁକି ସେଥିପାଇଁ ଟଙ୍କା ନେବ ? ସବୁ ମିଶିଲେ କେତେ ହେବ କେଜାଣି ? ସେତିକି ଟଙ୍କା ସେ ପେଡ଼ିରେ ଯଦି ନଥିବ! ହଠାତ୍ ତରବର ହୋଇ ଘର ଭିତରକୁ ପଶିଗଲା ଭଏଁରୀ। ପାଳବିଣ୍ଡାର ନିଆଁ ଫୁଙ୍କି ସେ କିରୋସିନି ଡ଼ିବିରି ଧରାଇଦେଲା। ଶିକାରେ ଝୁଲୁଥିବା ମାଟି ଆଟିକା ଓହ୍ଲାଇଆଣି ସେ ଭିତରୁ ବାହାରକଲା ଗୋଟାଏ ଛୋଟ ବାଉଁଶ ପେଟି। ଡିବିରି ପାଖରେ ସେ ପେଟିଟିକୁ ଥୋଇ ଗୋଟିଏ ଗୋଟିଏ କରି ଚିପୁଟା ନୋଟ୍ ସବୁ କାଢ଼ି ତାକୁ ସିଧା କରି କରି ଗଣିବସିଲା - ଦୁଇ ଆଉ ଦୁଇ ଆଙ୍ଗୁଠିରେ ମିଶାଇ ଜାଣିଲା ଚାରି, ପୁଣି ଦୁଇ, ଏକ, ପାଞ୍ଚ... କୋଡ଼ିଏ ଆଉ ପାଞ୍ଚ। ଆଉ ଆଠଣି, ଚାରଣି, ଦଶପଇସି, ପାଞ୍ଚପଇସି ସବୁ ମିଶି ଆଉ ଦୁଇଟଙ୍କା। ବାସ୍ ସେତିକି। ସେ ଅଲଗା ଅଲଗା କରି ଟଙ୍କାସବୁ ରଖିଲା। କୋଡ଼ିଏ - ଏକର ଶାଢ଼ି, ବସ୍ ଭଡ଼ା

ଦୁଇ, ଆଉ ଦୁଇ, ଆଉ ହୋଟେଲ....। ନାଇଁ ତାକୁ ଚାଉଳ ବି ସେରେ ଦେବ, ଶୁଖୁଆ କିଛି, ଦି'ଗରିଟା ବଡ଼ି, ଦି'ଗରିଟା ପିଆଜ, ଲୁଣ ଟିକିଏ, ଆଉ ମରିଚ ଦି'ଟା। ସେ ସିଲଭର୍ ଡ଼େକ୍‌ଚିରେ ସବୁଯାକ ଭର୍ତ୍ତି କରିଦେବ ଟଙ୍କା ବି - ଆଉ ସବୁକୁ ଗାମୁଛା କାନିରେ ଭଲକରି ବାନ୍ଧିଦେବ ଯେ କେଉଁଠି ପଡ଼ିବା ଡର ନଥିବ, ନା ଥିବ ହଜିବାର।

ଏଇ ସିଲ୍‌ଭର ଡେକ୍‌ଚିଟି କିଣି ସତରେ ସେ କେତେ ଭଲ କରିଥିଲା। ଟୁଲୁ କହୁଥିଲା ନାଇଁ, ଏମିତି ବଦ୍ ଖରଚ କରନି - ଟଙ୍କା ଯାହା ଜମା କରିବା ମହାଜନର ରଣ ଶୁଝି ଦେବା। ବାହାଘରବେଳେ ସେ ରଣ କରିଥିଲା। ଡେକ୍‌ଚି କିଣିନଥିଲେ କଣ ସେସବୁ ରଣ ଶୁଝି ହୋଇଥାଆନ୍ତା? ସୁଧକୁ ବି ତ ଟଙ୍କା ଅଣ୍ଟିଲାନି। ଖାଲି ସୁଧ କୁଆଡ଼େ ଦୁଇ-କୋଡ଼ି ଛଅ। ଯା'ହେଉ କିଛି ହେଲେ ଶୁଝି ହୋଇଗଲା। ନବରଙ୍ଗପୁରରେ ଆଉ ମାସେ ରହିଯାଇଥିଲେ ଆଉ ଦୁଇ ତିନି କୋଡ଼ି ଶୁଝିଦେଇ ଥାଆନ୍ତେ ଯେ - ସେ ନିଶୁଆ ସର୍ଦ୍ଦାର...

ଏବେ ବି ତା' କଥା ମନେପଡ଼ିଲେ ଭଏଁରୀର ଛାତି ଥରିଯାଏ। ଗାଁବାଲାଏ ବନ୍ଧ ତିଆରି କାମକୁ ଯାଉଛନ୍ତି ଶୁଣି ଭଏଁରୀ ଲଗେଇଥିଲା ଯେ ସେ ଦିହେଁ ବି ଯିବେ। ଟୁଲୁର ବାପା ମନାକରୁଥିଲା। କହୁଥିଲା ଦୂରଦେଶ - ମଙ୍ଗଳ ଅମଙ୍ଗଳ ଅଛି- ଭଏଁରୀ ନୂଆ ଭୁଆସୁଣୀ। ଗାଁର ସିନା ସେ ଝିଅ ଯେ ସମସ୍ତେ ତାକୁ ଚିହ୍ନନ୍ତି; ଆଉ ଡର ଭୟ କିଛି ନାହିଁ। ଦୂରଦେଶ କଥା ଅଲଗା। ବିପଦ ପଡ଼ିଲେ କେଉଁ ଗାଁବାଲାଏ ପିଠିରେ ପଡ଼ିବେ? ଭଏଁରୀ କିନ୍ତୁ ଜିଦ୍ କଲା। କହିଲା "ତମ ପୁଅ ତ କେଉଁଠି ହଳିଆ ହୋଇପାରିବନି..... ତମର ସିଲିଂ ଜମିରୁ ଯାହା ପାଇଲ ସେଥିରୁ...। ହଁ, ରାଗିଲେ ରାଗ - ହକ୍ କଥା - କେତେ ଦେଲ ଆମକୁ! ଆମ ଦିହିଁଙ୍କର ସେଥିରେ ବର୍ଷସାରା ପେଟ ପୂରିବ? ତହିଁରେ ମହାଜନ ରଣ ରଥଯାତ୍ରା ଆସିବ, ନୂଆଖାଇ ଆସିବ - ଲୁଗାପଟା ଦି'ଖଣ୍ଡ ନ କଣିଲେ କଣ ଲଙ୍ଗଳାହେଇ ବୁଲିବୁ? ମୁଁ ମୁଲ ନ ଲାଗୁଥିଲେ ତ ତମ ପୁଅ କେବଠୁଁ ମରନ୍ତାଣି - ଏବେ ବୋହୂ ଭୁଆସୁଣୀ!"

ମୁହଁକୁ ମୁହଁ ଜବାବ୍ ଦେଉଛି ବୋଲି ବୁଢ଼ା ରାଗିଯାଇଥିଲା, ଆଉ ତାର ଦ୍ୱିତୀୟ ଭାରିଯା ଧାଇଁ ଆସିଥିଲା ବିଧା ଉଞ୍ଚାଇ। ଭଏଁରୀ ଛାଡ଼ିଦିଅନ୍ତା। କହିଲା - 'ମୋତେ ମାରିବୁ! ମାଇଲୁ ଦେଖି! କଣ ପାଇଛୁକି? ଏଇ ଗାଁର ଝିଅ ଜାଣିନୁ।' ଶୁଣେଇ ଶୁଣେଇ କହିଲା - 'କେଉଁଠୁ ଉଠିଆସିଛି, ଘରର ସବୁ ଆବୋରି ବସିଛି, ଆଉ ବାପପୁଅଙ୍କ ମନ ଭାଙ୍ଗୁଛି - ମୋତେ ମାରିବ! ମୋର କଣ ହାତଗୋଡ଼ ନାହିଁ ନା ବଳ ନାହିଁ?"

ଟୁଲୁର ମାଉସୀ ମା' ସେ ଦିନ ଶଙ୍କିଯାଇଥିଲା। ନବରଙ୍ଗପୁରକୁ ବସ୍‌ରେ ଯିବାପାଇଁ ପଇସା ନଥିଲା ବୋଲି ସେମାନେ ସମସ୍ତେ ପାଦରେ ଚାଲି ଯାଇଥିଲେ। କେତେ ମଜ୍‌ଲିସ୍‌ରେ ଚଲାବାଟ କଟିଯାଇଥିଲା। ଆଉ ସେଇଠି - ଚାଉଳ ଗହମ ସାଙ୍ଗକୁ ଦି' ଜଣକୁ ଦିନକୁ ତିନିଟଙ୍କା ମାସେ ହୋଇଛି କି ନାହିଁ ସେ ଗାତପଣା ନିଶୁଆ ସର୍ଦ୍ଦାରର ଆଖି ତା ଉପରେ ପଡ଼ିଲା। ଯେତେବେଳେ ଦେଖ ପାଖରେ ଠିଆହୋଇ ନିଶ ମୋଡୁଛି ଆଉ ଅନେଇଛି ସତେ ଯେମିତି ଗିଳିପକେଇବ। ସେଦିନ କହିଲା, 'ଠିକାଦାର ବାବୁଙ୍କ ଘରେ ସଞ୍ଜବେଳିଆ ଘଣ୍ଟେ ଦୁଇଘଣ୍ଟା କାମ କରିଦେଲେ...।' - ରଇଜଳା ତୋ ଝିଅ ବୋହୂକୁ ନେଇ ତା ଘରେ ସଞ୍ଜବେଳିଆ ଘଣ୍ଟେ ଦି'ଘଣ୍ଟା କାମ କରାଉନୁ।

ତା ଆରଦିନ ହାଡୁଆ ମା' କହିଲା 'ଯାଉନୁ ଲୋ - ଘଣ୍ଟେ ଦି' ଘଣ୍ଟାର କାମ ତ। ଠିକାଦାରବାବୁ ଭାରି ଭଲ ମଣିଷ। କିନ୍ତୁ ରାଗିଲେ କଣ କରନ୍ତି ଜାଣିନୁ? ସେ ସୁନ୍ଦରଗଡ଼ର ଝିଅ ସେମିତି ଥରେ ମନାକରିଦେଲା ଯେ, ତା ବରକୁ ଆଉ କେହି ଖୋଜି ପାଇଲେ?' ଆଉ କହିଲା, 'ବଡ଼ଲୋକ ସେମାନେ - ଖୁସି ହେଲେ ଶାଢ଼ି ଗହଣା କେତେ ଦେବେ।'

ଇଚ୍ଛା ହେଉଥିଲା ଟୁଲୁକୁ କହିବ ଯେ ବୁଢ଼ୀକୁ ଟାଙ୍ଗିଆରେ ଛେଚେ ଦେବ। କିନ୍ତୁ ଯା'ହେଲେ ବି ଗାଁ ଲୋକ। କାଳେ ଏମାନେ କପଟ କରି ଟୁଲୁକୁ ମାରିପକାଇବେ ବୋଲି ଡରି ସେଇଦିନ ସଞ୍ଜ ହେବା ଆଗରୁ ହିଁ ଟୁଲୁକୁ ଭିଡ଼ି ଆଣିଥିଲା ଭଏଁରୀ। ଟୁଲୁ ବାହାଦୂରୀ ଦେଖାଉଥିଲା - କହୁଥିଲା ସେ ସର୍ଦ୍ଦାରକୁ ଦେଖିଦେବ।

'ହଁ ତୋର ବୁଦ୍ଧି କେତେ - ବଳ କେତେ ମୁଁ ଜାଣିନି ଯେ ତୋତେ ସେ ରାକ୍ଷସ ମୁହଁକୁ ପଠାଇବି।' ଯା ହେଉ, ଫେରିଆସିବାକୁ ବି ସାଙ୍ଗେ ସାଙ୍ଗେ ବସ୍ ମିଳିଯାଇଥିଲା। ପୁଣି କୁକୁଡ଼ାଟିଏ ଡାକିଲା 'କଁକ୍‌ରେ କ-ଅଁକ୍।' ଏଥର ଗାଁର ଅନ୍ୟ ମୁଣ୍ଡରୁ ଜବାବ୍ ଆସିଲା 'କ-ଅଁ-କରେ କ-ଅଁ କ୍।' ତା'ପରେ ଚାରିଆଡୁ ନାନା ଧରଣର 'କଁକ-ରେ କଁକ୍‌ର କୋଳାହଳ। କାଉଗୁଡ଼ାକ ବି ସେ ସଙ୍ଗରେ ତାଙ୍କ ରାବ ଯୋଡ଼ିଦେଲେ। ଟୁଲୁ ଆପଣାଛାଏଁ ଖଟରୁ ଉଠି ଦେହ ହାତ ମୋଡ଼ି ଅଳସ ଭାଙ୍ଗିଲା ଆଉ ବାହାରକୁ ଆସି ଆକାଶକୁ ଚାହିଁଲା। ସକାଳ ତାରା ଦି'ହାତ ତଳକୁ ଢଳିପଡ଼ିଲାଣି ଆଉ ଗାଁରେ ମଣିଷ ସ୍ୱର ବି ଶୁଣାଯାଉଛି। ବଳଦଗାଡ଼ିର କେଁ-କଟର ଶବ୍ଦ ମଧ୍ୟ ଜଣାଇଦେଉଛି ଯେ ପାହାନ୍ତିଆ ହେଇଗଲା।

x x x x

ସୂର୍ଯ୍ୟୋଦୟ ପୂର୍ବରୁ ରତନଗୁଡ଼ାର ବସ୍‌ଷ୍ଟାଣ୍ଡ ପାଖରେ ଥିବା ଚା'ଦୋକାନ ସାମ୍‌ନା ବେଞ୍ଚ ଉପରେ ଟୁଲୁ ତାର ବୁଜୁଳା ଥୋଇସାରିଥିଲା। ଗରମ୍ ଗରମ୍ କପେ

ଚା’କୁ ପ୍ଲେଟ୍‌ରେ ଢାଳି ଫୁଙ୍କି ଫୁଙ୍କି ପିଇ ସାରା ଦେହରେ ରିମ୍‌ଝିମ୍ ଝାଳ ବାହାର କରିଦେବାକୁ ତାର ମନ ଡାକୁଥିଲେ ବି ଭଉଁରୀର ତାଗିଦା ମନେ ପଡ଼ିଯିବା ଫଳରେ ସେ ଚା’ଦୋକାନୀକୁ କେବଳ ‘ଜୁହାର ମାମୁ’ କହି କୌଣସି ଆଦେଶ ଦେବାକୁ ଆଗ୍ରହ ପ୍ରକାଶ କରିନଥିଲା। ଦୋକାନରେ ଥିବା ଦୁଧ ତୁଳନାରେ ଗରାଖଙ୍କ ସଂଖ୍ୟା ଯଥେଷ୍ଟ ଥିବା ହେତୁ ଏବଂ ବସ୍ ପହଞ୍ଚିଗଲା ପରେ ଗରାଖଙ୍କ ଝଡ଼ ମାଡ଼ିଆସିବାର ନିଶ୍ଚିତତା ଜାଣି, ମାମୁଁ ମଧ ଭଣଜାକୁ ଏ ସମ୍ବନ୍ଧରେ କୌଣସି ପ୍ରଶ୍ନ ନପଚାରି ରାତିର ଅସରାଏ ବର୍ଷା ତାଙ୍କ ଗାଁରେ ପଡ଼ିଥିଲା ନା ନାହିଁ ସେତିକି ହିଁ ଅନ୍ୟମନସ୍କ ଭାବରେ ପଚାରିଦେଇଥିଲେ। ଚିହ୍ନା ଅଚିହ୍ନାଙ୍କ ସଙ୍ଗରେ ଗାଁର ଭଲ ମନ୍ଦ ପଦେଅଧେ ଏବଂ ବିରି ମୁଗ ଉପରେ ଏ ବର୍ଷାର ସୁପ୍ରଭାବ ଅଥବା କୁପ୍ରଭାବ ନେଇ ଆଲୋଚନା କରୁ କରୁ ହିଁ ଦୂରରୁ ବସ୍‌ର ଆବାଜ ଶୁଣାଯାଇଥିଲା ଏବଂ ବୁଜୁଲାକୁ କାନ୍ଧ ଉପରଦେଇ ପିଠିରେ ଝୁଲାଇ ବସ୍ ଚଢ଼ିବାପାଇଁ ପ୍ରସ୍ତୁତ ହୋଇ ରାସ୍ତାକଡ଼ରେ ଠିଆହୋଇଗଲା ଟୁଲୁ।

ଚା’ ଖାଇବାପାଇଁ କେତେ ଯାତ୍ରୀ ବସ୍‌ରୁ ଓହ୍ଲାଇଗଲାବେଳେ ଯଥେଷ୍ଟ ସତର୍କତାର ସହ ସେ ବସ୍ ଉପରକୁ ଉଠିଥିଲା। ଭବାନୀପାଟଣା ଯିବ ଶୁଣି କଣ୍ଡକ୍ଟରବାବୁ ଜଣାଇ ଦେଲେ ଯେ, ଭଡ଼ା ଦୁଇଟଙ୍କା ତିରିଶି ପଇସା। ଟୁଲୁ କିନ୍ତୁ ଦେଢ଼ଟଙ୍କା ଯାଚି ଟିକେଟ୍ ଦେବାପାଇଁ କାକୁତି ମିନତି କଲା ଏବଂ ପରିଶେଷରେ ଆଉ ଚାରଣିଟିଏ ମଧ ବାହାରକରି ଥିଲା। କିନ୍ତୁ କଣ୍ଡକ୍ଟରବାବୁ ଯେତେବେଳେ ବୁଝାଇଦେଲେ ଯେ ସରକାର ବାହାଦୁରଙ୍କ ଭଡ଼ାରେ ଦର କଷାକଷି ନାହିଁ, ସେ ଯୁକ୍ତି ଦର୍ଶାଇଥିଲା ଯେ, ଜଙ୍ଗଲ ଚପରାଶୀ, ପୁଲିସ୍ କନେଷ୍ଟବଲ୍, ଗାଁ ପଟୁଆରୀ ଏବଂ ପଞ୍ଚାଏତ ଗୋଲାଘର ସେକ୍ରେଟରୀମାନେ ବି ତ ସରକାର ଏବଂ ସେମାନେ ଯେତେବେଳେ ତାଙ୍କ ସରକାରୀ ପାଉଣାରେ ଦର କଷାକଷି କରୁଛନ୍ତି, ଏଇ ବସ୍‌ର ସରକାର ମଧ ସେମିତି ନ କରିବେ କାହିଁକି? କିନ୍ତୁ କଣ୍ଡକ୍ଟରବାବୁ ଥରେ ଟୁଲୁ ଆଡ଼କୁ ଅନାଇଦେଇ ମୁହଁ ବୁଲାଇଦେଲା ପରେ ଡ୍ରାଇଭର ବସ୍ ଛାଡ଼ିବା ହର୍ଣ୍ଣ ଦେଲା ଏବଂ ଟୁଲୁ ବସ୍‌ରୁ ଓହ୍ଲାଇ ଆସି ଜୁନାଗଡ଼ ଆଡ଼କୁ ଚାଲିବାକୁ ଆରମ୍ଭ କରିଥିଲା - ଏଇ ଆଶାରେ ଯେ କଣ୍ଡକ୍ଟରବାବୁ ଶେଷରେ ଆଉ ଚାରଣିଟେ ମାଗି ତାକୁ ଗାଡ଼ିରେ ବସାଇନେବେ। ଗାଡ଼ି କିନ୍ତୁ ପଛପଟୁ ତା ମୁହଁରେ ଧୂଳି ଉଡ଼ାଇଦେଇ ଧୀରେ ଧୀରେ ଉଭେଇଗଲା।

ମାତ୍ର ୧୦ ମାଇଲ ବାଟ ଜୁନାଗଡ଼। ଚାଲିବା ସାଙ୍ଗ ବି ବେଶ୍ ଜୁଟିଯାଇଥିଲେ। ବାଟ ଚାଲିଯିବାରେ ଟୁଲୁକୁ କିଛି କଷ୍ଟ ହେଲାନି - ତହିଁରେ ପୁଣି ଜୁନାଗଡ଼ଠାରେ ପହଞ୍ଚି ଆସନ୍ନ ହୋଟେଲ ଭୋଜନ ଥିଲା ତା ପାଇଁ ଏକ ବିଶେଷ ଆକର୍ଷଣ। ଚାଉଳ ଦର ବଢ଼ିବା ସାଙ୍ଗେ ସାଙ୍ଗେ ମିଲ୍‌ର ଦାମ୍ ବି ଦେଢ଼ଟଙ୍କାରୁ ଦୁଇଟଙ୍କା ହୋଇ ଯାଇଥିବା ଶୁଣି ମଧ ସେ ଆଦୌ ନିରୁତ୍ସାହିତ ହୋଇନଥିଲା। ବରଂ ବଡ଼ ବଡ଼ ଭାତ

ଗୁଣ୍ଡାମାନଙ୍କରେ ସାମାନ୍ୟ ଡାଲି କିମ୍ବା ତରକାରିର ସ୍ପର୍ଶ ମାତ୍ର ଦେଇ ସେ ଯେତେବେଳେ ଦୁଇଥାଳି ଭାତ ଗୁଣ୍ଡା ଆକାରରେ ଗିଳିଦେଲା ପରେ ତୃତୀୟ ଥାଳି ଭାତ ଉପରେ ଆକ୍ରମଣ ଆରମ୍ଭ କରିବସିଲା, ହୋଟେଲ ମାଲିକ ହିଁ ଏ ହୋଟେଲ ବ୍ୟବସାୟ ତାଙ୍କ ପାଇଁ କେତେଦୂର ବାଞ୍ଛନୀୟ ହୋଇଛି ସେ ସମ୍ବନ୍ଧରେ ସନ୍ଦିହାନ ହୋଇପଡ଼ିଥିଲେ ।

ଜୁନାଗଡ଼ରୁ ଭବାନୀପାଟଣା ବସ୍ ଭଡ଼ା ଦେଢ଼ଟଙ୍କା । କିନ୍ତୁ ଅତିମାତ୍ରାରେ ଖାଇଦେଇଥିବା ଯୋଗୁଁ ଚଳତ୍ ଶକ୍ତିବିହୀନ ଟୁଲୁ ବିନା ଆପତ୍ତିରେ ସେହି ଦେଢ଼ଟଙ୍କା ଦେଇ ବେଶ୍ ଆରାମରେ ବସ୍‌ର କଅଁଳିଆ ଗଦି ଦିଆ ସିଟ୍‌ରେ ବସି ଘୁମାଇପଡ଼ିଥିଲା ।

ତାଙ୍କ ଗାଁରୁ ବାହା ହୋଇ ଯାଇଥିବା ଜଣେ ଲେଖାଯୋଖା ପିଉସୀଙ୍କ ଘର ଖୋଜି ବାହାରକରିବାକୁ ଭବାନୀପାଟଣାରେ ବିଶେଷ କଷ୍ଟ ହୋଇନଥିଲା । ରହିବା ପାଇଁ ଆଶ୍ରୟ ପାଇଯାଇଥିବା ଯୋଗୁଁ ଏବଂ ରାତିରେ କିଛି ଖାଇବାକୁ ମିଳିଯିବାରୁ ଟୁଲୁ ଯେତେ ଖୁସି ହୋଇଥିଲା, ତାର ପିଉସୀ ମଧ୍ୟ ଗାଁର ଭଲ ମନ୍ଦ ଖବର ସବୁ ଶୁଣି, କାଠଗଡ଼ ଖଣ୍ଡିଏ ଚିରାଇ ଏବଂ ପାଣି ଦି'ଭାର ରାସ୍ତାକଡ଼ କଳରୁ ଅଣାଇ ପାରି ସେତିକି ଖୁସି ହୋଇଯାଇଥିଲେ ।

x x x x

ତା ଆରଦିନ ହିଁ ମଙ୍ଗଳବାର ହାଟ । ପିଉସୀ ଯାଚିଥିବା ବାସିପଖାଳରୁ କିଛି ପେଟରେ ପକାଇଦେଇ ଟୁଲୁ ବାହାରିପଡ଼ିଥିଲା ହାଟକୁ ଶାଢ଼ି କିଣି । ଗାନ୍ଧୀଚୌକ ଦେଇ ଗଲାବେଳକୁ କିଏ ଜଣେ ଚିତ୍କାର କରୁଥିଲା, 'ଏକଟଙ୍କାରେ ଦୁଇଲକ୍ଷ । କିଏ ଜାଣେ କାହା ଭାଗ୍ୟରେ କ'ଣ ଅଛି । କିଣନ୍ତୁ ଲଟେରି ଟିକେଟ୍ - ମାତ୍ର ଏକ ଟଙ୍କା । ଏକ ଟଙ୍କାର ଆଜି ଅବା ମୂଲ୍ୟ କେତେ । ସିଗାରେଟ୍ କିଣିଲେ ପେକେଟ୍‌ଟିଏ ବି ମିଳିବନି; କିନ୍ତୁ ଭା..ଗ..ଗ୍ୟରେ ଥିଲେ ସେଇ ଏକ ଟଙ୍କାରେ ଦୁଇ ଲ...କ୍ଷ୍ୟ.. ମିଳିଯାଇପାରେ । କିଏ.. କହିବ ଆଜି ଯିଏ ଭିକାରି ସିଏ ଟ.....ଙ୍କାଟିଏ ଦେଇ ଟିକେଟ୍ କିଣି ନେଇ ଲକ୍ଷ୍ୟପତି ନ ହେବ ।'

ଟୁଲୁର ମନ ଆପଣାଛାଏଁ ସେ 'ଭାଗ୍ୟ' ବାଲା ପାଖକୁ ଟାଣିହେଇଗଲା । ପଚାରି ଦେଲା ଏକଟଙ୍କା ଦେଲେ କେମିତି ଦୁଇଲକ୍ଷ ଟଙ୍କା ମିଳିଯାଏ । ଭାଗ୍ୟବାଦୀ ଭଲକରି ଟୁଲୁକୁ ଅନେଇଲା - କହିଲା, 'ଏକ ଟଙ୍କାର ଟିକେଟ୍ କିଣିନେ - ଦେଖୁଛୁ ସେ ସବୁ ବଡ଼ ବଡ଼ ଘର ! ଦୁଇ ଲ-କ୍ଷ....କ୍ଷ ପାଇଗଲେ ସେମିତି ଘରେ ରହିବୁ । ଟିକେଟ୍‌ଟିଏ କିଣିନିଅନ୍ତା; କିନ୍ତୁ ଭଉଁରୀର ତାଗିଦା ପୁଣି ଥରେ ମନେପଡ଼ିଗଲା । ଘରୁ ବାହାରିଲାବେଳେ ସେ କହିଥିଲା 'ଖବରଦାର - ଟଙ୍କା ବରବାଦ୍ କରିଛୁ ଯଦି !'

ବୁଢ଼ାରଜାଙ୍କର ଷ୍ଟେଚ୍ୟୁ ଡେଇଁଲା ପରେ ସେ ହାଟ କେଡ଼େ ବିରାଟ ! ଦୁନିଆଁ ଯାକର ସବୁ ସତେ ଯେମିତି ସେଇଠି ଠୁଳହେଇଛି । ଧାଡ଼ିକିଧାଡ଼ି ପସରା ସବୁ ମେଲିଦେଇ ବିକାଳିମାନେ ବସିଯାଇଛନ୍ତି । ଗଦା ଗଦା ଚାଉଳ, ମୁଗ, ବରି, କୋଳଥ, କେତେ ଯେ ଆଳୁ, ପିଆଜ ଆଉ ଏ ଅଦିନରେ ବି କେତେ ଭେଣ୍ଡି, ବାଇଗଣ.... ଆଉ ଶୁଖୁଆ....ଇସ୍, କେଉଁଠି ସବୁ ଆଣିଛନ୍ତି କେଜାଣି - ଖଣ୍ଡିଏ ପୋଡ଼ିଦେଲେ କଂସାଏ ପଖାଳ.... । ସତରେ ଯିଏ କହୁଥିଲା ଏ ସହରମାନଙ୍କରେ ଖାଲି ବାପା ମା'ଙ୍କୁ ଛାଡ଼ିଦେଲେ ଆଉସବୁ କିଣିବାକୁ ମିଳେ, ସତ କହୁଥିଲା । ପଇସା ଥିଲେ ହେଲା !

ହେଇ ତ .... 'ଏ...ଏ,......' ଚଞ୍ଚଳ ପଦକ୍ଷେପରେ ଆଗକୁ ପହଁରିଗଲା ଟୁଲୁ । କହିଲା, 'ଏ ଶାଢ଼ିବାଲା ରହ ରହ - ସେ ଶାଢ଼ି ଦେଖାଇଲୁ ! ଠିକ୍ ହରିଭୁଲିଆର ଶାଢ଼ିପରି ଶାଢ଼ି ତ - ଦାମ୍ କେତେ ?'

ଶାଢ଼ିବାଲା ହସିଲା - କହିଲା, 'କେତେ ହାତି, କେତେ ଚୌଡ଼ା, କେଉଁ ଡ଼ିଜାଇନ୍ ନ କହି ଦାମ ପଚାରିଲେ କେମିତି କହିବି ?'

ଟୁଲୁ ଖଣ୍ଡିଏ ସୁନ୍ଦର ନାଲିଶାଢ଼ି ବାଛି ନେଇ ତାର 'ମୁହଁ' ଦେଖିନେଲା ଆଉ ଅଣ୍ଟା ପାଖରୁ ତଳକୁ ଝୁଲାଇଧରି ଚୌଡ଼ା ପରଖି ପଚାରିଲା 'ଏଇଟା କେତେ ?'

ଶାଢ଼ିବାଲା ଉତ୍ତର ଦେଲା - 'ସତେଇଶ - କୋଡ଼ିଏ ସାତ ।'

'ଏଁ-ଏଁ କ'ଣ କହିଲୁ ? ଏଇଟା ତ ଆମ ହାବସ୍‌ପୁର ହାଟରେ ସତରଟଙ୍କା ।' ଶାଢ଼ିବାଲା ପୁଣି ଥରେ ହସିଲା । ଖଣ୍ଡିଏ ଛୋଟ, କଳାରଙ୍ଗର ପାଞ୍ଚହାତି କାଢ଼ି କହିଲା 'ଏମିତିକା ହୋଇଥିବ ।'

ଟୁଲୁ କିନ୍ତୁ ଜିଦ୍ କଲା ଯେ ସେମିତି ନୁହେଁ - ସେ ଯେମିତିକା ଶାଢ଼ି ଧରିଛି ସେ ଧରଣର । ଶାଢ଼ିବାଲା ହାତ ବଢ଼ାଇ ଶାଢ଼ି ଫେରାଇନେଇ ଆଉ କିଛି ଜବାବ୍ ନ ଦେଇ ଆଗକୁ ଚାଲିଗଲା ।

ଆଉ ଶାଢ଼ି.... ପୁଣି ଶାଢ଼ି । ଇସ୍ - ଭାରି ଭାରି । ଏ ବିକାଳି ସେ ବିକାଳି ପାଖରେ ବୁଲି ବୁଲି ଟୁଲୁ ଶେଷରେ ଖଣ୍ଡିଏ ତାର ମନଲାଖି ଆଠହାତି ମୋଟା ନାଲିରଙ୍ଗର କଳା ଧଡ଼ି ଆଉ ହଳଦିଆ ବୁଟି ଦିଆ ଶାଢ଼ି ବାଛିନେଲା । ବିକାଳି କୋଡ଼ିଏ ତିନରୁ ଆରମ୍ଭ କରି ଏକଦମ୍ କୋଡ଼ିଏରେ 'ହେଉ ଟଙ୍କା ଦିଅ - ଏଇଟା - ଦଉନି - ଶସ୍ତାରେ ଦେଇଦେଉଛି' କହିଲାବେଳକୁ ଟୁଲୁର ମନେହେଲା ସେ ବୋଧହୁଏ ଠକିଯାଇଛି । ଏ ଶାଢ଼ିକୁ ଆଉ ଦୁଇ ଟଙ୍କା ଦାମ୍ କହିବା ଥିଲା । 'ଆଚ୍ଛା - ଏଇ ଆସୁଛି ମୋର ସାଙ୍ଗ ପାଖରୁ' କହି ସେ ଛେଳି ମେଣ୍ଢା, ଗାଈ ବଳଦ ଆଡ଼କୁ ମୁହାଁଇଲା । ଭାବୁଥିଲା କିଛି ସମୟ ଛାଡ଼ି ଫେରିଆସି ସେ ଶାଢ଼ିକୁ ସତର ଟଙ୍କାରେ ମାଗିବ ।

ସାନ-ବଡ଼ ମୋଟା-ସରୁ ଅଣ୍ଡିରା-ମାଈ ଛେଳି ସବୁ ଦଉଡ଼ାମାନଙ୍କରେ ବନ୍ଧା ହୋଇ ମେଁ-ମେଁ ଚିତ୍କାର କରୁଥିଲେ। ଭଲଟିଏ ଦେଖି ଦାମ୍ ପଚାରିଦେଲା। ବିକାଳି କହିଲା 'ସାତକୋଡ଼ି ଦଶ'। ଟୁଲୁ ଛେଳିଟିକୁ ଦି'ହାତରେ ଟେକି ଓଜନ କଲା - ବେଶି ହେଲେ, ୧୫-୧୬କେଜି.... ଗୁରୁଗୁରେଇଲା - 'ସାତକୋଡ଼ି ଦଶ। ଛେଳି ନା ବଳଦ।'

ଟିକିଏ ଆଗକୁ ବଳଦ ପୋଢ଼ୁଅ ସବୁ ଯୋଡ଼ା ଯୋଡ଼ା ହେଇ ଠିଆହୋଇଛନ୍ତି। ବଢ଼ିଆ ବଳଦଟିଏ। ଦାମ୍ ପଚାରିଦେଲା। ବିକାଳି ଅନ୍ୟ ଆଡ଼କୁ ଅନାଇ ଉତ୍ତର ଦେଲା 'ଆଠ'। ଆଠ କୋଡ଼ି - ମନ୍ଦ ନୁହେଁ ଭାବିଲା ଟୁଲୁ। ବଳଦର ପିଠିରେ ହାତ ମାରିଲା କ୍ଷଣି ବଳଦର ଦେହ ଶିରଶିରେଇଗଲା ଆଉ ସେ ମୁଣ୍ଡ ବୁଲାଇ ଆଖି ତରାଟି ଟୁଲୁ ଆଡ଼କୁ ରାଗରେ ଅନାଇଁଲା। ଲାଞ୍ଜ ପାଖରେ ହାତ ଦେଇଛି ନା ନାହିଁ - ମାଇଲା ଲାତ। ବେଶ୍ ତରକ୍ ବଳଦ। ଆଉ ଦାନ୍ତ।

'ଓରତି ବୟସର ବଳଦ' - ରାୟ ଦେଲା ଟୁଲୁ। ବିକାଳି ଖେଙ୍କାରିଲା ଢଙ୍ଗରେ କହିଲା 'ଓରତି ବୟସ। କଣ କହୁଛି? ଦି ବର୍ଷ ବି ଭଲ କରି ଯୋଚା ହେଇନି। ଗୁଡ଼ିଏ ବାଟ ଚାଲି ଆସିଛି ବୋଲି ଶୁଖିଲା ଦିଶୁଛି କମ୍ ହେଲେ ଆଉ ୬ବର୍ଷ ଖଟିବ।'

ଟୁଲୁ ସବୁ ଜାଣୁଥିବା ଢଙ୍ଗରେ ମୁଣ୍ଡ ହଲାଇ କହିଲା 'ତଥାପି.....' ପଚାରିଦେଲା - 'ଭିତିରି ନା ବାହାରି?' ଆଉ ଯେମିତି ଜବାବ୍ ମିଳିଲା ଦି' ଆଡ଼ିକି ଯୋଚିଲେ ଯିବ - କହିଲା 'ମୋର ପଦେ କଥା। ଛ'କୋଡ଼ିରେ ଦେବ? ଟୁଲୁ ଭାବୁଥିଲା ତାର ସେ ଘୁଷୁରା ଭିତିରି ବଳଦକୁ ବିକିଦେଇ ଏମିତିଆ ବଳଦଟିଏ କିଣି ନେବ। ଦାମ୍ ଜାଣିନେଇଥିବା କଥା।

ବିକାଳି ଡବଡବ ଆଖିରେ ଅନାଇଁଲା। ପଚାରିଲା 'ଛ' କୋଡ଼ି କହୁଛ ନା ଛ' ଶହ?' ଟୁଲୁ ଥଥମତ ହୋଇଗଲା। କଣଟିଏ କହିବ ହେଇ ହେଇ ଖସି ଆସିଲା ବଳଦବଜାରରୁ। ବେଶି ଡେରିହୋଇଗଲାଣି। ଏଥର ଶାଢ଼ି କିଣି ନେବା କଥା। ଭୁଲିଆଗୁଡ଼ାକ ବି ହାଟ ଭିତରେ ବୁଲି ବୁଲି ହାଲିଆ ହେଇଯିବେଣି ଯେ ଶସ୍ତାରେ ଶାଢ଼ିସବୁ ଦେଇଦେବେ। ଶାଢ଼ି ବଜାରକୁ ଆସି କିନ୍ତୁ ଦେଖିଲା ଯେ ଗୋଟିଏ ବି ଶାଢ଼ିବାଲାର ଦେଖା ଦର୍ଶନ ନାହିଁ। କୁଆଡ଼େ ସବୁ ଗଲେ। ଦେଖିଲା ଦୂରରେ ଟେମ୍ପୋଟିଏ ଆଉ ସେ ପାଖରେ ଗଦାଏ ଭୁଲିଆ ଶାଢ଼ି ନା କ'ଣ! ଟୁଲୁ ତରତର ହେଇ ସେଠିକି ଯାଇ ବୁଝିଲା ସେ ସବୁ ରାମହରି ଶେଠ୍‌ଙ୍କର। ଟୁଲୁ ଖଣ୍ଡିଏ ଶାଢ଼ି ଉପରେ ହାତଦେଉଥିଲା, ପାଖକୁ ଜଣେ ଚିତ୍କାର କଲା 'ଏ-ଏ ଚୋରି କରିବୁ ନା କଣ?' ଟୁଲୁ କହିଲା ସେ ଖଣ୍ଡିଏ ଶାଢ଼ି କିଣିବ - ଆଗରୁ ବାଛିସାରିଛି। ଲୋକଟି ଜବାବ୍ ଦେଲା, 'ତେବେ ରାମହରି ଶେଠ୍ ଦୋକାନକୁ ଘଣ୍ଟେ ଛାଡ଼ି ଯିବୁ।'

x x x x

ଥନ୍ତଲା ପେଟ ନେଇ ଗଦି ଉପରେ ଯେଉଁ ଭଦ୍ରଲୋକ ବସିଥିଲେ ସେ ନିଷ୍ଚୟ ରାମହରି ଶେଠ୍। ଟୁଲୁ କହିଲା, 'ଲାଲ ଦେହରେ ହଳଦିଆ ବୁଟି - କଳା ଧଡ଼ିର ଭୁଲିଆ ଶାଢ଼ି - ଆଠହାତି କଳା ହଳଦିଆ ବନା ବନା ମୁହଁ।'

ଶେଠ୍‌ଜୀ ଆଦେଶ ଦେଲେ, 'ଆରେ ରାମବିଳାସ, ଦେଖା ସେ ଶାଢ଼ି।' ଚାରିଖଣ୍ଡ ଶାଢ଼ି ଭିନ୍ନ ଭିନ୍ନ ରଙ୍ଗର। ଲାଲ ଶାଢ଼ିରେ ହାତ ଆଉଁସି ଆଣି ଟୁଲୁ କହିଲା, 'ଏ ଶାଢ଼ି ନେବି।' ଶେଠଜୀ କହିଲେ 'କୋଡ଼ିଏ ସାତ'।

ଟୁଲୁ ବଜାରରେ ସେଇ ଶାଢ଼ିକୁ ଏକ କମ୍ କୋଡ଼ିଏରେ ଦାମ୍ କରି ସାରିଥିବା କଥା ଶୁଣି ଶେଠ୍‌ଜୀ କହିଲେ ତାଙ୍କ ଦୋକାନରେ ଦର କଷାକଷି ହୁଏନି, ଗୋଟିଏ ଦାମ୍। ତେବେ... ଡାକିଲେ, 'ରାମବିଳାସ - ଆଣିଲୁ ସେ ବିଶ୍ୱ ରୂପକ ମିଲ୍‌ସର ଲାଲ ଚକଚକି ଶାଢ଼ି - ସାତହାତି।'

ରାମବିଳାସ କି କଣ ୪/୫ ଖଣ୍ଡ ଶାଢ଼ି ଟୁଲୁ ସାମନାରେ କଚାଡ଼ିଦେଲା। ଶେଠଜୀ କହିଲେ, 'ଏଇଟା ବଢ଼ିଆ ଶାଢ଼ି, ତୋ ନନିକୁ ଠିକ୍ ମାନିବ। ନନିର ରଙ୍ଗ କେମିତି କି? - ହଁ-ଠିକ୍ ମାନିବ।... ତୋ ଘର କେଉଁଠି? - ଓ ସୁନା ଡଙ୍ଗ୍ରି? - ଜାତି? ଶବର? ସେ କଥା କହୁନୁ? ମୁଁ ତମର ସମସ୍ତଙ୍କୁ ଜାଣେ - ଜରା ଶବର, ଅଙ୍ଗଦ ଶବର, ବାଲୀ, ସୁଗ୍ରୀ....'

ଟୁଲୁ କହିଲା - "ଆଜ୍ଞା-ମୋର ଅଜାର ନାଁ ତ ଅଙ୍ଗଦ।"

"ଆରେ ମୁଁ ଜାଣିନି? ସେ କେତେ ଥର ଦୋକାନରୁ ଶାଢ଼ି ନେଇଛି। ନେ ଏ ଲାଲ ଶାଢ଼ି।"

"ଆଜ୍ଞା, ଶାଢ଼ିର ରଙ୍ଗ ସୁନ୍ଦର ଯେ ଭାରୀ ପତଳା - ଲମ୍ବ ମାପି କହିଲା, ଛହାତି ହେବ - ପଣତ ଖୋଷି ହେବନି। ଆଉ ଚୌଡ଼ା ବି ଆଣ୍ଠୁଯାଏ।"

ଶେଠଜୀ ହସିଲେ - କହିଲେ 'ଆରେ ଓଲୁ...'

'ହଁରେ ଟୁଲୁ - ତୋ କନିଆ କଣ ମୋଟୀ କିରେ?'

'ମୋଟୀ କାହିଁକି ହେବ' - ବିରକ୍ତିଭରା ସ୍ୱରରେ ଜବାବଦେଲା ଟୁଲୁ।

'ତେବେ?' ଶେଠଜୀ କହିଚାଲିଲେ। 'ସାତହାତ ଆଠହାତ କଣ ହେବ? ସିନେମା ଦେଖିଛୁ? ଆଜିକାଲିର ଝିଅମାନେ କେମିତି ଶାଢ଼ି ପିନ୍ଧୁଛନ୍ତି ଦେଖିନୁ? ଆଣ୍ଠୁଯାଏ। ପେଣ୍ଡା ଦିଶିଲେ ସିନା ସୁନ୍ଦର। ପଣତକୁ କଣ ଆଉ ଅଣ୍ଟାରେ ଭିଡୁଛନ୍ତି? ପତଳି କମରରେ ପତଳା ଲାଲ ଶାଢ଼ି। ହଳଦିଆ ବ୍ଲାଉଜର ପିଠି ଉପରେ ହାତେ ପଣତ ଜାଣିଲୁ। ପବନରେ ସେ ପଣତ ଉଡୁଥିବ... ଅଣ୍ଟା ହଲେଇ ଚାଲୁଥିବ

ନନି....। ଶୁଣିନୁ ଗୀତ? ଫର ଫର ଉଡ଼େ ପଣତ କାନି - କେନ୍‌ତା ରେଲେ ନନି....? ଏଁ?' ନେ ଏଇଟା, ମୋ କଥା ମାନ। ଆଉ ଆରେ ରାମବିଳାସ, ଆଣିଲୁ ସେ ହଳଦିଆ ବିଲାଉଜ - ଆଉ ଦେଖା ସେ ପାଉଡ଼ର ଡବା - ସେ ସାନ ସାବୁନ... ସେଇଠି ଅଛି - ହଁ, ତୋର ବାଁ ପାଖରେ। ଆଉ ଆଣ ତ ସେ ଲାଲ ରିବନ, ସେ ପ୍ଲାଷ୍ଟିକର ପାନିଆ, ସେ ସୁନେଲି କ୍ଲିପ।

'ହଁ ଦେଖିରେ ଟୁଲୁ - ରିବନ, ପାନିଆ ଆଉ କ୍ଲିପ ତୋତେ ମୁଁ ମାଗଣା ଦେଉଛି। ଏ ସବୁ ନେ। ତୁ ହେଲୁ ଆମ ଜଣାଶୁଣା ପୁରୁଣା ଲୋକ।'

ହସହସ ମୁହଁରେ ଟୁଲୁ ପଚାରୁଥିଲା, 'ଆଜ୍ଞା - ଏ ଶାଢ଼ି କେତେଦିନ ଯିବ? ବର୍ଷେ ଗଲେ ସିନା।'

'ବର୍ଷେ? ପିନ୍ଧା ଜାଣିଲେ ଦି' ବର୍ଷରୁ କମ୍ ଯିବନି। ରେଳ ବାଉଁଶରେ ଖୁଆ ନ ଧରିଲେ ହେଲା। ଆଉ ନନିକୁ କହିବୁ ବସିଲାବେଳେ ଟିକିଏ ହୁସିଆର ହୋଇ ବସିବ।'

'ଦାମ୍?'

'ଦାମ୍? ତୋତେ ଆଉ କଣ କହିବି, ଏସବୁ ମିଶି ହେଲା ଏକ କମ୍ କୋଡ଼ିଏ। ତେବେ ତୁ ତ ଘରର ଲୋକ ଦୁଇ କମ୍ କୋଡ଼ିଏ ଦେ।'

ଦାନ୍ତ ଭଙ୍ଗା ସାପ ଯେମିତି ପେଡ଼ି ଭିତରେ ରହି କେଳାର ବଇଁଶୀଆଡ଼କୁ ଅନେଇ ରହିଥାଏ - ଆନନ୍ଦରେ, ଆଶ୍ଚର୍ଯ୍ୟରେ, ଭୟରେ ରାଗରେ କି ଭେଳିକି ହୋଇ କେଜାଣି - ଶେଠଜୀଙ୍କ ଆଡ଼କୁ ସେମିତି ଅନାଇଁ ରହିଥିଲା ଟୁଲୁ। ଧୀରେ ଧୀରେ ସେ ଶାଢ଼ି, ବ୍ଲାଉଜ, ପାଉଡ଼ର, ସାବୁନ, ରିବନ ପାନିଆ ସାଙ୍ଗରେ କ୍ଲିପକୁ ତା ଗାମୁଛାରେ ଗଣ୍ଠିଲି କରି ବାନ୍ଧିଦେଇ ଗୋଟାଏ ଗୋଟାଏ କରି ନୋଟ୍ ସବୁ ଗଣିଦେଲା। ବାକି ଯାହା ରହିଲା ତାକୁ ବି ଗଣିଦେଲା - ଆଉ ଅଛି ପାଞ୍ଚ ଟଙ୍କା ପଚାଶ ପଇସା।

x x x x

ଲୋକଟି ସେମିତି ଚିତ୍କାର କରୁଥାଏ 'ଭା-ଗ୍-ଗ୍ୟରେ ଥିଲେ ଏକଟଙ୍କାରେ ଦୁଇ ଲ-କ୍ଷ-କ୍ଷ ଟଙ୍କା। ଟୁଲୁ ସେଇଠି ଯାଇ ଠିଆହେଲା। ଦୁଇଜଣ କଥାବାର୍ତ୍ତା ହେଉଥିଲେ ବଲାଙ୍ଗୀରର ଜଣେ କେମିତି... ଟୁଲୁ ଟଙ୍କାଟିଏ ବଢ଼ାଇ ଦେଇ କହିଲା, 'ମୋତେ ଖଣ୍ଡିଏ ଟିକଟ୍ ଦିଅ।' ଟିକଟ୍‌ବାଲା ପଚାରିଲା, 'ଗୋଟିଏ ଟିକଟ୍ ନା ଦୁଇଟା? ତୋର ସ୍ତ୍ରୀର ଭା-ଗ୍-ଗ୍ୟ ଯଦି ତୋ'ଠାରୁ ଉଗ୍ର ଥାଏ' - ଆଉ ଟଙ୍କାଏ ବଢ଼ାଇଦେଲା ଟୁଲୁ, ଆଉ ଦି'ଟା ଟିକଟ୍‌କୁ ତା ଗଣ୍ଠିରି ଖୋଲି ଯତ୍ନରେ ବାନ୍ଧିଦେଲା।

ଗାନ୍ଧିଚୌକର ହୋଟେଲ୍‌ରେ ଭଲକରି ଖାଇନେଇ ବସ୍‌ରେ ଚଢ଼ି ଜୁନାଗଡ଼ ପହଞ୍ଚିଲାବେଳକୁ ବେଳ ଉତୁରି ଯାଇଥାଏ। ହାତରେ ଆଉ ପଇସାଟିଏ ବି ନାହିଁ।

ଚାଲିକରି ଗାଁକୁ ଯିବାକୁ ହେବ। ଚାରିଣିଟିଏ ଥିଲେ ବି ଥୋପେ ପକାଇଦେଇଥିଲେ ଉଡ଼ିଯାଇଥାନ୍ତା ସିଏ - ସଂଞ୍ଜ ହେଉଣୁ ଘରେ ପହଞ୍ଚି ଭଏଁରୀକୁ ତାର ଶାଢ଼ି, ବିଲାଉଜ, ସାବୁନ, ପାଉଡ଼ର ସବୁ ଦେଖାଇ ଦିଅନ୍ତା - କିନ୍ତୁ ଆଉ ପଇସା ଯେ ନାହିଁ। ବିଳମ୍ବ ନ କରି ବଡ଼ ପାହୁଣ୍ଡ ପକାଇ ଗାଁଆଡ଼କୁ କ୍ଷେପିଗଲା ଟୁଲୁ।

ରତନଗୁଡ଼ା ପାଖ ଯୋରଖଣ୍ଡିରେ ଥିବା କୁଡ଼ିଆଘରୁ ଦୁଇଜଣ ହଲିଝୁଲି ବାହାରୁଥିଲେ। ଟୁଲୁର ମନେପଡ଼ିଗଲା ଯେ ସେ ତାର ଚାଉଳ ଆଦୌ ଖର୍ଚ୍ଚ କରିନି। ଚାଉଳ ବଦଳରେ ବୋତଲେ-ଅଧବୋତଲ - ବାଟଭାଙ୍ଗି ସେ କୁଡ଼ିଆ ଆଡ଼କୁ ଗୋଡ଼ ବଢ଼ାଇ ଦେଇଥିଲା।

x x x x

ରତନଗୁଡ଼ା ପହଞ୍ଚିଲା ବେଳକୁ ସଞ୍ଜବେଳିଆ ବସ୍ ଜୁନାଗଡ଼କୁ ମୁହାଁଇଥାଏ। ଧୂଳିଆ ଦେହ - ଫଣଫଣ ମୁହଁ, ପାଟିରୁ ଫେଣ ବାହାରିପଡୁଛି - ରାସ୍ତାର ଏ କଡ଼ରୁ ସେକଡ଼ ଢ଼ଳି ଢ଼ଳି ବସ୍ ସାମ୍ନାରେ ପହଞ୍ଚିଯାଇଥିଲା ଟୁଲୁ। ତା ଟିକେଟ୍ ଦିଟାକୁ ଦେଖାଇ କହିଲା, 'ଏ-ଏ ସରକାର - ଏ ବସ୍ କେତେରେ ଦେବୁ?'

ବସ୍ ଡ୍ରାଇଭର୍ ଟୁଲୁର ଢକାକୁ ଦେଖି ହସିଦେଇ କହିଲା, 'ଆରେ ଏ ବସ୍‌ର ଦାମ୍ ଲକ୍ଷେ ଟଙ୍କା - କିଣିବୁ?'

ଟୁଲୁ ହିକ୍‌କା ମାରି କହିଲା - 'ଲ-କ୍ଷକ୍ଷେ। ଏଁ। ପାଞ୍ଚ କମ୍ ଲ....ଲ....'

କିଏ ଜଣେ ଟୁଲୁର ଘରୁଆଲୋକ ବୋଧହୁଏ - ଟୁଲୁର ହାତ ଧରିବାକୁ ଚେଷ୍ଟା କରୁଥିଲା। ହୁଏତ ଘରକୁ ବାଟ କଢ଼ାଇ ଦେବ ବୋଲି। ଟୁଲୁ ହାତ ଛିଞ୍ଚାଡ଼ି ଦେଇ ଡ୍ରାଇଭରକୁ କହିଲା, 'ଆବ୍‌ବେ ସରକାର - ପାଞ୍ଚ କମ୍‌ରେ ଦେବୁ...ଏଁ? ଏଇ ଦେଖ୍..... ଦୁଇ ଲାଖ୍ - ବାକିଟଙ୍କା ହକ୍ ଫେରାଇ ଦେବୁ... ଦେଖ୍ ଖବର୍ ଦାର୍।'

ଗାଡ଼ି ଚାଲିଗଲା ପରେ ସୁନାଡ଼ଙ୍ଗ୍ରିର ଘେନୁ ଟୁଲୁର ଡେଣା ଧରି ଗାଁ ଧର୍ସାରେ ବାଟ କଢ଼ାଇ ନେଉଥିଲା। କେଉଁଠୁ ଖବର ପାଇଥିଲା କେଜାଣି ବାଟକୁ ଧାଇଁ ଆସିଥିଲା ଭଏଁରୀ। ଭଏଁରୀକୁ ଦେଖିଲାକ୍ଷଣି ଟିକଟ୍ ଦେଖାଇ ନାଚିବାକୁ ଚେଷ୍ଟାକଲା ଟୁଲୁ; କିନ୍ତୁ ଗଡ଼ିପଡ଼ିଲା। ବେହୋସ ହେବା ଆଗରୁ କିନ୍ତୁ କହିଥିଲା- 'ଏ ନନୀ ଦେଖ୍ ଦୁଇ ଲାଖ୍-ନେ। ମହଲା ଘର.... ମଟର ଗାଡ଼ି - ଲାଲ ଶାଢ଼ି - ଏଁ ହେକ୍... ଫର୍ ଫର୍ ଉଡ଼େ ଏ ପଣତକାନି....ହେକ୍।'

# ମୋ ମୃତ୍ୟୁର ଏକ କାହାଣୀ

ଏ ସଂସାରରେ କ'ଣ ସବୁ ଅଘଟଣ ଘଟୁଥିବାର ଦେଖି କେଉଁ ଜଣେ ଭଦ୍ରଲୋକ କୁଆଡ଼େ ଟିପ୍‌ପଣୀ କାଟିଥିଲେ - କିସ ପୁଣି ଦେଖା ନଯାଏ...। ଭଦ୍ରଲୋକଟି କେବେ ସେ କଥା କହିଥିଲେ, କେଉଁଠି କହିଥିଲେ, ଆଉ ଠିକ୍ କାହିଁକି କହିଥିଲେ କିଛି ଜଣା ନାହିଁ। ତଥାପି ଏକଥା ମାନିନେବାକୁ ହୁଏ ଯେ ସେ ଯାହା କହିଥିଲେ ତାହା ଖାଣ୍ଟି ସତ୍ୟ। କିଏ କ'ଣ କେବେ କଳ୍ପନା କରିଥିଲା ଯେ ଏ ଦୁନିଆରେ ଏମିତି ପୁଣି ଦିନ ଆସିବ ଯେବେ କେହି ନିଜ ମୃତ୍ୟୁ କାହାଣୀ ନିଜେ ବଖାଣି ବସିବ ? ମୁଁ କ'ଣ ନିଜେ କଳ୍ପନା କରିଥିଲି ?

ଅହୋ ! କିମାଶ୍ଚର୍ଯ୍ୟମତଃପରଂ। ମୁଁ ବୁଝିପାରୁଛି ଯେ ମୁଁ ମୋର ମୃତ୍ୟୁ କାହାଣୀ ବଖାଣୁଛି ଶୁଣିଲେ ଲୋକେ ବାବୁଙ୍କ ମଥା ଖରାପ ହେଲାଣି ବୋଲି କହିବେ। କିନ୍ତୁ କିଏ କ'ଣ କହିବ ବୋଲି ମୁଁ ଏତେ ବଡ଼ କଥାଟିଏ ନ କହିବି ବା କେମିତି। ଶୁଣନ୍ତୁ ତେବେ ମୋର କାହାଣୀ। କେତେ ବର୍ଷ ତଳର କଥା, ବନ୍ଧନିର୍ମାଣ ସମ୍ବନ୍ଧୀୟ ଏକ ଆଲୋଚନା ଚକ୍ରରେ ଭାଗ ନେବାପାଇଁ ଜୟରାମବାବୁ ଦିଲ୍ଲୀ ଯାଇଥିଲେ। ସେ ସେଠାରେ ଥିଲାବେଳେହିଁ ପାକିସ୍ତାନ ଅତର୍କିତ ଭାବରେ ଭାରତ ଆକ୍ରମଣକଲା। ଛାମ୍ବ ଅଞ୍ଚଳରେ ତାର ସାଞ୍ଜୁଆ ବାହିନୀ ଆଉ ଶହ ଶହ ପେଟନ୍ ଟେଙ୍କ୍ ଭାରତ ଆଡ଼କୁ ଧସାଇପଶିଲେ ଏବଂ ବିନା ବାଧାରେ ଆଗକୁ ମାଡ଼ିଚାଲିଲେ। ସେମାନଙ୍କ ପ୍ରଧାନ ଲକ୍ଷ୍ୟ ଥିଲା ପଞ୍ଜାବରୁ କାଶ୍ମୀରକୁ ଯାଉଥିବା ଏକମାତ୍ର ରାଜପଥକୁ ଛିନ୍ନ କରିଦେଇ କାଶ୍ମୀରକୁ ମାଲ ଯୋଗାଣର ବାଟ ବନ୍ଦକରିଦେବେ। ଫଳରେ ଗୋଟାଏ ହାଲୁକା ଜେଠୁଆ ପବନରେ ପାଚିଲା ଆମ୍ବ ଗଛରୁ ଝଡ଼ି ପଡ଼ିଲା ପରି ସେବର୍ ଜେଟ୍ ବିମାନର ସାମାନ୍ୟ କେତେ କାଁଭାଁ ଉଡ଼ାଣ ଆଉ ବୋମା ବର୍ଷଣ ଫଳରେ କାଶ୍ମୀରରେ ଥିବା ଭାରତୀୟ ସେନା ଆତ୍ମସମର୍ପଣ କରିଦେବେ ଆଉ ସମଗ୍ର କାଶ୍ମୀର ପାକିସ୍ତାନର କୂଟନୈତିକ ଟୋକେଇରେ ଝଡ଼ି ପଡ଼ିବ।

ମଦାନ୍ଧ ଆୟୁବ୍ ଖାଁ ଛାତି ଫୁଲାଇ ନିଶ ବଙ୍କାଇ ଚିତ୍କାର କଲା, "ଟୀକା ଖାନ୍, ଶତ୍ରୁର ତୋଟି ବେଶ୍ ଧରିଛୁ। ଆହୁରି ଜୋରରେ କାମୁଡ଼ି ଧର। ଆହୁରି ଜୋର୍। ଭଲ କରି ଝୁଣି ଦେ। ଆଉ ତୋରି ମୁନିଆଁ ଦାନ୍ତରେ ତାର ଶଙ୍ଖନଳୀ ଛିଣ୍ଡାଇଦେ। ଯେ ସାବାସ୍।"

ଏଣେ ଜେନେରାଲ୍ ଚୌଧୁରୀ ତାଙ୍କ ନିଶ ମୋଡ଼ିଲେ। ମନକୁ ମନ କହିଲେ, ଆଚ୍ଛା ବେଟା - ଦେଖିନେବି। ଆଉ ଆଦେଶ ପାଇଁ ଶାସ୍ତ୍ରୀଜୀଙ୍କୁ ଅନାଇଲେ। ମନ୍ତ୍ରିମଣ୍ଡଳ ସଙ୍ଗରେ ପରାମର୍ଶ କରିବାକୁ ମଧ୍ୟ ବେଳ ନାହିଁ ଜାଣି ଶାସ୍ତ୍ରୀଜୀ ସିଧାସଳଖ ହୁକୁମ ଦେଲେ - 'ଚୌଧୁରୀ ସାହେବ - ଆଉ ଦେଖୁଛ କ'ଣ? କାଶ୍ମୀର ଉପରେ ଆକ୍ରମଣ ତ ଭାରତ ଉପରେ ଆକ୍ରମଣ। ଯାଆ, ମାଡ଼ିଯାଆ ଲାହୋର ଆଡ଼କୁ।' ପୁଣି ଯୋଡ଼ିଦେଲେ - 'ଆଉ ଶୁଣ! ଏ ପାକିସ୍ଥାନୀ ପେଟନ୍ ଟେଙ୍କ୍‌ର ପିମ୍ପୁଡ଼ି ଧାଡ଼ିକୁ ଟିକିଏ ଭଲକରି ନିଆଁ ହୁଳା ଦେଖାଇଦିଅ।'

ଲାଗିଗଲା ଘମାଘୋଟ ଯୁଦ୍ଧ। ପାକିସ୍ଥାନର ସେବର୍ ଜେଟ୍ ବିମାନ ସବୁ କ୍ଷେପି ଆସିଲେ ଭାରତର ଭିତରୁ ଭିତରକୁ। ଶାସ୍ତ୍ରୀଜୀ ଦେଶବାସୀଙ୍କୁ ଜାଗତିଆର କରାଇଦେଲେ। କହିଲେ - ଦେଶବାସୀ, ସାବଧାନ। ଅନ୍ୟର ବଳରେ ବଳୀୟାନ୍ ଏ ପାକିସ୍ଥାନ ଆମ ଶିଳ୍ପ କାରଖାନା, ବିଦ୍ୟୁତ୍ ସରବରାହ ଆଉ ମାଲ-ଯୋଗାଣ କେନ୍ଦ୍ରମାନଙ୍କ ଉପରେ ଆକ୍ରମଣ କରିବ। ତା'ର ଆକାଶଛତାବାହିନୀକୁ ଏଇଠି ସେଇଠି ଓହ୍ଲାଇ ଦେଇ ପ୍ରଧାନ ପ୍ରଧାନ ପୋଲ ଭାଙ୍ଗିବାକୁ ଉଦ୍ୟମ କରିବ। ଘାଟୀ ଜାଗାମାନଙ୍କରେ ଆଉ ବନ୍ଧମାନଙ୍କ ଉପରେ ବୋମା ପକାଇ ଲୋକଙ୍କ ମନରେ ଆତଙ୍କ ସୃଷ୍ଟି କରିବାକୁ ଚେଷ୍ଟା କରିବ। ତେଣୁ 'ହୋ ହୁସିଆର'। କ୍ଷୀଣବପୁମହାତେଜ ଲାଲବାହାଦୂର ହାତ ମୁଠା ଟାଣ କରି ସ୍ଲୋଗାନ ଦେଲେ - 'ଜୟ ଜବାନ୍, ଜୟ କିଶାନ୍।'

ଦିଲ୍ଲୀର ବନ୍ଧ ନିର୍ମାଣ ଆଲୋଚନାଚକ୍ର ମଝିରେ ହିଁ ଭାଙ୍ଗିଗଲା। ସମସ୍ତେ ନିଜ ନିଜ କର୍ମସ୍ଥଳୀକୁ ଦଉଡ଼ିଲେ। ପାରାଦୀପ ଆଉ ମିଗ୍ କାରଖାନା ପରି କେତୋଟିକୁ ଛାଡ଼ିଦେଲେ ତ ଓଡ଼ିଶାର ଜୀବନ ନାଟିକା ରାଉରକେଲା ଆଉ ହୀରାକୁଦ। ବୋମାମାଡ଼ରେ ହୀରାକୁଦ ଭାଙ୍ଗିଗଲେ ଉଣା ଅଧିକେ ସାରା ଓଡ଼ିଶା ବିପନ୍ନ ହେବ- ଜୟରାମ ବାବୁ ଆଉ ରିଜର୍‌ଭେସନ୍‌କୁ ଅପେକ୍ଷା ନ କରି ଯେଉଁ ଟ୍ରେନ୍‌ରେ ସିଟ୍ ମିଳିଗଲା ସେ ଟ୍ରେନ୍‌ରେ ଦିଲ୍ଲୀରୁ ଚାଲିଆସିଲେ କଲିକତା, ଆଉ କଲିକତାରୁ ଝାରସୁଗୁଡ଼ା।

ଝାରସୁଗୁଡ଼ା ପହଞ୍ଚିଲାବେଳକୁ ରାତି ଦୁଇ। ଗତ ଦୁଇ ରାତିର ଅନିଦ୍ରା ଆଖି ବୁଜି ହୋଇଯାଉଛି। ଏଣେ ଭୋର ୬ଟାରେ ଯାଇ ସମ୍ବଲପୁର ଗାଡ଼ି। ଜୟରାମ ବାବୁ ତରବରରେ ଟ୍ରେନରୁ ଓହ୍ଲାଇ କୁଲି ମୁଣ୍ଡରେ ସୁଟ୍‌କେଶ ଆଉ ବେଡ଼ିଂ ଲଦି ଦେଇ ଦଉଡ଼ିଲେ ୱେଟିଂ ରୁମ୍‌କୁ, ଜାଗାଟିକିଏ ମିଳିଲେ ଅନ୍ତତଃ ତିନି ଘଣ୍ଟା ଢୁଳେଇବେ। ୱେଟିଂରୁମ୍‌ରେ ପହଞ୍ଚି ଦେଖିଲେ ଇଜି ଚେଆର୍, ସାଦା ଚେଆର୍ ସବୁ ଭର୍ତ୍ତି। ତଳେ କେଉଁଠି ଥାନ ନାହିଁ - ଘରିଆଡ଼ିକି ବିଛଣା ପାରିଦେଇ ସମସ୍ତେ ଶୋଇଯାଇଛନ୍ତି।

କୁଆଡ଼େ ସବୁ ଯିବେ କେଜାଣି ! କିନ୍ତୁ ଇଏ କ'ଣ ? ଜୟରାମ ବାବୁ ନିଜ ଆଖିକି ବି ବିଶ୍ବାସ କରିପାରିଲେନି । ଦକ୍ଷିଣ କାନ୍ଥକୁ ଲାଗି ପଡ଼ିଥିବା ବେତବୁଣା ପଲଙ୍କ ଏକବାରିକେ ଖାଲି - ସେ ଉପରେ କେହି ତ ଶୋଇନାହାନ୍ତି, ଆଗରୁ ଅକ୍‌ତିଆର କରିଛି ବୋଲି ଜଣାଇଦେବା ପାଇଁ କାହାର ହ୍ୟାଣ୍ଡ ବ୍ୟାଗ୍ କିମ୍ବା ବିଛଣା ମଧ୍ୟ ସେ ଉପରେ ନାହିଁ ।

କୁଲି ମୁଣ୍ଡରୁ ବିଛଣା ଟାଣିଆଣି ଜୟରାମ ବାବୁ ତରତରରେ ପଲଙ୍କ ଉପରେ ବିଛଣାଟି ଖୋଲିଦେଲେ - କାଳେ ସେହି ଟ୍ରେନ୍‌ରେ ଆସିଥିବା ଅନ୍ୟ କେହି ଭିତରକୁ ପଶିଆସି ନିଜ ହେଣ୍ଡବେଗ୍ କି ଏଟାଚି ବେଗ୍ ଖଟ ଉପରେ ରଖିଦେବ ସେଇ ଭୟରେ । ସୁଟ୍‌କେଶଟିକୁ ଖଟ ତଳେ ରଖିଦେଇ କୁଲି ପଇସାପାଇଁ କ'ଣ କହିବାକୁ ଯାଉଥିଲା- କିନ୍ତୁ ସକାଳେ ସମ୍ବଲପୁର ଟ୍ରେନ୍‌ରେ ଚଢ଼ାଇଦେଲା ପରେ 'ଆଚ୍ଛା ବକ୍‌ସିସ ମିଲେଗା' ଶୁଣି ଚାଲିଗଲା । ଜୟରାମ ବାବୁ ବିଛଣାରେ ଗଡ଼ି ପଡୁ ପଡୁ ଆଖିବୁଜିଦେଲେ । ନିଦରେ ବେହୋସ୍ ହେବା ଆଗରୁ କିନ୍ତୁ ତାଙ୍କର ମନେହେଲା - ଇଲେକ୍‌ଟ୍ରିକ୍‌ସପ୍ଲାଇ କଟିଯାଇଛି । ଚାରିଆଡ଼ ଅନ୍ଧାର ।

x x x x

କିଟିକିଟି ଅନ୍ଧାର, ଦୂରରେ ଶବ୍ଦ ହେଲା ଟିନ୍ ଟିନ୍ ଟିନ୍ ଟିନ୍ । କେମିତିକା ଅଦ୍ଭୁତ ଆବାଜ୍ । ଶତ୍ରୁ ଆକ୍ରମଣ ହେବ ପରା - ଏଆର୍ ରେଡ୍ ସାଇରେନ୍ ନିଶ୍ଚୟ । ତେବେ ପୁଙ୍ଗାଗୁଡ଼ାକ କ'ଣ ଏମିତି ଶବ୍ଦ କରେ ? ସେ ସିନା ଗର୍ଜନ କରେ ପୁ-ଉଁ-ଉଁ- ଉଠେ ଏବଂ ପଡ଼େ, ପୁଣି ଉଠେ ଏବଂ ଆଉ ଥରେ ପଡ଼େ । ଏମିତି ଟିନ୍ ଟିନ୍ ଟିନ୍ ଟିନ୍ ! ଏ ଲୋକଗୁଡ଼ାକ ପୁଙ୍ଗା ବି ବଜାଇ ଜାଣୁନାହାନ୍ତି - ଯୁଦ୍ଧ କେବେ ଦେଖିଥିଲେ ତ ! (ଜୟରାମ ବାବୁଙ୍କ ମୁଣ୍ଡ ଭିତରେ କିଏ ଜଣେ ଟିପ୍‌ପଣୀ କାଟୁଥିଲା ।)

ପ୍ଲାଟଫର୍ମ ଆଡ଼ିକି ଭୀଷଣ ହୋ ହଲ୍ଲା - ଏ-ଏ ଆଡ଼ିକି ଆସ । ଏ, ସେଆଡ଼ିକ କୁଆଡ଼େ ଯାଉଛ ? ହେଇ ଆସିଗଲା - ହେଇ-ହେଇ-ହେଇ । ପାକିସ୍ତାନୀ ପ୍ଲେନ୍ ଆସିଗଲା ନା କ'ଣ ! ଏମାନେ ସିନା ପ୍ଲେନ୍ ଆସିବାକ୍ଷଣି ପାଖରେ ଥିବା ଯେକୌଣସି ଟ୍ରେଞ୍ଚ୍ ଭିତରକୁ ପଶିଯାଆନ୍ତେ - ଏମିତି ବିଶୃଙ୍ଖଳା ଧାଁ ଧପଡ଼ ! ବୋଧହୁଏ ଏମିତି ଆକ୍ରମଣବେଳେ କିଏ କେଉଁ ଟ୍ରେଞ୍ଚ୍‌ରେ ଆଶ୍ରୟ ନେବେ ଆଗରୁ ଜଣାଇ ଦିଆହୋଇନି । ତେବେ ଟ୍ରେଞ୍ଚ୍ ଯଦି ନାହିଁ, ଯିଏ ଯେଉଁଠି ଅଛ ସେଇଠି ଗଡ଼ିପଡ଼ । ବୋମା ଫାଟିଲେ ସିଧାସଳଖ ଯେତେ ମରନ୍ତି ତା'ଠାରୁ ବେଶି ଜଖମ ହୁଅନ୍ତି କାଚ ଆଉ ଲୁହା ଟୁକୁଡ଼ାର ଆଘାତରେ । ଶୋଇଗଲେ ଭଲ । (ଜୟରାମ ବାବୁଙ୍କ ମୁଣ୍ଡ ଭିତରେ ପୁଣି ସେଇ ଟିପ୍‌ପଣୀ ।)

ଗୁଁ-ଉଁ ଗର୍ଜନ। ହଁ, ଏଥର ଆସିଗଲା ପାକିସ୍ତାନୀ ବୋମ୍ବର୍। ଉଃ, ଘରିଆଡ଼ିକି ଗୁଁ-ଉଁ ସଁ-ଅ ଗୁ-ଉଁ ଗୁଡ଼ିଏ ବୋମ୍ବର୍ - ସେବର୍ ଜେଟ୍ ସବୁ ହୋଇଥିବେ। ଫଟ୍ ଫଟ୍ ଫଟ୍ ଫଟ୍ ଆବାଜ୍। ଆଣ୍ଟିଏଆର୍ କ୍ରାଫ୍‌ଟ ଫାୟର - ଆମ ବୋମ୍ବର ବିଧ୍ୱଂସୀ କମାଣରୁ ନିଶ୍ଚୟ। ଯା' ହେଉ, ଆମ ଲୋକେ ବି ତିଆର୍। ତେବେ ଏମିତି ଓଦା ସେଲେଇଗଲା ତାଳଫୋଟକା ପରି ଫୁଟ୍ ଫୁଟ୍ କ'ଣ ମ!

ଘରିଆଡ଼ିକି ତ ଏମିତି ଅନ୍ଧାର-ଆଲୁଅ ସବୁ ଲିଭାଇ ଦିଆଯାଇଛି, ଏଗୁଡ଼ାକ ଆକାଶରୁ ଝାରସୁଗୁଡ଼ା ଚିହ୍ନିଲେ କେମିତି କେଜାଣି! ଆଲୁଅ ସନ୍ଧ୍ୟାବେଳୁ ଲିଭାଇ ଦେବା ଉଚିତ୍‌ଥିଲା। ନ ହେଲେ ଯଦି ବତିମାନଙ୍କ ଉପରେ କଳାକନା କିମ୍ବା କଳାରଙ୍ଗ ମଡ଼େଇ ଦେଇଥାଆନ୍ତେ, ଆକାଶକୁ ଆଉ ଆଲୁଅ ଦିଶନ୍ତା ନି। କିନ୍ତୁ ଆମ ଲଢୁଆ ବିମାନ ସବୁ ଗଲେ କୁଆଡ଼େ?

ହେଇ ଆସିଗଲେ ଆମ ମଶକ ବିମାନ - ମଶକ-ମଶକ ଘରିଆଡ଼େ ମଶକ- ଆମ ନେଟ୍ ଫାଇଟର୍‌ସ। ବାଃ, ଘରିଆଡ଼ିକି ମଶକ ଆଉ ଫଟ୍ ଫଟ୍ ଫଟ୍ ଫଟ୍। (ଜୟରାମ ବାବୁଙ୍କ ମୁଣ୍ଡ ଭିତରେ ପୁଣି କିଏ ଉଙ୍କିମାରି ଟିପ୍‌ପଣୀ କାଟିଲା - ଆମେ ବୁଦ୍ଧୁଗୁଡ଼ାକ -ଏମିତି ଆଣ୍ଟି ଏୟାର କ୍ରାଫ୍‌ଟ ଫଟ୍ ଫଟ୍ କଲେ ତ ଆମ ମଶକ ବିମାନସବୁ ବି ଖସିପଡ଼ିବ।)

ହେଇ, କେତେଲୋକ ଘର ଭିତରକୁ ମାଡ଼ି ଆସିଲେ। ପାକିସ୍ତାନୀଗୁଡ଼ାକ; ଆଉ ସେ କ'ଣ! ଟେଙ୍କ୍! ଗୋଟାକ ପରେ ଗୋଟାଏ ଧାଡ଼ି ଛୁଟିଛନ୍ତି। କି ଆଶ୍ଚର୍ଯ୍ୟ କଥା। ଏଇଠିକି ଟେଙ୍କ୍ ଆସିଲା କୁଆଡୁ! ଇସ୍, କେତେ ନାଇଁ କେତେ, କେମିତି ଟୁମା ଟୁମା ଦିଶୁଛନ୍ତି।

ବାପ୍‌ରେ - କେଡ଼େ କେଡ଼େ ଲମ୍ବା କମାଣ। ବୋଧହୁଏ ପାକିସ୍ତାନୀ ପାରାଟ୍ରୁପର୍‌ଗୁଡ଼ାକ ଏ ସାନ ସାନ ଟେଙ୍କ୍ ସବୁ ନେଇ ତାଙ୍କ ଉଡାଜାହାଜମାନଙ୍କରୁ ଡ଼େଇଁଛନ୍ତି। ହେଇ, ଟେଙ୍କ୍‌ସବୁ ଜୟରାମ ବାବୁଙ୍କୁ ବେଢ଼ିଗଲେଣି। ଟେଙ୍କ୍‌ର ବନ୍ଧୁକରେ ବି କ'ଣ ବେଅନେଟ୍ ଥାଏ? ଏମିତି କେଞ୍ଚୁଛନ୍ତି କେମିତି? ଭୁଷି ପକାଉଛନ୍ତି ଉଃ!

ଜୟରାମ ବାବୁ କଲବଲ ହୋଇ ହାତ ଛିଞ୍ଚାଡ଼ିଲେ। ଭୀମ, ହନୁମାନଙ୍କ ପରି ତାଙ୍କର ବି ବଳ ଥାଆନ୍ତା କି! ଗୋଟାଏ ଟେଙ୍କ୍‌କୁ ଉଠାଇ ଆଉ ଟେଙ୍କ୍ ଉପରେ କଚଡ଼ିଦିଅନ୍ତେ। ହେଲା - ନ ପାରିଲେ ନାଇଁ। ସେ କିନ୍ତୁ ଉଠି ପଳାଇ ଯାଉନାହାନ୍ତି। ଜୀବନ ଗଲେ ଯାଉ, ଏ ପାକିସ୍ତାନୀଙ୍କ ହାତରେ ସେ ଆତ୍ମସମର୍ପଣ କରିବେନି। 'ଜୟ ବଜରଙ୍ଗ' କହି ଜଙ୍ଘ ପାଖରେ ଖୁମ୍ପୁଥିବା ଗୋଟାଏ ଟେଙ୍କ୍‌କୁ ଜୟରାମ ବାବୁ ଠେଲିବାକୁ ଚେଷ୍ଟାକଲେ; କିନ୍ତୁ ପାରିଲେନି। ଏଗୁଡ଼ାକୁ ଓଲଟେଇ ଦେଇପାରନ୍ତେ କି।

ଉଃ, ଜୟରାମ ବାବୁଙ୍କ ଦେହର ସବୁଆଡ଼େ ଭୁଷିପକାଉଛନ୍ତି। ରକ୍ତ - ଚାରିଆଡ଼ିକି ରକ୍ତ। ଏ ନିର୍ଯ୍ୟାତନା ସେ କେତେ ଆଉ ସମ୍ଭାଳିବେ ? ଜୟରାମ ବାବୁ ବୋଧହୁଏ ଜାଣିସାରିଲେଣି ତାଙ୍କ ମରଣ ପାଖେଇଆସିଛି। ଧୀରେ ଧୀରେ ତାଙ୍କ ଜ୍ଞାନ ହଜିଗଲା।

x x x x

ଲୋକଟା ମଲାଣି ଭାବି ମୁଁ ତା' ଦେହ ଭିତରୁ ବାହାରି ଆସିଲି। ବାହାରି ଆସିଲି ସିନା - ଏବେ ଯିବି କୁଆଡ଼େ ? ଭାବିଲି କେଉଁ ଚେୟାର୍ ଗୋଟାକରେ ଆଗ ଟିକିଏ ବସିଯିବି ଆଉ ମୋର ଭବିଷ୍ୟତ କର୍ମପନ୍ଥା ସ୍ଥିର କରିନେବି। କେଉଁଠି ବସିବି ? ସବୁ ଚେୟାର୍ ତ ଭର୍ତ୍ତି। ଚେୟାରମାନଙ୍କରେ ବସି ଗୋଡ଼ଦୁଇଟିକୁ ଟେବୁଲ ଉପରେ ଲଦିଦେଇ ଏଗୁଡ଼ାକ ଘୁଙ୍ଗୁଡ଼ି ମାରୁଛନ୍ତି। ଇଚ୍ଛାହେଲା ଜଣକର ନାକ ଚିପି ଧରିବି। ଦେଖିବି, ନାକ ଚିପିଦେଲେ ପବନ କେମିତି ପାଟିବାଟେ ବେଲୁନ୍ ଫାଟିଲାପରି ବାହାରିପଡ଼ିବ। ପାଖକୁ ଗଲି, ହାତ ବଢ଼ାଇଲି, କିନ୍ତୁ ହାତ କାହିଁ ? ଆରେ ଗୋଡ଼ ବି ନାହିଁ ତ। ମୁଁ କ'ଣ ପବନରେ ଭାସୁଛି ? ତେବେ ଆଖି ଦିଟି ନଥିବ ଯଦି। କିନ୍ତୁ ଦେଖିପାରୁଛି ଯେ ! ଆଖି ନ ଥାଇ କ'ଣ ଦେଖିହୁଏ ? ଆଚ୍ଛା ଗୋଟାଏ ପାଲା।

ଚା' ଖାଇବାକୁ ପ୍ରବଳ ଇଚ୍ଛା ହେଉଛି, ତୋଟି ସତେ ଯେମିତି ଶୁଖିଗଲାଣି। ଠିକ୍‌କଲି ଚା'ଦୋକାନ ଆଡ଼ିକି ଘୂରି ଆସିବି। ଷ୍ଟେସନ ବାରଣ୍ଡାରେ ଗୋଡ଼ ପକାଇବା ପାଇଁ ମଧ ବାଟ ନାହିଁ, କିଏ କେତେ ଢଙ୍ଗରେ ଆଉ କିଏ କେତେ ଭଙ୍ଗୀରେ ଶୋଇଯାଇଛନ୍ତି। ମୁଣ୍ଡ ସିବୁ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଚାରିଆଡ଼ିକି ବିଞ୍ଚି ହୋଇପଡ଼ିଛି। ନାନା ରକମର ଘୁଙ୍ଗୁଡ଼ି, ନାନା ପ୍ରକାରର ପାଟି ଏବଂ ନାକର ଗର୍ଜନ। ମାରବାଡ଼ି ଭଦ୍ରଲୋକ ଜଣକ ଏଡ଼େ ବଡ଼ ବିରାଟ ଥନ୍ତଲ ପେଟ ବିସ୍ତର ଉପରେ ଲଦିଦେଇ କି ଆରାମରେ ଶୋଇଯାଇଛି; ଆଉ ବିଚାରୀ ଭଦ୍ର ମହିଳା - ତା ସ୍ତ୍ରୀ ନିଶ୍ଚୟ - ଗୋଡ଼ ଦି'ଟା ଲମ୍ବେଇ ବାକିସବୁ ଆଉଜି ବସି ବସି ଘୁମେଇ ପଡ଼ିଛି। ତା କୋଳରେ ମୁଣ୍ଡ ଦେଇ ଯିଏ ଶୋଇଛି ସେ ତା ଝିଅ କି ନାତୁଣୀ କେଜାଣି। ଚାରିଆଡ଼ିକି ବାକ୍‌ସ ଆଉ ପେଟରା। ଇଚ୍ଛା ହେଉଥିଲା ଏଠାର ବାକ୍‌ସ କେତେ ନେଇ ଆଉ କେଉଁଠି ରଖିଦିଅନ୍ତି, ଆଉ ସେଠାର ପେଟରା ସବୁ ଆଣି ଏଇଠି ଥୋଇଦିଅନ୍ତି।

ଷ୍ଟେସନ ମାଷ୍ଟରଙ୍କ କୋଠରିରେ କ'ଣ ସବୁ ଖଟ୍-ଖଟ୍ ଖଟ୍-ଖଟ୍ କରି ଚାଲିଛି। କିଏ ଜଣେ ଚିକ୍ରାର କଲା 'ବାଲାଜୀ, ଦେଖ୍ ଥ୍ରି ଅପ୍‌ର ସିଗ୍‌ନାଲ ଡାଉନ୍ ହେଲାଣି ନା ନାହିଁ ?'

ଦୂରରେ ଦେଖିଲା ଚା' ଦୋକାନ। କୁକୁରଟିଏ କ'ଣ ସବୁ ଶୁଙ୍ଘି ବୁଲୁଛି - ପୋଷା କୁକୁର। ଆରେ ମୋତେ କ'ଣ ଘଷିହୋଇ ଯିବ ନା କ'ଣ ? ରାସ୍କେଲକୁ

ଦେବି ଗୋଟାଏ ଲାତ ଯେ। କିନ୍ତୁ ଇଏ କ'ଣ ମୋ ଗୋଡ଼ ଭିତରେ ଚଳିଗଲା! ମଣିଷକୁ ଦେଖିପାରୁନି ନା କ'ଣ!

ଚା ଦୋକାନକୁ ଗଲି। ଚା' ଦୋକାନୀ ମୋତେ ଅନାଇଲା ନି। ପାଖରେ ପଡ଼ିଥିବା ଚୌକି ଗୋଟାକରେ ବସିଗଲି। କହିଲି, ଏକ କପ ଚା। କିନ୍ତୁ ପାଟିରୁ କଥା ବାହାରିଲା ନି। ତାଳି ବା ମାରନ୍ତି, ଆଉ ସେ ମୋ ଆଡ଼ିକି ଅନାଇଲେ ହାତରେ ଠାରି ଚା ଦେବାକୁ କହନ୍ତି - କିନ୍ତୁ ତାଳି ମାରିବି କେମିତି? ଏତେବେଳ ବସିଲିଣି, ଲୋକଟା କ'ଣ ମୋତେ ଦେଖୁନି! ରହ ମଜା ଚଖାଉଛି। ନିଜେ ଗୋଟିଏ କପ୍‌ରେ ଚା ଢ଼ାଳି ପିଇଯିବି। କପ୍ ପାଖକୁ ଗଲି। କିନ୍ତୁ ଚା କେଟ୍‌ଲି ଧରିବି କେମିତି? ହାତ ଯେ ନାହିଁ। ହେ ଭଗବାନ ତେବେ କ'ଣ ମୁଁ ଆଉ ଚା ଖାଇପାରିବି ନି? ଚାର ବାସନା କିନ୍ତୁ ବଢ଼ିଆ ମନେ ହେଉଛି। ହେଉ ଆଘ୍ରାଣରେ ହେଲେ ଅର୍ଦ୍ଧ-ଭୋଜନ ହୋଇଯାଉ।

ଏଥର ଭାବିଲି ସହର ଟିକିଏ ବୁଲି ଆସିବି। ଦେଖିବି ପାକିସ୍ତାନୀମାନେ କ'ଣ ସବୁ ଭଙ୍ଗାରୁଜା କଲେ, ଆଉ କୁଆଡ଼େ ଗଲେ। ବାହାରେ କେତେଟା ବସ୍। କେତେ ଜଣ ତିନିଜଣିଆ ସିଟ୍‌ମାନଙ୍କରେ ଲମ୍ବା ଲମ୍ବା ଶୋଇଯାଇଛନ୍ତି ଡ୍ରାଇଭର, କଣ୍ଡକ୍ଟର, ଆଉ କେହି କେହି ହେବେ। ଆଉମାନେ ରିକ୍‌ସା। ରିକ୍‌ସାବାଲା ସବୁ କେମିତି ମୋଡ଼ି ମାଡ଼ି ହୋଇ ସିଟ୍‌ମାନଙ୍କରେ ଶୋଇଛନ୍ତି, ଇଚ୍ଛା ହେଲା ଜଣଙ୍କୁ ଅଣ୍ଟା ପାଖରେ କୁତୁକୁତୁ କରିଦିଅନ୍ତି।

ଦି' ଆଡ଼ିକି ଫଳ ଦୋକାନ। ସବୁ ଦୋକାନ ବନ୍ଦ। ଜଣେ କିନ୍ତୁ ଦୋକାନ ଖୋଲା ରଖି ବସି ବସି ଧ୍ୟାନ କରୁଛି। ତା ପରେ ପାନଦୋକାନ। ଏ ରାତିରେ କିଏ ପାନ ଖାଇବ? କାଶ୍ମୀର ସ୍ୱିଟ୍ ମିଟ୍ ସପ୍ - ପଞ୍ଜାବୀ ହୋଟେଲ...ସମ୍ବଲପୁରୀ ବସ୍ତ୍ରାଳୟ - କାହିଁ କେଉଁଠି ତ ପାକିସ୍ଥାନୀ ଆକ୍ରମଣର ଚିହ୍ନ ନାହିଁ। ତେବେ ଏଗୁଡ଼ାକ ଗଲେ କୁଆଡ଼େ? ଏ ସବୁ ଲକ୍ଷ୍ୟ କରି କରି ରାସ୍ତା ଡେଇଁ ଯାଉଛି, ଗୋଟାଏ ରିକ୍‌ସାବାଲା ସିଧାସଳଖ ମୋ ଉପରେ ରିକ୍‌ସା ମଡ଼ାଇ ଚାଲିଗଲା। ମୋତେ ବୋଧହୁଏ ଦେଖି ପାରିଲାନି - କିନ୍ତୁ ମୋର କିଛି ଜଖମ ହେଲାନି ତ!

ସହରରେ ଆଉ କ'ଣ ବା ଦେଖିବି - ଷ୍ଟେସନ ଆଡ଼କୁ ଆଉ ଥରେ ମୁହାଁଇଲି। କିଛି ଗୋଟାଏ ସେଇଠି ଯେମିତି ମୋରେ ଆକର୍ଷି ଧରୁଥିଲା। ମୁଁ ମୁକ୍ତ - କିନ୍ତୁ ସେ ମୁକ୍ତିରେ ଆନନ୍ଦ କାହିଁ? ଶାନ୍ତି କାହିଁ? ତୃପ୍ତି କାହିଁ? ତୋଟି ନାହିଁ; ତଥାପି ତୋଟି ଶୁଖିଯାଉଛି। ପେଟ ନାହିଁ; ତଥାପି ପେଟ ଧୁ ଧୁ ଜଳୁଛି। ଜିଭ ନାହିଁ - କିନ୍ତୁ ଖାଇବା ପାଇଁ ତୀବ୍ର ଲାଳସା।

ପୁଣି ଷ୍ଟେସନକୁ ଫେରିଆସିଲି। ଭାବିଲି ୱେଟିଂ ରୁମ୍‌କୁ ଯାଇ ଜୟରାମ ବାବୁଙ୍କୁ ଟିକିଏ ଦେଖିଆସିବି। ନିଜ ଭାବନାରେ ନିଜେ ଯନ୍ତସ୍ତ ହୋଇଗଲି। ଜୟରାମ ବାବୁ

ସତରେ କିଏ - ୱେଟିଂ ରୁମ୍‌ରେ ଯିଏ ଏବେ ପଡ଼ିରହିଛି ସିଏ, ନା ମୁଁ? ଯଦି ଯିଏ ପଡ଼ିରହିଛି ସିଏ କେବଳ ଜୟରାମର ଶରୀର, ତା'ର କାୟା, ତେବେ ମୁଁ? ଜୟରାମର ଛାୟା ? ତା'ର ପ୍ରେତାତ୍ମା ? ତା ହେଲେ ଠିକ୍ ଜୟରାମଟି କିଏ ? ସେହି ଶରୀର ଆଉ ପ୍ରେତାତ୍ମାର ସମ୍ମିଶ୍ରଣ ନା ଆଉ କିଛି ଅଲଗା ? ତେବେ ମୁଁ ବାହାରିଆସିଲା ପରେ ସେ ଶରୀର ଯଦି ଜୟରାମ ନ ହେଲା, ତେବେ ଗୋଟାଏ ମଲା ବଳଦର ମଢ଼ା ଆଉ ଶରୀର ଭିତରେ ପାର୍ଥକ୍ୟ କ'ଣ ? ଆଉ ମୋର ପରିଚୟ ! ଅନ୍ୟ ପ୍ରେତାତ୍ମାମାନଙ୍କ ମଧ୍ୟରେ ମୁଁ ଚିହ୍ନିତ ହେବି କେମିତି ? ସେମାନେ କ'ଣ ତାଙ୍କ ପଙ୍‌କ୍ତିରେ ମୋତେ ସ୍ଥାନ ଦେବେ ? ତାଙ୍କ ଭିତରେ ବି କ'ଣ ବାଛବିଚାର ଅଛି ? ସେଗୁଡ଼ାକ କାହାନ୍ତି - କେହି କେଉଁଠି ଦିଶୁନାହାନ୍ତି ତ ।

ଚା' ନଖାଇବା ଫଳରେ ତ କେମିତି ଗୋଟାଏ ଭାରୀ ଭାରୀ ଲାଗୁଥିଲା - ତହିଁରେ ପୁଣି ଏ ବାଜେ ଚିନ୍ତାଗୁଡ଼ିକ । ଶିରୋନାସ୍ତି ଶିରବ୍ୟଥା । ୱେଟିଂ ରୁମ୍‌କୁ ଫେରିଆସି ଦେଖିଲି ଖଟରେ ଶରୀରଟି ସେମିତି ପଡ଼ିଛି । କି କୁତ୍ସିତ ରୂପ । ଠିକ୍ ଗୋଟିଏ ମଲା ବଳଦ ପରି, କେଡ଼େ ପେଟ - କେଡ଼େ ଦେହ; ସତେ ଯେମିତି ଗୋଟାଏ ଆଲକାତରା ଡ୍ରମ୍ । ମୁଁ ପୁଣି ସେ ଭିତରେ ଥିଲି । ଭଲ ହେଲା, ବାହାରିଆସିଛି ! ନ ଗଙ୍ଗଦତଃ ପୁନରେତି କୂପଂ । ସକାଳ ହେଲେ କେହି କେହି ଆସି ସେ ଶରୀରକୁ ଟେକି ନେଇଯିବେ । ପୁଅମାନେ - ବନ୍ଧୁମାନେ । ଆଚ୍ଛା ! ସେ ଶରୀରର ପୁଅ ନା ମୋର ପୁଅ ? ଆଉ କାହାର ବନ୍ଧୁ ? - ପୁଣି ସେଇ ଗୋଳମାଳିଆ କଥା ।

ବନ୍ଧୁ କୁଆଡ଼େ । ଶରୀର ବୋହିନେଲାବେଳକୁ ଗୋବରପାଣି ଛିଞ୍ଚିବେ- ଜୟରାମ ଶୋଇଥିଲା ବୋଲି ସ୍ଥାନଟି ଅପବିତ୍ର ହୋଇଗଲା - ନାଇଁ ? ଭଲ ବନ୍ଧୁ ! ଆଉ ଗୋଟା ଗୋଟା ଗଡ଼ିକାଠ ଉପରେ ଏଇ ଜୟରାମକୁ ରଖି ତା ଉପରେ ପୁଣି କାଠ ଲଦିଦେବେ । ହେଲା ଜୟରାମକୁ ନ ହେଲା - ତା ଶରୀରକୁ ତ ! ଆଉ ମୋତେ କଣ ଧରିପାରିବେ ଯେ ପୋଡ଼ିବେ ? ଆଉ ତା'ପରେ ନିଆଁ ଲଗାଇ ଦେଇ ମାର କେଞ୍ଚ । ଛି-ଛି ବନ୍ଧୁ ! ଆଣ୍ଠୁ ଗଣ୍ଠି ଭଲ କରି ପୋଡୁନି ବୋଲି କେଞ୍ଚ ମାରି ସେଗୁଡ଼ିକୁ ଭାଙ୍ଗିବେ । ଘିଅ ଟିକିଏ ଢ଼ାଳିପାରନ୍ତି - ସେ ବି ଖାଣ୍ଟି ଘିଅ ନୁହେଁ - ଡାଲଡ଼ା - ତହିଁରେ ବି ମିଶା । ଆଉ ମୋତେ ଖାଇବାକୁ ଦେବେ କ'ଣ ? ହାଣ୍ଡି ଗୋଟାକରେ ଚାଉଳ ସିଝାଇ ଗୋଟାଏ ଗୁଣ୍ଡାଭାତ ବାସ୍ । ସେଇ ସଂସାରଯାକର ମଇଳା ଜାଗାରେ ଖଣ୍ଡିଏ ପତ୍ର ପକାଇଦେଇ, ଛ ନା ଫା । କିରେ ଜୟରାମ ! ନ ଖାଇ ନପିଇ ଧନ ସଞ୍ଚୁଥିଲୁ ପରା । ଆହୁରି ସଞ୍ଚ । ବୁଡ଼୍‌ବକ୍ କେଉଁଠିକାର ।

ଦଶାହ ଦିନ ସମସ୍ତେ ଭୁରିଭୋଜନ ଖାଇବେ - ମିଠେଇ ମାଳପୁଆ ଖିରି ପିଠା; ଆଉ ପ୍ରେତାତ୍ମାର ଶୋଷ ଯିବ ବୋଲି ଗୁଡ଼ପାଣି ଟିକିଏ ରଖିଦେବେ । ଏଗାର ଦିନରେ

ପଂକ୍ତି ଭୋଜନ ରୋହୀ ଭାକୁର ମାଛ। ସମସ୍ତେ ମନ ଭିତରେ କହୁଥିବେ କଞ୍ଜୁସ ମଲା ଯେ, ଯା'ହେଉ ଭଲ ଖାଇବାଟିଏ ମିଳିଲା। ଆଉ ଉପରେ ଉପରେ କହୁଥିବେ - ଭଲ ଲୋକଟିଏ ଥିଲେ - ଭାରି ମିଷ୍ଟଭାଷୀ, ସମାଜସେବୀ ଧର୍ମପରାୟଣ। ମାଛିକୁ ମର କହିବେନି। ଅନ୍ୟମାନେ ମୁଣ୍ଡ ଦୁଙ୍ଗାରି ଯୋଡୁଥିବେ ଅତି ଭଲ - ଅତି ଭଲ। ଢେକାରି ମାରି ପାନ ଖାଇଲା ବେଳେ କହୁଥିବେ 'ଗଲା ତାଙ୍କର ଆତ୍ମା ସିଧାସଳଖ ବୈକୁଣ୍ଠପୁର।' ମୋ ଅବସ୍ଥା ଏଣେ ଦୁଇଗଣ୍ଡା ଘରିକଡ଼ା। ଭଣ୍ଡଗୁଡ଼ାକ।

ଚୋରି କରି, ଲାଞ୍ଚ ନେଇ, ଘୁଷ ଖାଇ, ଠକି ଭଣ୍ଡି ମିଛ କହି ପଇସା ଜମଉଥିଲା ନାଇଁ? ଆଉ କୋଠା ବାଡ଼ଉଥିଲା। ରହ ସେ କୋଠା ପାଇଁ ପୁଅସବୁ ନିଜ ନିଜ ଭିତରେ ଲଢ଼େଇ କରିବେ ଯେ? ଜଣେ କହିବ ମୋର ଭାଗ ସାନ ହୋଇଗଲା ତ ଆଉ ଜଣେ କହିବ ସବୁ ଧନତକ ସେ ବଦ୍‌ମାସ ମାରି ନେଇଗଲା। ବାପା ଶୋଇ ପଡ଼ିଥିଲାବେଳେ ଅଣ୍ଟାରୁ ଚାବିକାଠି ନେଇ ଯାଇ ବାକ୍‌ସ, ପେଡ଼ି ଖୋଲି ସୁନା ସବୁ ଚୋରେଇନେଲା।

ବର୍ଷପରେ ଗୋଟାଏ ବାର୍ଷିକ ଶ୍ରାଦ୍ଧ ତା' ପରେ? ସମସ୍ତେ ଭୁଲିଯିବେ। ତୋ ନାତିମାନେ ତୋ ନାଁ ବି ଭଲକରି ଉଚ୍ଚାରଣ କରି ପାରିବେନି। ତା' ପରେ ତ - ଛାଡ଼।

ଆଉ ତୋ ପାଇଁ ହିଁ ମୋର ଯାବତୀୟ ଦୁର୍ଦ୍ଦଶା। ମୁଁ କହୁଥିଲି ନା, ଏ ଚ'ଫା ଅଭ୍ୟାସ କରନା? ଶୁଣିଲୁନି। ଏବେ ମୋତେ ଭାଲୁଧରେଇ ଦେଲୁ। ଆଉ ଯାହା ସବୁ କରିଛୁ ତୋ ଆଖିକି ପଚର। ହାତକୁ ପଚର - ନାକ କାନ ଆଉ କ'ଣ ସବୁ ତୋ ଦେହରେ ଅଛି ଯେ, ସେସବୁକୁ ପଚର। ମୁଁ କେତେ କହିଲି ଏସବୁ କରନା - ସେଆଡ଼ିକି ହାତ ବଢ଼ାନା - ଏବେ? କେଞ୍ଚନ୍ତୁ - ବାଉଁଶଗଡ଼ରେ ପିଟି ପିଟି ଗୋଡ଼ ଭାଙ୍ଗନ୍ତୁ - ପେଟ ଫୋଡ଼ି ପାଣି ନିଗାଡନ୍ତୁ।

ତୁ ତ ଯିବୁ। ମୁଁ ଏବେ ଯାଏଁ କୁଆଡ଼େ। ବାଜେ ଅଭ୍ୟାସଗୁଡ଼ିଏ ତ ହୋଇଗଲା। ଏବେ ହାତ ଦି'ଟା ନ ପାଇଲେ ତ ଚ'ଟିକିଏ ଖାଇହେବ ନି। କାହା ଭିତରେ ପଶିବି? କିଏ ମୋତେ ଆଶ୍ରା ଦେବ? ଗୋଟିଏ ଆଧାର ତ ପୁଣି ଦରକାର। ସେ ଆଧାରର ହାତ ଗୋଡ଼ ନେଇ ସିନା ମୁଁ ପୁଣି ଖେଳ ଖେଳିବି। କିନ୍ତୁ ସେ ଆଧାର ପାଇବି କେଉଁଠି?

ଆଜିକାଲି ଘର ଖଣ୍ଡିଏ ପାଇବା ଯେଉଁ ମୁସ୍କିଲ୍। ସହରମାନଙ୍କରେ ଯେମିତି ଗୋଟିଏ ଘର ଖାଲି ହୋଇଗଲେ ଶହ ଶହ ମାଡ଼ିପଡୁଛନ୍ତି ଘରଭଡ଼ା ପାଇଁ.... କିଏ ମାସକୁ ଶହେ କହିଲେ, କିଏ ଦୁଇଶହ ହାକୁଛି, ଆମମାନଙ୍କର ବି ସେଇ ଅବସ୍ଥା।

ଏ ଯେଉଁ ଗାଈ, ଘୁଷୁରି, ଛେଳି, ମେଣ୍ଢା ମାଙ୍କଡ଼ଠାରୁ ଆରମ୍ଭ କରି ସମ୍ବାଲୁଆ ପୋକ ଯାଏ ମରିଯାଉଛନ୍ତି, ତାଙ୍କ ପ୍ରେତାତ୍ମା ପାଇଁ ବି ବଢ଼ିଆ ଘର ଦରକାର। ଧଳା ହାତୀ ପରି ଘର। ମଣିଷ ପରି ଆଧାର। ଆଉ ମଣିଷର ଦେହଟିଏ ତିଆରି ହେଉ ନ ହେଉଣୁ ଯିଏ ଆଗ ସେ ଭିତରେ ପଶିଯାଇପାରିଲା।

ବୁଦ୍ଧୁ ଗୁଡ଼ାକ, କିଛି ବୁଝିପାରନ୍ତିନି। ଅନୁଭୂତି ନାହିଁତ, ଜାଣିବେ କେମିତି ମଣିଷର ହାତ ଅଛି ବୋଲି ସିନା ସିଏ ଘ ଖାଉଛି, ମଦ ପିଉଛି କି କେଉଁ ଅଥାନରେ ହାତ ମାରିଦେଉଛି - ତମର ହାତ ନାହିଁବୋଲି ସେଥିରୁ ଅନ୍ତତଃ ରକ୍ଷା ପାଇଛ। ମଣିଷ ହେବାକୁ ଚାହୁଁଛ କାହିଁକି ? ଅବଶ୍ୟ ତମର ବି ଗୁଡ଼ାଏ ବାଜେ କଥା ଅଛି। ମଣିଷ ତ ଚାହିଁଲେ ନିଜକୁ ସବୁଠାରୁ ଅଲଗେଇ ରଖିପାରିବ। ତମେ କ'ଣ ପାରିବ ? ଏ ଜୟରାମ ଭୁଲସବୁ କଲା ବୋଲି ସିନା; ନ ହେଲେ ତ ମୁଁ ଆଜି ପରମ ଆନନ୍ଦରେ ମହାଶୂନ୍ୟରେ ଉଡ଼ି ବୁଲୁଥାଆନ୍ତି। ଏଇ ବାସନାସବୁ ସିନା ମୋର ଏବେ କାଳ ହେଉଛି।

ଯା' ହେଲା ହେଲା। ମୁଁ ଏବେ ଯିବି କୁଆଡ଼େ। କାହା ଭିତରେ ପଶିବି ? ଝାରସୁଗୁଡ଼ା ସହର ଘୂରିଆସିଲାବେଳେ ଦେଖିଲି କୁକୁର ଆଉ କୁକୁରୀଟିଏ ତାଙ୍କ ସୃଷ୍ଟି ଭିଆଣ କରୁଛନ୍ତି। କ'ଣ ସେଇଠିକି ଯାଇ ସେ କୁକୁରୀ ଭିତରେ ପଶି ନୂଆ ଘର ତିଆରି ହେଲାକ୍ଷଣି ତାକୁ ଦଖଲ କରିବି ?

ହାୟରେ ଦୁର୍ଭାଗ୍ୟ ! ବରଂ ଏ ଜୟରାମର ଶରୀର ଭଲ ଥିଲା। ସେ ଯଦି ଖାଲି ମୋ କଥାଟିକିଏ ଶୁଣନ୍ତା ! ହୁଏତ ଏଥର ତା'ର ଭଲ ବୁଦ୍ଧି ଆସିବ - ଏସବୁ ଇନ୍ଦ୍ରିୟଲାଳସା ତ୍ୟାଗ କରିଦେବ ଆଉ ସଂସାରର ଯାବତୀୟ ଜଞ୍ଜାଳରୁ ଧୀରେ ଧୀରେ ଓହରି ଆସିବ !

x x x x

ଟିନ୍ ଟିନ୍ ଟିନ୍ ଟିନ୍ ଘଣ୍ଟା ବାଜି ଉଠିଲା। ପ୍ଲାଟଫର୍ମରେ ଚିତ୍କାର -ଚା ପାନ୍ ବିଡ଼ି ସିଗାରେଟ୍ - ଏ ଚିନାବାଦାମ ମୁଗଫୋଲି। ବମ୍ବେ ଏକ୍ସପ୍ରେସ୍ ବୋଧହୁଏ ପହଞ୍ଚିଗଲା। କିଏ ଜଣେ ଭଦ୍ରଲୋକ କୁଲି ମୁଣ୍ଡରେ ବୋଝ ରଖି ୱେଟିଂ ରୁମ୍ ଭିତରକୁ ପଶିଆସିଲେ। ଚାରିଆଡ଼ିକି ଅନାଇ ସବୁ ଆସନ ଭର୍ତ୍ତି ହୋଇଯାଇଥିବା ଦେଖି ମୁଁ ଯେଉଁଠି ବସିଥିଲି ସେଇଠିକି ଆସି ମୋ ଉପରେ ବସିବାକୁ ଉପକ୍ରମ କଲେ। ମୁଁ ଚିତ୍କାର କରିବାକୁ ଚାହୁଁଥିଲି; କିନ୍ତୁ ତା ପୂର୍ବରୁ ହିଁ ଭଦ୍ରଲୋକ ଖଟଉପରେ ଜୟରାମ ବାବୁଙ୍କ ଦେହ ଦେଖି ଚମକିପଡ଼ି ତା'ପରେ ତାଳିମାରି ହସି ଉଠିଲେ। ଦଉଡ଼ି ଯାଇ ପାଟିକଲେ 'ଭାଇନା - ତମର.....'

ଶିର ନଥିବା ମୋ ମୁଣ୍ଡରେ ବଜ୍ର ପଡ଼ିଲା। ଏ ଭଦ୍ରଲୋକ ଯଦି ଏବେ ଲୋକ ଡାକି ଏ ଶରୀରକୁ ମଶାଣିକୁ ବୋହିନିଅନ୍ତି। ମୁଁ ତା'ପରେ ଯିବି କୁଆଡ଼େ? ସେଇ କୁକୁରୀର ଗର୍ଭକୁ? କି ବିପଦ। ଟେବୁଲ ଉପରୁ ମାରିଲି ଲମ୍ଫ - ସିଧା ଜୟରାମର ଶରୀର ଭିତରକୁ।

x x x x

ଜୟରାମବାବୁ ଆଖି ଖୋଲି ତରାଟି ଚାହିଁଲେ। ଉତ୍କଣ୍ଠାଭରା ମୁହଁରେ ଆଗନ୍ତୁକଙ୍କୁ ଅନାଇଲେ। ଆଖି ଭଲକରି ମଳି କହିଲେ, 'ଆରେ ମିଶ୍ରବାବୁ - ତମେ' - ତେବେ ସେ ପାକିସ୍ଥାନୀଗୁଡ଼ାକ କୁଆଡ଼େ ଗଲେ ।

ମିଶ୍ରବାବୁ ତାଙ୍କର ମନ-ଖୋଲା ହସର ଗୋଟାଏ ଲହର ଛାଡ଼ିଦେଲେ। କହିଲେ, 'ଭାଇନା - ଏ ଖଟରେ ଶୋଇଛ? ଏ ଖଟରେ କ'ଣ ମଣିଷ ଶୁଅନ୍ତି? ଏ ପରା ଝାରସୁଗୁଡ଼ା ୱେଟିଂ ରୁମ୍‌ର ଅଞ୍ଚଳକୁ ଖ୍ୟାତ ଖଟ। ତମ ଦେହକୁ ଟିକିଏ ଅନାଅ। ଆଗକାଳର ପାହୁଲା ପରି ଏଡ଼ିକି ଏଡ଼ିକି ଛାରପୋକସବୁ ତମ ବିଛଣା, ଲୁଗାପଟା ଆଉ ଦେହ ସାରା ଭର୍ତ୍ତି। ଆଉ ଇସ୍ - କେତେ ରକ୍ତ!'

ଜୟରାମ ବାବୁ କହିଲେ, 'ତେବେ ସେଗୁଡ଼ିକ ପାକିସ୍ତାନୀ ଟେଙ୍କ୍ ନୁହନ୍ତି? ଆଉ ରାତିରେ ଯେଉଁ ପାକିସ୍ତାନୀ ପାରାଟ୍ରୁପର୍ ସବୁ ଝାରସୁଗୁଡ଼ାରେ ଓହ୍ଲାଇଲେ?'

ମିଶ୍ରବାବୁ ଆଉଥରେ ହେଁ ହେଁ କରି ହସି ଉଠିଲେ। ତାଚ୍ଛଲ୍ୟଭରା ସ୍ୱରରେ କହିଲେ, 'ପାରାଟ୍ରୁପର' ଭାଇନା - ରାତିର ରେଡ଼ିଓ ଖବର କ'ଣ ଶୁଣିନ? ଜେନେରାଲ ଚୌଧୁରୀ ପରା ଛାମ୍ବ ଅଞ୍ଚଳରେ ପାକିସ୍ତାନୀ ଟେଙ୍କ୍‌ଗୁଡ଼ିକୁ ଚଟଣି ବନେଇ ତେଣେ ଲାହୋର ଆଡ଼କୁ ମାଡ଼ିଚାଲିଲେଣି!!'

ଜୟରାମବାବୁଙ୍କ କୁଲି ଏତିକିବେଳେ ପଶିଆସି କହିଲା, 'ବାବୁ, ସମ୍ବଲପୁର ଗାଡ଼ି ପ୍ଲାଟଫର୍ମରେ ଲାଗିଗଲାଣି।'

# ଘୋଟକ ପଶ୍ଚାତ୍

ସାମ୍ନାରେ ଥିବା ଭି.ଆଇ.ପି. ସିଟ୍ ତଳେ ଛୋଟ ଚମଡ଼ା ଏଟେଚିକୁ ଠେଲିବାକୁ ଯାଇ ଜୟଦେବବାବୁ ଦେଖିଲେ ଲମ୍ବାକରି ଏଟେଚିକୁ ଠେଲି ହେବନି। ଚୌଡ଼ା ଆଡୁ ପୂରାଇଦେଲା ପରେ ସିଟ୍ ତଳେ ତାକୁ ଘୂରାଇଦେଲେ ହୁଏତ ରହିଯିବ। ସେ ଠିକ୍ କଲେ ଅନ୍ତତଃ ଏବେ ତାକୁ ଗୋଡ଼ ପାଖରେ ଠିଆ କରାଇ ଦେଇଥିବେ। ଆଉ ବ୍ରିଫ୍‌କେସ୍‌ଟା ? ତାକୁ ବି ସେମିତି ଠିଆ କରାଇଦେଲେ ହୁଅନ୍ତା; କିନ୍ତୁ ଦି'ଟାଯାକ ସେମିତି ଠିଆହୋଇ ରହିଲେ ଗୋଡ଼ ରଖିବାକୁ ଆଉ ଜାଗା ରହିବନି। ବ୍ରିଫ୍‌କେସ୍‌ଟିକୁ ସିଟ୍ ଉପରେ ଠିଆରଖିଦେଇ ସେ ସିଟ୍‌ରେ ବସିଗଲେ ଏବଂ ଝରକା ଉପରେ ଡାହାଣ କହୁଣୀ ଲଦି ସ୍ୱସ୍ତିର ନିଃଶ୍ୱାସ ମାରିଲେ। ଯା' ହେଉ ଭଲ ସିଟ୍‌ଟିଏ ମିଳିଗଲା। ଭାଗ୍ୟକୁ ଷ୍ଟେସନ-ମାଷ୍ଟର ଚିହ୍ନିପାରିଲେ - ନହେଲେ କୋଉ ପଛ ଆଡ଼ିକି ସିଟ୍‌ଟିଏ ମିଳିଥାନ୍ତା। ପଛ ଆଡ଼ିକି ଧୂଳି ଯେତେ, ହଲା ଝୁଲା ବି ସେତେ - ଝୁଣି ହୋଇଯିବା କଥା। ଭି.ଆଇ.ପି. ସିଟ୍ କାହା ପାଇଁ ଆଗରୁ ରିଜର୍ଭ ହୋଇଯାଇଛି ବୋଲି ଷ୍ଟେସନ ମାଷ୍ଟର ଦୁଃଖ କରୁଥିଲେ କହିଲେ ଏଇ ଛଅ ନମ୍ବର ବି ଭଲ। ଝରକା ପାଖ ସିଟ୍ କହୁଣୀଟା ଅନ୍ତତଃ ଝରକାରେ ଲଦି ହେବ ଆଉ ଇଚ୍ଛା ଅନୁସାରେ ଝରକା ବି ଟିକିଏ କମ୍ ବେଶି ଖୋଲି ହେବ।

ଜୟଦେବବାବୁ ସାମ୍ନାକୁ ଅନାଇଲେ। ଏକ ନମ୍ବର ଭି.ଆଇ.ପି. ସିଟ୍ ଏ ପର୍ଯ୍ୟନ୍ତ ଖାଲି ପଡ଼ିଛି। ବେଡ଼ିଂ ଆଉ ଛୋଟ ଚମଡ଼ା ବାକ୍‌ସଟିଏ କିନ୍ତୁ ଆସିଗଲାଣି। ବସ୍ ଭିତରେ ଲୋକସବୁ ଯେମିତି ପଶୁଛନ୍ତି ସେମିତି ଓହ୍ଲାଇବି ଯାଉଛନ୍ତି। ଖାଲି ଚଢ଼ା ଉତୁରା। ପଛ ଝରକା ସିଟ୍‌ରେ ବସିଥିବା ଭଦ୍ରଲୋକ ପାଟିକରି କହୁଥିଲେ - ଆରେ ରାମୁ, ଭଲ କରି ଦେଖ୍, ସେ କୁଲି ବସ୍ ଉପରେ କଳାବାକ୍‌ସ ଠିକ୍‌କରି ରଖିଲା ନା ନାହିଁ। ଦେଖ୍ ସେ ଚମଡ଼ା ସୁଟ୍‌କେସ୍ ଉପରେ ଯେମିତି ବାକ୍‌ସ ଲଦି ଦେବନି। ସେମିତି କଲେ ସୁଟ୍‌କେସ୍‌ଟି ଯିବ। ବୁଝିଲୁ ? ଜଣେ କେହି କୁଲି ସାଙ୍ଗରେ ପଇସା ପାଇଁ ଟଣାଓଟରା ଲଗେଇଛି। ଆଠ ଅଣା ଅବଶ୍ୟ କମ୍ ହୋଇଗଲା; କିନ୍ତୁ ଏ କୁଲିମାନଙ୍କ ରୁବାବ୍ କ'ଣ କମ୍ ! ହେଇ, ଜଣେ ଭଦ୍ରମହିଳା କାଖରେ ଛୁଆଟିଏ ଧରି ଉପରକୁ ଉଠିଲେ - ପାଖରେ ଗୋଟାଏ ଝିଅ ରଙ୍ଗୀନ୍ ଫ୍ରକ୍‌ରେ ବେଶ୍ ସ୍ମାର୍ଟ

ଦେଖାଯାଉଛି ସାଙ୍ଗରେ ଗୋଟାଏ ଝୁଡ଼ି, ଦୁଧ ବୋତଲ ପାଣି.... କନ୍ଥା...। ସତରେ ଏ ଦକ୍ଷିଣିଆ ବେତଝୁଡ଼ିଗୁଡ଼ା ଭାରି ଭଲ।

ହଠାତ୍ ଜୟଦେବାବୁଙ୍କ ପାଖରେ ବୁଜୁଲାଟିଏ ଥୁଆହେଲା। ଗାମୁଛା ଖଣ୍ଡିଏ ମୁଣ୍ଡରେ ଠେକି ପରି ଭିଡ଼ିଦେଇଥିବା ଭଦ୍ରଲୋକ ପୁଣି ତଳକୁ ଓହ୍ଲାଇଗଲେ - କାହା ସାଙ୍ଗରେ କଣ ସବୁ ଗପସପ କରିବା ପାଇଁ ବୋଧହୁଏ। ଭି.ଆଇ.ପି. ମହାଶୟ ଆସିଗଲେଣି। ଗଗଲସ୍ ପିନ୍ଧିଛନ୍ତି - ଗଭା ନିଶ। ବେଶ୍ କମ୍ ବୟସର ତ। କଲେଜ ଆସିଗଲେଣି। ୟୁନିୟନ୍ ପ୍ରେସିଡେଣ୍ଟ ହୋଇଥିବେ। ବସୁ ବସୁ ପକେଟରୁ ସିଗାରେଟ କାଢ଼ି ନିଆଁ ଧରାଇଦେଲେ। ରକ୍ଷା ହେଲା ଚୁରୁଟ୍ ନୁହେଁ! ଚୁରୁଟ୍ ଧୂଆଁ ସତରେ କି କଡ଼ା! ସେ ତେଲୁଗୁ ଭଦ୍ରମହିଳାମାନେ କେମିତି ଚୁରୁଟ୍ ନିଆଁକୁ ପାଟି ଭିତରେ ଭରିଦେଇ ଓଲଟା ଧୂଆଁ ଛାଡ଼ନ୍ତି କେଜାଣି? କେଡ଼େ କେଡ଼େ ଅକ୍ଷରରେ 'ଧୂମପାନ ନିଷେଧ' ଲେଖା ହୋଇଛି। ଆଉ ଦି'ଟା ଗାଡ଼ିରେ ବି ଲୋକ ଭର୍ତ୍ତି। କୁଆଡ଼େ ସବୁ ଯାଉଛନ୍ତି କେଜାଣି।

ଡ୍ରାଇଭର ହର୍ଣ୍ଣ ଦେଲାଣି। ଯା'ହେଉ ଗାଡ଼ି ଏଥର ଛାଡ଼ିବ। କି ଗରମ। ଝରକା ପାଖ ସିଟ୍‌ଟିଏ ନ ମିଳିଥିଲେ ସିଝିଯିବାକୁ ପଡ଼ିଥାଆନ୍ତା।

ବୁଜୁଳା ମାଲିକ ଆସିଗଲେଣି। ବୁଜୁଳାକୁ ଦୁଇ ସିଟ୍ ମଝିରେ ଠେଲି ଠେଲି ଭର୍ତ୍ତିକଲେ। କେମିତି ଗୋଡ଼ ରଖିବେ କେଜାଣି?

ପୁଣି ହର୍ଣ୍ଣ। କବାଟ ବନ୍ଦ ଆବାଜ ସାଙ୍ଗକୁ ଗାଡ଼ି ପିଠିରେ ଦୁଇଥର ଧଡ଼୍ ଧଡ଼୍ ଆବାଜ୍। ନମସ୍କାର - 'ପ୍ରଣାମ'.... 'ପହଞ୍ଚି ଚିଠି ଦେବେ'....' ଘରି ଆଡ଼କୁ ନଜର ରଖିଥିବୁ ବୁଝିଲୁ'... ପ୍ରଭୃତି ଭିତରେ ଗାଡ଼ି ଷ୍ଟାର୍ଟ ନେଲା।

୨

ଘୋଡ଼ାଘାଟ, ରାମସ୍ୱାମୀ ମନ୍ଦିର, ପିପଲ ନାଳ, କଳାହାଣ୍ଡି କଲେଜ...ଡାହାଣ ଆଡ଼କୁ ମୋଡ଼ ଦେଇ ବସ୍ ଛୁଟିଚାଲିଲା ଫୁଲବାଣୀ ରାସ୍ତାରେ। ଝରକା ଉପରେ କହୁଣୀ ଲଦି ଜୟଦେବ ବାହାରର ଦୃଶ୍ୟ ଦେଖୁଥିଲେ - ଗୋଟାଏ ଦୃଶ୍ୟ ଅପସରିଗଲା ପରେ ଆଉ ଗୋଟାଏ ନୂତନ ଦୃଶ୍ୟ। ହଠାତ୍ ମନେହେଲା କେହି ଜଣେ ତାଙ୍କ ବାଁ କାନ୍ଧ ଥାପୁଡ଼ଉଛି। ଓଲଟି ଚାହିଁ ଦେଖିଲେ ତାଙ୍କ ପାଖରେ ବସିଥିବା ଭଦ୍ରଲୋକ ସିଟ୍ ଉପରେ ଗୋଡ଼ ଲଦି ଖୁଟୁମୁଟୁ ହୋଇ ବସିଛନ୍ତି ଆଉ ପାଟିରେ ବିଡ଼ିଟିଏ ଗୁଞ୍ଜି ଡ଼ିଆସିଲି ମାରିବା ଢଙ୍ଗ କରି ମୁଣ୍ଡ ଟୁଙ୍ଗାରୁଛନ୍ତି। ଜୟଦେବବାବୁ ବୁଝିଲେ ସେ ଡ଼ିଆସିଲି ମାଗୁଛନ୍ତି। ନାସ୍ତିସୂଚକ ପାପୁଲି ହଲାଇ ଦେଇ ସେ 'ଧୂମପାନ ନିଷେଧ' ଆଡ଼କୁ ଡବଡବ ଆଖିରେ ଅନାଇଦେଲେ। ଭଦ୍ରଲୋକ ବୁଝିପାରିଲେ ନା କଣ,

ବିଡ଼ିଟିକୁ ପାଟିରୁ କାଢ଼ିନେଲେ ଏବଂ ହଠାତ୍ ପଚାରିଦେଲେ - 'ତମ ଆଡ଼ିକି ବର୍ଷା କେମିତି ?'

ଅନ୍ୟମନସ୍କ ଭାବରେ ଜୟଦେବ ଉତ୍ତର ଦେଲେ - 'ହଁ ହେଇଛି ଏକ ରକମର।' ଭଦ୍ରଲୋକ ଏଥର ନିଜେ ନିଜେ କହିଲେ - 'ଉଃ, ଆମ ଆଡ଼ିକି କଷିଦେଇଛି। ବଢ଼ିଆ । ରୁଆ ବିହୁଡ଼ା ପାଗ। ଯେଉଁମାନେ ପ୍ରଥମ ବର୍ଷାରେ ତଳି ପକାଇ ଦେଇଥିଲେ - ଜାଣିଲ ନା - ସେମାନଙ୍କର କଟେବାର।' ପଚାରିଦେଲେ - 'ତମର ତ ଧାନ ବୁଣାବୁଣି ସରିଯିବଣି। ଧାନଗଛ ସବୁ ବିହୁଡ଼ା ବନ୍ତର ହେଲାଣି ?'

ଜୟଦେବ ବେଶ୍ ଅଡୁଆରେ ପଡ଼ିଲେ। ଅବସ୍ଥା ଠିକ୍ କଣ ନ ଜାଣି ଗୁଣୁଗୁଣୁଇଲେ 'ହଁ - ବୋଧହୁଏ ସରିଯିବଣି।' ଭଦ୍ରଲୋକ କିନ୍ତୁ ଉତ୍ତର ଶୁଣି ଟିପ୍ପଣୀ କାଟିଲେ - 'ଯଦି ସାରିନ, ଏଥର ଢକରରେ ବସିବ। ଆମ ଆଡ଼ିକି ରୁଆ ବିହୁଡ଼ା ଆରମ୍ଭ ହୋଇଗଲାଣି। ଆଉ ତମେ ଯଦି ବୁଣାବୁଣି ବି ସାରିନ, ଏବର୍ଷ ଆଉ ଚାଷ କରି ଖାଇବ ?'

ଅବସ୍ଥା କଣ ହେଲେ ମଣିଷ ଢକରରେ ବସେ, ସେ କଥା ଜୟଦେବ ଜାଣିଥିଲେ। ନଈ ନାଳ ପାରିହେଲାବେଳେ ଗହୀରିଆ ପାଣିର ସୁଅ ଯେତେବେଳେ ଶଗଡ଼ ପଟାକୁ ଛୁଇଁଯାଏ ଶଗଡ଼ିଆ ନିଜକୁ ବଞ୍ଚାଇବା ପାଇଁ ଶଗଡ଼ର ଦି ବାହିକି ବାନ୍ଧିଥିବା ଏଇ ଉଚ୍ଚ ଢକର ପଟାରେ ବସେ। ଗହୀରିଆ ପାଣି ଯଦି ସେ ଢକରକୁ ବି ଛୁଇଁଯାଏ, ତେବେ ବୁଡ଼ି ମରିବା ଡର। ଜୟଦେବ ବୁଝିପାରିଲେ ଯେ ତାଙ୍କ ଅବସ୍ଥାକୁ ଭଦ୍ରଲୋକ ବୁଡ଼ି ମରିବାର ପୂର୍ବାବସ୍ଥା ସଙ୍ଗରେ ହିଁ ତୁଳନା କରୁଛନ୍ତି। ସାମାନ୍ୟ ହସିଦେଇ ଭଦ୍ରତା ଖାତିରରେ ପଚାରିଦେଲେ - 'ଆପଣଙ୍କ ଧାନ ଗଜା କେମିତି ହୋଇଛି ?'

'ଧାନ ଗଜା କଥା ପଚାରୁଛ !! ଖରଡ଼ି ବୁଣା ଦୁଇ ମୁଣ୍ଡି ଗଜା। ଟିକିଏ ବହଳ ହୋଇଗଲା।' ଉତ୍ତର ଦେଲେ ଭଦ୍ରଲୋକ।

'ଦୁଇ ମୁଣ୍ଡି ଗଜା ?' ବୁଝି ନପାରିବା ଢଙ୍ଗରେ ଦୋହରାଉଥିଲେ ଜୟଦେବବାବୁ।

ଭଦ୍ରଲୋକ ହସିଲେ - ହୁଏତ ଜୟଦେବବାବୁ ଜ୍ଞାନର ସ୍ୱଚ୍ଛତା ସୁଝାଇଦେବା ଉଦ୍ଦେଶ୍ୟରେ। ବୁଝାଇବାକୁ ଯାଇ କହିଲେ - 'ଆରେ - ଧାନର ତ ଦି' ଆଡ଼ିକି ଗୋଟାଏ ଗୋଟାଏ ମୁଣ୍ଡ - ଦି ଆଡୁ ଗଜା, ଡବଲ ବୋଲ.... ଡବଲ୍।'

ଜୟଦେବବାବୁ କେବଳ ଅନାଇ ରହିଲେ। ଭଦ୍ରଲୋକ କହିଚାଲିଲେ - 'ଖରଡ଼ି ଧାନ ତ ଲପ୍ଲପା ହୋଇ ତିତିର ଚଢ଼େଇ ଲୁକେନ୍ ହୋଇଗଲାଣି - ଆଉ ସାତ ଆଠ

ଦିନରେ ବିହୁଡ଼ା ବତର ହୋଇଯିବ। ମୁଁ କଟକରୁ ଫେରିଲାବେଳକୁ ବିହୁଡ଼ା ଆରମ୍ଭ କରିଦେବି। ତଳି ବି ଝୁରା ବନ୍ଧା ହେଲାଣି। ରୁଆ ବି ଆରମ୍ଭ କରିଦେବି। ଆଗ ଚାଷ - ପୁଷମାସ, ପଛ ଚାଷ - ସର୍ବନାଶ।'

- 'ଆପଣଙ୍କ ଚାଷ ତେବେ ବଢ଼ିଆ ହୋଇଛି ନା?'

- 'ପଚାରୁଛ! ଟଙ୍କାରୁ ଅଠର ଅଣା ! ଏବର୍ଷପରା ମାଲୁଣୀ ହାତରେ ଅଡ଼ା - ଦେଖିବ ଧାନ! ତମେ ତ ପଛରେ ପଡ଼ିଯାଇଛ - ଢ଼ଙ୍କରରେ ବସିଗଲ!'

ଜୟଦେବ କଣ ବା କୁହନ୍ତେ! ସେ ତୁନିତାନି ଝରକା ଦେଇ ବାହାର ଆଡ଼ିକି ଚାହିଁବାକୁ ଚେଷ୍ଟା କରୁଥିବା ଦେଖି ଭଦ୍ରଲୋକ ନୂଆ କଥା ବାଢ଼ିବସିଲେ। ପଚାରି ଦେଲେ - 'ତମର ପୁଅ ଝିଅ କେତେ? ପୁଅ ଝିଅଙ୍କୁ ବାହା କଲଣି ନା ନାହିଁ?' ଉପରକୁ କିନ୍ତୁ ଅପେକ୍ଷା ନ କରି ସେ ନିଜ ବକ୍ତବ୍ୟ ଆରମ୍ଭ କରିଦେଲେ; କହିଲେ - 'ମୋର ଦୁଇ ପୁଅ। ବଡ଼ପୁଅ ସାତ କ୍ଳାସ ପଢ଼ିଛି। ଗାଁର ସରପଞ୍ଚ। ତାକୁ ନ ଧରିଲେ ଏଇ.ଆର.ଆଇ. କହ କି ବି.ଡ଼ି.ଓ. କହ; ଚଳିପାରିବେ? ପଞ୍ଚାଏତର ରାସ୍ତା ତିଆରି - ପୋଖରୀର ପଙ୍କୋଦ୍ଧାର, ଗ୍ରେନ୍ ଗୋଲା, ସବୁଠେଇ ସିଏ। ଆଉ ସାନପୁଅ ତ ବହୁତ ପଢ଼ିଛି - ମେଟ୍ରିକ୍‌ପାସ - ତମର ଲୁଗାପଟାଠାରୁ ଆହୁରି ବଢ଼ିଆ ଲୁଗାପଟା ପିନ୍ଧେ। କଟକ କିଲଟରୀରେ କିଲାରକ୍। ତିନିଶହ ଟଙ୍କା ବେତନ ଆଉ ଉପୁରି ଦୁଇ ଶହ ତିନିଶହ ପାଏ। ଆଉ ଜାଣିଲ, ଏବେ କାହାକୁ ନଗଦ ହଜାରେ ଟଙ୍କା ଦେଇଛି ଯେ ଜଣେ ଇଞ୍ଜିନିୟରଙ୍କ ଅଫିସକୁ ବଦଳି ହୋଇଯିବ। ସେଇଠି ଉପୁରି ଟଙ୍କା ଗଣୁଥାଅ। ବୋହୂ ଦୁଇଟା ସୁନାହାର କଲାଣି ଆଉ ସୁନା ଖଡୁ ବି ପିନ୍ଧିଲାଣି ବୋଲି ବୁଢ଼ୀ ଏବେ ଲଗେଇଛି ଯେ ସେ ବି ସୁନା ଖଡୁ ପିନ୍ଧିବ। ମୁଁ କହୁଛି - ଆରେ! ସୁନାଖଡୁ ଏବେ କ'ଣ ହେବ - ପୁଅ ଯେଉଁ ପାଞ୍ଚଦଶ ହଜାର ଦେବ ତାକୁ ମହାଜନିରେ ଲଗେଇଦେଲେ ବନ୍ଧକ ସୁନାରେ କେତେ ଖଡୁପିନ୍ଧିବ ପିନ୍ଧୁଥାଉ। କ'ଣ କହୁଛ ବାବୁ - ଏଁ? ଯାହା ହେଲେ ବି ମାଇକିନିଆଁ ତ - ଅକଲ କେତେ? ସତ କି ନାଇଁ-ଏଁ?'

ଜୟଦେବବାବୁ କ'ଣ କହିବେ କିଛି ଭାବି ପାରୁ ନଥିଲେ। କିନ୍ତୁ ସେ କିଛି କହିବା ପୂର୍ବରୁ ହିଁ ଭଦ୍ରଲୋକଙ୍କ ବାଁ ପାଖରେ ୮ନମ୍ବର ସିଟ୍‌ରେ ବସିଥିବା ଅନ୍ୟ ଜଣେ ଭଦ୍ରଲୋକ ଖେଙ୍କାରିଲା ଢଙ୍ଗରେ କହିଲେ - 'ହଇ ହେ - ପୁଅ ମାମୁଘରକୁ ଗଲାବେଳେ ସୁନାଖଡୁ ବେଶୀ କାମଦେବ ନା ମହାଜନି କାରବାର - ସେ କଥାଟିକେ ଭାବିଛ ତ?'

ମନେହେଲା ଭଦ୍ରଲୋକ ଫଣା ଟେକିଲେ। ଗର୍ଜି ଉଠି କହିଲେ - 'ତମେ କି କଥା କହୁଛ ହେ - ଉପୁରି କମାଣିରେ ତ ସମସ୍ତଙ୍କ ଭାଗ - ମୋ ପୁଅ କାହିଁକି ଜେଲ୍ ଯିବ? କେଡ଼େ କଥାଟିଏ କହିଦେଉଛ - ଆଏଁ?'

ଦ୍ୱିତୀୟ ଭଦ୍ରଲୋକ ଚଢ଼ାଗଳାରେ ଜବାବ ଦେଲେ – 'ଚୋରଦଳଙ୍କ ଭିତରେ ଚୋରି ମାଲ ଭାଗ ବଣ୍ଟାଆରା ହୁଏ ବୋଲି କଣ ଚୋରମାନେ ଧରାପଡ଼ିଲେ ଜେଲ ଯାଆନ୍ତି ନି ?'

କାହିଁକି କେଜାଣି ପ୍ରଥମ ଭଦ୍ରଲୋକ ଟିକିଏ ନରମେଇ ଗଲେ; କହିଲେ – 'ଏମାନେ କଣ ଚୋରି କରୁଛନ୍ତି ? ଠିକାଦାର ବ୍ୟବସାୟୀମାନେ ଖୁସିରେ ଦିଅନ୍ତି।'

–"ତମ ଗାଁ ପାଖ ଠିକାଦାର ବ୍ୟବସାୟୀମାନେ ତମକୁ କେତେ ଲେଖାଏଁ ଖୁସିରେ ଦିଅନ୍ତି ?"

–"ମୋତେ କାହିଁକି ଦେବେ ? ମୁଁ କଣ ସେମାନଙ୍କର କିଛି କାମ କରୁଛି ?"

–"ତା'ହେଲେ ବୁଝିଲ ତ ? ଠିକାଦାର, ବ୍ୟବସାୟୀ ନିଜ ଲାଭ ନ ଥିଲେ କାହାକୁ ମାଗଣା ଦିଏ ? ତେବେ ତମ ପୁଅକୁ ଦିଅନ୍ତି କାହିଁକି ? ପ୍ରେମରେ ପଡ଼ି ତ ନୁହେଁ। ତାଙ୍କ ହାତରେ କିଛି ଗୋଟାଏ ଅନ୍ୟାୟ କାମ କରାଇ ନେଇ ଫାଇଦା ଉଠାଇବେ ବୋଲି ତ ? ସେ ଅନ୍ୟାୟ ପାଉଣାରେ ସାହାଯ୍ୟ କରୁଥିବା ଲୋକ ତେବେ ଚୋରି କଲା ନା ନାହିଁ ? ଆଉ ତମ ପୁଅଙ୍କ ଦଳ ଯଦି ଲାଭର କିଛି ଅଂଶ ନ ଦେଲେ ଠିକାଦାର ବ୍ୟବସାୟୀଙ୍କୁ କାମ କରାଇ ଦେବେନି ବୋଲି ଧମକାଇ ଜୋର ଜବରଦସ୍ତି ଟଙ୍କା ଅସୁଲ କରୁଛନ୍ତି ତେବେ ତ ସେଇଟା ରୀତିମତ ଡାକଏତି। ପୁଅର ସେ ଚୋରି କିମ୍ବା ଡକାଏତି ଧନର ଯଦି ଭାଗ ନେଉଛ ତେବେ ସେ ଜେଲ ଗଲାବେଳେ ତମେ ବୁଢ଼ାବୁଢ଼ୀ ଭାଗ ନେବ ତ ?"

କଣ କହିବେ ବୁଝି ନ ପାରି ଭଦ୍ରଲୋକ ଥତମତ ହେଉଥିଲେ। ଆଉ ଠିକ୍ ସେତିକିବେଳେ ହିଁ ଗାଡ଼ି ମୁନିଗଡ଼ାରେ ପହଞ୍ଚିଗଲା। ସଞ୍ଜବେଳିଆ ଚା' ପାଇବା ପାଇଁ ପ୍ରାୟ ସମସ୍ତେ ବସ୍‌ରୁ ଓହ୍ଲାଇ ଗଲେ।

## ୩

ଏଥର ବସ୍ ଯେତେବେଳେ ଛାଡ଼ିଲା, ବସ୍ ଭିତରେ, ବତି ଜଳି ସାରିଥିଲା। ଭଲ ଚା'ର ମାଦକତା ଯୋଗୁଁ ହେଉ ଅଥବା ପକୋଡ଼ି, ବରା, ପିଆଜିର କରାମତି ଯୋଗୁଁ ହେଉ ବସ୍ ଭିତରେ ଅନେକ ଢୁଳାଇବାକୁ ଆରମ୍ଭ କରି ଦେଇଥିଲେ। ସାତ ନମ୍ବର ସିଟ୍‌ର ଭଦ୍ରଲୋକ ନିଜ ଗୋଡ଼ ଟେକିଆଡ଼େ ହାତ ଦିଓଟିକୁ ଛନ୍ଦି ଦେଇ ଛାତି ଆଉ ଆଣ୍ଠୁ ଉପରେ ମୁଣ୍ଡଥାପି ଧ୍ୟାନମଗ୍ନ ହୋଇଯାଇଥିଲେ। ବସ୍‌ର ହେଡ୍‌ଲାଇଟ୍ ଅନେକ ଦୂରକୁ ଆଲୁଅ ଫିଙ୍ଗୁଥିଲା। ଜୟଦେବବାବୁଙ୍କ ସିଟ୍‌ରୁ ରାସ୍ତାର ଏ ପାଖରୁ ସେ ପାଖକୁ ଡେଇଁ ଯାଉଥିବା ଠେକୁଆ, ମୂଷା, ଗୋଧି ଆଉ ବେଳେବେଳେ ଗୋଟାଏ ଅଧେ ଶିଆଳ ବେଶ୍ ସ୍ପଷ୍ଟ ଦେଖାଯାଉଥିଲେ। ଠେକୁଆଟିଏ ବସ୍ ସାମ୍ନାରେ ଏ ପାଖ

ସେ ପାଖ ଥୋଡ଼େ ବାଟ ଦୌଡ଼ିଗଲା ପରେ ବସ୍ ତଳେ ଚାପି ହୋଇଗଲା ନା କଣ। ଏ ମୂର୍ଖ ଜନ୍ତୁଗୁଡ଼ାକ କୁଆଡ଼େ ପଶୁରାଜ ସିଂହକୁ ମାରିଥିଲେ। ପଛ ପାଖରୁ ଭଅଁର ଗୁଞ୍ଜନ ପରି କ୍ରମାଗତ ଗୁଣୁଗୁଣୁ ଶବ୍ଦ ଆସୁଥିଲା। କିଏ ଜଣେ କାହା ଆଗରେ ତାର କୌଣସି ଅଭିଜ୍ଞତା ବଖାଣି ବସିଛି ବୋଧହୁଏ। ଜୟଦେବବାବୁ ଘନ ଘନ ହାଇ ମାରୁଥିଲେ। ତାଙ୍କର ବି ଇଚ୍ଛା ହେଲା ଅଣ୍ଟା ଟିକିଏ ସଳଖେଇ ସିଟ୍ ପଛରେ ମୁଣ୍ଡ ଆଉଜି ଟିକିଏ ଘୁମେଇ ପଡ଼ିବେ। ମୁଣ୍ଡ ଆଉଜିବାକୁ ଚେଷ୍ଟାକଲେ କିନ୍ତୁ ସିଟ୍ ପଛପଟେ ଆଉଜିବା ଜାଗାରେ ମୁଣ୍ଡ ଆଡ଼କୁ ଲମ୍ବା ଆବୁ ପରି ତିଆରି ହୋଇଥିବା ମାଣ୍ଡିରେ ମୁଣ୍ଡ ନ ରହି ପଛ ଆଡ଼କୁ କେମିତି ଅଖାଡୁଆ ଝୁଙ୍କି ପଡୁଥିଲା। କିଏ ଏମିତି ସିଟ୍ ଡିଜାଇନ୍ କଲା କେଜାଣି। ହୁକୁମ ଦେଇଥିବା ଟ୍ରାନ୍ସପୋର୍ଟ କମିଶନର ଭଦ୍ରଲୋକଙ୍କ ଉଚ୍ଚତା ହୁଏତ ୫ଫୁଟ ଥିଲା ଯେ ତାଙ୍କ ନିଜ ମୁଣ୍ଡ ରହି ପାରିଲା ଭଳି ଉଚ୍ଚରେ ସେ ମାଣ୍ଡି ଗଢ଼ାଇ ଦେଲେ, ଭାବିନେଲେ ଜୟଦେବ। ସିଟ୍ ଆଗକୁ ଟିକିଏ ଘୁଞ୍ଚଗଲେ ହୁଏତ ମାଣ୍ଡିରେ ମୁଣ୍ଡ ଥାପିହେବ - କିନ୍ତୁ ସେମିତି କଲେ ଦେହ ଏଣେ ଝୁଲିପଡୁଛି। ଗୋଡ଼ ଦିଓଟିକୁ କୌଣସିମତେ ସାମ୍ନା ଭି.ଆଇ.ପି. ସିଟ୍ ତଳେ ଲମ୍ବେଇ ଦେଇ ସେ ସିଧାସଳଖ ଶୋଇଯିବାକୁ ଚେଷ୍ଟା କଲେ। ଭାବୁଥିଲେ ତକିଆଟିଏ ଆଣିଥାନ୍ତେ କି ପିଠିକୁ ଟେକି ଧରିବା ପାଇଁ ତାକୁ ସିଟ୍‌ରେ ଥୋଇଦେଇ ଥାଆନ୍ତେ। ଅଗତ୍ୟା ଚମଡ଼ା ଏଟେଚିକୁ ସିଟ୍ ତଳୁ ଟାଣିଆଣି ପଛଆଡ଼ିକି ଠିଆ କରାଇଦେଲେ - ପିଠିକି ଟେକିଧରି।

ଏଥର ଆଖି ବୁଜିବାକୁ ଚେଷ୍ଟାକଲେ। ସତରେ ଡେଙ୍ଗା ଲୋକଙ୍କ ପାଇଁ ଏମିତି ଲମ୍ବା ବସ୍ ଯାତ୍ରା ବଡ଼ ଅସୁବିଧା ଟ୍ରେନ୍ ଯାତ୍ରା କେତେ ଭଲ; କିନ୍ତୁ ଏ ଅଞ୍ଚଳରେ ଟ୍ରେନ୍ କାହିଁ? ଦୋଳାୟମାନ ହୋଇ ଜୟଦେବବାବୁ ଭାବୁଥିଲେ ଏ କମିଟିର ମେମ୍ବର ହେବାକୁ  ରାଜି ହେବାରେ ବୋଧହୁଏ ଭୁଲ୍ ହେଲା। ନିଶା ନିବାରଣ କମିଟି। ଫୁଃ ସତେ ଯେମିତି କେଉଁ କମିଟି କିଛି କରିପକାଇଲାଣି। କିଛି କରିବାକୁ ନ ଚାହିଁ ଲୋକଙ୍କ ମୁହଁ ବନ୍ଦ କରିବାକୁ ହେଲେ ସମୟ ଗଡ଼ାଇଦେବା ପାଇଁ ଏମିତି କମିଟିଟିଏ କରିଦିଅ। ବାସ୍...। ଯେଉଁମାନେ ପାଟିତୁଣ୍ଡ କରୁଥିବେ ସେମାନଙ୍କୁ, ଆଉ କାଁ-ଭାଁ କେତେ ରିଟାୟାର୍ଡ଼ ବୁଢ଼ାଙ୍କୁ ନେଇ। ସେମାନେ କମ୍ବଳର ବାଳ ବାଛୁଥାଆନ୍ତୁ। ବର୍ଷକୁ ଥରେ ଦି'ଥର କମିଟି ବସୁଥାଉ। କିଛି ଗୋଟାଏ ପ୍ରସ୍ତାବ ଦେଲାବେଳକୁ ଆଉ ସେ ମନ୍ତ୍ରୀ ଥିବେ ନା ସେ ମନ୍ତ୍ରୀମଣ୍ଡଳ ଥିବ। ନୂଆ ମନ୍ତ୍ରୀମଣ୍ଡଳ ଆସିଲେ ପୁଣି ନୂଆ କମିଟି।

ସରକାରୀ ଚିଠି ପାଇଲାପରେ ମେମ୍ବର ହେବାପାଇଁ ସେ ସିଧାସଳଖ ମନା କରିଦେବାକୁ ଚାହୁଁଥିଲେ। ଉତ୍ତର ଦେବା ଆଗରୁ କିନ୍ତୁ ଭୁଲରେ ଚିଠିଟା ଟେବୁଲ୍

ଉପରେ ପକାଇ ଦେଲେ। ଟୁନାର ଆଖି ତ ସବୁବେଳେ ସବୁଆଡ଼ିକି ଘୂରି ବୁଲୁଥାଏ - ତା ନଜର ସେ ଚିଠିଉପରେ ପଡ଼ିଗଲା। ପଢ଼ିଦେଇ ପାଟି କରି ମିନିକି କହିଲା, 'ଆଲୋ ମିନି, ବୁଢ଼ା ଦାଦା ଭୁବନେଶ୍ୱର ଯିବେ - 'ପାହାଲ' ଆସିବ। ତୁ ଛେନାପୋଡ଼ ଖାଇବୁ ଯଦି ଖାଉଥା, ମୁଁ କିନ୍ତୁ ରସଗୋଲା ଖାଇବି।' ମିନି ଆଇ ବୋଧହୁଏ ଟୁନାର କଥା ଶୁଣିଲେ। ଚିଠି ଉପରେ ସେ ବି ନ ଜାଣିଲା ପରି ଆଖି ପକେଇଦେଲେ। ଖାଇଲାବେଳେ ଦହିପଖାଳ ସାଙ୍ଗକୁ ଚଣା ମହୁର, ଆମ୍ବ ଚଟଣୀ ଆଉ ପାପଡ଼ ଭଜା ବଡ଼ିଆ ଯୋଡ଼ ହୋଇଛି ଶୁଣି ଆଉ ଟିକିଏ ଚଟଣୀ ଡ଼େଉଁ ଡ଼େଉଁ କହିଲେ - 'ଏ। କଥାଟିଏ କହିବି - ରଖିବ ?' 'କହୁନ' କହିବା ପୂର୍ବରୁ କିନ୍ତୁ ସେ ଯୋଡ଼ିଦେଇଥିଲେ, 'ଥାଉ, ପଇସା ନାହିଁ କହିବ ଜାଣିଛ, ଖାଲି ତୁଣ୍ଡ ଖରାପ କରିବା କଥା।' ଜୟଦେବ ଯେତେବେଳେ ଜିଦ୍ କଲେ - ଜାଣିଲେ ଯେ ଗଲାଥର ପିଙ୍କି ପାଇଁ ସେ ଯେଉଁ ଖଣ୍ଡୁଆ ପାଟ ଆଣିଥିଲେ ସେଇଟା ଭାରି ବଢ଼ିଆ ହୋଇଥିଲା। ଏବେ ଖଣ୍ଡୁଆରେ କୁଆଡ଼େ ୨୦ ପରସେଣ୍ଟ ରିହାଇତି - ଟ.୩୫୦ର ପାଟ, ଟ.୨୮୦ରେ ମିଳିଯାଉଛି, କି ଶସ୍ତା !

ଜୟଦେବ କହିଲେ, '୨୮୦ ଟଙ୍କା ! ଏତେ ଟଙ୍କା କେଉଁଠୁ ଆସିବ ? ତମର ତ କାଞ୍ଜିଭରମ୍, ବନାରସୀ ଆଉ କଣ ସବୁ ଅଛି, ପୁଣି ଖଣ୍ଡେ....।' ବାକ୍ୟ ପୂରାକରିବା ଆଗରୁ ହିଁ ଟିପ୍ପଣୀ ମିଳିଗଲା, 'ଜାଣିଥିଲି ସେମିତି କହିବ। ସେଥିପାଇଁ ତ କିଛି କହିବାକୁ ଇଚ୍ଛା ହୁଏନି। ଜାଣିଛ ଆଜିକାଲି ସମସ୍ତେ କେତେଖଣ୍ଡ ଲେଖା ପାଟ ପିନ୍ଧୁଛନ୍ତି। କମିଟି ମେମ୍ବର ହେଲେ ତ ଯିବା ଆସିବା ବସ୍‌ଭଡ଼ା ଆଉ କଣ ସବୁ ମିଶି ହାରାହାରି ଟ.୩୦୦ଟିଏ ମିଳିଯିବ। ବସ୍ ଭଡ଼ାରେ ଖର୍ଚ୍ଚହେବ ବେଶି ହେଲେ ଟ.୫୦। ବାକି ଟଙ୍କା ସବୁ କଣ ହେବ ଶୁଣେ ? ଟ.୩୦ ଯାଏ ଯଦି ନଅଣ୍ଟ ହେବ, ମୁଁ ହାତରୁ ଦେଇଦେବି।' ଆଉ ଯୋଡ଼ିଦେଲେ - 'ଯିବ ଭୁବନେଶ୍ୱର ବୁଲି ଆସିବ - ସାଙ୍ଗସାଥୀଙ୍କୁ ଭେଟିବ - ମୀନା ତ କଟକରେ ଅଛି, କେତେଥର ଖବର ଦେଲାଣି - ତାର ପୁଅଟିଏ ତିନି ମାସର ହୋଇଗଲାଣି, ତାକୁ ଟିକିଏ ବି ଦେଖିଆସିବ। ଘରେ ଏମିତି ବସି ରହୁଛ ବୋଲି ତ ସବୁବେଳେ ଚିଡ଼ିଚିଡ଼ା।'

ଏମାନଙ୍କ ବିଚାର ଆଉ ଫଇସଲା ଏମିତି ରୋକ୍‌ଠୋକ୍। ଇଜାହାର ନାହିଁ କି ସାକ୍ଷୀ ସୁଆଲ ନାହିଁ। ଏ ବସ୍‌ଗୁଡ଼ାକରେ ଯିବା ଯେ କେମିତି ସେ କଥା ବୁଝିବେନି, ଆଉ ମୀନା ଘରକୁ ଗଲେ କଣ ଖାଲି ହାତରେ ଯିବ ! ଆଜି କାଲି ସନ୍ଦେଶର ଯାହା ଦାମ୍ ! ପୁଣି ସେ ଠିଣିଙ୍ଗ୍ ଠିଣିଙ୍ଗ୍ ରିକ୍‌ସା - 'ବା....ବ୍...' କହି ଘଣ୍ଟିରେ ଠିଣିଙ୍ଗ୍ ଠିଣିଙ୍ଗ୍ କରି ଲୁହା କଣ୍ଟା ବାଡ଼େଇ ଦେଉଥିବେ।

ହାତରୁ ଖାଇ ଘୋଡ଼ା ପଛରେ ଧାଇଁବା କଥା। ଅବଶ୍ୟ ଏ ଘୋଡ଼ା ସରକାରୀ ଘୋଡ଼ା। ପିଲା ଦିନର କଥାଟିଏ ତାଙ୍କର ମନେ ପଡ଼ିଗଲା। ପାହାନ୍ତିଆ ବେଳେ ସେ

ସାହେବ କେମିତି ଘୋଡ଼ା ପିଠିରେ ବର୍ଷି ଗଧିଆ ଦଉଡ଼ିଲା ପରି ପିଠିକୁ ନଇଁଇ ନଇଁଇ ପ୍ରାତଃ ଭ୍ରମଣରେ ବାହାରିଥାଏ, ଆଉ ତା' ପଛରେ ଧାଇଁଥାଏ ସେ ଖାକି ପୋଷାକପିନ୍ଧା ସଇସ। ହାତରୁ ଖାଇ ସେ ଘୋଡ଼ା ପଛରେ ଦଉଡୁଥାଏ କି ଆଉ କେଉଁଠୁ ଖାଇ କେଜାଣି! ତେବେ ସେ କ୍ଲବ୍ ପାଖ ତିନିକୋଣିଆ ଛକରେ ପହଞ୍ଚିଗଲାକ୍ଷଣି ଗୋଟାଏ ଚା' ଦୋକାନର ସାମନା ବେଞ୍ଚ ଉପରେ ବସିଯାଏ ଆଉ ତାକୁ ଯଚ୍ଛ ଯାଇଥିବା କପ୍‌ରୁ ପ୍ଲେଟରେ ଚା'ଢାଳି ଫୁଙ୍କି ଫୁଙ୍କି ପିଏ। ଚା' ସରିଲାବେଳକୁ ପାଖ ପାନଦୋକାନୀମାନେ ପାନ ନେଇ ଆସନ୍ତି। ଅନ୍ୟ ଦୁଇ ଚାରି ଚା' ଦୋକାନୀମାନେ ବି ଭିଡ଼ିଯାଆନ୍ତି। କେହି ଜଣେ ହାତ ପାପୁଲି ଘଷୁ ଘଷୁ କହେ - 'ଆଜ୍ଞ ଏ ପି. ଡବ୍ଲୁ ଡି.ବାଲେ ଦୋକାନ ସବୁକୁ ହଟାଇ ଦେବାକୁ କହୁଛନ୍ତି - କେଉଁଠିକି ନେବୁ ଆଜ୍ଞା? ସଇସ ଜବାବ୍ ଦିଏ - 'ତମେ ତାଙ୍କ ଜମିରେ ଏମିତି ଘର ବାନ୍ଧିଛ - କହିବେନି?' ସେମାନେ ଉତ୍ତର ଦିଅନ୍ତି - 'ଆପଣ ଟିକେ ସାହେବଙ୍କୁ ନକହିଲେ ଆମେ ମରିଗଲୁ।' ସଇସ ଠିଆହେଲାବେଳେ ଯଚ୍ଛ ଯାଇଥିବା କେତେ ଖଣ୍ଡ ପାନ ପକେଟରେ ପୂରାଉ ପୂରାଉ ଗମ୍ଭୀରହୋଇ କହେ - 'ହଉ-ଦେଖିବା....।' ପୁଣି ସେ ଦଉଡ଼ିବା ଆରମ୍ଭ କରିଦିଏ ଆଗରେ ଯାଇଥିବା ଘୋଡ଼ା ପଛରେ।

ଘୋଡ଼ା ପଛରେ ଧାଇଁଲେ ମାଗଣାରେ ଖାଇବାକୁ ମିଳେ ବୋଲି କଣ ସମସ୍ତେ ଏମିତି ଧାଇଁବାକୁ ଚାହାଁନ୍ତି - ଭାବୁଥିଲେ ଜୟଦେବ। ସେ ଦିନ ଏ ଦିନ ଭିତରେ କଣ କିଛି ଫରକ୍ ନାହିଁ? ସେ ଥିଲା ଘୋଡ଼ାର ଦିନ, ଆଉ ଏଇଟା ହେଲା କାର୍‌ର ଯୁଗ - ସେତିକି ବୋଧହୁଏ ପ୍ରଭେଦ। ତେବେ ଏ ନିଶା ନିବାରଣ କମିଟି! ମନକୁ ମନ ହସିଲେ ଜୟଦେବ ବାବୁ।

ତାଙ୍କ ହସ ମଝିରେ ହିଁ ଦୁର୍ଘଟଣାଟି ଘଟିଗଲା। କଟା ଗଛଟିଏ ବସ୍ ଉପରେ ଛିଣ୍ଡି ପଡ଼ିଲା ନା କଣ! ଆଉ ତାଙ୍କର ମନେହେଲା ସେ ଦୁଇଖଣ୍ଡ ହୋଇ ଭାଙ୍ଗି ଯାଇଛନ୍ତି। ଜୟଦେବଙ୍କ ଆଖି ଆଗରେ ଦି' ଚାରୋଟି ତାରା ଖସିପଡ଼ିଲେ। ପର ମୁହୂର୍ତ୍ତରେ କିନ୍ତୁ ସେ ଜାଣିପାରିଥିଲେ ଯେ ଏବେ ବି ସେ ନିଃଶ୍ୱାସ ନେଉଛନ୍ତି। କେମିତି କେଜାଣି? ଆଉ କେଡ଼େ ଆଶ୍ଚର୍ଯ୍ୟର କଥା ସତେ ଯେମିତି କିଛି ଘଟିନି, ବସ୍ ବି ସେମିତି ଅଙ୍କେଇ ବଙ୍କେଇ ଧାଇଁଚାଲିଛି। ସେ ଜାଣି ପାରିଲେ ଯେ ବସ୍ ମୋଡ଼ ନେଲାବେଳେ ପାଖରେ ଥିବା ୭ ନମ୍ବର ଭଦ୍ରଲୋକ ତାଙ୍କ ଉପରେ ଗଡ଼ିପଡ଼ିଛନ୍ତି। ଆଉ କି ଅଦ୍ଭୁତ ଏ ଭଦ୍ରଲୋକ। ଜୟଦେବ ବାବୁଙ୍କ ପେଟକୁ ତକିଆଟିଏ ବୋଲି ଭାବିଲେ ନା କଣ - କଡ଼ ଲେଉଟାଇ ପୁଣି ଶୋଇବାକୁ ଚେଷ୍ଟା କରୁଛନ୍ତି। ଭଦ୍ରାମିର ବି ଗୋଟାଏ ସୀମା ଅଛି - ଭାବିଲେ ଜୟଦେବ ବାବୁ, ଆଉ ଭଦ୍ରଲୋକଙ୍କୁ ଜୋର୍ ଧକ୍କାଟିଏ ଦେଇ ତାଙ୍କ ପେଟ ଉପରୁ ଟେକି ଧରିଲେ। ଭଦ୍ରଲୋକ ତାଙ୍କ ନିଜ ସର୍ବସ୍ୱତ୍ୱ ସଂରକ୍ଷଣକରା

ହସ ହସି ପୁଣି ସ୍ୱସ୍ଥାନରେ ବସି ପୂର୍ବପରି ଗୋଡ଼ ଦିଓଟିକୁ ହାତରେ ଛନ୍ଦି ଛାତି ଆଉ ଆଣ୍ଠୁରେ ମୁଣ୍ଡ ଥାପି ପୁନର୍ବାର ସମାଧିସ୍ଥ ହୋଇଗଲେ।

ଜୟଦେବ ବାବୁ ଏଥର ସିଟ୍‌ରେ ବସିଯାଇ ଝରକାକୁ ଆଉଜି ପୁଣି କେତେ କଥା ଭାବି ବସିଲେ। ତାଙ୍କ କଲେଜରେ ପଢ଼ିବା ଦିନର କଥା। ହଲମୁକ୍ ସିନେମା ଘରେ ହେଉଥାଏ କାଳୀବାବୁଙ୍କ ଥିଏଟର୍। ଡ୍ରାମାରେ ଓକିଲ ବାବୁଙ୍କ ଅଫିସ। ଓକିଲ ବାବୁ କିନ୍ତୁ ଘର ଭିତରେ। ଅଫିସ ଘର ଟେବୁଲ ଉପରେ ଛତା ଆଉ ବାଡ଼ି ଥୋଇ ଦେଇ ଖାଲି ଚୌକିରେ ଧୂଳିଆ ପାଦ ଲଦି ଏମିତି ଖୁଟୁଖୁଟୁ ହୋଇ ବସିଗଲେ ମହକିଲ ଭଦ୍ରଲୋକ। ଦେଖିଲେ ଟେବୁଲ ଉପରେ କଣଟିଏ ଓଲଟା ଗିନାପରି ଧୂଆହୋଇଛି। ତା ମୁଣ୍ଡରେ ବୋତାମ ହେବ କି ଆବୁ ଭାବି କୌତୂହଳରେ ତା' ଉପରେ ସେ ଯେମିତି ହାତ ଦେଇଛନ୍ତି ଠଙ୍ଗ୍ କରି ବାଜି ଉଠିଲା ସେ ଗିନା। ମହକିଲ ଭଦ୍ରଲୋକ ସେ ଆବାଜ ଶୁଣି ଚମକି ପଡ଼ିଲେ- ଆଉ ଥରେ ହାତ ମାରିଲାରୁ ପୁଣି ଠଙ୍ଗ୍ ଠଙ୍ଗ୍ ବାଜିଉଠୁଥାଏ। ଏଥର ଭଦ୍ରଲୋକ ତାଳ ଦେଇ ଠଙ୍ଗ୍ ଠଙ୍ଗ୍ ଠଠଙ୍ଗ୍ କରି ସେ ଘଣ୍ଟକୁ ବଜାଇ ବସିଲେ ଆଉ ବଡ଼ ପାଟି କରି 'ଠିକ୍ ଠ ବର୍ତ୍ତୁଳ ଚନ୍ଦ୍ରାନନା' ଚମ୍ପୁ ମେଲିଦେଲେ। ଅଫିସ ଭିତରକୁ ଓକିଲ ପଶିଆସିଲା ବେଳକୁ... ମହକିଲ ମଉ-ବିଭୋର ହୋଇ ଗାଉଥିଲେ କି ଶୋଇଯାଇଥିଲେ ନା କ-ଅ-ଣ!! ..... ଜୟଦେବ ବାବୁ କ୍ଳାନ୍ତିରେ ଘୁମାଇ ପଡ଼ିଥିଲେ।

## ୪

ଫୁଲବାଣୀ ନୟାଗଡ଼ କେତେବେଳେ ଗଲା କେଜାଣି, ଖୋର୍ଦ୍ଧାଠାରେ ଜୟଦେବ ବାବୁଙ୍କର ମନେପଡ଼ିଲା, ସେ ରାତିରେ କିଛି ଖାଇନାହାନ୍ତି। ବାଲିଗୁଡ଼ାରେ ସମସ୍ତେ ଖାଇବାକୁ ଓହ୍ଲାଇ ଯାଇଥିଲେ; କିନ୍ତୁ ଜୟଦେବ ବାବୁ ଝରକା ପାଖରୁ ମୁଣ୍ଡ ଘୁଞ୍ଚାଇ ଆଣି କୌଣସି ମତେ ବେକ୍ ସିଟ୍‌ରେ ମୁଣ୍ଡ ଲଦି ଦେଇଥିଲେ ଯାହା।

ଭୋର୍ ହୋଇ ଆସିଥିଲା; କିନ୍ତୁ ମେଘାଚ୍ଛନ୍ନ ଆକାଶ କୁଣ୍ଡା ଝାଡ଼ି ଦେଉଥିଲା। ଭାଗ୍ୟକ୍ରମେ ପିଲାଟିଏ ତାଙ୍କ ଝରକା ପାଖକୁ ଆସି ଚା' ଗିଲାସ ଦେଖାଇ କହୁଥିଲା - ସ୍ପେସିଏଲ୍ ଚା - ଦାନ୍ତ ନ ଘଷି ଏତିକିବେଳେ ଚା' ପିଇବା ଉଚିତ୍ ହେବ ନା ନାହିଁ ଭାବୁ ଭାବୁ ଜୟଦେବବାବୁ ଗିଲାସ ଆଡ଼ିକି ହାତ ବଢ଼ାଇ ଦେଇଥିଲେ।

ତା'ପରେ ଭୁବନେଶ୍ୱର-କଟକ। ବାଦାମବାଡ଼ିରେ ପହଞ୍ଚିଲାବେଳକୁ ବର୍ଷା ଝିପିରି ଝିପିରି ବର୍ଷିଚାଲିଥିଲା। ରକ୍ଷାହେଲା ସେ କୌଣସି ବେଡ୍‌ିଂ ସୁଟ୍‌କେସ୍ ଆଣି ନଥିଲେ। ରିକ୍‌ସାଟାରେ ଆଟେଚି ଓ ବ୍ରିଫ୍‌କେସ୍ ସହ ଜାକିଜୁକି ହୋଇ ବସି ରେଭେନ୍‌ସା କଲେଜ ହତାରେ ମୀନା ଘର ପାଖରେ ପହଞ୍ଚିଲାବେଳକୁ ତା'ଘରେ ଜଣେ ଅଧେ

ବିଛଣାରୁ ଉଠି ନଥିଲେ। ଆନନ୍ଦ କୋଳାହଳ ଭିତରେ ଦିନଟି ବେଶ୍ ସୁନ୍ଦରଭାବରେ କଟିଗଲା; କିନ୍ତୁ ରାତିରେ ହିଁ ଜୟଦେବ ବାବୁ ଚିନ୍ତିତ ହୋଇ ପଡ଼ିଥିଲେ । ବର୍ଷା ରୀତିମତ କୁଟୁଥାଏ। ସକାଳେ ସେ ଭୁବନେଶ୍ୱର ଯିବେ କେମିତି ? ତାଳଚେର ପୁରୀ ନାଁ ଶୁଣି ଝିଆରି-ଜୋଇଁ ହସିଲେ। କହିଲେ - ଏତେ ଆଗରୁ ଭୁବନେଶ୍ୱରରେ ପହଞ୍ଚି କଣ କରିବେ ? ମିଟିଂ ଯାଇ ୧୦ଟାରେ ବାଦାମବାଡ଼ିରୁ ତ ସରକାରୀ ବସ୍, ମିନି ବସ୍-ଟେକ୍ସି କେତେ ନା କେତେ - ଯେତେବେଳେ ଯିବେ ପାଇବେ। ଘରୁ ୯ଟାରେ ରିକ୍ସାଟାଏ ଧରି ବାହାରି ଗଲେ ୯.୧୫ରେ ବାଦାମବାଡ଼ି ଆଉ ୯.୪୫ରେ ଭୁବନେଶ୍ୱର। ମୀନା କହିଲା - 'ହଁ ମଉସା - ସେଇଠି କେଉଁଠି ଖାଇବ ? ସକାଳେ ଭଲ କରି ଜଳଖିଆ ଖାଇ ବାହାରିଯିବ ଯେ ଦିନବେଳେ ଭୁବନେଶ୍ୱରରେ ନ ଖାଇଲେ ବି ଚଳିବ। ସଞ୍ଜବେଳେ ତମେ ସେଇଠୁ ଫେରିଲା ପରେ ଖଣ୍ଡୁଆ କିଣାକିଣି କରିବା।'

ପ୍ରସ୍ତାବଟା ମନ୍ଦ ନଥିଲା। ତେବେ ଜୟଦେବ ବାବୁ ହାତରପାଞ୍ଚ ରଖି ନିଷ୍ପତ୍ତି ନେଲେ ଯେ ସକାଳ ୮.୩୦ରେ ହିଁ ବାହାରି ପଡ଼ିବେ। ଏତେ ଦୂରରୁ ଆସିଛନ୍ତି ଯେତେବେଳେ - ୧୫ମିନିଟ୍ ଆଗରୁ ସିନା ପହଞ୍ଚିବା କଥା - ଡେରିରେ ନୁହେଁ।

ସକାଳେ ବର୍ଷା ଯା' ହେଉ ବେଶ୍ ଧିମେଇ ଯାଇଥାଏ। ଆଉ ଗୋଟିଏ - ଆଉ ଗୋଟିଏ କହି ମୀନା କଷି କରି ଲୁଚି ତରକାରି ଖୁଆଇ ଦେଲା। ପେଟେ ଖାଇ ଛତାଟିଏ ଆଉ ବ୍ରିଫ୍‌କେସ୍ ହାତରେ ଧରି ଜୟଦେବ ବାବୁ ବାହାରି ପଡ଼ିଲେ ବାଦାମବାଡ଼ି ଅଭିମୁଖେ। ଜୋଇଁ କହୁଥିଲେ ସେ ବି ସଙ୍ଗରେ ଯିବେ ସଡ଼କରେ ରିକ୍ସା ଧରିବାଯାଏ - କିନ୍ତୁ ଜୟଦେବ ତାଙ୍କୁ ଏ ପିଚିର-ପିଚିରି କାଦୁଅରେ ଯିବାକୁ ମନା କରିଦେଲେ। ହେଇ ତ - ଖେଳ ପଡ଼ିଆ। ତା'ପରେ ପ୍ରିନ୍‌ସପାଲ-ପ୍ରଫେସରମାନଙ୍କ କଲୋନୀ ଡେଇଁଗଲେ ଆଗରେ ସଡ଼କ। ସେଇଠି ରିକ୍ସା ମିଳିଯିବ - ନହେଲେ ଛତ୍ରାବଜାର ପାଖାପାଖି ତ ଗଦା ହୋଇଥାଏ।

ଖେଳପଡ଼ିଆ ଭିତରେ ଏଇଠି ସେଇଠି ଜମିଥିବା ପାଣି ଡ଼େଇଁ ଡ଼େଇଁ ଗଲାବେଳେ ଜୟଦେବବାବୁ ତାଙ୍କ କଲେଜ ଦିନର ହକି ଖେଳ କଥା ମନେ ପକାଉଥିଲେ। ହକି ଖେଳରୁ ମନେପଡୁଥିଲେ ନାରାୟଣ ବାବୁ। ପ୍ରିନ୍‌ସପାଲଙ୍କ ଘର ପାଖ ଦେଇ ଗଲାବେଳେ ପରିଜା ସାହେବ ବି ମନେ ପଡୁଥିଲେ। ଆଗରେ ସଡ଼କ ସାମ୍ନାସାମ୍ନି ଖାଲି ରିକ୍ସାଟିଏ ଦେଖି ଜୟଦେବ ବାବୁ ଚିତ୍କାର କଲେ, 'ଏ ରିକ୍ସା....।' ମନେହେଲା ରିକ୍ସାବାଲା ମୁହଁ ବୁଲାଇ ଦେଲା। ପୁଣି ସେ ପାଟି କଲେ - 'ଏ ରିକ୍ସା ..... ଯିବୁ ?'

-"କୋଉଠିକି ?"

-"ବାଦାମବାଡ଼ି।"

-"ଦି'ଟଙ୍କା ପଡ଼ିବ।"

-"ଟଙ୍କାଏ।"

ପୁଣି ସେ ମୁହଁ ବୁଲାଇ ନେଲା। ଜୟଦେବ ବାବୁ କହିଲେ - 'ପାଁସୁକା।' ରିକ୍ସାବାଲା କହିଲା - 'ଗରାଖ ଅଛନ୍ତି'। 'କହୁନୁ' କହି ଜୟଦେବ ବାବୁ ଛତ୍ରାବଜାର ପୋଲ ଆଡ଼କୁ ଆଗେଇଗଲେ। ହେଇ ତ ଗୁଡ଼ିଏ ରିକ୍ସା। 'ଏ ଯିବୁ?' କହିଲାବେଳକୁ ଦେଖିଲେ ରିକ୍ସାରେ କଖାରୁଟିଏ ଥୁଆହୋଇଛି। ଆଉ ଗୋଟିଏ ରିକ୍ସାରେ ବସ୍ତାଟିଏ। ଆଳୁ କି ପିଆଜ କେଜାଣି, ଆଉ ସେ ରିକ୍ସା.... ରିକ୍ସାବାଲା କଣ ଦିଶୁନି - କୁଆଡ଼େ ଗଲା କି?

ପୁଣି ସେ ଆଗେଇଗଲେ। ଛତ୍ରାବଜାର ପୋଲ। ଛକରେ ତିନିଟା ରିକ୍ସା। ପ୍ରଶ୍ନର ଉତ୍ତରରେ ଜଣେ କହିଲା - କେତେ ଦେବ? '... ପାଁ ସୁକା।' 'ଦି ଟୋଙ୍କା ହେଲେ ଯିବା।' 'ଦେଢ଼ ଟଙ୍କା।' 'ଏତେ ବାଟ ଘୋରିକରି ଯିବାକୁ ହେବ.... ଦେଢ଼ ଟୋଙ୍କାରେ କିଏ ଯିବ....' କହିଲା ରିକ୍ସାବାଲା। ଜୟଦେବ ବାବୁ ରାଗିଯାଇଥିଲେ। କହିଲେ - 'ହ-ଏତିକି ବାଟକୁ ଦି'ଟଙ୍କା - ମୁଁ ଟାଣିବି, ତୁ ବସ୍।' ରିକ୍ସାବାଲା କଣ ସବୁ ଗାଡ଼୍‌ରୁ ଗାଡ଼୍‌ରୁ କରି ମୁହଁ ବୁଲାଇ ନେଲା। ଜୟଦେବ ବାବୁ ବି ମନକୁ ମନ କହିଲେ - ପୋଲ ଡ଼େଇଁଲେ ଗଣ୍ଡା ଗଣ୍ଡା ରିକ୍ସା।

ବଡ଼ ବଡ଼ ପାହୁଣ୍ଡ ପକେଇ ସେ ଆଗେଇ ଗଲାପରେ ପୋଲ ମଝିରେ ଦେଖିଲେ ଆଉ ଆଗକୁ ବାଟ ନାହିଁ। ସତେ ଯେମିତି ଗ୍ଭରିଟା ନଈ ଏକାଠି ମିଶିଯାଇଛି - ଆଉ କିଏ କେଉଁ ଆଡ଼ିକି ବୋହିଯାଇପାରୁନି। ଜୟଦେବ ବାବୁ ଠିକ୍ କଲେ ବରଂ ପଛକୁ ଫେରିଯିବା ଭଲ; କିନ୍ତୁ... ଇୟେ କ'ଣ? ପଛ ଆଡ଼ିକି ଧାଡ଼ିଏ ରିକ୍ସା ଆଉ ବଳଦ ଗାଡ଼ି। କେନାଲଆଡୁ ଆସୁଥିବା ବାଁ ଆଉ ଡାହାଣ ପାଖିଆ ଟ୍ରକ୍, ବଳଦ ଗାଡ଼ି, ରିକ୍ସା, ସମସ୍ତଙ୍କୁ ଅଟକାଇ କେହି ଜଣେ ପୋଲ ପାଖ ସୁଅକୁ ଆଗେଇଯିବା ପାଇଁ ହାତ ଠାରୁଥିଲା ବୋଧହୁଏ। ଜୟଦେବ ବାବୁଙ୍କ ଆଗରେ ଥିବା ବଳଦ ଗାଡ଼ି ଆଉ ତା'ପାଖ ରିକ୍ସା ଟିକିଏ ଆଗେଇ ଗଲେ। ଜୟଦେବ ବାବୁ ମଧ୍ୟ ନିଃଶ୍ୱାସ ମାରି ସେମାନଙ୍କ ସଙ୍ଗରେ ଆଗକୁ ଗ୍ଭଲିଲେ। ତା'ପରେ ପହଞ୍ଚିଗଲା ସେ ସଙ୍ଗମସ୍ଥଳୀ। ମଝିରେ ଠିଆହୋଇଛି କନେଷ୍ଟବଲ୍ - କେତେବେଳକୁ ଚିପି ହୋଇଯିବ କେଜାଣି? ଆଉ କେଉଁ ପାଖରୁ ସେ କଥା ବି କେମିତି କହି ହେବ! ବିଚରା ଅଭିମନ୍ୟୁ! ଜୟଦେବ ବାବୁଙ୍କ ପଛଆଡୁ କିଏ ଜଣେ ପାଟିକଲା - ଏ ବାବୁ ଠିଆ ହୋଇ ଦେଖୁଛ କଣ ଗ୍ଭଲ। ବଳଦଗାଡ଼ିର ବଳଦ ଶିଙ୍ଗ ଜୟଦେବ ବାବୁଙ୍କ ପଛକୁ ଛୁଇଁ ଗଲାଣି। ଆଗରେ ଟ୍ରକ୍ ତା' ଆଗକୁ ପୁଣି ଟ୍ରକ୍। ସେ ପାଖରୁ ପୁଣି ବଳଦ ଗାଡ଼ି-ଟ୍ରକ୍ ଆସୁଛି।

ମଝିରେ କ୍ଷଣଟିଏ ଜୟଦେବ ବାବୁ ଆଉ କ୍ଷଣ ଏକା ସଙ୍ଗରେ କାଦୁଅ ପାଣିରେ ଗୋଡ଼ ପୂରାଇ ଦେଲେ ଆଗେଇଯିବା ଛଡ଼ା ଉପାୟ ନାହିଁ।

ପୁଣି ସବୁ ସ୍ଥିର। ପଛରୁ ଠିଣିଙ୍ଗ୍ ଠିଣିଙ୍ଗ୍ ପୁଣି ଚିତ୍କାର - 'ଏ ବାବୁ.... ଗ୍ଭଲ'- 'ହେ ....', 'ଆଖିକି କଣ ଦିଶୁନି?' 'ଆବେ...' 'କଣ କହିଲ?' 'କୁଆଡ଼ିକି ଯିବ!'.... 'ଏ କ୍ଷଣ....'

ଯୋତା ତ ଗଲାଣି। ଟ୍ରାଉଜର୍ ବି କାଦୁଅରେ ଚକଟି ହେଲାଣି ନା କଣ ... ଟିକିଏ ଟେକି ଦେଇ ପାରିଲେ ଭଲ ହୁଅନ୍ତା - ଭାବୁଥିଲେ ଜୟଦେବ। ତେବେ ପାଖେଇ ଯାଇପାରିଲେ ତ। ବାଁ ପାଖରେ ଗହୀରିଆ କାଦୁଅ - ଡାହାଣକୁ ଘୁଞ୍ଚିଗଲବେଳକୁ ଦାଢ଼ିବାଲା କହିଲା, 'ଓ ସାହାବ... ମରନେକା ଇରାଦା ହୈ କ୍ୟା...'

କଦଳୀ କାନ୍ଧି ଦୋକାନ... ଆଳୁ ପିଆଜ ଦୋକାନ - ବୋଇତାଳୁଗଦା - ପୁଣି କଦଳୀ କାନ୍ଧି - ଆହୁରି ବୋଇତାଳୁ...। ସତେ ଯେମିତି ସେ ଭିଡ଼ ସରିବନି। ସବୁ ଡ଼େଇଁ ସାରିଲାବେଳକୁ ଜୟଦେବ ବାବୁଙ୍କର ଇଚ୍ଛା ହେଉଥିଲା ସେ କେଉଁଠି ଟିକିଏ ବିଶ୍ରାମ ନିଅନ୍ତେ। କିନ୍ତୁ... ଇଏ କଣ... କେତେ ଉଛୁର ହୋଇ ଗଲାଣି - ୯.୨୫ ନା କଣ! ମନେହେଲା ଟିକିଏ ଦୂରରେ ଗୋଟାଏ ରିକ୍‌ସା। ଖାଲି ଅଛି ବୋଧହୁଏ। 'ରିକ୍‌ସା, ବାଦାମବାଡ଼ି ଯିବୁ....?' ରିକ୍‌ସାବାଲା କହିଲା - 'ହ ଯିବା... ଦେଢ଼ଟଙ୍କା ପଡ଼ିବ।' ଜୟଦେବ ବାବୁ କିଛି ଉଚ୍ଚବାଚ୍ୟ ନ କରି ରିକ୍‌ସାରେ ବସିପଡ଼ିଲେ। ଯା'ହେଉ ଟିକିଏ ବିଶ୍ରାମ ମିଳିଗଲା।

୫

ଟେକ୍‌ସିବାଲା ଚିତ୍କାର କରୁଥିଲା - 'କେପିଟେଲ୍-କେପିଟେଲ୍।' ଜୟଦେବ ବାବୁ ଟେକ୍‌ସିର ଆଗ ସିଟ୍‌ରେ ବସିପଡ଼ିଲେ। ପଛରେ ତିନିଜଣ ବସିସାରିଛନ୍ତି। ଟେକ୍‌ସିବାଲା ପୁଣି ଚିତ୍କାର କଲା - 'କେପିଟେଲ୍-କେପିଟେଲ୍।' ଜୟଦେବ ବାବୁ କହିଲେ ଆଉ ଜଣକର ପଇସା ବି ସେ ଦେଇଦେବେ। ଟେକ୍‌ସିବାଲା କହୁଥିଲା - ଆଉ ଦୁଇଜଣ ପେସେଞ୍ଜର ହେଲାକ୍ଷଣି ସେ ଛାଡ଼ିଦେବ।

୬

ପୁଣି ରିକ୍‌ସାଟିଏ ଧରି ସେକ୍ରେଟେରିଏଟ୍‌ରେ ପହଞ୍ଚିଲାବେଳକୁ ଅଧଘଣ୍ଟା ଡ଼େରି ହୋଇଯାଇ ସାରିଲାଣି। ଗେଟ୍ ପାଖରେ ପହଞ୍ଚି ସେ ଦେଖିଲେ ମିଟିଂ ସମ୍ବନ୍ଧରେ ଗେଟ୍ ରକ୍ଷକମାନଙ୍କ ପାଖରେ କିଛି ଖବର ନାହିଁ, ଆଉ ତାଙ୍କୁ ଗେଟ୍ ପାସ୍ ଆଣିବାକୁ ପଡ଼ିବ। ସେ ପାଖରେ ଥିବା ରିସେପ୍‌ସନ୍ ଅଫିସ୍ ଖୋଜିଲା ବେଳକୁ ଶୁଣିଲେ ସେ ଅଫିସ୍ ସାମ୍ନାରୁ ଉଠିଯାଇ, ସେକ୍ରେଟେରିଏଟ୍ ଆଉ ଚିଫ୍ ଇଞ୍ଜିନିୟରଙ୍କ ଅଫିସ

ମଝିରେ ଥିବା ଗଳିକି ଘୁଞ୍ଚିଯାଇଛି। ପୁଣି ସେ ଦଉଡ଼ିଲେ ସେଇଠିକି। ଭାଗ୍ୟକ୍ରମେ ସେଇଠି ତାଙ୍କୁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲାନି ନିଶାନିବାରଣ କମିଟି ମିଟିଂ ଶୁଣି ରିସେପ୍‌ସନ୍ ଋର୍କରେ ଥିବା ଭଦ୍ରଲୋକ ପାସ୍‌ଟିଏ ଧରାଇ ଦେଇ କହିଲେ - 'ଡେରି ହୋଇଗଲାଣି ନା କଣ।'

ପାସ୍ ଧରି ଜୟଦେବ ବାବୁ ଯେତେବେଳେ ଲିଫ୍‌ଟ ପାଖରେ ପହଞ୍ଚିଲେ ଲିଫ୍‌ଟ କବାଟ ବନ୍ଦ ହେବାକୁ ଯାଉଥିଲା। ସେ ରୀତିମତ ଦୌଡ଼ିଯାଇ ଲିଫ୍‌ଟରେ ପଶିଲେ, ଆଉ କହିଲେ - ତିନି ମହଲା। ସେ ମହଲାର କନ୍‌ଫରେନ୍‌ସ ହଲରେ ମିଟିଂ। ସେଠି ଯାଇ ଜୟଦେବ ବାବୁ ଦେଖିଲେ ହଲ୍ ବାହାରେ କେହି ନାହାନ୍ତି କବାଟ ଖୋଲି ଭିତରକୁ ଋହିଁଲେ - ଭିତରେ ବି କେହି ନାହାନ୍ତି। ତେବେ ମିଟିଂ ଅନ୍ୟ କେଉଁଠି ହେଉଛି ନା କଣ? ଫାଇଲ୍‌ଟିଏ ଧରି ବାରନ୍ଦାରେ ଯାଉଥିବା ଜଣେ ଭଦ୍ରଲୋକ ଜୟଦେବ ବାବୁଙ୍କ ଯୋତା, ଟ୍ରାଉଜର ଆଉ ମୁହଁକୁ ଦୁଇଥର ଅନାଇ ସାରିଲା ପରେ କହିଲେ - 'ଟିକିଏ ଆଗକୁ ଯାଇ ବାଁ ପାଖରେ ପଶିଗଲା ପରେ ଯେଉଁ ପିଅନକୁ ଦେଖିବେ - ସେଇଟି ପଋରିବେ।' ଭଦ୍ରଲୋକ ନିଜ ବାଟରେ ଆଗେଇଗଲେ।

କେତେଜଣ ଗୋଟାଏ ବେଞ୍ଚରେ ବସି ଗପସପ କରୁଥିଲେ। ପିଅନ ହେବେ ନା କଣ। ଜୟଦେବ ବାବୁ ସେମାନଙ୍କ ପାଖରେ ପହଞ୍ଚିଲାକ୍ଷଣି ଜଣେ କହିଲା - 'କାହାକୁ ଖୋଜୁଛନ୍ତି? ସାହେବ ନାହାନ୍ତି।' ଜୟଦେବ ବାବୁ ନିଶା-ନିବାରଣ କମିଟି ମିଟିଂ କଥା ପଋରିଲେ।

ବନିଶୀରେ ମାଛ ଧରୁଥିବାବେଳେ ବନିଶୀର ଡୋରି ଯେତେବେଳେ ଭିଡ଼ି ହୋଇଯାଏ ପାଣି ଭିତରକୁ, ଆଉ ପାଣି ଉପରେ ଭାସୁଥିବା ସୋଲ ପାଣି ଭିତରେ ବୁଡ଼ୁ ମାରେ, ବନିଶୀଆଳର ଆଖି ଯେମିତି ଉଜ୍ଜ୍ୱଳିଉଠେ, ପିଅନର ଆଖି ସେମିତି ଉଜ୍ଜ୍ୱଳି ଉଠିଲା; କହିଲା - 'ଆପଣ ରୁହନ୍ତୁ - ମୁଁ ବାବୁଙ୍କୁ ଡାକି ଆଣୁଛି।' କିଛିକ୍ଷଣ ପରେ ହିଁ ବାବୁ ଜଣକ ଦେଖାଦେଲେ - କହିଲେ, 'ମିଟିଂ ତ କେତେବେଳୁ ସରିଗଲାଣି। ଅଧଘଣ୍ଟା ଖଣ୍ଡିଏ ହେବ। ଆଉ ଆପଣ ଏଇନେ କଣ ଆସୁଛନ୍ତି?'

ଜୟଦେବ ବାବୁ ଛେପ ଢୋକିଲେ। କହିଲେ - '୧୦ଟାରେ ମିଟିଂ ଥିଲା, ଏବେ ତ ୧୧ଟା ବି ବାଜିନି। ଏତେ ଶୀଘ୍ର କେମିତି ମିଟିଂ ସରିଯିବ?'

ବାବୁ କହିଲେ - 'ପ୍ରଥମ ଥରର ମିଟିଂ ଆଜ୍ଞା - କେତେବେଳ ଆଉ ଲାଗନ୍ତା? ନିଶା ନିବାରଣର ଉପକାରିତା ସମ୍ବନ୍ଧରେ ମନ୍ତ୍ରୀ ଭାଷଣ ଦେଲାପରେ ଜଣାଇ ଦେଲେ ଯେ ତାଙ୍କ ଗସ୍ତକ୍ରମ ଅଛି। କମିଟି ମେମ୍ବରମାନେ ଋହିଁଲେ ସେକ୍ରେଟେରୀଙ୍କ ସଙ୍ଗରେ ଆଲୋଚନା କରିପାରନ୍ତି କହି ସେ ଋଲିଗଲା ପରେ ସେକ୍ରେଟେରୀ ବି ଜଣାଇ ଦେଲେ ଯେ, ସେ ଆଉ ଗୋଟାଏ ଜରୁରୀ ମିଟିଂକୁ ଯିବେ। ମୁଖ୍ୟମନ୍ତ୍ରୀଙ୍କ ପାଖରେ

ସେ ମିଟିଂ। ପଚାରିଲେ, କେହି ଯଦି କିଛି କହିବାକୁ ଚାହାନ୍ତି। ସେତେବେଳକୁ ଉପସ୍ଥାନ ଖାତାରେ ସମସ୍ତେ ଦସ୍ତଖତ ଦେଇ ସାରିଥିଲେ ଆଉ ଚା, ବିସ୍କୁଟ୍, କାଜୁ ବି ଆସିସାରିଥିଲା। ଚା' ପିଉ ପିଉ ଜଣେ ଯେମିତି ନିଶା-ନିବାରଣ ସପକ୍ଷରେ କହିବାକୁ ଆରମ୍ଭକଲେ, ଆଉ ଜଣେ ଏମିତି ନିବାରଣ କଳ୍ପନା ସବୁ ଅବାସ୍ତବ ଏବଂ ପ୍ରୟୋଗ କରିବା ସମ୍ଭବ ନୁହେଁ ବୋଲି କହି ମନ୍ତବ୍ୟ ଦେଲେ ଯେ ଏଥିରେ ରାଜକୋଷର ଯେମିତି କ୍ଷତି ହେବ, ସେମିତି ଚୋରା କାରବାର ବି ବଢ଼ିବ। ଅନ୍ୟ ଜଣେ ସେ କଥା ସମର୍ଥନ କରି କହିଲେ, 'ଏ ସବୁ ଖାଲି ରାଜନୀତିର ଚାଲବାଜି। ଦୁଇଜଣ ସଭ୍ୟ ଏଥିରେ ରାଗିଯିବା ଦେଖି ସେକ୍ରେଟେରୀ ବୁଝାଇ ସୁଝାଇ କହିଲେ ଯେ ଏଇଟା ଗୋଟାଏ ବଡ଼ ଗୁରୁତର ସମସ୍ୟା। ଏମିତି ବିଷୟ ସବୁକୁ ବିଶେଷ ଗୁରୁତ୍ୱ ସହ ବିଚାର କରିବାକୁ ହେବ। ଶେଷରେ ସମସ୍ତଙ୍କର ମତ ହେଲା ଯେ ଅନ୍ୟ ଥରକୁ ମନ୍ତ୍ରୀଙ୍କ ଉପସ୍ଥିତିରେ ଏ ବିଷୟର ବିଶଦ୍ ଆଲୋଚନା ହେବ। ମିଟିଂ ତ ସେତିକିରେ ହିଁ ସରିଗଲା। ଆଉ ଆପଣ ଏବେ ଆସୁଛନ୍ତି।'

ଜୟଦେବ ବାବୁ ବିଚଳିତ ହୋଇ ପଚାରିଲେ - 'ତେବେ କେମିତି ହେବ ?'

ବାବୁ ଜଣକ ମୁହଁ ଆଉ ଡାହାଣ ହାତ ପାପୁଲିକୁ ଏକାସଙ୍ଗରେ ଏକା ଦିଗରୁ ବଙ୍କାଇ ସେଠାରୁ ଫେରିଗଲା ପରେ ପିଅନ୍ କହିଲା - 'ଆଜ୍ଞା, ଆପଣ ବି ଖାତାରେ ଦସ୍ତଖତ କରି ଦେଉନାହାନ୍ତି ? କହିବେ ଯଦି ମୁଁ ଖାତା ନେଇ ଆସିବି। ତେବେ ଜାଣୁଛନ୍ତି ତ ଏ ଯୁଗ ବାବୁଙ୍କ ଉପରେ କେତେ ବଡ଼ ଜିମ୍ମେଦାରୀ ରହିଛି। କେହି ଯଦି ବେନାମିଟିଏ ଛାଡ଼ିଦିଏ। ତାଙ୍କୁ....' କହି ପିଅନ୍ ମୁଣ୍ଡ କୁଣ୍ଡାଇଲା ଆଉ କହିଲା - 'ଜାଣୁଛନ୍ତି ତ ଆମର ବି ପେଟପାଟଣା ଅଛି।'

ଜୟଦେବ ବାବୁ ମେଲା ପାଟିରେ ପିଅନ୍‌ର ମୁହଁକୁ ବଲବଲ କରି ଅନାଇ ରହିଥିଲେ। 'ଉପୁରି ଟଙ୍କା ଗଣୁଥାଅ' - 'ସୁନାଖଡୁ'... 'ଖଣ୍ଟୁଆପାଟ'... ସବୁ ଗୋଟାକ ପରେ ଗୋଟାଏ ତାଙ୍କ ମନ ଭିତରେ ଉହୁଙ୍କି ଉଠୁଥିଲା।

# ରାଧା

ହି-ହି-ହି-ହିଃ ।

ସାମାନ୍ୟ କିଛି ଫୁସ୍ ଫୁସ୍ ପରେ ପୁଣି ଯେତେବେଳେ ସେଇ ହି-ହିର ଆଉ ଗୋଟାଏ ଲହର ମାଡ଼ି ଆସିଲା, ଘଟଣା କଣ ମୋତେ ଆଉ ଅଛପା ରହିଲାନି । ଜାଣି ପାରିଲି ରାଧା ଆସିଛି । ଘର ପୋଛୁଛି - ବୋଧହୁଏ ବସିବା ଘର - ଆଉ କାହା ସଙ୍ଗରେ ତାର ଫୁସୁରୁ ଫାସୁର ଗପ ଜମେଇ ଦେଇ ହସି ଚାଲିଛି । ହସୁରୀ !

ମୁଁ ଡାକିଲି 'ରାଧା ?'

ଜବାବ୍ ଆସିଲା - 'ହାଁ ଜୀ'

"ଏଆଡ଼େ ଆଇଲୁ ।"

କିଛିକ୍ଷଣ ପରେ ଧୀର ପଦକ୍ଷେପରେ ରାଧା ଦେଖାଦେଲା । ପାଟିକୁ ସିଧା ଦି ପାପୁଲିରେ ଢାକି ଧରିଛି । ଆଖିକି ଅନାଇ ଦେଲେ କିନ୍ତୁ ଜାଣି ହୋଇଯାଉଛି ଯେ ସେ ହସୁଛି, ଆଉ ସେ ହସ ଯେମିତି ପାଟିରୁ ଫାଟି ନ ପଡ଼ିବ, ସେଥିପାଇଁ ଆପ୍ରାଣ ଚେଷ୍ଟା କରୁଛି ।

ମୁଁ ପଚାରିଲି - 'କଥା କଣ କିଲୋ ?'

ସେ କହିଲା- 'ନାଇଁ ସାବ୍ - କିଛି ନାହିଁ - ଖୁଁକ୍ ।'

-"ଆଉ ଏତେ ହସୁଛୁ ?"

-"ନାଇଁ ତ ବାବୁଜୀ.... ଖୁଁକ୍ - ଖୁଁକ୍ ।"

ମୁଁ କହିଲି - 'ଶୁଣ୍ - ତୋର ଦୋପଟ୍ଟାର ଅଧା ପାଟି ଭିତରେ ଭର୍ତ୍ତି କରିଦେ ଯେ ଆଉ ଖୁଁକ୍ ହେବନି ।'

ପାପୁଲିର ଆଙ୍ଗୁଠି ସନ୍ଧି ସବୁ ଦେଇ ଆଉ ପାଟି ଦି'ପାଖରୁ ଏଥର ତା' ହସ ପିଚିକାରି ମାରିଲା ଭଳି ବାହାରି ଆସିଲା.... 'ହି-ହି-ହି-ହିଃ..'

ମୁଁ ପଚାରିଲି - 'ଆଲୋ କଥା କ'ଣ ? କହ ଟିକେ ଶୁଣିବା ।'

'କଣ କି ବାବୁଜୀ... ଏଇ ଆମ କଥା ଆପଣ କଣ ଶୁଣିବେ' ହସି ହସି ସରଳ ଭାବରେ ଉତ୍ତର ଦେଲା ରାଧା ।

'କଣ ତମ ଗୁପ୍ତ କଥା ଯଦି ଛାଡ଼ -' ମୁଁ ଟିକିଏ ତେଜେଇ ଦେଲି ।

ରାଧା ଏଥର ସହଜ ଭାବରେ ଆରମ୍ଭ କରି ଦେଇଥିଲା 'ଆଉରଙ୍ଗଜେବ୍ ରୋଡ୍‌ରେ ଗୁପ୍ତାଜୀ ବୋଲି ଯେଉଁ ନେତା ନାହାନ୍ତି ବାବୁଜୀ ତାଙ୍କ କଥା। ମୋ ସଙ୍ଗାତ ତ ସେ ନେତାଙ୍କର ଜଣେ ଚପରାସୀକୁ ବାହା ହୋଇଛି-'

ମୁଁ ତାକୁ ଅଟକାଇ ପଚାରିଲି "କ'ଣ ହେଲା? ତୋ ସଙ୍ଗାତ ପୁଣି କେଡ଼େଟିଏ ଯେ, ସେ ପୁଣି ବାହା ହେଲାଣି ମ?"

ରାଧା ତାର ପାନଖିଆ ପୁରା ଦାନ୍ତସେଟ୍‌ଟିକୁ କ୍ଷଣିକ ପାଇଁ ଦେଖାଇ ଦେଇ ଲାଜୁଆ ହସ ହସି କହିଲା - 'ସେ ମୋ'ଠାରୁ ବହୁତ ବଡ଼।'

ମୁଁ ପଚାରିଲି - 'ଆଚ୍ଛା - ସେ ନେତାଙ୍କର କଣ ହେଲା?'

ରାଧା ଏଥର କହି ଚାଲିଲା 'ସଙ୍ଗାତ କହୁଥିଲା - ପହର ଦିନ କୁଆଡ଼େ ସେ ନେତାଙ୍କ କଣ ହେଲା କେଜାଣି ଘରର ସମସ୍ତଙ୍କୁ ଆଉ ସବୁ ଚାକରବାକରଙ୍କୁ ଡାକି ତାଙ୍କ ବସିବା ଘରେ ଜମା କରିଦେଲେ, ଆଉ ମଝିରେ ପଡ଼ିଥିବା ଛୋଟ ଟେବୁଲ ଉପରେ ଠିଆ ହୋଇଯାଇ ଆରମ୍ଭ କଲେ - 'ଭାଇଓଁ ଓର ବହିନୋ।' ମୋ ସଙ୍ଗାତ ବି ସେ ଭିତରେ ଥିଲା। ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନାଇଛନ୍ତି - ସେ କୁଆଡ଼େ ହାତ ଛଞ୍ଚାଡ଼ି ପାପୁଲିରେ ବିଧାମାରି ନାଚିଲା ଢଙ୍ଗରେ କହିଲେ - 'ଆମେ ଯଦି କ୍ଷମତାକୁ ଆସୁ, ଏ ଦେଶକୁ ଦୁଧ ଆଉ ମହୁରେ ଭସାଇ ଦେବୁ। ତମେ ସବୁ ସେ ଦୁଧ ମହୁ ଭିତରେ ଉବୁଡୁବୁ ହୋଇଯିବ। ତମ ପାଟିର ଦୁଇ କୋଣରୁ ମହୁଧାର ଛିଣ୍ଡି ପଡ଼ିବ। ତମେ ସବୁ ଦିନରାତି ସେ ମହୁ ଚାଟୁଥିବ।'

"ତା'ପରେ କୁଆଡ଼େ କିଛି ଗୋଟାଏ ଗୁପ୍ତ କଥା କହିଲା ପରି ସ୍ୱରକୁ କମାଇ ଦେଇ କାନ୍ଦିଲା ସ୍ୱରରେ କହିଲେ - 'ଆମକୁ ଥରେ ସୁଯୋଗ ଦିଅ - କେବଳ ଥରେ ଭୋଟ ଦିଅ, ଦେଖିବ ତମକୁ କେମିତି ଆମେ ସାହାଜାହାନ୍ ରୋଡ୍‌ର ସେ ବଡ଼ିଆ ଘରମାନଙ୍କରେ ରଖାଇ ଦେବୁ, ରେଫ୍ରିଜରେଟ୍‌ର୍... ଟିଭି ଆଉ ସ୍କୁଟର୍ ସହ।

'କି ମିଛ!! ନୁହେଁ ବାବୁଜୀ?'

'ସେମାନେ ମନ୍ତ୍ରୀ ହେଲେ କୁଆଡ଼େ ଜନତା ଯାହା ଖାଉଛନ୍ତି ସେମାନେ ବି ସେମିତି ଖାଇବେ; ଜନତା ଯେମିତି ରହୁଛନ୍ତି ସେମାନେ ବି ସେମିତି ରହିବେ। ତାଙ୍କ ଶାସନରେ ନିଶା ନିବାରଣ ଦରକାର ହେବନି, ଯେହେତୁ ସମସ୍ତେ ସବୁବେଳେ ମହୁ ଚାଟୁଥିବେ-' ହସି ହସି କହୁଥିଲା ରାଧା। ଆଉ କହିଲା - 'ସଙ୍ଗୀତ କହୁଥିଲା, ତା'ପରେ ସେ କୁଆଡ଼େ ଟେବୁଲ୍‌ରୁ ଓହ୍ଲାଇ ଖାଇବା ଟେବୁଲ୍ ପାଖକୁ ଦଉଡ଼ି ଗଲେ ଆଉ ସେ ଖାଇବା ଟେବୁଲରେ ମୁଣ୍ଡ ଥାପି ଧକେଇ ହେଲେ - କୁକୁରମାନେ ଯେମିତି ଧକେଇ ହୁଅନ୍ତି ସେମିତି। ସଙ୍ଗାତର ଘରବାଲା ତାଙ୍କର ଦବାଇ ବୋତଲ ଆଣି ଟେବୁଲ ଉପରେ ଥୋଇ ଦେଇ ଗିଲାସ ଆଣିବା ଆଗରୁ କୁଆଡ଼େ ବୋତଲଯାକ ଦବାଇ ସାଫ୍।"

ତା'ପରେ ରାଧାର ମୁହଁ କେମିତି ଶୁଖିଗଲା ପରି ମନେହେଲା। ସାନପିଲାଙ୍କ ନିରୀହତା ନେଇ ସେ ପଚାରିଲା, 'ବାବୁଜୀ - ଏଡ଼େ ବଡ଼ ବଡ଼ ଲୋକ ହୋଇ ଏମାନେ ଏମିତି ମିଛ କାହିଁକି କହନ୍ତି?'

ମୁଁ ବା କଣ ଜବାବ୍ ଦିଅନ୍ତି। ଖାଲି କହିଲି - 'ଆଲୋ ପାଗଳୀ - ବଡ଼ଘରେ ରହିଲେ, ବଡ଼ ବଡ଼ ଗାଡ଼ି ଚଢ଼ିଲେ, ଗୁଡ଼ିଏ ଚପରାସୀ ଥିଲେ କିମ୍ବା ବଢ଼ିଆ ଖାନା ଖାଇଲେ କଣ ମଣିଷ ବଡ଼ ହୋଇଯାଏ? ବଡ଼ଲୋକ ହେବା ପାଇଁ ବଡ଼ ମନ ଦରକାର ବେଶୀ ଧନ ନୁହେଁ। ଗାନ୍ଧିଜୀଙ୍କ ନାଁ ଶୁଣିଛୁ?'

ବଲବଲ ଆଖିରେ ଅନାଇଁ ରହିଥିଲା ରାଧା। ଆଖିରେ ସେ ଚପଳତା ଆଉ ନ ଥିଲା। ତା ମୁହଁରେ ପ୍ରକାଶ ପାଉଥିଲା ଅସହାୟତାର ଏକ ଭାବମୂର୍ତ୍ତି। ମୁଁ ତା ମୁହଁର ସେ ଭାବ ଲକ୍ଷ୍ୟ କରି କହିଲି, 'ତୁ ଏସବୁ କିଛି ବୁଝିପାରିବୁନି - ଯା ତୋ କାମ କରିବୁ।'

x x x x

ବସିବା ଘର ଆଡ଼କୁ ରାଧା ଫେରିଗଲା। ମୁଁ କିନ୍ତୁ ବେଲ୍‌କୋନିରେ ପଡ଼ିଥିବା ଇଜି ଚେଆରଟିରେ ବସି ସେଇ ରାଧା କଥାହିଁ ଭାବୁଥିଲି। ଅଦ୍ଭୁତ ଢଙ୍ଗର ଏ ଝିଅ। ତା ସଙ୍ଗରେ ମୋ ଚିହ୍ନା ବି ହୋଇଥିଲା କେମିତି ଗୋଟାଏ ଅଦ୍ଭୁତ ଢଙ୍ଗରେ।

ମୋତେ ମୋ ସରକାରୀ ଘର ମିଳିଯାଇଥିଲା। ବେଶ୍ ଗୁଡ଼ିଏ ଦିନ ଅତିଥିଶାଳାରେ ରହିଲା ପରେ ଭଲ ଘରଟିଏ ଅଫିସ ପାଖରେ ପାଇଯିବାରୁ ଏକୁଟିଆ ଥାଇ ସୁଦ୍ଧା ମୁଁ ଅତି ଖୁସିରେ ମୋ ନୂଆ ଘରକୁ ଚାଲିଆସିଥିଲି। ସରକାରୀ ଘର ସଙ୍ଗରେ ଚାକରବାକର ରହିବା ପାଇଁ ମଧ୍ୟ ଘରଟିଏ ମିଳିଯାଏ। ଦିଲ୍ଲୀରେ ତ ରହିବା ପାଇଁ କୋଠରିଟିଏ ମିଳିବା ବି ଭାରି କଷ୍ଟ - ଏ ଚାକରଙ୍କ ଘର ପାଇବା ଆଶାରେ ଚାକରାଣୀଙ୍କ ସୁଅ ଛୁଟେ ଆଉ ଏଇ ଅଜଣା ଚାକର ଚାକରାଣୀମାନେହିଁ ବେଳେବେଳେ ଗୃହକର୍ତ୍ତା କର୍ତ୍ତ୍ରୀଙ୍କ କାଳ ହୁଅନ୍ତି। ଭାଗ୍ୟକ୍ରମେ ମୋର ଜଣେ ବନ୍ଧୁଙ୍କ ପତ୍ନୀ ଅନେକ ଦିନୁ ତାଙ୍କ ଚିହ୍ନାଥିବା ଚାକରାଣୀ ମୀନାକୁ ନିଯୁକ୍ତି ଦେବା ପାଇଁ ସୁପାରିଶ କରି ସାରିଥିଲେ। ଘର ସଫେଇତି ଯୋଗୁଁ ମଇଳା ହୋଇଯାଇଥିବା ଚଟାଣକୁ ପୋଛାପୋଛି କରି ସଫା କରିଦେବା ପାଇଁ ମୀନା ସକୁଟୁମ୍ବେ ଉପସ୍ଥିତ ଥିବା ଦେଖି ମୁଁ ବି ଆଶ୍ୱସ୍ତ ହୋଇ ବେଲ୍‌କୋନିରେ ଚୌକିଟିଏ ପକାଇ ବସିଯାଇଥିଲି। ହଠାତ୍ ଦେଖାଦେଲା ଏଇ ରାଧା। ଝଡ଼ ପରି ବେଲ୍‌କୋନିକୁ ଦଉଡ଼ି ଆସି କହିଲା - 'ବାବୁଜୀ, ଖଣ୍ଡିଏ ଛିଣ୍ଡା କନା ଜଲଦି ଦିଅନ୍ତୁ - ଆମେ ଘର ଧୁଆଧୋଇ କରି ସାଫ୍ କରିଦେବୁ।'

ଆଚ୍ଛା ଅଡୁଆ କଥା - ମୁଁ ଏବେ ଛିଣ୍ଡା କନା ଖଣ୍ଡିଏ କେଉଁଠୁ ପାଇବି ? ସ୍ୱଗତୋକ୍ତି କଲା ପରି କହିଲି - 'ଛିଣ୍ଡା କନା କେଉଁଠୁ ଆଣିବି ଲୋ ।' ସେ ଆଉ କୌଣସି କଥାକୁ ଅପେକ୍ଷା କଲାନି । 'ଆଚ୍ଛା - ମୁଁ ଆଉ କେଉଁଠୁ ଖଣ୍ଡିଏ ଛିଣ୍ଡା ଝୋଟ ବସ୍ତା ନେଇ ଆସୁଛି' କହି ଯେମିତି ଆସିଥିଲା ସେମିତି ଝଡ଼ବେଗରେ ଅଦୃଶ୍ୟ ହୋଇଗଲା ।

ପ୍ରାୟ ୧୫/୨୦ ମିନିଟ୍ ପରେ ପୁଣି ସେ ଦେଖାଦେଲା - ଗୋଟିଏ ହାତରେ ବାଲ୍‌ଟିଏ ପାଣି ଆଉ ମଗ । ଅନ୍ୟ ହାତରେ ଝାଡୁ ଆଉ ଛିଣ୍ଡାବସ୍ତା । ଆଦେଶ ଦେଲାପରି କହିଲା - 'ବାବୁଜୀ ଆପଣ ସେ ଘରକୁ ଚାଲିଯାଆନ୍ତୁ - ମୁଁ ଏ ବେଲ୍‌କୋନିରେ ପାଣି ଢାଳି ଧୋଇବି ।' ପରିଧାନରେ ତାର ଥିଲା ସାଲ୍‌ୱାର୍ ଏବଂ କୁର୍ତ୍ତା । ଅଣ୍ଟାରେ ଦୋପଟ୍ଟାକୁ ଭିଡ଼ି ଦେଇ ବେଣୀଟିକୁ ମୁଣ୍ଡ ପଛରେ ଗଣ୍ଠିକରି ବାନ୍ଧି ନେଇଥିଲା । ମୁଁ ଧରିନେଲି ଯେ ସେ ମୀନାର ଝିଅ - ତା'ମା'କୁ ସାହାଯ୍ୟ କରିବା ପାଇଁ ଆସିଛି । ବେଲ୍‌କୋନିରୁ ଉଠି ଆସୁ ଆସୁ ପଚାରିଲି - 'ତୋ ନାଁ କଣ କିଲୋ ?' ସେ କହିଲା - 'ରାଧା' ।

-"କେଉଁ କ୍ଲାସରେ ପଢୁଛୁ ?"

ଉତ୍ତର ଦେଲା - 'ମୁଁ ପଢୁନି' - ଆଉ ବାଲ୍‌ଟିର ପାଣି ବେଲ୍‌କୋନିରେ ଢାଳି ଦେଇ ପୁଣି ଦଉଡ଼ିଗଲା ଆଉ ବାଲ୍‌ଟିଏ ପାଣି ଆଣିବା ପାଇଁ । ସେ ଦିନ ସନ୍ଧ୍ୟାବେଳେ ରାଧାର ମା'ବି ଘରକୁ ଆସିଥିଲା । ମୁଁ ତା'ପାଖରୁ ଜାଣିପାରିଥିଲି ଯେ ମୀନା ରାଧାର ମା ନୁହେଁ - ମାଉସୀ ।

x x x x

ଘର କାମ ସାରିଦେଇ ଗଲା ବେଳକୁ ମୀନା ସେଦିନ କହିଥିଲା ଯେ ସେ ସନ୍ଧ୍ୟାରେ ଆସିଲା ବେଳକୁ ତାର ଟିକିଏ ଡ଼େରି ହେବ - ତା ଘରକୁ 'ମେହ୍‌ମାନ' ଆସିଛନ୍ତି - ତାର ଭାବି ସମୁଦି ଏବଂ ସମୁଦୁଣୀ । ମୀନାର ବଡ଼ପୁଅ ରାମୁ ଆମେରିକାନ୍ ଦୂତବାସରେ ଡ୍ରାଇଭର କାମ କରେ, ସେ କଥା ମୁଁ ଜାଣିଥିଲି । ତା ବାହା ପାଇଁ ଝିଅ ଠିକ୍ ହୋଇଗଲାଣି ଶୁଣି ଏମାନଙ୍କ ସାମାଜିକ ପ୍ରଥା ବିଷୟରେ କିଛି ଜାଣିବା ପାଇଁ ମୋର ଆଗ୍ରହ ହେଲା । ମୀନାକୁ ପଚାରିଲି - 'ତମ ସମାଜରେ କିଏ କାହାକୁ ଟଙ୍କା ପଇସା ଦିଏ - ପୁଅଘରେ ଝିଅକୁ ଦିଅନ୍ତି ନା ଝିଅଘର ପୁଅକୁ ଦିଅନ୍ତି ?' ମୀନା କହିଲା - 'ଆମେ ପୁଅ ପାଇଁ କିଛି ଟଙ୍କା ପଇସା ଦାବି କରୁନା - ଝିଅ ଘର ଯାହା ଦେଇପାରିଲା ।'

ମୁଁ ପଚାରିଲି - 'ରାମୁ ପାଇଁ କଣ ସବୁ ମିଳିବ ? ରେଡ଼ିଓ, ସାଇକେଲ, ୱାଚ୍ ଆଉ କଣ ?'

ମୀନା ଉତ୍ତର ଦେଲା – 'ସେ ସବୁ ତ ଆଜିକାଲି ସମସ୍ତେ ଦିଅନ୍ତି। ପୁଅପାଇଁ ଭଲ ଲୁଗାପଟା-ପେଣ୍ଟ ସାର୍ଟ ଯୋତା ମୋଜା ବି ମିଳେ ଆଉ ଦେଇପାରିବା ଘରେ ଖଟ ସାଙ୍ଗରେ ଟେବୁଲ ଚୌକି ବି ଦିଅନ୍ତି।'

–"ଆଉ ଝିଅ କଣ ସବୁ ଆଣେ?"

–"ସେ ବି ସେମିତି ଶାଢ଼ି ବ୍ଲାଉଜ୍, ସାଲଓ୍ୱାର କାମିଜ ଆଣେ ଛୋଟ ହେଉ, ବଡ଼ ହେଉ ଗୋଟିଏ 'ବକ୍‌ସ'ରେ ଭର୍ତ୍ତି କରି। ଆଉ ଯେଉଁମାନେ ଦେଇ ପାରନ୍ତି ସେମାନେ ସିଲାଇ ମେସିନ୍‌ବି ଦିଅନ୍ତି – ଯିଏ ଯାହା ଦେଇପାରିଲା। ଆମେ କିନ୍ତୁ କିଛି ଦାବି କରିବୁନି।"

ମୁଁ ପୁଣି ପଚାରିଲି – 'ତମ ସମୁଦି ସମୁଦୁଣୀ ପ୍ରଥମ କରି ଆସିଛନ୍ତି ଯେ ତାଙ୍କୁ ଲୁଗା ପଟା ଦେବ ନା ନାହିଁ?'

ସେ ଆଶ୍ଚର୍ଯ୍ୟ ହୋଇ କହିଲା – 'ଆମେ କେମିତି ଦେବୁ ବାବୁଜୀ- ସେମାନେ ସିନା ଯାହା ଦେଇପାରିବେ ଦେବେ।'

–"ମାନେ? ତମ ଘରକୁ ପ୍ରଥମ କରି ଆସି ତମକୁ ଦେଇକରି ଯିବେ?"

–"ହଁ, ଆମେ ଯେତେବେଳେ ଝିଅକୁ ଦେଖିବାକୁ ଯାଇଥିଲୁ ମୋତେ ସେମାନେ ଚାରି ଖଣ୍ଡ ଶାଢ଼ି ଦେଲେ, ରାମୁର ବାପାକୁ ମଧ ଧୋତିଦେଲେ। ଏବେ ସେମାନେ ପୁଅକୁ ଦେଖିବାକୁ ଆସିଛନ୍ତି – ତାଙ୍କ ଶକ୍ତି ଅନୁଯାୟୀ ରାମୁକୁ ଟଙ୍କା ଧରାଇ ଦେବେ, ରାମୁର ବାବାକୁ ଦେବେ, ମୋତେ ଦେବେ ଆଉ ଶ୍ୟାମ ଓ ମୋହନକୁ ବି ଦେବେ।"

ପଚାରିଲି, 'କେତେ ଲେଖାଏଁ?'

–"କେମିତି କହିହେବ? କିଏ ଜୋଇଁକୁ ଆଉ ତା'ବାପା ମା'କୁ ୨୧ଟଙ୍କା ଲେଖାଏଁ ଦିଏ, କିଏ ଦିଏ ୫୧ ଟଙ୍କା, କେହି କେହି ୧୦୧ ଟଙ୍କା ବି ଦିଅନ୍ତି। ଆଉ ଘରର ସାନମାନଙ୍କୁ ପାଞ୍ଚ ଟଙ୍କା, ଦଶ ଟଙ୍କା, ଯିଏ ଯାହା ଦେଇପାରିଲା।"

–"ଆଉ ତମେ କିଛି ଦେବନି?"

–"ଆମେ କାହିଁକି ଦେବୁ? ତେବେ 'ଚା ପାନି', ଚାଓଲ୍ ଫୁଲକା, ସବ୍‌ଜି ନ ଖୁଆଇ କେମିତି ଛାଡ଼ିଦେବୁ?"

ସେତିକିବେଳେ ହିଁ ମୁଁ ପଚାରିଦେଲି ରାଧା ପାଇଁ ତା ବାପା ମା କଣ ସବୁ ଦେବେ? ମୀନା ଆଶ୍ଚର୍ଯ୍ୟଭରା ଆଖିରେ ମୋ ଆଡ଼ିକି ଅନାଇଁ କହିଲା- "ରାଧା ପାଇଁ କିଏ ଦେବ ବାବୁଜୀ – ତାର କିଏ ଅଛି? ତା' ବାପ ତ ନାହିଁ – ମା' ହାତରେ ତ କିଛି ହୁଏନି। ଏଇ ରାଧା ଯାହା କମାଏ କୌଣସି ମତେ ସେମାନଙ୍କୁ ଖାଇବାକୁ ମୁଠେ ମିଳିଯାଏ।

ରାଧାର ପରିଷ୍କାର ପରିଚ୍ଛନ୍ନ ବେଶଭୂଷା ବେପରବାଏ ଢଙ୍ଗ ଏବଂ ଖୁସ୍ ମଜାଜ ଭାବ ଦେଖି ମୁଁ କଳ୍ପନା ମଧ୍ୟ କରି ନ ଥିଲି ଯେ ରାଧା ଏତେ ଗରିବ। ପଚାରିଲି ତମେ ତାର ମାଉସୀ, ତମେ ସବୁ ସାହାଯ୍ୟ କରିବ ନି ?"

ପୁଣି ସେ ଆଶ୍ଚର୍ଯ୍ୟ ଭରା ଢଙ୍ଗରେ କହିଲା, 'ରାଧାର ମା' କାହିଁକି ମୋ ଭଉଣୀ ହୁଅନ୍ତା ବାବୁଜୀ, ମୁଁ ତାକୁ ଟିକିଏ ସ୍ନେହ କରେ ବୋଲି ସେ ମୋତେ ବଡ଼ ଭଉଣୀ ପରି ମାନେ, ଆଉ ରାଧା ବି ଉପରେ ପଡ଼ି କାମଦାମ ଟିକିଏ କରିଯାଏ।'

–"ରାଧା ପରା କେଉଁଠି କାମ କରୁଛି ?"

'ଗୋଟିଏ ଜାଗାରେ ବାବୁଜୀ ? ସେ ତିନି ଚାରି ଜାଗାରେ ଘର ପୋଛାପୋଛି କରେ, ବାସନକୁସନମାଜେ, ମାସକୁ ସତୁରି ଅଶି ଟଙ୍କା କମାଇନିଏ; ଆଉ ବାନାର୍ଜି ସାହେବଙ୍କ ଘରେ ପୋଛାପୋଛି କରିଦିଏ ବୋଲି ସେମାନେ ତାଙ୍କ ଚାକରର ଘର ରାଧା ଆଉ ତା ମା'କୁ ରହିବାପାଇଁ ଦେଇଛନ୍ତି। ଭାରି କାମିକା ଝିଅ ଏ ରାଧା ବାବୁଜୀ।'

ରାଧା ପ୍ରତି ମୋ ସ୍ନେହ-ମମତା ବଢ଼ାଇ ଦେଇ ମୀନା ଚାଲିଗଲା। ମୁଁ ମନକୁମନ ଭାବୁଥିଲି ତଥାପି ଏଇ ରାଧାକୁ ସମୟ ମିଳେ ଯେ ଆମ ଘରକୁ ମଝିରେ ମଝିରେ ଆସି ମୀନା ପାଖରୁ କାମ ଛଡ଼ାଇ ନେଇ ନିଜେ ସବୁ କରିଯାଏ। ଆଉ ସବୁବେଳେ କି ସୁନ୍ଦର ହସହସ ମୁହଁ।

x x x x

ଆମ ଘର ପଛ ବାଟଦେଇ ପଣ୍ଡାରା ରୋଡ୍ ମାର୍କେଟରୁ ଗଲାବେଳେ ବେଶ୍ ପାଖରେ କରି ଯେଉଁ ଚତୁର୍ଥ ଶ୍ରେଣୀ କର୍ମଚାରୀମାନଙ୍କ ଘର ପଡ଼େ, ସେଇଠି ସେଦିନ ମଉଜମଜଲିସ୍‌ର ଧୁମ୍ ଚାଲିଥାଏ। ରାସ୍ତା ଉପରେ ହିଁ ପଡ଼ିଥାଏ ସାମିଆନା। ଚାରିଆଡ଼େ ବାର୍ ଲାଇଟ୍, ତଳେ ରଙ୍ଗୀନ ଦରୀ, ଧାଡ଼ିକି ଧାଡ଼ି ଲୁହା ଚୌକି। ସୁସଜ୍ଜିତ ମଞ୍ଚ ଉପରେ ଚାଲିଥାଏ ସଙ୍ଗୀତର ଆସର 'ଗଜଲ' - ଆଉ ମଝିରେ ମଝିରେ ଶୁଭୁଥାଏ ୱା-ୱା-ୱା - କ୍ୟା ଖୁବ୍!

ବଜାରରେ କାମ ନ ଥିଲେ ମଧ୍ୟ ମୁଁ ସେ ବାହାନାରେ ସେ ବାଟଦେଇ ଗଲି। କେତେ ଜଣ ଚୌକିମାନଙ୍କରୁ ଠିଆହୋଇ ପଡ଼ିଲେ। ବୋଧହୁଏ ରାମୁ, ଶ୍ୟାମ ଆଉ ସେମାନଙ୍କ ସାଙ୍ଗସାଥୀ। ଇଚ୍ଛା ଥିଲା ସେଇଠି ବାଟୋଇଙ୍କ ପରି ଠିଆହୋଇଯାଇ ଏମାନଙ୍କ ମଉଜ ମଜଲିସ୍ ଟିକିଏ ଉପଭୋଗ କରିବି - କିନ୍ତୁ ଗଲା ଯାଃ - ସବୁ ଫସର ଫାଟିଗଲା।

ଘରକୁ ଫେରିଲା ପରେ ମୀନାକୁ ପଚାରିଲି ତାଙ୍କ ଘର ପାଖରେ କଣ ହେଉଛି। ମୀନା ବୁଝାଇଦେଲା, ରାମୁର ଜଣେ ସାଥୀର ବାହାଘର। ମୁଁ ଯେତେବେଳେ ଟିପ୍‌ପଣୀ

ଦେଲି ଯେ ବାହାଘରେ ବେଶ୍ ଗୁଡ଼ିଏ ଖର୍ଚ୍ଚ କରୁଛି, ସେ କହିଲା - "ହଁ ବାବୁଜୀ, ଥିଲାବାଲା ଘରର ଝିଅତ। ଗୁଡ଼ିଏ ଯୌତୁକ ଆଣୁଛି। ତା'ଭଉଣୀ ଗଲା ବର୍ଷ ଗୋଟାଏ ମୁସଲମାନ ପୁଅକୁ ବାହା ହୋଇଗଲା ଆଉ ସେମାନେ ଏବେ ଆମେରିକାରେ ଅଛନ୍ତି - ଆରାମ୍‌ସେ। ପଇସା ବି ପଠାନ୍ତି; ଏମାନଙ୍କ ଅଭାବ କଣ?"

ମୁଁ ପଚାରିଲି - 'ହିନ୍ଦୁ ଘର ପରା? ମୁସଲମାନ ପୁଅକୁ ବାହାହେଲା ଯେ, ବାପା ମା' ରାଜି ହେଲେ?'

-"କଣ କରନ୍ତେ ବାବୁଜୀ, ଘରର ତ ପୁଣି ମାନ-ମହତ ଅଛି, ଖାନ୍ଦାନି ଅଛି, ଲାଜ କଥା ବାହାରେ କେଉଁଠି ପକେଇବେ? ଚୁପ୍‌ଚାପ୍ ବାହାକରାଇଦେଲେ।"

-"ତମ ବାହାଘର କେମିତି ହୁଏ? ବୋହୂ କଣ ଆସିଗଲାଣି?"

ମୀନା ଉତ୍ତର ଦେଲା - "ନାହିଁ ଆଜି ଖାଲି 'ଗାନା ବଜାନା' ହେବ, କାଲି ସମସ୍ତେ ଭୋଜି ଖାଇ ରାତିରେ ବରାତ୍‌ରେ ବାହାରିବେ।"

-"ବାହା ଆଗରୁ ଭୋଜି?"

-"ହଁ, ବାହା ପରେ ତ ପୁଅ ବୋହୂକୁ ନେଇ ତା ମନଖୁସିରେ ଯେବେ ବି ଆସିବ।"

x x x x

ବରାତ୍ ପ୍ରୋସେସନ୍ ଦେଖିବା ଆଶାରେ ମୁଁ ତା ଆର ଦିନ ବାହାରେ ବୁଲୁଥାଏଁ। ସନ୍ଧ୍ୟାବେଳୁ ସାହାନାଇ ଆଉ ବେଣ୍ଡ୍ ବାଜାର ସୁନ୍ଦର ଅର୍କେଷ୍ଟ୍ରା ଚମତ୍କାର ବାତାବରଣ ସୃଷ୍ଟି କରିଥାଏ। ରାତି ଆଠଟାବେଳେ ବରାତ୍ ବାହାରିଲା । ସୁନେଲି ଜରି ଚାଦରରେ ସଜା ହୋଇଥିବା ଘୋଡ଼ାପିଠିରେ ବସିଥାଏ ବର। ମୁକୁଟର ଝାଲ୍‌ରରେ ମୁହଁ ପ୍ରାୟ ଢଙ୍କା। ଘୋଡ଼ା ଆଗକୁ ସାମନା ଦି ପାଖରେ ବେଣ୍ଡ ଆଉ ସାହାନାଇ। ତା ଆଗରେ ଦି'ଧାଡ଼ି ଆଲୋକ ମାଳା - ଆଉ ମଝିରେ ଅର୍କେଷ୍ଟ୍ରାର ତାଳେ ତାଳେ ନାଚିଚାଲିଥାଆନ୍ତି କେତେ ପୁଅ - ଆଉ ମନେହେଲା ଗୋଟିଏ ଝିଅ। ଛୋଟ ପ୍ରୋସେସନ୍, କିନ୍ତୁ ବେଶ୍ ଜୀବନ୍ତ।

ପ୍ରୋସେସନ୍ ଟିକିଏ ବାଟ ଆଗେଇଗଲା ପରେ ଅଟକିଯାଏ। ବାଦକମାନେ ଅର୍କେଷ୍ଟ୍ରାର ସୁର୍ ବଦଳାଇ ଦିଅନ୍ତି ଆଉ ନାଚର ଢଙ୍ଗ ବଦଳିଯାଏ। ହଠାତ୍ ଇଉରୋପୀଏନ୍ ମ୍ୟୁଜିକ୍ ବାଜିଉଠିଲା, ଆଉ ଆରମ୍ଭ ହେଲା ଟୁଇଷ୍ଟ ନାଚ। ଛୋଟ ଛୋଟ ଦିଓଟି ପୁଅ ଆଉ ଟିକି ଝିଅ ଦିଓଟି କି ସୁନ୍ଦର ଅଣ୍ଟା ହଲାଇ ଗୋଡ଼ ବଙ୍କାଇ ନାଚି ଚାଲିଥାଆନ୍ତି। ଆଉ ସେ ବଡ଼ପୁଅଟି? ସେ ଝିଅର ହାତ ଧରି ସେମିତି ଦେହ ବଙ୍କେଇ ଅଣ୍ଟା ଝୁଲାଇ ନାଚିବାକୁ ଆରମ୍ଭ କରିଛି ନା କଣ! ଖୋଲା ରାସ୍ତାରେ ଏମିତି ପୁଅ-ଝିଅଙ୍କ ଟୁଇଷ୍ଟ ନାଚ! ଲଜ୍ଜା ସରମ ବି ନାହିଁ।

ଆଉ... ଆଉ... ସେ ଝିଅଟି ରାଧା ନୁହେଁ ତ ?

ପୁଅଟି ଯେତେବେଳେ ସେ ଝିଅର ହାତ ଛାଡ଼ି ଅଣ୍ଟା ହଲାଇ ଦେହ ମୋଡ଼ି ଘୁଞ୍ଚିଗଲା, ଆଉ ଜଣେ ପୁଅ ଆସିଲା ଝିଅର ହାତ ଧରି ନାଚିବା ପାଇଁ। ଝିଅ କିନ୍ତୁ ସେ ବଢ଼ାଇଥିବା ହାତ ନ ଧରି ତରଳ ପଦକ୍ଷେପରେ ଘୁଞ୍ଚିଗଲା। ଢଙ୍ଗରୁ ମନେହେଲା ସେ ହାତ ସେ ପ୍ରତ୍ୟାଖ୍ୟାନ କରିଛି।

ତା' ଆରଦିନ ସକାଳେ ମୁଁ ଯେତେବେଳେ ମୀନାକୁ କହିଲି ଯେ ରାତିରେ ବରାତ୍‌ରେ ରାଧା ପରି ଝିଅଟିଏ ନାଚୁଥିଲା, ସେ ଟିକିଏ ହସିଲା ଆଉ କହିଲା - "ସେ ତ ରାଧା ବାବୁଜୀ, ଖୁବ୍ ନାଚେ।"

ଏଥର ମୁଁ ଯେତେବେଳେ ରାଧାକୁ ଦେଖିଲି, କହିଲି - 'କି ଲୋ, ଖୁବ୍ ନାଚୁଥିଲୁ ତ !' ସେ ମୁହଁ ମୋଡ଼ି ହସିଦେଲା। ମୁଁ ପଚାରିଲି - 'ଆମ ଘରେ କେବେ ନାଚିବୁ ?' ମୋ ପୁଅକୁ ଲକ୍ଷ୍ୟ କରି ସେ ସେମିତି ହସି ହସି ଜବାବ୍ ଦେଲା - "ଭୈୟାର ବାହାଘର ବେଳେ ନାଚିବି।'

x x x x

ଏ ଭିତରେ ଅନେକ ଦିନ ବିତିଯାଇଛି। ସକାଳ ସଞ୍ଜ କାମ ଭିତରେ ବୁଡ଼ି ରହି ମୁଁ ବି ଘରର କଥାସବୁ ଲକ୍ଷ୍ୟ କରିପାରିନି। ହଠାତ୍ କାହିଁକି ମନେପଡ଼ିଗଲା ଯେ ଅନେକ ଦିନ ହେବ ମୁଁ ରାଧାକୁ ଦେଖିନି। ମୀନାକୁ ଡାକି ରାଧା କଥା ପଚାରିଲି - ସେ କିନ୍ତୁ ଗମ୍ଭୀର ହୋଇଗଲା ପରି ମନେହେଲା। ମୁଁ କହିଲି - 'ରାଧାର ମା'କୁ ବି ତ ଏ ଭିତରେ ଦେଖିଲା ପରି ମନେହେଉନି। ସେମାନେ କଣ କୁଆଡ଼େ ଚାଲିଗଲେ ?'

ମୀନା ଏଥର ଜବାବ୍ ଦେଲା। କହିଲା - 'ରାଧା ତ ନାହିଁ, ତା' ମା'କୁ ସବୁ କାମ କରିବାକୁ ପଡୁଛି। ସେ କେଉଁଠୁ ଏତେ କାମ କରି ପାରିବ ବାବୁଜୀ, ବିଚରା ହଇରାଣ ହୋଇ ମରିଯାଉଛି।'

ମୁଁ ପୁଣି ପଚାରିଲି - 'କାହିଁକି ? ରାଧା କୁଆଡ଼େ ଗଲା କି ?' ଅତି କଷ୍ଟରେ ସେ ଉତ୍ତର ଦେଲା - 'ସେ କୁଆଡ଼େ ଚାଲିଯାଇଛି।'

-"ପୋଲିସ୍‌କୁ ଖବର ଦେଇଛ ?"

-"ପୋଲିସକୁ କଣ ଖବର ଦେବୁ ବାବୁଜୀ - ସେ ତ ନିଜେ ଜାଣିଶୁଣି ପଳାଇଯାଇଛି। ଘରର ମହତ....।"

-"କାହା ସାଙ୍ଗରେ ?"

"ସେ ବରାତ୍ ପ୍ରୋସେସନ୍‌ରେ ଯାହା ସାଙ୍ଗରେ ନାଚୁଥିଲା।" କହି ମୀନା ଚାଲିଗଲା ଘର ଭିତରକୁ।

x x x x

ଏ ଘଟଣାର କିଛି ଦିନ ପରେ ରାଧାକୁ ଯେତେବେଳେ ଆମ ଘରେ ଆଉ ଥରେ ଦେଖିଲି, ମୁଁ ଆଶ୍ଚର୍ଯ୍ୟ ନହୋଇ ରହିପାରିଲିନି। ପଚାରିଲି, 'କୁଆଡ଼େ ଏମିତି ଅନ୍ତର୍ଦ୍ଧାନ ହୋଇଯାଇଥିଲୁ କିଲୋ ?'

ସେ କିନ୍ତୁ କିଛି ଜବାବ୍ ଦେଲା ନି। ଲକ୍ଷ୍ୟ କଲି, ତାର ସେ ପୁରୁଣା ଚପଳତା ଆଉ ନାହିଁ – ସେ ଦିଲ୍‌ଖୁସ୍ ଭାବ ନାହିଁ କି ସେ ହସ ନାହିଁ। ତାର ମୁହଁ ଦେଖି ମୋର କେମିତି ମନେ ହେଲା ପ୍ରଶ୍ନ ପଚାରି ମୁଁ ତାକୁ କିଛି ଗୋଟିଏ ଯନ୍ତ୍ରଣା ଦେଇଛି । ସାମାନ୍ୟ ଟିକିଏ ଠିଆହୋଇ ସେ ବି ସେଠାରୁ ଚାଲିଗଲା।

x x x x

କିଛି ନ ପଚାରିଲେ ମୀନା କେବେ ଉପରେ ପଡ଼ି କଥାକହେନି। ସେ ଦିନ କିନ୍ତୁ ଘରେ ପହଞ୍ଚୁ ନ ପହଞ୍ଚୁଣୁ କହିଲା – 'ପୋଲିସ୍ ରାଧାକୁ ଧରିନେଲା ବାବୁଜୀ!'

ଖବର ଶୁଣି ମୁଁ ତାଟକା ହୋଇଗଲି। ପଚାରିଲି, 'ପୋଲିସ୍! କାହିଁକି ?' ମୀନା ରନ୍ଧାଘର ଆଡ଼କୁ ଚାଲି ଯାଉଁ ଯାଉଁ ଉତ୍ତର ଦେଲା – 'କିଛି ଜଣାପଡୁନି। ବାବୁଜୀ କହୁଛନ୍ତି ଗୋଟିଏ ଖୁନ୍ ମକଦ୍ଦମା।'

'ଖୁନ୍ ମକଦ୍ଦମା ? ଆଉ ରାଧା!' କଥାଟାକୁ ଦୋହରାଇ ଅବିଶ୍ୱାସ୍ୟ ମନରେ ମୁଁ ବିଶ୍ୱାସ ଜନ୍ମାଉଥିଲି।

x x x x

କିଛି ଦିନ ପରର କଥା। ରାଧାର ମା' ଚିଠିଟିକୁ ମୋ ହାତକୁ ବଢ଼ାଇଦେଇ କହିଲା – 'ଚିଠି ଟିକିଏ ପଢ଼ିଦିଅନ୍ତୁ ବାବୁଜୀ!'

ରାଧାର ମା'ର ମୁହଁକୁ ଅନାଇଲି। ତା'ଆଖି ଦିଓଟି କେଉଁ କୋଟର ଭିତରକୁ ପଶିଯାଇଛି। ତା' ଧାରୁଆ ମୁହଁର ପାଟି ସତେ ଯେମିତି ଓହଳିପଡ଼ିଛି – ଅଣ୍ଟା ବଙ୍କା।

ଚିଠି ଖୋଲି ପଢ଼ିଲି। ରାଧା ଲେଖିଛି – "ମା, ଭଗବାନଙ୍କ ରାଣ ନେଇ କହୁଛି ମୁଁ ତୋ ଖାନ୍ଦାନିରେ ଆଞ୍ଚ ଆଣିନି କି ଇଜ୍ଜତ୍ ମହତ୍ ବିକ୍ରି କରି ନି। ମୋର ଅବସ୍ଥା ଯେମିତିଥିଲା, କଣ ଆଉ କରନ୍ତି କହିଲୁ ? ବେଦିରେ ବସି ବାହାହେବା ପାଇଁ ତୁ କଣ ଯୌତୁକ ଦେଇ ପାରିଥାନ୍ତୁ ? କିମ୍ବା ବରାତ୍ ପ୍ରୋସେସନ୍ ଆସିଲା ଲୋକଙ୍କୁ ଭୋଜିଭାତ ଦେଇପାରିଥାଆନ୍ତୁ ? ମୁଁ ଜାଣି ନଥିଲି ଯେ ରମେଶ ଏତେ ମଦ ପିଏ।

ଏଇ ଆରବମାନଙ୍କ ପାଖରେ କାମ କଲା ପରେ ସେ ଏମିତି ବଦଳିଯାଇଛି ବୋଲି ମୁଁ କେମିତି ଜାଣନ୍ତି କହିଲୁ ମା' ? ଆଜିକାଲି ତ ରେଜିଷ୍ଟ୍ରି ବାହା ହେଉଛି ଜାଣିଛୁ। ଆମେ ଠିକ୍ କରିଥିଲୁ ଯେ ରେଜିଷ୍ଟ୍ରି ବାହା କରିନେବୁ। ମୁଁ ଚାଲିଆସିଲା ପରେ ରମେଶ କିଛୁ ଦିନ ଗଡ଼ାଇଦେଲା। କହିଲା ରେଜିଷ୍ଟ୍ରି ବାହା ହେଲେ ବି ତ ବନ୍ଧୁମାନଙ୍କୁ ଚା'ପାଣି ଟିକିଏ ଦେବା କଥା। ମୁଁ ଭାବିଲି ସେ ବୋଧହୁଏ ସେଥିପାଇଁ ମାସର ବେତନରୁ ଅପେକ୍ଷା କରିଛି।

ସେଦିନ ସେ ତାର ସାଙ୍ଗ ବୋଲି ଦି'ଜଣଙ୍କୁ ଘର ଭିତରକୁ ନେଇଆସିଲା। ସେଗୁଡ଼ାକ କେମିତି ଜମେଇଦେଲେ ଆଉ ପିଇ ଚାଲିଲେ। କିଛି ପକୋଡ଼ି କିଣିଆଣିବି କହି ରମେଶ ବାହାରକୁ ଚାଲିଗଲା। ସେମାନେ ମୋତେ ବି ପିଇବାକୁ କହିଲେ। ମୁଁ ମନା କରିଦେଲି। ତା'ପରେ ଜଣେ ବାଥ୍‌ରୁମ୍‌କୁ ଯାଇଛି କି ନାହିଁ ଆର ଜଣକ ମୋ ହାତ ଧରି ତା'ଆଡ଼କୁ ଟାଣିଲା। ମୁଁ ହାତ ଛଡ଼ାଇବାକୁ ଚେଷ୍ଟାକଲି - ତା ହାତରେ ବିଧା ମାଇଲି ... କିନ୍ତୁ ସେ ମୋ ହାତକୁ ମୋଡ଼ି ଧରିଲା। କଣ କରିବି ମୋ ବୁଦ୍ଧି ହଜିଗଲା। ନିଃସହାୟ ଭାବରେ ହାତ ବୁଲାଉ ବୁଲାଉ ହଠାତ୍ ଟେବୁଲ୍ ଉପରର ଗୋଟିଏ ମଦ ବୋତଲ ଉପରେ ମୋର ହାତ ପଡ଼ିଗଲା। ବୋତଲଟି ଉଠାଇ ଆଣି ମୁଁ ତା'ମୁଣ୍ଡରେ ପିଟିଦେଲି। ସେ ମୋ ହାତ ଛାଡ଼ିଦେଲା। ମୁଁ ଛାଟିପିଟି ହୋଇ କବାଟ ଖୋଲି ଦଉଡ଼ି ପଳାଇ ଆସିଲି।

"ଏମାନେ କହୁଛନ୍ତି, ମୁଁ ତାକୁ କୁଆଡ଼େ ଖୁନ୍ କରିଛି। ମୁଁ ଆଉ କଣ କରିଥାନ୍ତି କହିଲୁ ? ଏମାନେ ଏଥିପାଇଁ ମୋତେ ଜେଲ୍ ଦେବେ ଯଦି ଦିଅନ୍ତୁ। ଜେଲ୍‌ରେ ବି ଗୁଡ଼ିଏ ସାଙ୍ଗ ଜୁଟିଗଲେଣି। ତୁ ମୋ ପାଇଁ ମନଦୁଃଖ କରିବୁନି। ମୁଁ ବେଦିରେ ବସି ବାହା ହୋଇଥିଲେ ବି ତୁ ଏକୁଟିଆ ହୋଇଯାଇଥାଆନ୍ତୁ। କେତେ ଜଣ କହୁଛନ୍ତି ମୋର କିଛି ଦୋଷ ନାହିଁ.... ମୁଁ ଛାଡ଼ପାଇଯିବି...ଯାହା ହେବ।'

ତା'ପରେ...ତା'ପରେ ଲେଖିଛି...ରାଧା ଲେଖିଛି.... 'ଓଡ଼ିଆ ବାବୁଜୀଙ୍କୁ ମୋର ନମସ୍ତେ ଜଣାଇଦେବୁ। କହିଦେବୁ, ଭୈୟାର ବାହାବେଳେ ମୁଁ ନିଶ୍ଚୟ ନାଚିବି।'

'ନା...ନାନ୍....ନାଚିବ...ପାଗଳୀ ଏବେବି ନାଚିବ'.... ମୁଁ କହିବାକୁ ଚେଷ୍ଟା କରୁଥିଲି। ରାଧାର ମା' ଆଡ଼ିକି ଅନାଇଲି...ସେ କେମିତି ଝାପ୍‌ସା ଦିଶୁଥିଲା। ମନେହେଲା ହାତ ଦିଓଟିକୁ କହୁଣୀଠାରୁ ଉପରକୁ ଟେକି ସେ ଆକାଶ ଆଡ଼କୁ ଏକଲୟରେ ଅନାଇଛି।

# ସହଯାତ୍ରୀ

'ଆଜ୍ଞା ନମସ୍କାର' - ସାଦର ସମ୍ଭାଷଣ କରିଥିଲେ ଆଗନ୍ତୁକ।

ରାଜପଥର କିଛି ଦୂରରେ ଗଛପତ୍ରମାନଙ୍କ ଆଢୁଆଳରେ ମାଟି ଭିତରୁ ଗଜୁରିଉଠି ଶୂନ୍ୟାକାଶକୁ ଅନାଇ ରହିଥିଲା ଗୋଟାଏ ପଥର ଚଟାଣ। ସେ ଉପରେ ଆଧୁନିକ ଶିଳ୍ପସ୍ଥାପତ୍ୟର ଢଙ୍ଗ ନେଇ ନିଦା ଷ୍ଟୁଲଟିଏ ପରି ଥାପି ହୋଇଥିବା ଗୋଟାଏ ଆବଡ଼ା-ଖାବଡ଼ା ପଥର ଉପରେ ଆସୀନ ଜଣେ ଭଦ୍ରଲୋକ, ବହି ପଢ଼ାରେ ନିଜକୁ ସମ୍ପୂର୍ଣ୍ଣ ହଜାଇ ଦେଇଥିଲେ। ସାମ୍ନାକୁ ଲମ୍ବିଯାଇଥିବା ତାଙ୍କ ଦୁଇଗୋଡ଼ ପରସ୍ପରକୁ ବିଞ୍ଚଣା ବିଞ୍ଚୁଥିଲେ । ବଣ ଭିତରୁ ମଝି-ମଝିରେ ଭାସି ଆସୁଥିବା ଚଢ଼େଇଙ୍କ କେଁ-କଟର ତଥା ରାଜପଥ ଉପରେ ପଦଚାରଣ କରୁଥିବା ବସ୍‌ଯାତ୍ରୀଙ୍କ କାଁ-ଭାଁ ଡକାହକାକୁ ଛାଡ଼ିଦେଲେ ଅଞ୍ଚଳଟି ଥିଲା ଊଣା ଅଧିକେ ଶବ୍ଦଶୂନ୍ୟ।

ପାଖରୁ ଏକ ଅପ୍ରତ୍ୟାଶିତ ଅଭିବାଦନ ଶୁଣି ଭଦ୍ରଲୋକ ଚମକି ଉଠିଲେ ଏବଂ ବହି ଉପରୁ ମୁଣ୍ଡଟେକି ଶବ୍ଦର ଦିଗ ଆଡ଼କୁ ଲକ୍ଷ୍ୟ କରି ମୁହଁ ବଙ୍କାଇଲେ। ଗୋଡ଼-ବିଞ୍ଚଣା ଆପଣାଛାଏଁ ବନ୍ଦ ହୋଇଗଲା। ଅତି ସାବଧାନତାର ସହିତ ବହିଟାକୁ ଓଲଟାଇ ସେ ନିଜ କୋଳରେ ଥାପିଦେଲେ ଏବଂ ପାପୁଲି ଦିଓଟିକୁ ଅର୍ଦ୍ଧବୃତ୍ତାକାରରେ ଯୋଡ଼ି ରୋବଟ୍ ଯନ୍ତ୍ରଟିଏ ପରି ତାକୁ ଉପରକୁ ଟେକି ପ୍ରତ୍ୟୁତ୍ତର ଦେଲେ 'ନମସ୍କାର'। ଉତ୍ତରର ଅସ୍ପଷ୍ଟ ଏବଂ ଅନିଶ୍ଚିତ ଢଙ୍ଗ କିନ୍ତୁ ଜଣାଇ ଦେଉଥିଲା ଯେ ଭଦ୍ରଲୋକ ନିଜ ପ୍ରତ୍ୟୁତ୍ତରର ବୈଧତା ସମ୍ବନ୍ଧରେ ନିଜେ ସନ୍ଦିହାନ ଥିଲେ - ଆଗନ୍ତୁକ ତାଙ୍କୁ ନମସ୍କାର ଜଣାଇଛନ୍ତି ନା ଅନ୍ୟ କାହାକୁ, ହୁଏତ ସେଇ ସନ୍ଦେହରେ।

ଆଗନ୍ତୁକ ବେଶ୍ ପାଖକୁ ଚାଲିଆସିଥିଲେ। ମୁହଁରେ ସାମାନ୍ୟ ହସ ଖେଳାଇ ପଚାରିଲେ - 'କେବେ ରିଟାୟାର କଲେ ?'

ଚଷମା ଭିତରୁ ଉଙ୍କିମାରୁଥିବା ଆଖିର ଡୋଳା ଦିଓଟିକୁ ଆଗନ୍ତୁକଙ୍କ ଆଡକୁ ଭଲକରି ଫୋକସ୍ କରି ଭଦ୍ରଲୋକ ଥତମତ ହୋଇ କହିଲେ, "ମୁଁ ତ ଆପଣଙ୍କୁ ଚିହ୍ନିପାରୁନି।"

ଆଗନ୍ତୁକ ସଶବ୍ଦେ ହସିଲେ ଏବଂ ଉତ୍ତର ଦେଲେ, "କେମିତି ଚିହ୍ନିବେ ଆଜ୍ଞା ? ଆମର କଣ ଆଗରୁ କେବେ ଦେଖା ହୋଇଛି ଯେ ଆପଣ ମୋତେ ଚିହ୍ନିବେ ?"

ଆଶ୍ଚର୍ଯ୍ୟରେ ଭଦ୍ରଲୋକଙ୍କ ପାଟି ଟିକିଏ ମେଲା ହୋଇଗଲା। ନିଜକୁ ନିଜେ ବୁଝାଇଲା ପରି ସେ ଗୁଣୁଗୁଣେଇ କହିଲେ, 'କେବେ ରିଟାୟାର୍ କଲେ ବୋଲି ପଚାରିଲେ ଯେ ?' ପାଖରେ ପଡ଼ିରହିଥିବା ଅନ୍ୟ ଏକ ପଥରକୁ ନିଜ ରୁମାଲ୍‌ରେ ଝଡ଼ାଝଡି କରି ତା ଉପରେ ବସି ଯାଉଁ ଯାଉଁ ଆଗନ୍ତୁକ କହିଲେ, 'ଆପଣଙ୍କୁ ଦେଖିଲା କ୍ଷଣି ଜାଣି ହୋଇଯାଉଛି। ଆପଣ ହେଲେ ବିଗତଯୌବନ ଜଣେ ପୌଢ଼। ବୟସ ବେଶି ହେଲେ ହେବ ଷାଠିଏ କି ଏକଷଠି। ତଥାପି....'

ଆଗନ୍ତୁକ ଆଉ କିଛି କହିବା ପୂର୍ବରୁ କିନ୍ତୁ ବିଦ୍ରୂପପୂର୍ଣ୍ଣ ହସ ହସି କଥାରେ ଖିଅ ଛିଣ୍ଡାଇ ଦେଲେ ଭଦ୍ରଲୋକ ଏବଂ କହିଲେ, 'ଷାଠିଏ ଏକଷଠି ବେଳକୁ କେହି କଣ ଆଉ ପ୍ରୌଢ଼ ହୋଇଥାଏ ? ଭଦ୍ରତା ଖାତିରରେ ମୋତେ ପ୍ରୌଢ଼ କହିବାକୁ ଯାଇ ଆପଣ କଣ ନିଜକୁ ଜଣେ ପ୍ରୌଢ଼ ବୋଲି ଜଣାଇ ଦେବାକୁ ଚାହୁଁଛନ୍ତି ? ଆମେ ହେଲୁଁ- ମାନେ ମୁଁ ଏବଂ ଆପଣ ରୀତିମତ ବୁଢ଼ା।'

ଆଗନ୍ତୁକଙ୍କ ଠୋ-ଠୋ ହସରୁ ମନେହେଲା ତାଙ୍କ ପାଟି ଭିତରେ ଫୋଟକା ଫାଟିଛି। ମନଖୋଲା ହସର ଲହରଟିଏ ଛାଡ଼ିଦେଇ ସେ ଟିପ୍‌ପଣୀ ଦେଲେ, 'ଆଜ୍ଞା... ଆପଣ କେଉଁ କାଳର କଥା କହୁଛନ୍ତି ? ଷାଠିଏ ବର୍ଷ ପୂରିଗଲେ 'ପତ୍ନୀ ନିବେଶି ପୁତ୍ର ପାଶେ - ଅଥବା ଚଳିବ ସନ୍ନ୍ୟାସେ'ର ଦିନ କଣ ଆଉ ଅଛି ? ଏ ପରା ଆଧୁନିକ ଯୁଗ ? ଆଜିକାଲି ବୁଢ଼ା ହେବାକୁ ସମସ୍ତେ ନାରାଜ। ଯେଉଁ ଦେଶରେ କ୍ଷମତାର ଖାଲି ଆସନଟିଏ ଦେଖିଲେ ସତୁରି ଅଶି ବର୍ଷ ବୟସର ଭଦ୍ରଲୋକମାନେ ତାଙ୍କ ଚଲାବାଡ଼ିକୁ କାଖରେ ଜାକି ଦଉଡ଼ରେ ପଚାଶ ପଞ୍ଚାବନ ବର୍ଷ ବୟସର ଭଦ୍ରଲୋକମାନଙ୍କୁ ପଛରେ ପକାଇ ଦେଇ ସେ ଆସନ ସବୁ ଆବୋରି ନେଉଛନ୍ତି, ସେ ଦେଶରେ ଆପଣଙ୍କ ଷାଠିଏ କି ଏକଷଠି ବର୍ଷ କଣ ଗୋଟାଏ ବୟସ ? ଆମ ଦେଶରେ ପରା ରାଜନୀତି କଲେ ଷାଠିଏ ବର୍ଷବେଳକୁ ଯାଇ ମଣିଷ ପୋଖତ ହୁଏ। ତେବେ ସରକାରୀ ଚାକିରିଆଙ୍କ କଥା ଅଲଗା। ଆପଣ ଯେତେବେଳେ ସରକାରୀ ଚାକିରିରୁ ରିଟାୟାର୍ କରିସାରିଲେଣି, ଆପଣଙ୍କୁ ଆଉ ଯୁବକ ବୋଲି କହିଲେ ସୁନ୍ଦର ଦିଶିବନି; ତେଣୁ ପ୍ରୌଢ଼ କହିବା କଥା। ନ ହେଲେ ଆପଣ ଏବେ ରାଜନୀତିରେ ପଶି ମନ୍ତ୍ରୀଟିଏ ହୋଇଯାଆନ୍ତୁ ଦେଖିବେ ଆପଣଙ୍କ ବାଳ ସବୁ କେମିତି କଳା ହୋଇଯିବ, ଦେହ ଚିକଣେଇଯିବ, ଆଉ ଆପଣଙ୍କ ଚାରିଆଡ଼େ ବିବାହିତା ଅବିବାହିତା ନାନା ଜାତୀୟ ସୁନ୍ଦରୀ ଯୁବତୀମାନେ ପ୍ରଜାପତି ପରି ଉଡ଼ିବୁଲି ଚକ୍‌କର ଖାଉଁ ଖାଉଁ ଆପଣଙ୍କ ଉପରେ ଅଜାଡ଼ି ହେବାକୁ ଚେଷ୍ଟା କରିବେ।'

ଆଗନ୍ତୁକଙ୍କ ଏ ଯୁକ୍ତି ଶୁଣି ଭଦ୍ରଲୋକ ନ ହସି ରହିପାରିଲେନି। କହିଲେ, 'ଦେଖୁଛି ଆପଣ ଜଣେ ବେଶ୍ ମଉଜିଆ ଲୋକ। ଆଚ୍ଛା, ଧରିନିଆଯାଉ ଆପଣଙ୍କ

କହିବା ଅନୁସାରେ ମୁଁ ଜଣେ ପ୍ରୌଢ଼। ତେବେ ରିଟାୟାର କଲିଣି, ବୟସ ପ୍ରାୟ ଷାଠିଏ କି ଏକଷଠି – ଏ ସବୁ ଜାଣିଲେ କେମିତି ?'

'ଅତି ସରଳ କଥା ଆଜ୍ଞା।' ସ୍ମିତହାସ୍ୟ ସହ ଉତ୍ତରଦେଲେ ଆଗନ୍ତୁକ- 'ସେଥିପାଇଁ ତ ଆଉ ସେର୍‌ଲକ୍ ହୋମ୍‌ସ ହେବାକୁ ପଡ଼ିବନି! ଦେଖନ୍ତୁ, ପ୍ରୌଢ଼ ହୋଇ ମଧ୍ୟ ଆପଣ ଟେରିକଟ୍ ଟ୍ରାଉଜର୍ ଏବଂ ଟେରିଲିନ୍ ସାର୍ଟ ପିନ୍ଧିଛନ୍ତି। ଏ ବୟସରେ ତ ଜଣେ ସାଧାରଣ ଲୋକ ଧୋତି-ପଞ୍ଜାବି ପିନ୍ଧିବା କଥା – ଆପଣଙ୍କ ଡ୍ରେସ୍‌ରୁ ତେଣୁ ମନେହେଉଛି ଆପଣ ଏମିତି ଟ୍ରାଉଜର୍ ସାର୍ଟ ପିନ୍ଧାରେ ଅଭ୍ୟସ୍ତ ଏବଂ ସେ ଅଭ୍ୟାସକୁ ଏପଯ୍ୟନ୍ତ ଛାଡିପାରି ନାହାନ୍ତି। ଅନ୍ୟମାନେ ବସ୍‌ର ଋରିଆଡ଼େ ଏପଟ ସେପଟ ଘୂରିବୁଲୁଥିଲା ବେଳେ ଆପଣ ଦୂରକୁ ଋଲି ଆସି ଏଇ ପଥର ଚଟାଣରେ ଏକୁଟିଆ ବସିଛନ୍ତି। ତେଣୁ ଜାଣିହୋଇଯାଉଛି ଯେ ଆପଣ ଜଣେ ଉଚ୍ଚପଦସ୍ଥ ଅଫିସର ଥିଲେ ଏବଂ ସାଧାରଣ ଲୋକଙ୍କ ସଙ୍ଗରେ ସହଜରେ ମିଳାମିଶା କରିବା ଅଭ୍ୟାସ ଆପଣଙ୍କର ନାହିଁ। ବଡ଼ ଅଫିସର ଯଦି ହେଲେ, ତେବେ ନିଜ କାର୍‌ରେ ନ ଯାଇ ଏ ବସ୍‌ରେ ଯାଉଛନ୍ତି କେମିତି ? ତେଣୁ ଜାଣିହୋଇଯାଉଛି ଯେ ଆପଣ ରିଟାୟାର୍ କଲେଣି, ଆଉ ସେ ଟି.ଏ.ଫିଏର ଦିନ ସରିଯାଇଛି। ସଦ୍ୟ ରିଟାୟାର୍ କରିଥିଲେ ଏବେ ବି ଆପଣ କାର୍‌ରେ ଯିବା ଆସିବା ପାଇଁ ଅପ୍ରାଣ ଚେଷ୍ଟା କରୁଥାଆନ୍ତେ – ଏତେ ବେଶି ଆଗରୁ ରିଟାୟାର୍ କରିଥିଲେ ହୁଏତ ଧୋତି ପଞ୍ଜାବିର ଆଶ୍ରୟ ନିଅନ୍ତେଣି। ଆଉ ମଧ୍ୟ ଆପଣଙ୍କ ଢଙ୍ଗରୁ ମନେହେଉଛି ଯେ କିଛି ଗୋଟାଏ କାମ ପାଇଁ ଆପଣ ବାଧହୋଇ ଭୁବନେଶ୍ୱର ଯାଉଛନ୍ତି – ହୁଏତ ପେନ୍‌ସନ କାଗଜପତ୍ର ଏଯାଏ ଠିକ୍ ହୋଇପାରିନି ବୋଲି। ତେଣୁ ଧରିନିଆଯାଇପାରେ ଯେ ରିଟାୟାର କଲାପରେ ମାତ୍ର ୨-୩ ବର୍ଷ ହୋଇଛି। ୫୮ ବର୍ଷ ସଙ୍ଗରେ ଏଇ ୨-୩ ବର୍ଷ ଯୋଡ଼ିଦିଅନ୍ତୁ – ବାସ୍- ପହଞ୍ଚିଯିବେ ଷାଠିଏ ଏକଷଠିରେ।'

ଆଗନ୍ତୁକଙ୍କ ଏ ଯୁକ୍ତିଯୁକ୍ତ ପର୍ଯ୍ୟାଲୋଚନା ଶୁଣି ଭଦ୍ରଲୋକ ଆଶ୍ଚର୍ଯ୍ୟ ଏବଂ ପ୍ରଶଂସାବ୍ୟଞ୍ଜକ ମୁଖଭଙ୍ଗୀ ସହ ମୁଣ୍ଡ ଟୁଙ୍ଗାରୁଥିଲେ – କହିଲେ, 'ଆପଣଙ୍କ ଅନୁମାନ ପୂରାପୁରି ଠିକ୍। ମୁଁ ଜଣେ ରିଟାୟାଡ୍ ଏ.ଡ଼ି.ଏମ୍। ମୋ ନାମ ବାହୁବଳ ଛୋଟରାୟ, ଆଉ ମୁଁ ସତକୁ ସତ ପେନ୍‌ସନ୍ କାଗଜପତ୍ର ପାଇଁ ଏ.ଜି. ଅଫିସ ଯାଉଛି।

ବାହୁବଳ ବାବୁ ତା'ପରେ ତାଙ୍କ ପକେଟରୁ ସିଗାରେଟ୍ ପ୍ୟାକେଟ୍ କାଢ଼ି 'ଆପଣଙ୍କ ଯୁକ୍ତି ଅନୁଯାୟୀ ଆପଣ ବି ତ ଜଣେ ରିଟାୟାର୍ଡ଼ ଅଫିସର ହେବା କଥା' ବୋଲି ମନ୍ତବ୍ୟ ଦେଇ ଆଗନ୍ତୁକଙ୍କୁ ସିଗାରେଟ୍ ଯାଚିଲେ ଏବଂ ଆଗନ୍ତୁକ ଯେତେବେଳେ 'ଧନ୍ୟବାଦ, ମୁଁ ସିଗାରେଟ୍ ପିଏନି' କହି ନମସ୍କାର କଲେ, ନିଜେ ସିଗାରେଟ୍‌ଟିଏ ଧରାଇଦେଲେ।

ଆଗନ୍ତୁକଙ୍କ ପକେଟରୁ ଏଥର ପାନଡ଼ବା ବାହାର ହେଲା। ଡବା ଭିତରେ ଓଦା କନା ଦେହରେ ଖିଲିପାନ ସବୁ ଯତ୍ନରେ ଲପେଟା ହୋଇଥିଲେ। ଖୋଲା ଡବାଟିକୁ ବାହୁବଳ ବାବୁଙ୍କ ଆଡ଼କୁ ବଢ଼ାଇ ଦେଇ 'ବଢ଼ିଆ ଗୁଣ୍ଡିପାନ, ଚୂଆ କେତକୀ ଖଇରଦିଆ, ଘରେ ଭଙ୍ଗାହୋଇଛି' କହୁଁ କହୁଁ ଆଗନ୍ତୁକ ନିଜ ପରିଚୟ ଦେଇ କହିଲେ, 'ହଁ, ମୁଁ ଜଣେ ଅବସରପ୍ରାପ୍ତ ଅଧ୍ୟାପକ ନାଁ ଜ୍ଞାନରଞ୍ଜନ ମିଶ୍ର।'

'ଇତିହାସ ଅଧ୍ୟାପକ ଜ୍ଞାନରଞ୍ଜନ ମିଶ୍ର!' ହର୍ଷଧ୍ୱନି କଲେ ବାହୁବଳ ବାବୁ। ପାନଡ଼ବାରୁ ପାନ ଖଣ୍ଡିଏ ଉଠାଇ ନେଇ 'ବେଶି କଡ଼ା ନୁହେଁ ତ' ବୋଲି ପଚାରିବା ସଙ୍ଗେ ସଙ୍ଗେ ଉତ୍ତରକୁ ଅପେକ୍ଷା ନକରି ତାକୁ ପାଟିରେ ଭର୍ତ୍ତିକରିଦେଲେ ଏବଂ କହିଲେ, 'ଆପଣଙ୍କ କଥା ମୋ ପୁଅ ଅନେକ କହେ। ସେ ଆପଣଙ୍କ ଇତିହାସର ଛାତ୍ର ଯେ!' 'ପାନ ଟିକିଏ କଡ଼ା - କିନ୍ତୁ ଦେଖିବେ ବାସନାଯୋଗୁଁ ଛେପ ପକାଇବାକୁ ଆପଣଙ୍କ ମନ ବଳିବନି' କହୁଁ କହୁଁ ଦୁଇଖଣ୍ଡ ପାନ ଏକାସଙ୍ଗରେ ପାଟିରେ ପୂରାଇ ଦେଇ ଡାହାଣ କାନ ଛୁଇଁଲେ ଜ୍ଞାନରଞ୍ଜନ ବାବୁ ଏବଂ ଡବାଟିକୁ ଯତ୍ନରେ ବନ୍ଦ କରି ପକେଟରେ ଭର୍ତ୍ତି କରିଦେଲେ।

'ହଁ ଘରଣୀ ଭାଙ୍ଗିଲା ପାନ ଯେତେବେଳେ ଆପଣ ଆଉ ଛେପ ନ ଢୋକି ଯିବେ କୁଆଡ଼େ!' - ବାହୁବଳ ବାବୁଙ୍କ ଟିପ୍‌ପଣୀରେ ହସିଉଠିଲେ ଦୁହେଁ। ନୂତନ ବନ୍ଧୁତା ବେଶ୍ ଜମିଗଲା।

ଏଥର ପାଟିର ପାନକୁ ତାରିଫ କରୁଁ କରୁଁ ବାହୁବଳ ବାବୁ କହିଲେ, 'ଦେଖନ୍ତୁ ନା ଜ୍ଞାନରଞ୍ଜନ ବାବୁ, ଦେଶର ଅବସ୍ଥା କଣ ହେଲା। ବସ୍‌ରେ ଏତେ ଲୋକ ଯାଉଛନ୍ତି, ସ୍ତ୍ରୀଲୋକ ଅଛନ୍ତି, ଛୋଟ ପିଲା-ବୁଢ଼ା ଅଛନ୍ତି - ପୁଣି ଏତେ ବାଟ - ସରକାରୀ ବସ୍ - ଅଥଚ ବଳକା ଷ୍ଟେପ୍‌ନିଟିଏ ନାହିଁ। ସମସ୍ତେ ଏବେ ଜଙ୍ଗଲରେ ପଡ଼ିରହିଛନ୍ତି। ଖାଇବା କଥା ତ ଛାଡ଼, ପିଇବାପାଇଁ ପାଣି ମୁନ୍ଦିଏ ବି ନାହିଁ। କେବେ ସେ ଷ୍ଟେପ୍‌ନି ସମ୍ବଲପୁରରୁ ଆସିବ, ଆଉ କେବେ ସମସ୍ତେ କଟକ ପହଞ୍ଚିବେ? କେତେ ଲୋକଙ୍କ କେତେ କାମ ଥିବ। ଗଲା ଏ ଦେଶ, କି ଶାସନ - କି ପରିଚାଳନା! ଏକେ ତ ଭଙ୍ଗା ଦଦରା ଗାଡ଼ି - ଚକ ସବୁର ଅବସ୍ଥା ଯେମିତି ସେଥିରେ ଆଉ କେତେଟା ଚକ ଯେ ବାଟରେ ନ ଫାଟିବ ସେ କଥା ଅବା କିଏ କହିବ। ତହିଁରେ ଷ୍ଟେପ୍‌ନି ଦି'ଟା ବି ଦେଇ ନାହାନ୍ତି। କି କେଲସ୍ ଦେଖନ୍ତୁ ତ!'

ଜ୍ଞାନରଞ୍ଜନ ବାବୁ ତାଙ୍କ ପାଟିର ପାନକୁ ଭଲକରି ଚୋବାଇଲେ। 'ଟିକିଏ ବେଶୀ କଡ଼ା ହୋଇଗଲା' କହି ଛେପ ଟିକିଏ ଘଟେଇ ବାହୁବଳ ବାବୁ ଶୁଣିପାରିଲା ଭଳି ସ୍ୱଗତୋକ୍ତି କଲେ, 'କାଳେ ବାଟରେ ଗାଡ଼ି କେଉଁଠି ଖରାପ ହୋଇଯିବ ସେ ଆଶଙ୍କାରେ ଏମିତି ବସ୍‌ଯାତ୍ରାରେ ବାହାରିଲାବେଳେ ଆମ ମିସେସ୍ ପାନଡ଼ବାରେ

ଭଲକରି ଦି' ଘରିଖଣ୍ଡ ବେଶି ଦେଇଦିଅନ୍ତି; ଆଉ ଖଣ୍ଡିଏ ଖଣ୍ଡିଏ ପାନ ପାଟିରେ ପକାଇଦେଲେ ଗୁଡ଼ିଏ ବାଟ ଚାଲିଯିବ ବୋଲି ମେଞ୍ଚେ ପାଣ୍ଡିଆ ସୁବୁଦ୍ଧି ଗୁଣ୍ଡି ସାଙ୍ଗକୁ କିଛି ଜାଫ୍ରାନି ପତ୍ତି ଜରଦା ବି ମିଳେଇ ଦିଅନ୍ତି। ବାସନା ପାନର ଛେପ ତ ଫିଙ୍ଗିହୁଏନି, ଏଣେ ସେ ଛେପ ଢ଼ୋକିଦେଲେ କେତେ କେବେ ମୁଣ୍ଡ ଘୂରେଇଯାଏ।' ତା ପରେ ସ୍ୱର ଟିକିଏ ବଢ଼େଇ ଦେଇ କହିଲେ, 'ହଁ ଜାଣିଲେ ବାହୁବଳ ବାବୁ - ଆମେ ତ ହେଲୁଁ ମାଷ୍ଟିଆ ଲୋକ। ବସ୍‌ରେ ଯା-ଆସ କରିବା ଆମର ସବୁଦିନିଆ ଅଭ୍ୟାସ। ଏମିତି ଚକ ଫାଟିବ କାହିଁକି, ସେ ଚକଫଟା ସାଙ୍ଗକୁ ବସ୍ ଖଣ୍ଡିଉଡ଼ା ଦେଇ ସଡ଼କରୁ ତଳକୁ ଗଡ଼ିଯିବା, ୨-୪ଥର ମାଙ୍କଡ଼ଚିତ୍ ମାରି ଯାତ୍ରୀଙ୍କୁ ଓଲଟପାଲଟ କରି ଝୁଣିଦେଲାପରେ ଘରିଜାତ ମେଲି ଆଖି ତରାଟି ଆକାଶକୁ ଅନାଇ ପଡ଼ିରହିବାଠାରୁ ଆରମ୍ଭ କରି ବସ୍ ପେଟ ଭିତରେ ଝୁଡ଼ି, ହେଣ୍ଡବେଗ୍, ଲୁଗାବୁଜୁଳା, ଚାଉଳ ବସ୍ତା ଭିତରୁ ବସ୍‌ଯାତ୍ରୀ ନିଜକୁ ଟଣାଟଣି କରି କୌଣସିମତେ ଗୋଟାପଣେ ବାହାର କରି ଆଣିବା ଏବଂ ସେ ବସ୍ ଭିତରେ କିଛି କାଳ ଗୁରୁଣ୍ଡି ଗୁରୁଣ୍ଡି ବାଟ ଦରାଣ୍ଡି ତା ଡେଣାପାଖ କୌଣସି ଫାଙ୍କବାଟେ ବାହାରକୁ ଗଳିଆସିବା ପର୍ଯ୍ୟନ୍ତ ଆମର ସବୁ ଦେହସୁହା ହୋଇଯାଇଛି। ଏମିତି କିଛି ନ ଘଟିଲେ ବରଂ କିଛି ଗୋଟାଏ ଅଭାବ ରହିଗଲା ପରି ଲାଗେ। ନୂଆ ନୂଆ ଆପଣ ବସ୍‌ରେ ଯାଉଛନ୍ତି କିନା - ଏସବୁ ଆପଣଙ୍କୁ ବାଧୁଛି। ଆପଣ ଯଦି ଧରିନେବେ ଯେ ଏଇଟା ଗୋଟାଏ ମାଗଣା ପିକ୍‌ନିକ୍ ଅଥବା ଗୋଟାଏ ଦୁଃସାହସିକ ଅଭିଯାନ ବା ଏଡ଼୍‌ଭେଞ୍ଚର - ଦେଖିବେ, ମଜା ଲାଗିବ। ଆମ ଲୋକଙ୍କ ଯେଉଁ ଅବସ୍ଥା, ଦୂରକୁ ଯାଇ କେଉଁ ବଣ ଭିତରେ ଓଳିଏ ଅଧଓଳି କଟାଇ ଆସିବା ତାଙ୍କ ପକ୍ଷରେ ବଡ଼ ଦୁରୂହ କଥା। ସେଥିପାଇଁ କେତେକଙ୍କ ସମୟ ନଥାଏ ତ କେତେକଙ୍କ ଧନ ନଥାଏ। ଆଉ କେତେକଙ୍କ ଧନ ଆଉ ସମୟ ଦିଓଟି ଯାକ ଥିଲେ ବି ମନ ନଥାଏ। ସମୟ ଟିକିଏ ମିଳିଲେ ତ ସେ ସମସ୍ତେ କପେ ଚା ଧରି ନିଜ ନିଜ ଅମଲା ଅଫିସରଙ୍କ ବିରୁଦ୍ଧରେ ଅଥବା ସରକାରୀ କଳ ବିରୁଦ୍ଧରେ ବିଷ ଉଦ୍‌ଗାରି ବସିବେ, ନହେଲେ ଏ ଝିଅ ସେ ଝିଅ ନାରେ ଯାକୁ ତାକୁ ନେଇ ଗପ ଜମେଇଦେବେ। ରାଜନୀତି ଚର୍ଚ୍ଚା କରୁ କରୁ ତମ୍ବି-ତୋଫାନ୍ କାଢ଼ି ଏମିତି ଗରମାଗରମ ହୋଇଯିବେ ଯେ ମୁଥ ମରାମରିଯାଏ କଥା ଯିବ, ତିନିଜଣ ଜମା ହେଲେ ଦିଓଟି ପରସ୍ପରବିରୋଧୀ ସଂସ୍ଥା ଗଢ଼ି ତୋଳିବେ - ସେମାନଙ୍କ ମନ କାହିଁକି ଯେ ପଇସା ଦେଇ ଯାନବାହନ ଚଢ଼ି କେଉଁ ଦୂରକୁ ଯିବେ ଚିହ୍ନା ଅଚିହ୍ନା ଲୋକଙ୍କ ସଙ୍ଗରେ ମିଳି ବଣଭୋଜି କରିବେ, କଣ୍ଟେଇ କୋଳି ଖାଇବେ, ବଣୁଆ ବରକୋଳି ଅଁଳା ତୋଳିବେ, ନାଚଗାନ ଟିକିଏ କରିବେ କିମ୍ବା ପାହାଡ଼ ଚଢ଼ିବେ? ତେଣୁ କୁଆଡ଼େ ଯାଉଁ ଯାଉଁ ବାଟରେ ଯଦି ବଳକା ଷ୍ଟେପ୍‌ନି ନ ଥାଇ ଏମିତି ବସ୍‌ର ଚକ ଫାଟେ, ସୁଯୋଗଟିଏ ମିଳିଯାଏ। ଅବଶ୍ୟ ଏମିତି ସୁଯୋଗର ସଦୁପଯୋଗ ପାଇଁ

ପାଖରେ ଲୁଚି, ଆଳୁଭଜା ଆଉ ସୋରାଇଏ ପାଣି ଥିବା କଥା। ଆଉ ସେ ସାଙ୍ଗକୁ ଯଦି କିଛି ସିଝା ଅଣ୍ଡା, ମିଠା ଗଜା ଏବଂ ଥର୍ମସ୍‌ରେ ଦୁଇ-ଚାରି କପ୍ ଚା ଧରିଦେଇଛନ୍ତି ତେବେ ତ ଛାଡ଼ନ୍ତୁ! ଗୋଟାଏ ପରେ ଗୋଟାଏ ଚକ ଫାଟୁଥାଉ।

ଜ୍ଞାନରଞ୍ଜନ ବାବୁଙ୍କ ମନ୍ତବ୍ୟ ଶୁଣୁ ଶୁଣୁ ବାହୁବଳ ବାବୁ ବେଶ୍ ଗମ୍ଭୀର ହୋଇସାରିଥିଲେ। ଦୁଃଖ ପ୍ରକାଶକରି କହିଲେ - 'ଜ୍ଞାନରଞ୍ଜନ ବାବୁ, କିଛି ମନେ କରିବେନି, ଆପଣମାନେ ସବୁ ଗୁରୁତର କଥାକୁ ଏମିତି ହାଲୁକା କରିଦେଉଛନ୍ତି ବୋଲି ତ ଆଜି ଆମର ଯାବତୀୟ ଦୁରବସ୍ଥା। ଅଧ୍ୟାପକମାନେ ହେଲେ ଜାତିର ମେରୁଦଣ୍ଡ। ସେମାନେ ସିନା ସରକାରୀ କଳର ଭୁଲ୍‌ଭଟକା ଦେଖିଲେ ତାଙ୍କର ସ୍ୱାଧୀନ ମତବ୍ୟକ୍ତ କରି ସେସବୁ ଭୁଲ୍‌ଭଟକାର ସମାଲୋଚନା କରନ୍ତେ - କଥାଟିକୁ ଉପରିସ୍ଥ ହାକିମମାନଙ୍କ ନଜରକୁ ଆଣନ୍ତେ - ସେମିତି ନ କରି ସେମାନେ ଯଦି ତୁନିତାନି ସବୁ ସହିଯିବେ, ଯେତେ ବିଶୃଙ୍ଖଳା ହେଲେ ବି ପାଟି ଫିଟେଇବେନି, ଜାତିକୁ ବାଟ ଦେଖାଇବା ପାଇଁ ଆଉ ରହିଲା କିଏ? ସରକାରୀ କଳ ଖାତିର୍ କରିବେ କାହାର ମତାମତକୁ? ଏ ଅବସ୍ଥା ସବୁ ସୁଧୁରିବ କେମିତି? ଆପଣ ଭାବି ଦେଖନ୍ତୁତ ଏପରି ବ୍ୟବହାର ଦ୍ୱାରା ଆପଣମାନେ ଏସବୁ ବିଶୃଙ୍ଖଳାକୁ ପ୍ରଶୟ ଦେଉଛନ୍ତି ନା ନାହିଁ?'

ଜ୍ଞାନରଞ୍ଜନ ବାବୁ ତଥାପି ହସୁଥିଲେ - କହିଲେ, 'ବାହୁବଳ ବାବୁ କ୍ଷମା କରିବେ - ମୁଁ ଆପଣଙ୍କ ସଙ୍ଗରେ ସହମତ ହୋଇପାରୁନି। ମୁଁ ଯାହା କହୁଥିଲି ସେ କଥା ମୋ ମନର କଥା। ସେଥିରେ ଗୁରୁକୁ ଲଘୁ କରିଦେବାର ପ୍ରଶ୍ନ ନାହିଁ କିମ୍ବା କୌଣସି କଥାକୁ ହସରେ ଉଡ଼ାଇଦେବା ପ୍ରଶ୍ନ ନାହିଁ। ଆମ ଦେଶରେ କଣ ସମାଲୋଚନାର ଅଭାବ ରହିଛି? ଉଣା ଅଧିକେ ସମସ୍ତେ ତ ନିଜ ନିଜ କର୍ତ୍ତବ୍ୟ କର୍ମ ଆଡ଼କୁ ମନ ନ ଦେଇ ଅନ୍ୟର ସମାଲୋଚନା କରିବାରେ ବ୍ୟସ୍ତ। ସେ କୋଳାହଳ ଭିତରେ ମୁଁ ମୋର ଚିତ୍କାରଟିଏ ମିଶାଇଦେଲେ କଣ ଆଉ ଲାଭ ହେବ କୁହନ୍ତୁ ତ?'

ତା'ପରେ ସେ ହଠାତ୍ ଗମ୍ଭୀର ହୋଇଗଲେ। ମନେହେଲା ସତେ ଯେମିତି କିଛି ଗୋଟାଏ ଛାଇ ତାଙ୍କ ମୁହଁକୁ ଘୋଡ଼ାଇ ଦେଇଛି। କହିଲେ, 'ଯେଉଁ ଅବସ୍ଥାର ପ୍ରତିକାର ନାହିଁ ଅଥବା ଯେଉଁ ଦୁଃଖରୁ ପରିତ୍ରାଣ ନାହିଁ, ସେପରି ଅବସ୍ଥାକୁ ସହିନେବାକୁ ଶିଖିବା ଛଡ଼ା ମଣିଷର ଆଉ ଅନ୍ୟ ଚାରା କଣ ଅଛି କୁହନ୍ତୁ ତ! ସେପରି ଦୁଃଖ ବେଳେ କେହି ଯଦି କୌଣସିମତେ ମୁହଁରେ ସାମାନ୍ୟ ହସ ଫୁଟାଇ ଦେଇପାରେ, ତେବେ ସେ ଦୁଃଖ ଟିକିଏ ଲାଘବ ହୋଇଯାଏ।

ବାହୁବଳ ବାବୁ ଜ୍ଞାନରଞ୍ଜନ ବାବୁଙ୍କ ରୂପ ପରିବର୍ତ୍ତନକୁ ଆଶ୍ଚର୍ଯ୍ୟଭରା ଆଖିରେ ଲକ୍ଷ୍ୟ କରୁଥିଲେ। ତାଙ୍କର ମନେହେଲା ଏ ଜଣେ ସମ୍ପୂର୍ଣ୍ଣ ଭିନ୍ନ ମଣିଷ କହିଲେ 'ଜ୍ଞାନରଞ୍ଜନ ବାବୁ ଦୟାକରି କଥାଟିକୁ ଆହୁରି ଟିକିଏ ସ୍ପଷ୍ଟକରି ଦେଇପାରିବେ?'

ଜ୍ଞାନରଞ୍ଜନ ବାବୁ କହିଲେ, 'କହୁଛି, ଟିକିଏ ଧୈର୍ଯ୍ୟ ଧରି ଶୁଣିବେ। ଆଉ ମୁଁ କାହା ବିରୁଦ୍ଧରେ କିଛି ବ୍ୟକ୍ତିଗତ ଆକ୍ଷେପ କରୁଛି ବୋଲି ଦୟାକରି ଭାବିବେନି।' ତା'ପରେ ସେ ନିଜେ ପ୍ରଶ୍ନ ପଚାରି ନିଜେ ଉତ୍ତର ଦେଉଥିବା ଢଙ୍ଗରେ କହିଲେ, 'ସରକାରୀକଳ କହିଲେ କ'ଣ କହନ୍ତୁ ତ ? ଆମେ ଯେତେବେଳେ ପରାଧୀନ ଥିଲୁ, ସରକାରୀ କଳ କହିଲେ ଗୋଟାଏ ବିଦେଶୀ ଶାସନଯନ୍ତ୍ରକୁ ବୁଝାଉଥିଲା। ଏବେ ତ ସେ କଥା ଆଉ ନାହିଁ ଆଜି ଆପଣ, ମୁଁ, ଆମେ ସମସ୍ତେ ତ ସରକାରୀ କଳ ? ତେଣୁ ସରକାରୀ କଳର ଦୋଷତ୍ରୁଟି ପାଇଁ ଦୋଷ ଦେବେ କାହାକୁ ? ସେ ସବୁ ଦୋଷତ୍ରୁଟି କଣ ଆମର ନୁହେଁ ? ଏଇ ଯାନବାହନ ଚଳାଚଳ ଏବଂ ଚକଫଟା କଥା ନିଅନ୍ତୁ। ଧରିନିଅନ୍ତୁ ଆପଣ ଆଜି ଅବସର ନେଇ ନଥାନ୍ତେ ଏବଂ ଏ ବସ୍‌ରେ ଯାଉଥାଆନ୍ତେ- ଏ ବସ୍‌ର ଚକ କଣ ଫାଟି ଥାଆନ୍ତା ?' ଏପରି ଏକ ଅଦ୍ଭୁତ ମନ୍ତବ୍ୟ ଶୁଣି ବାହୁବଳ ବାବୁ ବୋଧହୁଏ କିଛି କହିବାକୁ ଚାହୁଁଥିଲେ - ଜ୍ଞାନରଞ୍ଜନ ବାବୁ କିନ୍ତୁ ତାଙ୍କୁ କୁହାଇ ନ ଦେଇ ସାମାନ୍ୟ ବ୍ୟଙ୍ଗ ହସ ହସି କହିଚାଲିଲେ, 'ଏ.ଡ଼ି.ଏମ୍. ବସ୍‌ରେ କଟକ ଯିବେ ଶୁଣିଲାକ୍ଷଣି ଡି.ଟି.ଏମ୍. ଫୋନ୍ କରି ଏ.ଟି.ଏମ୍.ଙ୍କୁ ଖବର ପହଞ୍ଚାଇ ଦେଇ ହୁସିଆର କରାଇ ଦେଇଥାଆନ୍ତେ। ଏ.ଟି.ଏମ୍. ଫୋନ୍ କରିଥାନ୍ତେ, ଏସ୍.ଏମ୍.ଙ୍କୁ ? ଏ.ଏସ୍.ଏମ୍. ଦଉଡ଼ି ଯାଇ ବୁଝି ଥାଆନ୍ତେ କେଉଁ ବସ୍ କଟକ ଯାଉଛି ଏବଂ '୩୦୪ ନମ୍ବର' ଯାଉଛି ଶୁଣି ବିରକ୍ତ ହୋଇ ଆଦେଶ ଦେଇଥାଆନ୍ତେ '୧୨୦୫' ବାହାର କରିବାକୁ। ଏ.ଏସ୍.ଏମ୍.ଙ୍କୁ 'ଟେକ୍‌ଟଲେସ୍' କହି ଚେତାଇ ଦେଇଥାଆନ୍ତେ ଏ.ଡ଼ି.ଏମ୍.ଙ୍କୁ ଘଷରା ଚକଲଗା ଦଦରା ଗାଡ଼ିରେ ନେବ, ମଝି ଜଙ୍ଗଲରେ ଚକ ଫାଟି ଦୁର୍ଘଟଣା ଘଟିଲେ ତମେ ସବୁ ବଞ୍ଚିବ ? ଦାନ୍ତ ନେଫେଡ଼ି ପଚାରିଥାଆନ୍ତେ - 'ଚାକିରି କଣ ପିତା ଲାଗିଲାଣି ?'

'ତା ପରେ ଏଇ ୩୦୪ ବଦଳରେ ୧୨୦୫ ବାହାରିଥାଆନ୍ତା। କେତେ ମେକାନିକ୍ ଡ୍ରାଇଭର୍ କଣ୍ଡକ୍ଟର ଧାଁଦଉଡ଼ କରି ସେଇ ୧୨୦୫କୁ ଚେକ୍ କରିଥାଆନ୍ତେ। ଚକସବୁକୁ ତନ୍ନତନ୍ନ କରି ପରୀକ୍ଷା କରି ଘଷରା ଚକସବୁ ବଦଳାଇ ଦିଆଯାଇଥାଆନ୍ତା, ଆଉ ଗାଡ଼ି ଉପରେ ଲଦିଦେଇ ଥାଆନ୍ତେ ୪ଟା ବଳକା ଷ୍ଟେପ୍‌ନି। ଆଉ ଆପଣ ଭାବନ୍ତୁ ଜିଲ୍ଲା ମାଜିଷ୍ଟ୍ରେଟ, କଲେକ୍ଟର, ପୋଲିସ ସାହେବ ଏପରି କି ଡ଼ି.ଆଇ.ଜି. ରେଭେନ୍ୟୁ କମିଶନର ଏବଂ ସ୍ୱୟଂ ମନ୍ତ୍ରୀମାନେ ଯଦି ଏମିତି ବସ୍‌ମାନଙ୍କରେ ଯା'ଆସ କରୁଥାଆନ୍ତେ, ଷ୍ଟେପ୍‌ନି ନଥାଇ ଚକ ଫାଟନ୍ତା ? ସେମାନେ ସମସ୍ତେ ତ ଯିବେ ନିଜ ନିଜ କାର୍‌ରେ, ଏ ବସ୍‌ରେ ଯିବା ଯାତ୍ରୀଙ୍କ ସୁଖ ଦୁଃଖ ବୁଝୁଛି କିଏ ?'

'ସାମ୍ୟବାଦୀ ଢାଞ୍ଚାର ସମାଜ ହେବ ଏ ଦେଶରେ କହୁଛନ୍ତି ସବୁ ରାଜନୈତିକ ଦଳ - ସବୁ ରାଜନୀତିଜ୍ଞ। କିନ୍ତୁ ଶାସନର ଡ଼ୋରି ଯେଉଁମାନଙ୍କ ହାତରେ ସେମାନଙ୍କ

ସମାଜ ଯେ ଭିନେ। ନିଜପାଇଁ ଗୋଟାଏ ରାଜରାଜୁଡ଼ା ସମାଜ ସୃଷ୍ଟିକରି ଦେଇସାରିଲା ପରେ ସେମାନେ ଚାହାନ୍ତି ଅନ୍ୟମାନଙ୍କ ପାଇଁ ଗୋଟିଏ ସାମ୍ୟବାଦୀ ସର୍ବହରାର ସମାଜ, ଜମିବାଡ଼ି-ସୁଖ-ସୁବିଧାର ସମବଣ୍ଟନ ନାଁରେ। ନିଜ ପାଇଁ ମଟରଗାଡ଼ିର ସମାଜ ତ ଅନ୍ୟମାନଙ୍କ ପାଇଁ ବଳଦଗାଡ଼ି, ରିକ୍ସା ଏବଂ ଧତଡ଼ା ବସ୍‌ର ସମାଜ। ରୁଷ କିମ୍ବା ଚୀନ ଦେଶରେ କେତେ ଜଣଙ୍କର ପ୍ରାଇଭେଟ୍ କାର୍ ଥାଏ କହନ୍ତୁ ତ। ଆଉ ଏକ ପେଟ୍ରୋଲ ଡିଜେଲ୍ ଅଭାବ ଯୁଗରେ ଆମ ଦେଶକୁ ଟିକେ ଅନାନ୍ତୁ। ସରକାରୀ ଚାକିରିରୁ ଓହରିଗଲା ପରେ ଆପଣଙ୍କ ସମାଜ ଆଜି ବଦଳିଯାଇଛି। ଏ ନୂଆ ସମାଜରେ ଆପଣଙ୍କର ସ୍ଥିତି ତେଣୁ ବାଧୁଛି।'

'ଅଧ୍ୟାପକମାନେ କେଉଁ ଶ୍ରେଣୀରେ ଯିବେ?' ସାମାନ୍ୟ ହସି ପଚାରିଦେଲେ ବାହୁବଳ ବାବୁ।

'ଧତଡ଼ା ବସ୍ ସମାଜରେ ଥାଇ, ମଟରଗାଡ଼ି ସମାଜ ଆଡ଼କୁ ଲୋଲୁପଦୃଷ୍ଟିରେ ଅନାଇ ରହିଥିବା ଶ୍ରେଣୀରେ' - ଜ୍ଞାନରଞ୍ଜନ ବାବୁଙ୍କ ଉତ୍ତରରେ ଦିହେଁ ହସି ଉଠିଥିଲେ।

ଜ୍ଞାନରଞ୍ଜନ ବାବୁ କହିଚାଲିଲେ - 'କାହାକୁ ଦୋଷ ଦେବେ ବାହୁବଳ ବାବୁ - ଆମର ଜାତୀୟ ଚରିତ୍ରହିଁ ଏବେ ଏମିତି ଢଙ୍ଗ ନେଇଛି। ଆମେ ସମସ୍ତେ ଆଜି ଊଣା ଅଧିକେ ଦୋ'ମୁହାଁ। ଗୋଟିଏ କଥା କହୁଁ ତ ଆଉ ଗୋଟିଏ କଥା କରୁ। ନିଜର ସୁବିଧା କରି ନେଇ ସାରିଲା ପରେ ଅନ୍ୟର ସୁବିଧା ଅସୁବିଧା ଆଡ଼କୁ ଆଖି ବୁଜିଦେଉଁ।

'ଦେଶ ସ୍ୱାଧୀନ ହୋଇ ଏତେ ବର୍ଷ ବିତିଗଲା, ପରିବର୍ତ୍ତନ କେବଳ ଏତିକି ହେଲା ଯେ ଜାତିଭେଦ ଉପରେ ପ୍ରତିଷ୍ଠିତ ହୋଇଥିବା ଜାତିଆଣ ସମାଜ ବଦଳରେ କ୍ଷମତା ଏବଂ ଧନ ଉପରେ ପ୍ରତିଷ୍ଠିତ ହୋଇଥିବା ନୂତନ ଜାତିଆଣ ସମାଜସବୁ ମୁଣ୍ଡ ଟେକିଉଠିଲା। ପରାଧୀନ ଭାରତରେ ଗୋରାମାନେ ଥିଲେ 'ପ୍ରଭୁ' ଏବଂ ଆମେ ଥିଲୁ 'ଦାସ'। ସେତେବେଳେ ଯେଉଁ ଭାରତୀୟମାନେ ସରକାରୀ କଳରେ ସ୍ଥାନ ପାଇଯାଉଥିଲେ ସେମାନେ ମଧ୍ୟ 'ପ୍ରଭୁ'ମାନଙ୍କ ସହକର୍ମୀଭାବରେ 'ପ୍ରଭୁ' ସାଜିବାର ଢଙ୍ଗଢ଼ାଙ୍ଗ ଶିଖିଯାଉଥିଲେ। ତା'ପରେ ଦେଶ ସ୍ୱାଧୀନ ହେଲା; କିନ୍ତୁ ସେ ଢଙ୍ଗଢ଼ାଙ୍ଗ ବଦଳିଲାନି। ଆପଣ ତ ଜାଣିଥିବେ ଥରେ ଜଣେ ଗୋରା ସାହେବ ଆଇ.ପି. ହୋଇ ଭାରତକୁ ନୂଆ ଆସିଲା ପରେ କେମିତି ହଇରାଣ ହୋଇଥିଲେ। ତାଙ୍କ ଦେଶରେ ତ ସାମାଜିକ ସ୍ତରରେ ମଣିଷ ମଣିଷ ଭିତରେ ଭେଦଭାବ ନାହିଁ ବଗିଚାର ମାଳି ଆଉ ଘରର ମାଲିକ ଏକା ଟେବୁଲରେ ଚା ପିଅନ୍ତି ସେ ଦେଶର ଏ ନୂଆ ଆଇ.ପି. ଚା ପିଉଁ ପିଉଁ କେତେ ସାଧାରଣ ଲୋକଙ୍କ ସଙ୍ଗରେ ଦୁଃଖ ସୁଖ ଜମାଇ ଦେଲେ। ହଠାତ୍ ସେ ବାଟରେ ଯାଉଥିଲେ ଆମର ଜଣେ ଭାରତୀୟ ଆଇ.ସି.ଏସ୍. 'ପ୍ରଭୁ'; ଏ ଦୃଶ୍ୟ

ଦେଖି ପ୍ରଥମେ ସେ ବିଶ୍ୱାସ କରିପାରିଲେନି। ତା ପରେ ସବୁ କଥା ବୁଝି ଏ ଅଘଟଣ ସମ୍ବନ୍ଧରେ ଉପରକୁ ଖବର ଦେଇଦେଲେ। ନୂଆ ହୋଇ ଆସିଥିବା ସେହି ଗୋରାସାହେବଙ୍କୁ ଛଅ ସପ୍ତାହ କାଳ ଅଲଗା ଟ୍ରେନିଂ ଦିଆହେଲା - ଶିଖାଇ ଦିଆହେଲା ଯେ ଯେଉଁମାନେ 'ପ୍ରଭୁ', ସେମାନେ 'ଦାସ'ମାନଙ୍କ ସଙ୍ଗରେ ଖୋଲାଖୋଲି ମିଳାମିଶା କରିବା ଅନୁଚିତ। ତାଙ୍କ ସାଙ୍ଗରେ ମିଶିଲେ, ହେଁ ହେଁ ଫେଁ ଫେଁ ହେଲେ, ଗାମ୍ଭୀର୍ଯ୍ୟ ନ ରଖିଲେ ସେମାନେ ଆଉ ପ୍ରଭୁ ବୋଲି ମାନିବେ କେମିତି ? ନିଜକୁ ସମାନ ବୋଲି ଭାବିନେଇ ଶେଷରେ ମୁଣ୍ଡ ଉପରକୁ ଚଢ଼ିବାକୁ ଚେଷ୍ଟା କରିବେ ସିନା।

'ଶାସକ'ମାନଙ୍କୁ ଦିଆଯାଉଥିବା ସେଦିନର ଟ୍ରେନିଂ ଆଜି ବି 'ସେବକ'ମାନଙ୍କୁ ଦିଆଯାଉଛି। ଆଜି ବି ଆମ ବଡ଼ ବଡ଼ ସରକାରୀ କର୍ମଚାରୀମାନେ ଶିକ୍ଷାନବିସ୍ ଥିଲାବେଳେ ଯେତେବେଳେ ଟ୍ରେନିଂ ପାଆନ୍ତି, ଘୋଡ଼ାଚଢ଼ା ସାଙ୍ଗକୁ କଣ୍ଟା ଚାମୁଚ ଧରି କେମିତି ଖାଇବାକୁ ହୁଏ, କେମିତି ମୁହଁ ଚିପି ଚିପି କଥା କହିବାକୁ ହୁଏ, ମୁଣ୍ଡ ବଙ୍କେଇ ଚାହିଁବାକୁ ହୁଏ, ଆଉ ହସିବା କଥା ପଡ଼ିଲେ ବି ଗମ୍ଭୀର ହୋଇ ରହିବାକୁ ହୁଏ, ସେସବୁ ବି ଶିଖିନିଅନ୍ତି। ଟ୍ରେନିଂ ପରେ ସେମାନେ ଯେତେବେଳେ ତାଙ୍କ 'ସେବା' ଆରମ୍ଭ କରନ୍ତି, ତାଙ୍କ ଗୋଠ ଯଥାସମୟରେ ଭିନେ ହୋଇଯାଏ। ତାଙ୍କ ଢ଼ଙ୍ଗଢ଼ାଙ୍ଗ ଦେଖି ବଡ଼ଠାରୁ ସାନ ଶିଖିବା ନ୍ୟାୟରେ ଅନ୍ୟ ସରକାରୀ ଅଫିସରଦଳ ମଧ୍ୟ ସେପରି ଢଙ୍ଗ କରିବସନ୍ତି। ଉପରୁ ତଳକୁ ଢଙ୍ଗଢ଼ାଙ୍ଗ ଭେଦିଯାଏ। ଚପରାଶୀମାନେ ବି ଯେହେତୁ ସରକାରୀ କର୍ମଚାରୀ, ମୂଲିଆଘରୁ ଆସିଥିଲେ ବି ସେମାନେ ମଧ୍ୟ ଗାଁ ଲୋକଙ୍କ ପାଖରୁ ଦୂରେଇଯାଆନ୍ତି ଛାଳ ବାଉଁଶର ମାଟିଲେସା ଘରେ ଆଉ ରହିପାରନ୍ତିନି, ତଳେ କିମ୍ବା ଦଉଡ଼ିଆ ଖଟରେ ବସି ନପାରି ଚୌକି, ବେଞ୍ଚ୍ କିମ୍ବା ଷ୍ଟୁଲ୍ ଲୋଡ଼ି ବସନ୍ତି।

'ଦେଶ ସ୍ୱାଧୀନ ହେଲାପରେ ମଣିଷ ମଣିଷ ଭିତରେ, ବଡ଼ ସାନ ଭିତରେ ଯେପରି ପାର୍ଥକ୍ୟ ନ ଆସେ, ସେଥିପାଇଁ ତ ଗାନ୍ଧିଜୀ ଟ୍ରେନ୍‌ରେ ଗଲାବେଳେ ତୃତୀୟ ଶ୍ରେଣୀ ଡବାରେ ଯା-ଆସ କରୁଥିଲେ, ସାଧାରଣ ମୂଲିଆଙ୍କ ପରି ଲୁଗାପଟା ପିନ୍ଧୁଥିଲେ; ଆଶ୍ରମମାନଙ୍କରେ ସୌଖୀନ ଆସବାବପତ୍ରବିହୀନ ଖପରଲି ଘରେ ରହୁଥିଲେ; କିନ୍ତୁ ତାଙ୍କ ଅନ୍ତେ ହେଲା କଣ ? ସରକାରୀ କଳ ସାଧାରଣଙ୍କଠାରୁ ଆହୁରି ଦୂରେଇଗଲା। ଅଫିସରମାନେ ସିଧା ସଳଖ ସାଧାରଣ ଲୋକଙ୍କ ସମ୍ପର୍କରେ ନ ଆସିବା ଫଳରେ ସର୍ବସାଧାରଣଙ୍କ ସୁବିଧା ଅସୁବିଧାର ଖବର ତାଙ୍କ ଅଧସ୍ତନ କର୍ମଚାରୀଙ୍କ ପାଖରୁ ହିଁ ସଂଗ୍ରହ କରିବସିଲେ ଏବଂ ସେମାନେ ଖବର ନେଲେ ତାଙ୍କ ତଳିଆ କର୍ମଚାରୀଙ୍କ ପାଖରୁ। ସର୍ବଶେଷ କର୍ମଚାରୀ ତାର ନିଜ ବ୍ୟକ୍ତିଗତ ସୁବିଧାମତେ ଏବଂ ଉପରିସ୍ଥ ହାକିମଙ୍କୁ ସୁହାଇଲା ଭଳି ଖବର ପରିବେଷଣ କଲା।

ଆଉ ସେ ଖବର ହିଁ ହେଲା ସତ ଖବର। ଏଣେ ଜନସାଧାରଣ ଅରଣ୍ୟରୋଦନ କରୁଥାଆନ୍ତୁ। ଏବେ ବିଚାର କରନ୍ତୁ ତ ଏ ଚକଫଟା କଥାରେ ମତାମତ ଦେଇବସିଲେ କାହା କଥା ଶେଷରେ ସତ ହେବ?

'ଯନ୍ତ୍ରଣା ଭୋଗୁଥିବା କୌଣସି ମଣିଷର ଶୁଖିଲା ମୁହଁ.... କହିଚାଲିଥିଲେ? 'ଗାନ୍ଧିଜୀଙ୍କ ସମାଧି ଗଙ୍ଗାଜଳରେ ଧୋଇଲେ ଅବସ୍ଥା କଣ ବଦଳିଯିବ? ଚେଇଁଶୋଇଲା ଲୋକଙ୍କୁ ଉଠାଇବେ କେମିତି ବାହୁବଳ ବାବୁ? ଯେଉଁ ଆଡ଼କୁ ଆଖି ବୁଲାଇବେ ସେ ଆଡ଼ ତ ଅନ୍ଧାର। ସେ ଅନ୍ଧାର ଭିତରେ କେମିତି ଗୁରୁଣ୍ଡି ଗୁରୁଣ୍ଡି ଆଗେଇଯିବାକୁ ହେବ ସେ କଥା ନ ଭାବି ଆପଣ ଯଦି ଆଲୁଅ ପାଇଁ 'ଆଲୁଅ' 'ଆଲୁଅ' ବୋଲି ଚିତ୍କାର କରୁଥିବେ - ତଣ୍ଟି ବସିଯିବା ଯାଏ। ଯା ପାଖରେ ଆଲୁଅ ବତି, ସେ ଯେ ଜାଣି ଶୁଣି ବତିକୁ ଲିଭାଇ ଦେଇଛି - ଅନ୍ଧାରରେ ପକେଟମାର ଆଲୁଅ ବତି, ସେ ଯେ ଜାଣିଶୁଣି ବତିକୁ ଲିଭାଇ ଦେଇଛି - ଅନ୍ଧାରରେ ପକେଟମାର ପାଇଁ ସୁବିଧା ହେବ ବୋଲି। ଆଲୁଅ ପାଇଁ ଚିତ୍କାର କଲାବାଲା ପାଖକୁ ଯଦି କୌଣସିମତେ ବତି ଆସିଯାଇଛି, ବତି ଧରିଲା କ୍ଷଣି ସେ ମଧ ତାକୁ ଜାଣିଶୁଣି ଲିଭାଇ ଦେଉଛି।'

ଶ୍ରେଣୀକକ୍ଷରେ ଜଣେ ଛାତ୍ର ତାର କୌଣସି ପ୍ରିୟ ଶିକ୍ଷକଙ୍କ ବକ୍ତୃତା ଶୁଣିଲା ପରି ବାହୁବଳ ବାବୁ ଜ୍ଞାନରଞ୍ଜନ ବାବୁଙ୍କ ଆଲୋଚନା ଶୁଣୁଥିଲେ - ପଚାରି ଦେଲେ, 'ଆପଣ ତେବେ କଣ ଜଣେ ନିରାଶାବାଦୀ?'

ଜ୍ଞାନରଞ୍ଜନ ବାବୁ ଜୋର୍‌ରେ ମୁଣ୍ଡ ହଲାଇ କହିଲେ, 'ନା, ବାହୁବଳ ବାବୁ - ଯଥେଷ୍ଟ ଆଶାବାଦୀ। ମୋର ଦୃଢ଼ ଧାରଣା ଯେ ଆଜି ବି ସରକାରୀ ବେସରକାରୀ ଉଭୟ ସ୍ତରରେ ଅନେକ ମହାନ୍ ବ୍ୟକ୍ତି ଆମ ଭିତରେ ରହିଛନ୍ତି। ଆମର ସଂସ୍କୃତିର ସ୍ରୋତ ଶାଶ୍ୱତ। ସାମୟିକ ଭାବରେ ସେ ସ୍ରୋତର ପ୍ରବାହ କ୍ଷୀଣ ହୋଇ ଯାଇପାରେ; କିନ୍ତୁ ଶୁଖିଯାଇ ପାରେନା। କ୍ଷଣିକ ପାଇଁ ଆଜି ଆମେ ଅନ୍ଧ, ଆଗେଇଗଲାବେଳେ ଆମେ ଆଜି ଗୋଟାଏ ସୁଡଙ୍ଗରେ ପଶିଯାଇଛୁ। ସୁଡ଼ଙ୍ଗଟି ଭୟଙ୍କର ଅନ୍ଧାରୁଆ; କିନ୍ତୁ ସେ ସୁଡ଼ଙ୍ଗ ଶେଷରେ ଯେଉଁ ଆଲୁଅ ରହିଛି,ସେଠାରେ କୌଣସି ବତିର ଯେ ଆଉ ଲୋଡ଼ା ପଡ଼ିବନି, ସେ ସମ୍ବନ୍ଧରେ ମୁଁ ନିଃସନ୍ଦେହ। ମୋର ତେଣୁ ମତ ଯେ ଆଜିର ଏ ଅନ୍ଧାରରେ ବି ଆମକୁ ଆଗେଇଯିବାକୁ ହେବ - ବେଳକୁବେଳ ଚକ୍‌କର ଖାଇବାକୁ ପଡୁଥିଲେ ମଧ। ସେଥିପାଇଁ ତ ବାହୁବଳ ବାବୁ, ମୁଁ କହୁଥିଲି ଯେ ଯେଉଁ ଦୁଃଖରୁ ପରିତ୍ରାଣ ନାହିଁ, ସେ ଦୁଃଖକୁ ଧୈର୍ଯ୍ୟ ଧରି ସହିନେବାକୁ ହିଁ ହେବ। ଆଉ ମଧ କହୁଥିଲି ଯେ ଦୁଃଖବେଳେ ମୁହଁରେ ହସ ଟିକିଏ ଫୁଟାଇ ପାରିଲେ ଦୁଃଖର ବୋଝ ହାଲୁକା ହୋଇଯାଏ। ଜଣେ ଅବସରପ୍ରାପ୍ତ ସରକାରୀ ଚାକିରିଆ ପକ୍ଷରେ ଅନ୍ୟ ଚାକିରିଆମାନଙ୍କ ମତିଗତି ବଦଳାଇବା ଚେଷ୍ଟା କେବଳ ଧୃଷ୍ଟତା। ସେ କର୍ତ୍ତବ୍ୟ

ଯାହାର, ସେ କଥା ସେମାନେ କରନ୍ତୁ ଆମର କର୍ତ୍ତବ୍ୟ ଆମେ କରିଯିବା। ହୁଏତ ଆମ ଆଚରଣବିଧି ଦେଖି ଆଜିର ଯୁବସମାଜ କିଛି ପରିମାଣରେ ପ୍ରଭାବିତ ହେବେ। ନହେଲେ ଆପଣ ଜାଣନ୍ତି ସମୟ କାହାକୁ ଅପେକ୍ଷା କରେନି - ସମସ୍ତଙ୍କୁ ଦିନେ ନା ଦିନେ ସେ ତାର କ୍ରାନ୍ତିକାରୀ ସ୍ରୋତରେ ଭସାଇନେବ। ସେ ସ୍ରୋତରେ ଭାସିଗଲାବେଳେ 'ପ୍ରଭୁ' ଆଉ 'ଦାସ' ଏକାସଙ୍ଗରେ ଉବୁଟୁବୁ ହୋଇ ପାଣି ଢୋକୁଥିବେ।'

ଠିକ୍ ଏତିକିବେଳେ ବସ୍‌ର ହର୍ଣ୍ଣ ଘନ ଘନ ବାଜିଉଠିଲା। 'ଆରେ ତା ହେଲେ ଷ୍ଟେପନି ଆସି ଚକ ବଦଳା ହୋଇଗଲାଣି!' କହି ଦୁଇବନ୍ଧୁ ଏକାସଙ୍ଗରେ ଉଠିପଡ଼ିଲେ। ବସ୍ ପାଖରେ ପହଞ୍ଚିଲା ବେଳକୁ କଣ୍ଡକ୍ଟର ଯାତ୍ରୀମାନଙ୍କୁ ଗାଡ଼ି ଟିକିଏ ଠେଲିଦେବା ପାଇଁ ଅନୁରୋଧ କରୁଥିଲା। ୫-୬ ଜଣ ମାତ୍ର ଠେଲୁଥିଲେ ଏବଂ ଅନ୍ୟମାନେ ବସ୍ ଭିତରକୁ ପଶିଯିବାକୁ ତରବର ହେଉଥିଲେ। ଦଳେ ଯୁବକ ଗାଡ଼ି ଭିତରକୁ ପଶିଯାଉଥିବା ଦେଖି କଣ୍ଡକ୍ଟର ସେମାନଙ୍କୁ ଅନୁନୟ କରୁଥିଲା। ଜ୍ଞାନରଞ୍ଜନ ବାବୁ ସେମାନଙ୍କୁ ଲକ୍ଷ୍ୟକରି କଣ୍ଡକ୍ଟରକୁ ବଡ଼ପାଟିରେ କହିଲେ, 'ହେ କଣ୍ଡକ୍ଟର ବାବୁ - ସେମାନେ ସମସ୍ତେ ତ ବୁଢ଼ାବୁଢ଼ୀ - ସେମାନେ ଗାଡ଼ିରେ ବସନ୍ତୁ; ଆମେ ଠେଲୁଛୁ।' ଗାଡ଼ି କିଛି ବାଟ ଆଗେଇଗଲାପରେ ଧକଡ୍ ଧକଡ୍ ଆବାଜ କରି ପୁଣି ବନ୍ଦ ହୋଇଯାଇଥିଲା। ଆଗରେ ସାମାନ୍ୟ ଉଠାଣିଆ। ଜ୍ଞାନରଞ୍ଜନ ବାବୁଙ୍କ ମନ୍ତବ୍ୟ ଶୁଣି ବୋଧହୁଏ ପ୍ରାୟ ସମସ୍ତେ ଗାଡ଼ିରୁ ଓହ୍ଲାଇ ଆସି ଗାଡ଼ିର ଚାରିଆଡ଼େ ବେଢ଼ିଯାଇ ଗାଡ଼ି ଦେହରେ ତାଙ୍କ ହାତମାନ ଦେଇ ସାରିଥିଲେ। ଜ୍ଞାନରଞ୍ଜନ ବାବୁ ଗାଡ଼ି ଠେଲୁଁ ଠେଲୁଁ ଚିତ୍କାର କଲେ - 'ବୋଲ୍ ଭାଇ...'

ବାହୁବଳ ବାବୁ ବି ଗାଡ଼ି ଠେଲୁଥିଲେ। ହସି ହସି ଜବାବ୍ ଦେଲେ - ହେଁ-ସ୍ୱସା...'

ଜ୍ଞାନରଞ୍ଜନ ବାବୁ ଡ଼ାକ ଛାଡ଼ିଲେ - 'ମାରେ ଜୋର୍...!'

ଏଥର ସମସ୍ତେ ଏକାସଙ୍ଗରେ ରଡ଼ି ଛାଡ଼ିଲେ - 'ହେଁ-ସ୍ୱସା...'

"ବୋଲେ ସବାର୍..."

"ହେଁ-ସ୍ୱସା..."

"ଯାଉ ପହଞ୍ଚି...."

"ହେଁ-ସ୍ୱସା..."

"ବାଦାମବାଡ଼ି..."

"ହେଁ-ସ୍ୱସା..."

ଗାଡ଼ି ଭଡ୍ ଭଡ୍ କରି ଷ୍ଟାଟ୍ ନେଲା। ହସ ଖୁସି ଏବଂ ଆନନ୍ଦ ଉଲ୍ଲାସରେ କୋଳାହଳ ଭିତରେ ସମସ୍ତେ ପଶୁଥିଲେ ଗାଡ଼ି ଭିତରକୁ।

# କାଳିଆ ପାଖରେ
# ବୁଧିଆ ବାଉରିର ଗୁହାରି

ସାଆନ୍ତେ! ଘେନାକରିବ ଯଦି ଗୁହାରିଟିଏ କରିବି। ତା' ଆଗରୁ କିନ୍ତୁ କଥା ଦେବାକୁ ହେବ ସାଆନ୍ତେ, ମୋ' ଗୁହାରି ଶୁଣି ହସିବ ନି। ମୁଁ ଯେଉଁକଥା କହିବି ସେଇଟା ବଡ଼ ଗମ୍ଭୀର କଥା - ସେଥିରେ ହସିବାଭଳି କିଛି ନାହିଁ, କିନ୍ତୁ ସାଆନ୍ତଙ୍କ ମୁହଁରୁ ତ ସର୍ବଦା ହସ ପିଚିକାରୀ ମାରୁଛି - ମୋ' ଗୁହାରି ଶୁଣି ଯଦି କଥାଟିକୁ ହସରେ ଉଡ଼ାଇଦେବ।

ସତେ ସାଆନ୍ତେ - ହସିବା ନହସିବାରେ ଟିକିଏ ବାଛବିଚାର କରିବା କଥା। ମୁଁ ଆଗ ଆଗ ଭାବୁଥିଲି ସାଆନ୍ତେ ମୋତେ ଖାଲି ଚାହିଁବାକ୍ଷଣି ମୁରୁକି ହସି ଦିଅନ୍ତି- ଖୁସିରେ ମୋ ଛାତି କୁଣ୍ଢେମୋଟ ହୋଇଯାଏ। ତା'ପରେ କିନ୍ତୁ ଅନେକ ଦେଖିଲିଣି, ଆଉ ଅନେକ ଶୁଣିଲିଣି। ଜାଣିଗଲିଣି ଯେ ଖାଲି ମୋତେ ଦେଖିଲେ ନୁହେଁ ସାଆନ୍ତେ ସମସ୍ତଙ୍କୁ ଦେଖି ଏମିତି ହସୁଛନ୍ତି। ସେଦିନ ଭଗିଆ ମା' କହୁଥିଲା; ସେ ଆସିଥିଲା ସାଆନ୍ତଙ୍କ ପାଖକୁ - ତା'ଭଗିଆକୁ ଜେଲଖାନାକୁ ବଞ୍ଚାଇଦିଅ ବୋଲି ଗୁହାରି କରି। ଭଗିଆ କୁଆଡ଼େ ସତରେ କିଛି ଚୋରି କରିନଥିଲା। ସେଦିନ ସେ ବାହାରିଥିଲା କଟକ ଯିବ ବୋଲି। ବସ୍ ଷ୍ଟେସନରେ ପହଞ୍ଚିଛି କି ନାହିଁ ହଠାତ୍ ହାବୁଡ଼ିଗଲା ମୋଟୁ ମହାଜନଙ୍କୁ। ରାଧାଶ୍ୟାମ ଗଳିରେ ସେ ଯେଉଁ ଗହଣା ଦୋକାନ ନାହିଁ ସାଆନ୍ତେ! ତା'ର ମାଲିକ ଏଇ ମୋଟୁ ମହାଜନ। ମୋଟୁବାବୁଙ୍କ ଜମା ତଳ ପକେଟରୁ ଟଙ୍କା ମୁଣିଟିଏ କୁଆଡ଼େ ଉଙ୍କିମାରୁଥିଲା। ବସ୍ ଚଢ଼ିଲାବେଳେ ଭିଡ଼ ଜମିଯାଇଥିବା ଦେଖି ଭଗିଆ ସେ ମୁଣିଟିକୁ ଟିକିଏ ଟାଣିଦେଲା। ବାସ୍, ସେତିକି - ଦି'ଜଣ ଭେଣ୍ଡିଆ ସେକଥା ଦେଖିପକାଇ ତା' କତିକି ଚିହିଁକି ଆସିଲେ। ଗାଲ ଓ ପିଠିରେ ତ ଯାହା କଷିବାର କଷିଲେ, ତାକୁ ଭିଡ଼ି ନେଇଗଲେ ସେ ଯେଉଁ ଥାନା ହାବିଲ୍‌ଦାର ଶେର ସିଂ, ତା'ପାଖକୁ। ହାବିଲ୍‌ଦାର କୁଆଡ଼େ କିଛି କଥା ନ ଶୁଣି ତଣ୍ଟିଆ ମାରି ଭଗିଆକୁ ଥାନା ଭିତରେ ଭର୍ତ୍ତି କରିଦେଲା। ଖବର ପାଇ ଭଗିଆ ମା'ର ଆଖା-ଶାଖା ଡୁବିଗଲା। ସାହିର ସମସ୍ତେ କୁଆଡ଼େ ତାକୁ ପରାମର୍ଶ ଦେଲେ ଭଲ ଓକିଲଟିଏ ଦେଖି ଲଗେଇଦେବାକୁ; କିନ୍ତୁ ଭଗିଆମା'ର ସେତିକି ପଇସା ଥିଲେ ତ! ସେ ଧାଇଁଆସିଲା

ସାଆନ୍ତେଙ୍କ ପାଖକୁ ଗୁହାରି କରି। ତମେ ସାଆନ୍ତେ ଭଗିଆ ମା'କୁ ଦେଖି ହସିଦେଲ। ଭଗିଆମା' ଭାବିଲା, ସାଆନ୍ତେ ଯେତେବେଳେ ହସିଲେଣି, ଭଗିଆର ଆଉ ଡ଼ର କ'ଣ? କିନ୍ତୁ ଦେଖିଲାବେଳକୁ କ'ଣ ନା ସରକାର ବାହାଦୂର ଭଗିଆକୁ ଦୁଇବର୍ଷ ଘଣାପେଲା ଠୁକିଦେଇଛନ୍ତି। ଭଗିଆ ମା ତମ ଉପରେ ଭାରି ରାଗୁଥିଲା ସାଆନ୍ତେ - ତାକୁ ଭଣ୍ଡିଦେଲ ବୋଲି! ଯେ - ଭଲ କଲ। ଭଗିଆ ଆଜି ସିନା ମୁଣି ଟାଣୁଥିଲା - ଛାଡ଼ ପାଇଯାଇଥିଲେ କାଲି କ'ଣ ଯେ ନ କରନ୍ତା। ମା' ଭଉଣୀଙ୍କ ଗଳାରୁ ହାର କି କାନରୁ ସୁନା ଟାଣିଥାଆନ୍ତା।

ରାମୁ ବି ତମ ଉପରେ ଭାରି ଖପା ସାଆନ୍ତେ! କିନ୍ତୁ ସେଇଟା ବି ଭଲ କଲ। ଆମ ସାହିରେ ତ ରାମୁର ଘର, ତାକୁ କ'ଣ ମୁଁ ଜାଣିନି ନା ଚିହ୍ନିନି। ଲଫଙ୍ଗା ଟୋକା ସର୍ବଦା ଧତଡ଼୍ ସାଇକେଲଟିଏ ଧରି ଗାଁଯାକ ଏ ସାହି ସେ ସାହି ପଇଁତରା ମାରୁଥିଲା। ସ୍କୁଲକୁ ତ ଯାଏନି କେମିତି ହାଜିରା ପୂରିଲା କେଜାଣି, ସେ ହେଡ଼୍‌ମାଷ୍ଟ୍ରେ ବି ତାକୁ ମେଟ୍ରିକ୍ ପରୀକ୍ଷା ଦେବା ପାଇଁ ବାଛିଦେଲେ। କୁଆଡ଼େ ପରୀକ୍ଷାରେ ନକଲ କରୁଥିଲା ଆଉ ନକଲ ଧରିଲେ ଛୁରା ଭୁଷିଦେବ ବୋଲି ଡରାଉଥିଲା। ଫେର୍ କ'ଣ ନା, ତମେ ସାଆନ୍ତେ ତାକୁ ଭଲକରି ପାସ୍ କରାଇ ଦେବ ବୋଲି ନଡ଼ିଆଟିଏ ଆଉ ଗଣ୍ଡେ କଦଳୀ ଧରି ତମ ପାଖକୁ ଆସିଥିଲା ଗୁହାରି କରି। ତମେ ତାକୁ ଦେଖି ହସିଦେଲେ। ବାବୁର ମନ ଖୁସ୍! ଧରିନେଲା ଯେ ସାଆନ୍ତେ ଯେତେବେଳେ ତାକୁ ଦେଖି ହସୁଛନ୍ତି, ସେ ବଢ଼ିଆ କରି ପାସ୍ କଲା ବୋଲି ଜାଣ। ଏଣେ ଫଳ ବାହାରିଲାବେଳକୁ ବାବୁ ଚିତ୍‌ପଟାଙ୍ଗ। ନକଲ କରିବା ପାଇଁ ବି ତ ଅକଲ ଲୋଡ଼ି - ଭଲ କରି ନକଲ ନକରି ଉପର ତଳ କରିଦେଇଥିବ। କହୁଥିଲା ତମକୁ ନଧରି କେଉଁ ଜଣେ ମାଷ୍ଟ୍ରେଙ୍କୁ ପଣେ ନଡ଼ିଆ ଯାଚିଥିଲେ ଭଲ ହୋଇଥାଆନ୍ତା। ଭଲକଲ ସାଆନ୍ତେ - ତାକୁ ଫେଲ୍ କରାଇଦେଲ। ଏମିତି ଦୁଷ୍ଟମାନଙ୍କୁ ଦୟା ମାୟା ଦେଖାଇବା ଭଲ ନୁହେଁ, କିନ୍ତୁ ସେ ରାଧୁର ପୁଅକୁ ଯେଉଁ ନେଇଗଲ - ଭଲ କଲନି ସାଆନ୍ତେ! ପନ୍ଦର କି କୋଡ଼ିଏ ବର୍ଷ ପରେ ବାଞ୍ଝ ଘରେ ପୁଅଟିଏ ହୋଇଥିଲା - ତମ ପାଖରେ ଅଧିଆ ପଡ଼ି ପଡ଼ି। ତା'ର ସେ ଏକୋଇର ବଳାକୁ ନେଇଯାଇ କ'ଣ ଭଲ କଲ? ଦୁଇବର୍ଷର ଗୁଲୁଗୁଲିଆ ପିଲା - ଦେଖିଲେ ପେଟ ପୂରିଯାଉଥିଲା ସାଆନ୍ତେ! କାହାର ନଜର ପଡ଼ିଯିବ ବୋଲି ହାତରେ ତେଉଁରିଆଟିଏ ବାନ୍ଧି ଦେଇଥିଲା ରାଧୁ। ଯାହାକୁ ଦେଖିଲେ ସେ ପୁଅ ହସିଦେବ, ଆଉ ଗାଡୁରୁ ମାଡୁରୁ ହୋଇ ହାତରେ ତାଳି ମାରି ମାରି ନାଚିବ। ଖଟରେ ପଡ଼ିଲା ଯେ ଆଉ ଉଠିଲା ନି। ରାଧୁର ଭାରିଯା ତେଣେ ପୁଅକୁ କୋଳକରି ବସିଥାଏ ତ ରାଧୁ ଏଣେ ସାଆନ୍ତେଙ୍କ ପାଖରେ ଅଧିଆ ପଡ଼ିଥାଏ। ତାକୁ ନେଇଯାଇ କେଉଁ ଯଶ ଅର୍ଜିଲ କହିଲ ଭଲା! ବ୍ୟାଧ ହାବୁଡ଼ରେ ପଡ଼ିଲାରୁ ଗର୍ଭରେ ଛୁଆ ଅଛି ବୋଲି କେଉଁ

ହରିଣୀଟିଏ ସହସ୍ର ଯୋଜନରୁ ଡାକିଲା ଯେ ତମେ ସାଆନ୍ତେ ପରା ତାକୁ ରଖିଦେଇଥିଲ ? ଆଉ ରାଧୁ ତ ତମ ଆଗରେ ଅଧିଆ ପଡ଼ିଥିଲା । ରାଧୁ ଧକେଇ କାନ୍ଦି କହୁଥିଲା ତମେ ଯେଉଁ ସଞ୍ଜରେ ସେ ଛୁଆଟିକୁ ନେଇଗଲ ସେଇ ସକାଳେ ବି ରାଧୁ ଯେତେବେଳେ ତମକୁ ଅନେଇଥିଲା... ତମେ ହସିଦେଇଥିଲ । ଠିକ୍ କଲ ସାଆନ୍ତେ ?

ଆଉ ଏତେ କଥା କହିଲିଣି ଯେତେବେଳେ, ତମେ ରାଗିଲେ ରାଗ ପଛକେ ସାଆନ୍ତେ, ସେ ଝିଅ କଥା ବି କହିଦେଉଛି । ସତେ ସାଆନ୍ତେ, ସେ କଥା ମନେ ପଡ଼ିଲେ ଛାତି କରତି ହୋଇଯାଏ - ମନ ସନ୍ତୁଳି ହେଲା ପରି ଲାଗେ । ତା' ବୁଢ଼ାବାପା ଆଉ ବୁଢ଼ୀ ମା' କାହିଁ କେତେ ଦୂରରୁ ଆସିଥିଲେ ସାଆନ୍ତେଙ୍କୁ ଦର୍ଶନ କରିବେ ବୋଲି । ଚକାଡୋଳାଙ୍କୁ ଦେଖିବା ଆଶାରେ ଝିଅଟା ବି ସେମାନଙ୍କ ସଙ୍ଗରେ ଧାଇଁଆସିଥିଲା । ତମେ ତାଙ୍କୁ ଦର୍ଶନ ଦେଲ ବୋଲି କୃତାର୍ଥ ହୋଇଗଲେ ସେମାନେ । ମୁହଁସଞ୍ଜବେଳକୁ ସମୁଦ୍ରକୂଳରେ ବାଲି ଉପରେ ବସି ବୁଢ଼ାବୁଢ଼ୀ ଆନନ୍ଦରେ ଢ଼େଉ ଗଣୁଥିଲେ । ଦୁଇ ହାତରେ ଆଣ୍ଠୁଯାଏ ଶାଢ଼ୀ ଟେକି ଧରି ଝିଅଟି ପାଣି ପାଖରେ ଡେଇଁ ଡ଼େଇଁ ଲହରୀମାନଙ୍କ ସଙ୍ଗରେ ଖେଳ ଖେଳୁଥିଲା । ଛୋଟ କଙ୍କଡ଼ାଟିଏ ଦେଖି ତା'ର ଲୋଭ ହେଲା ଯେ ତାକୁ ଧରିବ ବୋଲି ସେ କିଛି ବାଟ ଗୋଡ଼ାଇ ଗଲା ପରେ ପୁଣି ଗୁଡ଼କଙ୍କଟିଏ ପଡ଼ିଯାଉଥିବା ଦେଖି ଧରିବ ବୋଲି ଗୋଡ଼ାଇଲା ତା ପଛରେ । କେଉଁଠି ଥିଲେ କେଜାଣି, ଖଣ୍ଡିଆଭୂତ ପରି ମାଡ଼ି ଆସିଲେ କେତେ ଜଣ ଆଉ ସମସ୍ତଙ୍କ ଆଖି ଆଗରେ ସେ ସଇତାନମାନେ ଝିଅଟିକୁ ଟେକି ନେଇଗଲେ, ସଡ଼କ ଉପରେ ଠିଆହୋଇଥିବା ଗୋଟାଏ ଗାଡ଼ି ଭିତରକୁ । ସେ ଗାଡ଼ି ଗଲା ଯେ ତାର ଖୋଜଖବର ବି ମିଳିଲାନି । ଜଗନ୍ନାଥଙ୍କ ଏ ଅଜଣା ରାଇଜରେ ବୁଢ଼ା ବୁଢ଼ୀ କାହା ପାଖରେ ଅବା ଗୁହାରି କରନ୍ତେ - ଧାଇଁଆସିଲେ ତମ ପାଖକୁ ଆଉ ଏଇ ମନ୍ଦିର ଚଟାଣ ଲୁହରେ ଭିଜାଇ ଦେଲେ । ତମେ ତାଙ୍କୁ ଦେଖି ହସିଦେଲ ନାଇଁ ସାଆନ୍ତେ ? କେତେ ଦିନ ପରେ ସେ ଝିଅର ମଲା ଦେହ ରାସ୍ତାକଡ଼ରେ ପଡ଼ିଥିଲା । କିଏ କହିଲା ସରମରେ ଝିଅ ଜୀବନ ହାରିଦେଇଛି, ତ କିଏ କହିଲା ବଳାତ୍କାର ବେଳେ ହିଁ ଝିଅ ମରିଯାଇଛି । ତମ ଆଖି ଆଗରେ ଏସବୁ ଘଟିଗଲା, ଆଉ ତମେ ହସୁଥିଲ ସାଆନ୍ତେ । ତମେ ପରା ଦ୍ରୌପଦୀଙ୍କ ଲାଜ ରଖିଥିଲ ? ସତ କହୁଛି ସାଆନ୍ତେ, ସେତେବେଳେ ମୋ ଦେହରେ ନିଆଁ ଲାଗିଯାଇଥିଲା । ତମେ ତ ସମସ୍ତଙ୍କ ପେଟ ଚିପିବା ଲୋକ, ନ କହିଲେ ବି ମନକଥା ଜାଣିଯିବ । ବୁଢ଼ାର ମା'କୁ ମୁଁ ରାଗରେ କହିଲି - ଏ ସାଆନ୍ତେ ରଜା ମହାର୍ଜା ଧନୀ ସାହୁକାରଙ୍କ ଲୋକ । ଆମର ଇଏ କେହି ନୁହନ୍ତି ଦ୍ରୌପଦୀ ସିନା ରଜାଘର ଝିଅ, ରଜାଘର ବୋହୂ, ଆମେ ସବୁ କେଉଁ ଛାର ଯେ ଆମ ଲାଜ ମହତ କଥା ଶୁଣିବେ ? ଦେଖୁନ, ସେଦିନ କେମିତି ଓଡ଼ିଶା ରଜା ପାଇଁ ଦି'ଭାଇ ଦି'ଟା ଘୋଡ଼ା

ଚଢ଼ି ଧାଇଁଥିଲେ କାହିଁ କେଉଁଠିକି ଯୁଝି - କିନ୍ତୁ ଲକ୍ଷ୍ମୀଠାକୁରାଣୀ ଆମ ଶ୍ରୀୟା ଘରକୁ ଟିକେ ପଶିଗଲେ ବୋଲି ତାଙ୍କୁ କେତେ ହଟହଟା ନ କଲେ ଏ ଦି'ଭାଇ; ମନ୍ଦିରକୁ ପୂରାଇଦେଲେନି। ଗଜରାଜ ଡାକିଲା ବୋଲି ତାକୁ ରଖିବାପାଇଁ କାହିଁ ଲକ୍ଷେ ଯୋଜନରୁ ଚକ୍ର ପେଷି ଦେଲେ; କିନ୍ତୁ ସାଲବେଗ କାନ୍ଦି କାନ୍ଦି ବଡ଼ଦାଣ୍ଡର ଧୂଳି ଭିଜାଇ ଦେଲା ଦୀନକୃଷ୍ଣ ଗୁରୁଡ଼ ଖମ୍ବରେ ମୁଣ୍ଡ ବାଡ଼େଇ ଦେଲେ ତାଙ୍କୁ କଣ ଟିକିଏ ଆଡ଼ ଆଖିରେ ଋହିଁଲେ ? କହିଲି - ଭୀମ ଭୋଇ ସତ କହୁଥିଲା। କହୁଥିଲା, ବ୍ରହ୍ମ ତ ଶୂନ୍ୟ ନିରାକାର ଏ ପିତୁଳା ଫିତୁଳା ସବୁ ମିଛ।

ବୂଢ଼ୀ ମା' କିନ୍ତୁ ମୋ କଥା ଶୁଣି ଡରରେ ଛାନିଆଁ ହୋଇଗଲା। ଧମକ ଦେଇ କହିଲା - ସାଆନ୍ତେଙ୍କୁ ଏମିତି ନିନ୍ଦା କରି କହୁଛୁ, ଆର ଜନ୍ମରେ କୁକୁର ଘୁଷୁରି ହେବୁନି ? ମୁଁ କହିଲି - ହଅ, ହେବି ତ କ'ଣ ହୋଇଗଲା, ଆମେ ଏବେ କୋଉ କୁକୁର ଘୁଷୁରିଠୁ ଭଲ ଯେ ?

ତା'ପରେ ସାଆନ୍ତେ ରାଗରେ ତମ ଦୁଆର ଛାଡ଼ିଦେଇଥିଲି। ସେଦିନ ସରକାର ଯେତେବେଳେ ଜମି ସିଲିଂ କରିଦେଇ ତମ ଜମି ସବୁ ଛଡ଼ାଇ ନେଲେ ଆଉ ଶୁଣିଲି ସେ କ୍ଷୀରପୁଳି ମଣୋହି ଭୋଗ ତ ଛାଡ଼, ତମକୁ ଭାତ ମୁଠିଏ ବି ମିଳୁନି, ଖୁସିରେ ମୋ ମନ ଭରିଗଲା। ଭାବିଲି ଏଥର ଯାଇ ଚକାଡୋଳାଙ୍କ ଶୁଖିଲା ଉପାସିଆ ମୁହଁ ଟିକିଏ ଦେଖି ଆସିବି ଆଉ ପରିହାସ କରି ପଋରିବି - 'ମଣିମା, ଏଥର କେମିତି ? ଭୋକ ବାଧୁଛି ? କହିବି - 'ଗରିବ ସିନା ଗରିବର ଦୁଃଖ ବୁଝେ।' କିନ୍ତୁ ତମକୁ ଯେତେବେଳେ ଦେଖିଲି ତାଟକା ହୋଇଗଲି। ଭୋକ ଉପାସରେ ବି ତମେ ମୋତେ ଦେଖି ହସିଦେଲ। କେଜାଣି କାହିଁକି ମୋ ଆଖି ଲୁହରେ ଭରିଗଲା। ପରିହାସ କରିବାକୁ ଆସିଥିଲି - ତମକୁ ଦେଖି କାନ୍ଦିବସିଲି। କାହିଁକି ? ତମର ଦୁଃଖ ବୋଲି କିଛି ନାହିଁ ଏବଂ ତମେ ଆନନ୍ଦର ଧାମ ପରମାନନ୍ଦ - ଏକଥା ଜାଣିପାରିଲି ବୋଲି ? ଆଉ ତମକୁ ଯିଏ ପାଏ ତା'ର ମଧ ଦୁଃଖର ଅନ୍ତ ହୋଇଯାଏ, ସେ କଥା ବୁଝିଲି ବୋଲି ? ଲଜ୍ଜା ଅପମାନ ଏବଂ ସବୁ ନିର୍ଯ୍ୟାତନାବେଳେ ତମେଇ ଦୁଃଖୀର ପରମ ଆଶ୍ରୟ ବୋଲି ତମେ ଟେକିଥିବା ଦୁଇ ବାହାରୁ ଇଙ୍ଗିତ ପାଇ ? ତମକୁ ମିଛରେ ଗାଳି ଦେଲି ବୋଲି ? କେଜାଣି କାହିଁକି କାନ୍ଦିଲି। ପୁଣି ଥରେ ତୁମ ଦୁଆରକୁ ଧାଇଁଆସିଲି।

ଦେଖିଲ ସାଆନ୍ତେ, କ'ଣ କହୁ କହୁ କେଉଁ କଥା କହିବସିଲିଣି। ଏଇଟା ଆମ ଜାତିର ଲକ୍ଷଣ - ତମେ କେଉଁ ମୋହିନୀ ଲଗାଇ ଦିଅ ଯେ ତମକୁ ଦେଖିଲେ ସବୁ ଭୁଲି ହୋଇଯାଏ। ହଁ କହୁଥିଲି, ମୋ ଗୁହାରି ଶୁଣି ହସିବ ନି । ମୁଁ ଯାହା କହିବି ସେଇଟା ସତରେ ବଡ଼ ଗମ୍ଭୀର କଥା। ଶୁଣ ତେବେ ସାଆନ୍ତେ, ସେ କଥା କହୁଛି।

ଆମେ ସେଦିନ ଯାଇଥିଲୁଁ ଦକ୍ଷିଣକୁ। ଭାରତଭୂମି ଯେଉଁଠି ସରିଯାଇଛି ସେ ସ୍ଥାନ ଦେଖିବାକୁ ଭାରି ସୁନ୍ଦର ବୋଲି ତ ଆଗରୁ ଶୁଣିଥିଲୁଁ; ଚାଲିଗଲୁ ସେଇଠିକି। ଗୋଟିଏ ପାଖରେ ବଙ୍ଗୋପସାଗର ଅନ୍ୟ ପାଖେ ଆରବ ସାଗର, ଆଉ ଠିକ୍ ମୁହଁ ଆଗକୁ ଭାରତ ମହାସାଗର। ତିନି ସମୁଦ୍ରର ସଙ୍ଗମସ୍ଥଳୀ ଏଇ କୁମାରିକା ସତରେ ଭାରି ସୁନ୍ଦର ଥାନ ସାଆନ୍ତେ! ଗହୀରିଆ ସମୁଦ୍ର, କୂଳ ପାଖରେ କେଉଁ ଭାଗରେ କେଜାଣି ସମୁଦ୍ର ସେମାନଙ୍କ ଛାତିରେ ଆଉ ପିଠିରେ ବିଧା ପରେ ବିଧା ଗୋଇଠା ପରେ ଗୋଇଠା କଚାଡ଼ି ଚାଲିଛି। ପାଟିକରି କ'ଣ ସବୁ ଗାଳିଦେଉଛି ନା କଅଣ, କିଛି ବୁଝି ହେଉନି... ଏଇ ତାମିଲ କି ମାଲୟାଲମ୍ କି ଆମ କେଉଁ ଭାଷାରେ କେଜାଣି? .... ପାଟିରୁ ଫେଣ ବାହାରିପଡୁଛି। ଗୋଟିଏ ସାଗର ଭିତରୁ ସୂର୍ଯ୍ୟଦେବତା ଉଇଁ ଆସୁଛନ୍ତି ତ ଆଉ ଗୋଟିଏ ସମୁଦ୍ର ଉପରେ ପଇଁତରା ମାରି ଚାଲିଯାଉଛନ୍ତି ଅନ୍ୟ ଏକ ସାଗରରେ ବୁଡ଼ ମାରିବା ପାଇଁ। କି ସୁନ୍ଦର ସେ ଦୃଶ୍ୟସବୁ! ମନେ ହେଉଛି ସେ ସୂର୍ଯ୍ୟଦେବତାଙ୍କ ମନ ଓଟାରିବା ପାଇଁ ତିନିଟାଯାକ ସମୁଦ୍ର ପ୍ରତିଯୋଗିତା କରୁଛନ୍ତି - ଖୁସି ମନରେ ବେଳକୁ ବେଳ ନୂଆ ନୂଆ ରଙ୍ଗର ଶାଢ଼ି ପିନ୍ଧି ନିଜ ନିଜ ରୂପରେ ଖଣ୍ଡମଣ୍ଡଳକୁ ଝଲସାଇ ଦେଉଛନ୍ତି। ସେ ଶାଢ଼ିର ରଙ୍ଗ କେତେବେଳେ ରୂପେଲି ତ କେତେବେଳେ ସୁନେଲି। ଆକାଶର ଓଢ଼ଣାଦିଆ ଲାଜୁଆ ମୁହଁର ଛାପ ବି ବେଳେବେଳେ ପଡ଼ିଯାଉଛି ସେ ଶାଢ଼ିର ରଙ୍ଗ ଉପରେ। କେଉଁ କେଉଁଠି ଶାଢ଼ି ଦେଖାଯାଉଛି ଗାଢ଼ ନୀଳ - ଆଉ କେଉଁଠି ଦିଶୁଛି ଈଷତ୍ ମଳିନ। ନୀଳ ଆକାଶକୁ ପଛ ପାଖର ପର୍ଦାକରି ସମୁଦ୍ର ଭିତରେ ଗୋଟିଏ ବିରାଟ ପଥରଖଣ୍ଡ ଉପରେ ଠିଆହୋଇ ରହିଛି ବିବେକାନନ୍ଦଙ୍କ ସ୍ମୃତି ମନ୍ଦିର ରୂପ ନେଇ ଠିଆହୋଇଛି ଗାନ୍ଧିଜୀଙ୍କ ଚିତାଭସ୍ମ ଉପରେ ଗଢ଼ିଉଠିଥିବା ସ୍ମୃତିପୀଠ। ଆଉ ଦୁଇ ସ୍ମୃତିପୀଠ ମଝିରେ ଖାପଛଡ଼ା ହୋଇ ଦେଖାଯାଉଛି ବନ୍ଦିଶାଳାର ପ୍ରାଚୀର ପରି ଏକ ଉଚ୍ଚ ପ୍ରାଚୀର। ଆଗରୁ ତ ଆମେ କନ୍ୟାକୁମାରୀ କନ୍ୟା କେଉଁ କାଳରୁ ବରଣମାଳାଟିଏ ଧରି ବର ଅପେକ୍ଷାରେ ଠିଆ ହୋଇ ରହି ପଥର ପାଲଟିଯାଇଛନ୍ତି - ଆଗେଇଗଲୁଁ ସେଇ ପ୍ରାଚୀରର ଦ୍ୱାର ଆଡ଼କୁ କନ୍ୟାକୁମାରୀଙ୍କୁ ଦେଖିବା ଆଶାରେ।

ଛୋଟ ଗୋଟିଏ ସୁନ୍ଦର ଗୋପୁରମ୍ - 'ଜୋତା କାଢ଼ୋ' କହିଲା ଜଣେ ପୁଲିସ ସିପାହୀ। ଜୋତା କାଢ଼ିଲୁଁ ଆଉ ରଖିଦେଲୁଁ ଜୋତା ଜଗିବା ପାଇଁ ଠିକା ନେଇଥିବା ଠିକାଦାର ପାଖରେ ତା'ର ପାଉଣା ଦେଇ। ସିପାହୀ ପୁଣି କହିଲା - 'ସାର୍ଟ ଉତାରୋ, ବେନିୟନ୍ ନିକାଲୋ।' ଭାବିଲୁଁ ଖୋଲା ପିଠିରେ ବିଧା କଷିଦେବ ନାଇଁ ତ? ଏଗୁଡ଼ାଙ୍କୁ କି ବିଶ୍ୱାସ - ତଥାପି କାମିଜି ଉତାରି ଗେଞ୍ଜି ନିକାଲିଲୁଁ। ଏଥର କିନ୍ତୁ ସିପାହି କହିଲା - 'ପୋ-ପୋ....।' ରକ୍ଷା ହେଲା ପେଣ୍ଟ ବଦଳାଇ ଦକ୍ଷିଣିଆ ଲୁଙ୍ଗି ପିନ୍ଧିବାକୁ କହିଲାନି। ଅଗଣା ଡେଇଁ ଆଗକୁ ଚାଲିଲୁଁ।

ଅନ୍ଧାରୁଆ ଘର। ଭିତରକୁ ଯିବାପାଇଁ ବାଁ ପାଖରେ ଦଉଡ଼ିବନ୍ଧା ଗୋଟିଏ ଗଳି। ଖୁଣ୍ଟମାନଙ୍କରେ ମିଞ୍ଜି ମିଞ୍ଜି ହୋଇ ଘିଅଦୀପ ଜଳୁଛି। ପଛଆଡୁ ଠେଲାପେଲା। ଆଗରେ ଜଣେ ଥାଳିଟିଏ ଧରି ରଡୁଥିଲା - 'ପୈସା ଡାଲୋ...'। ଥାଳି ମଝିରେ ଜଳନ୍ତା ଦୀପଟିଏ - ଆଉ ଦୀପ ଚାରିଆଡ଼େ ଟଙ୍କା ପଇସାର କୁଢ଼। କ'ଣ କରିବି, ପଇସା ଡାଳିବି ନା ନାହିଁ, ଭାବିଲାବେଳକୁ ପଛରୁ ପୁଣି ଚିତ୍କାର ଶୁଭିଲା - 'ଏର୍‌ରା ସ୍ୱାମୀ-ପୋ-ପୋ...।' ଆଲୁଅ ଅନ୍ଧାରର ଲୁଚକାଳି ଖେଳ। କିଛି ବାଟ ଆଗେଇଗଲା ପରେ ଡାହାଣ ପାଖେ ଦେଖାଯାଉଥିଲା ଗୋଟିଏ କୋଠରିର କବାଟ। କବାଟକୁ ବାଟ ଓଗାଳି ରହିଥିଲେ କେହି ଜଣେ ପଣ୍ଡା ପଡ଼ିହାରୀ - ଦିଅଁଙ୍କୁ ଚଢ଼ାଇଲାବେଳେ ନଡ଼ିଆ ଯେମିତି ଦେଖାଯାଏ ମୁଣ୍ଡର ସେପରି ଏକ ରୂପ ନେଇ। କବାଟର ଦି'ଆଡ଼େ ଦି'ଧାଡ଼ି ଦଉଡ଼ିବନ୍ଧା ଅର୍ଗଳି ଏବଂ ମାଳେ ଲେଖାଏଁ ଘିଅଦୀପ। ଗୋଟିଏ ଦଉଡ଼ି ଉପରେ ଝୁଙ୍କିପଡ଼ି ଖୋଲା କବାଟ ଦେଇ ଘର ଭିତରକୁ ଉଙ୍କିମାରିଲେ ଦେଖାଯାଉଛନ୍ତି ସେଇ କୁମାରୀ କନ୍ୟା - ଅପରୂପା ସୁନ୍ଦରୀ ଖୋଲା ମୁହଁ ବିବାହ ବେଳର ବେଶଭୂଷା। ନାକର ହୀରାଗୁଣା ଦୀପର ମିଞ୍ଜି ମିଞ୍ଜି ଆଲୁଅରେ ଝଲସି ଯାଉଛି। ବେଦୀ ଉପରେ ଠିଆହୋଇ ଡାହାଣ ହାତରେ ଧରିଛନ୍ତି ବରଣମାଳା ଆଉ ବାଁ ହାତରେ ଶାଢ଼ି କୁଞ୍ଚକୁ ମୁଠେଇଛନ୍ତି। ସାମାନ୍ୟ ଲାଜୁଆ ଢଙ୍ଗ। ଟିକିଏ ଭଲ କରି ଅନେଇଲାବେଳକୁ ପଣ୍ଡା ପଡ଼ିହାରୀ ହାତ ହଲାଇ ଇସାରା ଦେଲେ ଆଗେଇ ଯିବାକୁ। ଆଉ ପଛର ଠେଲାପେଲା ସାଙ୍ଗରେ ପୁଣି ଗର୍ଜି ଉଠିଲା - 'ପୋ-ପୋ...।' ଉପାୟହୀନ ହୋଇ ବାଁ ପାଖ କାନ୍ଥ ଆଡ଼କୁ ଆମେ ଘୁଞ୍ଚିଗଲୁଁ ଆଉ ଆଗେଇଗଲୁଁ ଟିକିଏ ଆଗରେ ଥିବା ଦରଜା ଦେଇ ବାହାରର ଖୋଲା ଅଗଣାକୁ। ଏଇ ଅଗଣା ହିଁ ବିଶାଳ ପ୍ରାଚୀରରେ ଘେରା ହୋଇଛି, ଆଉ ସେଇ ପ୍ରାଚୀର ଭିତରେ ରହିଛନ୍ତି ଏଇ କନ୍ୟା କୁମାରୀ - ଊଣା ଅଧିକେ ମଣିଷ ହାତରେ ଏକ ବନ୍ଦିନୀ।

ଗେଞ୍ଜି, କାମିଜ ଆଉ ଜୋତା ସଂଗ୍ରହ କଲାବେଳେ ଦେଖିଲୁଁ କନ୍ୟାକୁମାରୀଙ୍କ ସାନ ବଡ଼ ଫଟୋ ସବୁ ବିକ୍ରି ହେଉଛି। କି ସୁନ୍ଦର ସେ ଚିତ୍ରପଟର ରୂପ - ଠିକ୍ ଲକ୍ଷ୍ମୀଠାକୁରାଣୀଙ୍କ ପରି। ବାହାରେ ଯେତେ ଯେଉଁଠି ପଚାରିଲୁଁ - ଏ କୁମାରୀ କନ୍ୟାଟି କିଏ, କାହାର ଝିଅ, ତାଙ୍କ ନାଁ କ'ଣ ଆଉ ସେ କାହାକୁ ଅପେକ୍ଷା କରି ରହିଛନ୍ତି - କେହି ଠିକ୍ ଉତ୍ତର ଦେଇପାରିଲେ ନି। କେହି କେହି କହିଲେ ଯେ ବାଣାସୁରକୁ ଡରି ଦେବତାମାନେ ଯେତେବେଳେ ଶିବଙ୍କ ପାଖକୁ ଗଲେ ଶିବ କୁଆଡ଼େ ଶକ୍ତିଙ୍କ ସହାୟତାରେ ଏହି ତ୍ରିଭୁବନମୋହିନୀ କନ୍ୟାଙ୍କୁ ସୃଷ୍ଟି କରିଥିଲେ ବାଣାସୁରକୁ ମାରିବା ପାଇଁ। ପୁଣି କେହି କେହି କହିଲେ ଯେ ଶିବଙ୍କୁ ପାଇବା ପାଇଁ ପାର୍ବତୀ ତାଙ୍କ ପୂର୍ବଜନ୍ମରେ ଏଇ କନ୍ୟାର ରୂପ ନେଇ ଜନ୍ମିଥିଲେ ଆଉ ଶିବ ତାଙ୍କୁ ବାହା ହେବେ

ବୋଲି କହି କୁଆଡ଼େ ଗଲେ ଯେ ପୁଣି ଦେଖାଦେଲେନି। ମୋତେ କିନ୍ତୁ ସାଆନ୍ତେ, ଏକଥା ସବୁ ବଡ଼ ଅଡୁଆ ଲାଗିଲା। ଶିବ ଯଦି ଶକ୍ତିଙ୍କ ସହାୟତାରେ କନ୍ୟାଙ୍କୁ ସୃଷ୍ଟି କରିଛନ୍ତି, ତେବେ ତ ଏ କନ୍ୟା ଶିବଙ୍କ ଝିଅ - ସେ ପୁଣି କେମିତି ଶିବଙ୍କୁ ବାହା ହେବା ପାଇଁ ରହିଁ ରହିବେ ? ଶିବଙ୍କୁ ପାଇବା ପାଇଁ ଯେଉଁ କନ୍ୟା ଜନ୍ମ ନେଇଥିଲେ ସେ ତ ହିମାଳୟଙ୍କ କନ୍ୟା ଉମା-ଅପର୍ଣ୍ଣା-ପାର୍ବତୀ- ସେ କାହିଁକି ଅବା ତାଙ୍କ ତପସ୍ୟା ପାଇଁ ହିମାଳୟ ଛାଡ଼ି କୁମାରିକା ଆସିବେ ?

ଭାବୁଥିଲି ତିନି ସମୁଦ୍ରର ସଙ୍ଗମସ୍ଥଳୀ ପାଖରେ ଯେତେବେଳେ ଠିଆହୋଇ ରହିଛନ୍ତି, ସେ କଣ ତେବେ ଜଳଧିତନୟା ? ତା' ବି ତ ହୋଇପାରେ ନା; ଯେହେତୁ ଜଳଧିତନୟା ନିଜେ ଲକ୍ଷ୍ମୀ ଠାକୁରାଣୀ। କିନ୍ତୁ କାହାକୁ ଏ କଥା ପଚାରିବି ? ଆଉ କିଏ ଅବା ସେ କାଳର କଥା କହି ପାରିବ ? ଜାଣିବା ପାଇଁ ମନ ଖାଲି ଘାଣ୍ଟି ଚକଟି ହେଉଥାଏ ଯାହା। ତମେ ସାଆନ୍ତେ ସେତେବେଳେ ମୋର ମନେପଡୁଥିଲ। ଭାବୁଥିଲି ସାଆନ୍ତେ ସିନା ଆଗପଛ ସବୁକଥା ଜାଣନ୍ତି - ପଲକ ପଡୁନଥିବା ବଡ଼ ବଡ଼ ଆଖିରେ ଭୂତ ଭବିଷ୍ୟତ ସବୁ ଦେଖିପାରନ୍ତି - ସୂର୍ଯ୍ୟଚନ୍ଦ୍ର ତାରକା ଆଉ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କଲାବାଲା ସିଏ ତାଙ୍କଠାରୁ ତ ସମୟର ଜନ୍ମ; ତାଙ୍କୁ କେଉଁ କଥା ଅଗୋଚର। କିନ୍ତୁ ସେ ତ ପାଟି ଫିଟାଇବେ ନି। ତୁନିତାନି ହୋଇ ରହିଲି। କଥାଟି କିନ୍ତୁ ସର୍ବଦା ମନ ଭିତରେ ଖଳବଳ ହେଉଥାଏ। ଏବେ ତ ଏ ଆଡ଼ିକି ଆସିଥିଲି, ଭାବିଲି, ଏତେ ବାଟ ଆସିଛି ଯେତେବେଳେ ସାଆନ୍ତେଙ୍କୁ ଟିକିଏ ଭେଟିଆସେ। ଆସିଲି। ତମକୁ ଦେଖିଛି କି ନାଇଁ, ତମେ ବି ହସିଦେଲ। ମୁଁ ଭାବିଲି ତମେ ତ ସମସ୍ତଙ୍କ ପେଟ ଚିପିବାବାଲା ମୋ ମନକଥା ଜାଣି ହୁଏତ ହସିଦେଲ। ତା'ପରେ ତମ ମୁହଁକୁ ଆଉଥରେ ଅନାଇଛି କି ନାହିଁ, ମନ ଭିତରେ କିଏ ଜଣେ କେଞ୍ଚମାରି କହିଲା - 'ହଇରେ, ଇଏ ନିଜେ ସେ ନଟକୂଟିଆ ନୁହନ୍ତି ତ ? ଲୁଚିଛି ନାଁ ପାଦ ଦି'ଟା ଦିଶୁଛି। ସେ ଆଡ଼ିକି ଝିଅକୁ ଠିଆକରେଇ ଦେଇ ଏଇଠି ଆସି ନଜାଣିଲା ପରି ବସି ଯାଇଛନ୍ତି; ଆଉ ସମସ୍ତଙ୍କୁ ଦେଖି ହସୁଛନ୍ତି।' ଧରାପଡ଼ିଗଲ ସାଆନ୍ତେ - ଏବେ ସତ କହିଲ, ତମେ ନା ନୁହଁ !

ଏ ଅବତାରର ସବୁ କାମ ସରିଗଲା ବୋଲି ପ୍ରଦ୍ୟୁମ୍ନ ପରି ପୁଅକୁ ବି ମାରିଦେଲା ପରେ ସେଦିନ ତମେ ଯୋଉ ଲୋକଦେଖଣାରେ ଶୋଇଲ ଆଉ ତ ଉଠିଲନି। ଜରା ଶବର ଶର ମାରିଦେଲା। ସେ କହୁଥିଲା ଶର କାଢ଼ିନେଇ ସେ ସେଇ ଘା'କୁ ଭଲ କରିଦେବ। ତମେ କିନ୍ତୁ ନାହିଁ କଲ - ଅର୍ଜୁନକୁ ଡକେଇଲ, ଆଉ ଲୋକଆଖିରେ ମରିଗଲ ବୋଲି ବାହାନା କଲ। ତମ ଦେହକୁ ପୋଡ଼ିଗଲାରୁ ପିଣ୍ଡ ପୋଡ଼ିଲାନି ବୋଲି ସେମାନେ ତମ ପିଣ୍ଡକୁ ସମୁଦ୍ରରେ ଭସେଇ ଦେଲେ। ତମେ ତା'ପରେ ସମୁଦ୍ରରେ ଭାସି ଆସି ଏଇ ନୀଳାଚଳ ପାଖରେ କେଉଁଠି କୂଳରେ ଲାଗିଗଲ। ସେତିକି ସିନା

କୁହାଯାଉଛି - ମଝି ବାଟ ? ସେଇଠି ତ ସବୁ ରହସ୍ୟ ! ଦ୍ୱାରକା ପାଖରେ ତ ତମେ ସମୁଦ୍ରରେ ପଡ଼ିଲ - ତା'ପରେ କୁମାରିକା ନ ଦେଇ ଏ ନୀଳାଚଳଧାମକୁ ଆସନ୍ତ କେମିତି ? ଆଉ ସେଇ କୁମାରିକାରେ ହିଁ ପାଲା ଲଗେଇଦେଲ - ରସିକଶିରୋମଣି ! କେରଳ କନ୍ୟାମାନେ ତ ଗୋପକନ୍ୟାଙ୍କ ପରି - ଯେମିତି ସୁନ୍ଦରୀ, ସେମିତି ସରଳା, କର୍ମଠ ସେମିତି ଚଞ୍ଚଳ ଚପଳ। ତମକୁ ଦେଖି ସେମାନେ ଆଉ ଛାଡ଼ି ନଥିବେ। କେରଳର ନାରିକେଳ ବନ ଭିତରେ ତାଙ୍କ ସାଙ୍ଗରେ ରାସକ୍ରୀଡ଼ା ଲଗାଇ ଦେଇଥିବ।

ରାଧାଙ୍କ ପରି ଏଇ କନ୍ୟାକୁମାରୀ ବି ତମ ପ୍ରେମରେ ପାଗଳିନୀ ହୋଇ ଯାଇଥିବେ। ବିବେକାନନ୍ଦ ରକ୍‌ରେ କନ୍ୟାକୁମାରୀଙ୍କ ପାଦଚିହ୍ନଟିଏ ଅଛି। ତମେ ଯେମିତି ଥରେ ରାଧିକାଙ୍କୁ କାନ୍ଧରେ ବସାଇ ନେଇ ବାଟରେ ତାତିଲା ବାଲିରେ ଠିଆକରାଇ ଦେଇଥିଲ, ଏ କନ୍ୟାକୁମାରୀଙ୍କୁ ବି ସେମିତି ସମୁଦ୍ରରେ କାନ୍ଧରେ ବୋହି ନେଇ ସେ ପଥର ଉପରେ ଠିଆକରାଇଦେଇ ନାହିଁତ ? କନ୍ୟାକୁମାରୀ ନିଶ୍ଚୟ ବାହା ହେବା ପାଇଁ ଜିଦ୍ ଧରି ବସିଥିବେ - ତମେ ବି ରାଜି ହେଇଯାଇଥିବ। ତା'ପରେ କଣ କଲ ଟିକେ ଶୁଣେ !

ଗୋପରୁ ଯେତେବେଳେ ମଥୁରାକୁ ଗଲ ଗୋପବାଳୀମାନେ ଆଉ ରାଧା ଯେତେ ମନାକଲେ ତାଙ୍କ କଥା ତ ଶୁଣିଲନି। ସେତେବେଳେ କଣ କହିଥିଲ ମନେଅଛି ନା ? ଦିନ କଣ୍ଟ କରିଥିଲ - କହିଥିଲ, ଆଉ ସାତ ଦିନ ପରେ ନିଶ୍ଚୟ ଫେରିଆସିବ। ଫେରିଗଲ ? ସେମାନେ ବାଟ ଚାହିଁ ଚାହିଁ ସାରା ଜୀବନ ବିତାଇ ଦେଲେ। ତମେ ସେଇ କାଳିଆ ତ ! ଆଉ ମନେଅଛି ନା - ରାତିରେ ଆସିବ କହି କେମିତି ରାଧାଙ୍କୁ ରାତି ଉଜାଗର ରଖାଇଦିଅ। ବିଚାରୀ ରାତି ସାରା ଦୀପଟିଏ ଜାଳି ଏମିତି ତମ ବାଟ ଚାହିଁ ଚାହିଁ ବସିଥାଆନ୍ତି ଠିକ୍ ଏଇ କନ୍ୟାକୁମାରୀଙ୍କ ପରି - ଝିଙ୍କାରିଟିଏ ରଡ଼ି ଦେଲେ କି କେଉଁଠୁ ଆବାଜଟିଏ ଆସିଲେ ଭାବନ୍ତି ତମେ ଆସିଗଲ ବୋଲି। ତମର ପ୍ରେମ ହିଁ ଏମିତି ବିଚିତ୍ର।

ବାହା ହେବା ଦିନ ଘୋଷଣା କରି ଦେଇ କହିଥିବ - 'ହେଇ ଆସୁଛି'। କହିଥିବ - 'ବାହା ଦିନ ସବୁ ସାଜସରଞ୍ଜାମ ଠିକ୍‌ଠାକ୍ କରି ରଖିଥିବ - ମୁଁ ବାରାତ୍ ନେଇ ପହଞ୍ଚିଯିବି।' ସେ ବିଚାରୀ ସେ ଆଡ଼ିକି ବରଣମାଳା ଧରି ଠିଆହୋଇଛନ୍ତି - ଆଉ ତମେ ଏଇଠିକି ଆସିଲ ଯେ କଣ ପାଇଲ କେଜାଣି, ସେ କନ୍ୟାକୁ ପୂରାପୂରି ଭୁଲିଗଲ - ନାଇଁ ? କଣ ଶବରକନ୍ୟାମାନଙ୍କ ପାଲରେ ପଡ଼ିଗଲ ? ନା ଜୟଦେବ ଚୈତନ୍ୟ ଗୋସାଇଁ ଆଉ ପଞ୍ଚସଖାଙ୍କ ଆଳରେ ? ଏଇ ରସପୁଳି ଆଉ କଣ ସବୁ ଛପନଭୋଗ, ଛତିଶାନିଯୋଗ ଯୋଗୁଁ ନୁହେଁ ତ ?

ଟିକିଏ ଗଲ ସାଆନ୍ତେ, ଦେଖିବ କନ୍ୟାକୁମାରୀ କେମିତି ଠିଆହୋଇ ପଥର ପାଲଟିଗଲେଣି। ଭଲ ହେଲା ପଥର ପାଲଟିଗଲେ - ନଇଲେ ଏଇ ଯୋଉ ଯୁଗ! କେତେ ବେଳକୁ କେଉଁ କଥା। କିନ୍ତୁ ଯାଇ ଦେଖିବ କେମିତି ତାଙ୍କ ଘରି ଆଡ଼ିକି କାନ୍ଥବାଡ଼ ଦିଆ ହୋଇଯାଇଛି। ତମେ ତ ବଙ୍ଗୋପସାଗର ବାଟ ଦେଇ ଗଲ ସେଇ ବାଟରେ ଫେରିଆସିବ ବୋଲି; ସେ ପୂର୍ବଦିଗର ସମୁଦ୍ରକୁ ଅନାଇ ଠିଆହୋଇଥିଲେ। ସେ ବାଟ ବି ସେମାନେ ବନ୍ଦ କରି ଦେଇଛନ୍ତି। କ'ଣ ନା ସମୁଦ୍ର ଭିତରୁ ତାଙ୍କ ହୀରା ନାକଗୁଣାର ଝଲକରେ କାଳେ କେହି ଦୁଷ୍ଟ ଟାଣି ହୋଇ ଆସିବେ ବୋଲି। ଆଉ ଯାଅ ଦେଖିବ, କେମିତି ଏଇ 'ପୈସା ଡାଲୋ' ମାନେ ତାଙ୍କୁ ହଟହଟା କରୁଛନ୍ତି ତାଙ୍କ ନାଁରେ ବ୍ୟବସାୟ ଆରମ୍ଭ କରି ଦେଇଛନ୍ତି।

ଅହଲ୍ୟା ତ କୁଆଡ଼େ ପଥର ପାଲଟିଯାଇଥିଲେ ଯେ ଶ୍ରୀରାମଙ୍କ ପାଦ ଲାଗିବାର ପୁଣି ଜୀଇଁଉଠିଲେ। ତମେ ଯାଅ ସାଆନ୍ତେ ସେଇଠିକି - ତମର ହାତ ବାଜିଲାକ୍ଷଣି କନ୍ୟାକୁମାରୀ ବି ଜୀଇଁଉଠିବେ, ଆଉ ତମେ କନ୍ୟାକୁମାରୀଙ୍କୁ ତମ ସଙ୍ଗରେ ଏଇ ଓଡ଼ିଶାକୁ ନେଇଆସିବ। ସେଇଟା ହିଁ ମୋର ଗୁହାରି।

କିନ୍ତୁ ଗୋଟିଏ କଥା ସାଆନ୍ତେ- ଗଲେ ସେଆଡ଼େ ରହିଯିବ ନାହିଁ ଟି - ଶ୍ୱଶୁରଘରେ କୁଣିଆ ହୋଇ! ତମେ ତ ମା' ଯଶୋଦାଙ୍କୁ ବି ଭୁଲିବାବାଲା - ଏ ଓଡ଼ିଶାକୁ ଭୁଲିଯିବା ପାଇଁ କେତେ ବେଳ?

କନ୍ୟା କୁମାରୀଙ୍କୁ ନେଇ କେରଳରେ ଖାଲି ଗୋଟାଏ ଭଅଁର ବୁଲି ଦେଇ ଫେରିଆସିବ। ତ୍ରିବାନ୍ଦ୍ରମରେ କୋବଲମ୍ ବିଚ୍ ଦେଖିବ - ଆମ ପୁରୀ ତୁଳନାରେ କଣ ସେ ଯେ! ତଥାପି ଦେଖିନେବ। ଆଉ ପଦ୍ମନାଭ ମନ୍ଦିର ଦେଖିବ। ସେ ବେଢ଼ା ଭିତରେ କିନ୍ତୁ ପାର୍ଥ ସାରଥିଙ୍କ ମନ୍ଦିର ରହିଚି - ସେଇଠି ବସିଯିବ ନାହିଁ ଟି! ଆଉ ଯିବ ପେରିଆର୍ ହ୍ରଦ - ସେଇଟା ବି କୋଉ ଆମ ଚିଲିକାଠୁ ଆହୁରି ସୁନ୍ଦର ଯେ! ତଥାପି...। କିନ୍ତୁ ପାରିବ ଯଦି ଦେଖି ଆସିବ ଶବରୀ ମେଳା। ନିବିଡ଼ ଅରଣ୍ୟ ଭିତରେ ଏକ ଶବରୀ ପର୍ବତ - ଯେଉଁଠି ଶ୍ରୀରାମଚନ୍ଦ୍ର ଶବରୀ ହାତରୁ ମିଠା ବରକୋଳି ଖାଇଥିଲେ। ପାଖରେ ପମ୍ପା ସରୋବର ଆଉ ସେ ପାଖରେ ହିଁ ଆୟାପ୍ପାନଙ୍କ ମନ୍ଦିର। ଦେଖିବ ହଜାର ହଜାର ହିନ୍ଦୁ ମୁସଲମାନ ଆଉ ଖିରସ୍ତାନ ଯୁବକ ତୀର୍ଥଯାତ୍ରୀ ଭାବରେ କେମିତି ଦଳ ଦଳ ହୋଇଚାଲିଛନ୍ତି 'ଶବରୀ ମେଳା'ରେ ଆୟାପ୍ପାନଙ୍କୁ ଦେଖିବା ପାଇଁ। ସେମାନେ ରାହା ଧରିଥିବେ - 'ସ୍ୱାମୀ ଏ ଶରଣଂ ଆୟାପ୍ପାନ।' ପିନ୍ଧିଥିବେ କଳା, ନେଳି କିମ୍ବା ଗେରୁଆ ଲୁଙ୍ଗି, ଖୋଲା ଛାତିରେ ପଡ଼ିଥିବ ତୁଳସୀ କିମ୍ବା ରୁଦ୍ରାକ୍ଷର ମାଳା, ୪୧ ଦିନ କାଳ କ୍ଷିଅର ନାହିଁ ବୋଲି ସମସ୍ତଙ୍କ ମୁହଁରେ ଦାଢ଼ି। ଦିନକୁ ଥରେ ହବିଷ। ୪୧ ଦିନ ଯାକ କେହି ଝିଅଙ୍କ ମୁହଁ

ଦେଖିବେନି - ତଳେ ଶୋଇବେ। ମୁଣ୍ଡରେ ବୋହିଥିବେ ନଡ଼ିଆ ଭିତରେ ଭର୍ତ୍ତି ହୋଇଥିବା ଗୁଆ ଘିଅ - ଆୟାପ୍ପାନଙ୍କ ଦେହରେ ମକର ସଂକ୍ରାନ୍ତି ଦିନ ଢାଳିବେ ବୋଲି - ଆଉ ତା'ସଙ୍ଗରେ ଥିବ ନିଜ ଖାଦ୍ୟସାମଗ୍ରୀର ବୁଜୁଳା। ସାମ୍ୟବାଦୀ କେରଳରେ ସବୁ ଧର୍ମର ଏ ଯୁବକମାନଙ୍କ ଧର୍ମପ୍ରାଣତା ଆଉ ସବୁ ଧର୍ମରେ ସମ ବିଶ୍ୱାସ ଅନୁଭବ କରି ଆସିବ ସାଆନ୍ତେ! କିନ୍ତୁ ଆୟାପ୍ପାନଙ୍କ ପାଖକୁ ତ ନିଜେ ଯାଇ ପାରିବନି; ଯେହେତୁ ସେମାନେ କନ୍ୟାକୁମାରୀଙ୍କୁ ସେଠାକୁ ଛାଡ଼ିଦେବେନି। ଖାଲି ସାନ ସାନ ଝିଅ ଆଉ ଦରବୁଢ଼ୀଙ୍କଛଡ଼ା ଅନ୍ୟ ସ୍ତ୍ରୀଲୋକଙ୍କୁ ସେଠାକୁ ଯିବା ମନା। ତେବେ କେରଳର ଗାଁଗହଳି ଭିତରକୁ ନିଶ୍ଚୟ ଯିବ। ଦେଖିବ ସମୁଦ୍ର କେମିତି ଏଇଠି ସେଇଠି ସ୍ଥଳଭାଗ ଭିତରକୁ ପଶିଯାଇଛି ଆଉ ଚାରିଆଡ଼େ ନିଘଞ୍ଚ ନାରିକେଳ ବଣ। ସେ ବଣ ଭିତରେ କି ସୁନ୍ଦର ଗୋଟିକିଆ ଘରମାନ - ଚିତ୍ରପଟରେ ଅଙ୍କାହୋଇଥିବା ଚିତ୍ର ପରି ସେ ସବୁ ଦେଖି ଆସିବ। ଆଉ ଦେଖିବ ଏଇ କେରଳ କନ୍ୟାମାନଙ୍କୁ। ଆଣ୍ଠୁଯାଏ ଲମ୍ବା କୁଞ୍ଚୁକୁଞ୍ଚୁଆ ବାଳ - ଖୋଲା ଛାଡ଼ିଦେଇଥିବେ, କଳା କଳା ସୁନ୍ଦର ଆଖି ହସ ହସ ମୁହଁ। ତମକୁ ଦେଖିଲା ପରେ ସେମାନେ ଯଦି ତମକୁ ଆଉ କନ୍ୟାକୁମାରୀଙ୍କି ଛାଡ଼ି ନ ଦିଅନ୍ତି? - ନାରିକେଳ ବଣରେ ତମ ଦିହିଙ୍କି ଦୋଳିରେ ବସାଇ ଦୋଳଯାତ୍ରା ମାନି ବସନ୍ତି! ତଥାପି ଚାଲି ଆସିବ ସାଆନ୍ତେ - ସାମ୍ୟବାଦୀ ରାଜ୍ୟ ତ! କେତେବେଳେ କେଉଁ କଥା!

କନ୍ୟାକୁମାରୀଙ୍କୁ ଓଡ଼ିଶା ଆଣିଲା ପରେ କେଉଁଠି ରହିବ ସାଆନ୍ତେ? ସେ ବଡ଼ଦେଉଳ ଭିତରେ? ମୋ ସାନକୁହା ମାନିବ ଯଦି ଆଉ ଗୋଟିଏ କଥା କହିବି। ଶବରର କୁଡ଼ିଆ ଘରୁ ତମେ ଆସିଥିଲ ରଜାଙ୍କର ବିରାଟ ମନ୍ଦିର ଉଆସକୁ। ସର୍ବହରାର ତମେ ଥିଲ ଦେବତା - ପୁଣି ଥରେ ଫେରିଯାଅ ସେଇ ଶବର ଘରକୁ ସାଆନ୍ତେ। ତମକୁ ଆଉ କନ୍ୟା କୁମାରୀଙ୍କି ଦେଖି ସେମାନେ ଅନେକ କାଳ ପରେ ହଜିଲା ପୁଅ ବୋହୂଙ୍କୁ ପାଇଲା ପରି ଖୁସିରେ ନାଚି ଉଠିବେ। ଆଉ ତମେ ବି ନିଜ ଆଖିରେ ଏଇ ଆଦିବାସୀ କନ୍ଧ ଶବରଙ୍କ ଭୋକିଲା ଅବସ୍ଥା ଦେଖିବ - ତାଙ୍କ ସୁଖ - ଦୁଃଖରେ ଭାଗୀ ହେବ।

'ବଡ଼ଦେଉଳ' ବଡ଼ଦାଣ୍ଡର ଦିନ ଗଲାଣି ସାଆନ୍ତେ! ଆଉ ସେ 'ପହଣ୍ଡ଼', 'ମଣୋହି', 'ମଣିମା', 'ଛାମୁ'ର ଦିନ ବି ଗଲାଣି। ବର୍ଷକୁ ଥରେ ସୁନା ରୂପା ମଣ୍ଡି ହୋଇ ରଥରେ ବିଜେ କରିବା ବଦଳରେ ନିତିଦିନ ସାଇକେଲରେ ବାହାରିବ ସାଆନ୍ତେ - ପଛଆଡ଼େ କନ୍ୟାକୁମାରୀଙ୍କି ବସାଇ। ଦେଖିବ ଆଜିର ପିଲାଏ ତମ ପଛରେ କେମିତି ଗୋଡ଼ାଇଯିବେ - ଦେବାନନ୍ଦ, ଶଶି କପୁର ଆଉ ଗାଭାସ୍କାର, କପିଳ ଦେବଙ୍କ ପଛରେ ଗୋଡ଼ାଇ ଗଲା ପରି। ମଣିଷର ସଖା ତୁମେ, ସାରଥୀ ତୁମେ - ଏଥର ଦେଖାଦେବ ଜନତାର ସାଥୀ ରୂପରେ।

ହେଇ ତ ମୋ କଥା ଶୁଣି ହସିଦେଉଛ। ସେଇଥି ପାଇଁ ତ ବେଳେବେଳେ ତମକୁ ବିଶ୍ୱାସ କରି ହୁଏନି - ସବୁ କଥାକୁ ଏମିତି ହସରେ ଉଡ଼ାଇ ଦିଅ ବୋଲି। ଲୋକେ କହନ୍ତି, ତମ ଉପରେ ଥରେ ବିଶ୍ୱାସ ଜନ୍ମିଗଲେ ତମ ପାଖରେ ସୁଖ ଦୁଃଖ, ମାନ ଅଭିମାନ ସବୁ ସଅଁପିଦେଲେ ମଣିଷ ଏ ସଂସାରରୁ ତରିଯାଏ। ଆଉ ମୁଁ ଏ କଥା ବି ଶୁଣିଚି, ତମର ଚରଣ ତଳେ ଶରଣ ନେଇଥିବା ଲୋକଙ୍କୁ ତମେ ତମର ବାହା ତୋଳି ଅଭୟ ଆଶ୍ରାଦିଅ - ଏପରିକି ସେମାନଙ୍କ ଦାସ ବି ବନିଯାଅ। କିନ୍ତୁ ସେସବୁ ଜାଣିଥିଲେ ବି ତମକୁ ପୂରାପୁରି ବିଶ୍ୱାସ କରିପାରିଲେ ତ ସାଆନ୍ତେ।

# ପେଡ଼ିଭରା ତମ୍ପ

ସୁସଜ୍ଜିତ କୋଠରି ଭିତରକୁ ସନ୍ତର୍ପିତ ପଦକ୍ଷେପରେ ପଶି ଆସୁ ଆସୁ ବିଚାରକମଣ୍ଡଳୀକୁ ଅଭିବାଦନ ଜଣାଇ ନୂତନ ପ୍ରାର୍ଥୀ କହିଲା - "ଗୁଡ୍ ମର୍ଣ୍ଣିଙ୍ଗ୍ ସାର୍ସ୍ ।'

ବ୍ୟକ୍ତି ନିରୀକ୍ଷା ବୋର୍ଡ଼ର ଚେୟାରମେନ୍ ଶ୍ରୀ ମେନନ୍ ମୁହଁରେ ହସ ଫୁଟାଇ ଉତ୍ତର ଦେଲେ - 'ଗୁଡ଼ ମର୍ଣ୍ଣିଙ୍ଗ'; ଆଉ ତାଙ୍କ ସାମନାରେ ଖାଲିପଡ଼ିଥିବା ଚୌକି ଆଡ଼କୁ ହାତ ଦେଖାଇ କହିଲେ - 'ଆସ, ସେଇଠି ବସ ।'

ଦେହକୁ ଅଣ୍ଟା ଉପରୁ ସାମାନ୍ୟ ଆଗକୁ ଝୁଙ୍କାଇ ଆଣି ପ୍ରାର୍ଥୀ ସସମ୍ଭ୍ରେମେ କହିଲା - 'ଥେଙ୍କ୍ ୟୁ ସାର୍' ଏବଂ ଅତି ସନ୍ତର୍ପଣରେ ଚୌକିଟିରେ ବସିଗଲା । ଅର୍ଦ୍ଧମଣ୍ଡଳାକାରରେ ବସିଥିବା ବିଚାରକମଣ୍ଡଳୀଙ୍କ ଛଅଯୋଡ଼ା ଆଖି ତାକୁ ସତେ ଯେମିତି କୋରିପକାଉଥିଲେ ।

ପ୍ରାର୍ଥୀର ଦରଖାସ୍ତ ଫର୍ମରେ ଆଖି ବୁଲାଉ ବୁଲାଉ ଚେୟାରମେନ୍ ସାଦର ସମ୍ଭାଷଣ କଲେ - 'ତମର ନାମ ?'

ପ୍ରାର୍ଥୀ ଉତ୍ତର ଦେଲା - 'ନାଗେନ୍ଦ୍ର ଶର୍ମା' ।

'ଏନ୍.ଏ.ରୁ 'ନ' ବି ତ ହୋଇପାରିବ। ଟିପ୍‌ପଣୀ କାଟିଲେ ଚେୟାରମେନ୍। ଆଉ ପ୍ରଶ୍ନକଲେ - 'ନଗେନ୍ଦ୍ରର ଅର୍ଥ କଣ କହିଲ ?'

'କିନ୍ତୁ ମୋ ନାଁ ନାଗେନ୍ଦ୍ର ସାର୍ ।'

'ହଁ, ତମ ନାଁଆ ତ ନାଗେନ୍ଦ୍ର - ବେଶ୍ ବଢ଼ିଆ ନାଁଆଟାଏ ବି । ଆଚ୍ଛା ନାଗେନ୍ଦ୍ରର ଆକ୍ଷରିକ ଅର୍ଥ କ'ଣ ?'

'ନାଗମାନଙ୍କର ଇନ୍ଦ୍ର ବା ରାଜା'

'କିଏ ?'

'ଅନନ୍ତ ବାସୁକୀ ।'

'ବେଶ୍ - ଆଉ ନଗେନ୍ଦ୍ର ? ଜିଜ୍ଞାସା କଲେ ଚେୟାରମେନ୍ ।'

'ଉଁ.... ମୋ ନାଁ ନଗେନ୍ଦ୍ର ନୁହେଁ ସାର୍ - ନାଗେନ୍ଦ୍ର ।'

'ହେଲା ଯେ - ନଗେନ୍ଦ୍ରର ଅର୍ଥ କଣ ବୋଲି ଚେୟାରମେନ୍ ପଚାରୁଛନ୍ତି - ହିମାଳୟୋ ନାମ ନଗାଧିରାଜଃ। ଶୁଣିଛ ?' ଇଙ୍ଗିତ ଦେବାକୁ ଯାଇ ପାଖ ଚୌକିରୁ ଟିପ୍‌ପଣୀ କାଟିଲେ ପ୍ରଫେସର ସିଂହ। ପ୍ରାର୍ଥୀ କିନ୍ତୁ ତୁନି ହୋଇ ରହିଗଲା।

ଦରଖାସ୍ତ ଫର୍ମର ସାରାଂଶ ତଳେ ଆଖି ପକାଇ ଚେୟାରମେନ୍ ଗୁଣୁଗୁଣାଇଲେ - 'ହବି - ଫଟୋଗ୍ରାଫି।'

'ଓ ଫଟୋଗ୍ରାଫି - ଖୁବ୍ ଭଲ!' ମୁଣ୍ଡଟେକି ପଚାରିଲେ - 'କି କ୍ୟାମେରା ବ୍ୟବହାର କର ?'

ପ୍ରାର୍ଥୀ ଉତ୍ତର ଦେଲା - 'ମୋର କୌଣସି କ୍ୟାମେରା ନାହିଁ ସାର୍'।

'ତେବେ ହବି ଫଟୋଗ୍ରାଫି ବୋଲି ଦେଇଛ।'

'ଆମ କଲେଜର ଫଟୋଗ୍ରାଫି କ୍ଲବରେ ମୁଁ ଜଣେ ମେମ୍ବର ଥିଲି ସାର୍।'

'ଆଚ୍ଛା, ସେ କ୍ଲବରେ କି କି କ୍ୟାମେରା ଥିଲା ?'

ଏଥର ଛେପ ଢ଼ୋକିଲା ଶର୍ମା। କିଛିକ୍ଷଣ ପରେ କହିଲା, 'ଆଇସୋ-ଆଇସୋଲି।'

'ଆଉ।'

ଶର୍ମା ନିରୁତ୍ତର ହୋଇଯାଇଥିବା ଦେଖି ଚେୟାରମେନ୍ ପୁଣି ପଚାରିଲେ- 'ଆଇସୋଲି କ'ଣ ଭାରତରେ ତିଆରି ?'

'ନାଇଁ ସାର୍ ଜର୍ମାନ୍'

'କେଉଁ ଫିଲ୍ମ ବ୍ୟବହାର କରୁଥିଲ ?' ଏଥର ପଚାରିଲେ ଚେୟାରମେନ୍।

'ଜର୍ମାନ୍' - ପୁଣି ଉତ୍ତର ଦେଲା ଶର୍ମା।

'ଫଟୋଗ୍ରାଫିକ୍ ଫିଲ୍ମ ଭାରତରେ ତିଆରି ହୁଏ ନା ନାହିଁ ? ଆଉ ଯଦି ତିଆରି ହୁଏ, କେଉଁଠି ହୁଏ କହି ପାରିବ ?'

ଶର୍ମାର ମୁହଁ ଶେତାପଡ଼ିଯାଉଥିଲା। ତାକୁ ଉତ୍ସାହ ଦେବାକୁ ଯାଇ ଚେୟାର୍‌ମେନ୍ କହିଲେ - 'ଜାଣି ନ ଯଦି କିଛି ଚିନ୍ତାକରନି।' ତା ପରେ ତାଙ୍କ ବାଁ ପାଖରେ ବସିଥିବା ପ୍ରଫେସର ସିଂହଙ୍କୁ ପ୍ରଶ୍ନ ପଚାରିବାକୁ ଇଂଗିତ ଦେଲେ।

ପ୍ରଫେସର ସିଂହ ଆରମ୍ଭ କଲେ - 'ଆଚ୍ଛା ମିଷ୍ଟର୍ ଶର୍ମା... ତମ ଘର ଉତ୍ତରପ୍ରଦେଶରେ ନା ? ମୋରାଦାବାଦ। ଦିଲ୍ଲୀରୁ ମୋରାଦାବାଦ କେତେ ଦୂର ?

'୧୨୦ ମାଇଲ୍।'

'ବାଟରେ ତ କେତେଗୁଡ଼ିଏ ସହର ପଡ଼େ। ଗୋଟିଏ ବଡ଼ ତୀର୍ଥସ୍ଥାନ ମଧ୍ୟପଡ଼େ। କେଉଁ କେଉଁ ନଦୀ ପଡ଼େ କହିଲ ?'

'ଯମୁନା।'

'ଆଉ ?'

'ଛୋଟ ଛୋଟ ନାଳସବୁ - ମୁଁ ସେ ସବୁ ନାଁ ଜାଣିନି।'

'ଗୋଟାଏ ଖୁବ୍ ବଡ଼ ନଦୀ ପଡ଼େ।'

ଶର୍ମା ଚୁପ୍ ହୋଇଯାଇଥିବା ଦେଖି ଡଃ ଚୌଧୁରୀ ଚେତାଇଦେବାକୁ ଚେଷ୍ଟା କରି କହିଲେ- 'ବଡ଼ ପବିତ୍ର ନଦୀ।'

ଶର୍ମା କହିଲା- 'ରାମ ଗଙ୍ଗା।'

'ରାମ ଗଙ୍ଗା ତ ଉପରକୁ ରହିଗଲା।'

ତୁନି ହୋଇ ରହିଗଲା ଶର୍ମା।

'ଗଙ୍ଗାନଦୀ ନ ଡ଼େଇଁ ତୁମେ ମୋରାଦାବାଦ ଯାଇପାରିବ ? ଗଙ୍ଗାକୂଳରେ ହାପୁରଗଡ଼ ମୁକ୍ତେଶ୍ୱର - ରାମନବମୀବେଳେ ସେଠାରେ ଖୁବ୍ ବଡ଼ ଯାତ୍ରା ହୁଏ। ଜାଣିନ ?' - ଅସହିଷ୍ଣୁ ହୋଇ କହିଗଲେ ଡଃ ଚୌଧୁରୀ।

ଶର୍ମା କହିଲା... 'ମୁଁ ବଡ଼ ଦୁଃଖିତ ସାର୍।'

ଏଥର ଡକ୍‌ଟର ଚୌଧୁରୀ। ସେ ପଚାରିଲେ - 'ଶର୍ମା, ସର୍ଦାର ପଟେଲଙ୍କ ନାମ ଶୁଣିଛ ?'

ଶର୍ମା କହିଲା - 'ହଁ।'

'ସେ କିଏ ?'

'ରାଜାମାନଙ୍କୁ ବୁଝାଇ ସୁଝାଇ ସେ ଭାରତରେ ଦେଶୀୟ ରାଜ୍ୟମାନଙ୍କୁ ମିଶାଇଥିଲେ' - ଉତ୍ତର ଦେଲା ଶର୍ମା।

'ଆଚ୍ଛା - ପୋଲିସ୍ ଏକ୍‌ଶନ କେଉଁଠି ହୋଇଥିଲା ?'

'ପୋଲିସ୍ ଏକ୍‌ଶନ୍ ? ମୁଁ ଜାଣିନି।'

'ନିଜାମଙ୍କ ହାଇଦ୍ରାବାଦ ଭାରତରେ ମିଶିଲା କେମିତି ?'

ଶର୍ମା ନିରୁତ୍ତର।

'ଆଚ୍ଛା ଜାମ୍ମୁକାଶ୍ମୀର ଭାରତରେ କେମିତି ମିଶିଲା କହିଲ ?'

'ଶେଖ ଅବଦୁଲ୍ଲା ମିଶାଇଦେଲେ।'

'କାଶ୍ମୀରକୁ ଭାରତରେ ମିଶାଇଦେବା ପାଇଁ ଶେଖ ଅବଦୁଲ୍ଲାଙ୍କ କି କ୍ଷମତା ଥିଲା ଯେ ସେ ମିଶାଇଦେବେ ?'

'ପାକିସ୍ତାନୀମାନେ ଅନୁପ୍ରବେଶ କଲାରୁ।'

'ହେଲା ସେମାନେ ଅନୁପ୍ରବେଶ କଲେ। ତେବେ ଶେଖ ଅବଦୁଲ୍ଲା କାହିଁକି ମିଶାଇଦେବେ ?'

ଶର୍ମା ପୁଣି ଚୁପ୍ ହୋଇଗଲା। ତା'ପରେ ପୁଣି କେତେ ପ୍ରଶ୍ନ - 'ମୌଲାନା ଆଜାଦ କିଏ ?' 'ପଣ୍ଡିତ ମାଲବ୍ୟ ?' 'ଇକ୍‌ବାଲ' - 'ଭଗତ ସିଂ'...

ଏଥର କୃଷ୍ଣମୂର୍ତ୍ତିଙ୍କ ପାଳି। ସେ ପଚାରିଲେ... 'ମିଷ୍ଟର ଶର୍ମା - କ୍ୟାମେରାର ଲେନ୍‌ଥ ୨.୮ କହିଲେ କଣ ବୁଝାଏ କହିଲ ?'

'କାଚର ଗୋଲେଇ।'

'ତେବେ ୪.୬ ? ୪.୬ କଣ ୨.୮ରୁ ବେଶି ଶକ୍ତିଶାଳୀ ?'

କ୍ୟାମେରା ସମ୍ବନ୍ଧରେ ଆଉ କେତେ ପ୍ରଶ୍ନର ସଠିକ୍ ଜବାବ ନ ପାଇ ସେ ଅଧୈର୍ଯ୍ୟ ହୋଇ ଟିପ୍‌ପଣୀ ଦେଲେ - 'ଜାଣିନ ଯଦି ହବି ଫଟୋଗ୍ରାଫି ବୋଲି କାହିଁକି ଲେଖିଥିଲ ?

ଶର୍ମା କହିଲା - 'ଆଇ ଏମ୍ ସରି ସାର୍।'

'ହେଉ - ଆଉ ଗୋଟାଏ କହିଲ ? ପବନରେ କଣ ସବୁ ଅଛି ?'

'ନାଇଟ୍ରୋଜେନ୍, ଅକ୍‌ସିଜେନ୍।'

'ଆଉ ?'

'କାର୍ବୋନ୍ ଡାଇଓକ୍‌ସାଇଡ୍।'

'ସେଇଟା ପରା ମଣିଷ ପାଇଁ ବିଷ ? କାହା ପାଇଁ ସେଇଟା ଭଲ ?'

ଏମିତି ଏମିତି ଆହୁରି କେତେ।

ତା'ପରେ ପ୍ରଫେସର ସେନ୍। ସେନ୍ କହିଲେ - 'ଆଚ୍ଛା ଶର୍ମା - ତମେ କଣ ଆମ ସମାଜର କିଛି ଗୋଳମାଳ ଦେଖିପାରୁଛ ? ମାନେ ବିଶୃଙ୍ଖଳା। ... ଏଇ ଠକାମି, ଭଣ୍ଡାମି। ବୁଝିପାରୁଛ ନା ମୁଁ କଣ କହୁଛି ? ଉଚ୍ଛୃଙ୍ଖଳତା। ତମେ ହେଲ ଜଣେ ବୈଜ୍ଞାନିକ। ବୈଜ୍ଞାନିକମାନେ ସବୁ କଥା ତନଖି ଦେଖନ୍ତି। ତମେ କଣ ଭାବୁଛ ?'

ଶର୍ମା କହିଲା - 'ସାର୍ - ମୁଁ.... ଆଉ ଥରେ କୁହନ୍ତୁ।'

'ଏଇ ଗରିବୀ - ଧନୀ ଆହୁରି ବେଶି ଧନୀ ହେଉଛି - ଗରିବ ଆହୁରି ଗରିବ। କ୍ଷମତାଲିପ୍‌ସା ବୁଝୁଛ ତ ମୁଁ କଣ କହୁଛି ? ତମେ କଣ ଭାବୁଛ ?'

'ସାର୍, ମୁଁ....'

ପ୍ରଫେସର ସେନ୍ ମୁହଁରୁ କଥାଟିକୁ ଛିଣ୍ଡାଇ ଆଣି କହିଲେ - 'ତମେ ହେଲ ଜଣେ ଯୁବକ; ଆମେ ହେଲୁ ସବୁ ବୁଢ଼ା। ତମମାନଙ୍କ ହାତରେ ଭାରତର ଭବିଷ୍ୟତ - ଏ ପୃଥିବୀର ଭବିଷ୍ୟତ। ବୁଝୁଛ ତ ମୁଁ କଣ କହୁଛି ? ତମେ ଜଣେ ବୈଜ୍ଞାନିକ - ମୁଁ ସେଥିପାଇଁ କହୁଛି। ତମେ କଣ କହୁଛ ?'

ଦୁଇ ହାତର ପାପୁଲିକୁ ଶୂନ୍ୟରେ ବୃତ୍ତାକାରରେ ବୁଲାଇ ଆଣି ପୁଣି କହିଲେ - 'ତମେ କଣ ଭାବୁଛ ?'

'ସାର୍, ମୁଁ.......'

ଶର୍ମା 'ମୁଁ' କହିଲାବେଳକୁ ପ୍ରଫେସର ସେନ୍ ପୁଣି ଥରେ କହିଉଠିଲେ - 'ହେଉ ହେଲା ଯୁବକ ବନ୍ଧୁ - ଏବେ କିଛି କହିବା ଦରକାର ନାହିଁ। ତମେ ଏକଥା ଟିକିଏ ଭାବ। ସବୁ ଛାରଖାର ହୋଇଗଲାଣି। ସେ ସମାଜ ନାହିଁ। ଗାନ୍ଧୀ-ଟେଗୋର ! ତମେ କଣ ଭାବୁଛ ? ତମ ସାଙ୍ଗରେ ଚିହ୍ନା ପରିଚୟ ହେବାରୁ ମୁଁ ଅତ୍ୟନ୍ତ ଖୁସି।' ତା'ପରେ ସେ ହାତ ବଢ଼ାଇଦେଲେ ଡକ୍‌ଟର ସିରାଜୁଦ୍ଦିନ୍‌ଙ୍କ ଆଡ଼କୁ।

ଏଥର ପଚରାଗଲା - 'ସବୁଜ ବିପ୍ଳବ କଣ ?' 'ଶ୍ୱେତ ବିପ୍ଳବ ?' ଚେଆର୍‌ମେନ୍ ହସି ହସି ଯୋଡ଼ୁଥିଲେ - 'ନୀଳ ବିପ୍ଳବ ?'

ଶର୍ମା ତୁନି ହୋଇଯାଇଥିବା ଦେଖି କହିଲେ - 'ସମୁଦ୍ରର ରଙ୍ଗ ? ସମୁଦ୍ରରେ କଣ ଥାଏ ? ମାଛ-ନା ? ନୀଳ ବିପ୍ଳବ ହେଉଛି ବେଶି ମାଛ ଉତ୍ପାଦନ। ଆଉ ଶ୍ୱେତ ବିପ୍ଳବ ବେଶି ଦୁଧ ?'

ଶର୍ମା କହିଲା - 'ଥେଙ୍କ୍ ୟୁ ସାର୍।'

ଚେଆର୍‌ମେନ୍ ଶେଷ ପ୍ରଶ୍ନ କଲେ - 'କୁତବ୍ ମିନାର ବେଶି ଉଚ୍ଚ ନା ଇଣ୍ଡିଆଗେଟ୍ ?

ଶର୍ମା ଉତ୍ତର ଦେଲା - 'କୁତବମିନାର।'

ଚେୟାରମେନ୍ କହିଲେ - 'ସାବାସ୍ - ଧନ୍ୟବାଦ।'

'ଥେଙ୍କ୍ ୟୁ ସାର୍ !'

ଶର୍ମା ଫେରିଯାଉଥିଲା। ସେହି ଛ' ଯୋଡ଼ା ଆଖି ତା' ସୁନ୍ଦର ସୁଟ୍‌ଟିକୁ ଗ୍ଭଲି ଏବଂ କବାଟ ଖୋଲା ଢଙ୍ଗକୁ ଅନାଇଥିଲେ। କବାଟ ବନ୍ଦ ହେଲା ପରେ ଚେୟାର୍‌ମେନ୍ କହିଲେ - 'ଦେଖିଲେ ସୁଟ୍‌ଟିକୁ ? କେଉଁ କୋଚିଂ କ୍ଲାସବାଲା ବୋଧହୁଏ ସଜେଇଛି। ଗରମ ଦିନରେ ଏମିତି ସୁଟ୍ ! ସୁଟ୍‌ର କାଟଛାଟ ଦେଖିଲେ ନା ? ଆଉ ସରକାର ସାର୍ଭିସ୍ କମିଶନ୍‌କୁ ଦୋଷ ଦେବେ ଯେ ଆମେ ଏ ବେଶଭୂଷାକୁ ପ୍ରୋତ୍ସାହନ ଦେଉଛୁ।

'ଆଛା କେତେ ମାର୍କ, ପ୍ରଫେସର ସିଂହ, ଡଃ ଚୌଧୁରୀ.... ନିହାତି ଫମ୍ପା, ଗଭୀରତା ଆଦୌ ନାହିଁ'- କହିଲେ ଜଣେ।

'ଚଟ୍‌ପଟ୍ ନୁହେଁ - କଥାଟିକୁ ସହଜରେ ଧରିପାରୁନି। ପ୍ରତିକ୍ରିୟା ଅତି ମନ୍ଥର। ନ ଜାଣିଲା କଥାକୁ ସିଧାସଳଖ ମୁଁ ଜାଣିନି ବୋଲି କହୁନି.' - ମନ୍ତବ୍ୟ ଦେଲେ ଆଉ ଜଣେ।

'ତନଖି ଦେଖିବା ଶକ୍ତିର ଅଭାବ। କୌଣସି କାମରେ ନେତୃତ୍ୱ ଦେଇ ପାରିଲା ଭଳି ଆଦୌ ନୁହେଁ...'

'ତେବେ ଚେହେରା ଚଳିଚଳଣ ବେଶ୍ ଭଲ। କହିବା ଢଙ୍ଗ ମଧ୍ୟ ମନ୍ଦ ନୁହେଁ - ସାଧାରଣ ? ସାଧାରଣ...'

x x x x

ଡାକରା ଘଣ୍ଟି ବାଜିବାର କିଛିକ୍ଷଣ ପରେ କବାଟ ପୁଣି ଖୋଲିଲା। ଏଥର ପ୍ରବେଶ କଲା ଜଣେ ଝିଅ। ଗୋରା ପତଳା - ସବୁଜ ରଙ୍ଗର ଟେରିଲିନ୍ ଶାଢ଼ି; ମେଚିଂ ହାତକଟା ବ୍ଲାଉଜ୍ - ବବ୍ ହେଆର୍ ଈଷତ୍ ହଳଦିଆ ହେଣ୍ଡ୍ ବେଗ୍।

'ଗୁଡ୍ ମର୍ଣିଙ୍ଗ୍ ସାରସ୍।'

'ଗୁଡ୍ ମର୍ଣିଙ୍ଗ୍.... କମ୍ ଇନ୍... ଟେକ୍ ୟୋର୍ ସିଟ୍। କୌଣସି ଲେଡ଼ି ମେମ୍ବର୍ ନାହାନ୍ତି ବୋଲି ତମେ କ'ଣ ଦୁଃଖିତ ?' ହସି ହସି ପଚାରିଲେ ଚେୟାର୍‌ମେନ୍। ସାମାନ୍ୟ ହସି ଶାଢ଼ି ସଜାଡୁ ସଜାଡୁ ଝିଅଟି ଜବାବ୍ ଦେଲା - 'ନୋ ସାର୍।'

'ତମ ନା ?'

'କୁମାରୀ ସୁଦ୍।'

'ବେଶ୍, କେଉଁ ଚାକିରି ପସନ୍ଦ କରୁଛ ? ଓଃ ପୋଲିସ୍ ସାର୍ଭିସ୍। ଆଛା, ହବି ଗୀତ ନାଚ। ନାଚ ! ଆଚ୍ଛା ! ଆମଦେଶରେ କ'ଣ ସବୁ ଶାସ୍ତ୍ରୀୟ ନୃତ୍ୟ ଅଛି କହିଲ ?'

'କେରଳର କଥାକଳି, ତାମିଲନାଡୁ ଏବଂ କର୍ଣ୍ଣାଟକର ଭାରତ ନାଟ୍ୟମ୍, ଆନ୍ଧ୍ରର କୁଚିପୁଡ଼ି, ଓଡ଼ିଶୀ, ଆସାମର ମଣିପୁରୀ, ଉତ୍ତରର କଥକ। ମୋତେ କଥକ ଖୁବ୍ ଭଲ ଲାଗେ, ଆଉ ମୁଁ କଥକ ହିଁ ନାଚେ।' ବେଶ୍ ସହଜ ସରଳଭାବେ କହିଗଲା କୁମାରୀ ସୁଦ୍।

'ତମେ ତ ଏବେ କଲେଜରେ ଲେକ୍‌ଚରର୍ ଅଛ - ପୋଲିସ୍‌କୁ ଯିବାକୁ କାହିଁକି ଚାହୁଁଛ ?'

'ମୁଁ କେଉଁ କାନ୍ଥଘେରା ଘର ଭିତରେ ବାନ୍ଧି ହୋଇ ରହିବାକୁ ଚାହେଁନା। ମୁଁ ଜଣେ କାମକରା ଝିଅ - ମୁଁ ଚାହେଁ ଗତି - ମୁକ୍ତ ଆକାଶ ତଳେ ଶୃଙ୍ଖଳିତ ଗତି। ବାହାରେ ପୁଅମାନେ ଯେଉଁ କାମସବୁ କରୁଛନ୍ତି, ମୁଁ ବି ସେସବୁ କରିବାକୁ ଚାହେଁ।'

'ଆଚ୍ଛା ! ତମେ ତେବେ କଣ ଭାବୁଛ ଯେ ପୁଅମାନେ ବି ରନ୍ଧାବଢ଼ା ଶିଖିବେ, ପୁଅଝିଅ ସମ୍ଭାଳିବେ - ଘରକରଣା...'

ଚେୟାର୍‌ମେନ୍‌ଙ୍କ ମୁହଁରୁ କଥା ଛଡ଼ାଇନେଲା କୁମାରୀ ସୁଦ୍। କହିଲା, 'ନିଶ୍ଚୟ - ପୁଅମାନଙ୍କୁ ନିଶ୍ଚୟ ରନ୍ଧାବଢ଼ା ଶିଖିବାକୁ ହେବ। ମୁଁ ବି ଦିନେ ବାହାହେବି - ମୁଁ ଚାହେଁନା ଯେ ପୋଲିସ୍ କାମରୁ ମୁଁ ଯେତେବେଳେ ଘରକୁ ଫେରିବି, ମୋ ସ୍ୱାମୀ

ଚୌକିରେ ବସିରହି ତା'ଗୋଡ଼ ଲମ୍ବାଇଦେବ ଆଉ ମୁଁ ତା ଯୋତାରୁ ଫିତା ଖୋଲିଦେଇ ଯୋତା କାଢ଼ିଦେବି, ମୋଜା କାଢ଼ିଦେବି; ବାବୁ ଟାଏ ଗଣ୍ଠି ଖୋଲିପାରିବେନି ଯେ ଟାଏ ହୁଗୁଳା କରିଦେବି ଆଉ ରନ୍ଧାଘରକୁ ଦଉଡ଼ିବି ସ୍ୱାମୀସେବା କରିବାପାଇଁ - ନୋ ନେ'ଭର୍।'

କ୍ଷଣିକ ପାଇଁ ମନେହେଲା ଚେୟାରମେନ୍‌ଙ୍କ ଆଖି ତେଜିଉଠିଲା। ସେ କିନ୍ତୁ ଆଉ କିଛି ନ ପଚାରି ପ୍ରଫେସର ସିରାଜୁଦ୍ଦିନ୍‌ଙ୍କ ଆଡ଼କୁ ହାତ ବଢ଼ାଇଦେଲେ। ପ୍ରଫେସର ସିରାଜୁଦ୍ଦିନ୍ ରାଜନୀତିବିଜ୍ଞାନ ସମ୍ବନ୍ଧରେ କେତେ ପ୍ରଶ୍ନ କଲେ - ନାମିୟାରେ କଣ ସବୁ ଚାଲିଛି - ରୋଡ଼େସିଆ ସଙ୍ଗରେ ସଂଘର୍ଷର କାରଣ - ସୋମାଲିଆରେ ତ ସୋଭିଏତ୍ ରୁଷର ମିଲିଟାରୀ ଘାଟି ଥିଲା; ଏବେ କାହିଁକି ସୋମାଲିଆ ହାଭାନାଠାରେ ନିରପେକ୍ଷ ଦେଶମାନଙ୍କ ସମ୍ମେଳନ ନ ବସି ଅନ୍ୟ କେଉଁଠିକି ଘୁଞ୍ଚାଇନେବା ପାଇଁ ଅନୁରୋଧ କରୁଛି - ମିଶର କାହିଁକି ଆରବ ଲିଗ୍‌ରୁ ଅଲଗା ହୋଇଗଲା - ସେଣ୍ଟୋ ଇସଲାମିକ୍ ଅର୍ଦ୍ଧଚନ୍ଦ୍ର କଣ - ଭୁଟ୍ଟୋଙ୍କ ମୃତ୍ୟୁପରେ ଭାରତ ଉପରେ ପୁଣି କୌଣସି ବିପଦ ଦେଖାଦେବାର ସମ୍ଭାବନା ଅଛି କି - ଆଉ କେତେ।

ବେଶ୍ ଉତ୍ତର ଦେଇଗଲା କୁମାରୀ ସୁଦ୍।

ତା'ପରେ ଡକ୍‌ଟର ଚୌଧୁରୀ। ସେ ପଚାରିଲେ - ସୁଷମ ଖାଦ୍ୟ କଥା; ଆଉ କେଉଁ ଖାଦ୍ୟମାନଙ୍କରେ ଏ-ବି-ସି ଇତ୍ୟାଦି ଖାଦ୍ୟପ୍ରାଣ ସବୁ ରହିଛି - ଶାଗରେ କ'ଣ ଅଛି - ଭାରତରେ ତ ଅନେକେ ମାଛ ମାଂସ ଖାଆନ୍ତିନି, ସେମାନେ ପ୍ରୋଟିନ୍ କେଉଁଠୁ ପାଆନ୍ତି ଇତ୍ୟାଦି।

ଏଥର ପଡ଼ିଲା ପ୍ରଫେସର ସେନ୍‌ଙ୍କ ପାଳି। ସେ କହିଲେ - 'ମିସ୍ ସୁଦ୍, ତମେ ତ ଆଜି ସମାଜର ଅବସ୍ଥା ଦେଖୁଛ। ବିଶୃଙ୍ଖଳା - ଚୋରି ଡକାଏତି ଲାଞ୍ଚ ମିଛ - ମିରଟ୍ ବିଶ୍ୱବିଦ୍ୟାଳୟ କଥା... ତମେ କ'ଣ ଭାବୁଛ ?'

ମିସ୍ ସୁଦ୍ - 'ଆପଣ କ'ଣ ପଚାରୁଛନ୍ତି ମୁଁ ବୁଝିପାରୁନି।'

ପ୍ରଫେସର ସେନ୍ - 'ମୁଁ ପଚାରୁଛି ତମେ ଏ ସମାଜର ଅବସ୍ଥା ଦେଖି କ'ଣ ଭାବୁଛ ? ଏଇ ଦେଖ ଶିଖମାନଙ୍କ ଭିତରେ ଅକାଲି-ନିରଙ୍କରୀ, ମୁସଲମାନଙ୍କ ଭିତରେ ସିହା-ସୁନି, କମ୍ୟୁନିଷ୍ଟମାନଙ୍କ ଭିତରେ ସି.ପି.ଆଇ., ସି.ପି.ଆଇ. (ଏମ୍.), ସି.ପି.ଆଇ. (ଏମ୍.ଏଲ୍.), କଂଗ୍ରେସ ଭିତରେ .. ତମେ କ'ଣ ଭାବୁଛ ?'

'ସାର୍ ମୁଁ.....'

'ତରବର ହୁଅନି - ଭାବ। ତମେ ହେଲ ଭାରତର ଭବିଷ୍ୟତ। ଭାରତ କ'ଣ ଥିଲା ଟେଗୋର, ଗାନ୍ଧୀ ଜବାହରଲାଲ - ତମେ କ'ଣ ଭାବୁଛ ?'

'ସାର୍, ଆପଣ କଣ ଜାଣିବାକୁ ଚାହୁଁଛନ୍ତି? କଅଣ କହିବାକୁ ଚାହୁଁଛନ୍ତି ଯେ ଆମେ ଆଗେ ଖୁବ୍ ଭଲ ଥିଲୁଁ, ଆଉ ଏବେ ଧ୍ୱଂସମୁଖକୁ ଚାଲିଛୁ?'

ପ୍ରଫେସର ସେନ୍ ପୁଣି କ'ଣ କହୁଥିଲେ; କିନ୍ତୁ ମିସ୍ ସୁଦ୍ ବିଚାରକମଣ୍ଡଳୀର ପ୍ରତ୍ୟେକ ସଭ୍ୟଙ୍କୁ ଗୋଟାକ ପରେ ଗୋଟାଏ ଅନାଇ ମୁହଁରେ ତାଚ୍ଛଲ୍ୟଭରା ହସ ଖେଳାଇ ଆରମ୍ଭ କରିଦେଇଥିଲା - 'ଆମେ କେବେ ବଡ଼ ନଥିଲୁ - କେବେ ଭଲ ନଥିଲୁଁ। ସବୁ ଗୋଟାଏ ବିରାଟ୍ ଧୋକାବାଜି। ଆମର ଜାତୀୟଚରିତ୍ର ସବୁଦିନ ଦୋମୁହାଁ। ଆମେ ଗୋଟିଏ କଥା କହୁ, ଆଉ ଗୋଟିଏ କଥା କରୁଁ। ଆମେ କାହାକୁ ଶୁଣିବାକୁ ଚାହୁଁନା - ଆମେ ସତ୍ୟର ସନ୍ଧାନ ନେବାକୁ ଚାହୁଁନା। ଆମେ ନିଜେ ଯାହା ସତ୍ୟ ବୋଲି ଭାବୁଁ ଅଥବା ଧରିନେଉ, ତାକୁ ଅନ୍ୟ ଉପରେ ଲଦିଦେଉ - କେବଳ ଜୋର୍‌ଜବରଦସ୍ତି। ଆମେ ଯାହା ଦେଖିବାକୁ ଚାହୁଁ କେବଳ ସେତିକି ଦେଖୁଁ - ଯାହା ଦେଖିବାକୁ ଚାହୁଁନା ସେ ଆଡ଼ିକି ଆଖି ବୁଜିଦେଉଁ। ଆମେ...'

ପ୍ରଫେସର ସେନ୍ ଚୌକିର ହାତରେ କହୁଣୀ ଲଦି ହାତପାପୁଲିରେ ମୁହଁ ଥାପି ଆଖି ବୁଜି ଚୁପ୍‌ଚାପ୍ ଶୁଣିଯାଉଥିଲେ। ଧୀର ସ୍ୱରରେ କହିଲେ, 'ଏଇ ନିଅ ରାମରାଜ୍ୟ...'

ଝାମ୍ପିପଡ଼ିଲା କୁମାରୀ ସୁଦ୍। କହିଲା, 'ରାମରାଜ୍ୟ ସାର୍? ଆପଣ ସେଇଟାକୁ ଆଦର୍ଶ ବୋଲି ଗ୍ରହଣ କରୁଛନ୍ତି? ରାମାୟଣ ବି ଆମର ଜାତୀୟ ଚରିତ୍ର ଚିହ୍ନାଇଦିଏ। ଶ୍ରୀରାମ ଓ ଭରତଙ୍କ ଭ୍ରାତୃସ୍ନେହ ଆଦର୍ଶ ବୋଲି କହୁଁ; କିନ୍ତୁ ସୁଗ୍ରୀବକୁ ବାଳି ବିରୁଦ୍ଧରେ, ବିଭୀଷଣକୁ ରାବଣ ବିରୁଦ୍ଧରେ ଭାଇକୁ ଭାଇର ବିରୁଦ୍ଧରେ ଲଢ଼ାଇ ଦେବାକୁ ଭଲପାଉଁ, ସୂର୍ପଣଖାର ନାକ କାନ କାଟିବା କଣ ଉଚିତ୍ ହେଲା ସାର୍? ରାମ ଯଦି ସତରେ ଜାଣିଥିଲେ ଯେ ସୀତା ପବିତ୍ର ଲୋକେ କଣ କହୁଛନ୍ତି ବୋଲି ତାଙ୍କୁ ବଣରେ ଛାଡ଼ିଦେଇ ଆସିବା କ'ଣ ଉଚିତ୍ ହେଲା? ଏଇଟା କଣ ସତ୍ୟର ଅନୁସନ୍ଧାନ ସାର୍? ମହାଭାରତରେ ବି କର୍ଣ୍ଣଙ୍କୁ କୁନ୍ତୀ....'

'ଉପନିଷଦ୍ - ବେଦାନ୍ତ - ବୁଦ୍ଧ, ଅଶୋକ-' ଗୁଣଗୁଣେଉଥିଲେ ପ୍ରଫେସର ସେନ୍। ପାଣିସୁଅକୁ ନୂଆ ବାଟ ଦେଖାଇଦେଲେ ସେ ଯେମିତି ସେଆଡ଼ିକି ମାଡ଼ିଚାଲେ - ଗଛ ପତ୍ର ଲଟା ବଟା ଭସାଇନିଏ, ମିସ୍ ସୁଦ୍ ଏଥର ଆକ୍ରମଣକଲା ଜାତିଭେଦ ପ୍ରଥାକୁ, ଅସ୍ପୃଶ୍ୟତାକୁ, କଳିଙ୍ଗଯୁଦ୍ଧର ନୃଶଂସତାକୁ ଏବଂ ବିଭୀଷିକାକୁ। କହିଲା, 'କିଏ ଆଜି ନିଶ୍ଚିତଭାବେ କହିବ ଯେ ଯୁଦ୍ଧପରେ ଅଶୋକଙ୍କ ମନରେ ପ୍ରକୃତରେ ଜ୍ଞାନର ଉଦୟ ହୋଇଥିଲା? ହୁଏତ ସେ ଯୁଦ୍ଧର ଭୟାବହତା ଦେଖି ସେ ନିଜ ଶକ୍ତି ଉପରେ, ଯୁଦ୍ଧ ଉପରେ ଆସ୍ଥା ହରାଇଥିଲେ, ଭାବୀ ପରାଜୟର ଭୟରେ ଏବଂ ଗୋଟିଏ ନୂଆ ନୀତି ନୂତନ ପନ୍ଥା ଗ୍ରହଣ କଲେ - ରୁଷ୍ ଆମେରିକାର

ନିରସ୍ତ୍ରୀକରଣ ଆଲୋଚନା ପରି। ନହେଲେ ବୁଦ୍ଧଙ୍କ ପରି ରାଜ୍ୟଭାର ଛାଡ଼ିଦେଇ ସେ ଭିକ୍ଷୁ ହେଲେନାହିଁ କାହିଁକି ? ଯୁଦ୍ଧଭୂଇଁରେ ତାଙ୍କମନର ପରିବର୍ତ୍ତନ ହେଲା ବୋଲି କେମିତି କହିବା ସାର୍ ? ଅବଶ୍ୟ ବୁଦ୍ଧ ଥିଲେ ମହାନ - କିନ୍ତୁ ତାଙ୍କୁ ତ ଆମ ସମାଜ ଗୋଟାପଣେ ହିମାଳୟର ସେପଟକୁ ଫିଙ୍ଗିଦେଲା - ସମୁଦ୍ରରେ ଭସାଇ...'

'ସ୍ୱର୍ଣ୍ଣଯୁଗ - କାଳିଦାସ, ଭବଭୂତି - ଶଙ୍କର - ବିବେକାନନ୍ଦ' ଚେତାଉଥିଲେ ପ୍ରଫେସର ସେନ୍।

'ଜୟଚନ୍ଦ୍ର-ମହମ୍ମଦ ଘୋରୀ, ବାବର-ମୀରକାଶିମ'- ଜବାବ ହେଲା ମିସ୍ ସୁଦ୍।

'ଗାନ୍ଧି - ଜବାହର - ବିନୋବା - ଜେ.ପି.....।'

ନିଆଁରେ ସତେ ଯେମିତି କେହି ଘିଅ ଢ଼ାଳିଦେଲା। ତେଜିଉଠିଲା କୁମାରୀ ସୁଦ୍। କହିଲା - 'ଏଇ ତ ଆମ ତଥାକଥିତ ସହାବସ୍ଥାନ ସାର୍। ଗାନ୍ଧୀ ବିଶ୍ୱାସ କରୁଥିଲେ କୁଟୀର ଶିଳ୍ପରେ, ଆଉ ଜବାହର ବିଶ୍ୱାସ କରୁଥିଲେ ଗୁରୁଶିଳ୍ପରେ। ଗାନ୍ଧୀ ବିଶ୍ୱାସ କରୁଥିଲେ ଆଶ୍ରମ ଶିକ୍ଷାରେ, ମୌଳିକ ଶିକ୍ଷାରେ - ଜାବାହର ବିଶ୍ୱାସ କରୁଥିଲେ ଆଧୁନିକତାରେ, ବିଜ୍ଞାନରେ, ଏଟମ୍‌ରେ। ଗାନ୍ଧୀ ଜାଣିଥିଲେ ଜବାହର ପ୍ରଧାନମନ୍ତ୍ରୀ ହେଲେ ତାଙ୍କ କୁଟୀରଶିଳ୍ପ ଯିବ, ନିଶାନିବାରଣ ଯିବ, ଅହିଂସା ନୀତି ଯିବ, ତଥାପି ସେ କାହିଁକି କହୁଥିଲେ ଯେ ଜବାହର ତାଙ୍କ ଉତ୍ତରାଧିକାରୀ ? ସେ କଣ ଜାଣିନଥିଲେ ଯେ ତାଙ୍କ ଜିନ୍ନାପ୍ରୀତି ଦେଶକୁ ଭାଗ ଭାଗ କରିଦେବ ? ଗୋବଧ ବନ୍ଦକରିବା ପାଇଁ ବିନୋବାଙ୍କ ଆମରଣ ଅନଶନ ଏକ ଧରଣର ମାନସିକ ହିଂସା ନୁହେଁ ସାର୍ ? ଲୋକଙ୍କ ମନ ବଦଳାଇ ସେ ଭୂକ୍ରାନ୍ତି ଆଣିବାକୁ କହୁଥିଲା ପରି, ଡକାଏତମାନଙ୍କ ମନ ବଦଳାଇ ଭଲ ମଣିଷ କରିବାକୁ ଋହୁଁ ଥିଲା ପରି, ଲୋକଙ୍କ ମନ ବଦଳାଇ...'

'ତ୍ୟାଗ - ସେବା - ସମୂହକ୍ରାନ୍ତି - ଟୋଟାଲ୍ ରିଭୋଲ୍ୟୁଶନ୍।'

ଜଳିଗଲା ସୁଦ୍। ମୁଣ୍ଡକୁ ଉପର ତଳ ହଲାଇ ପେଣ୍ଡୁଲମ୍ ପରି ଏପାଖ ସେପାଖ ଘୂରାଇ ଆଣି ବିଋରକମଣ୍ଡଳୀକୁ ଅନାଇ କହିଲା - 'ତ୍ୟାଗ। ଯାହାର ଥାଏ ସେ ସିନା ତ୍ୟାଗକରେ ଯାହାର ନାହିଁ ? ଆମର ତ ଖାଇବା ପାଇଁ ମୁଠେ ନାହିଁ। ଆମେ କଣ ନିଜେ ନ ଖାଇ, ଛୁଆଙ୍କୁ ଖାଇବାକୁ ନଦେଇ ସ୍ୱାମୀ ପାଇଁ ତ୍ୟାଗ କରୁଥିବୁ - ଶାଶୁ-ଶ୍ୱଶୁରଙ୍କୁ ସେବାକରୁଥିବୁ ? କହୁଛନ୍ତି ମା' ଦୁଧରେ ଛୁଆଙ୍କ ପାଇଁ ସୁଷମଖାଦ୍ୟ ରହିଛି - ଏଣେ ମା'ର ଛାତିରେ ଦୁଧ ଥିଲେ ତ ? ସେ ଫ୍ରାନ୍‌ସର ରାଜା କହିଲା ପରି 'ଲୋକଙ୍କୁ ଖାଇବାକୁ ରୁଟି ମିଳୁନି ତ ସେମାନେ କେକ୍ ଖାଉନାହାନ୍ତି କାହିଁକି ?' ଥରିଯାଉଥିଲା ସୁଦ୍।

'ଧୀରେ ମିସ୍ ସୁଦ୍ - ଧୀରେ। ଉତ୍ତେଜିତ ହୁଅନି।' ମୃଦୁ ହସି ଚେତାଇଦେଲେ ଚେୟାରମେନ୍।

'ଥେଙ୍କ୍ ୟୁ ସାର!' କେହି ସୁଦ୍ ହସିବାକୁ ଚେଷ୍ଟାକଲା କିନ୍ତୁ ସେ ହସରେ ହାସ୍ୟ ନଥିଲା - ବରଂ ଥିଲା ବ୍ୟଙ୍ଗ। ସେ କହିଚାଲିଲା - 'ଆମେ କୁଆଡ଼େ ବାପା ମା' ଯାହା କହୁଛନ୍ତି, ଶିକ୍ଷକ ଯାହା କହୁଛନ୍ତି, ବୁଢ଼ାବୁଢ଼ୀମାନେ ଯାହା କହୁଛନ୍ତି, ସାଧୁସନ୍ଥମାନେ ଯାହା କହୁଛନ୍ତି ସେସବୁକୁ ବିନା ପ୍ରଶ୍ନରେ ଗ୍ରହଣ କରିନେବୁ - ସତ ନୁହଁ ବୋଲି ଜାଣିଲେ ମଧ୍ୟ ପ୍ରଶ୍ନ କରିପାରିବୁନି। ଏଇଟା କଣ ସତ୍ୟର ପଥ ସାର୍? ଏଇଟା କଣ ବୈଜ୍ଞାନିକ ପନ୍ଥା?'

'ଜ୍ଞାନ କଣ?' ବିଚାରକମଣ୍ଡଳୀକୁ ଓଲଟା ପଚାରୁଥିଲା ମିସ୍ ସୁଦ୍, ଆଉ ନିଜେ ଉତ୍ତର ଦେଉଥିଲା, 'ସତ୍ୟର ଅନୁସନ୍ଧାନ ହିଁ ଜ୍ଞାନ ଏବଂ ବିଜ୍ଞାନ। ସତ୍ୟ ଓ ମିଥ୍ୟାର ସହାବସ୍ଥାନ ହୋଇପାରେନା। ସତ୍ୟର ସମ୍ମିଶ୍ରଣ ନାହିଁ। ସ୍ୱଚ୍ଛ, ଅନାବିଳ, ଅନକମ୍ପ୍ରୋମାଇଜିଂ ଅନେଷ୍ଟିଛଡ଼ା ସତ୍ୟର ଅନୁସନ୍ଧାନର ସମ୍ଭବ ନୁହେଁ। ଯଦି ଘଟଣାବଳୀ ପ୍ରମାଣ କଲା ଯେ ଅନ୍ୟମାନଙ୍କଠାରୁ ଶୁଣି ମୁଁ ଯାହାକୁ ସତ୍ୟ ବୋଲି ଗ୍ରହଣ କରିନେଇଥିଲି ତାହା ପ୍ରକୃତରେ ସତ୍ୟ ନୁହେଁ, ମୋତେ ସେ ଭୁଲତଥ୍ୟକୁ ବିନା ଦ୍ୱିଧାରେ ଫିଙ୍ଗିଦେବାକୁ ପଡ଼ିବ ସେ ତଥ୍ୟ ଯେତେ ବଡ଼ ଗୁରୁଜନ ଋଷି ମୁନିଙ୍କ ପାଖରୁ ଆସିଥାଉ ନା କାହିଁକି। ସତ୍ୟର ସେପରି ଅନୁସନ୍ଧାନ ପାଇଁ ସକ୍ରେଟିସ୍ ଜୀବନ ଦେଇଥିଲେ - ଆମର ସେ ପରମ୍ପରା କାହିଁ ସାର୍?'

ନିଜ ହାତଘଡ଼ିକୁ ଘନ ଘନ ଅନାଇ ଚେୟାରମେନ୍ ଚାହୁଁଥିଲେ ମିସ୍ ସୁଦ୍‌ଙ୍କୁ ମଝିରେ ଅଟକାଇବା ପାଇଁ; କିନ୍ତୁ ଅନ୍ୟ ବିଚାରକମାନେ ଅତି ଆଗ୍ରହର ସହିତ ମିସ୍ ସୁଦ୍ ଏବଂ ପ୍ରଫେସର ସେନ୍‌ଙ୍କ ଆଲୋଚନା ଶୁଣୁଥିବା ଲକ୍ଷ୍ୟ କରି ଏବଂ ସେମାନେ ଆଉ କିଛି ପଚାରିବେ ନାହିଁ ବୋଲି ଇଙ୍ଗିତ ଦେଇସାରିଥିଲେ ବୋଲି ସେ ମଧ୍ୟ ହସ୍ତକ୍ଷେପ ନକରି ଏ ଆଲୋଚନା ଉପଭୋଗ କରୁଥିଲେ। ସମୁଦ୍ରର ଉତ୍ତୁଙ୍ଗ ଲହରୀସବୁ ଯେପରି ତୁହାକୁ ତୁହା ବେଳାଭୂମି ଆଡ଼କୁ ମାଡ଼ିଆସେ - ଗୋଟାଏ ଲହର ବେଳାଭୂମିର ପାଖକୁ ଆସିଲାକ୍ଷଣି ତାର ଅକମ୍ପିତ ଗଭୀରତାରେ ମୁଣ୍ଡ କଚାଡ଼ି ଧୀରେ ମିଳେଇଯାଏ ପୁଣି ଆସେ ଅନ୍ୟ ଗୋଟାଏ ଲହର - ପ୍ରଫେସର ସେନ୍ ଓ ମିସ୍ ସୁଦ୍‌ଙ୍କ ଆଲୋଚନା ସେପରି ଢ଼ଙ୍ଗ ନେଇସାରିଥିଲା - ଏକ ଦିଗରେ ମଧୁର ସ୍ଥିରତା ଏବଂ ଅନ୍ୟ ଦିଗରେ ଫେନିଳ କମ୍ପନ।

'ତମେ ତା'ହେଲେ କଣ ଭାବୁଛ - ସବୁ ଶେଷ - ସମାଜର ଆଉ ପରିତ୍ରାଣ ନାହିଁ? କଣ ଭାବୁଛ? ତମେ ହେଲ...' କହୁଥିଲେ ପ୍ରଫେସର ସେନ୍।

'ନାଇଁ ସାର୍। ମୁଁ କହୁଛି ବରଂ ଓଲଟା। ଆମେ ସବୁଦିନ ଏମିତି ଥିଲୁଁ... ତେଣୁ ଦୁଃଖ କରିବାର କିଛି ନାହିଁ। ଆମ ଆଦର୍ଶ ଅତି ମହାନ୍, କିନ୍ତୁ ତାର ପ୍ରୟୋଗ....'

ଏଥର ଚେୟାରମେନ୍ ଟିକିଏ ଜୋର୍‌ରେ ହସିଉଠି କହିଲେ - 'ମିସ୍ ସୁଦ୍, ତମେ ତ ସତ୍ୟର ଅନୁସନ୍ଧାନରେ ? ତେବେ ମୁଁ ଗୋଟାଏ କଥା ଜାଣିବାକୁ ଚାହେଁ। ପୋଲିସ କହିଲେ ସାଧାରଣତଃ ଲାଠି ମନେପଡ଼େ, ଆଉ ନାଚ କହିଲେ ମନେପଡ଼େ କମନୀୟତା - ବୈଜୟନ୍ତୀମାଳା, ସଂଯୁକ୍ତା ପାଣିଗ୍ରାହୀ, ଉମା ଶର୍ମା, ଯାମିନୀ କୃଷ୍ଣମୂର୍ତ୍ତି...। ତମେ ନିଜେ ତ କଥକ ନାଚ ଭଲପାଅ। ପୋଲିସ ଚାକିରି କଲେ କଣ ଲାଠି ଧରି କଥକ ନାଚିପାରିବ ?' ସମସ୍ତେ ହସି ଉଠିଲେ।

ମିସ୍ ସୁଦ୍ ମଧ୍ୟ ଟିକିଏ ହସିଦେଇ କହିଲା - 'ସାର୍ - ପୋଲିସ ଲାଠିଚାଳନା ହେଉ ବା କଥକ ନାଚ ହେଉ, ସବୁଥିରେ ଶୃଙ୍ଖଳାର ଗୋଟିଏ ଅନ୍ତଃସ୍ରୋତ ରହିଛି। ଧାରାନିୟମ - ଯାହାକୁ ଆମେ ହାରମୋନି କହୁଁ। ସେଇ ହାରମୋନି ହିଁ ସୃଷ୍ଟିର ଶାଶ୍ୱତ ରୀତି ଏବଂ ତାହା ହିଁ ଜୀବନ ସତ୍ୟ।'

'କିନ୍ତୁ ପୋଲିସ ଚାକିରିରେ ତୁମକୁ ବେନିୟମ କାମ କରିବାକୁ ପଡ଼ିପାରେ।'

'କାହିଁକି ସାର୍ ? ନିୟମ ସବୁ କୋଡ଼ିଫାଏଡ୍। ମୁଁ ନିୟମ ଅନୁଯାୟୀ କାମ କରିବି।'

'ତମେ ତ ଜାଣିଛ ଉଇରୋପରେ ଡାହାଣ କଡ଼େ ଗାଡ଼ି ଚଳାଇବା ନିୟମ ତ ଭାରତରେ ବାଁକଡ଼ରେ। ସରକାର ଯଦି କହନ୍ତି ଏଇଟା ନିୟମ ଆଉ ଲୋକାଲ୍, ପବ୍ଲିକ୍ ଲୋକାଲ୍ ଏମ୍.ପି., ଏମ୍.ଏଲ୍.ଏ. କହନ୍ତି ତା ବିପରୀତ ହିଁ ନିୟମ ?'

'ମୁଁ ମୋର ବୁଦ୍ଧି ଏବଂ ବିବେକ ଖଟାଇ ଜାଣିପାରିବି କେଉଁଟା ପ୍ରକୃତ ନିୟମ।'

'ଆଉ ଆଇ.ଜି. ଯଦି ଓଲଟା ଆଦେଶ ଦିଅନ୍ତି - ତମେ ଯାହାକୁ ନିୟମ ବୋଲି ଭାବୁଛ ତାର ଠିକ୍ ଓଲଟା - ତାଙ୍କ ଆଦେଶ ମାନିବାଟା ଶୃଙ୍ଖଳା ନା ତମ ବିବେକ ?'

'ମୁଁ ବୁଝୁଛି ଆପଣ କ'ଣ କହୁଛନ୍ତି ସାର୍! ସେମିତି ହେଲେ ମୁଁ ଇସ୍ତଫା ଦେଇଦେବି।'

ଚେୟାରମେନ୍‌ଙ୍କ ସ୍ମିତହାସ୍ୟ ମିଳିତ ଧନ୍ୟବାଦର ପ୍ରତ୍ୟୁତ୍ତରରେ 'ଆପଣ ସମସ୍ତଙ୍କୁ ଧନ୍ୟବାଦ' କହି ଚାଲିଗଲା କୁମାରୀ ସୁଦ୍।

ପଛରୁ ଅନାଇଥିଲେ ଛଅଯୋଡ଼ା ଆଖି।

କବାଟ ବନ୍ଦ ହେଲାପରେ ଚେୟାରମେନ୍ ପଚାରିଲେ - 'ଏଥର କୁହନ୍ତୁ।'

'ତମ୍ପ, ଫଣାଟେକା ନାଗସାପ...' କହିଲେ ଜଣେ।

'ଅଗ୍ନିକଣା.... ସ୍ଫୁଲିଙ୍ଗ...'

'ନିଆଁହୁଳା.... ଅଗ୍ନିପିଣ୍ଡୁଳା....' କହିଲେ ଆଉ କେହି।

'ସ୍ୱାଧୀନଚେତା, ତୀକ୍ଷ୍ଣ, ନିର୍ଭୀକ ବିଚକ୍ଷଣ କିନ୍ତୁ ପୋଲିସ୍ ଚାକିରିକୁ...' ସୂଚାଉଥିଲେ ଚେୟାରମେନ୍।

'ଟିକିଏ ଉଦ୍ଧତ ସବ୍‌ଜାନ୍ତା ମନୋଭାବ - ଶିକ୍ଷାବିଭାଗ ପାଇଁ ଅତି ଉପଯୁକ୍ତ; କିନ୍ତୁ ପୋଲିସ୍ ପାଇଁ...' ସୂଚନାକୁ ଅନୁମୋଦନ କରୁଥିଲେ ଆଉ ଜଣେ।

'କିନ୍ତୁ ଶିକ୍ଷାବିଭାଗରେ ବି କଣ ସ୍ୱାଧୀନ ଚିନ୍ତା ଆମ ଦେଶରେ ଆଗେଇ ପାରୁଛି ? ଯା' ହାତରେ କ୍ଷମତା ତା' ମୁଣ୍ଡରେ ସବୁ ଜ୍ଞାନ ଠୁଳ - ଆଉ କ୍ଷମତା ଗଲାକ୍ଷଣି ସେ ସଙ୍ଗରେ ଜ୍ଞାନ ମଧ୍ୟ ଓହରିଯାଏ।' ଟିପ୍‌ପଣୀ କାଟୁଥିଲେ ଆଉ କେହି।

ଚେୟାରମେନ୍ ପଚାରିଲେ - 'ପ୍ରଫେସର ସେନ୍ ଆପଣ କଣ ଭାବୁଛନ୍ତି ?'

୭୩ ବର୍ଷ ବୟସ୍କ ପ୍ରଫେସର ସେନ୍ ଉତ୍ତର ଦେବା ପୂର୍ବରୁ ଅନ୍ୟମାନେ ସମସ୍ତେ ହସିଉଠି ପ୍ରଶ୍ନଟିକୁ ଦୋହରାଇ ଦେଲେ - 'ଆପଣ କ'ଣ ଭାବୁଛନ୍ତି ?'

ପ୍ରଫେସର ସେନ୍ ମଧ୍ୟ ହସିଲେ - କହିଲେ, 'ମନ୍ଦ ନୁହେଁ। ସମୂହକ୍ରାନ୍ତି, ଟୋଟଲ୍ ରିଭଲ୍ୟୁସନ୍ ଡାକ ଶୁଣି ଯଦି କେହି ନଆସେ, ତେବେ ଏକଲା ଚଲ।'

ସାମୂହିକ ଭାବକୁ ରୂପ ଦେଇ ଚେୟାରମେନ୍ କହୁଥିଲେ - 'ଖଣ୍ଡିଏ ସ୍ୱର୍ଣ୍ଣପିଣ୍ଡ, ସେ ପିଣ୍ଡକୁ ନିଆଁରେ ତରଳାଇ ଅଥବା ହାତୁଡ଼ିରେ ବାଡ଼େଇ ଅଳଙ୍କାର କରି ଗଢ଼ି ତୋଳିବା ଯେଉଁମାନଙ୍କର କର୍ତ୍ତବ୍ୟ ସେମାନେ ତାକୁ ନେଇ ଯାହା କରନ୍ତୁ। ଅନୁଭୂତିର ଦହନରେ ସେ ହୁଏତ ଦିନେ ଝଲସି ଉଠିବ ଅଥବା ଜଳିପୋଡ଼ିଯିବ।'

ବିଚାରକମଣ୍ଡଳୀର ସମସ୍ତେ ମୁଣ୍ଡ ଟୁଙ୍ଗାରୁଥିଲେ। ଅନ୍ୟ ପ୍ରାର୍ଥୀପାଇଁ ଘଣ୍ଟି ବାଜିଉଠିଲା।

# 'ବୃଦ୍ଧଶିବିର'ର ପ୍ରଥମ ବୈଠକ

ପ୍ରକୃତ ଘଟଣା କଣ ଜାଣିବାକୁ ଚେଷ୍ଟା ନ କରି ଯେଉଁ ଭଦ୍ରଲୋକମାନେ ଶୁଣାକଥାରେ ନିଜ ରାୟ ଦେଇ ବସନ୍ତି, ସେମାନେ ହିଁ ଏ ସଂସାରରେ ଯାବତୀୟ ଗୋଳମାଳ ସୃଷ୍ଟି କରନ୍ତି। ଆମ 'ବୃଦ୍ଧଶିବିର'ରେ ଏବେ ଯେଉଁ ଦୁଃଖପ୍ରଦ ଘଟଣା ଘଟିଗଲା, ସେ ସମ୍ବନ୍ଧୀୟ ସମ୍ବାଦ ପରିବେଷଣ ତହିଁର ଏକ ଜ୍ୱଳନ୍ତ ନିଦର୍ଶନ। ଯେଉଁମାନେ କହୁଛନ୍ତି ଯେ ସାହିତ୍ୟ ଆଲୋଚନାର ଉତ୍ତେଜନା ଫଳରେ ହିଁ ଦାଶରଥି ବାବୁ ସେଦିନ ଆମ ବୈଠକରେ ଅଚେତ ହୋଇପଡ଼ିଲେ, ସେମାନଙ୍କୁ ମୁଁ ବିନମ୍ରତାର ସହିତ କହିବି ଯେ ସେମାନଙ୍କ ପାଖରେ ପହଞ୍ଚିଥିବା ଖବରଟି ଏକତରଫା ଏବଂ ସମ୍ପୂର୍ଣ୍ଣ ଭୁଲ। ସେଦିନ ଆମେ ଆମ ଶିବିରରେ ସାହିତ୍ୟ ସମ୍ବନ୍ଧୀୟ ଆଲୋଚନା କରି କିଛି ଭୁଲକରି ନଥିଲୁ। ଯେଉଁ ଭଦ୍ରବ୍ୟକ୍ତିମାନେ ଏପରି ଭ୍ରମପୂର୍ଣ୍ଣ ଧାରଣା ପୋଷଣ କରନ୍ତି, ମୁଁ ସେମାନଙ୍କୁ ପ୍ରଶ୍ନ କରେ ଯେ ଅମ ବୃଦ୍ଧଶିବିରର ପ୍ରଥମ ବୈଠକରେ ସାହିତ୍ୟ ଆଲୋଚନା ନ କରି ରାଜନୀତି ଆଲୋଚନା କରିଥିଲେ କ'ଣ ଅବସ୍ଥା ଭିନ୍ନ ଢଙ୍ଗ ନେଇଥାଆନ୍ତା? ମୁଁ ଦୃଢ଼ତାର ସହିତ ଉତ୍ତର ଦେବି - 'ନୁହେଁ - କଦାପି ନୁହେଁ।' ସାହିତ୍ୟ କହନ୍ତୁ, ରାଜନୀତି କହନ୍ତୁ ଅଥବା ଅନ୍ୟ ଯାହା କିଛି - ଆଜିକାଲିର ଆଲୋଚନାମାନଙ୍କରେ ଆଲୋକ ଅପେକ୍ଷା ଉତ୍ତାପ ଅତିମାତ୍ରାରେ ବେଶି। ଆମ ବେଳେ କିନ୍ତୁ କଥା ଅଲଗା ଥିଲା। ସେତେବେଳେ ଶ୍ରୋତୃବର୍ଗଙ୍କ ଭିତରେ ଥିଲା ଉଦାରତା, ଶାଳୀନତା, ଥିଲା ସହନଶୀଳତା - ଅନ୍ୟଙ୍କ ମତ ପ୍ରତି ଯଥୋଚିତ ଖାତିର ଏବଂ ସମ୍ମାନ। ଆମ କାଳରେ ବକ୍ତାଙ୍କ ଯାବତୀୟ ଅବୋଧ ଏବଂ ପ୍ରଗଲ୍‌ଭ ଉକ୍ତି ସବୁକୁ ଅନ୍ୟମାନେ ଧୀରସ୍ଥିର ଭାବରେ ଶୁଣୁଥିଲେ ଏବଂ ସେସବୁ ତ୍ରୁଟିପୂର୍ଣ୍ଣ ବୋଲି ମନେହେଉଥିଲେ ମଧ ଧୈର୍ଯ୍ୟର ସହିତ ସହ୍ୟକରି ନେଉଥିଲେ। ସେଦିନ ଆଉ କାହିଁ ଯେ ସେସବୁ ଲୋଡ଼ିବସିଲେ ଏବେ ମିଳିବ? ଯେ ଗଲା ସେ ଗଲା; ଆଜି ତ ସମସ୍ତେ କଥା କଥାକେ କହିବେ - 'ଆପଣ କଣ ଜାଣନ୍ତି?' ସେଥିରେ କାହାରି ରକ୍ତଚାପ ନ ବଢ଼ିବ ବା କାହିଁକି? ଆମର ସେ ଯୁଗ ଯାହାକୁ କି ଆମେ ସ୍ୱର୍ଣ୍ଣଯୁଗ ବୋଲି ଭାବୁ ଏବଂ ଆଜିର ଏ ଅପନ୍ତରିଆ ଯୁଗ ମଧ୍ୟରେ କୌଣସି ପ୍ରାଚୀର ବେଷ୍ଟନୀ ନଥିବାରୁ ଏ ଯୁଗର କୁପ୍ରଭାବ ଆମ ଉପରେ ସମ୍ପୂର୍ଣ୍ଣ ଭାବେ ପଡ଼ିଯାଇଛି। ତେଣୁ ବୈଠକବେଳେ

ଏ ଯୁଗର ଦୁଇଘରିଟା 'ଆପଣ କଣ ଜାଣନ୍ତି' ହିଁ ସେଦିନ ସବୁ ଗୋଳମାଳ ସୃଷ୍ଟି କରିଥିଲା।

ବୃଦ୍ଧଶିବିରର ସେହି ପ୍ରଥମ ବୈଠକରେ କେହି ସଭାପତି ନଥିଲେ। ତେଣୁ କିଏ ଅବା କାହାକୁ ଆକଟ କରିବ? ମୁଁ ଥିଲି କେବଳ ଶିବିରର ସମ୍ପାଦକ। ଆଲୋଚନାର ଅବିକଳ ବିବରଣୀ ସଙ୍କଳନ ହିଁ ଥିଲା ମୋର କର୍ତ୍ତବ୍ୟ। ସେ ସ୍ୱର୍ଣ୍ଣଯୁଗର ଆମେ ସବୁ ଶୃଙ୍ଖଳା କଣ ଜାଣୁ। ଜଣେ ସମ୍ପାଦକ ମାତ୍ର ହୋଇ ମୁଁ ଅବା କାହିଁକି ସେ ଆଲୋଚନାରେ ହସ୍ତକ୍ଷେପ କରିଥାଆନ୍ତି? ତେଣୁ ଯାହା ଘଟିବା କଥା ଘଟିଗଲା। ଏଥିରେ ସାହିତ୍ୟ ଆଲୋଚନାର କିଞ୍ଚିତ ମାତ୍ର ଦୋଷ ନାହିଁ, ଆପଣ ଏ ଖବରଟି ସିଧାସଳଖ ଘୋଡ଼ାମୁହଁରୁ ବୋଲି ଗ୍ରହଣ କରି ନେଇପାରନ୍ତି, ଯାହାକୁ ଆଜିକାଲି କହନ୍ତି 'ଷ୍ଟ୍ରେଟ୍ ଫ୍ରମ୍ ଦି ହର୍ସେସ୍ ମାଉଥ୍'। ଭବିଷ୍ୟତରେ କାଳେ କେହି ଏ ସମ୍ବନ୍ଧରେ କୌଣସି ଭୁଲ ଖବର ଦେଇ ଏବଂ ଭୁଲ ବୁଝାମଣା ସୃଷ୍ଟିକରି ବୃଦ୍ଧଶିବିରକୁ ଲୋକହସା କରନ୍ତି, ସେ ଆଶଙ୍କା ଦୂରୀକରଣ ଉଦ୍ଦେଶ୍ୟରେ ମୁଁ ଉକ୍ତ ଶିବିରର ସମ୍ପାଦକ ରୂପେ ଘଟଣାର ପୂର୍ଣ୍ଣ ବିବରଣୀ ଯଥୋଚିତ ପୂର୍ବାପରି ସଂହତି ସହ ଏଠାରେ ଉପସ୍ଥାପିତ କରୁଛି। ଗୋଡ଼ ବଙ୍କା କଲାବେଳେ ବା ଆଣ୍ଠୁରେ ସାମାନ୍ୟ ଯନ୍ତ୍ରଣା ଅନୁଭବ କରି ସେଦିନ ମୁଁ ମୋର ବନ୍ଧୁ ଡାକ୍ତର ତ୍ରିପାଠୀଙ୍କୁ ଖବର ଦେଇଥିଲି। ଡାକ୍ତର ବନ୍ଧୁ ଯଥା ସମୟରେ ଉପସ୍ଥିତ ହେଲେ ଏବଂ ମୋ ବାଁ ଗୋଡ଼ର ଦି' ପାଖକୁ ଦି' ହାତରେ ଧରି ଗୁଆକାତିରେ ଗୁଆ କାଟିବା ଢଙ୍ଗରେ ଦି'ଘରି ଥର ଉପରତଳ କଲାପରେ ଘୋଷଣା କଲେ ଯେ ଉପଯୁକ୍ତ ପଦଚାଳନା ଅଭାବରୁ ମୋ ଆଣ୍ଠୁ ହାଡ଼ରେ କଳଙ୍କି ଧରିବାର ସମ୍ଭାବନା ଦେଖାଦେଲାଣି ଏବଂ ପରାମର୍ଶ ଦେଲେ ଯେ ମୋ ପାଇଁ ସାନ୍ଧ୍ୟଭ୍ରମଣ ଏକାନ୍ତଭାବେ ପ୍ରୟୋଜନ।

ନିଃସଙ୍ଗ ଭ୍ରମଣ ଯେ କେଡ଼େ ନୀରସ, ସେକଥା ଜାଣିଥିବା ଯୋଗୁ ମୁଁ ଯଥା ସମୟରେ ଗୃହିଣୀଙ୍କୁ ସାନ୍ଧ୍ୟ ଭ୍ରମଣର ଉପକାରିତା ସୂଚାଇ ଦେଇଥିଲି। ସେ କିନ୍ତୁ ପରିବାକଟା, ମସଲାବଟା ଏବଂ ଭାତଗଳା ପ୍ରଭୃତି ନାନା ନିତ୍ୟନୈମିତିକ ଶାରୀରିକ ବ୍ୟାୟାମ କଥା ଦର୍ଶାଇ ଦେଇ କହିଲେ ଯେ ସ୍ତ୍ରୀମାନଙ୍କ ପାଇଁ ସାନ୍ଧ୍ୟଭ୍ରମଣ ଅପେକ୍ଷା ସାମୟିକ ବିଶ୍ରାମ ବିଶେଷ ଉପଯୋଗୀ। ଅନନ୍ୟୋପାୟ ହୋଇ ମୁଁ ରାମଚନ୍ଦ୍ର ବନବାସ ଗଲାବେଳେ ସଙ୍ଗରେ ସୀତା ଯାଇଥିବା କଥା ମଧ୍ୟ ଚେତାଇ ଦେଇଥିଲି; କିନ୍ତୁ ତହିଁରେ ମଧ୍ୟ କିଛି ଫଳଲାଭ ହେଲା ନାହିଁ। ଅଗତ୍ୟା ଭବିଷ୍ୟତର ଆଣ୍ଠୁ ଦରଜ ଏବଂ ବର୍ତ୍ତମାନର ସାନ୍ଧ୍ୟଭ୍ରମଣଜନିତ ଦୁଃଖକୁ ତୁଳନା କଲାପରେ ମୁଁ ସେଦିନ ବାଧହୋଇ ଏକୁଟିଆ ସାନ୍ଧ୍ୟ ଭ୍ରମଣରେ ବାହାରି ପଡ଼ିଥିଲି। ପଦଚାରଣ କଲାବେଳେ ମେଣ୍ଢା ଆଉ କୁକୁରମାନଙ୍କୁ ଜବରଦସ୍ତି ଗାଧୋଇଦେଲେ ସେମାନେ କାହିଁକି ଛାଟିପିଟି ହୋଇ ଏତେ

ଆପତ୍ତି ଅଭିଯୋଗ କରନ୍ତି, ସେ କଥା ବାରମ୍ବାର ମୋର ମନେପଡୁଥିଲା। ଆଉ ମଧ ମନ ଭିତରେ ଭାବନା ଉଙ୍କି ମାରୁଥିଲା ଯେ ଏମିତି ସବୁଦିନ ସାନ୍ଧ୍ୟଭ୍ରମଣ କରି ବସିଲେ, ମୋତେ ମଧ ଦିନେ ନା ଦିନେ 'ଚିର ହାହାମୟ ଏ ଛାର ଜୀବନ- ଜୀବନ ନୁହଇ ଜୀବନ୍ତ ମରଣ' ଗାଥା ଗାଇବାକୁ ପଡ଼ିବ।

ଏସବୁ ଭାବି ଭାବି ଏବଂ ତଳକୁ ମୁହଁ ପୋତି ମୁଁ ଆଗେଇଯାଉଛି, ହଠାତ୍ କେଉଁ ଜଣେ ମଣିଷଙ୍କ ଉପରେ ହାମୁଡ଼ିପଡ଼ିଲି। ଭଦ୍ରଲୋକ କହିଲେ - 'ଆଜ୍ଞା, ଟିକିଏ ବାଟଘାଟ ଭଲ କରି ଅନାଇ ଚାଲନ୍ତୁ, ନହେଲେ କେଉଁଠି କଚାଡ଼ିହୋଇ ପଡ଼ିବେ।' ମୁଁ ତାଙ୍କ ଉପରେ ପଡ଼ିଥିଲି ନା ସେ ମୋ ଉପରେ ପଡ଼ିଲେ ଏବଂ ମୁଁ କେବଳ ତଳକୁ ମୁହଁ ପୋତି ଚାଲୁଥିଲି ନା ସେ ମଧ, ସେ କଥାର ସଠିକ ଜବାବ ପାଇବା ଆଶାରେ ମୁଁ ଯେତେବେଳେ ମୁଣ୍ଡ ଟେକି ଭଦ୍ରଲୋକଙ୍କୁ ଅନାଇଲି, ତାଙ୍କୁ ଚାହିଁ କିଛିକ୍ଷଣ ଅବାକ୍ ହୋଇଗଲି ଏବଂ ପରକ୍ଷଣରେ ଚିତ୍କାର କଲି - 'ସାଧୁବାବୁ - ଆପଣ ?' ଆଉ ସେ କହିଲେ - 'ଆରେ - ବୁଦ୍ଧଦେବ, ତୁ...!' କଲେଜରେ ପଢ଼ିଲାବେଳେ ସାଧୁବାବୁ ମୋ'ଠାରୁ ଦୁଇବର୍ଷ ଉପରେ ପଢୁଥିଲେ। ଗୋଟାଏ ସହରରେ ଥାଇ ମଧ ଏତେଦିନ ଆମ ଦୁହିଁଙ୍କ ମଧ୍ୟରେ ଏଇ ଦେଖାସାକ୍ଷାତ୍। ହସ ଖୁସିରେ ଆମେ ଦିହେଁ ଆମ ଆଣ୍ଠୁଗଣ୍ଠି ସମ୍ବନ୍ଧରେ କଥାବାର୍ତ୍ତା କରି ଚାଲିଛୁଁ, ଜଣେ ଭଦ୍ରଲୋକ ବାଡ଼ି ଠୁକୁଠୁକୁ କରି ଆମ ପାଖ ଦେଇ ଆଗେଇଗଲେ। ଏକାସାଙ୍ଗରେ ଆମ ଦିହିଁଙ୍କର ନଜର ଏ ଭଦ୍ରଲୋକଙ୍କ ଉପରେ ପଡ଼ିଲା, ଆଉ ଦିହେଁ ଏକାସଙ୍ଗେ ଡକାପକାଇଲୁଁ। ସାଧୁବାବୁ କହିଲେ - 'ହରିବାବୁ ଯେ !' ଆଉ ମୁଁ କହିଲି - 'ସାର୍ !'

ହରିବାବୁ ଚମକି ପଡ଼ିଲେ। ଆମ ଦିହିଁଙ୍କି ଚିହ୍ନିପାରିଲାକ୍ଷଣି ସେ ଅତି ଖୁସିରେ ତାଙ୍କ ପାକୁଆ ପାଟି ପୂରାପୂରି ମେଲା କରିଦେଲେ ଏବଂ ତତ୍ ଅନ୍ତର୍ଗତ ବିସ୍ତୀର୍ଣ୍ଣ ମେଘୁଆ ଆକାଶ ପ୍ରଦର୍ଶନ କଲେ। ତିନି ବନ୍ଧୁଙ୍କର ଏପରି ଏକ ଅପ୍ରତ୍ୟାଶିତ ମିଳନ।

ହରିବାବୁ କହିଲେ, 'ମୁଁ ତ କୁଆଡ଼େ ଯାଏ ସଞ୍ଜବେଳେ ଯାହା ଟିକିଏ ବୁଲି ବାହାରେ। ଆଜି ମୋର ବାହାରିବାକୁ ନଥିଲା। ନାତି ସାଙ୍ଗରେ ଆସେ ଯେ, ସେ ଆଜି ସିନେମା ଦେଖିବାକୁ ଚାଲିଯାଇଛି। ତେଣୁ ଆଉ ବାହାରିବିନି ବୋଲି ଭାବୁଥିଲି; କିନ୍ତୁ କାହିଁକି କେଜାଣି ବାହାରିପଡ଼ିଲି। ଯା ହେଉ ତମ ଦିହିଙ୍କି ଭେଟିବା ଯୋଗ ଥିଲା।' ସାଧୁବାବୁ କଥା ଯୋଡ଼ିଦେଇ କହିଲେ - 'ମୁଁ ବି ଏ ସଞ୍ଜବେଳିଆ ବୁଲାବୁଲି ଟିକିଏ ଛାଡ଼ିଦେଲେ ଆଉ କୁଆଡ଼େ ଯାଏନି। କୁଆଡ଼େ ଯିବେ କୁହନ୍ତୁ ତ ! ଆଗ ହେଲେ କାହିଁ କେଉଁଠି ଫଙ୍କ୍ସନ୍‌ଟିଏ ହେଲେ ନିମନ୍ତ୍ରଣ ଆସୁଥିଲା - ଆଜିକାଲି ସେତିକି ବି ନାହିଁ। କାହାକୁ କେଉଁଠି ଭେଟିବେ ? ଘରେ ବସି ବସି ଏମିତି ବିରକ୍ତ ଲାଗେ, କଣ କହିବି ? ସେ ଟୋକାଗୁଡ଼ାକ ରେଡ଼ିଓ ପୂରା ଜୋର୍‌ରେ ଛାଡ଼ିଦେଇ ଦିନ ସାରା କ୍ରିକେଟ୍

କମେଣ୍ଟରି ଶୁଣୁଥିବେ। ଆରେ ବାବା - ମଝିରେ ଥରେ ଅଧେ ଶୁଣିଲେ ଚଳିବନି ? ନାଇଁ ପ୍ରତ୍ୟେକ ବଲ୍ କେମିତି ଫିଙ୍ଗାହେଲା, କେମିତି ମରାହେଲା, ଆଉ କିଏ ତାକୁ କେମିତି ଗୋଟାଇଲା, ସବୁ ଶୁଣିବେ। ଆଉ କି ସେ ସିନେମା ଗୀତ ! କୁଆଡ଼େ ଗଲା ଚମ୍ପୂ - ଓଡ଼ିଶୀ ! ଗଲା ସବୁ।'

ସାଧୁବାବୁଙ୍କ କଥା ଶୁଣି ହରିବାବୁ ମୁଣ୍ଡ ଟୁଙ୍ଗାରୁଥିଲେ - ହଠାତ୍ କହିଲେ, 'ହଇରେ ବୁଦ୍ଧଦେବ - ସବୁ ଶ୍ରେଣୀର ଲୋକ ସଂଘ କରି ଏକାଠି ହେଉଛନ୍ତି, ଖାଲି ଆମେ ଆଜିଯାଏ ସଂଘଟିଏ ଗଢ଼ିପାରିଲୁନି। ତୁ ତ ଆମ ଭିତରେ ଟୋକା - ବୟସ କେତେ ହେଲା କି ? ପଅଁଷଠି ତ ? ତୁ ହେଲେ ବୁଢ଼ାମାନଙ୍କର ଗୋଟାଏ ବଇଠକ ଡକାନ୍ତୁ। ଆରେ ମଝି ମଝିରେ ଟିକିଏ ଦେଖାସାକ୍ଷାତ୍ ହେବରେ ! କିଏ କେତେବେଳେ ଯିବ ଆଉ କଣ ଠିକଣା ଅଛି ?'

ହରିବାବୁ ମୋ'ଠାରୁ ବୟସରେ ବଡ଼ ହେବେ। ମୁଁ କଲେଜରେ ପଢ଼ିଲାବେଳେ ସେ ଲେକ୍‌ଚରର୍ ହୋଇ ଯୋଗ ଦେଇଥିଲେ। ସେ ଆମ କ୍ଲାସ ନେଇ ନଥିଲେ ବି ସେ ଦିନଠୁ ବି ମୋର ସେ ଡାକ ରହିଯାଇଛି। ତାଙ୍କ ପ୍ରସ୍ତାବଟା ମୋ ମନକୁ ପାଇଲା। ମୁଁ କହିଲି, 'ବୈଠକଟିଏ ଡାକି ଦେବି ଯେ କେଉଁଠି ବସିବା ? ଦାଶରଥି ବାବୁଙ୍କ ଘରେ ? ସେଇଠି ତ ବେଶ୍ ଜାଗା ଅଛି - ଲନ୍ ବି - ସେଇଠି ଭଲ୍ ହେବ।'

ସାଧୁବାବୁ ଖେଙ୍କାରିଲାଭ ଢ଼ଙ୍ଗରେ କହିଲେ - 'ଦାଶରଥିର ଘର ? ରାମ-ରାମ। ଜାଗା ସିନା ଅଛି - ସେଇଠି ବୈଠକ କରିବୁ ? ମୁଁ ସେଇଠି ଯାଇ ଅଲାଜୁକ ଅଲଟ୍ରା ମଡ଼ର୍ଣ୍ଣ ଝିଅମାନଙ୍କୁ ଦେଖି ପାରିବିନି। କି କଥା କହିଲ । ଏଡ଼େ ବଡ଼ ବଡ଼ ଝିଅ ଆଉ ବୋହୂ ଜିନ୍‌ଟ୍ରାଉଜର ଆଉ ସ୍ପୋର୍ଟସ୍ ଗେଞ୍ଜି ପିନ୍ଧି ଏପାଖ ସେପାଖ ହେଉଥିବେ। ଆରେ - ଏଇଟା ଗୋଟାଏ ଘର ନା କୋଣାର୍କ ମନ୍ଦିର। କୋଣାର୍କ ମୂର୍ତ୍ତି ସାଜୁଛ ତ ଘର-କୋଣମାନଙ୍କରେ ଷ୍ଟୁଲ ଗୋଟାଏ ଲେଖାଏଁ ପକାଇ ବସିଯାଉନ ? ଯିଏ ତମକୁ ଦେଖିବାକୁ ଋହିଁବ, ସେ ସେଇଠିକି ଯିବ। ତମେ କାହିଁକି ଉପର ତଳ ଭିତର ବାହାର ହେଉଛ ? ଗଲା ସବୁ। କାହିଁ ଆମ ଦିନର ଓଢ଼ଣାଦିଆ ବୋହୂ ଭୁଆସୁଣୀ, ଆଉ କାହିଁ ଆଜିର ଏ ଉଦଣ୍ଡୀ ଦଳ।'

ମୁଁ କହିଲି - 'ଯୁଗ ବଦଳିଗଲାଣି ସାଧୁବାବୁ ! ଆଜିକାଲି ତ ପୁଅ ଝିଅ ସମସ୍ତେ ସମାନ ସେମାନେ ଏମିତି ପିନ୍ଧିଲେ କଣ ହେଲା ?'

ସାଧୁବାବୁ ତାତି ଉଠିଲେ। କହିଲେ - 'କି କଥା କହୁଛୁ ? ଆମବେଳକୁ କଣ ପୁଅ ଝିଅ ସମାନ ନଥିଲେ ? ସରୋଜିନୀ ନାଇଡୁଙ୍କୁ ଦେଖିନୁ ? ଆମ ରମାଦେବୀଙ୍କୁ ଦେଖିନୁ ? ପାଶ୍ଚାତ୍ୟ ଢଙ୍ଗଢ଼ାଙ୍ଗର ଖାଲି ଫମ୍ପା ଅନୁକରଣ, ବୁଝିଲୁ ? ଏମିତି ବେଶ୍

ତ ପିନ୍ଧୁଛ - ଆଉ ବିକିନି ସୁଟ୍ ବି - ଗଲ୍ଫ କହିବୁ ଟେନିସ୍ ରେକେଟ୍‌ଟିଏ ଧର କି ହକି ଷ୍ଟିକ୍‌ଟିଏ ଧର, କି ମାଇଲିଏ ଦଉଡ଼ିଯାଅ କେମିତି ମୋଡ଼ିମାଡ଼ି ହୋଇ କୁଁ-କୁଁ ହେବେ। ବଳ ଥିଲେ ତ। ନ ହେଲେ ସ୍ମାର୍ଟ ହେବାକୁ କିଏ ମନାକରୁଛି ?' କହିଲେ - 'ନାଇଁ ନାଇଁ - ଆଉ କେଉଁ ଜାଗା ଦେଖ।'

ମୁଁ କହିଲି - 'ତେବେ ଦାମବାବୁଙ୍କ ଘରେ ବସିଲେ ହେବ।' ସାଧୁବାବୁ କିନ୍ତୁ ଏଥର ବି ମନାକରି କହିଲେ, 'ଦାମର ଘର ହେବ ଯେ - ସେ ତ ଗପସପ ମଝିରେ ଗରାଖଙ୍କୁ ଆଳୁ ଓଜନ କରି ବସିବ। ଛି-ଛି ବୁଢ଼ା ହେଲା, ଗୋଟାଏ ଗୋଡ଼ ଯାଇ କବର ଭିତରେ ଲୋକର ଅର୍ଥଲୋଭ ଗଲାନି। ଗଲାବେଳକୁ କେତେ ବୋହିନେବ କେଜାଣି ?'

- 'ତେବେ ଜଗନ୍ନାଥ ମନ୍ଦିରରେ ବସିବା ?'

'ମନ୍ଦିରରେ ବସିଲେ ହେବ ଯେ, ବୁଢ଼ାମାନଙ୍କ କଥା ତ ଜାଣୁଛୁ - ଗପବେଳେ କିଏ କଣ ବକିବେ - କାହାର ପାଟିରେ ଲଗାମ୍ ଦେବ ? ମନ୍ଦିରରେ କଣ ସେ ସବୁ ସୁନ୍ଦର ଦିଶିବ ? ଆଉ ଦେଖ୍ - ପାଣି ଗିଲାସେ-ଚା କପେ କି ପାନ ଖିଲେ ଦରକାର ପଡ଼ିବ। ସେତକ ନ ହେଲେ....।' ତା'ପରେ ହଠାତ୍ କହିଉଠିଲେ, 'କାହିଁ ତୋ ଘରେ ବସିବାନି ? କଣ ଏଭଏଡ୍ କରୁଛୁ ? ତୋ ପୁଅ ଝିଅ କେହି ତ ଏଠି ନାହାନ୍ତି। ବୁଢ଼ା ବୁଢ଼ୀ ତମେ ଦୁହେଁ। ତୋ ସ୍ତ୍ରୀ ବି ତାଙ୍କ ଘରକାମ ପୂଜାପାଠରେ ବ୍ୟସ୍ତ ଥାଆନ୍ତି। ତୋ ଘରେ ବେଶ୍ ଜମିବ।'

ମୁଁ ଅତି ଖୁସିରେ ରାଜିହେଲି। ସାଙ୍ଗେ ସାଙ୍ଗେ ଆମ ବୈଠକର ଦିନ ବି ଠିକ୍ ହୋଇଗଲା, ତା'ପର ଶନିବାର - ସମୟ ସନ୍ଧ୍ୟା ୭ଟା। ସାଧୁବାବୁ କହିଲେ - ନୋଟିସ୍‌ରେ ଲେଖିବୁ 'ବୃଦ୍ଧଶିବିର'ର ପ୍ରଥମ ବୈଠକ - ଆଉ ସହରରେ ଯେତେ ରିଟାୟାର୍ଡ଼ ବୁଢ଼ା ଅଛନ୍ତି, ସମସ୍ତଙ୍କୁ ଡାକି ଦେବୁ। ହେଇ ମ ବେଶି ହେଲେ ଦଶ ବାର ଜଣ ଆସିବେ - ଦେଖିବୁନି। ଅନ୍ତତଃ କେତେଜଣଙ୍କ ସାଙ୍ଗରେ ତ ଦେଖା ହୋଇଯିବ। ହଁ ଆଉ ଚା' କପେ, ପାନ ବିଡ଼ାଏ ଯୋଗାଡ଼ କରିଥିବୁ, ବୁଝିଲୁ ? ପାନର ଗୁଆ ସରୁ ହୋଇ କଟା ହୋଇଥିବ - ଘରେ ତ ହେମଦସ୍ତା ଥିବ ? - ଗୁଆକୁ ହେମଦସ୍ତାରେ ଛେଚି ଦେଇଥିବୁ। ଦେଖିନୁ ତ ହରିବାବୁଙ୍କ ପାକୁଆ ପାଟିକି।'

ମୁଁ ହସି ହସି ହରିବାବୁଙ୍କୁ କହିଲି - 'ସାର୍, ଆପଣ ଶେଷଯାଏ ଆଉ ଦାନ୍ତ ସେଟ୍ ଲଗାଇଲେ ନି ?'

ହରିବାବୁ ଅଳ୍ପ ହସି ଉତ୍ତର ଦେଲେ - 'ଦାନ୍ତ ଦେଖି ଯମ ଡରିଯିବ କିରେ ? ଯେମିତି ଆସିଥିଲୁ ସେମିତି ଫେରିଯିବା କଥା।'

ମୁଁ କହିଲି - 'ତେବେ ଧୋତି ପିନ୍ଧିଛନ୍ତି ଯେ !'

ହରିବାବୁ ହସରେ ଫାଟିପଡ଼ିଲେ। କହିଲେ - 'ହଇରେ, ତୋ ଚଗଲାପଣିଆ ଏ ଯାଏ ଗଲାନି ନା ? ସତରେ ଦେଖିଲୁ, ଏକାଠି ହେଲେ କେତେ ପୁରୁଣା କଥା ମନେପଡେ଼ - କେତେ ଖୁସି ଲାଗେ, ଆଉ ହସ ଟିକିଏ ବି ମୁହଁରେ ଫୁଟେ।' ତାପରେ ଗମ୍ଭୀର ହୋଇ କହିଲେ - 'ଏଇ ହସଟିକକ ତ ରେ ଜୀବନ ! ଯେଉଁଦିନ ହସ ଗଲା, ଜାଣିଥା ଜୀବନ ଗଲା।'

ହାଲୁକା ମନରେ ଘରକୁ ଫେରିଲାବେଳେ ମୁଁ ସାନ୍ଧ୍ୟ ଭ୍ରମଣ ସମ୍ବନ୍ଧରେ ମୋର ପୂର୍ବମତ ପୂରାପୂରି ବଦଳାଇ ସାରିଥିଲି। ରାସ୍ତାଘାଟର ବନ୍ଧୁମିଳନ ସତରେ ଅତି ପ୍ରୀତିକର।

ବୈଠକ ଦିନ ସାଧୁବାବୁଙ୍କ ହିସାବ ଭୁଲ ବୋଲି ପ୍ରମାଣିତ ହୋଇଯାଇଥିଲା। ଶନିବାର ସନ୍ଧ୍ୟା ସାତଟା ପୂର୍ବରୁ ହିଁ ଚଉଦ ଜଣ ସଦସ୍ୟ ପହଞ୍ଚିସାରିଥିଲେ। ସୋଫାରେ ତିନି ଜଣ, ସୋଫାର ଦୁଇ ଚୌକିରେ ଦୁଇ - ଡିଭାନ୍‌ରେ ପାଞ୍ଚ, ଆଉ ଦିଟା ବେତବୁଣା ଇଜି ଚେୟାରରେ ଦୁଇ, ବସିବା ପାଇଁ ଚୌକିର ଅଭାବ ଦେଖି ମୁଁ ସାଦା ଚେଆର ଦି'ଟା ଟାଣି ଆଣିଥିଲି। ତହିଁରୁ ଗୋଟାକରେ ନିଜେ ବସିଯାଇଥିଲି। ମୋ ସାନପୁଅ କୁନା ପାନ ଆଣିବା ଦେଖି ତାକୁ ଚିହ୍ନିଥିବା ସାଧୁବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ - 'କିରେ, ତୁ ପରା ବୁର୍ଲାରେ ପଢୁ ? ଏଇଠି ଏବେ କେମିତି ?'

କୁନା ସମସ୍ତଙ୍କୁ ନମସ୍କାର କରୁ କରୁ କହିଲା - 'ଷ୍ଟ୍ରାଇକ୍ ଯୋଗୁଁ ଆମ କଲେଜ ବନ୍ଦ ହୋଇଯାଇଛି।'

ଷ୍ଟ୍ରାଇକ୍ ! ସମସ୍ତେ ଝାମ୍ପି ପଡ଼ିଲେ - 'କଣ ହେଲା କି ?'

କୁନା କହିଲା - 'ଏଟେଣ୍ଡେନସ୍ ସର୍ଟେଜ୍ ଯୋଗୁଁ ଏଥର ଛଅ ଜଣ ପିଲାଙ୍କୁ ରଖିଦେଲେ। ଯେତେ ଅନୁରୋଧ କଲାପରେ ବି ଯେତେବେଳେ କିଛି ଲାଭ ହେଲାନି, ପିଲାମାନେ ପ୍ରିନ୍‌ସିପାଲଙ୍କୁ ଘେରାଉ କଲେ। ୨୪ ଘଣ୍ଟା ଘେରାଉ ପରେ ପୋଲିସ ଆସି ଲାଠି ଚାର୍ଜ କରି ତାଙ୍କୁ ମୁକୁଳାଇ ଦେଲା। ତା'ପରେ କଲେଜରେ କେତେ ଭଙ୍ଗା ରୁଜା ହେଲା ବୋଲି କଲେଜକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ କରି ଦେଇ ହଷ୍ଟେଲ ଛାଡ଼ିବାକୁ ଆମକୁ ଚବିଶ ଘଣ୍ଟିଆ ନୋଟିସ୍ ମିଳିଲା। ଆମେ କୌଣସି ମତେ ପଇସାପତ୍ର ଯୋଗାଡ଼ କରି ଚାଲିଆସିଛୁ।'

ବୃଦ୍ଧଶିବିରର ଏଇ ପ୍ରଥମ ବୈଠକରେ ଆଲୋଚନା ପାଇଁ ବଢ଼ିଆ ଖୋରାକଟିଏ ମିଳିଗଲା। ରାମବାବୁ କହିଲେ - 'ଦେଖିଲ କି ଅବସ୍ଥା ! କି ଉଚ୍ଛୃଙ୍ଖଳ ଆଜିର ଏ ପିଲାମାନେ ! ଆମବେଳେ ଏମିତି ଘେରାଉ କେହି କଳ୍ପନା କରିବ ? କ୍ଲାସରେ

ଅନୁପସ୍ଥିତ, ପରୀକ୍ଷାରେ କପି, ଷ୍ଟ୍ରାଇକ୍, ଘେରାଉ - ଆଜିକାଲି କ'ଣ ହେଉନି କହନ୍ତୁ ତ !'

ନାରାୟଣବାବୁ ଏ କଥାରେ ସହମତ ହେଲେ। କହିଲେ - 'ସତରେ ସବୁଗଲା। ଆମବେଳେ କି ଶୃଙ୍ଖଳା! କୁଆଡ଼େ ଗଲା ସେ ଶୃଙ୍ଖଳା ?'

ପାନ ଖଣ୍ଡିଏ ପାଟିରେ ପକାଉ ପକାଉ ରାଧୁବାବୁ କହିଲେ - 'ଠିକ୍ ଶୃଙ୍ଖଳା ନୁହେଁ ଯେ - ଆମ ବେଳେ ଥିଲା ଏଫିସିଏନ୍‌ସି। ଆମବେଳେ କଣ କପି ନଥିଲା ? ଷ୍ଟ୍ରାଇକ୍ ନ ଥିଲା ? ଥିଲା - କିନ୍ତୁ ଆମବେଳେ ଥିଲା ଏଫିସିଏନ୍‌ସି। ଆମ ସଙ୍ଗେ ଆଜିର ଏ ଟୋକାଗୁଡ଼ାକ ଯୋଡ଼ ହେବେ ? ଜାଣିଲେ, ଥରେ ଆମେ ଥିଲୁଁ କ୍ଲାସରେ ସର୍ବମୋଟ ୩୦। ସେ କୋଠରିରେ ଯେତେ ସିଟ୍ ଥିଲା ବେଶି ହେଲେ ୩୫ ଜଣ ବସିପାରନ୍ତେ। ରୋଲ୍‌ରେ କିନ୍ତୁ ପିଲାଙ୍କ ସଂଖ୍ୟା ୬୦। ସେ ୩୦ ଜଣ ୬୦ ଜଣଙ୍କ ହାଜିରା ଦେଇଦେବେ ଥରେ ଇଏସ୍ ସାର୍ ତ ଥରେ ପ୍ରେଜେଣ୍ଟ ସାର୍। ଏ ପିଲାଗୁଡ଼ାକ କରିପାରିବେ ? ଏଟେଣ୍ଡେନସ୍ ସର୍ଟେଜ୍ ହେବ ନି ?'

ମହେଶବାବୁ ଝାମ୍ପି ପଡ଼ିଲେ। କହିଲେ - 'ଆପଣ କି କଥା କହୁଛନ୍ତି ? ଆମେ ପଢୁଥିଲୁ କଲିକତାରେ। ବିଖ୍ୟାତ୍ ଏଡ଼ଭୋକେଟ୍ ବାରିଷ୍ଟର ଦାସ କ୍ଲାସ ନେଉଥାଆନ୍ତି। ଆମେ ଥିଲୁ କ୍ଲାସରେ ଦୁଇ - ମାତ୍ର ଦୁଇ। ହାଜିରା ପଡ଼ିଲା ୫୫ ଜଣଙ୍କର। ସମସ୍ତଙ୍କର ପ୍ରେଜେଣ୍ଟ କେମିତି ହେଲା ଶୁଣିବେ ? ହାଜିରା ନେଲାବେଳେ ଅଧ୍ୟାପକ ମୁଣ୍ଡ ବି ଉପରକୁ ଟେକିବେନି - କ୍ଲାସକୁ ଚାହିଁବେନି - ପଚାରିବେ - କେହି ଅନୁପସ୍ଥିତ ଅଛି ? କେହି ନାହିଁ । ବାସ୍ - ଖେଳ ଖତମ୍। ତା'ପରେ ଲେକ୍‌ଚର ଆରମ୍ଭ ହୋଇଯିବ। ମଝି ମଝିରେ ବାହାରିଆ ଲୋକେ ସେ ଲେକ୍‌ଚର ଶୁଣିବାକୁ କ୍ଲାସରେ ଖୁନ୍ଦି ହୋଇଯିବେ।'

ସାଧୁବାବୁ ଭଲ କରି ମୁଣ୍ଡ ହଲାଇ କହିଲେ - 'ବାସ୍ ସେ କଥା କହନ୍ତୁ। ଲେକ୍‌ଚର ଇଣ୍ଟରେଷ୍ଟିଂ ହେଲେ ତ ବଳେ ଲୋକେ ଶୁଣିବାକୁ ଆସିବେ। ତମେ ଭଲକରି ପଢ଼ାଇବନି - ଆଉ ହାଜିରା ଗଣିବ। ତମ ବୋରିଂ ଲେକ୍‌ଚରକୁ କିଏ ଶୁଣିବାକୁ ଆସିବ ? ଜାଣିଛନ୍ତି ନା ଏମାନେ କାହିଁକି ଶତକଡ଼ା ୭୫ ହାଜିରା ଜବରଦସ୍ତି କରିଛନ୍ତି ? ଲେକ୍‌ଚର ତ ଶୁଣ - ଏମିତି ବାଧ୍ୟ ନକଲେ କେହି କଲେଜକୁ ଆସିବେନି - ଘରେ ଗୋଳମାଳ କରିବେ। ବାପା ମା'ଙ୍କର ବି ଇଚ୍ଛା ଏଗୁଡ଼ାକ କଲେଜରେ ରହନ୍ତୁ, ଆଉ ଘରେ କିମ୍ବା ରାସ୍ତାଘାଟରେ ଗୋଳମାଳ ନ କରନ୍ତୁ।'

ରାମସ୍ୱାମୀ ବାବୁ ବି ଏ କଥାରେ ରାଜି ହେଲେ, ଆଉ କହିଲେ, 'ଯାହା କହିଲେ, ଆଜିକାଲି ସତରେ ସବୁ କଥାରେ ଏଫିସିଏନ୍‌ସିର ଅଭାବ। ଆମବେଳେ କ'ଣ କପି ନ ଥିଲା ? ଏଗୁଡ଼ାକ ତ କପି ବି କରିଜାଣିବେନି। ବହିଟିଏ ସିଧାସଳଖ

ଟେବୁଲ୍ ଉପରେ ଥୋଇ ଦେଇ ଛୁରା ବାହାର କରି ବସିବେ। ଆମବେଳେ କପି କରୁଥିଲା ରମେଶ। ଗେଞ୍ଜି ଆଉ ଅଣ୍ଡରୱେରରେ ବି ୨/୪ଟା ଲେଖାଁ ପକେଟ କରି ଦେଇଥିବ, ଆଉ ପେଣ୍ଟ କାମିଜ୍, ଗେଞ୍ଜି ଆଉ ଅଣ୍ଡରୱେରର ସବୁ ପକେଟରେ ଖଞ୍ଜି ଆଣିଥିବ କପି ସବୁ। କେଉଁ ପକେଟରେ ସାହାଜାହାନ୍ ତ କେଉଁ ପକେଟରେ ଆଓରଙ୍ଗଜେବ - ଆଉ କେଉଁ କେଉଁ ବିଷୟ କେଉଁ କେଉଁଠି ରଖାହୋଇଛି, ତାର ଗୋଟିଏ ନଥି ଖଣ୍ଡିଏ ମାଟିଆ କାଗଜରେ ଲେଖି ବାଁହାତ ପାପୁଲିରେ ଥୋଇଦେଇଥିବ, ଯାଦୁକରମାନେ ଯେମିତି ତାସ୍ ଲୁଚେଇ ରଖିଥାଆନ୍ତି । ତମେ ଇନ୍‌ଭିଜିଲେଟର୍ ଦେଖୁଥାଅ।'

ରାଧୁବାବୁ ଟିକିଏ ଅମଙ୍ଗ ହେଲେ। କହିଲେ - 'ହେଲା, ମୁଁ ସେସବୁ ମାନୁଛି। ତେବେ ମୁଁ କହିବି ଆଜିକାଲି ସବୁ ଦୋଷ ଏ ଶିକ୍ଷକମାନଙ୍କରେ। କପି ଧରିବା, ନ ଧରିବାରେ ବି ବାଛବିଚାର କରିବେ। ଶୃଙ୍ଖଳା ରହିବ କେମିତି କହୁନାହାନ୍ତି ? ଆମେ ଆଇ.ଏସ୍.ସି. ପରୀକ୍ଷା ଦେଉଥାଉଁ। କି କଠିନ ପ୍ରଶ୍ନ। କେହି ଛୁଇଁପାରୁ ନଥାନ୍ତି। ୧୫-୨୦ ମିନିଟ୍ ଯାଇଛି କି ନାହିଁ, ଆମ ରୁମ୍‌ର ଦୁଇ ଜଣ ଯାକ ଇନ୍‌ଭିଜିଲେଟର୍ ବାହାର ବାରନ୍ଦାକୁ ଯାଇ ଗପସପ ଆରମ୍ଭ କରିଦେଲେ - ସତେ ଯେମିତି କିଛି ଗୋଟାଏ ଗୁପ୍ତ ମନ୍ତ୍ରଣା। ମୋ ଟେବୁଲକୁ କାଗଜ ଖଣ୍ଡିଏ କେଉଁଠୁ ଆସିଲା କେଜାଣି ଦେଖିଲାବେଳକୁ ତହିଁରେ ୨୦ ମାର୍କର ଅଙ୍କଟିଏ କଷାହୋଇଛି, ଆଉ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି - ଲେଖିସାରିଲା ପରେ ଆଗକୁ ବଢ଼ାଇ ଦିଅ। ପରେ ଶୁଣିଲୁ ଶିକ୍ଷକମାନେ ହିଁ ପ୍ରଶ୍ନ ଦେଖି ନିଜେ ନିଜେ ପିଲାଙ୍କୁ ଏମିତି ସାହାଯ୍ୟ କରିଛନ୍ତି। ସେଇ ସାହାଯ୍ୟକରାରେ କିଛି ବାଛ ବିଚର ନାହିଁ। ସାହାଯ୍ୟ କରିବେ ତ ସମସ୍ତଙ୍କୁ - ଆଖି ବୁଜିଦେବେ ତ ସମସ୍ତଙ୍କ ପାଇଁ। ଆଉ କପିକରାରେ ବି ଗୋଟାଏ ସୀମା ରଖିଥିବେ - ସୀମା ଟପିଲାକ୍ଷଣି ଦେବେ କଷି କରି। ସେଥିରେ ପିଲାମାନେ ଶିକ୍ଷକଙ୍କୁ ନ ମାନିବେ କେମିତି କହିଲ ? ଆଉ ଆଜିକାଲି ତ ଦେଖୁଛନ୍ତି ଶିକ୍ଷକମାନେ ଜଣକଠାରୁ କପି ଧରୁଥିବେ ତ ଆଉ ଜଣକୁ ନିଜେ କପି ଯୋଗାଇ ଦେଉଥିବେ।

ଏଥର ଦୁଇ ତିନି ଜଣ ଏକାଥରେ କହିବାକୁ ଚେଷ୍ଟା କରୁଥିଲେ; କିନ୍ତୁ ମଧୁବାବୁ ସମସ୍ତଙ୍କ କଥାକୁ ହାତହଲାରେ ଚପାଇ ଦେଇ ବଡ଼ପାଟିରେ କହିଲେ - 'ରାଧୁବାବୁ ଯାହା କହୁଛନ୍ତି ସତ କଥା। ଆମବେଳେ ଶିକ୍ଷକମାନେ ସବୁ ଜାଣୁଥିଲେ; କିନ୍ତୁ ଢଙ୍ଗ କରୁଥିବେ ସତେ ଯେମିତି କିଛି ଜାଣୁନାହାନ୍ତି - ଆଉ ଠକି ହୋଇ ଯାଉଛନ୍ତି। ଜାଣିଲେ, ଆର୍ତ୍ତବାବୁ ଆମକୁ ପଢ଼ାଉଥାନ୍ତି ଭାଗବତ। ହାଜିରା ନେଲା ପରେ ଆରମ୍ଭ କଲେ କାଳୀୟଦଳନ। ଭାଗବତ ବୁଝାଇଲାବେଳେ ଆର୍ତ୍ତବାବୁ ତ ବିଭୋର ହୋଇ ଆଖି ବୁଜିଦିଅନ୍ତି - ଦି' ଜଣ ପିଲା ତେଣେ ଝରକା ଡେଇଁ ବାହାରକୁ ଚାଲିଗଲେଣି।

ଆଉ ଏଣେ ଶ୍ରୀକୃଷ୍ଣ କାଳୀୟ ଫଣା ଉପରେ ନାଚୁଛନ୍ତି। କାଳିୟର ମୁହଁରୁ ରକ୍ତର ଧାର ଛୁଟିଛି। ସେ କଣ୍ଠାଗ୍ରତ ପ୍ରାଣ। କାଳିୟର ପୁତ୍ର-କଳତ୍ରଙ୍କ ବିକଳକ୍ରନ୍ଦନ ଏବଂ ନାଗ-ନାଗୁଣୀମାନଙ୍କ ଶରଣଭିକ୍ଷା ଶୁଣି ଶ୍ରୀକୃଷ୍ଣ ଫଣା ଉପରୁ ଓହ୍ଲାଇ ଆସିଛନ୍ତି, ଆଉ କାଳୀୟ ତାଙ୍କ ପାଦ ତଳେ ପଡ଼ିଯାଇ କହୁଛି - 'ତୁ ମୋତେ କଲୁ ସର୍ପ ଜାତ, ସ୍ୱଭାବ ଛାଡ଼ିବି କେମନ୍ତ।' ଆର୍ତ୍ତବାବୁ ଆଖି ବୁଜି କହିଲେ - 'ଆହା-ହା... ଜଗନ୍ନାଥ ଦାସ ସାହିତ୍ୟ ଲେଖିଲାନି ଯେ ଅମୃତ ଢାଳିଦେଇଗଲା। କାଳୀୟ ତାର ଦଂଶନ ପାଇଁ ଭଗବାନ ଶ୍ରୀକୃଷ୍ଣଙ୍କୁ ଦୋଷ ଦେଉଛି - ତୁ ତ ମୋତେ ସର୍ପକୁଳରେ ଜନ୍ମଦେଲୁ। ଦଂଶନ କରିବା ସର୍ପମାନଙ୍କ ପ୍ରକୃତି। ମୁଁ ତେଣୁ ତୋତେ ଦଂଶିଦେଲି। ତୁ କାହିଁକି ସେଥିପାଇଁ ମୋତେ ଦୋଷ ଦେବୁ? ତା'ପରେ କହିଲେ - କେଡ଼େ ସତ କଥାରେ ବାବା। ଏବେ ତମ କଥାକୁ ଟିକେ ଦେଖ। ତମେ ଦି'ଜଣ ଏ ଅମୃତ ନ ଚାଖି ବାହାରକୁ ଚାଲିଗଲ। 'ମାଙ୍କଡ଼ ହୋଇ ହେଲୁଁଜାତ, ସ୍ୱଭାବ ଛାଡ଼ିବୁ କେମନ୍ତ।' ତମେ ତ ଜନ୍ମ ହେଲ ମାଙ୍କଡ଼ ରୂପରେ, ଡେ଼ଇଁବା ତମର ପ୍ରକୃତି - ଝରକା ଡେ଼ଇଁ ଚାଲିଗଲ - ମୁଁ ତମକୁ ଦୋଷ ଦେବି କେମିତି?'

ସମସ୍ତେ ଖୁସିରେ ଆର୍ତ୍ତବାବୁଙ୍କ କଥା ଧରିଛନ୍ତି ପାଟିତୁଣ୍ଡରେ ଘର କମ୍ପୁଛି, ଠିକ୍ ଏତିକିବେଳେ ଦାଶରଥି ବାବୁ ଘରକୁ ପଶିଆସିଲେ। ମୁଁ ଉଠିପଡ଼ି ମୋ ଚୌକି ଛାଡ଼ିଦେଲି ଏବଂ ଆଉ ଗୋଟାଏ ସାଦା ଚୌକି ଆଣିବାକୁ ଚାଲିଗଲି; କିନ୍ତୁ ମୁଁ ଫେରିବାବେଳକୁ ବି ଦେଖିଲି ଦାଶରଥି ବାବୁ ସେମିତି ଠିଆ ହୋଇ ରହି ସୋଫା ଆଡ଼କୁ ଆଖି ପକାଇଛନ୍ତି। ସେ ଯେମିତି ଭାବେ ଦୀନବନ୍ଧୁ ବାବୁ ତାଙ୍କୁ ସୋଫା ଛାଡ଼ି ଦେଇ ଏଇ ସାଦା ଚୌକିକୁ ଘୁଞ୍ଚି ଆସିବେ, କିନ୍ତୁ ସେପରି କିଛି ଘଟୁନଥିବା ଦେଖି ବିରକ୍ତି ସହ ମୁଁ ଖାଲି କରିଥିବା ଚୌକିରେ ବସୁ ବସୁ କହିଲେ 'ସଭାପତି ମନୋନୟନ କଣ ସରିଯାଇଛି?' ମୁଁ କିଛି ଉତ୍ତରଦେବା ଆଗକୁ କିନ୍ତୁ ସାଧୁବାବୁ କହିଲେ, 'ସଭାପତି ବଛାବଛି କଣ ଦରକାର? ଏ ତ ଗୋଟାଏ ଘରୋଇ ବୈଠକ। ଯଦି ଦରକାର, ତେବେ ହରିବାବୁ ତ ଆମ ଭିତରେ ସବୁଠାରୁ ବୁଢ଼ା - ସେ ସଭାପତି ହୁଅନ୍ତୁ।' ହରିବାବୁ କିନ୍ତୁ ନିଜେ ପ୍ରତିବାଦ କରି କହିଲେ - 'ସଭାପତି ଗୋଟାଏ କ'ଣ ମ! ବୁଦ୍ଧଦେବ ତ ସମ୍ପାଦକ ଅଛି - ସେତିକି ହିଁ ଯଥେଷ୍ଟ।'

ଠିକ୍ ସେତିକି ବେଳେ ହିଁ ଦି'ଟା ପ୍ଲେଟରେ ବରା ଆଉ ପିଆଜି ଚାଲିଆସିଲା; ଆଉ ସମସ୍ତେ ସେହି ଆଡ଼କୁ ମନ ଦେଲେ।

ରାମବାବୁ ପିଆଜିଟିଏ ଖାଉ ଖାଉ ତାର ତାରିଫ୍ କରି କହିଲେ - ଆଃ - ବଢ଼ିଆ ହୋଇଛି। ମୁଁ ଏମିତି ପିଆଜି ଖାଇଥିଲି ଥରେ ଢେ଼ଙ୍କାନାଳରେ। କାହାକୁ ଦେୱାନ କରିବେ, ଠିକ୍ କରିବା ପାଇଁ ରାଜାସାହେବ ମୋତେ ଆଉ ଅନ୍ୟ ଜଣେ ଭଦ୍ରଲୋକଙ୍କୁ

ଡାକିଥାଆନ୍ତି। ଗପସପ ଚାଲିଥାଏ। ସଞ୍ଜବେଳେ ରାଜା ସାହେବ ଡାକିଲେ – 'ଆରେ-ଏ – କିଏ ଅଛି?' ଜଣେ ଧାଇଁ ଆସି ଅଣ୍ଟାଯାଏ ନଇଁ ହାତ ଯୋଡ଼ି କହିଲା – 'ହଜୁର! ରାଜା କହିଲେ – 'ଗଲୁ ମୁନ୍‌ସି ବାବୁଙ୍କୁ କହିବୁ ଭଲ କଫି ଆଉ କିଛି ପିଆଜି ପଠାଇବେ।' କଫି ଆଉ ପିଆଜି ଆସିଲା। କଣ କହିବି ଆଜ୍ଞା ସେ ପିଆଜି! ପାଟିରେ ପକାଉ ପକାଉ...।'

କୃପାବାବୁ ବରାଟିଏ ପାଟିରେ ଦେଉଁ ଦେଉଁ କହିଲେ ବରା ଖାଇବ ତ ମୁଜାଫରପୁର-ବିହାରରେ। ମୁଁ ଥାଏ ସେଟ୍‌ଲ୍‌ମେଣ୍ଟ ଅଫିସର। ଜିଲ୍ଲା ମାଜିଷ୍ଟ୍ରେଟ୍ ଆସିଥାଏ ଏଣ୍ଡରସନ୍ ସାହେବ – ଆମେ ଡାକବଙ୍ଗଳାରେ ଅଛୁ, କହିଲା ଭାରତୀୟମାନେ ଖାଇଜାଣନ୍ତି ନି। ମୁଁ କହିଲି – 'ଖାଇ ଜାଣନ୍ତି ନି? ବରା ଖାଇଛୁ ସାହେବ?' ଅଣେଇ ଦେଲି ବରା। ଆଉ ଗୋଟାଏ ବରା ନିଜ ପାଟିରେ ଦେଉଁ ଦେଉଁ କହି ଚାଲିଲେ – 'ସାହେବ ବରା ଖାଉଛି ତ ଖାଉଛି। ସେ ବରାକୁ କହିବ ବରା' ଏଇଟା କେଉଁ ସାଲର କଥାଟି? ହଁ – ଯେଉଁ ବର୍ଷ ସେ ବିହାର ଭୂମିକମ୍ପ ହୋଇଥିଲା।'

ନରହରି ବାବୁ ଚୁପ୍‌ଚାପ୍ ବସି ଗୋଟାଏ – ପିଆଜିର କୋଣକୁ ଖୁମ୍ପୁଥିଲେ – କହିଲେ – 'କବି କହିବ ମଧୁସୂଦନ ଦାସ। ଆଉ ସେମିତି କବି ଜନ୍ମ ହେବେ?'

ଦୀନବନ୍ଧୁ ବାବୁ ମନ୍ତବ୍ୟଦେଲେ – 'ମଧୁସୂଦନ ଦାସ! କବି!'

ଦାଶରଥି ବାବୁ କହିଲେ – 'ଯେସ୍ – ମଧୁସୂଦନ ଦାସ – ଉତ୍କଳ ଗୌରବ ମଧୁସୂଦନ ଦାସ।'

ଦୀନବନ୍ଧୁ ବାବୁ ଭୁରୁ କୁଞ୍ଚାଇ କହିଲେ – 'ହଁ... ମଧୁସୂଦନ ଦାସ ଉତ୍କଳର ଗୌରବ ଯେ – କିନ୍ତୁ ସେ କବି ହେଲେ କେବେ? ଆପଣ ଦୁଇ ମଧୁସୂଦନଙ୍କ ଭିତରେ ଗୋଳେଇ ଦେଉନାହାନ୍ତି ତ ?'

'ମଧୁସୂଦନ ଦାସ କବି ନଥିଲେ? ଭୂମିକମ୍ପ ହେବ ଧରଣୀ ଫାଟିବ ଉଠିବେ ସହସ୍ରଭୂଜା.... ତେବେ କିଏ ଲେଖିଛନ୍ତି?' ପଚାରିଦେଲେ ଦାଶରଥି ବାବୁ।

ଦୀନବନ୍ଧୁବାବୁ ଅଟ୍ଟାଳିଆ ହସ ହସି କହିଲେ – 'ହେଲା, ସେ ଲେଖିଲେ ଯେ, କିନ୍ତୁ କବି ହେଲେ କେବେ? ସାହିତ୍ୟ ସମ୍ବନ୍ଧରେ ଆପଣ କ'ଣ ଜାଣନ୍ତି? ଏଥର କହିବେ ପାରଳା ମହାରାଜ ଜଣେ ସୁସାହିତ୍ୟକ।'

ଦାଶରଥି ବାବୁ ଦୀନବନ୍ଧୁ ବାବୁଙ୍କ ଆଡ଼କୁ କଟମଟ କରି ଚାହିଁଲେ। କହିଲେ – 'ମୁଁ ଯଦି କହେଁ, ପାରଳଖେମଣ୍ଡି ମହାରାଜା ବି ଜଣେ ସାହିତ୍ୟକ? ସାହିତ୍ୟ କହିଲେ ଆପଣ କ'ଣ ବୁଝୁଛନ୍ତି? ଭାଷଣ ହେଲେ ମଧ ଯେଉଁ ବକ୍ତବ୍ୟରେ ଥିବା ଶୁଦ୍ଧ ଭାଷା, ଯାହା ତତ୍‌କାଳୀନ ସାମାଜିକ ଅବସ୍ଥାର ପ୍ରତିଫଳନ ହେଉଥିବ, ସମୟ ସଙ୍ଗରେ ତାଳ

ମିଳାଇ ସମାଜକୁ ଆଗେଇ ଯିବାକୁ ଦେଉଥିବ ଇଙ୍ଗିତ, ଲକ୍ଷ୍ୟ ସାଧନ ଆଡ଼କୁ ଧାବମାନ ହେବାପାଇଁ ଦେଉଥିବ ପ୍ରେରଣା, ଯେଉଁଥିରେ ଥିବ...'

ଦୀନବନ୍ଧୁ ବାବୁ ତ ଜଣେ ରିଟାୟାର୍ଡ଼ ହାଇସ୍କୁଲ ହେଡ୍‌ମାଷ୍ଟର - ଜୀବନସାରା ସାହିତ୍ୟ ପଢ଼ାଇଆସିଛନ୍ତି - ସାହିତ୍ୟ ସମ୍ବନ୍ଧରେ ଏ ଲେକ୍‌ଚର ତାଙ୍କ ପାଇଁ ହୁଏତ ଟିକିଏ ବେଶି ହୋଇଗଲା। କହିଲେ - 'ଆପଣ ସାହିତ୍ୟ ସମ୍ବନ୍ଧରେ କ'ଣ ଜାଣନ୍ତି ? ସାହିତ୍ୟ କହିଲେ କଣ ବୁଝନ୍ତି ? ଆପଣ ଯାହା କହୁଛନ୍ତି, ସେମିତି ହେଲେ ତ ସରସ୍ୱତୀ ବେଓ୍ୱାଙ୍କ ଟିପଚିହ୍ନ ବିଜ୍ଞାପନ ବି ହୋଇଯିବ ସାହିତ୍ୟ। ଆମ୍ଭର ସ୍ୱାମୀଙ୍କ ମସ୍ତିଷ୍କବିକୃତି ଯୋଗୁଁ ସେ ଖଳଲୋକଙ୍କ କୁପରାମର୍ଶରେ ପଡ଼ି ଆମ୍ଭର ସମସ୍ତ ସ୍ଥାବର ଏବଂ ଅସ୍ଥାବର ସମ୍ପତ୍ତିକୁ ହସ୍ତାନ୍ତର କରିବାକୁ ଚେଷ୍ଟା କରୁଅଛନ୍ତି। ଏତଦ୍ୱାରା ଆମ୍ଭେ ସମସ୍ତଙ୍କୁ ଜଣାଇ ଦେଉଅଛୁ ଯେ ଏପରି ହସ୍ତାନ୍ତରରେ ଆମ୍ଭ ଉତ୍ତରାଧିକାରୀ କେହି ଦାୟୀ ହେବୁ ନାହିଁ। କି ଶୁଦ୍ଧ ଭାଷା ! ଆଜିର ସମାଜରେ ତ ପ୍ରାୟ ସବୁ ସ୍ୱାମୀ ବିକୃତ ମସ୍ତିଷ୍କ; ଖଳ ପ୍ରକୃତିର; ଲୋକେ ଆଜି ପୁଣି ସମସ୍ତଙ୍କୁ କୁପରାମର୍ଶ ଦେବାରେ ଲାଗିଛନ୍ତି। ଆଉ ଯିଏ ଯାହା ଯେଉଁଠି କରୁଛି, ସେଥିପାଇଁ କେହି ଦାୟୀ ହେଉନାହାନ୍ତି। ଆଧୁନିକ ସମାଜର କି ଚମତ୍କାର ଚିତ୍ର; ତେଣୁ କି ସୁନ୍ଦର ସାହିତ୍ୟ।'

ଦାଶରଥି ବାବୁ କଣ କହିବେ କିଛି ବୁଝିପାରୁ ନଥିଲେ। ତାଙ୍କ ଆଖି କୁମ୍ଭାରଚକପରି କିଛି ସମୟ ଘୂରିଲା ପରେ ସେ ଚକ ମଝିରେ ଗଢ଼ିଉଠୁଥିବା କଞ୍ଚା ମାଟିର ସୋରେଇ ପରି ସରୁ ହୋଇ ସାରିଥିଲା। ଠିଆ ହୋଇପଡ଼ି ଥରିଲା ଗଳାରେ କହିଲେ - 'ଗୋଟାଏ ଅକିଞ୍ଚନ ସ୍କୁଲ ମାଷ୍ଟର.... ଜଣେ କମିଶନରଙ୍କୁ ତାଚ୍ଛଲ୍ୟ କରିବାକୁ ସାହସ.... !' ଏତିକି କହୁଁ କହୁଁ ସେ ଗୋଟାପଣେ ଭୁଷୁଡ଼ି ପଡ଼ିଲେ। ଭାଗ୍ୟକୁ ମୁଁ ପାଖରେ ଥିଲି - ଠିକ୍ ବେଳେ ସମ୍ଭାଳି ନେଲି।

ଏହି ତ ହେଲା ଆମ ବୈଠକର ସଠିକ ବିବରଣୀ। ବିବରଣୀ ସମ୍ପୂର୍ଣ୍ଣ କରିବାକୁ ଗଲେ ଅବଶ୍ୟ କହିବାକୁ ପଡ଼ିବ ଯେ ଡାକ୍ତର ତ୍ରିପାଠୀ ଯଥାସମୟରେ ପହଞ୍ଚି ଅଚେତ୍ ଦାଶରଥି ବାବୁଙ୍କ ନାଡ଼ି ପରୀକ୍ଷା କଲେ ଏବଂ ସାଙ୍ଗେ ସାଙ୍ଗେ ଡାକ୍ତରଖାନାକୁ ନେଇଯିବା ପାଇଁ ପରାମର୍ଶ ଦେଇ କହିଲେ - 'ଅତ୍ୟଧିକ ରକ୍ତଚାପର ସୂଚନା।'

ପରବର୍ତ୍ତୀ ୨୪ ଘଣ୍ଟାକାଳ ଆମେ ସମସ୍ତେ ଚିନ୍ତାଗ୍ରସ୍ତ ହୋଇପଡ଼ିଥିଲୁଁ। ଅସଂଯତ ହୃତ୍‌ସ୍ପନ୍ଦନ - ଡେକାଡ୍ରନ୍ ଆଉ କ'ଣ ସବୁ ବି କିଛି କାମ ଦେଲାନି। ଏଣେ ପ୍ରଶ୍ନ ହୋଇଗଲା ଯେ ବୃଦ୍ଧ ଶିବିରରେ ସାହିତ୍ୟ ଆଲୋଚନାର ଉତ୍ତେଜନା ଯୋଗୁଁ ହେଉ ଅଥବା ମିଶା ତେଲରେ ଛଣା ହୋଇଥିବା ବରା ପିଆଜି ଯୋଗୁଁ ଦାଶରଥି ବାବୁଙ୍କ ଏ ଅବସ୍ଥା।

ଦାଶରଥି ବାବୁ ଯଦି ଆଖି ନ ଖୋଲନ୍ତି ! ଆମ ଘରେ ଯେ ମିଶାତେଲରେ ବରା ପିଆଜି ଛଣାହୁଏନି ସେ କଥା ଆଉ କିଏ ବିଶ୍ୱାସ କରିବେ ? ମୁଁ ବେଶ୍ ଚିନ୍ତିତ ହୋଇପଡ଼ିଥିଲି; କିନ୍ତୁ ଆମ କାଳର ଲୋକେ ତ ସହଜରେ ମୁଣ୍ଡ ହରାନ୍ତିନି, ଯଥାସମୟରେ ମୋ ମୁଣ୍ଡରେ ପ୍ରୟୋଗାତ୍ମକ ବୃଦ୍ଧିର ସଞ୍ଚାର ହେଲା। ହନୁମାନ ଯେପରି ଶିଂଶୁପା ଗଛର ଡ଼ାଳରେ ବସି ଧୀରେ ଧୀରେ ଶ୍ରୀରାମଙ୍କ ଗୁଣ ବର୍ଣ୍ଣନା କରି ସୀତାଙ୍କ ଧ୍ୟାନ ଆକର୍ଷଣ କରିଥିଲେ, ମୁଁ ମଧ୍ୟ ସେପରି ଦାଶରଥି ବାବୁଙ୍କ କାନ ପାଖରେ ଥିରି ଥିରି କହିଲି – 'ସେ ଦିନର କମିଶନର୍‌ମାନେ ହେବେ ଆଉ ଆଜିର ଏ କମିଶନର୍ ଗୁଡ଼ାକ। ସେଦିନର କମିଶନର୍ ସାହେବମାନଙ୍କ ଯେଉଁ ବୁଦ୍ଧି, ଯେଉଁ ଜ୍ଞାନ, ଯେଉଁ କର୍ମ କୁଶଳତା, ଯେଉଁ ପାରଗପଣିଆ....'

ଦାଶରଥି ବାବୁ ଧୀରେ ଆଖି ଖୋଲିଲେ। ଆମ ଭିତରେ ଆନନ୍ଦର ଢ଼େଉ ଖେଳିଗଲା। କହିବା ବାହୁଲ୍ୟ ଯେ ବୃଦ୍ଧଶିବିରର ଏ ମେଘମୁକ୍ତ ଆକାଶରେ ପୁନର୍ବାର ଯେପରି ଅକାଳ ବଜ୍ରପାତ ନ ଘଟେ, ସେଥିପ୍ରତି ସଚେତନ ହୋଇ ଦୀନବନ୍ଧୁ ବାବୁ ଯେପରି ଏବେ ଡାକ୍ତରଖାନା ଭିତରକୁ ହଠାତ୍ ପଶି ଆସି ଦାଶରଥିବାବୁଙ୍କ ସହିତ କୌଣସି ଆଲୋଚନା ଆରମ୍ଭ କରି ନ ବସନ୍ତି, ତତ୍‌ପ୍ରତି ଆମ୍ଭେ ବୃଦ୍ଧଶିବିରର ସଦସ୍ୟଗଣ ଯଥୋଚିତ ସତର୍କତା ଅବଲମ୍ବନ କରିଅଛୁଁ।

# ଚିଠି ମିଳିଛି

ଖଣ୍ଡିଆଭୂତର ଗତିପରି ଅବସ୍ଥାଚକ୍ରର ଗତି ମଧ୍ୟ ଅତି କୁଟିଳ। ସେ ଚକ୍ର ମଣିଷକୁ କେବଳ ଯେ ଭୁଆଁବୁଲାଏ ତା' ନୁହେଁ, କେତେବେଳେ କାହାକୁ ନେଇ କେଉଁ ଅପନ୍ତରାରେ ପକାଇଦିଏ। ତା' ନହେଲେ ମୁଁ ଅବା ଆଜି କାହିଁକି ଅନ୍ୟ କାହାରି ଚିଠି ଖଣ୍ଡିଏ ପ୍ରକାଶ କରିବାପାଇଁ କେଉଁ ପତ୍ରିକାର ଆଶ୍ରୟ ଲୋଡ଼ନ୍ତି।

ଏଇ କେତେ ଦିନ ତଳର ଘଟଣା । ଅଫିସ କାମରୁ ଫେରିଲାବେଳେ ମୁଁ ସାଧାରଣତଃ ମୋର ଘର ବାହାର କାନ୍ଥରେ ଝୁଲା ହୋଇଥିବା ଚିଠି ବାକ୍ସରେ ହାତ ମାରିଦେଇଥାଏଁ। ଅଭ୍ୟାସବଶତଃ ସେଦିନ ମଧ୍ୟ ମୁଁ ସେପରି କରିଥିଲି ଏବଂ ବାକ୍ସ ଭିତରୁ ଖଣ୍ଡିଏ ଲଫାପା ମୋର ହସ୍ତଗତ ହୋଇଥିଲା। ଘର ଭିତରକୁ ଆସିଲାପରେ ଚୌକି ଗୋଟାକରେ ବସିଯାଇ, ମୁଁ ଯେତେବେଳେ ଚିଠି ପଢ଼ିବାକୁ ଉଦ୍ୟମ କଲି, ଦେଖିଲି ଠିକଣାରେ ପ୍ରଦତ୍ତ ନାମଟି ମୋର ନୁହେଁ, ଯଦିଓ ତହିଁରେ ଥିବା ଘରର ଠିକଣାଟି ସମ୍ପୂର୍ଣ୍ଣମୋର। ନାଁରେ କିଛି ଭୁଲ ଥିଲେ ମଧ୍ୟ ଚିଠି ଖଣ୍ଡିକ ମୋ ନିଜର ହେବା ସମ୍ଭାବନା ଥିବାରୁ ଏବଂ ଅନ୍ୟ କାହାରି ଚିଠି ଭୁଲରେ ମୋ ଠିକଣାରେ ଚାଲି ଆସିଥିଲେ, ତାକୁ ଯଥାସ୍ଥାନକୁ ପୁନଃ ପ୍ରେରଣ କରିଦେବା ସଦୁଦ୍ଦେଶ୍ୟ ନେଇ ମୁଁ ଲଫାପାଟିକୁ ଖୋଲି ଦେଇଥିଲି; କିନ୍ତୁ ଚିଠିର ପ୍ରଥମ କିଛି ଅଂଶ ପଢ଼ିସାରିଲା ପରେ ହିଁ ମୋର ହୃଦ୍‌ବୋଧ ହୋଇଯାଇଥିଲା ଯେ ପତ୍ରଟି ମୋ ପାଇଁ ଉଦ୍ଦିଷ୍ଟ ନୁହେଁ- ଯେହେତୁ ଅଳ୍ପଦିନ ତଳେ ମୁଁ କୌଣସି ଔଷଧ ଦୋକାନକୁ ଯାଇ ନଥିଲି ଅଥବା କେଉଁ ଔଷଧ ଦୋକାନରେ କୌଣସି ଶଶିକାନ୍ତ ବାବୁଙ୍କ ସହ ମୋର ଆଳାପ କାହିଁକି, ଦେଖା-ସାକ୍ଷାତ୍ ମଧ୍ୟ ହୋଇ ନଥିଲା। ଭାବିଲି ଦସ୍ତଖତଟିକୁ ଦେଖିଦେଲେ ସବୁ କଥା ଠିକ୍ ଜଣାପଡ଼ିଯିବ ଏବଂ ପତ୍ରଟିକୁ ଯଥା-ସ୍ଥାନକୁ ପଠାଇଦେବାରେ କୌଣସି ଅସୁବିଧା ରହିବନି; କିନ୍ତୁ ଦସ୍ତଖତଟି ଦେଖି ସ୍ତମ୍ଭୀଭୂତ ହୋଇଗଲି। ଲେଖା ହୋଇଛି - 'ବିଶ୍ୱସ୍ତ ଢେଙ୍କୁନ୍'। କେବଳ ମାତ୍ର ସେତିକି। ଚିଠିଟିକୁ ଭଲକରି ଓଲଟ ପାଲଟ କରି ତଳ ଉପର ଅନାଇଲି ଏବଂ ପରିଶେଷରେ ସମଗ୍ର ଚିଠିଟି ପଢ଼ିଲି; କିନ୍ତୁ ଦେଖିଲି ପୂରା ଠିକଣା କେଉଁଠି ବି ନାହିଁ। ଚିଠିର ଉପରେ ଦିଆଯାଇଥିବା ସହରାଞ୍ଚଳର ନାମ

'ବିଷାଦନଗର'। ଏ ବିଷାଦନଗରର ଢେକୁନ୍ ମହାଶୟଟି କିଏ ଜାଣି ନପାରି ବିବ୍ରତ ହୋଇପଡ଼ିଲି ଏବଂ ବିନା ଅନୁମତିରେ ଅନ୍ୟ କାହାର ବ୍ୟକ୍ତିଗତ ଚିଠି ପଢ଼ିଦେଲା ପରେ ମଧ୍ୟ ସେ ଚିଠି ତାଙ୍କ ପାଖକୁ ପଠାଇ ଦେଇ ପାରୁନଥିବାରୁ ଅତ୍ୟନ୍ତ ବ୍ୟଥିତ ହେଲି। ମୁଁ ଏପରି ଅବସ୍ଥାରେ ଥିବା ସମୟରେ ହିଁ ଗୃହିଣୀ ଚ' କପ୍ ଧରି ମୋ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ମୋର ଏତାଦୃଶ ବିଷାଦିତ ଅବସ୍ଥା ନିରୀକ୍ଷଣ କରି ବିଷାଦର କାରଣ ପୁଛାକଲେ। ମୁଁ ମୋର ଦୁଃଖର କାରଣ ବର୍ଣ୍ଣନା କରନ୍ତେ, ସେ ମୃଦୁହାସ୍ୟ କଲେ ଏବଂ 'ଏତିକି କଥାକୁ ଏଡ଼ିକି ମୁହଁ, ବୋଲି ମନ୍ତବ୍ୟ ଦେଇ କୌଣସି ଦ୍ୱିଧା ବିନା ପରାମର୍ଶ ଦେଲେ ଯେ ଛବିପେଟ୍ଟା କିମ୍ବା କଳା ଗାଈ ମିଳିଲେ ସେପରି ଛବିପେଟ୍ଟା ଅଥବା କଳାଗାଈ ପାଇଥିବା ଭଦ୍ରଲୋକ ଯେପରି ଗାଈର ମୁଣ୍ଡ ଏବଂ ଲାଞ୍ଜରେ ଧଳାଛିଟ ଦାଗ ଥାଉ ବା ନ ଥାଉ ସମ୍ବାଦପତ୍ରରେ ବିଜ୍ଞାପନ ଦେଇ ସୂଚନା ଦିଅନ୍ତି ଯେ ଯାହାଙ୍କର ସେ ଛବିପେଟ୍ଟା ଅଥବା କଳାଗାଈ, ସେହି ଭଦ୍ରଲୋକ ସାକ୍ଷ୍ୟ ପ୍ରମାଣ ସହ ସ୍ୱୟଂ ଉପସ୍ଥିତ ହୋଇ ଯଥାରୀତି ଛବିପେଟ୍ଟା ଅଥବା କଳା ଗାଈକୁ ନେଇଯାଇ ପାରନ୍ତି - ଏ କ୍ଷେତ୍ରରେ ମଧ୍ୟ ସେପରି ବ୍ୟବସ୍ଥା କରାଯାଇପାରେ।

ଗୃହିଣୀଙ୍କଠାରୁ ଏପରି ଏକ ସମୟୋପଯୋଗୀ ଏବଂ ଯୁକ୍ତିଯୁକ୍ତ - 'ଶୁଣି ମୁଁ ଯେ କେତେ ଦୂର ଆନନ୍ଦିତ ହୋଇଥିଲି, ତାହା ଯେକୌଣସି ଗୃହିଣୀବନ୍ତ ହୃଦୟଙ୍ଗମ କରିପାରୁଥିବେ। ତେଣୁ ସେ ସମ୍ବନ୍ଧରେ ଏଠାରେ ବସିବା କାଳ-ପାତ୍ର ତଥା ପତ୍ରିକାର ସ୍ଥାନ ବିବେଚନା ଦୃଷ୍ଟିରୁ ଅସଙ୍ଗତ ହେବ। କେବଳ ଏତିକି କହିଲେ ଯଥେଷ୍ଟ ଯେ ମୁଁ ସେ ପରାମର୍ଶକୁ ସାଦରେ ଗ୍ରହଣ କଲି ଏବଂ ପତ୍ରର ପ୍ରକାଶକ ନିମନ୍ତେ ଯଥାବିଧି ପତ୍ରିକାଙ୍କ ଆଶ୍ରୟ ଲୋଡ଼ିଲି।

ନିମ୍ନରେ ପତ୍ରଟି ଅବିକଳ ଉଦ୍ଧୃତ ହେଲା। ମୋର ଆଶା ଏବଂ ବିଶ୍ୱାସ ଯେ ଯାହା ନିମନ୍ତେ ପତ୍ରଟି ଉଦ୍ଦିଷ୍ଟ ସେ ମହାଶୟ ଚିଠି ପଢ଼ିସାରିଲା ପରେ ଯଥାଯୋଗ୍ୟ କାର୍ଯ୍ୟାନୁଷ୍ଠାନ କରିବେ। ପୁନଶ୍ଚ ସେ ମହାଶୟଙ୍କୁ ଅନୁରୋଧ ଯେ ଯେହେତୁ ସେ ପତ୍ରିକାରେ ସମଗ୍ର ଚିଠିଟି ପଢ଼ିସାରିଥିବେ ଢେ଼କୁନ୍ ବାବୁଙ୍କ ସ୍ୱଲିଖିତ ପତ୍ର ମୋ ପାଖରୁ ସଂଗ୍ରହ କରିବାକୁ ଆଉ ଚେଷ୍ଟିତ ହେବେନାହିଁ।

ଅପରନ୍ତୁ ପ୍ରକାଶିତ ପତ୍ର ପଢ଼ିସାରିଲା ପରେ ଯଦି କେହି ଦେଖନ୍ତି ଯେ ଏ ପତ୍ର ଯାହା ପାଇଁ ଉଦ୍ଦିଷ୍ଟ, ସେ ସେହି ସିଏ ନୁହନ୍ତି, ତେବେ ବିନା ଅନୁମତିରେ ଅନ୍ୟ କାହାରି ବ୍ୟକ୍ତିଗତ ବିରକ୍ତ ହେବେ, ଏଥିରେ ସନ୍ଦେହ ନାହିଁ। ଏପରି ସ୍ଥଳେ ସେପରି ମହାଶୟଙ୍କୁ ଅନୁରୋଧ ଯେ କିପରି ଅବସ୍ଥାରେ ଏ ପତ୍ରର ପ୍ରକାଶନ ହେଲା, ସେହି ଅବସ୍ଥା-ଚକ୍ର ପ୍ରତି ସେମାନେ ସଦୟ ଦୃଷ୍ଟିପାତ କରିବେ।

(ପ୍ରାପ୍ତ ପତ୍ରର ନକଲ)

ବିଷାଦନଗର
୭.୪.୮୦

ପ୍ରିୟ ଭାଇ ଟିଙ୍କ,

ମୁଁ ଜାଣେ ଯେ ତୁ ମୋର ଏ ଚିଠି ଦେଖି ଆଶ୍ଚର୍ଯ୍ୟ ହୋଇଯିବୁ। ଭାବିବୁ ଆଜି ନାଇଁ କାଲି ନାଇଁ, ହଠାତ୍! କାହିଁ ରେଭେନ୍‌ସା କଲେଜ ପାଠ ପରେ ଆମର ଆଉ ଦେଖାସାକ୍ଷାତ ନାହିଁ। ଚିଠିପତ୍ର ଦିଆନିଆ ପାଇଁ ମଧ୍ୟ ସେମିତି ପ୍ରୟୋଜନ ନଥିଲା। ସୁଖବେଳେ କିଏ ବା କାହିଁକି କାହାକୁ ମନେ କରିବ କହିଲୁ? ଦୁଃଖବେଳେ କିନ୍ତୁ ବନ୍ଧୁମାନେ ମନେପଡ଼ନ୍ତି। ସେଦିନ ଔଷଧ ଦୋକାନରେ ହଠାତ୍ ଶଶିକାନ୍ତ ସଙ୍ଗେ ଦେଖା ହୋଇଗଲା। ଶଶିକାନ୍ତକୁ ମୁଁ ଚିହ୍ନିପାରିଲିନି - ସେ କିନ୍ତୁ ମୋତେ ଠିକ୍ ଚିହ୍ନିଦେଲା। କଥାବାର୍ତ୍ତା ବେଳେ ସେ ଯେତେବେଳେ ଜାଣିଲା - ମୁଁ କିଛି ନିଦବଟିକା କିଣିବାପାଇଁ ସେ ଦୋକାନକୁ ଯାଉଛି, କଥା ଛଳରେ କହିଉଠିଲା ଯେ ତୋର ବି ଏଇ ଅବସ୍ଥା! ସେ କୁଆଡ଼େ କିଛିଦିନ ଆଗରୁ ତୋତେ ସେଇ ଦୋକାନରେ ଦେଖିଥିଲା, ଆଉ ଜାଣିପାରିଥିଲା ଯେ ତୁ ରୀତିମତ ନିଦବଟିକା କିଣୁଛୁ। ମୁଁ ତ ତୋ ଠିକଣା ଜାଣିନଥିଲି.. ତା'ଠାରୁ ଜାଣିଲି। ଚିଠି ଦେବି ବୋଲି ଅବଶ୍ୟ ଭାବି ନଥିଲି। ଆଜି କିନ୍ତୁ ଗୋଟାକ ପରେ ଗୋଟାଏ କରି ଦି'ଟା ବଟିକା ଖାଇସାରିଲା ପରେ ମଧ୍ୟ ଯେତେବେଳେ ନିଦ ହେଲାନି, ତୋତେ ହଠାତ୍ ମନେପକାଇଲି, ଆଉ ଏ ରାତି ଗୋଟାଏ ବେଳେ ବି କାଗଜ କଲମ ଧରି ବସିଲି। ତୁ ତ ମୋ ପରି ଜଣେ ସମଦୁଃଖୀ; ତୋ ପାଖରେ ଦୁଃଖ ବଖାଣିଦେଲେ ହୁଏତ ମୋ ମନର ବୋଝ ଟିକିଏ ହାଲୁକା ହୋଇଯିବ, ଆଉ ନିଦ ଆସିଯିବ।

ତୋର ମନେ ଅଛି ନା, ଆଗ ଆମେ କେମିତି ଚିଠି ଲେଖିଲାବେଳେ ପ୍ରଥମେ ନିଜ କୁଶଳ ସମାଚାର ଦେଇ ପରେ 'ତୁମର କୁଶଳକୁ ପରମେଶ୍ୱର ମାଲିକ ଥିବେ' ବୋଲି ଲେଖିଥିଲୁଁ? ଦି'ଦି'ଟା ନିଦବଟିକା ଖାଇଲା ପରେ ବି ମୋର ନିଦ ହେଉନି ବୋଲି ତ ଜାଣୁଛୁ - ଆଉ କଣ ବା ମୋ କୁଶଳ ସମାଚାର ଦେବି? ତୁ ବି ତ କୁଆଡ଼େ ନିଦବଟିକା ଖାଉଛୁ - ଦିନକୁ କେତେଟା କେଜାଣି - ତୋ କୁଶଳକୁ ଅବା ପରମେଶ୍ୱର କ'ଣ ଆଉ ମାଲିକ ଥିବେ। ତେଣୁ ସେ ସମ୍ବନ୍ଧରେ ଅଧିକ ଚର୍ଚ୍ଚା କରି କି ଲାଭ?

କଲେଜ ଛାଡ଼ିଲା ପରେ ତୁ ଟ୍ରେନିଂ ନେଇ ଫରେଷ୍ଟ ଅଫିସର ହେଲୁ, ସେ ଖବର ମୁଁ ପାଇଥିଲି। ମୁଁ ବି ଜଣେ ଇଞ୍ଜିନିଅର ହେଲି, ସେ କଥା ତୁ ଜାଣିଥିବୁ।

ଏସିଷ୍ଟେଣ୍ଟ୍ ଇଞ୍ଜିନିଅର ଚାକିରି ପାଇଲାକ୍ଷଣି ତ ମୁଁ ବାହା ହୋଇପଡ଼ିଲି - ଭାଇ, ସେ କଥା କ'ଣ କହିବି! କାହିଁ ଥିଲେ ଭାବୀ ଶ୍ୱଶୁରଗୁଡ଼ାକ କେଜାଣି, ବାର୍ ଲାଇଟ ପାଖକୁ ବର୍ଷାଦିନିଆ ଝଡ଼ିପୋକପରି ମାଡ଼ିଆସିଲେ, ଆଉ ଝିଅ ସାଙ୍ଗରେ ହାତୀ ଦେବେ, ଘୋଡ଼ା ଦେବେ କହି ଅସ୍ଥିର କରିଦେଲେ! ତୁ ତ ଜାଣିଥିବୁ ମୁଁ କାହାକୁ ଭଲ ପାଉଥିଲି। ସତେ ସେସବୁ ମନେପଡ଼ିଲେ କାଲିର କଥାପରି ଲାଗେ। ତୋର ମନେ ଅଛିନା, ସେ 'ପ୍ରେମଭିକ୍ଷାଣୀ'ର କଥା? ସେ ମୀନାକ୍ଷୀ ବି କେମିତି ଚିଠିଟି ନେଇ ପ୍ରିନ୍‌ସିପାଲଙ୍କ ପାଖରେ ପହଞ୍ଚିଗଲା ଦେଖିଲୁ? ସେ ବୁଦ୍ଧ ଭଗବାନ ବି କାହିଁକି ସେମିତି ଚିଠି ଲେଖୁଥିଲା କେଜାଣି? ଲେଖିଲା - 'ମୁଁ ତୁମକୁ ଅତୀବ ପ୍ରେମ କରେ।' ଆରେ ସେମିତି ଯଦି ଲେଖିଛ ସିଧାସଳଖ 'ତମ ପ୍ରେମଭିକ୍ଷାଣୀ ଭଗୁ' ବୋଲି ଦସ୍ତଖତ ଦେଉଛୁ କାହିଁକି? ଯାକୁ ବୁଦ୍ଧୁ ନ କହିବ ତ କାହାକୁ କହିବ। ପ୍ରିନ୍‌ସିପାଲ୍ ଛାଡ଼ିଦିଅନ୍ତେ? ଦେଲେ କଷି କରି। ତେବେ ରକ୍ଷାହେଲା ତାକୁ ଖାଲି କୋଡ଼ିଏ ଟଙ୍କା ଜୋରିମାନା କରି ତାଗିଦା ଦେଇ ଛାଡ଼ିଦେଲେ - ନ ହେଲେ କଲେଜରୁ ତଡ଼ି ଦେଇଥିଲେ ତା' ପ୍ରେମ ଏକାଥରେ ବାହାରିପଡ଼ିଥାଆନ୍ତା। ସେ ଦିନଠୁ ବିଚରା ଭଗବାନର ନାଁ 'ପ୍ରେମଭିକ୍ଷାଣୀ' ହୋଇଗଲା। ଆଜିକାଲି କିନ୍ତୁ ପ୍ରେମ କରିବା କେଡ଼େ ସହଜ ଦେଖିଲୁ! ବିଶ୍ୱାସ କରିବୁନି, ସେଦିନ ମୁଁ କେଉଁଠି ଗୋଟାଏ ଦେଖିଲି ଝିଅମାନେ ଦଳ ଦଳ ହୋଇ କଲେଜ ବାରନ୍ଦାରେ ଚାଲିଛନ୍ତି, ଆଉ ପୁଅ ସବୁ ତାଙ୍କୁ ଡ଼େଇଁଗଲାବେଳେ ଗୀତ ବୋଲିଦେଉଛନ୍ତି। ଆଜିକାଲିକା ଏ ଝିଅସବୁ ବି କ'ଣ କମ୍ କହିବୁ! ପୁଅମାନେ ଗୀତ ବୋଲିଦେଲେ ସେମାନେ ବି ହସରେ ଫାଟି ପଡ଼ୁଛନ୍ତି ଆଉ ଓଲଟା ଗୀତ ମେଲୁଛନ୍ତି। ତା'ପରେ ଦେଖ୍ ମଜା। କୌଣସି ପୁଅ କାହାକୁ ଟିକିଏ ଖତେଇ ହେଲା କି ନାହିଁ, ଝିଅ ଖୁସିରେ ଧାଇଁଯାଉଛି ଘାସ ପଡ଼ିଆକୁ; ଆଉ ପଡ଼ିଆରେ ରୀତିମତ ଗଡ଼ିଯାଉଛି କେତେ ବାଟ। ପୁଅ ଏଣେ କେଉଁଠି ଦି' ଚାରିଟା ଫୁଲ ସଂଗ୍ରହ କରି ଅମଣ ଘୋଡ଼ାଟିଏ ପରି ଡ଼େଇଁ ଡ଼େଇଁ ଝିଅ ପାଖରେ ପହଞ୍ଚିଗଲାକ୍ଷଣି ଝିଅଟି ଉଠିପଡ଼ି ଦେ ଛୁ-। ବିଚରା ପୁଅ - ପୁଣି ଗୋଡ଼ାଇଯାଉଛି ତା' ପଛରେ - ଫୁଲଟିଏ ତା' ବେଣୀରେ ଖୋଷି ଦେବ ବୋଲି। ପରେ ଦେଖ - ସେ ଝିଅ ପାଇଁ ଦୁଇ ପୁଅଙ୍କ ଭିତରେ ଧୂମାଧୂମ ବକ୍‌ସିଂ-ଢୁସୁମ୍ ଢୁସୁମ୍। ଏଣେ ପ୍ରିନ୍‌ସିପାଲ ରାଗି ମାଗି ଚପ୍ରାଶି ହାତରେ ଖବର ପଠାଉଛନ୍ତି କ'ଣ ନା, ବେଶି ପାଟିକରି ଗୀତ ବୋଲିଲେ ଅନ୍ୟ କ୍ଲାସ୍‌ର ପିଲାମାନେ ଡିଷ୍ଟର୍ବ ହେଉଛନ୍ତି। ଆଃ- ଆମର ଦିନେ ଏମିତି ହେଇଥାଆନ୍ତା କି - ସେ କଲେଜ ବିଲ୍‌ଡ଼ିଂ ଆଉ କନିକା ଲାଇବ୍ରେରୀ ମଝି ଲନ୍‌ରେ କେତେ ଗଡ଼ିବ ଗଡ଼ୁଥାଅ। ସେ ଦିନରେ ପ୍ରିନ୍‌ସିପାଲମାନେ କିନ୍ତୁ ପୁଅ ଝିଅ ଦିହିଁଙ୍କ

ହାଡ଼ ଘେରାଇ ଦେଇଥାନ୍ତେ ନୁହେଁ ? ତୋର ତ ସବୁ ମନେଥିବରେ ରମୁ, ସେଦିନ ଆମର ବି ଏମିତି ଇଚ୍ଛା ହେଉଥିଲେ କ'ଣ କିଛି କରିହେଉଥିଲା ? ସବୁ ଇଚ୍ଛାକୁ ଜୋରଜବରଦସ୍ତି ମନ ଭିତରେ ଦାବି ଦେଇ ବୁଡ଼ି ବୁଡ଼ି କିଛି ପାଣି ପିଇବା କଥା ନୁହେଁ ?

ସତରେ ଦେଖ୍ ତ - ଆମ ଦିନେ ପ୍ରେମିକମାନଙ୍କ କି ଅବସ୍ଥା ! ଘୋଡ଼ା ନ ଥିବା ଲୋକ କ'ଣ ପ୍ରେମ କରିପାରୁଥିଲା ? ତହିଁରେ ପୁଣି ପ୍ରେମ କରିବା ପାଇଁ ଦରକାର ପଡୁଥିଲା ଗୋଟାଏ କୂଅ। ଘୋଡ଼ା ଚଢ଼ି ବଣ ଭିତରେ କିଛି ସମୟ ବୁଲାବୁଲି କଲାପରେ ଶୋଷହେଲେ ଯାଅ ସେ କୂଅ ପାଖକୁ। ସେଇଠି ତ କୂଅ ଘେରିଆଡ଼େ ପ୍ରେମିକାମାନେ ତାଙ୍କ ପାଣିହାଣ୍ଡି ଧରି ସାଲୁବାଲୁ ହେଉଥିବେ। ତମ ପ୍ରେମିକା କିଏ ବାଛିନେଲା ପରେ ଅପେକ୍ଷା କର ସେ ବାଲ୍‌ଟି ଧରି ପାଣି କାଢ଼ିବାକୁ ଆରମ୍ଭ କରିଦେବାଯାଏ। ଠିକ୍ ସେତିକିବେଳେ ହିଁ ପାଣି ପିଇବା ପାଇଁ କୂଅମୂଳରେ ପହଞ୍ଚିଯାଅ। ଶୋଷକଲା ଲୋକ ପାଣି ମାଗିଲେ ତ ତାକୁ ପାଣି ଦେବା କଥା - ଏଇ ପ୍ରେମିକା ଯେତେବେଳେ ତମ ଯୋଡ଼ା ପାପୁଲିରେ ପାଣି ଢ଼ାଳିବେ ହାତରୁ କହୁଣୀକୁ ପାଣି ବୋହିଯାଉଥାଉ ପଛକେ, ତମକୁ ପ୍ରେମିକାର ମୁହଁକୁ ଅନାଇ ରହିବାକୁ ପଡ଼ିବ। ପ୍ରେମିକା ବି ବାଲ୍‌ଟି ଆଡ଼କି ମନ ନ ଦେଇ ତମ ମୁହଁକୁ ଚାହିଁବା କଥା; ଆଉ ଠିକ୍ ସେତିକି ବେଳେ ହିଁ ତାକୁ ମାରିବ ପ୍ରେମର ଇଲେକ୍‌ଟ୍ରିକ୍‌ଶକ୍। ତା'ପରେ ଦେଖ ମଜା - ତମେ ଏଣେ ଘୋଡ଼ାପିଠିରେ ବସି ପଛକୁ ଲେଉଟି ଲେଉଟି ବଣକୁ ଫେରିଯିବ ତ ହାଣ୍ଡି ଧରି ପ୍ରେମିକା ଧାଇଁଯିବ ତା ଘରକୁ; ଆଉ ଘରେ ପହଞ୍ଚିଲାକ୍ଷଣି କୌଣସିମତେ ହାଣ୍ଡି ଥୋଇ ଦେଇ ନାଚି ବୁଲିବ ସୋଫା ସେଟ୍‌ର ଚାରିଆଡ଼େ ଗୀତ ମେଲି ଦେଇ। ଶେଷରେ ସେ କଚଡ଼ି ହୋଇପଡ଼ିବ ସୋଫା ଉପରେ; ଆଉ ଛାତକୁ ଅନାଇ ଗୋଟା କେତେ ଫଁ ନିଶ୍ୱାସ ମାରି ଜଣାଇଦେବ ଯେ ସେ ତମ ଲଭ୍‌ରେ ପଡ଼ିଯାଇଛି।

କଥାଟା ଏତେ ସହଜ ବୋଲି ଉପରକୁ ଜଣାପଡୁଛି ସିନା - କଲେଜ୍‌ରେ ପଢ଼ିଲାବେଳେ ଆମ ପାଖରେ ଘୋଡ଼ା ଥିଲେତ।

ଜାଣିଲୁରେ ରମେଶ ତୋତେ ମୁଁ ସେତେବେଳେ ଗୋଟାଏ ଗୁପ୍ତ କଥା କହି ନଥିଲି ? ସେ ବୋଟାନିକାଲ୍ ଗାର୍ଡ଼ନ୍ ତ ତୋର ମନେଥିବ - ସେ ଭିତରେ ବୁଲୁ ବୁଲୁ ଦିନେ ମୁଁ ବଢ଼ିଆ ଚମ୍ପାଫୁଲଟିଏ ପାଇଲି। ଫୁଟି ନଥାଏ, କିନ୍ତୁ ଗୋରାଚକଚକ ରଙ୍ଗ ନେଇ ଭିଡ଼ିମୋଡ଼ି ହୋଇଥାଏ। ଭାବିଲି ଯାହା ହେଲେ ହେବ ପଛକେ 'ସୁଇଟି'କୁ ସେ ଫୁଲଟି ଉପହାର ଦେବି। ସୁଇଟି କିଏ ଜାଣିଛୁ ତ ? ଶାଶ୍ୱତୀ ମ।

ତା'ଆରଦିନ ମୋ ପଞ୍ଜାବି ପକେଟରେ ସେ ଫୁଲ ନେଇକରି ଗଲି। ବଢ଼ିଆ ଧୋତି ଖଣ୍ଡିଏ ବି ପିନ୍ଧିଥାଏ। ପନ୍ଦର ମିନିଟକାଳ ବାଁ ହାତରେ ବାଳ ଜାକି ଜାକି କୁଣ୍ଡାଇହେଲି। ଫିଜିକ୍ସ ଲେକ୍‌ଚର ଥିଏଟର ପାଖରୁ ଦେଖିଲି ସୁଇଟି କେମିଷ୍ଟ୍ରି କ୍ଳାସ ଆଉ ଆର୍ଟସ ବ୍ଲକକୁ ଯାଉଛି। ଖେପିଗଲି ସେ ସୂର୍ଯ୍ୟଘଡ଼ି ବାଟଦେଇ; ତୋ ମନେ ଅଛି ନା ! ସେ ସ୍ୱାଇରେଲ ସିଡ଼ି - ସେଇଠି ସୁଇଟି ସଙ୍ଗରେ ଭେଟ ହେଲା। ମୋର ଯେତେ ସାହସ ଥିଲା ସବୁ ଏକାଠି କଲି। ଭାବିଲି, ପ୍ରିନ୍‌ସିପାଲ କଲେଜରୁ ତଡ଼ିଦେବେ ତ ଦେବେ ସୁଇଟିକୁ ନିଶ୍ଚୟ ଚମ୍ପାଫୁଲ ପ୍ରେଜେଣ୍ଟ କରିବି। ପାଖକୁ ଗଲି - ପଞ୍ଜାବି ପକେଟରେ ହାତ ପୂରାଇଲି ଆଉ 'ମିସ୍' କହିଲାରୁ ସୁଇଟି ମୋ ଆଡ଼କୁ ଚାହିଁଛି ନା ନାହିଁ, ମୋର ସାହସ ଉଡ଼ିଗଲା। ଛେପ ଢ଼ୋକି ପଚାରିଲା 'ଆପଣଙ୍କର ଏବେ କେଉଁ କ୍ଳାସ ?'

ସୁଇଟି କ'ଣ କଲା ଜାଣିଛୁ। ପାଟିରେ ମଣ୍ଡା ଭର୍ତ୍ତିକଲେ ମୁହଁ ଯେମିତି ଦିଶେ ସେମିତି ମୁହଁ କରି ସେଇଠୁ ଚାଲିଗଲା। ମୁଁ ଏଣେ ଡରରେ ଛାନିଆଁ। ପ୍ରିନ୍‌ସିପାଲ୍‌ଙ୍କ ପାଖରେ ରିପୋର୍ଟ କରିଦେବ ନାହିଁ ତ। ପ୍ରିନ୍‌ସିପାଲଙ୍କ ଜୋରିମାନା ନୋଟିସ କେବେ ଆସିବ ସେଦିନକୁ ଅପେକ୍ଷା କରୁ କରୁ ମୋ ରେଭେନ୍‌ସା କଲେଜର ପାଠ ବି ସରିଗଲା; ଆଉ ତା'ପରେ ତ ମୁଁ ଚାଲିଗଲି ଇଂଜିନିୟରିଂ କଲେଜକୁ।

ଏବେ ଯେତେବେଳେ ବିବାହ ପ୍ରସ୍ତାବ ସବୁ ଆସିଲା - ଭାବିଲି ବାପାଙ୍କୁ ସେ 'ସୁଇଟି' କଥା କହିବି; କିନ୍ତୁ ଏମିତି ପ୍ରେମକଥାଟିଏ ବାପାଙ୍କୁ କହିହେବ !! ହାଡ଼ ଚେଚାଇ ଦେବେ ନି !

ମୁଁ ଭାବିଥିଲି, ବାପା ଗୁଡ଼ିଏ ଟଙ୍କା ସଂଗ୍ରହ କରି କେଉଁ ବଡ଼ଲୋକ ଘରର କୁଜୀ କେମ୍ପୀ ଟେରୀଟିଏ ମୋ ପାଇଁ ଠିକ୍ କରିଥିବେ। ବାହା ଦିନ ବି ଝିଅ ବେଦିକୁ ଆସିଲା ଯେ ଗୋଡ଼ଠାରୁ ମୁଣ୍ଡଯାଏ ଯେସିତି ଘୋଡ଼େଇ ହୋଇଥାଏ - ତା' ଭିତରେ ହାଣ୍ଡିଟିଏ ଅଛି ନା ମେଣ୍ଢାଟିଏ, ସେ କଥା ବି ଜାଣିବା ମୁସ୍କିଲ୍। ତେଣୁ ସେ ସୋଆଗ ରାତିରେ ମୁଁ ଯେମିତି ପତ୍ନୀଙ୍କ ମୁହଁରୁ ଓଢ଼ଣା ଟିକିଏ ଟେକି ଦେଇଛି, ଚମକି ପଡ଼ିଲି। ଓଢ଼ଣା ଭିତରୁ ଖିଁକ-ଖିଁକ ହସି ସେ ପଚାରିଦେଲେ 'ଆପଣଙ୍କର ଏବେ କେଉଁ କ୍ଳାସ !'

ସତ କହୁଛିରେ ରମେଶ - ସୁଇଟିକୁ ପାଇ ମୋର ମନେହେଲା ସତେ ଯେମିତି ମୁଁ ସରଗର ଚାନ୍ଦ ପାଇଯାଇଛି। ଭାବିଲି ମୋ ଜୀବନ ସାର୍ଥକ ହୋଇଗଲା।

ମୋ ବେତନ ମାସକୁ ୨୭୫ ଟଙ୍କା, ଘରୁ ଚାଉଳ, ଡାଲି ଆଉ ଘିଅ ଆସେ ଅଭାବ ବୋଲି ଆମର କିଛି ନଥିଲା। ସେଦିନ ତ ସବୁ କେତେ ଶସ୍ତା ଜାଣିଛୁ, ସିନେମା ଦେଖାଠାରୁ ଆରମ୍ଭ କରି, ଭୋଜିଭାତ ମଉଜ ମଜଲିସ, ଶାଢ଼ି ଆଉ ଗହଣା

କିଣା ପରେ ବି ବେଶ୍ କିଛି ଟଙ୍କା ବଳିଯାଏ। ଦିନ ମାସ କାହିଁକି, ବର୍ଷଗୁଡ଼ିକ ବି ତେଲଦିଆ ଅଖର ଚକ ପରି ବିନା କେଁ କଟରରେ ଗଡ଼ିଚାଲିଥିଲା। ପ୍ରଥମ କରି ଅବାକ୍ ଶୁଭିଲା, ଯେଉଁ ଦିନ ବାପା ଆସି ଜମି କିଣିବା ଆଉ କୋଠା ତୋଳିବା ନାଁରେ ପନ୍ଦର ହଜାର ଟଙ୍କା ମାଗିଲେ। ପନ୍ଦର ହଜାର! ବାପା କ'ଣ କହୁଛନ୍ତି ମୁଁ ପ୍ରଥମେ ବିଶ୍ୱାସ କରିପାରିଲିନି କହିଲି, "ଏତେ ଟଙ୍କା କେଉଁଠୁ ଆଣିବି ?" ବାପା ବିରକ୍ତ ହୋଇ କହିଲେ, "ଥାଉ ତୋର ଅଭିନୟ, ଇଞ୍ଜିନିୟର ମାତ୍ରକେ ଲକ୍ଷପତି ବୋଲି କିଏ ନ ଜାଣେ ? ଭାଇଭଉଣୀଙ୍କ ପ୍ରତି କ'ଣ ତୋର କିଛି କର୍ତ୍ତବ୍ୟ ନାହିଁ। ଏତେ ଖର୍ଚ୍ଚ କରି ମୁଁ ତୋତେ ପାଠ ପଢ଼େଇଲି କ'ଣ ମାଗଣାରେ ? ସମସ୍ତେ କହୁଛନ୍ତି ମୁଁ ତୋତେ ପାଠ ପଢ଼େଇ ନ ଥିଲି ଯେ ଟଙ୍କାର ଗଛ ପୋତିଥିଲି - ଏବେ ଟଙ୍କା ତୋଳିବାର ଦିନ। ସାନଭାଇ ତ ପାଠ ପଢ଼ିଲାନି - ତା'ପାଇଁ ଟିକିଏ କରି ନ ଦେଲେ ସେ ଚଳିବ କେମିତି ? ନଇଲେ ତାକୁ ଆଣି ଠିକାଦାରଟିଏ କରି ଦେ।"

ମନେହେଲା ଆକାଶରୁ ତାରାସବୁ ଖସିପଡୁଛନ୍ତି। କହିଲି, 'ବାପା - ତମେ ପରା ଭାଗବତ, ରାମାୟଣ, ମହାଭାରତ ନିଜେ ପଢ଼ି ମୋତେ ଶୁଣାଉଥିଲ ? ସବୁବେଳେ ବୁଝାଉଥିଲ ଯେ ଚୋରି କରିବା ମହାପାପ - କେମିତି ଭାବିଲ ଯେ ମୁଁ ଟଙ୍କା ଜମେଇଛି ? ବେତନ ତ ଯାହା ଜାଣିଛ - କେତେ ବଳିବ ଯେ ଟଙ୍କା ଜମେଇବି ? ଦେହପା, ଭଲ ମନ୍ଦ ପାଇଁ ହଜାରେ ଟଙ୍କା ଯାଏ ଡାକଘରେ ଅଛି ସେଇଟା ନେବ ଯଦି ନେଇଯାଅ।'

ବାପା ରାଗିଗଲେ। କହିଲେ, ତୋର ସଚ୍ଚୋଟପଣିଆ ରଖି ଦେଇ ଥା - ଆଉ କାହା ଠେଇଁ ଦେଖେଇବୁ - ସ୍ତ୍ରୀବୁଦ୍ଧିଆ.. ସ୍ୱାର୍ଥପର...' ଆଉ ଆଉ କଣ ସବୁ ବକିଦେଇ ଗଲେ। ମୁଁ ବି ଉତ୍ତେଜିତ ହୋଇପଡ଼ିଥିଲି - ସେଦିନ ପ୍ରଥମ କରି ପାଟି ଖୋଲି ବାପାଙ୍କୁ ଜବାବ ଦେଲି। ବାପା ରାଗରେ ଭାତ ନ ଖାଇ ଘରୁ ବାହାରିଗଲେ।

ସେଦିନ ସଞ୍ଜବେଳେ ମାଲ୍‌ହୋତ୍ରା ଆସିଥିଲା। କହିଲା - 'ସାର୍, ଆପଣଙ୍କ ଦୟାରୁ ଠିକ୍ ବେଳେ ମୁଁ ମୋର ବିଲ୍ ପାଇଗଲି - ନହେଲେ କୁଲି ମଜୁରିଆଙ୍କ ପେମେଣ୍ଟ ପାଇଁ କେଉଁ ମହାଜନ ପାଖରୁ ପୁଣି ଋଣ ଆଣିବାକୁ ପଡ଼ିଥାଆନ୍ତା। ମାସକୁ ତିନି ପାରସେଣ୍ଟ ସୁଧ ହାରରେ ଦୁଇ ଲକ୍ଷ ଋଣ ହୋଇଯାଆନ୍ତାଣି; ଏବେ ଆଉ କିଛି ଚିନ୍ତା ନାହିଁ। ଆପଣଙ୍କ କିଛି ସେବା କରି ପାରିବି କି ସାର୍ ?'

ସେ ତ ଆଗରୁ କେତେଥର ଏମିତି କହିଛି । ଅନ୍ୟ ଠିକାଦାରମାନେ ବି ସେମିତି ପଚାରନ୍ତି - କେହି କେବେ ସାହସ କରି ଆଉ ଆଗକୁ ବଢ଼ନ୍ତି ନି। ସେଦିନ ମୋର କିନ୍ତୁ ଇଚ୍ଛା ହେଉଥିଲା ମାଲ୍‌ହୋତ୍ରାକୁ କେତେ ହଜାର ଟଙ୍କା ମାଗନ୍ତି। ବାପାଙ୍କ ମନରେ

ଯେଉଁ ଆଘାତ ଦେଇଛି ତାର ପ୍ରତିକାର କରିବାପାଇଁ। ଜିଭ ଆଗରେ କିନ୍ତୁ କଥା ଅଟକିଗଲା।

ଆଉ ଦିନେ ସୁଧୀର ଆସିଥିଲା। କଥା ହେଲାବେଳେ କହିଲା – 'ଭାଇନା, କିଛି ମନେକରିବ ନି। ତମେ ଜଣେ ଏଡ଼େ ନାମଜାଦା ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର; କିନ୍ତୁ ତମ ଘରେ ଭଲ ସୋଫା ସେଟ୍‌ଟିଏ ନାହିଁ, ରେଡ଼ିଓଗ୍ରାମ୍ ନାହିଁ, ରେଫ୍ରିଜେରେଟର ନାହିଁ, କାର୍ ନାହିଁ, ଭାଉଜଙ୍କ ଗହଣା ଆଉ ଶାଢ଼ି ସବୁ ବି କେମିତି ଶସ୍ତା ଧରଣର। ସମସ୍ତେ ପଛଆଡ଼େ କହନ୍ତି, ଯା' ହେଲେ ବି ଓଡ଼ିଆ ଇଞ୍ଜିନିୟର ତ, କେମିତି ବଞ୍ଚିବାକୁ ହୁଏ ଏମାନେ ଜାଣନ୍ତିନି। ଦେଖିବ ପଞ୍ଜାବୀ ଇଞ୍ଜିନୟରମାନଙ୍କୁ କାମ ଯେମିତି କରିବେ, ଖାଇବେ ସେମିତି, ପିଇବେ ସେମିତି, ମୋଗଲ ବାଦଶାହଙ୍କ ପରି ଠାଟ୍‌ରେ ରହିଥିବେ।' ସେକଥା ଶୁଣି ମୁଁ ଖାଲି ହସିଦେଇଥିଲି; କିନ୍ତୁ ସତ କହୁଛି ଭାଇ ରମୁ, ଯେଉଁଦିନ ମୋ ଦି'ପୁଅଙ୍କ ପାଇଁ ଡୁନ୍ ସ୍କୁଲରୁ ସିଟ୍ ମିଳିଯାଇଛି ବୋଲି ପ୍ରିନ୍‌ସିପାଲଙ୍କ ପାଖରୁ ଖବର ଆସିଲା, ତା'ପରେ ହିଁ ମୋର ସବୁ ଟାଣପଣିଆ ଉଭେଇଗଲା। କିଏ ସେ ସିଟ୍ ପାଇଁ ଲେଖିଥିଲା କେଜାଣି, ମୁଁ କିନ୍ତୁ ଲେଖିନଥିଲି। ଦି'ଜଣଙ୍କ ପାଇଁ ମାସକୁ ମାସ ଛ' ଶହରୁ ଆଠ ଶହ ଟଙ୍କା – ଖାଲି ୟୁନିଫର୍ମ ପାଇଁ ଜଣ ପିଛା ଦୁଇ ହଜାରରୁ ବେଶି – କେଉଁଠୁ ଆସିବ? ଆଉ 'ଆମ ସ୍କୁଲରେ ପଢ଼ିଲେ କ'ଣଟା କ୍ଷତି ଯେ? ମୁଁ କ'ଣ କେଉଁ ଡୁନ୍ ସ୍କୁଲରେ ପଢ଼ିଥିଲି?' ସେସବୁର ଉତ୍ତରରେ ସୁଇଟି ଖାଲି କାନ୍ଦି କାନ୍ଦି ଆଖି ଲାଲ କରିଦେଲେ, ଆଉ କ'ଣ କହିଲେ ଜାଣିଛୁ? କହିଲେ, 'ଗୋଟାଏ ଓଭରସିଅରକୁ ବାହା ହୋଇଥିଲେ ବି ତାଙ୍କ ପୁଅମାନେ ଆଜି ଡୁନ୍‌ସ୍କୁଲରେ ପଢ଼ିଥାଆନ୍ତେ।' କହିଲେ – 'ବଡ଼ ଇଞ୍ଜିନିୟରକୁ କ'ଣ ଘୋରିକରି ପିଇବ? ମୋର ସବୁ ସାଙ୍ଗମାନେ କେତେ କେତେ ବଢ଼ିଆ ଶାଢ଼ି ସବୁ ପିନ୍ଧୁଛନ୍ତି – କେତେ ନୂଆ ନୂଆ ଡ଼ିଜାଇନ୍‌ର ଗହଣା କରୁଛନ୍ତି – ନାକ ଗୁଣାରେ ହୀରା, କାନ-ଫୁଲରେ ହୀରା, ମୁଦିରେ ହୀରା – ମୁଁ କ'ଣ ତେବେ ବି କେବେ କିଛି କହିଛି? ଏବେ ମୋ ପିଲାମାନେ ଗଣ୍ଡା ଘଷିଆ ପିଲାଙ୍କ ସାଙ୍ଗରେ ପଢ଼ିବେ!'

ମନେହେଲା ମୋର ଛାତିରେ କେହି ଛୁରୀ ଭୁଷିଦେଇଛି। ମୋର ସବୁଦିନ ଧାରଣା ଥିଲା ସୁଇଟି ଭାରି ଧର୍ମଭୀରୁ କେବେ ଭୁଲ ବାଟରେ ଗୋଡ଼ ଦେବେନି, କିନ୍ତୁ ଏ କଣ ହେଲା?

ସେଦିନ ମାଲ୍‌ହୋତ୍ରାକୁ ଘରକୁ ଆସିବା ପାଇଁ ଖବର ପଠାଇଥିଲି, ଆଉ ସେ ଆସିଲା ପରେ ଡୁନ୍ ସ୍କୁଲ କଥା କହି ପାଞ୍ଚ ହଜାର ଟଙ୍କା ଧାର ମାଗିଲି। ସେଇ ରାତିରେ ହିଁ ମାଲ୍‌ହୋତ୍ରା ଦଶହଜାର ଟଙ୍କା ନେଇ ଆସିଥିଲା। ମୁଁ ଯେତେବେଳେ

କହିଲି ଯେ ମୋର ଏତେ ଟଙ୍କା ଦରକାର ନାହିଁ, ସେ କହିଲା, 'ଦରକାର ପଡ଼ିପାରେ ସାର୍, ଡୁନ୍ ସ୍କୁଲ କଥା।' ଯୋଡ଼ି ଦେଇଥିଲା - 'ଏଇଟା ଭଲ କାମଟିଏ କଲେ ସାର୍, ଆପଣଙ୍କ ପିଲାମାନେ କ'ଣ ଏ ବାଜେ ସ୍କୁଲମାନଙ୍କରେ ପଢ଼ନ୍ତେ। ଆମ କପୁର ସାହେବଙ୍କ ପିଲାମାନେ ତ ବିଲାତରେ ପଢୁଛନ୍ତି।'

ମାସ ପୂରିଲାକ୍ଷଣି ମାଲ୍‌ହୋତ୍ରା ଆଉ ଦୁଇ ହଜାର ଟଙ୍କା ନେଇ ଆସିଥିଲା। ମୁଁ ଯେତେବେଳେ ମନାକଲି - କହିଲା, 'ଆପଣଙ୍କ ପୁଅମାନେ କ'ଣ ମୋର ପୁତୁରା ନୁହନ୍ତି? ପୁତୁରା ପାଇଁ କ'ଣ କକେଇର କିଛି କର୍ତ୍ତବ୍ୟ ନାହିଁ?'

ତା'ପରେ ପରେ ଚମନଲାଲ, ବଦଲାନୀ, ନାୟାର, ମୁଖାର୍ଜି ପ୍ରଭୃତି ଠିକାଦାରମାନେ ନିଃସଙ୍କୋଚରେ ତାଙ୍କ ସେବାପାଇଁ ମୋ'ଘରେ ପହଞ୍ଚିଯାଇଥିଲେ। ଆଉ ଏତେ ବଡ଼ ବଡ଼ ଠିକାଦାର ବ୍ୟବସାୟୀମାନେ ଅରାମରେ ବସିପାରିବେ ବୋଲି ମୁଁ ମଧ୍ୟ ବସିବା ଘରକୁ କାର୍‌ପେଟ୍, ସୋଫାସେଟ୍ ପ୍ରଭୃତିରେ ସଜାଇ ଦେଇଥିଲି।

ବର୍ଷ ସବୁ ପୁଣି କଟିଚାଲିଲା ଭଲ ମନ୍ଦ ନେଇ। ମୁଁ ବି ବୁଝିଯାଇଥିଲି ଯେ ଆଜିର ସମାଜରେ ଚଳିବାକୁ ହେଲେ କାର୍, ରେଫ୍ରିଜେରେଟର, ଏୟାରକଣ୍ଡିସନର୍ ଯେପରି ଲୋଡ଼ା, ଆଖିଦୃଶିଆ ଦୁଇ ତିନିଟା କୋଠା ବି ସେମିତି ଦରକାର - ପୁଅମାନେ ଭଲ ଘରେ ରହିବେ, ଆଉ ଭଲ ଭଡ଼ା ଉଠାଇବେ ବୋଲି। ସେ ସବୁଥିରେ ମଧ୍ୟ ମୁଁ ଏଥର ଆଉ ହେଳା କରି ନଥିଲି।

ସେଦିନ 'ସୁଇଟି' ଫୋନ୍ କରି ଜଣାଇ ଦେଇଥିଲେ ଯେ ଦୀପକରେ ଭଲ ସିନେମାଟିଏ ପଡ଼ିଛି ଆଉ ସେ ସିନେମା ମାଲିକଙ୍କୁ ଦି'ଟା ସିଟ୍ ରିଜର୍ଭ କରିବାକୁ ଖବର ପଠାଇ ଦେଇ ସାରିଛନ୍ତି। ମୁଁ ଅଫିସରୁ ଠିକ୍ ସମୟରେ ଫେରିଆସିଥିଲି। ଘରୁ ବାହାରିଲା ପରେ ହିଁ ଜଣାପଡ଼ିଲା କାର୍ ନାହିଁ ବଡ଼ପୁଅ କାର୍ ନେଇ କେଉଁ ଝିଅମାନଙ୍କ ସଙ୍ଗରେ କୁଆଡ଼େ ଯାଇଛି। ମୁଁ କିଛି କହିବା ଆଗରୁ ହିଁ 'ସୁଇଟି' କହିଥିଲେ - 'ତା ପାଇଁ ଅଲଗା କାର୍‌ଟିଏ କିଣି ନ ଦେଲେ ସେ ଆମ କାର୍ ନ ନେବ ତ କ'ଣ କରିବ?' ତା'ପରେ ମୁଁ ଯଥା ସମୟରେ ବଡ଼ପୁଅ ପାଇଁ କାର୍‌ଟିଏ କିଣିଦେଇଥିଲି। ମୋର କିନ୍ତୁ ତା'ପରେ ମନେହେଲା ଯେ ମୁଁ ଆଉ ସେ ପୂର୍ବର 'ମୁଁ' ନାହିଁ - ମୁଁ ଏବେ ଜଣେ... ମୁଁ ଜଣେ... କ'ଣ କହିବି କେମିତି ବୁଝାଇବି କହିଲୁ? ସେଦିନ ଭୋରବେଳା ଆମ ଘର ବାଟଦେଇ ଜଣେ ଭଦ୍ରମହିଳା ଚେନ୍ ବନ୍ଧା ବିରାଟ କୁକୁରଟିଏ ଧରି ବୁଲି ବାହାରିଥିଲେ। ସେ ଯେମିତି କୁକୁରକୁ ଭିଡୁଥିଲେ, କୁକୁର ବି ସେ ଭଦ୍ରମହିଳାଙ୍କୁ ବେଳେବେଳେ ସେମିତି ଭିଡ଼ିନେଉଥିଲା। ସେ କଥା ଦେଖି ମୋର ମନେ ହେଉଥିଲା ଯେ ମୁଁ ସେ ଚେନ୍ ବନ୍ଧା କୁକୁର ସରି ବି ନୁହେଁ।

ଦିନେ ମୁଁ ଦି'ପହର ବେଳା ଖରାରେ କାମରୁ ଫେରୁଥିଲାବେଳେ ଦେଖିଲି ଆମ ଟ୍ରାକ୍ଟର ଅପରେଟର ଜଣେ ଗଛମୂଳେ ବସି କଂସାରୁ ପଖାଳ ସୁଡ୍ରୁକୁଛି; ଆଉ ପାଖରେ ବସି ତା' ମୁହଁକୁ ଅନାଇ ରହିଛି ଜଣେ ସ୍ତ୍ରୀଲୋକ - ନିଶ୍ଚୟ ତାର ସ୍ତ୍ରୀ। ସେ ସ୍ତ୍ରୀଲୋକର ହାତ ଓ ମୁଣ୍ଡ ହଲାରୁ ବୁଝିଲି, ଛୋଟ ମାଟିହାଣ୍ଡିରୁ ଆଉ ଗଣ୍ଡିଏ ପଖାଳ ଆଉ ଟିକିଏ ତରକାରି ଦେବାପାଇଁ ବୋଧହୁଏ ସେ କହୁଛି। ଲୋକଟି କିନ୍ତୁ ବାଁ ହାତ ହଲାଇ ମନାକଲା, ଆଉ କଂସାଟି ତା' ସ୍ତ୍ରୀଆଡ଼ିକି ବଢ଼ାଇଦେଲା। ସ୍ତ୍ରୀଲୋକଟି ତା'ପରେ ସେ ପଖାଳଗଣ୍ଡିକ ପେଜ ତୋରାଣି ସାଙ୍ଗରେ ମିଶାଇ ନିଜେ ପିଇଦେଲା। ତା'ପରେ ଦେଖିଲି, ସ୍ତ୍ରୀଲୋକଟି ସେ ଗଛ ଛାଇରେ ତା'ର ପଣତ କାନି ବିଛାଇ ଦେଇଛି, ଆଉ ପଣତ ଉପରେ ବିଶ୍ରାମ ନେବାକୁ ଢଳିପଡ଼ିଛି ସେ ଟ୍ରାକ୍ଟରର ଡ୍ରାଇଭର। ସେଇ ରାତିରେ ହିଁ ପ୍ରଥମ କରି ମୋର ନିଦ ହେଲାନି। ବେଳକୁ ବେଳ ସେଇ କଥା ହିଁ ମୋର ମନେପଡୁଥାଏ, ଆଉ ମୁଁ ଭାବୁଥାଏଁ ସେ ଦିହିଁଙ୍କ କଥା। ନୀଳ ଆକାଶର ଦୁଇ ମୁକ୍ତ ବିହଙ୍ଗ ପରି ସେମାନେ ହୁଏତ ନୀଡ଼ହୀନ, କେଉଁ ଗଛ ଡାଳରେ କିମ୍ବା କେଉଁ ଟେଲିଫୋନ ତାରରେ ଦେହ ଜକାଜକି ହୋଇ ବସିଯିବେ ଦିଓଟି କାପ୍ତା ପରି, ପରସ୍ପରର ସାନ୍ନିଧ୍ୟରେ ହିଁ ସେମାନେ ସୁଖୀ। ଆଉ ମୁଁ ସୁନା ପିଞ୍ଜରାରେ ଆବଦ୍ଧ ଗୋଟାଏ ଶୁକପକ୍ଷୀ।

ଜାଣିଲୁରେ ଭାଇ ରମେଶ, ଆଜି ଗୋଟାଏ ଅଦ୍ଭୁତ ଘଟଣା ଘଟିଲା। ଆମ ବସିବାଘରେ ମୁଁ ବସିଥାଏ - ଏକୁଟିଆ ଖଣ୍ଡିଏ ମେଗାଜିନ୍ ଧରି। ମୋର ସାନ ପୁଅ ଆଉ ଜଣେ କାହା ସାଙ୍ଗରେ ଘର ଭିତରକୁ ପଶି ଆସୁ ଆସୁ ମୋତେ ଦେଖି ଅଟକିଗଲା, ଆଉ 'ଡ଼ାଡ଼ି, ଏଇ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ' କହି ଦୂରରୁ ତାର ବନ୍ଧୁକୁ ଚିହ୍ନାଇଦେଲା। କମ୍ ବୟସର ଜଣେ - ନିଶ ବି ଗଜୁରି ନି - ଜିନ୍ ପେଣ୍ଟ - ଆଣ୍ଠୁ ପାଖରେ ପଟିଟିଏ - ସାର୍ଟର ଦୁଇ ହାତକୁ ମୋଡ଼ି ମୋଡ଼ି କହୁଣୀଯାଏ ଟେକି ଆଣିଛି - ମୁଁ ଭାବୁଥିଲି ମୋତେ ନମସ୍କାର କରିବ। ସେ କିନ୍ତୁ ମୋ ପାଖକୁ ଚାଲିଆସି ହାତ ବଢ଼ାଇଦେଲା। ଆଉ କହିଲା - 'ହା... ଡୁ... ଡୁ ଡେଡ୍।' ମୁଁ ଗୋଟାଏ ଯନ୍ତ୍ର ପରି ହାତ ବଢ଼ାଇଦେଲି। ତା' ମୁହଁରେ ମୋ ଆଖି ଲାଖିରହିଲା - ମୋ ପାଟି ବି ମେଲା ହୋଇଯାଇଥିଲା ନାଁ କ'ଣ। ଏ ସ୍ୱର! ଏ କଅଁଳ ପାପୁଲି! ତେବେ କ'ଣ ପୁଅ ନୁହେଁ ଝିଅଟିଏ। ମୋ ପାଖରୁ ପୁଣି ରାମ ପାଖକୁ ଫେରିଗଲାବେଳେ କହିଲା - 'ଓଃ-ରେମ୍-ୱାଟ୍ ଏ ହାଉସ୍।' ପୁଅ ଆଉ ତାର ଅନ୍ତରଙ୍ଗ ବନ୍ଧୁ ଆଗେଇଗଲେ। ମୁଁ ପାଟି ମେଲା କରି ଡବଡବ ଆଖିରେ ପଛରୁ ଅନାଇ ରହିଲି।

ରାତିରେ ସୁଇଟି କହିଲେ, 'ରାମ ତା'ର ସେ ସାଙ୍ଗକୁ ନେଇ ଏକା ବିଛଣାରେ ଶୋଇବ କହୁଛି।' ସୁଇଟି ଉପରେ ମୁଁ କେବେ ଏମିତି ରାଗି ନଥିଲି। ଚିତ୍କାର କରି କହିଲି, 'ଡେମ୍ଇଟ୍। ମୋତେ କାହିଁକି ପଚାରୁଛ? ପଚାରୁନ ତମ ସେ ଡୁନ୍ ସ୍କୁଲର ପ୍ରିନ୍‌ସିପାଲଙ୍କୁ!' ସେ ତାଙ୍କ ଆଖିର ଲୁହ ପୋଛି ମୋତେ କହିଲେ - 'ମୋ ଉପରେ କାହିଁକି ସବୁବେଳେ ଏମିତି ରାଗୁଛ?'

ସୁଇଟି ପୁଅକୁ ଯାଇ କ'ଣ କହିଲେ କେଜାଣି ମୁଁ ଯେତେ ପଚାରିଲେ ବି କିଛି ଉତ୍ତର ଦେଲେନି। ସେ ଏବେ ମୋ ପାଖ ଖଟରେ ମୁହଁମୋଡ଼ି ଶୋଇଛନ୍ତି। ନିଦରେ କି ଚେଇଁକରି କେଜାଣି! ଆଉ ସେ ଦି'ଜଣ ପାଖଘରେ ଶୋଇଛନ୍ତି।

ଦେଖିଲୁ ଭାଇ ରମୁ, ଏବେ ତିନିଟା ବାଜିବା ପାଖାପାଖି - ମୋ ଆଖିରେ ନିଦର ଚିହ୍ନବର୍ଣ୍ଣ ନାହିଁ। ଯା' ହେବ ହେଉ - ଆଉ ଦି'ଟା ବଟିକା ଏକାସଙ୍ଗରେ ଖାଇଦେଉଛି...।

ଜାଣିଛୁ ଭାଇ! ସେ ଶଶିକାନ୍ତକୁ ମନେପଡ଼ିଲେ ମୋତେ ଏମିତି ଲାଗୁଛି, କ'ଣ କହିବି! ରାସ୍କେଲକୁ ଯେତେବେଳେ ପଚାରିଲି, ସେ ବି କ'ଣ ନିଦବଟିକା କିଣିବାକୁ ଆସିଛି। କ'ଣ କହିଲା ଜାଣୁ! ହସିଦେଲା, ଆଉ କହିଲା; ମୋର ତ ଓଲଟା ରୋଗ ଭାଇ! ସାତଟା ବେଳେ ବି ଏଲାର୍ମ ଦେଲେ ଯାଇ ନିଦ ଭାଙ୍ଗୁଛି। ଏଲାର୍ମ ଘଡ଼ିକୁ ମରାମତି ପାଇଁ ଦେଇଥିଲି ଯେ କେମିତି ମରାମତି କଲା କେଜାଣି, ଭଲ କରି ଦଶ ସେକେଣ୍ଡ ବି ବାଜୁନି। ଅଧ ମିନିଟ୍ ନହେଲେ ନିଦ ଭାଙ୍ଗିବ! ଆଉ ଥରେ ଭଲକରି ମରାମତି କରାଇଦେବାକୁ ନେଇ ଆସିଥିଲି ଯେ ଏ ଦୋକାନରେ ପଶିଗଲି କେତେଟା ଫରିଷ୍ଟାଲ ଟେବଲେଟ୍ ନେବି ବୋଲି କହିଲା, ପିଲାମାନେ ତ ମୋତେ ଆଚ୍ଛା ଭାଲୁ ଧରେଇ ଦେଇଛନ୍ତି। ଡିହ ଖଣ୍ଡିଏ ତ ଥିଲା, ମ୍ୟୁନିସିପାଲିଟି ଜବରଦସ୍ତି କଲା ବୋଲି ଭାଗ୍ୟକୁ ସେଇଠି ଦି' ବଖରା ଘର କରିଦେଲି - ଏବେ ବଡ଼ପୁଅ ସରକାରଙ୍କ ପାଖରୁ ଘର ତିଆରି ଲୋନ୍ ଆଣି ମୋତେ ସେ ଟଙ୍କାତକ ଧରାଇଦେଇଛି, ଆଉ କହୁଛି ଆଉ ଦି'ଟା ବଖରା ଯୋଡ଼ିଦେବା ପାଇଁ ଧରିଛି ଭାଲୁ। ସକାଳ ନ ହେଉଣୁ ସେ ବାଲିଗାଡ଼ି, ଗୋଡ଼ିଗାଡ଼ି ପହଞ୍ଚିଯାଉଛି, ଆଉ ସାତ ନ ବାଜୁଣୁ ଇଏ ପାଟି କରୁଛନ୍ତି - 'ହେ ଉଠ, ମିସ୍ତ୍ରୀମାନେ ଆସିଗଲେଣି।' କି ହଟହଟାରେ ପଡ଼ିଲି। ଏବେ ତ ହେଲା ପିଲାଙ୍କ ଦିନ - ସେମାନେ ସିନା ତାଙ୍କ ବଖରା ଯୋଡ଼ିଥାଆନ୍ତେ, ମୋତେ ଏ ବୁଢ଼ାବେଳେ ଘାଣ୍ଟୁଛନ୍ତି। କେମିତି ହେଲେ ମନା କରିବି କହିଲ? ବଡ଼ପୁଅ କହିଲା ନିଜେ ନ ଦେଖିଲେ ଏ ଠିକାଦାରମାନେ ଡବଲ୍ ଚାର୍ଜ କରିଦେବେ। ତା'ର ବି ସତରେ ସମୟ କାହିଁ- ଲେକ୍‌ଚରର୍, ଏଣେ ଡକ୍‌ଟରେଟ କରୁଛି। ସାଇକେଲଟିଏ ପେଲୁଥିଲି ଯେ ହାତ

ଗୋଡ଼ ବେଶ୍ ଟାଣଥିଲା। ମଝିଆଁ ପୁଅ ସେଦିନ ଆସି କହିଲା, 'ବାପା, ଦେଖିବ ଆସ ତମ ଜନ୍ମଦିନପାଇଁ କ'ଣ ଆଣିଛି। ଦେଖିଲାବେଳକୁ କ'ଣ ନା ବଜାଜ ସ୍କୁଟରଟିଏ। ମୁଁ କହିଲି, 'ହଇରେ, ଏତେ ଟଙ୍କା ଖର୍ଚ୍ଚ କଲୁ କାହିଁକି? କିଣିସାରିଲୁଣି ଯଦି, ତୁ ସେଇଟାକୁ ନେଇ ତୋ ବ୍ୟାଙ୍କ୍‌କୁ ଯା।' ସେ ତ ବ୍ୟାଙ୍କ୍ ଅଫିସର୍, ତା'ର ବି ଗୋଟାଏ ଲୋକ ମର୍ଯ୍ୟାଦା ଅଛି। ତା'ର କିନ୍ତୁ ଏକା ଜିଦ୍ ସେ ସାଇକେଲରେ ଯିବ। ସାନପୁଅ ସେକଥା ଶୁଣି କହିଲା - 'ବାପା, ତମେ ମୋତେ ମାସକୁ ଟ୨୦.୦୦ ଲେଖାଏଁ ହାତଖର୍ଚ୍ଚ ଦିଅ, ମୁଁ ତମର ସ୍କୁଟର ଡ୍ରାଇଭର ହେବି।' ବଡ଼ପୁଅ ସେଉଠୁ କ'ଣ କହୁଛି ଜାଣିଲ - ହେଃ - ହେଃ, କହୁଛି, 'ବାପା, ଯା ହାତରେ ଭୁଲରେ ବି ସ୍କୁଟର ଦେବନି - ଯାକୁ ମୁଁ ଜାଣିନି? କେଉଁ କେଉଁ ଝିଅଙ୍କୁ ସ୍କୁଟର ପଛରେ ବସାଇ ସହର ସାରା ଘୂରିବୁଲିବ।' ହସିବ ନା ନାହିଁ କହିଲ? ସାନପୁଅଟା ସତରେ ଟିକିଏ ଚଗଲା - ତେବେ ଭଲ ପଢ଼େ, ବରାବର ଫାଷ୍ଟକ୍ଲାସ୍ ପାଏ; ଆଉ ଏମ୍.ଏ.ରେ ବି ତ ଫାଷ୍ଟକ୍ଲାସ୍ ପାଇବ ବୋଲି କହୁଛି। ଦେଖାଯାଉ - ଭଗବାନଙ୍କ ଇଚ୍ଛା। ଦୁନିଆଁ ଯାକର ସବୁ ଖବର ପଚାରିବ ତା' ପାଖରେ। ସେ ନଥିଲେ ମୁଁ କିଏ, ଆଉ ଏ ବାଲିଗାଡ଼ି, ଗୋଡ଼ିଗାଡ଼ି କିଏ। ଚାଲିଛି ଏମିତି - ପୁଅମାନେ ତ ଟଙ୍କା ଦେଉଛନ୍ତି- ଆଉ ଦି' ବଖରା ଯୋଡ଼ିଦିଏଁ - ସେମାନଙ୍କ ବାହା-ସାହା ହେବା ବେଳ ବି ଆସିଗଲାଣି, କିନ୍ତୁ ଖରାରେ ଟିକିଏ ବେଶି ବସିଗଲେ କି ଟିକିଏ ଧାଁ-ଧପଡ଼ କରିଦେଲେ ଧଇଁସଇଁ ଲାଗେ - ପେଲା ରୋଗୀଙ୍କ ପରି। ଫରିଷ୍ଟଲ୍ ଟେବ୍‌ଲେଟ୍‌ଟିଏ ପକାଇଦେଲେ ବାସ୍। ଏଇ ଟେବ୍‌ଲେଟ୍ କେତେଟା ନେବି ବୋଲି ଏ ଦୋକାନରେ ପଶିଯାଇଥିଲି।'

କେଡ଼େ ଲକ୍‌କି ଫେଲୋ - ଦେଖିଲୁରେ ରମେଶ। କିଛି ଜଞ୍ଜାଳ ନାହିଁ ପୁଅମାନେ ପାରିଗଲେଣି। ଆଉ ହେଇ ଆମ ବାବୁ ତାଙ୍କ ଅନ୍ତରଙ୍ଗ ବନ୍ଧୁଙ୍କୁ ନେଇ ସେ କୋଠରିରେ ଶୋଇଛନ୍ତି। କହିଲା - 'ହା ଡୁ ଡୁ ଡେଡ୍...।' ସେ ପୁଣି ବୋହୂ ହେବ। ଯାହା କହିବୁ ଭାଇ, ସବୁ ଭାଗ୍ୟର କଥା।

ହେଉ ରହୁଛିରେ ରମେଶ! ମୋ ମୁଣ୍ଡ କେମିତି ଝିମ୍ ମାରୁଛି। ଆଖି ବି କେମିତି ଓଜନିଆ ଲାଗୁଛି। ସାଢ଼େ ତିନିଟା ହେଲାଣି। ଇଏ ବି ଶୋଇନାହାନ୍ତି ନା କ'ଣ ସୁତୁ ସୁତୁ କରୁଛନ୍ତି। ଯେତେ କନ୍ଦାକଟା କଲେ ବି କ'ଣ ହେବ। ଜିଭ ତ ନିଜ ହାତରେ ଛେଦା ହୋଇଛି।

ରହିଲି। ତୁ ବି ଯେତେବେଳେ ନିଦବଟିକା ଖାଉଛୁ, ତୋର ବି ଏମିତି କିଛି ଦଶା ହୋଇଥିବ। ହେଉ ଭାଇ - ଭଗବାନ ତୋର ସାହା ହୁଅନ୍ତୁ।

ବିଶ୍ୱସ୍ତ ଢେଙ୍କୁନ୍

# ବିଶ୍ୱାସେ ମିଳଇ ହରି

'ବା.... ବା.... ବା....'

ଏକ ଅଦ୍ଭୁତ ଚିତ୍କାର ଶୁଣି ଆମେ ସମସ୍ତେ ଆମ ଲୁଚୁକାଳି ଖେଳ ଛାଡ଼ି ଘର ଅଗଣାରୁ ଗାଁ ଦାଣ୍ଡକୁ ଧାଇଁଆସିଥିଲୁଁ। ଗାଁଦାଣ୍ଡରେ ଗୁଡ଼ିଏ ଲୋକ ଜମାହୋଇଛନ୍ତି। କାହା ପାଟିରୁ ସ୍ୱର ଶବ୍ଦ ନାହିଁ। ଜେଜେବାପା ଦାଣ୍ଡ କଡ଼ରେ ପଡ଼ିଥିବା ଗୋଟାଏ ବଡ଼ ପଥରଖଣ୍ଡ ଉପରେ ବସି ଦି'ହାତ ଉପରକୁ ଟେକି ବରଡ଼ାପତ୍ର ପରି ଥରୁଛନ୍ତି; ଆଉ ଚିତ୍କାର କରୁଛନ୍ତି - ବା...ବା...ବା...। ତାଙ୍କ ଚାରିଆଡ଼େ ଲୋକଙ୍କ ଭିଡ଼। ସମସ୍ତଙ୍କ ଆଖି ଜେଜେଙ୍କ ଉପରେ। ସମସ୍ତଙ୍କ ମୁହଁରେ ଏକ ଅଜଣା ଭୟର ଚିହ୍ନ ସ୍ପଷ୍ଟ।

ଏଥର ଦେହ ହାତ ଥରା ବନ୍ଦକରି ଜେଜେବାପା ଚାରିଆଡ଼ିକି ଥରେ ଅନାଇଁଦେଲେ, ଆଉ କାହାଣୀ କହିବା ଢଙ୍ଗରେ ଆରମ୍ଭ କଲେ - 'ଆମେ ଟିକିଏ ପଛରେ ଥାଉଁ। ଆମ ଦଳରେ ସ୍ତ୍ରୀ ପୁରୁଷ ହୋଇ ଚାଳିଶ। ସମସ୍ତେ ଆଗ ପଛ ହୋଇ ଚାଲିଛୁ। ମୁଁ ଅଛି ଆଗରେ। ପାହାଡ଼ଚଢ଼ାରେ ସୁବିଧା ହେବ ବୋଲି ହାତରେ ଅଛି ଖାଲି ଗୋଟାଏ ଠେଙ୍ଗା। ପାହାଡ଼ିଆ ରାସ୍ତାଟି ଏତେ ସରୁ ଯେ ଦି'ଜଣ ବି ହାତ ଧରାଧରି ହୋଇ ଏକା-ସଙ୍ଗରେ ଯାଇପାରିବେନି। ଆମ ଆଗରେ ଚାଲିଛନ୍ତି ଗୋଟିଏ ଦକ୍ଷିଣିଆ ତେଲେଙ୍ଗାଦଳ। ଦେବ ପ୍ରୟାଗ ଆଉ ଚାରି ପାଞ୍ଚକୋଶ ବାକି। ସାମନାରେ ବଡ଼ ପଥରଟିଏ ପାହାଡ଼ରୁ ମୁଣ୍ଡଉପରକୁ ଏମିତି ଝୁଙ୍କିପଡ଼ିଛି, ମନେହେଉଛି ଆମେ ଗୋଟିଏ ସୁଡ଼ଙ୍ଗ ଦେଇ ଯାଉଛୁ। ଆଉ ଚଲାବାଟଟା ସେଇଠି ଏମିତି ବଙ୍କେଇଯାଇଛି ଯେ ଆଗରେ କଣ ଅଛି ଜାଣିବା ଉପାୟ ନାହିଁ।

'ହଠାତ୍ ଏଇ ବା... ବା... ବା... ର ଆର୍ତ୍ତନାଦ। ଆମେ ସେ ଚିତ୍କାର ଶୁଣି ସଂତ୍ରସ୍ତରେ ଯେ ଯେଉଁଠି ଥିଲୁଁ ସେଇଠି ଅଟକିଗଲୁଁ। ଦକ୍ଷିଣିଆ ବୁଢ଼ାବୁଢ଼ୀଙ୍କ ଭିତରୁ ଯେଉଁ କେତେ ଜଣ ଆଗକୁ ଦେଖାଯାଉଥିଲେ, ସେମାନେ ଅତର୍କ୍କିରେ ଆମ ଆଡ଼କୁ ଧାଇଁଆସିବାକୁ ଚେଷ୍ଟା କରି ଜଣକ ଉପରେ ଜଣେ କଚଡ଼ି ହୋଇ ପଡୁଥାଆନ୍ତି। କାହା କାହା ମୁଣ୍ଡବୋଝ ମୁଣ୍ଡରୁ ଖସି ପାହାଡ ତଳକୁ ଗଡ଼ିଗଲାଣି। ମୁଁ ହାତ ଠାରି ଆଉ ପାଟିରେ ଆଙ୍ଗୁଳି ଥାପି ଆମ ଦଳକୁ ଚୁପଚାପ୍ ଠିଆ ହୋଇ ରହିବାକୁ ଇସାରାଦେଇ

ଆଗେଇଗଲି ଘଟଣା କଣ ଜାଣିବାପାଇଁ। ସେ ବୁଢ଼ାବୁଢ଼ୀଙ୍କୁ ଡ଼େଇଁ ମୋଡ଼ ଘୂରିଛି, ଯେଉଁ ଦୃଶ୍ୟ ଦେଖିଲି, କ୍ଷଣକ ପାଇଁ ମୋତେ ସବୁ ଅନ୍ଧାର ଦେଖାଗଲା। ମନେହେଲା ମୋ ଛାତିର ଧଡ଼କ୍ ବନ୍ଦ ହୋଇଯାଇଛି। କିନ୍ତୁ ଖାଲି ମୁହୂର୍ତ୍ତେ। ମନକୁ ଦମ୍ଭ ଦେବାକୁ ଆଖି ବୁଜି ଗାଇଲି - 'ଜଗନ୍ନାଥସ୍ୱାମୀ ନୟନପଥଗାମୀ ଭବତୁମେ।' ଆଖି ଖୋଲି ଆଉ ଥରେ ଅନାଇଦେଲି - ସେ ଦକ୍ଷିଣିଆଗୁଡ଼ାକ ସେଇଠି ପରସ୍ପରକୁ ଜାବୁଡ଼ିଧରି ବସିଛନ୍ତି ଆଉ ଥରୁଛନ୍ତି। ଜଣେ ଅଧେ ଆଣ୍ଠୁ ଭିତରେ ମୁଣ୍ଡ ଲୁଚାଇ ଚିତ୍କାର କରୁଛନ୍ତି ବା... ବା... ବା...।

'ଆଗରେ ଠିଆହୋଇଛି... ଉଃ। ଆମର ସେ ବେପାରୀ ବଳଦଠାରୁ ବି ଆହୁରି ଉଚ୍ଚ ହେବ ଆଉ ଏଉଠୁ ସେଯାଏ ହେବ ଲମ୍ବା ଦେହଯାକ କଳା ହଳଦିଆ ପଟା ବଡ଼ ପାଣିହାଣ୍ଡି ପରି ମୁଣ୍ଡ। ପାଟି ମେଲା କରିଛି ଯେ ଠିକ୍ କୋଦାଳୀ କୋଦାଳୀ ପରି ଦେଖାଯାଉଛି ତଳ ଉପର ଦି'ପାଖର ଦାନ୍ତ। କି ଦୃଶ୍ୟ ସେ। ଗିନା ଏଡ଼ିକି ଏଡ଼ିକି ଆଖି; ଆଉ ସେ ଆଖିରେ ସତେ ଯେମିତି ନିଆଁ ଜଳୁଛି।

'ମୁଁ ଦଣ୍ଡେ ଠିଆହୋଇଗଲି। ତା'ପରେ ସେ ଦକ୍ଷିଣିଆଙ୍କୁ ଡ଼େଇଁ ଆଗକୁ ଯାଇଉଭାହେଲି। କହିଲି - 'କାହାକୁ ଡରାଉଛୁ ବଦ୍ରିନାଥ ସ୍ୱାମୀ। ଆମେ ତୋର ଦର୍ଶନ ପାଇବା ପାଇଁ ଆସିଛୁଁ। ସେଇ ନର ନାରାୟଣ ପର୍ବତ ମଝିରେ ହିଁ ତୋତେ ଭେଟିବୁ। ହଜାରେ କୋଶ ବାଟ ଚାଲିଆସିଲୁଣି, ପାଦଯାକ ଘା-ଘାବରା କରି। ଏଉଠୁ ଏବେ ଫେରିଯିବୁ? ଛାଡ଼ି ଦେ ବାଟ, କାହାକୁ ଡରାଉଛୁ?'

ଏଇଠି ଜେଜେ ଡାହାଣ ହାତ ବୁଲାଇ ସାମାନ୍ୟ ମୁଣ୍ଡ ଟୁଙ୍ଗାରି ଟିକିଏ ଥମିଗଲେ। ଦାଣ୍ଡର ସମସ୍ତେ ଆହୁରି ପାଖକୁ ଘୁଞ୍ଚିଆସିଥିଲେ, ଆଉ ଜେଜେଙ୍କ ପ୍ରତ୍ୟେକ ଶବ୍ଦକୁ ଗିଳିଯାଉଥିଲେ। ଆମେ ବି ଆମର ଛୋଟ ଛୋଟ ଆଖିସବୁକୁ ବଡ଼ ବଡ଼ କରି ଜେଜେଙ୍କ ଚାରିପଟେ ଭିଡ଼ିଯାଇଥିଲୁଁ। ଜେଜେ କହୁଥିଲେ - 'ମୁଁ ତୋତେ ଚିହ୍ନିନି? ତୋ ଆଖିକି ଚିହ୍ନିନି? ଆମ ଜଗନ୍ନାଥ ସ୍ୱାମୀଙ୍କ ଏ ଆଖି। ତାଙ୍କ କଳା ରଙ୍ଗରେ ତୁ ସୁଭଦ୍ରାଙ୍କ ହଳଦିଆ ରଙ୍ଗର ପଟି ଭିଡ଼ିଦେଇଛୁ ଆଉ ପେଟ ପାଖରେ ବୋଳିହୋଇଛୁ ବଳଭଦ୍ରଙ୍କ ଧଳା ରଙ୍ଗ। ତୋର ସେ ମୁଣ୍ଡ ସୁଦର୍ଶନ ଚକ୍ର, ନୁହେଁ?'

ଜେଜେ ଡାହାଣ ହାତ ସାମନାକୁ ଯେମିତି କେଞ୍ଚୁଥିଲେ, ମନେହେଲା ସେ କାହାକୁ ଗାଳିଦେଉଛନ୍ତି। ତା'ପରେ ଦି' ହାତକୁ ଛନ୍ଦିପକାଇ କହିଚାଲିଲେ - 'ସେ ମୋ ଆଡ଼ିକି ପାଟି ମେଲା କରି ତରାଟି ରହିଁଲା, ଆଉ ଲାଞ୍ଜ ବାଡ଼େଇଦେଲା ଚଟାଣ ଦେହରେ। ମୁଁ କହିଲି - 'ଏମିତି ତ ଥରେ ଏଇଠି କୋଉଠି ତୁ ନବଗୁଞ୍ଜର ରୂପ ଧରି ଅର୍ଜ୍ଜୁନଙ୍କୁ ଡରାଇବାକୁ ଚେଷ୍ଟାକରିଥିଲୁ। ତୋତେ ଆମେ ଚିହ୍ନିଗଲୁଣି

ବଦ୍ରିନାଥସ୍ୱାମୀ – ଏଥର ବାଟଛାଡ଼ିଦେ। ନଇଲେ ଆମକୁ ମାରିବୁ ଯଦି ମାର୍ ଖାଇବୁ ଯଦି ଖା। ତୋର ଯାହା ଇଚ୍ଛା କରିବୁ କର – କିନ୍ତୁ ଏମିତି ଡରାନା।'

ଠିକ୍ ମୋହ ଭାଙ୍ଗିଥିବା କୌଣସି ମୋହାଚ୍ଛନ୍ନ ଲୋକଟିପରି ଘେନୁ ବିଳିବିଳେଇଲା – 'କଣ ବାଘ ?' ସମସ୍ତେ ତାକୁ ଚୁପ୍ ହୋଇଯିବା ପାଇଁ ଇସାରା ଦେଇ ପୁଣି ଜେଜେଙ୍କ ଆଡ଼କୁ ଅନାଇ ରହିଲେ। ଜେଜେ କହିଚାଲିଲେ – 'ଆଖପାଖର ସମସ୍ତେ କହିଲେ ସେ ରଡ଼ିଟିଏ ଦେଲା ଯେ ସାରା ହିମବନ୍ତ ଥରିଉଠିଲା – ମନେହେଲା ପାହାଡ଼ଖଣ୍ଡ ସବୁ ଝଡ଼ିପଡ଼ିବ। ମୁଁ କିନ୍ତୁ ଶୁଣିଲି ତାର ହସ। ମନଖୋଲା ହସ। ବିରାଟ ପାଟି ମେଲା କରି ସେ ହସିଲା – 'ହୋ... ଓ...ଉ...' ଚାରିପାଖ ପର୍ବତ ଦେହରେ ସେ ହସ ବାଡ଼େଇ ହୋଇ ଢ଼େଉ ଖେଳାଇଦେଲା- 'ହୋ.... ହୋ.... ହୋ...।' ତା'ପରେ ଏକାଡ଼ିଆଁକେ ସେ ଡ଼େଇଁଗଲା ମୁଣ୍ଡ ଉପରର ପଥର ଚଟାଣକୁ। କେଡ଼େ ସରି ସେ ଲାଞ୍ଜ। ମୋର ଏଇ ଜଙ୍ଘ ପରି ମୋଟ ହେବ –' କହି ଜେଜେ ତାଙ୍କ ଖୋଲା ଜଙ୍ଘରେ ବାଁ ପାପୁଲି ବୁଲାଇଆଣିଲେ।

ସମସ୍ତେ ଏଥର ମୁହଁ ଖୋଲିଲେ; ପଚାରିଲେ – 'ତେବେ ସତରେ ସେ ନିଜେ ବଦ୍ରିନାଥସ୍ୱାମୀ !'

ଜେଜେବାପା ଉତ୍ତର ଦେଲେ – 'ଆଉ ! ବଦ୍ରିନାଥ ମହାପ୍ରଭୁ ଆମର ମନ ପରଖୁଥିଲେ।'

x x x x

ଅର୍ଦ୍ଧଶତାବ୍ଦୀ ପରେ ଆଜି ଆମେ ଯାଉଥିଲୁଁ ସେହି ବଦ୍ରିନାଥ ସ୍ୱାମୀଙ୍କୁ ଦର୍ଶନ କରି। ଭାଗୀରଥୀ ଏବଂ ଅଳକନନ୍ଦା ନଦୀଦ୍ୱୟର ମିଳନସ୍ଥଳୀ ଦେବପ୍ରୟାଗ ଡ଼େଇଁ ଯାଇ ଆମେ ଯେତେବେଳେ ମନ୍ଦାକିନୀ ଏବଂ ଅଳକନନ୍ଦାର ମିଳନସ୍ଥଳୀ ରୁଦ୍ରପ୍ରୟାଗ ଡ଼େଇଁ ଯାଉଥିଲୁ – ଜୋଙ୍ଗା ଜିପ୍ ଭିତରୁ ମିଷ୍ଟର ଥାପ୍ଲିୟାଲ୍ ସାମ୍ନା ସିଟ୍ ଆଡ଼ିକି ଝୁଙ୍କି ପଡ଼ି ବାଁପାଖ ରାସ୍ତା କଡ଼ରେ ଥିବା ଗୋଟାଏ ସିମେଣ୍ଟ ସ୍ତମ୍ଭ ଆଡ଼କି ଆଙ୍ଗୁଠି ଦେଖାଇ କହିଲେ, 'ଜିମ୍ କରବେଟ୍ ହେଉଠି ରୁଦ୍ରପ୍ରୟୋଗର ସେ ମଣିଷଖିଆ ବାଘକୁ ମାରିଥିଲା।'

'ଆଚ୍ଛା !' କହି ମୁଁ ସେ ସିମେଣ୍ଟ ସ୍ତମ୍ଭ ଆଡ଼କୁ ଅନାଇ କେବଳ ମୁଣ୍ଡ ଟୁଙ୍ଗାରିଥିଲି ସତ, ମୋର ମନ କିନ୍ତୁ ଚାଲିଯାଇଥିଲା ଅନେକ ଦୂରକୁ।

ଜିମ୍ କରବେଟ୍ ! ତାଙ୍କୁ ଭାରତର କିଏ ନ ଜାଣେ ? ନିଜ ଜୀବନକୁ ପାଣି ଛଡ଼ାଇ ସେ ଅସୀମ ସାହସୀ ଇଂରେଜ ମଣିଷ ଏ ଅଞ୍ଚଳବାସୀଙ୍କ ସୁରକ୍ଷା ପାଇଁ କଣ

ଯେ କରି ନଥିଲେ। ଦକ୍ଷିଣ ଆଫ୍ରିକାର ଦଳେ ହିଂସ୍ର ସିଂହଙ୍କ ମଝିରେ ପଡ଼ିଯାଇ ସେ ତାଙ୍କ ଜୀବନ ହରାଇଥିଲେ, କିନ୍ତୁ ଏ ଅଞ୍ଚଳରେ ସେ ରହିଗଲେ ଅମର। ତାଙ୍କ ନାଁରେ ଭାରତର ସର୍ବଶ୍ରେଷ୍ଠ ଜାତୀୟ ଅରଣ୍ୟ ଉଦ୍ୟାନକୁ 'ଜିମ୍ କରବେଟ୍ ନ୍ୟାସନାଲ୍ ପାର୍କ' ନାମ ଦେଇ ଜାତି ଆଜି ତାଙ୍କ ସ୍ମୃତି ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ଦେଇଛି। ତାଙ୍କ କୀର୍ତ୍ତିମାଳାର କାହାଣୀପେଡ଼ି ସତରେ କୁହୁକଭରା। କରବେଟ୍‌ଙ୍କ ନାଁ ଶୁଣିଲାକ୍ଷଣି ସେ କାହାଣୀର ଗୋଟାଏ ଝଲକ ଉଙ୍କିଆସିଥିଲା ମୋ ମନ ଭିତରେ। କେତେ ଯେ ମଣିଷ ଖାଇସାରିଥିଲା ସେ ବାଘ! ଆଜି ଏଇଠି ତ ଦି'ଦିନ ପରେ ଶହେ ମାଇଲ ଦୂରରେ ଆଉ କେଉଁଠି। ନିଜେ ଶୟତାନ୍ ସତେ ଯେମିତି ବାଘର ରୂପ ନେଇ ଘୂରିବୁଲୁଥିଲା ହିମାଳୟର ଏଇ ପାର୍ବତ୍ୟ ଅଞ୍ଚଳରେ।

ପାର୍ବତ୍ୟ ଅଞ୍ଚଳ - ତଥାପି ଜାଳେଣି କାଠର ଅଭାବ! ଦି'ଜଣ ସାଙ୍ଗ ହୋଇ ଆସିଛନ୍ତି ଏଇ ଜାଳେଣି କାଠ ସଂଗ୍ରହ କରି। ଜଣେ ଟାଙ୍ଗିଆରେ ସରୁ ସରୁ କାଠଗଡ଼ମାନଙ୍କୁ ଫଡ଼ା ଫଡ଼ା କରି ଚିରି ପଛକୁ ଫିଙ୍ଗିଦେଉଛି, ଆଉ ତାର ସାଥୀ ସେସବୁକୁ  ଗୋଟେଇ ବିଡ଼ାବାନ୍ଧୁଛି। ବଡ଼ ବଡ଼ ଦି'ଟା ବିଡ଼ା ହେଲେ ତାକୁ ମୁଣ୍ଡାଇ ସେମାନେ ଘରକୁ ଫେରିଯିବେ। ଖଣ୍ଡିଏ କାଠ ଚିରି ସାରି ଫିଙ୍ଗି ଦେଲାପରେ କେତେ କାଠ ହେଲା ବୋଲି ସେ ଜଣକ ହଠାତ୍ ପଛକୁ ଅନାଇଦେଇଛି ତ ଦେଖେ ତା'ସାଥୀ ଆଉ ନାହିଁ ସୋର ନାହିଁ - ଶବ୍ଦ ନାହିଁ - ସାଥୀ ଅନ୍ତର୍ଦ୍ଧାନ। ତାର ସାଥୀ ଯେ ଚିରଦିନ ପାଇଁ ଏ ସଂସାରରୁ ଉଭେଇ ଯାଇଛି, ସେ କଥା ବୁଝିବାକୁ ତାକୁ ଆଉ ଡ଼େରି ଲାଗିନଥିଲା। ସାଥୀକୁ ଡାକରାଦେଇ କିମ୍ବା ଖୋଜି ବସି ମଧ୍ୟ ଆଉ କିଛି ଲାଭ ନାହିଁ। ଖାଲି ତା' ଆର ଦିନ କେଉଁଠି ମଣିଷ ମୁଣ୍ଡର ଗୋଟାଏ ନୂଆ ଖପୁରି ହାଡ଼ ହୁଏତ ଚିହ୍ନାଇଦେବେ ଯେ ସେ ଖପୁରିରି କର୍ତ୍ତା ହିଁ ଥିଲା ତାର ସାଥୀ।

ସଞ୍ଜବେଳେ ଶାଶୁ ବୋହୂଗରା ଦି'ଟା ଧରି ଝରଣାରୁ ପାଣି ଆଣିବାକୁ ଯାଇଛନ୍ତି। ବେଳ ରତରତ। ମୁଣ୍ଡରେ ପାଣିଭରା ଗରା। ଶାଶୁ ବୋହୂକୁ ତରତରଉଛି - 'ଶୀଘ୍ର ଚାଲ, ଅନ୍ଧାର ହୋଇଆସିଲାଣି।' ଶାଶୁ ଆଗରେ ଆଉ ବୋହୂପଛରେ - ଘର ଭିତରକୁ ଦିହେଁ ପଶିଲେଣି। ଶାଶୁ ସ୍ୱସ୍ତିର ନିଶ୍ୱାସ ମାରି ଗରା ତଳେ ଥୋଇ ବୋହୂକୁ କଣ କହିବାକୁ ପଛକୁ ଚାହିଁଲାବେଳକୁ ବୋହୂର ଗରା ଥୁଆହୋଇଛି, କିନ୍ତୁ ବୋହୂ ନାହିଁ। ଖୋଲା କବାଟ, ଶାଶୁ ବୁଝିଯାଇଛି । ତା ଆରଦିନ ବୋହୂର ମୁଣ୍ଡ ଖପୁରି ଆଉ ଗୋଡ଼ର ଖଣ୍ଡେ ଦି' ଖଣ୍ଡ ହାଡ଼ ହୁଏ ତ କେଉଁଠି ମିଳିବ ଅଳକନନ୍ଦା ଗଙ୍ଗା ଦେହରେ ମେଲିଦେବାପାଇଁ।

କରବେଟ୍‌ଙ୍କ ଅବ୍ୟର୍ଥ ଗୁଳି ବି ଶୟତାନ ଦେହରେ ଥରେ ବ୍ୟର୍ଥ ହୋଇଗଲା; ତା'ପରେ ଶୟତାନ ନେବାକୁ ବସିଲା ପ୍ରତିଶୋଧ। ଆରମ୍ଭ ହେଲା ଦିହିଁଙ୍କ ଲୁଚକାଳି

ଖେଳ। ସଞ୍ଜ ଢ଼େର୍‌ଗଁ ଅନ୍ଧାର ମାଡ଼ିଆସିଲାଣି। ଡାହାଣ କଡ଼ ମୁଣ୍ଡିଆରେ ରଡ଼ ନିଆଁ ପରି ଦି'ଟା ଜଳନ୍ତା ଆଖି କରବେଟ୍ ଉଠାଇଥିଲେ ରାଇଫେଲ ସେ ଦି'ଟା ନିଆଁ ପିଣ୍ଡୁଳାର ଠିକ୍ ମଝିରେ ଗୁଳି ବସାଇଦେବେ ବୋଲି; କିନ୍ତୁ ରାଇଫେଲ ଉଠିଲାକ୍ଷଣି ହିଁ ନିଆଁ ଲିଭିଗଲା। କରବେଟ୍ ବୁଝିନେଲେ ରାସ୍ତାର ଆଗ ମୋଡ଼ରେ ଛକିବାକୁ ଚାଲିଗଲାଣି ଶୟତାନ।

ସେ ମୋଡ଼। ପୁଣି ସେଇ ଦି' ଖଣ୍ଡ ରଡ଼ ନିଆଁ। ଆଉ ଠିକ୍ ସେମିତି ରାଇଫେଲ ଉଠାଇଲାକ୍ଷଣି ନିଆଁ ବୁଜିହୋଇଗଲା। ପୁଣି ଆଗରେ ପଡ଼ିବ ମୋଡ଼। ଶୟତାନ ଆଉ ଏଇ ଅସୀମ ସାହାସୀ ମଣିଷ ଭିତରେ ବୁଦ୍ଧିର ଚରମ ପରୀକ୍ଷା!

ଏଥର କରବେଟ୍ ତାଙ୍କ ସାଥୀକୁ ଖାଲି ହାତରେ ଏକୁଟିଆ ଆଗକୁ ଯିବାକୁ ଅନୁରୋଧକଲେ। କରବେଟ୍‌ଙ୍କ ଲକ୍ଷ୍ୟରେ ସାଥୀର ଅଖଣ୍ଡ ବିଶ୍ୱାସ। ଆଗେଇଗଲେ ସେ ଖାଲି ହାତରେ। ସାଥୀ ଠିକ୍ ମୋଡ଼ ନେଲା ବେଳକୁ ହିଁ ଆକାଶରୁ ଡେଇଁଥିଲା ଶୟତାନ, ଆଉ କରବେଟ୍‌ଙ୍କ ରାଇଫେଲ୍ ଗୁଳି ସେଇ ଆକାଶରେ ହିଁ ଶୟତାନର ମୁଣ୍ଡକୁ ଚୂନା କରି ଦେଇଥିଲା।

କି ଦୁର୍ଗମ ହିମାଳୟର ଏ ପାର୍ବତ୍ୟ ଅଞ୍ଚଳ! ଆଉ କେତେ ବିପଦସଙ୍କୁଳ ତାର ଚଲାବାଟ ଏବଂ କାଁ-ଭାଁ ଦେଖାଦେଇଥିବା ସେ ଭିତରର ରାସ୍ତାଘାଟ।

ତଥାପି କାହିଁ କେଉଁ ଅଜଣା ଅତୀତରୁ ଋଷିମୁନିମାନେ ଏକା ଏକା ସେ ଭିତରେ ଘୂରିବୁଲୁଛନ୍ତି। କିଏ ତାଙ୍କୁ ସାହସ ଯୋଗାଏ - କିଏ ତାଙ୍କୁ ବିପଦଆପଦରୁ ରକ୍ଷାକରେ କେଜାଣି! ତାଙ୍କ ହାତରେ ତ କରବେଟ୍‌ଙ୍କ ରାଇଫେଲ୍ ନ ଥାଏ, ଥାଏ କେବଳ ଗୋଟାଏ ଲେଖାଏଁ ଅଙ୍କାବଙ୍କା ଆଶାବାଡ଼ି।

ମୋ ଜେଜେବାପା ବି ସେ ଦିନ ଆସିଥିଲେ ଏଇ ହିମାଳୟ ଭିତରକୁ ଆଉ ଶହ ଶହ ମାଇଲ ପାଦରେ ଚାଲି ବଦ୍ରିନାଥ, କେଦାରନାଥ, ଗଙ୍ଗୋତ୍ରୀ, ଯମୁନୋତ୍ରୀ ଦେଖିଯାଇଥିଲେ। ତାଙ୍କ ହାତରେ ବି ଥିଲା କେବଳ ଗୋଟିଏ ଠେଙ୍ଗା - ପାହାଡ଼ ଚଢ଼ିବାରେ ସୁବିଧା ହେବ ବୋଲି। ସିନେମାର ଦୃଶ୍ୟଟିଏ ପରି ପିଲାଦିନର ସେ ଗାଆଁ ଦାଣ୍ଡର ଦୃଶ୍ୟ ମୋ ମନ ଭିତରକୁ ଚହଲିଆସିଥିଲା, ଆଉ ଜେଜେ ପୁଣି ଥରେ ବସିଯାଇଥିଲେ ଗାଁ ଦାଣ୍ଡର ସେ ପଥରଖଣ୍ଡ ଉପରେ ଏବଂ ଚିତ୍କାର କରୁଥିଲେ - ବା...ବା...ବା...।

x x x x

ଗୌଚରରେ ରାତି କଟାଇ ଆମେ ତା'ପରଦିନ ଆଗେଇ ଯାଇଥିଲୁ ବଦ୍ରିନାଥ ଅଭିମୁଖରେ। ଋଷିକେଶଠାରୁ ପ୍ରାୟ ୧୦୦ ମାଇଲ୍ ଦୂରରେ ଗଡ଼ୱାଲ୍ ହିମାଳୟ

ଭିତରେ ଏ ଗୌଚର। ଋଷିକେଶ ଆଉ ବଦ୍ରିନାଥର ପ୍ରାୟ ମଝାମଝି ଅଳକନନ୍ଦା କୂଳରେ ସବୁଠାରୁ ବଡ଼ ସମତଳ ଭୂମି। ତିବ୍ବତ ଚୀନ ଅଧୀନକୁ ଯିବା ପୂର୍ବରୁ ଏଇ ଗୌଚର କୁଆଡ଼େ ଥିଲା ତିବ୍ବତ ଏବଂ ଭାରତ ଭିତରେ ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର। ତିବ୍ବତୀୟମାନେ ତିବ୍ବତରୁ କଞ୍ଚା ପଶମ ସାଙ୍ଗକୁ ପଶମତିଆରି କମ୍ବଳ, ଗାଲିଚ୍ଛ, ଶାଲ, ସ୍ୱେଟର ପ୍ରଭୃତି ଆଣୁଥିଲେ, ଆଉ ଏ ପାଖରୁ ଚାଉଳ ଡାଲି ଗହମଠାରୁ ଆରମ୍ଭ କରି ତାଙ୍କ ନିତ୍ୟବ୍ୟବହାର୍ଯ୍ୟ ଅନ୍ୟାନ୍ୟ ଜିନିଷ ସବୁ କିଣିନେଉଥିଲେ। ଶିକ୍ଷା ଏବଂ ସଂସ୍କୃତିର ଆଦାନ ପ୍ରଦାନ ମଧ୍ୟ ହେଉଥିଲା ଅନେକ ପରିମାଣରେ ଏଇଠି। ଏ ବାଟ ଦେଇ ସେଦିନ ଭାରତୀୟ ବୌଦ୍ଧଭିକ୍ଷୁମାନେ ମଧ୍ୟ ତିବ୍ବତ ଓ ଚୀନକୁ ଯାଇଥିବେ।

ଆଜି ବି ଗୌରଚଠାରେ ପ୍ରତିବର୍ଷ ଏ ଅଞ୍ଚଳର ସବୁଠାରୁ ବଡ଼ ବାଣିଜ୍ୟ ମେଳା ହୁଏ; କିନ୍ତୁ ଲୋକେ କହନ୍ତି ଗୌଚରର ସେ ପୂର୍ବ ଶିରୀ ଆଉ ନାହିଁ।

ହିମାଳୟ ସମ୍ବନ୍ଧରେ ଭାବିବସିଲେ ତାର ପାର୍ବତ୍ୟ ଅଞ୍ଚଳର ହଜାର ହଜାର ଫୁଟ ଉଚ୍ଚରେ ଏଡ଼େ ସୁନ୍ଦର ସୁନ୍ଦର ଗାଁ ଆଉ ସହରମାନ ଥାଇପାରେ ବୋଲି କଳ୍ପନା କରି ହୁଏନି। ସମୁଦ୍ରପତ୍ତନରୁ କେବଳ ଦୁଇ ତିନି ହଜାର ଫୁଟ ଉଚ୍ଚରେ ଥିବା ଆମ କୋରାପୁଟ, ଫୁଲବାଣୀ ଆଉ କଳାହାଣ୍ଡିର ଆଦିବାସୀ ଅଞ୍ଚଳ ସବୁ କେଡ଼େ ଅନୁନ୍ନତ। ସେ ଅଞ୍ଚଳମାନଙ୍କରେ ଆଜି ବି କେତେ ଆଦିବାସୀ ଗୋଷ୍ଠୀ ଅଛନ୍ତି, ଯେଉଁମାନେ ଊଣାଅଧିକେ ଲଙ୍ଗଳା। ସଂସ୍କୃତିର ଚରମ ସୋପାନରେ ଉପବିଷ୍ଟ ମହାବୀର ତଥା ତାଙ୍କ ଦିଗମ୍ବର ଜୈନଙ୍କ ପରି ଲଙ୍ଗଳା ନୁହନ୍ତି; ସେମାନେ ଲଙ୍ଗଳା ଯେହେତୁ ଲୁଗାପିନ୍ଧା ସମ୍ବନ୍ଧରେ ମଧ୍ୟ ସେମାନେ ଅଜ୍ଞ। ତାଙ୍କୁ ଦେଖିଲେ ମନେହୁଏ ଶିକ୍ଷା, ସଭ୍ୟତା, ଧର୍ମ, ସଂସ୍କୃତି ପ୍ରଭୃତି ସତେ ଯେମିତି ସେ ଅଞ୍ଚଳ ଭିତରକୁ ପ୍ରବେଶ କରିପାରିନି। ସର୍ବବ୍ୟାପୀ ସର୍ବଶକ୍ତିମାନ୍ ପରଂବ୍ରହ୍ମଙ୍କ ବଦଳରେ କୌଣସି ବଙ୍କାତେଢ଼ା ଗଛତଳେ କାଚଦିଆ ଆଖି ପିନ୍ଧି ସିନ୍ଦୂର ଆଉ ରକ୍ତ ଜରଜର ହୋଇଥିବା ଗୋଟାଏ କାଠଖୁଣ୍ଟ ଅଥବା କୌଣସି ଗୋଜିଆ ପଥର ଖଣ୍ଡିଏ ସେମାନଙ୍କ ଡୁମା ଠାକୁରାଣୀ - ଦେବତା। ଦେବଦେବୀ ପୂଜା କହିଲେ ଏଇ ଡୁମା ଠାକୁରାଣୀଙ୍କ ଆଗରେ ଛେଳି, କୁକୁଡ଼ା, ମଇଁଷି, ପୋଡୁଆ ବଳିଦେବା ହିଁ ଏମାନେ ବୁଝନ୍ତି। ହଳଦିକିଆରିମାନଙ୍କରେ ବେଶି ହଳଦି ବସିବ ବୋଲି ଏମାନଙ୍କ ଭିତରୁ ହିଁ କେତେକ ନରବଳି ଦେଉଥିଲେ। ବେଦ ଉପନିଷଦ୍‌ର ନିଗୂଢ଼ ତତ୍ତ୍ୱ କାହିଁକି, ରାମାୟଣ ମହାଭାରତ କିମ୍ବା ଭାଗବତର ଅସ୍ତିତ୍ୱ ମଧ୍ୟ ଏମାନଙ୍କୁ ଅଜଣା। ରାମାୟଣ ଯୁଗର ରାକ୍ଷସ-ଅଧ୍ୟୁଷିତ ଦଣ୍ଡକାରଣ୍ୟ ଅଞ୍ଚଳ ଆଜି ବି ଊଣା ଅଧିକେ ସେଇ ଅବସ୍ଥାରେ।

ଆଉ ଗଗନଚୁମ୍ବୀ ପର୍ବତମାଳାର ଏ ହିମାଳୟ! ମୁଣ୍ଡରେ କିମ୍ବା ପିଠିରେ ଘାସ କିମ୍ବା କାଠ ବୋଝ ବୋହିନେଇ ହଜାର ହଜାର ଫୁଟ ଉଚ୍ଚରେ ରାସ୍ତାଘାଟମାନଙ୍କରେ

ଯା-ଆସ କରୁଥିବା ଝିଅ ଅଥବା ଗାଈ ବଳଦ ଆଉ ଲୋମଶ ଛେଳି ମେଣ୍ଢା ଚରାଉଥିବା ପୁଅଝିଅଙ୍କ ସୁନ୍ଦର ଚେହେରା, ସାଧାରଣ ବେଶଭୂଷାର ପରିପାଟୀ ଏବଂ ରଙ୍ଗଢ଼ଙ୍ଗ ଏମାନଙ୍କ ଶିକ୍ଷା ସଭ୍ୟତାର ଇଙ୍ଗିତ ଦିଏ। ସତ୍ୟ, ତ୍ରେତୟା, ଦ୍ୱାପର ଯୁଗର ଏ ଦେବଭୂମି ଆଜି ବି ସର୍ବତତ୍ତ୍ୱଜ୍ଞାନୀ ମୁନିଋଷିଙ୍କ ଚରଣସ୍ଥଳୀ। ସମୟର ଅନ୍ତଃହୀନ କୋଳରେ ମାନବର ଇତିହାସ ସତେ ଯେମିତି ଏଇଠି ହଜିଯାଇଛି। ହରଦ୍ୱାର, ଋଷିକେଶଠାରୁ ହିଁ ତହିଁର ଆଭାସ ମିଳିଥାଏ। ହିମାଳୟର ପାଦଦେଶ ଋଷିକେଶଠାରେ ଗଙ୍ଗା ହିମାଳୟ ପର୍ବତଶ୍ରେଣୀ ଭିତରୁ ବାହାରକୁ ବାହାରି ଆସିଥିଲେ ମଧ୍ୟ ସ୍ରୋତର ପ୍ରଖରତା ଯୋଗୁ ବୋଧହୁଏ ଧରିନିଆଯାଏ ଯେ ପ୍ରାୟ ୧୬ ମାଇଲ ତଳରେ ଥିବା ହରଦ୍ୱାର ହିଁ ସେ ଦ୍ୱାରଦେଶ। ହରଦ୍ୱାରକୁ କେହି କେହି ହରିଦ୍ୱାର ମଧ୍ୟ କହନ୍ତି। ହରିଙ୍କ ଆସ୍ଥାନ ବଦ୍ରିନାଥକୁ ଯିବାପାଇଁ ଏ ଯେପରି ଦ୍ୱାରଦେଶ, ହରଙ୍କ ଆସ୍ଥାନ କେଦାରନାଥକୁ ଯିବାପାଇଁ ମଧ୍ୟ ଏ ସେପରି ଦ୍ୱାରଦେଶ।

ପୁରାଣର କଥନ ଅନୁସାରେ ସ୍ୱର୍ଗରୁ ଗଙ୍ଗାଙ୍କୁ ଓହ୍ଲାଇ ଆସିବା ପାଇଁ ଭଗୀରଥ ଯେତେବେଳେ ଘୋର ତପସ୍ୟାକଲେ, ଗଙ୍ଗା ପଚାରିଥିଲେ ସେ ଖସିପଡ଼ିଲେ ତାଙ୍କ ପତନର ଭାରକୁ ସମ୍ଭାଳିବ କିଏ? ଭଗୀରଥଙ୍କ ତପସ୍ୟାରେ ତୁଷ୍ଟ କୈଳାସପତି ଶିବ ତାଙ୍କ ମୁଣ୍ଡ ଉପରେ ହିଁ ରୁଷ୍ଟା ଗଙ୍ଗାଙ୍କୁ ଖସିପଡ଼ିବା ପାଇଁ କହିଥିଲେ। ଜଟାଧାରୀ ଶିବଙ୍କ କେଶରାଶି ଭିତରେ ହଜିଗଲେ ଗଙ୍ଗା। ଗଙ୍ଗାଙ୍କ ଗର୍ବ ଖର୍ବହେଲା ସତ, କିନ୍ତୁ ଭଗୀରଥ ଗଙ୍ଗାଙ୍କୁ ହଜାଇ ବସିଥିଲେ। ପୁଣି ଆରମ୍ଭ ହେଲା ତାଙ୍କ ତପସ୍ୟା। କୈଳାସପତି ସନ୍ତୁଷ୍ଟ ହେଲାପରେ ତାଙ୍କ ଜଟାଭାରରୁ ଧାର ଧାର ହୋଇ ଏଥର ବାହାରିଆସିଲେ ଗଙ୍ଗା ଭାଗୀରଥୀ, ଅଳକାନନ୍ଦା, ମନ୍ଦାକିନୀ, ଯମୁନା ନାମ ନେଇ। ପ୍ରତ୍ୟେକେ ଗଙ୍ଗା ଏବଂ ଗଙ୍ଗାଙ୍କପରି ପବିତ୍ର।

ଭାଗୀରଥୀ ଏବଂ ଅଳକାନନ୍ଦାଙ୍କ ମିଳନସ୍ଥଳୀ ଦେବପ୍ରୟାଗଠାରେ ହିଁ ମିଳିତ ନଦୀଦ୍ୱୟ ଗଙ୍ଗା ନାମ ଧାରଣ କରିଛନ୍ତି। ହରଦ୍ୱାରଠାରେ ଗଙ୍ଗା ହୋଇଛନ୍ତି ହିନ୍ଦୁର ମାତୃରୂପିଣୀ 'ମା ଗଙ୍ଗେ'। ହିନ୍ଦୁଙ୍କ ପାଇଁ ଗଙ୍ଗାମାଙ୍କ ଜଳ ଯେପରି ପବିତ୍ର, ନଦୀ ଶଯ୍ୟାର ମାଟି ମଧ୍ୟ ସେପରି ପବିତ୍ର। ଗଙ୍ଗାଙ୍କ କ୍ଷିତି ଆଉ ଅପ୍ ସଙ୍ଗରେ କାଳକାଳରୁ ହିନ୍ଦୁ ତାର ନିଜ କ୍ଷିତି ଆଉ ଅପ୍‌କୁ ମିଶାଇ ଦେବାକୁ ଚାହିଁଛି। ଗଙ୍ଗା ଏବଂ ଯମୁନାଙ୍କ ମିଳନସ୍ଥଳୀ ପ୍ରୟାଗରାଜ ପରି ହରଦ୍ୱାରଠାରେ ମଧ୍ୟ ୧୨ ବର୍ଷରେ ଥରେ କୁମ୍ଭମେଳା ହୋଇଥାଏ।

ହରଦ୍ୱାରଠାରେ 'ହର୍ କା ପୈଡ଼ୀ'ରେ ଗାଧୋଇ ଆମେ ଆମର ଯାତ୍ରା ଆରମ୍ଭ କରିଥିଲୁଁ। ସିଦ୍ଧ ଯୋଗୀ ଶିବାନନ୍ଦ ସ୍ଥାପନା କରିଯାଇଥିବା ଦିବ୍ୟଜୀବନ ସଂଘର ପୀଠସ୍ଥଳୀ ଏଇ ଋଷିକେଶଠାରେ। ଲଛମନ ଝୋଲା ପୋଲ ଉପରୁ

ମହର୍ଷିମହେଶଯୋଗୀ ଆଉ ଅନ୍ୟାନ୍ୟ ସାଧୁସନ୍ଥମାନଙ୍କ ଆଶ୍ରମ ସବୁ ସ୍ୱଷ୍ଟ ଏବଂ ସୁନ୍ଦର ଦେଖାଯାଏ। ଋଷିକେଶଠାରୁ ଗଙ୍ଗୋତ୍ରୀ, ଯମୁନୋତ୍ରୀ, କେଦାରନାଥ ଆଉ ବଦ୍ରିନାଥକୁ ଯିବାପାଇଁ ବାଟ ଏବଂ ଯେକୌଣସି ବାଟରେ ହିମାଳୟ ଭିତରକୁ ଯେଉଁଆଡ଼େ ଗଲେ ବି ଗଙ୍ଗାଙ୍କ ଶାଖା ପ୍ରଶାଖାର କୂଳମାନଙ୍କରେ ସାଧୁସନ୍ଥଙ୍କ ଆଶ୍ରମ। ହିମାଳୟ ପର୍ବତ ଶ୍ରେଣୀର ରୁଦ୍ର ଅଥଚ ପ୍ରଶାନ୍ତ ଏବଂ କମନୀୟ ପରିବେଶ ଦେଖିଲେ ମନେହୁଏ ସତେ ଯେମିତି କେହି ଜଣେ ମହାଯୋଗୀ ତାଙ୍କ ଆକାଶଚୁମ୍ବୀ ଜଟାଭାରକୁ ମୁଣ୍ଡରେ ବହନକରି ଧ୍ୟାନମଗ୍ନ ହୋଇ ବସିଯାଇଛନ୍ତି। ସେ ଶାନ୍ତ ଏବଂ କମନୀୟ ପରିବେଶ ବୋଧହୁଏ ଏ ଋଷି ମୁନିଙ୍କୁ ତାଙ୍କ ଯୋଗସାଧନା ପାଇଁ ପ୍ରେରଣା ଯୋଗାଏ।

ଗୌଚର ଏବଂ ଯୋଶୀମଠ ମଝିରେ ପାତାଳଗଙ୍ଗା - ଅଳକନନ୍ଦା କାହିଁ କେତେ ତଳେ କେଉଁ ପାତାଳ ଗହ୍ୱରରେ ବୋହିଯାଉଛନ୍ତି। ଅଙ୍କାବଙ୍କା ସରୁ ରାସ୍ତା। ନଦୀକୁ ଅନାଇଁ ଦେଲେ ମୁଣ୍ଡ ଘୂରାଇଯାଏ। ପ୍ରତ୍ୟେକ ମୋଡ଼ରେ ପର୍ବତ ଗାତ୍ରରେ ବିଗୁଲର ଚିହ୍ନ ଅଙ୍କିତ କରି ଧ୍ୱନି ସଂକେତ ଦେବା ପାଇଁ ଡ୍ରାଇଭରମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି; କିନ୍ତୁ ଦିନ ରାତି ଏପରି ରାସ୍ତାରେ ଯା' ଆସ କରି ଏଇ ଡ୍ରାଇଭରମାନେ ହର୍ଣ୍ଣ ଦେଇ ଦେଇ ଚିଟା ହୋଇଯିବା ଫଳରେ ବୋଧହୁଏ ଆଉ ହର୍ଣ୍ଣ ଦିଅନ୍ତି ନି। ଆମେ ଥରେ ଯେତେବେଳେ ଠିକ୍ ଗୋଟାଏ ମୋଡ଼ ନେଇ ସାରିଛୁଁ, ସାମନାକୁ ଚାହିଁଲାକ୍ଷଣି ମୋର ମନେ ହେଲା ରାମାୟଣ ବର୍ଣ୍ଣିତ ତାଡ଼କା ରାକ୍ଷାସୀ ଆଗରୁ ମାଡ଼ିଆସୁଛି - ଏ ଜିପ୍ ସଙ୍ଗରେ ଆମ ସମସ୍ତଙ୍କୁ ଗୋଟାପଣେ ଗିଳିଦେବାପାଇଁ। ମନେହେଲା ମୋର ହୃତ୍‌ପିଣ୍ଡ ଛାତି କଣାକରି ବାହାରିଆସିବ। ଡାହାଣପାଖରେ ହିମାଳୟର ନଭଶ୍ଚୁମ୍ବୀ ପର୍ବତ ଠିକ୍ ଗୋଟାଏ କାନ୍ଥ ଦେଲାପରି। ବାଁ ପାଖରେ ସେଇ ସର୍ବତ ଛିଣ୍ଡିପଡ଼ିଛି ଅଳକନନ୍ଦାର ପାତାଳ ଗହ୍ୱରକୁ। ମଝିରେ ବାଟ କାଟି ଆଗେଇ ଯିବାପାଇଁ ରାସ୍ତାର ଚୌଡ଼ା ଯଥେଷ୍ଟ ନୁହେଁ। ଆଗକୁ ଧସାଇ ଆସୁଥିବା ଯାତ୍ରୀବାହୀ ବସ୍ ଯଦି ଆମ ଏ ଜିପ୍‌କୁ ଧକ୍‌କାଦିଏ, ଆମେ କେବଳ ଯେିତି ଅପ୍ କାହିଁକି, ତେଜ, ମରୁତ ଏବଂ ବ୍ୟୋମ ସାଙ୍ଗକୁ ଜିପ୍ ସହିତ ସେଇ ପାତାଳ ଗଙ୍ଗାରେ ଚିରଦିନ ପାଇଁ ବୁଡ୍ ମାରିବୁଁ। ମୋ ସ୍ତ୍ରୀଙ୍କ ମୁହଁକୁ ଅନାଇଁଲି। ସେ ତାଙ୍କ ଦୁଇ ହାତରେ ମୋ ଡାହାଣ ହାତକୁ ଯାବୁଡ଼ି ଧରିଛନ୍ତି - ମୁହଁ ଶେତାପଡ଼ିଯାଇଛି।

ଆମ ଡ୍ରାଇଭର ବ୍ରେକ୍ ଦେଇ ଗାଡ଼ିକୁ ଠିଆକରି ସାରିଥିଲା। ଆଗରୁ ଆସୁଥିବା ବସ୍ ମଧ ବ୍ରେକ୍ ଦେଇ ଠିକ୍ ଆମ ଜିପ୍‌ର ସାମନାରେ ଠିଆହୋଇଗଲା। ଆମ ଜିପ୍ ପଛେଇ ଯାଇ ମୋଡ଼ରେ ଯେଉଁଠି ରାସ୍ତା ଟିକେ ଚଉଡ଼ା, ସେ ପାଖରେ ରାସ୍ତାର ଧାରକୁ ଲଗାଇ ଠିଆହୋଇଗଲାପରେ ପାହାଡ଼ କଡ଼ର ନାଳରେ ଗୋଟାଏ ଚକ ପକାଇ ଯାତ୍ରୀବାହୀ ବସ୍‌ଟି ଡ଼େଇଁଗଲା ଆଗକୁ।

ପରେ ମୁଁ ସେତେବେଳେ ମିଷ୍ଟର ଥାପ୍ଲିୟାଲ୍‌ଙ୍କୁ ଗାଡ଼ି ଦୁର୍ଘଟଣା କଥା ପଚ୍ଚାରିଥିଲି; ସେ କେତେ ମାସ ପୂର୍ବରୁ ଆମ ଓଡ଼ିଶାର କେତେ ଯାତ୍ରୀଥିବା ଗୋଟାଏ ବସ୍ କେମିତି ତଳକୁ ଖସିଯିବା ଫଳରେ ଗୁଡ଼ିଏ ଯାତ୍ରୀ ପ୍ରାଣ ହରାଇଥିଲେ, ସେ କଥା କହି ଯୋଡ଼ିଦେଇଥିଲେ ଯେ ସାଧାରଣ ରାଜପଥମାନଙ୍କରେ ବର୍ଷକୁ ଯେତେ ଦୁର୍ଘଟଣା ଘଟେ ତା' ତୁଳନାରେ ସାଧାରଣ ରାସ୍ତାର ଦୁର୍ଘଟଣା ଅତି କମ୍। ଦୁର୍ଘଟଣା ଘଟେ ପ୍ରାୟ ଅତଡ଼ା ଖସିବା ଯୋଗୁଁ - ଦୁଇ ଗାଡ଼ିର ମୁହାଁମୁହିଁ ସଂଘର୍ଷ ପାଇଁ ନୁହେଁ।

ଅଭୁଲା ଦୃଶ୍ୟ ସବୁ ଦେଖି ଦେଖି ଆମେ ଆଗେଇ ଯାଉଥିଲୁଁ। ପର୍ବତର କାନ୍ଥପରି ଗାତ୍ରକୁ ଏଇଠି ସେଇଠି ଫଟାଇ ତଳକୁ ଡ଼ିଆଁ ମାରୁଥିବା ଛୋଟ ବଡ଼ ଜଳର ଧାରା ସବୁ ଦେଖିବାକୁ ସତରେ ଭାରି ସୁନ୍ଦର, ତା'ପରେ ଦେଖିଥିଲୁଁ କର୍ଣ୍ଣପ୍ରୟାଗଠାରେ ଅତଡ଼ା ଖସିବାର ଏକ ଭୟାବହ ଦୃଶ୍ୟ। ପର୍ବତର ଫାଳେ ସତେ ଯେମିତି ଭୁଷୁଡ଼ିପଡ଼ିଛି।

ହିମାଳୟର ପର୍ବତମାନଙ୍କରେ ପଥର ଅପେକ୍ଷା ମାଟିର ମାତ୍ରା ବେଶି। ସେ ମାଟି ପୁଣି ଚିକିଟା ନହୋଇ ପଟୁମାଟି ପରି - ଅଣଅଠାଳିଆ। ବର୍ଷା ପାଣି ଅଥବା ତରଳିଲା ବରଫ ପାଣି ସହଜରେ ସେ ମାଟି ଭିତରକୁ ଭେଦିଯାଏ। ଆଗ ହୁଏତ ଗଛମାନଙ୍କର ଚେର ସବୁ ସେ ମାଟିକୁ ବାନ୍ଧିରଖିବା ଫଳରେ କେଉଁ କେଉଁଠି ପାହାଡ଼ ସିଧା ସଳଖ ଛିଣ୍ଡିପଡ଼ିଥିଲେ ମଧ୍ୟ ସେ ବନ୍ଧନଯୋଗୁଁ ଠିଆହୋଇ ରହୁଥିଲା। ଅବାଧ ଗଛକଟା ଏବଂ ଜଙ୍ଗଲ ସଫେଇ ଫଳରେ ଗଛ ଚେରର ସେ ବନ୍ଧନ ଯେତେବେଳେ ଧୀରେ ଧୀରେ ଉଭେଇଗଲା, ସେ ଅଞ୍ଚଳମାନଙ୍କରେ ଅତଡ଼ା ଖସିଲା। ଯେଉଁଠି ପାହାଡ଼ର ଢାଲୁ ଯଥେଷ୍ଟ ସେଇଠି ଇଞ୍ଜିନିୟରମାନେ ବେଞ୍ଚିଂଦେଇ ପାହାଡ଼ର ଉଚ୍ଚତାକୁ ଥାକ ଥାକ କରି କାଟି ଝରୁଥିବା ପାଣିରୁ ନାଳମାନଙ୍କ ସାହାଯ୍ୟରେ ବାହାର କରି ଦେଉଛନ୍ତି, ଆଉ ରାସ୍ତା କଡ଼ର କଟେଇକୁ ପଥର କାନ୍ଥ ବାନ୍ଧି ଅଥବା ପଥର ପିଚିଂ ଦେଇ ଆକଟ କରିପାରିଛନ୍ତି; କିନ୍ତୁ ଯେଉଁଠି ଢ଼ାଲୁ ନିହାତି କମ୍, ସେଇଠି ହିଁ ବାରମ୍ବାର ବିପଦ ଦେଖାଦେଉଛି। ଅତଡ଼ା ଖସି ପର୍ବତର କୌଣସି ଭିଜା ଅଂଶ ଯେତେବେଳେ ଭୁଷୁଡ଼ିପଡୁଛି, ସେ ଅତଡ଼ା ଖସିବା ବାଟରେ ଥିବା ରାସ୍ତାଘାଟ ନିଶ୍ଚିହ୍ନ ହୋଇଯିବା ସଙ୍ଗେ ସଙ୍ଗେ ତା'ଭିତରେ ଥିବା ଗାଈ ବଳଦ, ଛେଳି ମେଣ୍ଢା ଆଉ ମଣିଷ ସମସ୍ତେ ଜୀବନ୍ତ ସମାଧି ନେଉଛନ୍ତି।

ଉତ୍ତରକାଶୀଠାରେ ଅତଡ଼ା ଖସିବା ଫଳରେ କିଛି ଦିନତଳେ ଯେଉଁ ମର୍ମନ୍ତୁଦ ଘଟଣା ଘଟିଯାଇଥିଲା, ସେ ସମ୍ବନ୍ଧରେ ଆଲୋଚନା କରୁଁ କରୁଁ ହିଁ ସେଦିନ ବର୍ଡ଼ର ରୋଡ୍‌ସର୍ ଡାଇରେକ୍ଟର ଜେନେରେଲ୍ ମୋତେ ତାଙ୍କ ପାହାଡ଼ିଆ ରାସ୍ତା ଦେଖି କିଛି

ପରାମର୍ଶ ଦେବାକୁ ଅନୁରୋଧ କରିଥିଲେ ଏବଂ ମୁଁ ଯେତେବେଳେ ବଦ୍ରିନାଥ ଯିବାପାଇଁ ମୋର ଆଗ୍ରହ କଥା ସୁଚାଇଦେଲି, ସେ ହରଦ୍ୱାରରୁ ବଦ୍ରିନାଥକୁ ଯିବା ରାସ୍ତା ମଧ୍ୟ ତାଙ୍କ ଅଧୀନରେ କରି ତାଙ୍କର ଜଣେ ଇଞ୍ଜିନିୟରଙ୍କ ସଙ୍ଗରେ ବଦ୍ରିନାଥ ଯିବାପାଇଁ ମୋର ଆଗ୍ରହ କଥା ସୂଚାଇଦେଲି, ସେ ହରଦ୍ୱାରରୁ ବଦ୍ରିନାଥକୁ ଯିବା ରାସ୍ତା ମଧ୍ୟ ତାଙ୍କ ଅଧୀନରେ କରି ତାଙ୍କର ଜଣେ ଇଞ୍ଜିନିୟରଙ୍କ ସଙ୍ଗରେ ନେଇଯିବା ପାଇଁ ଷ୍ଟେସନରେ ଅପେକ୍ଷା କରିଥିଲେ।

ସମୁଦ୍ର ପତ୍ତନରୁ ୬୦୦୦ ଫୁଟ ଉଚ୍ଚରେ ଯୋଶୀମଠ। ଥାପ୍ଲିୟାଲ୍‌ଙ୍କଠାରୁ ଶୁଣିଲି ସେ ଜ୍ୟୋତିର୍ମଠର ନାମ କାଳକ୍ରମେ ଯୋଶୀମଠ ହୋଇଯାଇଛି। ଆଦି ଶଙ୍କରାଚାର୍ଯ୍ୟ ଏଇଠି ତପସ୍ୟା କରି ଜ୍ୟୋତି ପାଇଥିଲେ। ଶଙ୍କର କୁଆଡ଼େ ଧ୍ୟାନରେ ଥିଲାବେଳେ ନିର୍ଦ୍ଦେଶ ପାଇଥିଲେ ଯେ ନର-ନାରାୟଣ ପର୍ବତ ମଝିରେ ଅଳକନନ୍ଦାର ନାରଦ କୁଣ୍ଡରେ ଭଗବାନ ବଦ୍ରିନାରାୟଣଙ୍କ ଏକ ଶାଳଗ୍ରାମମୂର୍ତ୍ତି ରହିଛନ୍ତି। ସେ ମୂର୍ତ୍ତି ସ୍ୱୟମ୍ଭୁ କେହି ତିଆରି କରିନାହାନ୍ତି। ସେ ସେହି ମୂର୍ତ୍ତିକୁ ନଦୀ କୂଳରେ ସ୍ଥାପନା କରି ପୂଜାର ଆୟୋଜନ କରିବେ। ସତକୁ ସତ ନାରଦ କୁଣ୍ଡର ପାଣି ଭିତରେ ହିଁ ଶଙ୍କରାଚାର୍ଯ୍ୟ ଶାଳଗ୍ରାମ ଶିଳାର ସେହି ସ୍ୱୟମ୍ଭୁମୂର୍ତ୍ତି ପାଇଥିଲେ।

ଯୋଶୀମଠ ଠାରେ ଆମେ ଆମର ମଧ୍ୟାହ୍ନ ଭୋଜନ କରିନେବା କଥା। ଅଫିସର୍ ମେସ୍‌ରେ ବସି ଖାଇଲାବେଳେ ଡ଼ିଭିଜନାଲ୍ କମାଣ୍ଡେଣ୍ଟ କର୍ଣ୍ଣେଲ ଭୁପେନ୍ଦର ସିଂ ଆମ ଯାତ୍ରା କଥା ପଚାରିଥିଲେ। ମୁଁ ଯେତେବେଳେ କହିଲି ଯେ କେବଳ ମଝିରେ ମଝିରେ ହୃଦୟର ସ୍ପନ୍ଦନ କ୍ଷଣେ ଅଧେ ବନ୍ଦ ହୋଇଯାଉଥିବା ଛଡ଼ା ବାକୀ ସବୁ ବେଶ୍ ଭଲ, ସମସ୍ତେ ହସିଉଠିଥିଲେ। ଅତଡ଼ା ଖସିବା ଫଳରେ ରାସ୍ତା ତିଆରି କେଡ଼େ ଆପଦପୂର୍ଣ୍ଣ ସେ କଥା ସୂଚାଇ ସେମାନେ କହିଥିଲେ ଯେ ସେ ସବୁ ଆପଦ ଖଣ୍ଡନ ପାଇଁ ସେମାନେ ମଧ୍ୟ ବଦ୍ରିନାଥ ସ୍ୱାମୀଙ୍କ କୃପା ଉପରେ ଭରସା ରଖନ୍ତି। ବଦ୍ରିନାଥ ଯାତ୍ରୀଙ୍କ ପାଇଁ ସେମାନଙ୍କ ସଂସ୍ଥା ଏ ରାସ୍ତା ତିଆରି କରିଦେଇ ଯାତ୍ରାକୁ କେତେ ସୁଗମ କରିଦେଇଛି ବୋଲି ମୋର ମନ୍ତବ୍ୟ ଶୁଣି କର୍ଣ୍ଣେଲ ସିଂ ଖୁସି ମନରେ କହିଥିଲେ ଯେ ମନ୍ଦିରର କର୍ମକର୍ତ୍ତାମାନେ ମଧ୍ୟ ସେଥିପାଇଁ ବର୍ଡ଼ର ରୋଡ଼୍‌ସ ସଂସ୍ଥାର ଇଞ୍ଜିନିୟରମାନଙ୍କୁ ତାଙ୍କ ପରିବାରର ବୋଲି ଗ୍ରହଣ କରିନେଇଛନ୍ତି। ଫଳରେ ବରଫପାତ ଯୋଗୁ ନଭେମ୍ବର ମାସରେ ମନ୍ଦିର ବନ୍ଦ ହୋଇଯାଇ ଏପ୍ରିଲରେ ନୂଆ କରି ଯେତେବେଳେ ଖୋଲେ, ପ୍ରଥମ ଦିନର ପୂଜାରେ ଭାଗନେବା ପାଇଁ ମୁଖ୍ୟ ପୂଜକ ଜିଲ୍ଲାଧୀଶଙ୍କ ସଙ୍ଗରେ ଏ କମାଣ୍ଡେଣ୍ଟଙ୍କୁ ମଧ୍ୟ ସୁଯୋଗ ଦିଅନ୍ତି। ତା'ପରେ ସେ ଯୋଡ଼ିଦେଇଥିଲେ ଯେ ଥାପ୍ଲିୟାଲ୍‌ଙ୍କୁ ତ ମନ୍ଦିରର ସମସ୍ତେ ଚିହ୍ନନ୍ତି, ସବୁ ପୂଜାବିଧି ପାଇଁ ଆମର କିଛି ଅସୁବିଧା ହେବନି।

ଯୋଶୀମଠରୁ ବଦ୍ରିନାଥ ପ୍ରାୟ ତିରିଶ ମାଇଲ ବାଟ; କିନ୍ତୁ ସେ ଭିତରେ ଆଉ ପ୍ରାୟ ୪୫୦୦ ଫୁଟ ଉପରକୁ ଉଠି ଯିବାକୁ ପଡ଼େ। ରାସ୍ତା ତେଣୁ ବେଶି ଉଠାଣିଆ, ଆଉ ଭୀଷଣ ବଙ୍କାତେଢ଼ା - ଏ ପାଖ ସେ ପାଖ ଅଙ୍କେଇ ବଙ୍କେଇ ଉପରକୁ ଉଠୁଥାଏ।

ତଥାପି ଶେଷ ତିରିଶ ମାଇଲ ଡ୍ରାଇଭରମାନଙ୍କ ପକ୍ଷରେ ଅପେକ୍ଷାକୃତ ସହଜ, ଯେହେତୁ ଉପରୁ ତଳକୁ ଖସୁଥିବା ଡ୍ରାଇଭର ଏବଂ ଯାତ୍ରୀମାନେ ଅନେକ ତଳରୁ ଉପରକୁ ଉଠିଆସୁଥିବା ଗାଡ଼ିମାନଙ୍କୁ ସହଜରେ ଦେଖିପାରନ୍ତି ଏବଂ କୌଣସି ସୁବିଧା ସ୍ଥାନରେ ନିଜ ଗାଡ଼ି ଅଟକାଇଦେଇ ଏହି ଗାଡ଼ିମାନଙ୍କୁ ବାଟ ଛାଡ଼ିଦିଅନ୍ତି।

ବଦ୍ରିନାଥ ପହଞ୍ଚିଲାବେଳକୁ ସନ୍ଧ୍ୟା ହୋଇଆସିଥାଏ। ସମୁଦ୍ର ପତ୍ତନଠାରୁ ୧୦,୩୦୦ ଫୁଟ ଉଚ୍ଚରେ ଏ ବଦ୍ରିନାଥ। ଅଳକନନ୍ଦାର ବାଁପଟେ ଏଇ ଛୋଟ ସହର ଏବଂ ଡାହାଣ ପଟେ ମନ୍ଦିର। ମଝିରେ ନଦୀ ଉପରେ କାଠର ପୋଲ। ସନ୍ଧ୍ୟାବେଳକୁ ସେପ୍ଟେମ୍ବର ମାସରେ ମଧ୍ୟ ଭୀଷଣ ଶୀତ। ଆମେ ଶୀତ ଲୁଗାପଟା ପିନ୍ଧି ନେଇ ସାଙ୍ଗେ ସାଙ୍ଗେ ସନ୍ଧ୍ୟା ଆରତି ଦେଖିବା ପାଇଁ ଚାଲିଯାଇଥିଲୁଁ।

ବଦ୍ରିନାଥ ସ୍ୱାମୀଙ୍କ ପ୍ରଧାନ ପୂଜକଙ୍କୁ ରାଓଲ କହନ୍ତି। ରାଓଲମାନେ କେରଳର ନାମ୍ବୁଦ୍ରି ବ୍ରାହ୍ମଣ ଏବଂ ବ୍ରହ୍ମଚାରୀ। କେବଳ ରାଓଲ ହିଁ ବଦ୍ରିନାଥ ସ୍ୱାମୀ - 'ବଦ୍ରିବିଶାଳ'ଙ୍କୁ ଛୁଇଁପାରନ୍ତି। ତାଙ୍କର ଜଣେ ସହାୟକ ପୂଜାବେଳେ ପୂଜା ସାମଗ୍ରୀ ସବୁ ରାଓଲଜୀଙ୍କ ହାତକୁ ବଢ଼ାଇଦିଏ ଯାହା।

ସମୟ ଥିବା ଦେଖି ଏବଂ ରାଓଲଜୀ ପାଖରେ ଥିବା ତାଙ୍କ ନିଜ ଆଶ୍ରମରେ ଅଛନ୍ତି ଜାଣି ଆମେ ମନ୍ଦିରକୁ ଯିବା ପୂର୍ବରୁ ତାଙ୍କ ପାଖକୁ ଯାଇ ଦେଖାକରିଥିଲୁଁ। ଆଦିଶଙ୍କରାଚାର୍ଯ୍ୟଙ୍କ ଏକ ମାର୍ବଲମୂର୍ତ୍ତି ସାମନାରେ ହରିଣ ଛାଲ ଉପରେ ବସିଥାନ୍ତି ରାଓଲଜୀ, ବେଶ୍ କମ୍ ବୟସର। ମନ୍ଦିରରେ ଦିନକୁ ପାଞ୍ଚଥର ଭୋଗଲାଗେ। ପ୍ରତ୍ୟେକ ଥର ରାଓଲଜୀ ସ୍ନାନକରି ଖଣ୍ଡିଏ ନାଲିରଙ୍ଗର ପଶମ ତିଆରି ଲମ୍ବା କୋଟ ପିନ୍ଧି ମନ୍ଦିରକୁ ଗଲାବେଳେ ଆଗରେ ବାଟକଢ଼ାଇଥାଏ ଜଣେ ସେବକ - ସୁନାର ଦଣ୍ଡ ଧରି। ବାଟରେ କେହି ଯେପରି ରାଓଲଜୀଙ୍କୁ ନ ଛୁଅଁନ୍ତି, ସେବକ ସେଥିପ୍ରତି ମଧ୍ୟ ଦୃଷ୍ଟିଦିଏ। ମନ୍ଦିରର ବାଁ ପଟରେ ଥିବା ଦ୍ୱାରର ପାହାଚରେ ପାଦ ଧୋଇ ମନ୍ଦିରକୁ ପଶନ୍ତି ରାଓଲଜୀ।

ହିମବନ୍ତ ପର୍ବତରେ କେଦାରନାଥ ପର୍ବତମାଳା ଭିତରେ ନର-ନାରାୟଣ ଦୁଇ ପର୍ବତ ମଝିରେ ଅଳକନନ୍ଦାର ଦକ୍ଷିଣ କୂଳରେ ବଦ୍ରିବିଶାଳଙ୍କ ମନ୍ଦିର ଦେଖିବାକୁ ଛୋଟ। ମନ୍ଦିର ବେଢ଼ାର ବାଁପାଖରେ ଲକ୍ଷ୍ମୀଙ୍କ ମନ୍ଦିର। ମନ୍ଦିର ଭିତର ତିନି ଭାଗରେ

ବଛା। ଗର୍ଭ ଗୃହରେ ବଦ୍ରିବିଶାଳଙ୍କ ଶାଳଗ୍ରାମ ପଥରର ମୂର୍ତ୍ତି। ମୁକୁଟଟି ହୀରାନୀଳାରେ ଝଟକୁଥାଏ; କିନ୍ତୁ ମୁହଁଟି ପ୍ରାୟ ଚିକ୍‌କଣ। ଆଖି, ନାକ ଏବଂ ପାଟି ବାରିବା କଷ୍ଟ, ଆଉ ସାରା ଦେହ ଅଙ୍ଗ ବସ୍ତ୍ରରେ ଆଚ୍ଛାଦିତ। ମୂର୍ତ୍ତିଙ୍କ ଡାହାଣ ପାଖରେ କୁବେର ଏବଂ ଗରୁଡ଼ ବାଁପାଖ ସାମନାରେ ନାରଦ ଏବଂ ଉଦ୍ଧବ। ବାଁପାଖରେ ନର-ନାରାୟଣ (ଅର୍ଜୁନ ଏବଂ ଶ୍ରୀକୃଷ୍ଣ)। ଗର୍ଭଗୃହକୁ ଲାଗି ଦର୍ଶନମଣ୍ଡପ। ସେ ମଣ୍ଡପର ଦୁଇ କଡ଼ରେ ବସିରହନ୍ତି ବେଦଜ୍ଞ ପଣ୍ଡିତମାନେ ସ୍ତୋତ୍ରାଦି ପଠନ ଉଦ୍ଦେଶ୍ୟରେ। ସମବେତ କଣ୍ଠରେ ବିଷ୍ଣୁ ସହସ୍ର ନାମ ପଠନ ଶୁଣିବାକୁ ବେଶ୍ ଭଲଲାଗିଲା। ପୂଜାପାଠ, ଭୋଗ ଏବଂ ଆରତି ପରେ ବଦ୍ରିବିଶାଳଙ୍କ ଶୟନ। ଅଙ୍ଗ ବସ୍ତ୍ରଠାରୁ ଆରମ୍ଭ କରି ମୁକୁଟ ପ୍ରଭୃତି ଯାବତୀୟ ଅଳଙ୍କାର କାଢ଼ିନେଲାପରେ ମୂର୍ତ୍ତିଙ୍କ ଦେହରେ ରହିଲା କେବଳ ହରିଦ୍ରା-ଚନ୍ଦନର ଲୋପ। ପରେ ପରେ ହିଁ ଗର୍ଭଗୃହକୁ ଆଡ଼ କରିଥିବା ପର୍ଦ୍ଦା ପଡ଼ିଗଲା।

ଦର୍ଶନମଣ୍ଡପ ପଛକୁ ସଭାମଣ୍ଡପ। ଦର୍ଶନମଣ୍ଡପରେ ବସିବାକୁ ହେଲେ ଟିକଟ ଲାଗେ; କିନ୍ତୁ ସଭାମଣ୍ଡପରୁ ଦିଅଁଙ୍କୁ ଦର୍ଶନ କରିବା ପାଇଁ କୌଣସି ଟିକଟ ଲାଗେନି। ସେଥିପାଇଁ ସେଇଠି ହୁଏ ଯାତ୍ରୀଙ୍କ ଭିଡ଼। ରାତି ପ୍ରାୟ ସାଢ଼େ ଆଠ - ଆମେ ମନ୍ଦିରରୁ ଫେରିଆସିଥିଲୁଁ।

ଗେଷ୍ଟ ହାଉସ୍‌ର ଶୋଇବାଘରେ ଶେଯ ଏବଂ କମ୍ବଳ ଘୋଡ଼ାଇ ହୋଇ ଡବଲ ସୁଏଟର ପିନ୍ଧି ମଧ୍ୟ ରାତିରେ ମନେହେଉଥିଲା, ଆମେ ସତେ ଯେପରି ବରଫ ଭିତରେ ବୁଡ଼ିରହିଛୁଁ। ଭୋର ତିନିଟାରେ ପୁଣି ଉଠିବାକୁ ହେବ - ତପ୍ତକୁଣ୍ଡରେ ଗାଧୋଇ ସାଢ଼େଚାରିଟାବେଳେ ବଦ୍ରିବିଶାଳଙ୍କ ମହାଭିଷେକ ଦେଖିବାପାଇଁ। ଲୁଗାପଟା କାଢ଼ି ଖାଲି ଖଣ୍ଡିଏ ଧୋତି ଶାଢ଼ିରେ ଥୁରୁଥୁରୁ ଶୀତ ଦେଇ ତପ୍ତ କୁଣ୍ଡରେ ପଶିଲାବେଳକୁ ମନେହେଲା ଗରମ ପାଣିରେ ଦେହ ସତେ ଯେମିତି ପୋଡ଼ିଯିବ; କିନ୍ତୁ ସେ ପାଣିରେ ବୁଡ଼ ମାରିଲା ପରେ ଆଉ ସେ କୁଣ୍ଡରୁ ବାହାରି ଆସିବାକୁ ଇଚ୍ଛା ହେଉନଥିଲା। ବଦ୍ରିନାଥଠାରେ ପ୍ରାକୃତିକ ଉଷ୍ଣପ୍ରସ୍ରବଣ ତିନି ଚାରୋଟି, ଆଉ ଯାତ୍ରୀଙ୍କ ପାଇଁ ଏଇ ତପ୍ତକୁଣ୍ଡରେ ସ୍ନାନ ଏକ ବିଶେଷ ଆକର୍ଷଣ।

ମହାଭିଷେକବେଳେ ହରିଦ୍ରା ଚନ୍ଦନ ଲେପ ମଧ୍ୟ କାଢ଼ିଦିଆହୁଏ, ଆଉ ମୂର୍ତ୍ତିଙ୍କୁ ଖୋଲା ଦେଖିବାକୁ ମିଳେ। ପଦ୍ମାସନରେ ଆସୀନ ସେଇ ମୂର୍ତ୍ତି - କେବଳ ଦୁଇ ଭୁଜ। ହରିଦ୍ରା ଚନ୍ଦନ କାଢ଼ିଦେଲା ପରେ ଗଙ୍ଗାଜଳରେ ସ୍ନାନ, କ୍ଷୀରସ୍ନାନ ଏବଂ ପୁଣି ଥରେ ଗଙ୍ଗାଜଳ ସ୍ନାନ କରାଇ ଘିଅ କନା ଏବଂ ପରେ ପରେ ଚନ୍ଦନ ତେଲରେ ଦେହ ପୋଛି ଆଣିଥିଲେ ରାଓଲଜୀ। ତା'ପରେ ହରିଦ୍ରା-ଚନ୍ଦନ-ଲେପ-ଅଙ୍ଗବସ୍ତ୍ର ପରିଧାନ, ମୁକୁଟ ଧାରଣ, କୌସ୍ତୁଭ ମଣ୍ଡନ, ପୁଷ୍ପମାଲ୍ୟ ଅର୍ପଣ, ଭୋଗ ଏବଂ ଆରତି। ବେଦ

ପାଠ ଏବଂ 'ଯଂ ବ୍ରହ୍ମା ବରୁଣେନ୍ଦ୍ର... ତ୍ୱମେକଂ ଶରଣ୍ୟଂ.... ଇତ୍ୟାଦି ସ୍ତୋତ୍ର ଗାନ ସେଇ ବ୍ରାହ୍ମ ମୁହୂର୍ତ୍ତରେ ଅତି ଶାନ୍ତିପ୍ରଦ ମନେହୋଇଥିଲା।

ସକାଳ ୭ଟା ବେଳକୁ ଆମେ ଗେଷ୍ଟହାଉସ୍‌କୁ ଫେରିଆସି ତୁଷାରାବୃତ ନୀଳକଣ୍ଠ ଶୃଙ୍ଗର ଚମତ୍କାର ଦୃଶ୍ୟ ଦେଖିବାକୁ ପାଇଥିଲୁଁ। ଦୁଇ ପାଖରେ ତୁଙ୍ଗ ପର୍ବତ ଶ୍ରେଣୀମଝିରେ ନୀଳ ଆକାଶ, ସେ ଭିତରେ ଉଠିଯାଇଛି ଶୃଙ୍ଗ ନୀଳକଣ୍ଠ। ପ୍ରଭାତୀ ସୂର୍ଯ୍ୟକିରଣରେ ଝଲସିଉଠୁଥିଲା।

୮ଟା ବେଳେ ମୁଁ ଚାଲିଯାଇଥିଲି ବ୍ରହ୍ମକପାଳରେ ପିତୃଶ୍ରାଦ୍ଧ କରି ଅଳକନନ୍ଦାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବାକୁ। ପୁରାଣବର୍ଣ୍ଣିତ ଏ ବ୍ରହ୍ମ କପାଳ। ଚତୁର୍ମୁଖ ବ୍ରହ୍ମା ଯେତେବେଳେ ପଞ୍ଚମ ମୁଖଟିଏ ସୃଷ୍ଟି କରି ପଞ୍ଚମବେଦ ଗାନ ଆରମ୍ଭ କରିଦେଲେ, ଶିବ କୁଆଡ଼େ ରାଗିଯାଇ ସେ ପଞ୍ଚମ ମୁଖରେ ତ୍ରିଶୂଳ ପ୍ରହାର କରିଥିଲେ। ବ୍ରହ୍ମାଙ୍କ ସେ ମୁଖ ଛିଣ୍ଡି ତ୍ରିଶୂଳରେ ଲାଖିଗଲା, ଆଉ ଶିବଙ୍କୁ ଲାଗିଲା ବ୍ରହ୍ମହତ୍ୟା ଦୋଷ। ସେ ଦୋଷ ଖଣ୍ଡନ ପାଇଁ ଶିବ ସବୁ ତୀର୍ଥ ସ୍ଥାନ ବୁଲି ଶେଷରେ ଅଳକନନ୍ଦା କୂଳର ଏ ତୀର୍ଥରେ ଯେତେବେଳେ ପହଞ୍ଚିଲେ, ବ୍ରହ୍ମାଙ୍କ ସେ କପାଳ କୁଆଡ଼େ ଆପେ ଆପେ ସେ ତ୍ରିଶୂଳରୁ ଖସିପଡ଼ିଲା ଏବଂ ଶିବ ହୋଇଥିଲେ ଦୋଷମୁକ୍ତ। ସେ ଦିନରୁ ହିନ୍ଦୁର ବିଶ୍ୱାସ ଏ ବ୍ରହ୍ମ କପାଳରେ ଶ୍ରାଦ୍ଧ କଲେ ଏବଂ ବ୍ରହ୍ମକୁଣ୍ଡରେ ତର୍ପଣ କଲେ ପୂର୍ବ ପୁରୁଷ ସମସ୍ତେ ସବୁ ପାପ ଆଉ ଶାପରୁ ମୁକ୍ତହୁଅନ୍ତି।

ବାପା, ଜେଜେବାପା, ଆଈ, ଶାଶୁ, ଶ୍ୱଶୁର ଏବଂ ମୋର ଅତି ଆପଣାର ଯେଉଁମାନେ ଆଗରୁ ମୋଠାରୁ ଚିର ବିଦାୟ ନେଇଯାଇଛନ୍ତି, ସେମାନଙ୍କ ନାଁ ଧରି ଅଳକନନ୍ଦା ପାଣି ଢାଳିଲାବେଳେ ମୋର ମନେହୋଇଥିଲା ସତେ ଯେମିତି ମୁଁ ସେ ସମସ୍ତଙ୍କୁ ଆଉ ଥରେ ଦେଖିପାରୁଛି।

ବ୍ରହ୍ମକପାଳ ପାଖ ଦେଇ ଆହୁରି ଉପରକୁ ଉଠିଯିବାକୁ ଯେଉଁ ବାଟ ସେହି ବାଟ ଦେଇ ପାଣ୍ଡବମାନେ ତାଙ୍କର ମହାଯାତ୍ରା କରିଥିଲେ ବୋଲି ଫଳକଟିଏ ଘୋଷଣା କରୁଥିଲା। ଶୁଣିଲି ସେ ଚଲାବାଟ ଦେଇ ଆଉ କିଛି ଦୂର ଏବଂ ପାଞ୍ଚ ହଜାର ଫୁଟ ଉପରକୁ ଉଠିଗଲେ ହେମକୁଣ୍ଡ। ସମୁଦ୍ର ପତ୍ତନଠାରୁ ୧୫୦୦୦ ଫୁଟ ଉଚ୍ଚରେ। ସାତୋଟି ତୁଷାରାବୃତ ଗିରିଶୃଙ୍ଗ ମଝିରେ ପଦ୍ମଫୁଲ ଭରା ଏକ ସୁନ୍ଦର ହ୍ରଦ। ହ୍ରଦର ଚାରିଆଡ଼େ ସୁଗନ୍ଧ ଯୁକ୍ତ ଘାସଫୁଲ, ଲକ୍ଷ୍ମଣ ତାଙ୍କ ଦେହ ତ୍ୟାଗ ପୂର୍ବରୁ ସେଇଠି ତପସ୍ୟା କରିଥିଲେ ବୋଲି ଲକ୍ଷ୍ମଣଙ୍କ ମନ୍ଦିର ସେଇଠି ଅଛି। ଗୁରୁ ଗୋବିନ୍ଦ ସିଂ ମଧ୍ୟ ତାଙ୍କ ପୂର୍ବଜନ୍ମରେ ସେଇଠି ତପସ୍ୟା କରିଥିଲେ ବୋଲି କହିଯାଇଥିବାରୁ ଶିଖମାନେ ସେଠାରେ ଗୋଟିଏ ବଡ଼ ଗୁରୁଦ୍ୱାର ତିଆରି କରୁଛନ୍ତି ଏବଂ ହଜାର ହଜାର ଶିଖ

ତୀର୍ଥଯାତ୍ରୀ ସେଠାକୁ ଯାଆନ୍ତି। ଟିକିଏ ଆଗକୁ ଯାଇ ତଳକୁ ଖସିଲେ ଭେଲି ଅଫ୍ ଫ୍ଲାୱାର୍ସ। ଦୁଇ ହଜାରରୁ ବେଶି ନାନାଜାତି ଫୁଲର ଏକ ପ୍ରାକୃତିକ ଉଦ୍ୟାନ। ଜଣେ ବିଦେଶିନୀ ମହିଳା ସେ ଫୁଲର ଉପତ୍ୟକା ଦେଖିଲା ପରେ ଆଉ ଘରକୁ ଫେରିଯିବାକୁ ଚାହିଁଲେନି ଏବଂ ସେଇଠିହିଁ ସେ ତାଙ୍କର ଶେଷ ଜୀବନ କଟାଇଦେଇଥିଲେ। ଆଜି ବି ତାଙ୍କର ସମାଧିରେ ଯାତ୍ରୀମାନେ ପୁଷ୍ପାଞ୍ଜଳି ଦିଅନ୍ତି। ସେ ସବୁ ସ୍ଥାନକୁ ଚାଲିକରି ଯିବାକୁ ହୁଏ। ଅନେକ ପୁଅ ଝିଅ ପିକ୍‌ନିକ୍ ସାମଗ୍ରୀ ସବୁ ନେଇ ସେ ସବୁ ସ୍ଥାନକୁ ଯାଆନ୍ତି; କିନ୍ତୁ ଆମର ଏଇ ବୟସରେ ସେ ସବୁ ସ୍ଥାନକୁ ଯିବା ପ୍ରଶ୍ନ ହିଁ ନଥିଲା।

x x x x

ବଦ୍ରିନାଥର ଥଣ୍ଡାରେ ଆଉ ଗୋଟିଏ ରାତି ନକଟାଇ ଆମେ ସଞ୍ଜ ହେବା ଆଗରୁ ଓହ୍ଲାଇ ଆସିଥିଲୁଁ ଯୋଶୀମଠକୁ।

ଶାରୀରିକ କ୍ଳାନ୍ତି ନେଇ ମୋ ସ୍ତ୍ରୀ ଶୋଇ ଯାଇଥିଲେ। ମୁଁ କେବେ ଥରେ ମରୁ ମରୁ ବଞ୍ଚିଯାଇଥିଲି ବୋଲି ସେ ବଦ୍ରିନାଥଙ୍କୁ ଦର୍ଶନ କରି ନିଜ କୃତଜ୍ଞତା ଜଣାଇବେ ବୋଲି ଯେଉଁ ମାନସିକ କରିଥିଲେ, ସେ ମାନସିକ ଏତେ ଦିନେ ପୂରଣ ହେଲା ଜାଣି ତାଙ୍କ ମନରେ ଥିଲା ଶାନ୍ତି। ମୁଁ କିନ୍ତୁ ବିଛଣାରେ ପଡ଼ି ଛଟପଟ ହେଉଥିଲି - ଜଣେ ଶ୍ୱାସରୋଗୀର ଶ୍ୱାସଜନିତ କଷ୍ଟଯୋଗୁ ଯେତିକି ନୁହେଁ, ନାନା ଧରଣର ଚିନ୍ତା ସବୁ ଜୋର୍ ଜବରଦସ୍ତି ମୋ ମୁଣ୍ଡ ଭିତରକୁ ଧସାଇ ପଶି ଆସୁଥିଲା ବୋଲି ଭାବୁଥିଲି, ପଦ୍ମାସନରେ ଉପବିଷ୍ଟ ଦୁଇ ଭୁଜବିଶିଷ୍ଟ ବଦ୍ରିନାରାୟଣ ମୂର୍ତ୍ତି ବୁଦ୍ଧଙ୍କ ବୋଧିସତ୍ତ୍ୱ ମୂର୍ତ୍ତି ନୁହେଁ ତ? ହୁଏ ତ ବୌଦ୍ଧଧର୍ମର ପତନ ବେଳକୁ ହିନ୍ଦୁମାନେ ବୁଦ୍ଧଦେବଙ୍କ ସେ ମୂର୍ତ୍ତିକୁ ନାରଦକୁଣ୍ଡରେ ଫିଙ୍ଗି ଦେଇଥିଲେ, ଆଉ ଆଦିଶଙ୍କରାଚାର୍ଯ୍ୟ ବୁଦ୍ଧଦେବଙ୍କୁ ଭଗବାନଙ୍କ ଅବତାର ବୋଲି ଗ୍ରହଣ କରିନେଇ ତାଙ୍କୁ ସେ କୁଣ୍ଡରୁ ଉଦ୍ଧାର କରି ନେଇଆସିଥିଲେ। ଏଇ ଭାବନାରୁ ମୋ ମନରେ ପୁଣି ପ୍ରଶ୍ନ ଉଠୁଥିଲା, ତେବେ ଶଙ୍କରାଚାର୍ଯ୍ୟଙ୍କ ଆଗମନ ପୂର୍ବରୁ ବଦରିକା ହିନ୍ଦୁଙ୍କ ତୀର୍ଥ ହେଲା କେବେ? ମନେପଡୁଥିଲା - ସକଳ ତୀର୍ଥ ତୋ ଚରଣେ, ବଦ୍ରିକା ଯିବି କି କାରଣେ, ଶ୍ରୀକୃଷ୍ଣଙ୍କୁ ଉଦ୍ଧବଙ୍କ ପ୍ରଶ୍ନ। ଶ୍ରୀମଦ୍‌ଭାଗବତ ତେବେ କ'ଣ ଆଦି ଶଙ୍କରାଚାର୍ଯ୍ୟଙ୍କ ପଛର ଲେଖା?

ବିଶ୍ୱାସ ଅବିଶ୍ୱାସର ମାନସିକ ଘୂର୍ଣ୍ଣି ଭିତରେ ମୁଁ ତୁଳନା କରୁଥିଲି ମୋର ବଦ୍ରିନାଥ ଯାତ୍ରା ଏବଂ ମୋ ଜେଜେବାପାଙ୍କ ଯାତ୍ରା। ବଦ୍ରିନାଥ ଯାଉଛି ଶୁଣି ମୋର

କେତେ ଜଣ ସହକର୍ମୀ ସେଦିନ କହିଲେ - 'ହଁ ଯାଆନ୍ତୁ, ତିନି ଚାରି ଦିନ ବୁଲି ଆସିବେ - ଟିକେ ବିଶ୍ରାମ ମିଳିଯିବ।'

ଆଉ ମୋ ଜେଜେ ଯେତେବେଳେ ଘରୁ ବାହାରିଥିଲେ ! ବଦ୍ରିନାଥ ଯାତ୍ରାଥିଲା ସେଦିନ ଠିକ୍ ଏକ ମହାଯାତ୍ରାପରି। ଯେଉଁମାନେ ଯାଆନ୍ତି, ସେମାନଙ୍କ ଭିତରୁ ଅନେକେ ଆଉ ଫେରନ୍ତିନି। ତେଣୁ ବଦ୍ରିନାଥ ଯାଉଥିବା ଯାତ୍ରୀ ଯାତ୍ରାରେ ବାହାରିଲାବେଳେ ନିଜ ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବ ସମସ୍ତଙ୍କଠାରୁ ବିଦାୟ ନେଇଯାଏ ଏବଂ ଅନେକଙ୍କ ପାଇଁ ସେ ବିଦାୟ ହୁଏ ଚିରବିଦାୟ। ଯେଉଁମାନେ ଜୀବନ ନେଇ ଫେରିଆସନ୍ତି, ସେଇ ବନ୍ଧୁ ବାନ୍ଧବମାନେ ଧରିନିଅନ୍ତି ଯେ ସେମାନେ ନୂଆ ଜୀବନ ନେଇ ଫେରିଆସିଛନ୍ତି। ମୋ ଜେଜେ ଘରୁ ବାହାରିବା ଦିନ ଯେତେବେଳେ ଠିକ୍ ହେଲା ମାସେ କାଳ ସେ ଗାଁ ଗାଁ ଘର ବୁଲି ବିଦାୟ ଭୋଜି ଖାଇଥିଲେ। ଆଉ ମୁଁ ବି ତାଙ୍କ ସଙ୍ଗରେ କେତେ ଭୋଜି ଖାଇବାର ସୁଯୋଗ ପାଇଥିଲି। ଶେଷ ଦିନ ସେ ଯେତେବେଳେ ଘରୁ ବିଦାୟ ନେଇ ବାହାରିଲେ, ଘର ସାମନା ଗାଁ ଦାଣ୍ଡରେ ସେ ଠିଆହୋଇ ରହିଥିଲେ - ଆମ ପୂର୍ବ ପୁରୁଷଙ୍କ ଅସ୍ଥିମାନ ଗୋଟାଏ ନାଲି କନାରେ ଗୁଡ଼ାଇ ମାଳକରି ପିନ୍ଧି । ବାଜା ବାଜଣା ଭିତରେ କାହାଳୀ କରୁଣ ସ୍ୱର ଛୁଟାଇଥାଏ। ଗାଁରେ ସମସ୍ତେ ଘର ଘର କରି ତାଙ୍କୁ ବନ୍ଦାଉଥିଲେ ଦୂବ ଚାଉଳ ସଙ୍ଗରେ ଯିଏ ଯାହା ଦେଇ ପାରିଲା ଟଙ୍କା ପଇସା ଦେଇ। ଘରର କାନ୍ଦ ବୋବାଳି ସାଙ୍ଗରେ ମୁଁ ବି କିଛି ନ ବୁଝି କାନ୍ଦୁଥିଲି। ଆଉ ମନକୁ ମନ ଭାବୁଥିଲି, ସେ ଯଦି ଫେରିବେନି, ତେବେ ଜାଣିଶୁଣି ଯାଉଛନ୍ତି କାହିଁକି ?

ସମସ୍ତେ ତାଙ୍କ ସଙ୍ଗରେ ଗାଁ ମୁଣ୍ଡ ଆମ୍ବତୋଟା ଯାଏ ଯାଇଥିଲେ। ଆଉ ସେଇଠି ଜେଜେ ସମସ୍ତଙ୍କଠାରୁ ଶେଷ ବିଦାୟ ନେଇ ଗୋଟିଏ ବଳଦ ଗାଡ଼ି ଭିତରକୁ ଉଠିଥିଲେ। ଆମେ ପରେ ଖବର ପାଇଥିଲୁଁ ଯେ ଭବାନୀପାଟନା ଛାଡ଼ିଲାବେଳକୁ ସେମାନେ ହୋଇଥିଲେ ୪୦ ଜଣ ଯାତ୍ରୀଙ୍କ ଏକ ଦଳ ଏବଂ ଜେଜେ ବାପା ଥିଲେ ସେ ଦଳର ନେତା।

କେତେ ମାସ ପରେ ସେ ଦଳର କେତେ ଫେରି ଆସିଥିଲେ; କିନ୍ତୁ ମୋ ଜେଜେ ସେମାନଙ୍କ ଭିତରେ ନଥିଲେ। ଆମେ କେବଳ ଖବର ପାଇଥିଲୁଁ ଯେ ତାଙ୍କ ଦଳର କେତେ ଜଣଙ୍କୁ ଯେତେବେଳେ କେଉଁଠି ହଇଜା ହେଲା, ଦଳ ଭାଗ ଭାଗ ହୋଇଗଲା। ପ୍ରାଣଭୟରେ ଅନେକେ ସେ ରୋଗୀଙ୍କୁ ଛାଡ଼ିଦେଇ ଚାଲିଗଲେ। ଆଉ ଜେଜେ ରହିଗଲେ ସେ ହଇଜା ରୋଗୀଙ୍କ ପାଖରେ - ତାଙ୍କର ସେବା କରିବା ପାଇଁ। 'ଦୂର ଦେଶରେ ହଇଜା ରୋଗୀଙ୍କ ପାଖରେ ରହିବା ଅର୍ଥ ଜାଣିଶୁଣି ଜୀବନ ଦେବା'ର

ଉତ୍ତରରେ ଜେଜେ କୁଆଡ଼େ କହିଥିଲେ - 'ମୋ ବୁଦ୍ଧିବଳକୁ ଭରସା କରି ଏମାନେ ମୋ ସଙ୍ଗରେ ଏତେ ବାଟ ଆସିଛନ୍ତି - ମୁଁ ଏମାନଙ୍କୁ ଛାଡ଼ି ଯାଇପାରିବିନି।

ତା'ପରେ ଅନେକ ମାସ ବିତି ଯାଇଥିଲା। ସମସ୍ତେ ଧରି ନେଇଥିଲେ ଯେ ମୋ ଜେଜେ ଅନ୍ୟମାନଙ୍କ ସଙ୍ଗରେ ମରିଯାଇଛନ୍ତି; କିନ୍ତୁ ଦିନେ ହଠାତ୍ ଖବର ଆସିଥିଲା ଯେ ଜେଜେବାପା ଫେରିଆସିଛନ୍ତି - ଆଉ ତାଙ୍କ ସଙ୍ଗରେ ଅଛନ୍ତି ପାଞ୍ଚ ଛ'ଜଣଙ୍କ ଗୋଟିଏ ଛୋଟ ଦଳ। ସେ ଖବରରେ ଘରର ଏବଂ ଗାଁର ଆନନ୍ଦ ଆଜି ମଧ୍ୟ ମନେପଡ଼ିଲେ ମୋତେ ପୁଲକିତ କରିଦିଏ। ଜେଜେଙ୍କୁ ପାଛୋଟି ଆଣିବା ପାଇଁ ଗାଁର ଅନେକେ ୧୫ ମାଇଲ ବାଟ ଆଗେଇଯାଇଥିଲେ, ଆଉ ଜେଜେ ବାପା ଗାଁ ଭିତରକୁ ପଶିଥିଲେ ଗୋଟିଏ ଦିଗ୍‌ବିଜୟୀ ବୀର ପରି। ଯେଉଁ କେତେଜଣଙ୍କୁ ସେ ବଞ୍ଚାଇ ପାରିଥିଲେ, ସେମାନେ ସମସ୍ତେ ହୋଇଯାଇଥିଲେ ତାଙ୍କ ଧର୍ମ ପୁଅ। ଆମେ ପରେ ଜାଣିଲୁଁ ଯେ ସେ ସମସ୍ତେ ବଦ୍ରିନାରାୟଣ ଦର୍ଶନ କରିସାରିଲାପରେ ଦ୍ୱାରିକା, ରାମେଶ୍ୱରମ୍ ଏବଂ ପୁରୀଠାରେ ଜଗନ୍ନାଥଙ୍କୁ ଦର୍ଶନ କରି ଫେରିଛନ୍ତି।

x x x x

ଆମେ ଦିଲ୍ଲୀ ଫେରିଆସିଲା ପରେ ମୋ ପୁଅର କେତେ ସାଙ୍ଗସାଥୀ ସେଦିନ ଘରେ ଜୁଟିଥାନ୍ତି। କଥା ଛଳରେ ସେମାନେ ମୋତେ ପଚାରି ଦେଇଥିଲେ - 'ଅଙ୍କଲ, ଆପଣ ବି କଣ ତୀର୍ଥଯାତ୍ରୀ ଆଉ ଶ୍ରାଦ୍ଧ ତର୍ପଣ ପ୍ରଭୃତି ଅନ୍ଧବିଶ୍ୱାସରେ ବିଶ୍ୱାସ କରନ୍ତି ?'

ଏମିତି ଗୋଟିଏ ଜଟିଳ ପ୍ରଶ୍ନର ଉତ୍ତର ମୁଁ କଣ ବା ଦିଅନ୍ତି। ସାମାନ୍ୟ ହସି କହିଥିଲି - ଯେ କୌଣସି ବିଶ୍ୱାସ ନେଇ ହିଁ ମଣିଷ ବଞ୍ଚିବାକୁ ପ୍ରେରଣା ପାଏ। ମଣିଷର ସେ ବିଶ୍ୱାସ ଯେତେବେଳେ ଦୃଢ଼ ହୋଇଯାଏ, ସେ ଦୃଢ଼ ବିଶ୍ୱାସ ହିଁ ହୋଇଯାଏ ଉଣା ଅଧିକେ ଅନ୍ଧ। ଅନ୍ଧବିଶ୍ୱାସ ଏବଂ କୁସଂସ୍କାର ସମ୍ପୂର୍ଣ୍ଣ ଭିନ୍ନ। କୁସଂସ୍କାରପୂର୍ଣ୍ଣ ଅନ୍ଧବିଶ୍ୱାସ ଏବଂ ସଂସ୍କୃତି ଅନୁମୋଦିତ ଅନ୍ଧବିଶ୍ୱାସ ଭିତରେ ଆକାଶ ପାତାଳ ପ୍ରଭେଦ। ତର୍କ କରି ବସିଲେ ଧର୍ମରେ ବିଶ୍ୱାସ ଯେପରି ଅନ୍ଧ - ମାତୃଭୂମି, ଜନ୍ମଭୂମି, ପବିତ୍ର ଭାରତ ଭୂମିର ଧାରଣାରେ ବିଶ୍ୱାସ କଣ ସେମିତି ଅନ୍ଧ ନୁହେଁ ? ତା' ନହେଲେ ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ ପ୍ରଭୃତି ଦେଶମାନ ବିଭିନ୍ନ ହୋଇଥିଲେ ମଧ୍ୟ ଏବଂ ସେମାନଙ୍କ ଭିତରେ ଭାଷାର ପାର୍ଥକ୍ୟ ଥିଲେ ମଧ୍ୟ କେଉଁ ବିଶ୍ୱାସ ସେମାନଙ୍କୁ ଏକାଠି ବାନ୍ଧି ରଖୁଥିଲା ? ସେ ଦିନ ପଶ୍ଚିମାଯାତ୍ରୀମାନେ ଆମ ଜଗନ୍ନାଥଙ୍କୁ ଦେଖିବାକୁ ଯେମିତି ଆସୁଥିଲେ, **ଆମ** ଓଡ଼ିଆଯାତ୍ରୀମାନେ ସେମିତି କାହିଁକି ଯାଉଥିଲେ ବଦ୍ରିନାଥ ଦ୍ୱାରକା **ରାମେଶ୍ୱରମ୍**କୁ ? ମଣିଷ ତ ଏକ। ତେବେ କାଶ୍ମୀରର କିଛି ଅଂଶ

ପାକିସ୍ଥାନ ନେଲେ କିମ୍ବା ଚୀନ ନେଇଗଲେ ଆମ ଛାତି କରତି ହୁଏ କାହିଁକି ? ଟ୍ରଟସ୍କି ତ ପୁଣି କହିଥିଲେ - ଦେଶର କୌଣସି ସୀମା ରେଖା ନାହିଁ, ଆଉ ସାରା ପୃଥିବୀର ଖଟିଖିଆ ଏକ। ତେବେ ରୁଷ ଆଉ ଚୀନ ଭିତରେ ବିବାଦ କାହିଁକି ?

ଲେନିନ୍‌ଙ୍କ ସମାଧିରେ ଶ୍ରଦ୍ଧାଞ୍ଜଳି ଢାଳିବା ଯଦି ଅନ୍ଧ ବିଶ୍ୱାସ ନୁହେଁ, ବୁଦ୍ଧ ଶ୍ରୀକୃଷ୍ଣ, ଶ୍ରୀରାମଙ୍କ ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଦେବା କାହିଁକି ବା ଅନ୍ଧ ବିଶ୍ୱାସ ହେବ ? ଶ୍ରୀକୃଷ୍ଣ ଏବଂ ଶ୍ରୀରାମ ଯେତେ ପୌରାଣିକ, ଭାରତୀୟ ପାଇଁ ସେତେ ଐତିହାସିକ। ସେଇ ବିଶ୍ୱାସ ତ ଆଜି ବି ଆମ ଭାରତୀୟ ଜାତିକୁ ଏକାଠି ବାନ୍ଧିରଖିଛି। ହିନ୍ଦୁ ପକ୍ଷରେ ରାମଚନ୍ଦ୍ର ଏବଂ ଶ୍ରୀକୃଷ୍ଣ ଭଗବାନଙ୍କ ଅବତାର ବୋଲି ଧରାଯାଉଥିଲେ ମଧ୍ୟ ବୁଦ୍ଧ, ଶଙ୍କର, ମହମ୍ମଦ ଓ ଖ୍ରୀଷ୍ଟଙ୍କ ପରି ଗୋଟିଏ ଗୋଟିଏ ସଶରୀର ଚରିତ୍ର - ଭାରତୀୟ ସଂସ୍କୃତିର ପ୍ରତୀକ। ଯେଉଁ ଭାରତୀୟମାନେ ସେ କଥା ବିଶ୍ୱାସକଲେନି, ସେମାନେ ଭାରତର ଅଙ୍ଗଚ୍ଛେଦ କରି ସୃଷ୍ଟିକଲେ ପାକିସ୍ଥାନ, ବାଂଲାଦେଶ !

ଆଉ ଶ୍ରାଦ୍ଧ ଏବଂ ତର୍ପଣ। ପିତୃ ପୁରୁଷଙ୍କୁ ମନେପକାଇ ପିଣ୍ଡ ଦେଲାବେଳେ ନିଜ ପ୍ରିୟଜନଙ୍କ ସ୍ମୃତିକୁ ମନେପକାଇ ପାଣି ଟେକିଦେଲାବେଳେ ମନ ଭିତରେ ତାଙ୍କ ପ୍ରତିବିମ୍ବ ସବୁ ଯେତେବେଳେ ଦେଖାଦିଅନ୍ତି, ସେ ବେଳର ଶାନ୍ତି ଏବଂ ଆନନ୍ଦ ବୁଝାଇ ହେବ କେମିତି ? ସେ ଶ୍ରାଦ୍ଧ ଏବଂ ତର୍ପଣ ଯଦି ଅନ୍ଧବିଶ୍ୱାସ, ତେବେ ସେପରି ଉଚ୍ଚକୋଟୀର ଅନ୍ଧବିଶ୍ୱାସ ତ ଆମ ମହାନ ସଂସ୍କୃତି, ଯାହାକୁ ନେଇ ଆମେ ଗର୍ବ କରୁଁ !

ମୁଁ ଯେତେବେଳେ କହିଲି ମୋର ଏଇ ଆଶା ଯେ ଦିନେ ମୋ ପୁଅ ବି ମୋତେ ମନେପକାଇ ତିଳ ତଣ୍ଡୁଳ ମିଶା ପାଣି ଟିକିଏ ମୋ ନାଁରେ ଟେକିଦେବ, ସେମାନେ ସମସ୍ତେ ଜଳ ଜଳ କରି ମୋ ମୁହଁକୁ ଅନାଇଁ ରହିଥିଲେ।

⌘⌘

# ଆନ୍‌ସାରୀ ଘର ଏବଂ ଅନ୍ୟାନ୍ୟ ଗଳ୍ପ

ଶ୍ରୀ ଭୁବନେଶ୍ୱର ବେହେରା

ପ୍ରକାଶକ :

ଗ୍ରନ୍ଥମନ୍ଦିର, କଟକ - ୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୫

# ସୂଚୀ

# ଆନ୍‌ସାରୀ ଘଣ୍ଟ

ଲୋହିଆ ହସ୍‌ପିଟାଲ୍‌ର ଆଉଟ୍‌ଡୋର୍ ସାମନାରେ ସ୍କୁଟର-ରିକ୍‌ସାରୁ ଓହ୍ଲାଇ ଜୟଦେବବାବୁ ତାଙ୍କ ହାତଘଡ଼ିକୁ ଅନାଇଲେ-ସମୟ ୯ଟା ୫୦। ଡକ୍‌ଟର ମେହେଟା ତାଙ୍କୁ ଦଶଟାବେଳେ ସମୟ ଦେଇଛନ୍ତି ଯା' ହେଉ ଆଉ ଦଶମିନିଟ୍ ବାକି ଅଛି। ସ୍କୁଟର୍‌ଚାଳକକୁ ପଇସା ଦେବାକୁ ଯାଇ ଜୟଦେବ ଗାଡ଼ିର ମିଟରକୁ ଅନାଇଲେ ଦୁଇଟଙ୍କା ଅଶୀ ପଇସା। ଏଇ ହସପିଟାଲକୁ ସେ କେତେଥର ଏମିତି ଘରୁ ଆସିଛନ୍ତି। ମିଟର୍ ଉଠେ ପ୍ରାୟ ଦି' ଟଙ୍କା ତିରିଶ କିମ୍ବା ଚାଳିଶ। ଠକ ଡ୍ରାଇଭର ବୁଲାଇ ଆଣିଲା। ପକେଟରୁ ଟୁକୁରା ନୋଟ କାଢ଼ି ତିନିଟଙ୍କା ଦେବାରୁ ଡ୍ରାଇଭର ମୁହଁ ବୁଲାଇଦେଇ କହିଲା - "ଚାର୍ ରୁପୟା।" ଜୟଦେବ ଆଶ୍ଚର୍ଯ୍ୟ ହୋଇ କହିଲେ - "ମିଟର ରିଡିଂ ୨-୮୦। ଆଉ ନଗରୀ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶନାମା ଅନୁସାରେ ତା' ଉପରେ ଆଉ ପଚାଶ ପଇସା। ସବୁ ମିଶି ହେଲା" ... ଡ୍ରାଇଭର କିନ୍ତୁ ମୁହଁ ଛିଞ୍ଚାଡ଼ି କହିଲା, "ଏ ଭିତରେ ପେଟ୍ରୋଲ ଦାମ୍ ଦି' ଥର ବଢ଼ିସାରିଲାଣି - ମିଟର ରିଡିଂ ଦି'ଥର ବଢ଼ିବା କଥା। ଏ ମିଟର ରେଟ୍ କେଉଁ କାଳର। ଆମେ କ'ଣ ହାତରୁ ଖାଇ ଆପଣମାନଙ୍କ ସେବା କରୁଥିବୁ?" ଜୟଦେବ ଜାଣିଲେ ଏ ଡ୍ରାଇଭର୍ ସଙ୍ଗରେ ଉଚ୍ଚବାଚ କରି ବିଶେଷ କିଛି ଲାଭ ନାହିଁ। ସତକୁ ସତ ପେଟ୍ରୋଲ ଦାମ୍ ଯେମିତି ବଢ଼ିଚାଲିଛି ଏମାନେ ବି କ'ଣ କରିବେ! ରେଟ୍ ବଢ଼ାଇବା ପାଇଁ ଦାବୀ କରି ତ ଯା'ଙ୍କ ସଙ୍ଘ ଗଲା କିଛିଦିନ ହେଲା ସ୍କୁଟର ରିକ୍‌ସା ଚଳାଚଳ ବନ୍ଦ କରିଦେଇଥିଲେ - ଆଜି ତାଙ୍କ ଭାଗ୍ୟକୁ ଗୋଟିଏ ମିଳିଗଲା। କଥା ଆଉ ନ ଲମ୍ବାଇ ସେ ଦି'ଟଙ୍କିଆ ନୋଟ୍ ଦି'ଟା ବଢ଼ାଇଦେଇ ଆଉଟ୍‌ଡୋର ଭିତରକୁ ପ୍ରାୟ ଦୌଡ଼ିଗଲେ।

ଆଉଟ୍‌ଡୋର୍‌ର ଲାଉଞ୍ଜରେ ବିରାଟ ତିନି ଚାରିଟା 'କ୍ୟୁ' ଅଜଗର ସାପପରି ଅଙ୍କାବଙ୍କା ଆଉ ନିଶ୍ଚଳ - ମୁଣ୍ଡ କେଉଁଠି ଲାଞ୍ଜ କେଉଁଠି ଜାଣିବାର ଉପାୟ ନାହିଁ। ଡକ୍ଟର ମେହେଟାଙ୍କ ପାଖକୁ ଯିବାକୁ ବି ହୁଏତ ଏ ଭିତରୁ ଗୋଟାଏ ଧାଡ଼ି ହୋଇଥିବ। ଭାଗ୍ୟକୁ ଡାକ୍ତରବାବୁ ତାଙ୍କୁ ସମୟ ଦେଇଛନ୍ତି।

'ପୁଛତାଛ' ଟେବୁଲ ପାଖକୁ ତରତରରେ ଚାଲିଯାଇ ଜୟଦେବବାବୁ କହିଲେ - ଡକ୍‌ଟର ମେହେଟା - ଅର୍ଥୋପେଡ଼ିକ୍‌ସ। ପୁଛତାଛ ବାଲା ମୁଣ୍ଡ ନ ଟେକି ଉତ୍ତର

ଦେଲା ଅସ୍ଥିଶଲ୍ୟ ବିଭାଗ - ରୁମ୍ ନମ୍ବର ୧୨୯। 'ବାଟ କେଉଁଆଡ଼ିକି' ପୂରା ପଚାରିବା ଆଗରୁ ହିଁ ସେ ଡାହାଣ ହାତର ବିଶି ଆଙ୍ଗୁଠି ତା' ଡାହାଣକୁ ନିର୍ଦ୍ଦେଶ କରି ପାହାଚ ବାଟ ଦେଖାଇ ଦେଉଁ ଦେଉଁ ପଚାରିନେଲା ଡାକ୍ତର ସମୟ ଦେଇଛନ୍ତି ନା ନାହିଁ; ଆଉ ଉତ୍ତର ଶୁଣି ସ୍ଲିପ୍‌ଟିଏ ଧରାଇଦେଲା। ସ୍ଲିପ ନେଇ ଜୟଦେବବାବୁ ଆଗେଇଗଲେ।

ପାହାଚଦେଇ ତଳକୁ ଖସିଥିବା 'କ୍ୟୁ' କୁ କୌଣସିମତେ କାଟି ସେ ଯେତେବେଳେ ଉପରକୁ ଉଠିଲେ, ଦେଖିଲେ ସେଇ ଧାଡ଼ି ଗୋଟିଏ ପାଖ ଝରକା ଭିତରକୁ ପଶିଛି। ଝରକା ପାଖରେ ଲୁହାର ଫୋଲଡିଂ କବାଟ। କବାଟ ଉପରେ ବଡ ବଡ ଅକ୍ଷରରେ ଲୁହା ଫଳକ ଘୋଷଣା କରୁଛି ଯେ ସେଇଟା ହିଁ ଅସ୍ଥିଶଲ୍ୟ ବିଭାଗର ପ୍ରବେଶ ପଥ। କବାଟରେ ସାମାନ୍ୟ ଫାଙ୍କ ରଖି ଜଗିରହିଛନ୍ତି ଜଣେ ଜଗୁଆଳି, ଆଉ ଜଣେ ନର୍ସ। ଜଗୁଆଳି ଭଦ୍ରଲୋକ ଜୟଦେବଙ୍କ ବାଟ ଓଗାଳିଲେ; କିନ୍ତୁ 'ପୁଛ୍‌ତାଛ୍'ର ସ୍ଲିପ୍ ଦେଖି ଭିତରକୁ ଯିବାପାଇଁ ବାଟ ଛାଡ଼ିଦେଲେ।

କରିଡର ଭିତରେ ପୁଣି ଗୋଟିଏ ଧାଡି ଆଉ ସେ ଧାଡି ଧସାଇ ପଶିଛି ସେଇ ୧୨୯ ନମ୍ବର ରୁମ୍ ଭିତରକୁ। କୋଠରିର ବାଟ ଓଗାଳି ଠିଆ ହୋଇଛି ପୁଣି ଜଣେ ଜଗୁଆଳି ଚପ୍ରାସୀ। ଜୟଦେବ କୋଠରି ପାଖ କବାଟ ପାଖରେ ପହଞ୍ଚିଲା କ୍ଷଣି ସେ ଚିତ୍କାର କଲା କ୍ୟୁ ପଛରେ ଠିଆହୋଇ ଯାଆନ୍ତୁ। ତାଙ୍କ ପାଇଁ ସମୟ ନିର୍ଧାର୍ଯ୍ୟ ହୋଇଛି ଶୁଣି ଆଉ ତାଙ୍କ ନାଁ ଲେଖା କାଗଜ ସାଙ୍ଗକୁ 'ପୁଛ୍‌ତାଛ୍'ର ସ୍ଲିପ୍ ବଢ଼ାଇ ଦେଲା ପରେ କିନ୍ତୁ ସେ ତାଙ୍କୁ ପାଖ କୌଣସି ବେଞ୍ଚରେ ଡାକରା ମିଳିବା ପର୍ଯ୍ୟନ୍ତ ବସିରହିବାକୁ ନିର୍ଦ୍ଦେଶ ଦେଇ କବାଟ ଆଉଜାଇ କୋଠରି ଭିତରକୁ ପଶିଗଲା।

କରିଡର୍‌ର ସବୁ ବେଞ୍ଚରେ ରୋଗୀ ଆଉ ତାଙ୍କ ସହଚରମାନେ ଭର୍ତ୍ତି। ଗୋଟାଏ ବେଞ୍ଚରେ ବସିବାପାଇଁ ଜାଗା ଟିକିଏ ପାଇ ଜୟଦେବ ଆଶ୍ୱସ୍ତିର ସହିତ ନିଃଶ୍ୱାସ ମାରିଲେ। ସମୟ ଦେଖିଲେ ଦଶ ବାଜିବାକୁ ଏବେ ବି ଆଉ ଦୁଇ ମିନିଟ ବାକି। ଯାହେଉ ସେ ଠିକ୍ ସମୟରେ ପହଞ୍ଚିଯାଇଛନ୍ତି ଏଥର ଯେତେବେଳେ ବି ଡାକରା ଆସୁ। ହଠାତ୍‌ଟିଏ ତାଙ୍କର ମନେପଡିଗଲା 'ମୁଣ୍ଡ ତ ଭିଜାଇସାରିଲୁଣି - ଆଉ ଏବେ ଖୁରକୁ ଡରିଲେ ହେବ?'

ବେଞ୍ଚରେ ବସି ଯାଉଁଯାଉଁ ସେ ଭାବିଲେ - ସତରେ ଏ ସାଧାରଣ ରକାଟିଏ ତାଙ୍କୁ କେତେ ହରକତ୍ ନ କଲାଣି! ଗୃହିଣୀଙ୍କର କିନ୍ତୁ ବାରଂବାର ତାଗିଦା - 'ରକା କ'ଣ ଏମିତି ମାସେ କାଳ ଲାଗିରହିଥାଏ! ଯଦି କିଛି କଠିନ ବେମାରି ହେଇଥିବ! ଏମିତି ହେଳାକର ବୋଲି ତ...?' ସେତିକିରେ କଥା ଶେଷ। ସତେ ଯେମିତି ତାଙ୍କ ହେଳା ଯୋଗୁ ଘର ଓଲଟ ପାଲଟ ହୋଇଗଲାଣି। ଏ ହସ୍‌ପିଟାଲକୁ ଆସି ଡାକ୍ତରଙ୍କୁ

ଭେଟିବା ଯେ କେମିତି କାଠିକରପାଠ, ସେ କଥା ଯିଏ ଭୋଗିଛି ସିଏ ସିନା ଜାଣିବ - ସେମାନେ କ'ଣ ସେ ସବୁ ବୁଝିବେ ? ଭାଗ୍ୟକ୍ରମେ ସେ ଦିନ ଡାକ୍ତର ଫୋନ୍‌ରେ ମିଳିଗଲେ - ନ ହେଲେ ଦିଲ୍ଲୀର ଯେଉଁ ଫୋନ୍ ସର୍‌ଭିସ୍ ! ଯେତେବେଳେ ଫୋନ୍ କର, ତିନି, ଆଠ, ଛ, ଚାରି, ପାଞ୍ଚ - ତିନିରୁ ଆସିବ କୁଉଁ-କୁଉଁ। ଏ ଡାକ୍ତର ସବୁ କେତେ ବେଳଯାଏ କାହା ସାଙ୍ଗରେ ଗପ କରୁଥାଆନ୍ତି କେଜାଣି ! ଥରେ କିନ୍ତୁ ଫୋନ୍ ଠିକ୍ ଧରିଥିଲା, ଯେ ସେଆଡୁ ଉତ୍ତର ଆସିଲା ବସ୍ତା ସତର ରୁପୟା ସେଭେଣ୍ଟିନ୍ ରୁପିଜ୍। ଭୁଲ ନମ୍ବର। ପୁଣି ଡାକଲା ବେଳକୁ ସେଇ କୁଉଁ-କୁଉଁ।

ଶେଷରେ ହସ୍‌ପିଟାଲର 'ପୁଛ୍‌ତାଛ୍' ହିଁ ସାହାଯ୍ୟ କଲା - ଆଉ ଡକ୍‌ଟର ମେହେଟାଙ୍କୁ ସିଧା ଫୋନ କନେକ୍‌ସନ୍ ଦେଇଦେଲା। ଡାକ୍ତରବାବୁ ପଚାରିଲେ - କ'ଣ ଜରୁରୀ ? ଜୟଦେବ ହସିଥିଲେ ଆଉ ଉତ୍ତର ଦେଲେ - 'ଜରୁରୀ ନା ନୁହେଁ ଆପଣ ସିନା କହିବେ ଡାକ୍ତରବାବୁ - ମୁଁ ଜାଣିବି କେମିତି ?' ଡାକ୍ତର ବି ସେଆଡୁ ହସିଥିଲେ। ଭଲ ମଣିଷଟିଏ ହୋଇଥିବେ ନିଶ୍ଚୟ ! କହିଲେ - 'ସେମିତି ଜରୁରୀ ଥିଲାପରି ତ ଆପଣଙ୍କ କଥାରୁ ମନେହେଉନି। ଦିନେ ଛାଡ଼ିଦେଇ ବୁଧବାର ସକାଳ ଦଶଟାରେ ଆସନ୍ତୁ। ବୁଧବାର ସକାଳ ଦଶ।' ଜୟଦେବ ଡାକ୍ତରଙ୍କୁ ଧନ୍ୟବାଦ ଦେଇଥିଲେ। ବୁଧବାର ଦଶଟା କେମିତି ଧାଏଁକିନା ପହଞ୍ଚିଗଲା।

ତାଙ୍କ ନାଁ ଧରି କେହି ଜଣେ ଡାକୁଥିବା ଶୁଣି ଜୟଦେବବାବୁ ଚମକିପଡ଼ିଲେ। ଅନାଇ ଦେଖିଲେ ୧୨୯ ନମ୍ବର କବାଟ ଫାଙ୍କରେ ମୁଣ୍ଡ ଗଳାଇ ସତକୁସତ ଡାକ୍ତରଙ୍କ ଚପ୍ରାସୀ ତାଙ୍କୁ ହିଁ ଡାକୁଛି। ବେଞ୍ଚରୁ ତରବର ହୋଇ ଉଠିଆସି କବାଟ ପାଖ କ୍ୟୁରେ ଠିଆହୋଇଥିବା ଭଦ୍ରମହିଳାଙ୍କୁ କ୍ଷମା ମାଗି ଜୟଦେବବାବୁ ଡାକ୍ତରଙ୍କ କୋଠରି ଭିତରକୁ ପଶିଗଲେ।

ସାଦାସିଧା କୋଠରି। ଗୋଟିଏ ବଡ଼ ଟେବୁଲ ଆଉ ତା ପାଖରେ ସାଦା ବେତବୁଣା ଚୌକି ଖଣ୍ଡକରେ ବସି ବାଁପାଖ କାଠ ବେଞ୍ଚ ଉପରେ ବସିଥିବା ରୋଗୀଙ୍କ ଆଡକୁ ଅନାଇ ରହିଛନ୍ତି ଡାକ୍ତରବାବୁ । ଇଷତ୍ ମୁଣ୍ଡ ଟେକି ସେ ଜୟଦେବବାବୁଙ୍କ ଆଡ଼ିକି ମୁଖ ଟୁଙ୍ଗାରି ଆଭ୍ୟର୍ଥନା କଲେ ଆଉ ଟେବୁଲର ଅନ୍ୟ ପାଖରେ ପଡ଼ିଥିବା ଚୌକି ଆଡିକି ହାତ ଦେଖାଇ ବସିବାକୁ ଇଙ୍ଗିତ ଦେଉ ଦେଉ ଯୋଡ଼ିଦେଲେ - 'ବେଶି ବେଳ ଅପେକ୍ଷା କରିନାହାନ୍ତି ତ !'

ଜୟଦେବବାବୁଙ୍କ ଉତ୍ତର ଆଡ଼ିକି ତଙ୍କର ଆଉ ମନ ନ ଥିଲା। ବେଞ୍ଚରେ ବସିଥିବା ରୋଗୀଙ୍କୁ ତାଙ୍କ ବାଁପାଖ ଷ୍ଟୁଲ ଉପରକୁ ଉଠି ଆସିବାକୁ ଅନୁରୋଧ କରୁଥିଲେ ଡକ୍‌ଟର ମେହେଟା।

ରୋଗୀ ଜଣକ ବୁଢ଼ା; କିନ୍ତୁ ବେଶ ହୃଷ୍ଟପୃଷ୍ଟ - ମାଂସପେଶୀବହୁଳ, ଛେଳି ଦାଢ଼ି ପରି ଦାଢ଼ି। ପାଇଜାମା ବଦଳାଇ ଲୁଙ୍ଗି ପିନ୍ଧୁ ପିନ୍ଧୁ କହିଲେ 'ଆସୁଛି ଡାକ୍ତର ସାହବ ବ୍ୟସ୍ତ ହୁଅନ୍ତୁନି। ଆପଣଙ୍କ ପାଖକୁ ତ ଆସିଛି - ସେ ଷ୍କୁଲକୁ ନଆସି ଯିବି କୁଆଡେ ?' ତା ପରେ ଡାକ ଛାଡ଼ିଲେ 'ବେଟା ମନ୍‌ସୁର, ଆଣିଲୁ ସେ ପିକଦାନି।'

ବେଞ୍ଚ ପାଖରେ ତାଙ୍କ ପଛଆଡ଼ିକି ଯେଉଁ ଯୁବକଟି ଠିଆହେଇଥିଲା ସେ ଯେ ବେଟା ମନସୁର ସେଥିରେ ସନ୍ଦେହ ନ ଥିଲା। ସେ ଦେଖାଇଥିବା ପିକାଦାନିରେ ପାନ ଛେପର ପିଚ୍‌କାରିଟାଏ ମାରି ରୋଗୀ ଜଣକ ଏଥର କହିଲେ - 'ଡାକ୍ତରଙ୍କ ପାଖକୁ କେମିତି ଯିବାକୁ ହୁଏ ସେ କଥା ମୁଁ ଜାଣେ ଡକ୍‌ଟର ସାହାବ। ଲୁଙ୍ଗି ପିନ୍ଧିଲେ ସିନା ମୁଁ ମୋର ଗୋଡ଼ ଭଲ କରି ଦେଖାଇପାରିବି - ପାଇଜାମା ଯା ହେଲେ ବି ଟିକିଏ ଅଡୁଆ କିନା।'

ଡକ୍ଟର ମେହେଟା ଜୟଦେବବାବୁଙ୍କ ଆଡ଼କୁ ଅନାଇ ଟିକିଏ ହସିଲେ। କହିଲେ - 'ଦେଖୁଛନ୍ତି ନା ରୋଗୀଙ୍କ ଭିଡ଼ କେମିତି। ନିଃଶ୍ୱାସ ମାରିବାକୁ ବି ଟିକିଏ ଫୁରୁସତ୍ ନାହିଁ। ମୁଁ ମିଷ୍ଟର ଆନ୍‌ସାରୀଙ୍କୁ ଦେଖିଦିଏଁ - ତାପରେ ଆପଣଙ୍କ କଥା ବୁଝିବି।'

ରୋଗୀ ଜଣକ ନିଶ୍ଚୟ ମିଷ୍ଟର ଆନ୍‌ସାରୀ। ଲୁଙ୍ଗି ପିନ୍ଧି ସାରିଥିଲେ, ଦେହରୁ ଗେଞ୍ଜି କାଢୁ କାଢୁ ଡାକ୍ତରବାବୁଙ୍କ ଉଦ୍ଦେଶ୍ୟରେ କହିଲେ - 'ହଁ ଡାକ୍ତର ସାହେବ, ସେମିତି ହୁଏ। ଏ ଦିଲ୍ଲୀ ସହରରେ ତ କାହାରିକି ତର ନାହିଁ - ସମସ୍ତେ ଧାଇଁଛନ୍ତି। ଆରେ ବାବା, ରହ ଟିକିଏ...ଧୀରେ ସୁସ୍ଥେ... ଆରାମ୍ ସେ। ଖୋଦାକା ଏ ଦୁନିଆମେ ଫିକର କିସ୍ ବାସ୍ତେ କହୁନାହାନ୍ତି ଡକ୍‌ଟର ସାହବ୍ । ନାଇଁ - ଧାଇଁବେ ସମସ୍ତେ - ସତେ ଯେମିତି କେଉଁଠି ନିଆଁ ଲାଗିଛି।'

ଗେଞ୍ଜି ପିନ୍ଧିଥିଲେ କିଛି ଯାଏଆସେନି - 'କହୁଥିଲେ ଡକ୍‌ଟର ମେହେଟା। କିନ୍ତୁ ହାତ ଦି'ଟା ଉପରକୁ ଟେକିଦେଇ ଗେଞ୍ଜି ଉପରରୁ ଟାଣିନେବାକୁ ବେଟା ମନସୁର୍‌କୁ ନିର୍ଦ୍ଦେଶ ଦେଉଥିଲେ ମିଷ୍ଟର୍ ଆନ୍‌ସାରୀ।'

ଅବସର ଟିକିଏ ପାଇ ଡାକ୍ତରଙ୍କ ସଙ୍ଗରେ କଥାବାର୍ତ୍ତା ପଦେ ହେବା ଆଶାରେ ଜୟଦେବ ପଚାରିଦେଲେ - 'ଏତେ ରୋଗୀଙ୍କୁ କେତେବେଳେ ଆପଣ ଦେଖିବେ ଡ. ମେହେଟା ?'

ଡକ୍‌ଟର ମେହେଟା ମୁଣ୍ଡରେ ହାତ ଦେଲେ। କହିଲେ - 'ଦେଖୁଛନ୍ତି ତ - କଅଣ କରିବା କୁହନ୍ତୁ। ଜୁନିଅର୍ ଡାକ୍ତରମାନଙ୍କ ଷ୍ଟ୍ରାଇକ୍ ଆଜିକି ସତରଦିନ ହୋଇଗଲା। ଦି'ପାଖରେ ନଛୋଡ଼ବନ୍ଧା ଭାବ। ସରକାର କହୁଛନ୍ତି ଷ୍ଟ୍ରାଇକ୍ ଉଠାଇ ନ ନେଲେ ଆପୋଷ ଆଲୋଚନା ଆରମ୍ଭ ହେବନି, ଆଉ ଏଣେ ଜୁନିଅର୍ ଡାକ୍ତରମାନେ

ଧରିବସିଛନ୍ତି ଯେ ସରକାର ନୀତିଗତ ଭାବେ ଷ୍ଟାଇପେଣ୍ଡ୍ ବଢ଼ାଇବେ ବୋଲି ଘୋଷଣା କରନ୍ତୁ। ମଝିରେ ରୋଗୀମାନେ କଷ୍ଟପାଉଛନ୍ତି। ଦେଖିଲେନା, ହସ୍‌ପିଟାଲ୍ ସାମନାରେ ସେ ସାମିଆନାକୁ? ସେ ଭିତରେ ଏ ରେସିଡେଣ୍ଟ୍ ଡାକ୍ତର ଆଉ ଜୁନିଅର୍ ଡାକ୍ତରମାନେ ବସି ହୁଏତ ତାସ୍ ଖେଳୁଥିବେ। ଆମେ କେତେ ଜଣ କ'ଣ କରିବୁ? ଏଣେ ଜରୁରୀ କେସ୍‌ଗୁଡ଼ିକ ନ ଦେଖିଲେ ରୋଗୀମାନେ ମରିବେ । ଆମେ ଘଣା ପେଲୁଛୁ - କିଏ ସେ କଥା ବୁଝୁଛି? ଅନେକ ରୋଗୀ ଏମିତି ଆସୁଛନ୍ତି, ଯେଉଁମାନଙ୍କର ସେମିତି କିଛି ଜରୁରୀ ନାହିଁ; କିନ୍ତୁ ତାଙ୍କୁ ବା କେମିତି ଦୋଷ ଦେବେ? ଡାକ୍ତର ଦେଖିଲେ ସିନା କହିବ ଜରୁରୀ ନା ନାହିଁ।'

ମିଷ୍ଟର୍ ଆନ୍‌ସାରୀ ଷ୍ଟୁଲ ଉପରକୁ ଉଠିଆସିଥିଲେ। ଖଣ୍ଡିଏ ହସ୍‌ପିଟାଲ୍ କାଗଜ ଧରି ଡ. ମେହେଟା ଯେତେବେଳେ ପଚାରିଲେ ବୟସ - ମିଷ୍ଟର ଆନସାରୀ ଜବାବ ଦେଲେ - 'ନାମ ଫକିରୁଦ୍ଦିନ ଅହମ୍ମଦ ଆନସାରୀ, ବୟସ ଛୟାନବେ - ସେକ୍‌ସ ମେଲ୍।'

ମୁହଁରେ ହସ ଖେଳାଇ ଆଶ୍ଚର୍ଯ୍ୟଭରା ଆଖିରେ ରୋଗୀଙ୍କୁ ଅନାଇଲେ ଡ. ମେହେଟା। କହିଲେ 'ଛୟାନବେ?'

'କେତେ ଭାବୁଥିଲେ ଡକ୍‌ଟର ସାହାବ୍?' ଓଲଟା ପଚାରିଦେଲେ ମିଷ୍ଟର୍ ଆନ୍‌ସାରୀ, ଆଉ ଉତ୍ତରକୁ ଅପେକ୍ଷା ନକରି କହିଚାଲିଲେ - 'ମୁଁ ଆଉ ଜବାହର ଏକା ବୟସର।'

'କେଉଁ ଜବାହାର?' ନ ପଚାରି ରହିପାରିଲେନି ଡ. ମେହେଟା । ମନେହେଲା ମିଷ୍ଟର୍ ଆନ୍‌ସାରୀଙ୍କୁ ଖୋରାକ୍ ମିଳିଗଲା। କହିଲେ - 'ହିନ୍ଦୁସ୍ଥାନରେ ଜବାହାର ତୋ' ଏକ୍ ଡକ୍‌ଟର ସାହାବ। ମୋତି କା ବେଟା ଜବାହର୍‌ଲାଲ୍ ନେହରୁ। ମୁଁ ଆଉ ଜବାହର ଆମ ଜବାନୀରେ ଏକାଠି କାମ କରୁଥିଲୁ।'

"କ'ଣ ହେଇଛି ଆପଣଙ୍କର?" କଥା ବଦଳାଇ ପଚାରିଦେଲେ ଡ. ମେହେଟା। ଲୁଙ୍ଗିକୁ ଜଙ୍ଘ ପର୍ଯ୍ୟନ୍ତ ଉପରକୁ ଭିଡ଼ିଆଣି ଡାହାଣ ଆଣ୍ଠୁ ଦେଖାଇଦେଲେ ମିଷ୍ଟର ଆନ୍‌ସାରୀ। କହିଲେ - "ଏ ଆଣ୍ଠୁରେ କେମିତି ଦରଜ ହେଉଛି। ପଚାଶ ବୈଠକ ବି କରିହେଉନି।"

ମିଷ୍ଟର ଆନ୍‌ସାରୀଙ୍କ ଆଣ୍ଠୁରେ ହାତମାରି ନିଠେଇ ଦେଖୁଥିଲେ ଡ. ମେହେଟା। କହିଲେ - "ପଚାଶ ବୈଠକ କରୁଛନ୍ତି? ଆଉ କେତେ କରନ୍ତେ?"

ମିଷ୍ଟର ଆନସାରୀଙ୍କ ପାଟିରେ ପୁଣି ପାନଛେପ ଜମା ହୋଇ ଆସୁଥିଲା। ସେ ଜମାଟ ଭିତର ଦେଇ କହିଲେ - "ଜବାହର ବୈଠକ ମାରୁଥିଲା ପଚାଶ। ମୁଁ ତାକୁ

କହେଁ - ଆରେ ଜବାହାର, ପଚାଶରେ କ୍ୟା ହୋଗା- କମ୍‌ସେ କମ୍ ଦୋଶ' ତୋମାର - ନ ହେଲେ ତଗଡ଼ା ହେବୁ କେମିତି ? ବେକାର ଶିର୍ ମେ ମିନିଟ୍ ମିନିଟ୍ ଧରି ଖଡ଼ାହେଉଛୁ। ଜବାହାର କିନ୍ତୁ ଥଟ୍ଟା କରିବ ଓଲଟା। କହିବ - ଶୀର୍ଷାସନ କର ଫକିରୁଦ୍ଦିନ୍ - ଶିର୍‌ମେ ତଗଡ଼ା ହେବୁ। ବେକାର ପହିଲମାନ ବନୁଛୁ। ସଚ୍ଚା ବୋଲ୍‌ତା ଥା' ଜବାହାର। ଲାଖୋଁ ଭିତରେ ମଣିଷଟିଏ ଥିଲା ସିଏ । ହିନ୍ଦୁସ୍ଥାନ କା ରତନ ଥା। ସେ ଥିଲା ଶିରମେ ତଗଡା ଆଉ ମୁଁ ଥିଲି ଶରୀର୍ ମେ"।

ପୁଣି ବେଟା ମନ୍‌ସୁର ଦେଖାଦେଇଥିବା ପିକଦାନିରେ ଛେପର ପିଚ୍‌କାରି ମାରି ସେ କହୁଥିଲେ - "ଏବେ ମୋତେ ଦେଢ଼ମାଇଲ ବାଟ ଚାଲିଆସିବାକୁ କଷ୍ଟ ହେଉଛି"। ଡ. ମେହେଟାଙ୍କ ଆଶ୍ଚର୍ଯ୍ୟଭରା ଆଖିଆଡିକି ନଜର ଦେଇ ସେ କହିଚାଲିଲେ - "ଜବାହର ଆଉ ମୁଁ ଥରେ ୨୫ ମାଇଲ ବାଟ ୬ଘଣ୍ଟାରେ ଚଲିଯାଇଥିଲୁଁ। ଦିନ ଦଶଟା ବେଳେ ଡୁନ୍ ଏକ୍‌ସପ୍ରେସ୍ ଧରିବା କଥା - ସକାଳେ ଖବର ପହଞ୍ଚିଗଲା ରେଳ ଷ୍ଟେସନରେ ପୋଲିସ ଜଗି ରହିଛି ଆମେ ପହଞ୍ଚିଲାକ୍ଷଣି ଝାମ୍ପି ନେଇଯିବ। ଏଣେ କିଶାନ ସଭାରେ ଜବାହରକୁ ଭାଷଣ ଦେବାକୁ ପଡିବ। ମହାତ୍ମା ବି ଆସିବାର କଥା ଅଛି। ସୀମାନ୍ତରୁ ଅବଦୁଲ୍ ଗଫର ବି ଆସୁଛି... 'ଆଦ୍‌ମିମେ ଏକ୍ ହେ ପଠାଣ୍। ଥରେ କହିଲା - ଆରେ ଫକୀରୁଦ୍ଦିନ, ତୁମ୍ ଉତ୍ତରପ୍ରଦେଶକା ସବ୍ ସବ୍ ବାମନ୍, ସେ ତ ସାତ ଆଠଫୁଟ ଉଚାଇବାଲା; ରୀତିମତ ଗୋଟାଏ ରକ୍ଷସ। ମୁଁ କହିଲି - 'ଛୋଟା ହୋନେସେ କ୍ୟା- ତୁମ୍ ପଠାଣ ଲୋଗୋଁସେ ଜ୍ୟାଦା ତଗଡ଼ା।' ତମେ ସବୁତ ଟିକିଏ ପବନରେ ଦୋହଲିଯିବ - ଆମ ସଙ୍ଗରେ ବଳ କଷାକଷିରେ ପାରିବ ? ହସିଦେଇ ବାହାରିପଡିଥିଲା ଗଫର; ତାକୁ କିନ୍ତୁ ପାରିହେଲାନି - ନିଜ ବିସ୍ତର ନିଜେ କାନ୍ଧରେ ବୋହିଥିବ - ପକାଇବ ପାହୁଣ୍ଡ ଯେ ଉଁଟ୍ ବି ସେ ସଙ୍ଗରେ 'କଦମ୍' ରଖିପାରିବନି।"

କଥା ଆଉ କୁଆଡ଼େ ଗଲାଣି। ଡ. ମେହେଟା ଦୁଇ ଆଣ୍ଠୁକୁ ତୁଳନା କରୁଁ କରୁଁ କହିଲେ - "ଆଣ୍ଠୁରେ ଗୋଳମାଳ କିଛି ନାହିଁ। ତେବେ ବି ଟିକିଏ ଯାଇ ଏକ୍‌ସରେଟିଏ କରାଇ ଆଣନ୍ତୁ । ମୁଁ ଲେଖିଦେଉଛି।"

ଜବାହରଙ୍କ ସଙ୍ଗରେ ଏ ମିଷ୍ଟର ଆନ୍‌ସାରୀ ଚାଲିଥିଲେ କେମିତି, ସେ କଥା ଶୁଣିବାକୁ ଜୟଦେବଙ୍କ ମନ ଖଇବଇ ହେଉଥିଲା। କିନ୍ତୁ ଗପ କରିବାକୁ ଆନ୍‌ସାରୀ ବୁଢ଼ାଙ୍କୁ ଉସୁକେଇଦେଲେ ଡ. ମେହେଟା କ'ଣ ଭାବିବେ ବୋଲି ସେ ଉପାୟହୀନ ହୋଇ କେବଳ ମିଷ୍ଟର ଆନ୍‌ସାରୀଙ୍କୁ ଅନାଇ ରହିଥିଲେ। ଡ. ମେହେଟା ଯେତେବେଳେ ମୁହଁ ବୁଲାଇଆଣି ସିଧାସଳଖ ବସି କ'ଣ ପ୍ରେସ୍‌କ୍ରିପ୍‌ସନ ଲେଖିବା ଆରମ୍ଭକଲେ, ତାଙ୍କୁ ସୁଯୋଗ ମିଳିଗଲା। ପଚାରିଲେ - "ନେହୁରୁଜୀ ବି ୬ ଘଣ୍ଟାରେ

୨୫ ମାଇଲ ଚାଲିଗଲେ?" ପ୍ରଶ୍ନ ଶୁଣି ଆଉ ଡ. ମେହେଟା ଆଣ୍ଠୁ ପରୀକ୍ଷା ସାରିଦେଲେଣି ଜାଣି ମିଷ୍ଟର ଆନ୍‌ସାରୀ ଖୁସିରେ ଦାଢ଼ି ଉପରେ ବାଁ ହାତ ବୁଲାଇଆଣି କହିଲେ - "ଜବାହର ଟିକିଏ ଥକିଯାଇଥିଲା। ଦିଲ୍ଲୀ ଷ୍ଟେସନରେ ପୋଲିସ ଆମକୁ ଧରିନେବ ଜାଣି ଆମେ ଭୋର ଭୋର ଠିକ କରିନେଲୁଁ ୨୫ ମାଇଲ ବାଟ ଚାଲିଯାଇ ଗୋଟିଏ ଆଗୁଆ ଷ୍ଟେସନରେ ଏକ୍‌ସେପ୍ରେସ ଟ୍ରେନ ଧରିବୁଁ। ଯମୁନା ନଦୀ ଆରପଟ ୧୨ ମାଇଲ ଦୂରରେ କୁରୁମପୁର ଗାଁ - ସେଇଠି ଜବାହର ଚାହୁଁଥିଲା ଟିକିଏ ବିଶ୍ରାମ ନେବ ବୋଲି। ଏ ଗାଁବାଲାଙ୍କୁ କେମିତି ପତ୍ତା ମିଳିଯାଇଥିଲା କେଜାଣି ଆମେ ଗାଁରେ ପହଞ୍ଚିଲାବେଳକୁ ସେମାନେ ଫୁଲମାଳ ସାଙ୍ଗକୁ ଗୋଟିଏ ବାଲ୍‌ଟି ଲସ୍‌ସି ଧରି ଠିଆହୋଇଥାଆନ୍ତି। ଜବାହାର ଗିଲାସେ ଦହି ପିଇଲା ଆଉ ଏମିତି ବାଲ୍‌ଟିରେ କିଏ ଦହି ଦିଏ ବୋଲି ବିରକ୍ତ ହେଉଥିଲା। ମୁଁ କିନ୍ତୁ ବାଲଟି ଟେକି ମୋ' ପାଟିରେ ଛାଡ଼ିଦେଲି। ସେ ଦହି... କି ବଢ଼ିଆ ସେ ଦହି - ଆଜିକାଲି ଆଉ କାହୁଁ ପାଇବେ ଜୟଦେବବାବୁ!"

ଡ. ମେହେଟା କହିଲେ - "ଏ ପର୍ଚି ନେଇ ଯିବେ ରଞ୍ଜନ ରଶ୍ମି ବିଭାଗକୁ। ମୁଁ ଜାଣେ ଆଣ୍ଠୁରେ କିଛି ନଥିବ... ତଥାପି।"

"ବିଲ୍‌କୁଲ୍ ଠିକ୍ କରିଦିଅନ୍ତୁ ଡାକ୍ତରବାବୁ, ଆପଣଙ୍କ ଦର୍ଶନ ପାଇଁ ମୋତେ ବାରବାର ଯେମିତି ଆସିବାକୁ ନ ପଡେ" - କହୁଁ କହୁଁ ବେଟା ମନ୍‌ସୁରକୁ ପର୍ଚି ଧରିବାପାଇଁ ନିର୍ଦ୍ଦେଶ ଦେଉଥଲେ ମିଷ୍ଟର ଆନ୍‌ସାରୀ। ସେ ଆଉ କିଛି କହିବାକୁ ଯାଉଥିଲେ, "କିନ୍ତୁ ଆପଣଙ୍କ ଦର୍ଶନ ମିଳିବା ତ ମୋ ପକ୍ଷରେ ଭାଗ୍ୟର କଥା; ତେବେ ଏମିତି ପଚାଶ ଥର ବୈଠକ ଆଉ ମାଇଲିଏ ଦି'ମାଇଲ ଚଲାବୁଲା କରୁଥାଆନ୍ତୁ; ଆଉ ଏଠାକୁ ଆସିବାକୁ ପଡ଼ିବନି" କହିଦେଇ ରୋଗୀଙ୍କ ପାଇଁ ନର୍ଦ୍ଦିଷ୍ଟ ସେଇ ଷ୍ଟୁଲ ଉପରକୁ ଘୁଞ୍ଚିଆସିବାକୁ ଜୟଦେବଙ୍କୁ ନିର୍ଦ୍ଦେଶ ଦେଉଥିଲେ ଡ. ମେହେଟା। ସାମାନ୍ୟ ଟିକିଏ କେମ୍ପେଇ ବେଟା ମନ୍‌ସୁରର ଡହାଣ ହାତରେ ସାମାନ୍ୟ ହାତଭରା ଦେଇ କୁର୍ଣ୍ଣିସ୍ କରି ବାହାରିଗଲେ ମିଷ୍ଟର ଆନ୍‌ସାରୀ; ଆଉ ଜୟଦେବ ଉଠିଗଲେ ଷ୍ଟୁଲ୍ ଉପରକୁ। ପିଠି ଡାହାଣ ପିଞ୍ଜରାର ଦୁଇ ତିନି ଜାଗାରେ ସାମାନ୍ୟ ଚାପ ଦେଲାପରେ କିଛି କଥା ନାହିଁ ଶୁଣି ଏବଂ ଡାହାଣ ହାତକୁ କାନ୍ଧ ଗଣ୍ଠି ପାଖରେ ଏପଟ ସେପଟ ଚକ୍ରାକାରରେ ଘୂରାଇନେଲା ପରେ ଘୂର୍ଣ୍ଣନକୁ ଲକ୍ଷ୍ୟ କରି ଡ. ମେହେଟା ରାୟ ଦେଲେ ଯେ ପିଠିରେ କେବଳ ରକା ପଶିଛି। କହିଲେ, "ଔଷଧ ଯଦି ଖାଇବେ ୧୦-୧୫ ଦିନରେ ଭଲହୋଇଯିବ; ଆଉ ଶୀଘ୍ର ଆରୋଗ୍ୟ ଲାଭ ଯଦି ଚାହୁଁଛନ୍ତି ତେବେ ୪/୫ ଦିନ ଇଲେକ୍‌ଟ୍ରିକ୍ ମେସାଜିଂ କରାଇବାକୁ ହେବ। ସେଥିରେ କିନ୍ତୁ ଲାଗିଲାଗି କେତେ ଦିନ ହସ୍‌ପିଟାଲ୍ ଆସିବାକୁ ପଡିବ।"

ଏମିତି ଲାଗିଲାଗି କେତେ ଦିନ ହସପିଟାଲ୍ ଆସିବା ଅପେକ୍ଷା ୧୦,୧୫ ଦିନର ରକାପଣା କଷ୍ଟ ଶ୍ରେୟସ୍କର ବୋଲି ଜଣାଇଦେଲା ପରେ ଡ. ମେହେଟ୍ଟା ପ୍ରେସ୍କ୍ରିପ୍‌ଶନ୍ ଲେଖିଦେଲେ ଆଉ ପର୍ଚି କାଗଜ ଜୟଦେବବାବୁଙ୍କ ହାତକୁ ବଢ଼ାଇଦେଲାବେଳେ ହସ ହସ ମୁହଁରେ ଅନୁରୋଧ କଲେ, "ଆପଣ ଦୟା କରି ମୋ ପାଇଁ କାମଟିଏ କରିବେ ? ଯଦି ଗଲାବେଳେ ବାଟରେ ମିଷ୍ଟର ଆନ୍‌ସାରୀଙ୍କୁ ଭେଟନ୍ତି, ତାଙ୍କୁ କହିବେ, ସେ ନିଜେ କଷ୍ଟ କରି ଏକ୍‌ସ୍‌ରେ ଫଟୋ ମୋ ପାଖକୁ ଆଣିବେନି... ମିଷ୍ଟର - ବେଟା କଣ କି... ? ସେ ଆଣିଲେ ଚଳିଯିବ।"

କଥାର ମର୍ମ ବୁଝିପାରି ଜୟଦେବ ମଧ୍ୟ ହସୁଥିବା ଲକ୍ଷ୍ୟ କରି ଡ. ମେହେଟ୍ଟା ନିଜେ ହସିଉଠିଲେ, ଆଉ କହିଲେ - "ଦେଖୁଛନ୍ତି ତ ରୋଗୀଙ୍କ ଭିଡ଼। ରୋଗୀଙ୍କ ସଙ୍ଗରେ ଟିକିଏ ସୁଖ ଦୁଃଖ ହେବାକୁ ମନ ଥିଲେ ବି ସମୟ ହୁଏନି।"

ଯଥାବିଧି ଧନ୍ୟବାଦ ଜଣାଇ ଜୟଦେବ ବାହାରକୁ ଚାଲିଆସିଲେ। କରିଡ଼ର୍‌ର ଗୋଟାଏ ବେଞ୍ଚ ପାଖରେ ବେଶ୍ ଭିଡ଼ ଜମିଯାଇଥିଲା; ଆଉ ସେ ପାଖରୁ ହସର ରୋଳ ଆସୁଥିଲା। ଜୟଦେବବାବୁ କଥା କ'ଣ ବୁଝିବାକୁ ଆପଣାଛାଏଁ ସେ ପାଖକୁ ଚାଲିଗଲେ। ଦେଖିଲେ ମିଷ୍ଟର ଆନ୍‌ସାରୀ ବେଞ୍ଚ ଉପରେ ବସିଛନ୍ତି, ଆଉ ତାଙ୍କୁ ଘେରି ରହିଛନ୍ତି କେତେ ରୋଗୀ ଏବଂ ତାଙ୍କ ସହଚରବୃନ୍ଦ। ମିଷ୍ଟର ଆନ୍‌ସାରୀ କହୁଥିଲେ - "ଜିମ୍ ତା ରାଇଫଲ୍ ଉଠାଇସାରିଥିଲା। ମୁଁ ତା ହାତ ତଳକୁ ଠେଲିଦେଇ କହିଲି, ଏ ଦେଶରେ ଭାଲୁକୁ ମାରନ୍ତିନି ସାହେବ ! ଏ ପରା ରାମଚନ୍ଦ୍ରଜୀଙ୍କ ସେନାପତି ଜାମ୍ବବାନଙ୍କ ବଂଶଧର ! ଏଇଟାତ ଆଉ ତମ ଇଂଲଣ୍ଡ ନୁହେଁ। ଭାଲୁ ପଛ ଦୁଇ ଗୋଡରେ ଠିଆ ହୋଇ ପାଟି ମେଲାଇ ଜିମ୍ ଆଡକୁ ମାଡିଆସୁଥାଏ। ମୁଁ ଗୋଟାଏ ପାଖରୁ ଯାଇ ଭାଲୁକୁ ପଛଆଡୁ ଧଇଲି, ଆଉ ଟେକିନେଇ ସେ ପାହାଡିଆ ରାସ୍ତାକଡକୁ ଫୋପାଡିଦେଲି। ଭାଲୁ, ବୋପାଲୋ କହି ଦଉଡିଛି, ଆଉ ପଛକୁ ଓଲଟି ଚାହିଁନି।"

ହସ ଭିତରେ କିଏ ଜଣେ ପଚାରୁଥିଲା "ଆଚ୍ଛା ଚାଚାଜୀ - ଇଂଲଣ୍ଡରେ କଣ ଭାଲୁ ଅଛନ୍ତି ଯେ ସେମାନେ ଭାଲୁ ମାରିବେ ?" ମିଷ୍ଟର ଆନ୍‌ସାରୀ ଠୋ ଠୋ ହସି ଉଠି ଉତ୍ତର ଦେଲେ - "ଇଂଲଣ୍ଡରେ ଭାଲୁ ନାହାନ୍ତି ? ... ଖାଲି ମାଙ୍କଡ ଆଉ ଭାଲୁଙ୍କ ରାଇଜ ସେଇଟା... ସୁଦ୍ଧୁ ପାଟିମାଙ୍କଡଗୁଡାକ।"

ଗପୁଡ଼ି ମିଷ୍ଟର ଆନ୍‌ସାରୀ ଯେ ଏଯାଏ ଏକ୍‌ସ୍‌ରେ ବିଭାଗକୁ ଯାଇନାହାନ୍ତି ସେ କଥା ସ୍ପଷ୍ଟ ଥିଲା। ଜୟଦେବ କୌଣସି କଥା ନ ଉଠାଇ ସେଠାରୁ ଧୀରେ ଖସିଆସିଥିଲେ।

କିଛି ଦିନ ପରେ ହିଁ ଆନ୍‌ସାରୀ ବୁଢାଙ୍କ ସଙ୍ଗରେ ଜୟଦେବବାବୁଙ୍କର ପୁଣି ଥରେ ଦେଖା ହୋଇଯାଇଥିଲା। ଜୟଦେବବାବୁ ସେଦିନ ଅଫିସରୁ ଚାଲିଚାଲି ଘରକୁ ଫେରୁଥିଲେ। ଡ. ମେହେଟାଙ୍କୁ ଭେଟିଲା ଦିନ ଏମିତି ମାଇଲେ ଦି'ମାଇଲ ଚଲାବୁଲା କରିବାର ଉପକାରିତା ସମ୍ବନ୍ଧରେ ସେ ଶୁଣିଥିଲେ। ଅଫିସରୁ ତାଙ୍କ ଘର ତ ବେଶି ଦୂର ନୁହେଁ। ସେ ଠିକ୍ କରି ନେଇଥିଲେ ସେ ରକା ଛାଡିଗଲା ପରେ ସେ ଅଫିସରୁ ଚାଲିଚାଲି ହିଁ ସବୁଦିନ ଘରକୁ ଫେରିବେ। ଇଣ୍ଡିଆ ଗେଟ୍ ପାଖରେ ଦେଖିଲେ ରାସ୍ତା କଡର ଟିକିଏ ଭିତରକୁ ଲନ୍‌ରେ ଦଳେ ଲୋକ ଠିଆହୋଇ ହସଖୁସି ଜମେଇ ଦେଇଛନ୍ତି - ମୁଗଫୋଲି, ଚିନାବାଦାମ, ଚଣାଭଜା, ବେଲୁନ, ଆଇସ୍‌କ୍ରିମ୍ ବିକାଳି, କେତେ ଗ୍ରାହାକ ଆଉ ସେ ଭିତରେ ଜଣେ ଦାଢିଆ ବୁଢା। ବୁଢାଙ୍କୁ ଦେଖି ଜୟଦେବଙ୍କ ମନେହେଲା ସେ ତାଙ୍କୁ ଆଗରୁ କେଉଁଠି ଦେଖିଛନ୍ତି। ବୁଢା ଗାନ୍ଧିଜୀ ଆଉ ସରୋଜିନୀଙ୍କ ଥଟ୍ଟାତାମସା ହାସ ପରିହାସର କଥା ସବୁ ଶୁଣାଇ ଏ ସମସ୍ତଙ୍କୁ ହସାଉଥିଲେ। ଜୟଦେବଙ୍କ ଉପରେ ଆଖି ପଡ଼ିଲାକ୍ଷଣି ପାଟିକରି ଉଠିଲେ, "ଆରେ ଜୟଦେବ ବାବୁ! ଏମିତି ତରବର ହୋଇ କୁଆଡେ ଯାଉଛନ୍ତି? ଆସନ୍ତୁନା ଏଇଠିକି।" ଜୟଦେବ ଚିହ୍ନିଲେ ଡ. ମେହେଟାଙ୍କ ପାଖରେ ସେଦିନ ଦେଖାହେଇଥିବା ସେହି ମିଷ୍ଟର ଆନ୍‌ସାରୀ।

ଜୟଦେବ ବାବୁ ପାଖେଇ ଆସିଲାବେଳେ ବୁଢା କହିଲେ, "ଆମ ଦିଲ୍ଲୀ ସହରରେ ଅନେକ ତ ଅଣନିଃଶ୍ୱାସୀ ହେଇ ଧାଇଁଛନ୍ତି; ମନେହେଉଛି ଆପଣ ବି ସେ ଭିତରୁ ଜଣେ। କୋଉଥିପାଇଁ ଏମିତି ତରବର କୁହନ୍ତୁ ତ? କ'ଣ କେଉଁ ଟ୍ରେନ ହୁଇସିଲ୍ ଦେଲାଣି - ଛାଡିଦେବ?"

"ଯେଉଁଠି ସମୟ ଧାଇଁଛି ସେଇଠି ସିନା ମଣିଷମାନେ ଧାଇଁବେ ଜୟଦେବ ବାବୁ? ଆମ ଏ ସାଧୁସନ୍ଥଙ୍କ ଦେଶରେ ସମୟ ତ ସ୍ଥିର। ଦେଖୁନାହାଁନ୍ତି ସହରର ଚାରିଆଡେ ବିଛି ହୋଇ ପଡିଥିବା କବର ସ୍ଥାନମାନଙ୍କରେ, ଲାଲ୍‌କିଲ୍ଲା ପୁରାନା କିଲ୍ଲା ଭିତରେ ସମୟ କେମିତି ଜମାଟ ବାନ୍ଧି ପଥର ପାଲଟିଯାଇଛି! ଆପଣ ସେହି ସହରରେ ସମୟକୁ ଧରିବାପାଇଁ ଧାଇଁଛନ୍ତି? ଆସ୍ତେ ବାବା... ଆସ୍ତେ। ଆସନ୍ତୁ, କିଛି ଚଣାଭଜା ଖାଇଯାଆନ୍ତୁ"। ଡାକିଲେ - "ଆରେ ବେଟା ରାମୁ! ଦେଏନା ଜୟଦେବବାବୁଙ୍କୁ ଚନେକା ଏକ୍ ପେକେଟ୍।"

କିଛି ସମୟ କଥାବାର୍ତ୍ତା ପରେ ହିଁ ବୁଢ଼ା ଜୟଦେବବାବୁଙ୍କୁ କହିଲେ, "ଚାଲନ୍ତୁ ନା ଜୟଦେବବାବୁ! ଆଜି ଆମ ଘରେ ଆପଣଙ୍କର ପଦରଜ ଟିକିଏ ପକାଇ ଆସନ୍ତୁ।"

ବୁଢ଼ାଙ୍କ ଅନୁରୋଧ ଏଡାଇ ନପାରି ଜୟଦେବ ସେଦିନ ଚାଲି ଚାଲି ବୁଢ଼ାଙ୍କ ଘର ଆଡକୁ ବାହାରିଥିଲେ। ବେଶ୍ କିଛି ଦୂର - କିନ୍ତୁ ବୁଢ଼ାଙ୍କ ଗପ ଶୁଣି ଶୁଣି ଗଲାବେଳେ ଦୂରତା ଆଦୌ ଜଣାପଡି ନଥିଲା। ବୁଢ଼ା ଦିଲ୍ଲୀର ଏହି ଚିନାବାଦାମ, ବେଲୁନ ବିକାଳି, ଅଟୋରିକ୍‌ସାବାଲାମାନଙ୍କ କଥା କହି କହି ଚାଲିଥିଲେ। ପୃଥ୍ୱୀରାଜ ରୋଡ୍ ଡେଇଁ ଅରବିନ୍ଦ ମାର୍ଗର କଡ଼ରେ ଯେଉଁ ପୁରୁଣା କବରଖାନା, ସେ ଭିତରକୁ ପଶିଲେ ଦିହେଁ।

କାହିଁ କେଉଁ କାଳର ଭଙ୍ଗା ଦଦରା ସେ କବରଖାନା। ତା' ଚାରିଆଡେ ଦିଆହୋଇଥିବା ଉଚ୍ଚ ପଥର ପାଚେରି ଅନେକ ଜାଗାରେ ଭୁଷୁଡ଼ି ପଡିଲାଣି। ସ୍ଥାନେ ସ୍ଥାନେ ସେ ପାଚେରି ଉପରୁ ଫଟା ଟିଣ ଚଦର, ବର୍ଷାତି ସବୁ ନୁଆଣିଆ ହୋଇ ଖସିଛି। ବୁଢ଼ା ପଶିଲେ ସେ ଭିତରୁ ଗୋଟାକ ଭିତରକୁ। କାଠ ଢାବଲ ଗୋଟାଏ ଟାଣି ଆଣି "ବସନ୍ତୁ ଜୟଦେବବାବୁ- ମୁଁ କେଡେ ଭାଗ୍ୟବାନ୍ - ଆପଣ ଆସିଛନ୍ତି" କହି ଡାକଛାଡ଼ିଲେ, "ଏ ରହମାନ୍ କି ମା - ଦେଖ୍ କେଉଁ ମେହେମାନ୍ ଆସିଛନ୍ତି।"

ଜଣେ ବୁଢ଼ୀ - ମଇଳା ଧଳା ଘାଗରା ଉପରେ ଖଣ୍ଡିଏ କନା ଘୋଡ଼ଣୀ। ଜୟଦେବ ନମସ୍କାର କରୁଁ କରୁଁ କହିଲେ - 'ବସନ୍ତୁ ବାବା - ଆମ ଘରତ ଦେଖୁଛ - ଢାବଲ୍‌ରେ ବସୁଛ ବୋଲି କିଛି ମନେ କରନି।'

ବୁଢ଼ା କହିଲେ, "ଦେଖୋ ରହମାନ୍ କି ମା - ମୁଁ ଯାଉଛି କିଛି ଚୀ-ଫା ନେଇ ଆସେଁ - ତମେ ଜୟଦେବବାବୁଙ୍କ ସଙ୍ଗରେ ଗପ ସପ କରୁଥାଅ।"

ଜୟଦେବ କିଛି କହିବା ପୂର୍ବରୁ ହିଁ ବୁଢ଼ା ବାହାରକୁ ଚାଲିଗଲେ।

ବୁଢୀ ଖଣ୍ଡିଏ ଛିଣ୍ଡା ଦଉଡ଼ିଆ ଖଟରେ ବସିଲା ପରେ କାଠ ଢାବଲ୍‌ରେ ବସୁ ବସୁ ଜୟଦେବ ପଚାରିଦେଲେ, 'ମିଷ୍ଟର ରହମାନ୍ କ'ଣ କରନ୍ତି ମାଉସୀ ?'

ବୁଢ଼ୀ ମୁଣ୍ଡ ଟେକି ଜୟଦେବଙ୍କ ଆଡକୁ ଚାହିଁଲେ। ମନେହେଲା ପ୍ରଶ୍ନ ପଚାରି ଜୟଦେବବାବୁ ତାଙ୍କୁ ବିଚଳିତ କରିଦେଇଛନ୍ତି। ଛଳଛଳ ଆଖିରେ ବୁଢ଼ୀ କହିଲେ - 'ରହମାନ୍ ବେଟାକୁ ତ ଆଲ୍ଲା କେଉଁକାଳରୁ ତାଙ୍କ ପାଖକୁ ନେଇଗଲେଣି ବାବା...'

କ'ଣ କହିବେ କିଛି ବୁଝି ନ ପାରି ହିଁ ଜୟଦେବ ଆପଣାଛଏଁ ପଚାରି ଦେଇଥିଲେ, 'କଣ ହୋଇଥିଲା ମାଉସୀ ?'

ବୁଢ଼ୀ କିଛି କାଳ ତୁନି ହୋଇ ରହିଗଲା। ପରେ ଧୀରେ ଧୀରେ କହିଲେ, 'କାହିଁ କେଉଁ କାଳର କଥା ବାବା ! ସେତେବେଳେ ହିନ୍ଦୁସ୍ଥାନର ଆଜାଦୀ ପାଇଁ ବାପୁଜୀ ସାରା ହିନ୍ଦୁସ୍ଥାନକୁ ଜଗାଇ ଦେଇଥାଆନ୍ତି। ରାମଚନ୍ଦ୍ରଜୀଙ୍କ ସମୁଦ୍ର ବନ୍ଧନବେଳେ ଗୁଣ୍ଡୁଚି ମୂଷାଟିଏ ବି ସାହାଯ୍ୟ କଲାପରି ତମ ମଉସା ଆଉ ବେଟା ରହମନ୍ ବି ବାପୁଜୀଙ୍କ

ପଛରେ ଥିଲେ। ସେତେବେଳେ ହିନ୍ଦୁ କିଏ ମୁସଲମାନ କିଏ ଜାଣିବା ବି ମୁସ୍କିଲ - ସମସ୍ତେ ଭାଇ ଭାଇ - ହିନ୍ଦୁ ଯୁବକମାନେ ତାଜିଆ ବୋହିବେ ତ ମୁସଲମାନ ଯୁବକମାନେ ବୋହିବେ ଦୁର୍ଗା ମେଢ଼। ଅବସ୍ଥା ଅସମ୍ଭାଳ ହେଉଥିବା ଜାଣି ଖଳ ଶକୁନିମାନେ ଭାଇଙ୍କୁ ଭାଇଙ୍କ ଭିତରେ ଲଗେଇଦେଲେ। ଭାରତ ଭୂଇଁରେ ପୁଣି ଥରେ ଦେଖାଦେଲା କୁରୁକ୍ଷେତ୍ର ଯୁଦ୍ଧର ନୂଆଁ କାହାଣୀ। ଆଜି ଶୁଣାଗଲା ନମାଜ ପଢ଼ିଲାବେଳେ ହିନ୍ଦୁମାନେ ଗୀତ ଗାଇ ଗାଇ ମସ୍‌ଜିଦ ସାମ୍ନାରେ ଯାଉଛନ୍ତି ତ, ତା ଆରଦିନ ଶୁଣାଗଲା ମନ୍ଦିରବେଢ଼ାରେ ଗୋମୁଣ୍ଡ। କଜିଆରୁ ମାର୍‌ପିଟ ଛୁରୀ ଭୁଷାଭୁଷି।'

ବୁଢ଼ୀ ମୁଣ୍ଡଟେକି ଅନାଇଥିଲେ ପାଚେରି ଫାଙ୍କ ଦେଇ ଦେଖାଯାଉଥିବା ଦିଗ୍‌ବଳୟ ଆଡ଼କୁ - ଆଉ ଧୀରେ ଧୀରେ ବଖାଣୁ ଥିଲେ ସେ କାହାଣୀ। କହିଲେ - ଏମିତି ହେଉଥାଏ ମିରଟ୍‌ରେ। ଗୋଟାଏ ପାଖରେ ହିନ୍ଦୁମାନେ ଠେଙ୍ଗା ତଲବାର ଧରି ବାହାରିଛନ୍ତି ମୁସଲମାନମାନଙ୍କୁ ମାରିବେ ବୋଲି - ତେଣୁ ସେମିତି ବାହାରିଛନ୍ତି ମୁସଲମାନମାନେ। ସମସ୍ତେ କ୍ରୋଧରେ ଅନ୍ଧ। ସେଇ କ୍ରୋଧକୁ ଶାନ୍ତ କରିବେ ବୋଲି ରହମାନ ଆଉ ତାର କେତେ ସାଥୀ ଧାଇଁଥିଲେ ସେ ନିଜ ଭାଇମାନଙ୍କ ଛୁରାମାଡ଼ ଖାଇ ଟଳିପଡିଲେ। ରହମାନ ସେ ଯେ ଶୋଇଗଲା, ଆଉ ଉଠିଲାନି ବାବା। ସେ ଦିନରୁ ତମ ମଉସାଙ୍କ ମୁଣ୍ଡ ଟିକିଏ କେମିତି ହୋଇଯାଇଛି। ଦିନେ ହେଲେ ରହମନ୍ ପାଇଁ ଆଖିରୁ ଟୋପାଏ ଲୁହ ଢାଳିନାହାନ୍ତି। କହନ୍ତି - "ବେଟା ରହମାନ୍ ଦେଶ୍ କେ ଲିଏ ଆପନି ଜାନ କୁରବାନୀ କରିଦେଲା ଆଉ ମୁଁ କାନ୍ଦିବି ? ସେ ଦିନରୁ ସମସ୍ତେ ତାଙ୍କ ବେଟା। ତମକୁ ବି ବେଟା ବୋଲି ଡାକିଲେ କିଛି ମନେକରିବନି ବାବା।"

'ମୁଁ ଜାଣି ନ ଥିଲି ମାଉସୀ, କ୍ଷମା କରିବ' କହି ଜୟଦେବ ପଚାରିଲେ, 'ମାଉସୀ ତମେ ଏମିତି ଅବସ୍ଥାରେ ରହୁଛ - ଚଳୁଛ କେମିତି ସ୍ୱାଧୀନତା ସଂଗ୍ରାମୀମାନଙ୍କର ପେନ୍‌ସନ ତ ମିଳୁଥିବ ?'

ବୁଢ଼ୀ ଜୟଦେବଙ୍କ ଆଡକୁ ଅନାଇଲେ। ମୁହଁରେ ଉଦାସ ଛନ ଛନ ଭାବ। 'ଚାରିଆଡେ ଆମ ପୁଅଝିଅ - ନାହିଁ କଲେ ବି ନାନା ଜିନିଷ ଦେଇଯାଆନ୍ତି - କିଛି ଅଭାବ ପଡ଼େନି' କହି ଥିରି ଥିରି କହିଲେ - 'ମଉସାଙ୍କ ଆଗରେ ପେନ୍‌ସନ କଥା ପଚାରିବନି ବାବା - ବିଗିଡ଼ିଯିବେ। ସେ ସବୁବେଳେ କହନ୍ତି - ଭୈୟା ଶ୍ରଦ୍ଧାନନ୍ଦ, ବେଟା ରହମାନ୍ ଆଉ ତାଙ୍କ ସାଙ୍ଗସାଥୀମାନେ ଦେଶ ପାଇଁ ଜାନ ଦେଲାବେଳେ ଆମେ ଡରପୋକ ସବୁ ଜେଲ୍‌ରେ ଖାଇ ପିଇ ଆରାମରେ ଥିଲୁ, ଏବେ ସେମାନଙ୍କ କୁରବାନୀକୁ ବିକି ଭାଙ୍ଗି ଖାଇବୁ ?'

'ଦିନବେଳେ କ'ଣ କର ମାଉସୀ ?'ର ଜବାବ୍‌ରେ ବୁଢ଼ୀ କହିଲେ... 'ଆମର ଏବେ ଆଉ କି କାମ ବାବା - ଏଇ କାହା ଘରେ ଦୁଃଖ କଷ୍ଟ ପଡିଛି ଶୁଣିଲେ ଯାଇ ମୁଣ୍ଡରେ ପିଠିରେ ମାରିଦେଇ ଆସୁଁ।'

- "ମଉସା ବି ?"

'ତାଙ୍କୁ ତ ସମୟ ମିଳେନି ବାବା ! ସେ ହସ୍‌ପିଟାଲମାନଙ୍କୁ ବି ରୋଗୀଙ୍କ ପାଖରେ ବସିବା ପାଇଁ ଯାଆନ୍ତି - ଏଇ କବରଖାନାମାନ ସଫାଇ କରନ୍ତି - କେବେ କେଉଁଠି ଛୁଆଙ୍କୁ ପଢ଼ାଇ ବସନ୍ତି ତ କେବେ କେଉଁ ଆଖଡ଼ାଘରେ ପଶି କୁସ୍ତିକସରତ୍ ବି ଶିଖାନ୍ତି। ଖାଲି ଘୁରି ବୁଲୁଥାଆନ୍ତି। ମୁଁ ତ ସେଥିପାଇଁ ସବୁବେଳେ ଡରୁଥାଏଁ ବାବା - କାହିଁ କେଉଁଠି ଟଳିପଡ଼ିବେ। ଭାଗ୍ୟକୁ ଘରକୁ ଆସିଲା ବେଳେ କେହି ନା କେହି ସଂଗରେ ଆସନ୍ତି। ବେଳେବେଳେ ଏକା ସଙ୍ଗରେ ୩-୪ ଜଣ ଘର ଭିତରକୁ ପଶି ଆସିଲେ ମୁଁ ଡରିଯାଏଁ - ଭାବେ କାଳେ ତମ ମଉସାଙ୍କୁ କେଉଁମାନେ ବୋହି ଆଣିଛନ୍ତି। ଖୋଦା ମୋତେ ଆଗ ନେଇ ଯାଆନ୍ତେ କି ବାବା - ଏମିତି ଚିନ୍ତାକରିବାକୁ ପଡ଼ନ୍ତାନି।'

ମଉସାଙ୍କୁ ତେବେ କିଏ ଦେଖିବ ମାଉସୀ' କହିଲାବେଳେ ମିଷ୍ଟର ଆନ୍‌ସାରୀ ଦି'ଟା ନାନ୍‌ଖଟାଇ ସାଙ୍ଗକୁ ଗୋଟାଏ ବଡ଼ ମଗରେ ମଗେ ଚା' ନେଇ ଆସି ପହଞ୍ଚି ଯାଇଥିଲେ। ପଛରେ ଆଉ ଜଣେ କେହି ଥାଳିଆ ଗୋଟାକରେ କିଛି ସିଙ୍ଗଡ଼ା ଆଉ ନମ୍‌କିନ୍ ନେଇ ଆସିଥିଲା । ଛିଣ୍ଡା ଖଟରେ ବସିଯାଇ ମିଷ୍ଟର ଆନ୍‌ସାରୀ କହିଲେ - "ରହମାନ୍ କି ମା, ଦେନା ନାନ୍ ଖଟାଇ, ଚା' ଆଉ ଏ ନମ୍‌କିନ୍ ଜୟଦେବ୍‌ବାବୁଙ୍କୁ।"

ଜୟଦେବବାବୁଙ୍କ କଣ୍ଠ ବାଷ୍ପରୁଦ୍ଧ ପରି ଲାଗୁଥିଲା ସେ କିଛି ଉତ୍ତର ଦେବା ପୂର୍ବରୁ ବୁଢ଼ୀ କହିଲେ - 'ଖାଓନା ବେଟା... ଖାଇଏ ନା ଜୟଦେବବାବୁ। ଆମ ହିନ୍ଦୁସ୍ଥାନରେ କେହି ଭଲ କରି ଖାଆନ୍ତିନି - ତଗଡ଼ା ହେବେ କେମିତି କୁହନ୍ତୁ ତ ! ସେଥିପାଇଁ ବାହାରୁ ଯିଏ ଶହେଟି ଘୋଡ଼ସବାର ବି ନେଇ ଆମ ହିନ୍ଦୁସ୍ଥାନରେ ପହଞ୍ଚିଯାଏ ସେ ଆମ ଦେଶକୁ ମାଡିବସେ।'

ନାନ୍‌ଖଟାଇ ଛିଣ୍ଡାଇ ଚା' ସଙ୍ଗରେ ଖାଉଁ ଖାଉଁ ଜୟଦେବ କହିଲେ - 'ମୋତେ ବେଟା କହିଲେ ଆପଣଙ୍କୁ କିଛି ଖରାପ ଲାଗୁଛି କି ମଉସା ଯେ ଏମିତି ଜୟଦେବ ବାବୁ ବୋଲି ଡାକୁଛନ୍ତି ?' ସେ କଥାରେ ବୁଢ଼ାଙ୍କ ହସ କବରଖାନାକୁ ଥରାଇଦେଇଥିଲା। ପାଟି କରି କହିଲେ - "ଏ ରହମାନ୍ କି ମା ଶୁଣଛ... ?"

ଆନ୍‌ସାରୀ ମଉସାଙ୍କ କଥା ଶୁଣିଲା ବେଳେ ସମୟ ସତରେ ଜୟଦେବଙ୍କ ପାଇଁ ସ୍ଥିର ହୋଇ ଯାଇଥିଲା। ଅନେକ ବେଳ ପରେ ସେ ଜାଣିପାରିଲେ ଯେ ରାତି ବେଶି

ହୋଇଗଲାଣି। ଘରକୁ ଫେରିଲା ବେଳେ ମିଷ୍ଟର ଆନ୍‌ସାରୀ ବି ଅରବିନ୍ଦ ମାର୍ଗକୁ ଆସିଥିଲେ। ମାର୍ଗ ପ୍ରାୟ ଶୁନ୍‌ଶାନ୍ । ସ୍କୁଟର ରିକ୍‌ସାଟିଏ ଯାଉଛି ଦେଖି ମିଷ୍ଟର ଆନ୍‌ସାରୀ ତା' ଉଦ୍ଦେଶ୍ୟରେ ହାତ ଟେକିଥିଲେ। ସ୍କୁଟର କିଛି ଦୂର ଆଗେଇ ଯାଇଥିଲା; କିନ୍ତୁ ଅଟକାଇ ନେଇ ପଛକୁ ବ୍ୟାକ୍ କରିଆଣି 'ସଲାମ୍ ଚାଚାଜୀ' କହୁଁ କହୁଁ କହିଲା – 'କ୍ୟା ହୁକୁମ ଚାଚାଜୀ!'

ରିକ୍‌ସାଚାଳକକୁ ଚିହ୍ନିପାରି ବୁଢ଼ା କହିଲେ, "ବେଟା ହରବିନ୍ଦର, ନେଏତ ବେଟା ଜୟଦେବକୁ – ତା' ସାଜାହାନ ରୋଡ଼ରେ ଛାଡିଦେବୁ'।

ଦାଢିଆ ହରବିନ୍ଦରର ସ୍କୁଟରରେ ବସୁ ବସୁ, ଜୟଦେବ ପଚାରିଥିଲେ, 'ମଉସା, ମାଉସୀଙ୍କୁ ନେଇ ମୋ'ଘରକୁ ଥରେ ଆସିବେତ?'

'ଆସିବି ବେଟା, ଜରୁର୍ ଆସିବି' – ଭିତରେ ହରବିନ୍ଦର ସ୍କୁଟର ଛାଡିଦେଇଥିଲା।

ଘରେ ପହଞ୍ଚିଲା ପରେ ଜୟଦେବ ଯେତେବେଳେ ଗାଡ଼ିର ମିଟର ଦେଖି ବସିଲେ 'ଆନ୍‌ସାରୀ ଚାଚାଙ୍କ ମେହମାନ୍ ପାଖରୁ ମୁଁ ପଇସା ନିଏନି' କହି ଅଟୋ ଡ୍ରାଇଭର ଗାଡି ଛାଡିଦେଇଥିଲା। ଆଶ୍ଚର୍ଯ୍ୟଭରା ଆଖିରେ ଗାଡିର ପଛପଟକୁ ଜୟଦେବ ଅନାଇ ରହିଥିଲେ। ଗାଡି ପଛର ଲାଲ ଆଲୁଅ ଧୀରେ ଧୀରେ ଦୂରରେ ମିଳାଇଯାଉଥିଲା।

# ଶିଶୁମାନଙ୍କ ବିରୁଦ୍ଧରେ

କେହି କେହି ହୁଏତ କହିବେ ଯେ ବିଗତ ଫଳପୁଷ୍ପ ପ୍ରଦର୍ଶନୀ ଦିନର ଅପ୍ରୀତିକର ଘଟଣା ପରେ ହିଁ ମୁଁ ଶିଶୁମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲି। ସେମାନଙ୍କର ସେପରି ଧାରଣା ଭ୍ରାନ୍ତ କିମ୍ବା ଅମୂଳକ ବୋଲି କୁହାଯାଇ ନ ପାରେ। ତଥାପି ଏହି ପରାନ୍ନଭୋଜୀମାନଙ୍କ ବିରୁଦ୍ଧରେ ମୋର ମାନସିକ ବିସ୍ଫୋରଣ ତଥା ବାଚସିକ ଉଦ୍‌ଗୀରଣର କାରଣ ସଂପୂର୍ଣ୍ଣରୂପେ ଜାଣିବାକୁ ହେଲେ ମୋ ଅବସରକାଳୀନ ଘଟଣାପ୍ରବାହକୁ ମଧ୍ୟ ଅନୁଧ୍ୟାନ କରିବାକୁ ପଡ଼ିବ।

ସରକାରୀ ଚାକିରିରୁ ଅବସର ନେବା ଦିନ ଯେତେ ପାଖେଇ ଆସୁଥାଏ ମନରେ ମୋର ଦେଖା ଦେଉଥାଏ ସେତିକି ଦ୍ୱନ୍ଦ୍ୱ। ଗୋଟାଏ ଦିଗରେ ସାନ୍ତ୍ୱନା ଯେ ନିତିଦିନିଆ ଘଣା ପେଲାରୁ ଏଥର ଅବ୍ୟାହତି ମିଳିବ। ଖରା ନାହିଁ, ବର୍ଷା ନାହିଁ ସବୁ ଦିନ ସେଇ ଦଶରୁ ଚାରି। ମଝିରେ ଖାଲି ଚା' କପେ - ବାସ୍। ସେତକ ବି ବେଳେବେଳେ ମିଳେନି। ଏଥର ଆରାମ ହିଁ ଆରାମ୍ । ଯେତେ ଶୋଇବ ଶୁଅ। ଥରକୁ ଥର ଘଣ୍ଟା ଆଡିକି ମୁହଁ ବୁଲାଇବା ଦରକାର ନାହିଁ କି ନଅଟା ପଇଁଚାଳିଶ ବେଳକୁ ପେଣ୍ଟ ପିନ୍ଧିଲା ବେଳେ ଅଥବା ଦେହରେ ସାର୍ଟ ଗଳାଇଲା ବେଳେ କେଉଁ ଅଖାଡୁଆ ସ୍ଥାନର ବୋତାମ ନାହିଁ ବୋଲି ପାଟିତୁଣ୍ଡ କରି ଡିଆଁ ଡେଇଁ କରିବା ମଧ୍ୟ ଦରକାର ନାହିଁ । ଧୋତି ପିନ୍ଧିଛ କି ଲୁଙ୍ଗି ପିନ୍ଧିଛ - ପିନ୍ଧିଥାଅ। ସୁଦ୍ଧୁ ଆରାମ । ଦାନ୍ତ ଘଷ ଘଣ୍ଟାଏ - ତା'ପରେ ବସିଯାଅ ଚା' କପେ ଧରି। ସେ କପ୍ ସରିଗଲା ପରେ ପୁଣି ଗୋଟାଏ - ତା'ପରେ ପୁଣି କପେ। ପାଖରେ ଥିବା ଥାଳିଆରେ ଥାଳିଆଏ ଲୁଣିଆ ବିସ୍କୁଟ। ଚା' ସଙ୍ଗରେ ମନ ଇଚ୍ଛା ଚୋବାଉଥାଅ। ବେଳେବେଳେ ଥୁଆ ହୋଇଥିବ ପ୍ଲେଟେ ସରିକି ଦରଦ ଭଜା ଲୁଣିଆ କଜୁବାଦାମ...।

ଏଇ କାଜୁବାଦାମ ମନେପଡିଯାଏ ସେ ଅନ୍ୟ ଦିଗ କଥା । ପେଟ ପେଷିହେଲା ପରି ମନେ ହେବା ସଙ୍ଗେ ସଙ୍ଗେ ମନ ବି କେମିତି ମୋଡ଼ିମାଡି ଚକଟି ହୋଇଯାଏ। ମନେପଡ଼େ କାଜୁବାଦାମର ଦାମ୍। ଚାକିରି କଲାବେଳେ ସିନା ବେତନ ସାଙ୍ଗକୁ ମହଙ୍ଗା ଭତ୍ତା ମାସକୁ ମାସ ମୁଠା ଭିତରକୁ ଆସିଯାଉଥାଏ ବୋଲି ଦରଦାମ କଷ୍ଟ ବିଶେଷ ଜଣାପଡେନି - ଏ ଅବସର ନେବା ପରେ।

ସଂସାର ଭିତରେ ଘର କରିଥିଲେ ପଥର ପଡ଼ିବା ସଙ୍ଗେ ସଙ୍ଗେ ଏ କାଜୁ ବାଦାମର ଦାମ୍ ମଧ୍ୟ ସହିବାକୁ ପଡିବ ସେ କଥା ଜାଣି ଦବିଲା ମନରେ ବାକ୍ସ ପେଡ଼ି କେତେ ରେଳରେ ବୁକ କରିଦେବି ଭାବି ସେଦିନ ବହିପତ୍ର ସଜାଉଛି, ହଠାତ୍ ଗୋଟାଏ ବହି ଉପରେ ନଜର ପଡ଼ିଗଲା। କଲେଜରେ ପଢ଼ିଲାବେଳେ ସେ ଲେଖକ ଭଦ୍ରଲୋକ ଆମକୁ ଯେଉଁ ହଇରାଣ କରିଛନ୍ତି ! କହିଲେ – ଖଣ୍ଡିଏ ପାଞ୍ଚ ପାଉଣ୍ଡିଆ ନୋଟ୍ ପାଇବା ଅପେକ୍ଷା ଗୋଟାଏ ଗୁଲୁଗୁଲିଆ ଶିଶୁର ହସହସ ମୁହଁ ଦେଖିବା ଶ୍ରେୟସ୍କର। ଅଧ୍ୟାପକ ମହାଶୟ ଆଉ କଣ ଛାଡ଼ନ୍ତି ! ଆମକୁ ହରକତ କରିବା ପାଇଁ ତାଙ୍କୁ ଖୋରାକ ମିଳିଗଲା। ପଦକ କଥାକୁ ଲମ୍ବାଇ ସେ ବୁଝାଇବସିଲେ ସାରା ପିରିଅଡ଼ଯାକ । ସାରମର୍ମ ହେଲା ଯେ – ତମେ ସେ ପାଞ୍ଚ ପାଉଣ୍ଡିଆ ନୋଟ୍ ନେଇ କେଉଁ ହୋଟେଲକୁ ଚାଲିଗଲ, କେଉଁ ଥିଏଟର ସିନେମା ଘରେ ପଶିଗଲ, ନୋଟ୍‌ଟା ଯେମିତି ଖତମ, ସାମୟିକ ଆନନ୍ଦ ବି ସେମିତି ଖତମ୍ । କିନ୍ତୁ କୌଣସି ଛୁଆର ହସହସ ମୁହଁଟିଏ ଯଦି ଦେଖିବ, ତମକୁ ମିଳିବ ଅମାପ ଅଶେଷ ଆନନ୍ଦ । ସେ ଆନନ୍ଦ ଅନାବିଳ, ପରମ ଆନନ୍ଦ ଦୀପ୍ତ। ସେ ଆନନ୍ଦ...ଆଉ କଣ ସବୁ କହିଥିଲେ ସେସବୁ ଏବେ ଠିକ୍ ମନେପଡୁନି – ତେବେ ବହୁତ କହିଥିଲେ।

ଏତିକିବେଳକୁ ହିଁ ମୋର ମନେପଡ଼ିଗଲା ଯେ ଆମ ଘରେ ନାତି–ନାତୁଣୀ ମିଶି ପାଞ୍ଚ। ଝିଅର ତିନିକୁ ପୁଅର ଦୁଇ। ଆମେ ଘରକୁ ଗଲାବେଳେ ତ ଝିଅ ବି ଆମକୁ ଦେଖିବାକୁ ଆସିଥିବ। ପାଞ୍ଚଟା ଗୁଲୁଗୁଲିଆ ମୁହଁ । ଗୋଟାଏ ଗୋଟାଏ ମୁହଁ ପାଞ୍ଚ ପାଉଣ୍ଡ ଲେଖା ହେଲେ ପାଞ୍ଚଟା ମୁହଁକୁ ପାଞ୍ଚ ଗୁଣିତକ ପାଞ୍ଚ ସମାନ ପଚିଶ। ପାଉଣ୍ଡେକୁ ଧରିନିଅ ହାରାହାରି ଷୋହଳ ଟଙ୍କା ପଚିଶ । ପଚିଶ ପାଉଣ୍ଡକୁ ହେଲା... ବହି ସଜାଡ଼ିବା ବନ୍ଦ କରି ଯାଙ୍କୁ ଡାକିଲି। କହିଲି – "ଦିନକୁ ଚାରି ଶହ ହେଲେ ମାସକୁ..."

ଇଏ କ'ଣ ବୁଝିଲେ କେଜାଣି, ଉତ୍ତର ଦେଲେ – "ଏମିତି ବହି ସଜାଉଛ ନାଇଁ? ହଅ... ତମେ ଯାହା ସଜାଡିବ ମୁଁ ଜାଣିନି !"

ଯେ ପୁଣି ଆଉ ଗୋଟାଏ ବିପଦ। ମାସକୁ ମାସ ଗୁଡ଼ିଏ ଟଙ୍କା ହାତକୁ ଆସୁଥିଲାବେଳେ ସମସ୍ତେ ଯେମିତି ସଲାମ ବାଡ଼ାଉଥିଲେ, ସେ ଟଙ୍କାତକ ଯାଙ୍କ ହାତକୁ ବଢ଼ାଇ ଦେଲାବେଳେ ଇଏ ବି ସେମିତି ଖାତିର କରୁଥିଲେ। ଏବେ...

X X X

ଯଥାସମୟରେ ମୁଁ ସକୁଟୁମ୍ବେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲି । ଆମ ଘରୋଇ ଷ୍ଟେସନରେ ପହଞ୍ଚିଗଲାବେଳକୁ ଝିଅ ଜୋଇଁ, ପୁଅ ବୋହୂ ସାଙ୍ଗକୁ ପାଞ୍ଚୋଟିଯାକ

ନାତି ନାତୁଣୀ ପ୍ଲାଟଫର୍ମରେ ଜମା ହୋଇଥାଆନ୍ତି । ଇଏ କେଡ୍‌ବରି ଚକୋଲେଟ୍‌ର ପ୍ୟାକେଟ୍ ସବୁ ଧରି ଯେତେବେଳେ ଓହ୍ଲାଇଗଲେ ପ୍ଲାଟଫର୍ମକୁ, ପାଞ୍ଚୋଟିଯାକ ପାଞ୍ଚପାଉଣ୍ଡିଆ ନୋଟ୍ ତାଙ୍କୁ ଘେରିଯାଇ ଖୁସିରେ ଡେଇଁବାକୁ ଆରମ୍ଭ କଲେ । ମୁଁ ବି ଖୁସିରେ ପାଟି ଟିକିଏ ମେଲା କରିଦେଇ ଜିନିଷପତ୍ର ଓହ୍ଲାଇଲି... ଝିଅ ଆଉ ବୋହୂ ମୋତେ ପ୍ରଣାମ କରୁ କରୁ ଏ ଦଳକୁ ବି ପ୍ରଣାମ କରିବାକୁ ଆଦେଶ ଦେଲେ । କିନ୍ତୁ ଚକୋଲେଟ୍ ହାତରେ ନ ଥିବା ଅନୁମାନ କରି କିମ୍ବା ଅନ୍ୟ କୌଣସି କାରଣରୁ ସେ ସମସ୍ତେ ଆଇଙ୍କ ପଣତ ଛାଡ଼ିବାକୁ ଇଚ୍ଛୁକ ନ ଥିଲେ । ଅନୁରୋଧାତ୍ମକ ପୁନଃନିର୍ଦ୍ଦେଶରେ ସେମାନଙ୍କ ଭିତରୁ ଜଣେ ଯେତେବେଳେ ମୋ ଉଦ୍ଦେଶ୍ୟରେ ହାତ ଯୋଡ଼ିଦେଲା, ସବା ସାନ ବୋନି - ଦେଢ଼ବର୍ଷ ବୟସର - ଦି'ହାତ ତଳେ ଥାପି ପାପୁଲିରେ ମୁଣ୍ଡ ଲଦି ଜୁଲୁଜୁଲୁ ପଛକୁ ଅନାଇଁ ମାର୍କଣ୍ଡଙ୍କ ପରି ଜୁହାରିବସିଲା । ହସ ଖୁସିର ଲହର ଭିତରେ ମୁଁ ଆନନ୍ଦରେ ତାକୁ ଯେମିତି କାଖକୁ ଟେକି ନେଇଛି, ସେ ମୋ ଚଷମା ଉପରେ ଏତେ ଚଞ୍ଚଳ ହାତ ମାରିଦେଲା ଯେ, କଣ ଘଟିଲା ସେ କଥା ଜାଣିବା ପୂର୍ବରୁ ହିଁ କାଚ ଟୁକୁଡ଼ା ଭିତରୁ ମୋ ଜୋଇଁ ଚଷମା ଫ୍ରେମ୍‌ଟିକୁ ଉଦ୍ଧାର କରିଆଣି ମୋତେ ଧରାଇଦେଇଥିଲେ । 'ଦୁଷ୍ଟଙ୍କୁ ଭଲ ବାଟକୁ ଆଣିବା ପାଇଁ ଉପଯୁକ୍ତ ଶାସ୍ତି ହିଁ ପ୍ରକୃଷ୍ଟ ପନ୍ଥା'ରେ ବିଶ୍ୱାସୀ ମୁଁ ଯେତେବେଳେ ତା ଗାଲକୁ ଟାଣିବି ନା ନାହିଁ ଭାବୁଛି, ସେ ଭୟଙ୍କର ଚିତ୍କାର କରି କାନ୍ଦିବାକୁ ଆରମ୍ଭ କରିଦେଲା । ବୋହୂ ଛୁଆଟିକୁ ତା' କାଖକୁ ନେଇ ଯାଉଁ ଯାଉଁ ଝିଅ ଆଉ ଜୋଇଁ ମୋ ଆଡିକି ଯେମିତି ଅନାଇଲେ, ମୋର ମନେହେଲା ସବୁ ଦୋଷ ମୋର । ମୁଁ ସିନା ଆଗରୁ ଚଷମାଟିକୁ ପକେଟରେ ଭର୍ତ୍ତି କରି ସେ ଶୟତାନକୁ ତଳୁ ଟେକିଥାଆନ୍ତି । ଆଗରୁ ତ ମୁଁ ଅନେକ ଥର ଶୁଣିଛି, ଏ ଝିଅ ଜୋଇଁ ପୁଅ ବୋହୂ ତାଙ୍କ ଭିତରେ ଗପ କଲାବେଳେ ଆମ ଜେନେରେଶନ ସମ୍ବନ୍ଧରେ କଣ ସବୁ ମନ୍ତବ୍ୟ ଦେଉଥାଆନ୍ତି - ପରିହାସ କରି କହନ୍ତି - "ଆଗ କାଳର ଲୋକ ମନସ୍ତତ୍ତ୍ୱର ମ ଅକ୍ଷର ବି ଜାଣନ୍ତିନି - ଛୁଆଙ୍କୁ ଖାଲି ଗାଳି ଆଉ ମାଡ - ଛୁଆ କାନ୍ଦୁଛି ତ ତା'ପେଟ ପୂରିଛି ନା ନାହିଁ ନ ବୁଝି ଦିଅ ଅଫିମ ଟେଳାଏ ଖୁଆଇ ଯେ ସେ ଶୋଇଥାଉ ଦିନଯାକ - ସବୁ କଥାରେ ଶସନ - ସେଟାକୁ ଛୁଉଁନା, ସେ ଆଡିକି ଯାଆନା, ଖବରଦାର, ତହିଁରେ ଯଦି ହାତ ଦେଇଛୁ... ଖାଲି ହାଁ-ହାଁ-ହାଁ । ଛୁଆମାନେ ଏମିତି କଟକଣା ଭିତରେ ମଣିଷ ହେବେ କେମିତି ? ଦେଖିଆସ ଜାପାନକୁ ।" ମୁଁ ଜିନିଷପତ୍ର ବାହାରକୁ ନେବା ପାଇଁ କେତେଜଣ କୁଲି ଦରକାର ସେ ଆଡିକି ବାଧ ହୋଇ ମନଦେଲି । ମନ କିନ୍ତୁ ଭିତରେ ଭିତରେ କୁହୁଳୁଥାଏ - ତା'ବୋଲି ଚଷମାଟିଏ ଭାଙ୍ଗିଦେଲା - କେହି କିଛି କହିବେନି ! ନିଆଁ ସାଙ୍ଗରେ ଖେଳିବାକୁ ଗଲେ ଯେମିତି ଆଗରୁ ହୁସିୟାର ହେବା କଥା, ନଇଲେ ପୋଡିଗଲେ

ନିଆଁର କିଛି ଦୋଷ ନାହିଁ, ସେମିତି ନା! ରାସ୍କେଲ କୋଉଠିକାର - ଚାପୁଡ଼ାଟିଏ ପଡିଥିଲେ ଶିଖିଥାଆନ୍ତା। ଭାଗ୍ୟକୁ ଆଉ ସ୍ପେଆର୍ ଚଷମା ଅଛି ନା କଣ - ନ ହେଲେ ଚଷମା ଫ୍ରେମ୍‌ରେ କାଚ ଲଗାଇବାଯାଏ ଅନ୍ଧ ହୋଇ ରହିବା କଥା।

ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ ମୋ ନୂତନ ରିଟାୟାର୍ଡ ଜୀବନ ବେଶ୍ ଉପଭୋଗ୍ୟ ହୋଇଉଠିଥିଲା। ଝିଅ ଆଉ ବୋହୂ ଦିହିଁଙ୍କି ଦିହେଁ ସତେ ଯେମିତି ଆମର ସେବା କରିବାପାଇଁ ଚାହିଁ ରହିଥିଲେ। କିଛି ମାଗିବାକୁ ପଡେନି। ମନ ଜାଣିଲା ପରି ଯାହା ଯେତେବେଳେ ଦରକାର, ସାମନାରେ ଥୁଆହୋଇଯାଏ। ଜୀବନର ନାନାଦି ଅନୁଭୂତି ନେଇ ମୁଁ ଅବଶ୍ୟ ବେଳେବେଳେ ଆଶଙ୍କା କରୁଥିଲି ଯେ, ଏମାନଙ୍କର ଏ ସେବାମନୋବୃତ୍ତି ହୁଏତ ସାମୟିକ। ଆମ ରିଟାୟାର୍ଡ ଜୀବନ ଚିରଦିନ ଏତେ ସରଳ ଆଉ ଚିକ୍‌କଣିଆ ହୋଇପାରେନା। ତଥାପି...

କିଛି ଦିନ ଭିତରେ ହିଁ ମୁଁ ଏ ପଞ୍ଚ କୁଳାଙ୍ଗାରଙ୍କ ପକ୍ଷପାତୀ ବିଚାର ଏବଂ ପାତର ଅନ୍ତର ନୀତି ସମ୍ବନ୍ଧରେ ସଚେତନ ହୋଇପଡିଥିଲି। ସକାଳେ କିମ୍ବା ସନ୍ଧ୍ୟାରେ ଚା' କପ୍ ସହ ଲୁଣିଆ ବିସ୍କୁଟ୍ ଅଥବା ସେପରି କିଛି ଯେତେବେଳେ ମୋ ପାଖରେ ପହଞ୍ଚିଯାଏ, ଏମାନଙ୍କ ପୁରା ବେଟାଲିଏନ୍ ମୋ ପାଖରେ ପହଞ୍ଚି ସେଥିରେ ଭାଗ ବସାନ୍ତି। ଯେହେତୁ ତାହା ଅତ୍ୟନ୍ତ ସ୍ୱାଭାବିକ, ମୁଁ ତହିଁରେ କିଛି ମନେକରେନି - ବରଂ ସେ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ପାଇଁ ଆନନ୍ଦିତ ହୁଏ । କିନ୍ତୁ ତାଙ୍କ ଆଈ ଯେତେବେଳେ ପାନପେଡ଼ି ବାହାର କରି ଗୁଆ କାଟି ବସନ୍ତି, ଏ ପଙ୍ଗପାଳଦଳ ଯିଏ ଯେଉଁଠି ଥିଲେ ବି 'ଆଈ...ପାନ...'କହି ତାଙ୍କ ପାଖକୁ ଦଉଡ଼ିଯାଆନ୍ତି। ବୋନି ଆଉ ନୀଲୁ ପାନ  ଶବ୍ଦ ଭଲ କରି ଉଚ୍ଚାରଣ କରି ପାରୁ ନଥିଲେ ହେଁ - 'ପାଆଁ...ପାଆଁ' ହୋଇ ଧାଇଁଲାବେଳେ କଚଡ଼ା ଖାଇ ବି ଆଈଙ୍କ ପାଖରେ ହାଜର ହୁଅନ୍ତି। ମୋ ଆଡ଼ିକି କାହାରି ନଜର ବି ପଡ଼େନି। ଆଈ ଯେତେବେଳେ ସେମାନଙ୍କ ପାଟିରେ ଗୋଟାଏ ଲେଖାଏଁ ମିଠା ବାସନା ଲକ୍ଷ୍ମୀବିଳାସ ଟେବ୍‌ଲେଟ୍ ଭର୍ତ୍ତି କରିଦିଅନ୍ତି, ସେତେବେଳେ ସେମାନଙ୍କ ଆନନ୍ଦ ଦେଖେ କିଏ! ଆଉ ଆଈ ଯଦି କେତେବେଳେ ପାନପତ୍ର ଟିକିଏ ଛିଣ୍ଡାଇ ଛୋଟ ପାନ ଖିଲେ ତିଆରି କରି ତାଙ୍କ ପାଟିରେ ଗୁଞ୍ଜି ଦିଅନ୍ତି ତେବେ ତ ଛାଡ... ସେମାନେ ଆନନ୍ଦରେ ଘରଯାକ ଡିଆଁ ମାରି ବୁଲନ୍ତି। ଘରର ସମସ୍ତଙ୍କୁ ଆଁ କରି ସେ ପାନଖିଲ ଦେଖାନ୍ତି, ଆଉ ବିଶେଷ କରି ମୋତେ ଖତେଇହେବା ଢଙ୍ଗରେ ପାଟିରୁ ପାନ ବାହାର କରିଦେଇ 'ଖା...ଖା...' କହି ମୁଁ ହାତ ବଢ଼ାଇଲାକ୍ଷଣି ପୁଣି ନିଜ ପାଟିରେ ଭର୍ତ୍ତି କରି ଦିଅନ୍ତି।

ରିଟାୟାର୍ଡ ଜୀବନର ପ୍ରାରମ୍ଭରେ ହିଁ ମୁଁ ଅନୁମାନ କରିନେଇଥିଲି ଯେ, ଆଈ ଆଉ ଏ ଚଣ୍ଡାଳଙ୍କ ଭିତରର ବନ୍ଧୁତ୍ୱ ଧୀରେ ଧୀରେ ଗଭୀରରୁ ଗଭୀରତର ହୋଇ

ଚାଲୁଥିଲା ବେଳେ ସେମାନଙ୍କ ସାଙ୍ଗରେ ମୋର ସମ୍ବନ୍ଧ ସାମାନ୍ୟ ତିକ୍ତ ହୋଇପଡୁଛି। ମୋ ପଢ଼ିବା ବହି ଚିରିଦେବା, ଲେଖା ଖାତାରେ ଏଆଡୁ ସେଆଡୁ କିଛି ଗାରେଇଦେବା, ମୋ ବିଛଣାକୁ ଆବୁଡୁ ଜାବୁଡୁ କରିଦେବା ପ୍ରଭୃତିରେ ଏମାନଙ୍କୁ କେହି ଉସୁକାଉଥିଲା ପରି ବି ମୋର ମନେହେଉଥିଲା। କୌଣସି ବନ୍ଧୁ ବୁଲିବାକୁ ଆସିଲେ ଏମାନେ ଆମକୁ କିଛି ଭଲ କରି କଥା କୁହାଇ ବି ଦେଉନଥିଲେ ଯଦିଓ ଆଇଙ୍କ ବନ୍ଧୁ ଆସିଲେ ସେମାନଙ୍କ ସଙ୍ଗରେ ଏମାନେ ସିଧାସଳଖ ଦୋସ୍ତ ବନିଯାଉଥିଲେ।

ସେଦିନର କଥା। କେତେଜଣ ରିଟାୟାର୍ଡ ବନ୍ଧୁ ଆମ ଘରକୁ ବୁଲିବାକୁ ଆସିଥାଆନ୍ତି। ଆମେ ସବୁ ହାତରେ ଚା' କପେ ଲେଖା ଧରି ମଝି ଟେବୁଲରୁ କିଏ କେମିତି ବିସ୍କୁଟ୍ ଖଣ୍ଡିଏ ଲେଖା ଉଠାଇ ନେଉଛୁ, ରୀତି ଆସି ମୋ କପ୍‌ରୁ ଚା' ପିଇବ ବୋଲି ମୋ କପ୍ ଧରି ହାତକୁ ନିଜ ପାଟି ଆଡିକି ଟାଣିନେଇଗଲା। ଗରମ ଚା' ପୂରାପୂରି ଢାଳିହୋଇଗଲା ମୋ ସାର୍ଟ ଆଉ ଟ୍ରାଉଜରରେ । ମୁଁ ଠିଆ ହୋଇ ଯାଇ ଘରଯାକ ଡେଇଁ ବୁଲିଲି।

ଏମାନଙ୍କ ଶୃଙ୍ଖଳାଜ୍ଞାନର ଅଭାବକୁ ଲକ୍ଷ୍ୟ କରି ମୁଁ ଯେତେବେଳେ କହିଲି - 'ଦେବି ଗୋଟାଏ ଚାପୁଡ଼ା ଯେ ମଜା ବାହାରିଯିବ' ସେ କାନ୍ଦିଥିଲା ଘଣ୍ଟାଏ। ସେତେବେଳେ ଚଣ୍ଡାଳଙ୍କ ଭିତରୁ କେହି ଜଣେ 'ବଦ୍‌ମାସ୍ ଦାଦା' ବୋଲି ଟିପ୍‌ପଣୀ କାଟିଥିବା ମୁଁ ମୋ କାନରେ ଶୁଣିଛି।

ଆଉ ଦିନେ ଦେଖିଲି ମୋ ତକିଆକୁ ଜଣେ ପୁଅ କରି ଧରି ବୁଲୁଛି। ମୋର ବାରଣ ସତ୍ତ୍ୱେ ପୁଅ 'ଗ' କରିଛି କହି ମଗ୍‌ରେ ମଗେ ପାଣି ଆଣି ତକିଆ ଉପରେ ଢାଳିଦେଲା ଆଉ ତାକୁ ପୋଛିବସିଲା। ଆଇ ଏ କଥା ନିଜ ଆଖିରେ ଦେଖିଲେ - ତଥାପି ରାଗିବେ କଣ, ଖୁସିରେ ହସି ହସି ଦୋହଲିଗଲେ। ଆମକୁ ସେବା କରିବା ମନୋବୃତ୍ତି ନେଇ ଝିଅ କିମ୍ବା ବୋହୂ ମଧ୍ୟ କୌଣସି କଟକଣା କରୁ ନ ଥିଲେ।

ଧୀରେ ଧୀରେ ମୋର ମନେହେଉଥିଲା ଯେ, ଏମାନଙ୍କ ବେଖାତିର ମନୋଭାବକୁ ପ୍ରୋତ୍ସାହନ ଦେବାରେ ତାଙ୍କ ଆଇଙ୍କ ଅବଦାନ ମଧ୍ୟ ଥିଲା ଯଥେଷ୍ଟ। ପ୍ରୋଟନ୍‌ର ଚାରିଆଡେ ଇଲେକ୍‌ଟ୍ରନସବୁ ଘୂରି ବୁଲିଲା ପରି ଆଇଙ୍କ ପଣତ ଚାରିପଟେ ଅନବରତ ଘୂରିବୁଲୁଥିଲେ ଏ ଉଚ୍ଛୃଙ୍ଖଳ ଦଳ । 'ଆଉ ନାହିଁ, ଆଉ ନାହିଁ' କହି ଆଈ ବାହାର କରୁଥିଲେ ନାନା ସ୍ଥାନରୁ ମୁଠା ମୁଠା ଚକୋଲେଟ୍ ଏମାନଙ୍କ ପାଇଁ; ଆଉ ସଞ୍ଜ ନ ହେଉଣୁ ଥାଳିଏ ଭାତ ସାଙ୍ଗକୁ କିଛି ଡାଲି ଆଉ ଆଳୁଚକଟା ଧରି ଆରମ୍ଭ କରିଦେଉଥିଲେ ତାଙ୍କର ଅସରନ୍ତି ଗପ।' ଭାଲୁ ଗପ କିଏ ଶୁଣିବ, ଭାଲୁ ଗପ ?' କହିଲାକ୍ଷଣି 'ମୁଁ ମୁଁ' କହି ଏ ସମସ୍ତେ ଭିଡ଼ିଯାଉଥିଲେ ତାଙ୍କ

ଚାରିଆଡେ। ଭାତଗୁଣ୍ଡା ଧରି ଗପ ଆରମ୍ଭ ହୋଇଯାଉଥିଲା। କେବେ କିଏ ହେଉଥିଲେ ଗପର ନାୟକ କିମ୍ବା ନାୟିକା। ଯେଉଁଦିନ ରୀତି ହେଉଥିଲା ନାୟିକା ସେ କହୁଥିଲେ - 'ଆମ ରୀତି ତ ଭାରି ସାହସୀ, ଜଙ୍ଗଲ ଭିତରକୁ ପଶିଗଲା ଏକଲା ... ଚଢ଼େଇ ଚିଁ ଚିଁ କରୁଛନ୍ତି। ହନୁ ମାଙ୍କଡ଼ ଡାକୁଛି ଉଁ ଉଁ ... ଆଉ ବାଘ ରଡୁଛି 'ହାଁଉ..ହାଁଉ' କେମିତି କି? ପ୍ରଶ୍ନରେ ସମସ୍ତେ 'ହାଁଉଁ... ହାଁଉଁ' କହିଲା ବେଳେ ପାଟିମାନଙ୍କରେ ଭାତଗୁଣ୍ଡାମାନ ପଶିଯାଉଥିଲା। ଏଣେ ରୀତି ତାର ଚାଲିଛି ଜଙ୍ଗଲ ଭିତରେ, 'ମୁଁ ଭାରୀ ସାହସୀ ନା ଆଇ?' ପ୍ରଶ୍ନର ଉତ୍ତରରେ 'ହଁ, ଆମ ରୀତି ସାହସୀ - ଆଁ କର ଆଁ କର' ଉତ୍ତର ଦେଇ ଗୁଣ୍ଡା ଠୁସି ଦେଉଥିଲେ ଆଈ।

'ଜଙ୍ଗଲ ଭିତରେ ଗୋଟାଏ ଘର - ସୁନ୍ଦର ଟିକି ଘର - କେତେ ସୁନ୍ଦର ସୁନ୍ଦର ଫୁଲ! ରୀତି କବାଟରେ ଠକ୍ ଠକ୍ କଲା। ଭିତରୁ କିଛି ଉତ୍ତର ନାହିଁ‌ବାଟ କିନ୍ତୁ ଖୋଲା। ରୀତି କଣ ଡରିବା ପିଲା? ପାଟି ମେଲା କର - ଏଇ ଗୁଣ୍ଡାଟାଏ ତ - ଭିତରେ ରୀତି ଘର ଭିତରକୁ ପଶି ଦେଖିଲା ଗୋଟାଏ ଟେବୁଲ ସଜା ହୋଇଛି। ତିନିଟା ଚୌକି। ସବୁ ଚୌକି ସାମନାରେ ଦୁଧ ବୋତଲ ଆଉ କେକ୍ ... ଜଲଦି ଖାଇ ଦେ ଏ ଗୁଣ୍ଡା ...ଭାଲୁମାନେ ଆସିଯିବେ - କହିଲାବେଳେ ଏଣେ ରୀତି ଭାତଗୁଣ୍ଡା ପାଟିରେ ଭର୍ତ୍ତି କରୁଥିଲା ତ ତେଣେ ଛୋଟ କୁନି ଚୌକିରେ ବସି ଦୁଧ ପିଇ କେକ୍ ଖାଇ ଘରର ଉପର ମହଲାକୁ ଯାଇ ଛୋଟ କୁନି ଖଟରେ ଆରାମରେ ଶୋଇଗଲାଣି। ଭାତ ଥାଳି ଖାଲି ହୋଇ ଆସିଲାବେଳକୁ ପହଞ୍ଚିଗଲେ ତିନିଟଯାକ ଭାଲୁ । ବାପା ଭାଲୁ - ମା ଭାଲୁ, ଆଉ କୁନି ଭାଲୁ । କୁନି କହିଲା'ଏଁ...ଏଁ...ମୋ ଦୁଧ କିଏ ପିଇ ଦେଇଚି - ମୋ କେକ୍ କିଏ ଖାଉ ଦେଇଚି'। ଛୋଟ ଭାଲୁକୁ ତ ଭୋକ ହେଉଥାଏ। ତମ ଗୁଣ୍ଡାସବୁ ଖାଇଦିଅ - 'ଛୋଟ ଭାଲୁ ଖାଇଦେବ' ଭିତରେ ସମସ୍ତେ ପଟାପଟ୍ ଗୁଣ୍ଡାସବୁ ଗିଳୁଥା'ନ୍ତି। ଆଉ ସାନଭାଲୁ ଉପରକୁ ଯାଇ ଦେଖିଲା ତା'ଖଟରେ କିଏ ଶୋଇଛି।'... 'ମୋ ଖଟରେ କିଏ ଶୋଇଛ' ... ରୀତି ଉଠି ପଡିଲା - ବାପ୍‌ରେ କେଡେ ଦାନ୍ତ... କେଡେ କେଡେ ନଖ ରୀତି ଖଟରୁ ଡେଇଁପଡ଼ି ଦଉଡ଼ି ଦଉଡ଼ି.......'

ଭାତ ଏଣେ ସରିଗଲାଣି। କିଏ ଜଣେ କହିବ 'ରୀତି ସବୁଦିନ ଏମିତି ଭାଲୁ ଘରକୁ ଯାଉଛି' - 'ନାଇଁ ତୁ କାଲିକି ଯିବୁ' ଆଶ୍ୱାସନା ଭିତରେ ସମସ୍ତଙ୍କ ମୁହଁ ପୋଛାପୋଛି ହୋଇସାରିଥିବ।

ମୁଁ ବି ଗପ କହିବାକୁ ଚେଷ୍ଟା ଯେ କରୁ ନ ଥିଲି, ତା ନୁହେଁ। ଯେତେବେଳେ କହିବି 'ବାଘଟିଏ ଥିଲା, ଭାଲୁଟିଏ ଥିଲା, ଆଉ ହରିଣଟିଏ, କାଉଟିଏ, ମୁଷାଟିଏ...' ପୁଟୁନ୍ କହିଉଠିବ 'ଆଉ କଇଁଚଟିଏ ତ ? ଆମେ ଏ ହରିଣ କଇଁଚ ଗପ ଶୁଣିବୁନି,

ଭାଲୁ ଗପ କହ।' ଆଚ୍ଛା ଭାଲୁ ଧରାଇଥିଲେ ତାଙ୍କ ଆଈ। 'ଶୁଣ ତ କେଡେ ବଢିଆ ଗପ' କହୁଁ କହୁଁ ପୁଟୁନ୍ ସେମାନଙ୍କୁ ଉସୁକାଇବ 'ଚାଲରେ ଆଈଙ୍କ ପାଖକୁ।' ସମସ୍ତେ ଉଆକ୍‌ଆଉଟ୍ କରି ପହଞ୍ଚି ଯାଇଥିବେ ଆଈଙ୍କ ପାଖରେ ତାଙ୍କ ଚାରିଆଡେ ଶୋଇବା ପାଇଁ। କିଏ ଆଈଙ୍କର କେଉଁ ପାଖରେ ଶୋଇବ? ସେଥିପାଇଁ ପୁଣି କେତେ ମାଡ଼ଗୋଳ, ବାଳ ଟଣାଟଣି, କାନ୍ଦ ବୋବାଳି। ସେ ପାଟି ତୁଣ୍ଡ ନ ସହି ମଣିଷ ଯିବ କୁଆଡେ? ବଡ ବିରକ୍ତିକର ହେଲେ ମଧ୍ୟ ମୁଁ ସେସବୁ ସହିଯାଇଥିଲି । ସେ ଦିନ ଘଟଣା କିନ୍ତୁ ଥିଲା ଭିନ୍ନ।

ସମୟ ପ୍ରାୟ ଚାରିଟା। ମୁଁ ମେଗାଜିନ୍ ଖଣ୍ଡିଏ ଧରି ଆରାମଚୌକି ଗୋଟାକରେ ବସିଛି - କେତେବେଳେ ଚା' କପେ ଆସିବ ଭାବି। ବୋହୂ ବୋନିକୁ ଆଣି ମୋ କୋଳରେ ବସାଇଦେଲା। କହିଲା - 'ଚା କରାଇ ଦେଉନି, ସବୁ ଟଣାଓଟରା କରୁଛି'। ବୋନି ମୋ କୋଳରେ ବସିବାକୁ ଅନିଚ୍ଛୁକ ଥିଲା। ଉଁ ଆଁ କରି ଆପତ୍ତି ମଧ୍ୟ କରିଥିଲା ଗୁଡ଼ିଏ। ମୁଁ ଅନ୍ୟମନସ୍କଭାବେ କାଉ ଆ- ଛେଳି ଆ- କୁକୁଡା ଆ, ଦି' ଚାରିଥର କହି ତାକୁ ଆଉ ନଜର ଦେଲିନି। ହଠାତ୍ ମୋର ମନେହେଲା କିଛି ଗୋଟାଏ ଓଦା ଓଦା ଲାଗୁଛି। ମେଗାଜିନ୍‌ରୁ ମୁହଁ କାଢି ତଳକୁ ଅନାଇଲି - ହଳଦିଆ ଛିଟା ଗୁଡ଼ାଏ ନା କଣ! ସାଙ୍ଗକୁ ଦୁର୍ଗନ୍ଧ ମଧ୍ୟ। ତାକୁ କୋଳକୁ ଟେକି ଧରି ଚିତ୍କାର କଲି। ସେ ବି ପାନ  ଭାଙ୍ଗୁଥିଲେ କି କଣ ଲସରପସର ହୋଇ ଧାଇଁଆସିଲେ । ମୋ ଅବସ୍ଥା ଦେଖି ବୋହୂ  ତା' ମୁହଁରେ ପଣତକାନି ଢାଙ୍କିଲାବେଳେ ଇଏ ତାଙ୍କ ଖୋଲା ହସ ଆରମ୍ଭ କରିଦେଲେ। କହିଲେ 'ସୁ ସାଙ୍ଗକୁ ଗ!' ଯାଙ୍କର ହସ ଶୁଣି ସାମୟିକ ଭାବରେ କିଛି ପିତ୍ତ ମୋ ମୁଣ୍ଡ ଉପରକୁ ଚଢିଯାଇଥିଲା। ବୋହୂ ମୋ ହାତରୁ ବୋନିକୁ ଟେକିନେଲାବେଳେ ମୁଁ ଚିତ୍କାର କରୁଥିଲି। କହୁଥିଲି - 'ତମେ ସବୁ ଏମାନଙ୍କୁ ମୁଣ୍ଡରେ ଚଢ଼ାଇ ନଷ୍ଟ କରିଦେଲଣି' - ସୁ ସାଙ୍ଗକୁ ଗ? ସେତିକିରେ ସରିଗଲା ନାଇଁ - ମୋତେ ଏ ରାସ୍କେଲଗୁଡାକ କମୋଡ୍ କରି ପାଇଛନ୍ତି।'

ସେଦିନ ହିଁ ମୁଁ ଠିକ୍ କରି ନେଇଥିଲି ଯେ ମୁଁ ମୋର ଅଲଗା ରହିବା ରହିବି ଉପରେ। ଆଗରୁ ତ ଫୁଲ ବଗିଚାଟିଏ କରିବି ବୋଲି ଭାବୁଥିଲି - ତଳେ ଖୋଲା ଜାଗା ନ ଥିବାରୁ  କିଛି  ହୋଇ ପାରି ନଥିଲା । ଗମ୍‌ଲାମାନଙ୍କରେ ଫୁଲ ଗଛ ଲଗାଇ ଘରର ଉପରକୁ କରିଦେଲି ଏ ପଙ୍ଗପାଳଙ୍କ ପାଇଁ ଏକ ନିଷିଦ୍ଧ ଅଞ୍ଚଳ।

ପରେ ପରେ ହିଁ ଆରମ୍ଭ ହୋଇଥିଲା ଫଳ ପୁଷ୍ପ ପ୍ରଦର୍ଶନୀ ପାଇଁ ମୋର ପ୍ରସ୍ତୁତି। ରାଉରକେଲାରୁ ଭଲ ସେବତୀ ଆଉ ଡାହାଲିଆ ଚାରା କିଣାଇ ଆଣିଥିଲି। ଦି' ମାସ କାଳ ସେ ସେବତୀ ଓ ଡାହାଲିଆ ଗମ୍‌ଲାମାନଙ୍କୁ ସକାଳେ ଥରେ ଆଉ ଉପର ଓଳି ଥରେ ଯାଞ୍ଚ କରେ, ମାଟି ଖୋସେ, ପାଣି ଦିଏଁ - ବେଳ ଜାଣି ଖତ ସାର ଦେଇ

ରୋଗ ପୋକ ହେବେନି ବୋଲି ଦୁନିଆଁଯାକର କୀଟନାଶକ ଔଷଧ - ଗେମେକ୍ସିନ୍ ଠାରୁ ଡିଥେନ ଏମ୍-୪୫, ଡେମାକ୍ରନ ପର୍ଯ୍ୟନ୍ତ ଛିଞ୍ଚେ। ଡର ହେଉଥିଲା ଯେ ମୋ ବଡ଼ ବଡ଼ ହଳଦିଆ ଗୋଭା ସେବତୀ ସବୁ ଜାନୁୟାରୀ ବେଳକୁ ଝାଉଁଳି ଯାଇଥିବ। କେତୋଟି ଶୁଖିବାକୁ ଆରମ୍ଭ କଲାଣି ମଧ୍ୟ। କିନ୍ତୁ ବାକି ଯାହା ଥିଲା ସେ ଥିଲା ଦେବସଭାରେ ମଧ୍ୟ ପୁରସ୍କୃତ ହେବା ପାଇଁ ଯୋଗ୍ୟ। ଆଉ ଡାହଲିଆ କଥା ତ ଛାଡ। ଧଳା, କଳା, ନାରଙ୍ଗୀ, ଗାଢ଼ ନାଲି ଆଉ ହଳଦିଆକୁ ମିଶି ପାଞ୍ଚରଙ୍ଗର ଫୁଲ। ୧୦ ଇଞ୍ଚରୁ ୧୨ ଇଞ୍ଚ ଯାଏ ଗୋଟା ଗୋଟାକର ବ୍ୟାସ। ଦେଖିଲେ ଆଖି ଖୋସିହୋଇଯିବ - ପେଟ ପୂରି ଯିବ। କି ଦୃଶ୍ୟ ଥିଲା ସିଏ!

ପ୍ରଦଶନୀର ପୂର୍ବ ରାତିରେ ଉପର ତାଲା ଦିଆ ବେଲକୋନୀରୁ ମୁଁ ତଳକୁ ନେଇ ଆସିଥିଲି - ରାତି ପାହିଲେ ସେସବୁକୁ ରିକ୍ସାରେ ବୋଝେଇ କରି ନିଜେ ପ୍ରଦର୍ଶନୀ ମଣ୍ଡପକୁ ନେଇଯିବି ବୋଲି। କାଳେ କିଏ ରାତିରେ ଗମ୍‌ଲା ଚୋରି କରି ନେଇଯିବ, ସେ ଭୟରେ ମୋ ଘରର ଲୁହା ଫାଟକରେ ପକାଇଥିଲି ଗୋଟାଏ ଛତିଶ ଟଙ୍କିଆ ଗଡ୍‌ରେଜ ତାଲା।

ସକାଳୁ ଉପରୁ ତଳକୁ ଆସିଲି ଝାଉଁଳିଥିବା ସେବତୀକୁ ଡେମ୍ଫରୁ କାଟିଦେଇ ଡାହାଲିଆକୁ ଟିକିଏ ଆଉଁସି ଦେବି ବୋଲି । ତଳକୁ ଆସି ଯାହା ଦେଖିଲି, ଆଗ ବିଶ୍ୱାସ କରିପାରିଲିନି । ଏଇ ମୋର ସେ ପ୍ରଦର୍ଶନୀକୁ ଯିବା ଫୁଲ ଗମଲାସବୁ ? କୌଣସି ଫୁଲ ଆଉ ନାହିଁ କି କଢ଼ ନାହିଁ । ଗଛଗୁଡିକ ସତେ ଯେମିତି କାନ୍ଦି କାନ୍ଦି ତାଙ୍କ ଛିଣ୍ଡା ଫୁଲ ଡେମ୍ଫମାନଙ୍କରୁ ଲୋତକର ଧାରା ଛୁଟାଇଛନ୍ତି। ମୁଁ କିଛି ସମୟ ଦୁଃଖରେ ଆଉ କ୍ରୋଧରେ ପ୍ରାୟ ଅନ୍ଧ ହୋଇଗଲି - ଠିକ୍ କଲି ସେ କ୍ରୂର ବିନାଶକାରୀ ପାଷାଣ୍ଡଙ୍କୁ ଧରି ସେମାନଙ୍କ ମୁଣ୍ଡର ବାଳ ଗୋଟି ଗୋଟି କରି ଉପାଡ଼ି ପକାଇବି।

ଘର ଚାରିଆଡେ ଖୋଜିଗଲି। ଗେଟ୍‌ରେ ତାଲା ସେମିତି ପଡିଛି, କୌଣସି ଫୁଲଚୋରର ସୋର ଶବ୍ଦ ମଧ୍ୟ ନାହିଁ । ଘର ଭିତରେ ଢୁକିଲି। ବସିବା ଘର ସୋଫା ଉପରେ ଦି'ଜଣ ବସିଛନ୍ତି। ତଳେ ଛିଣ୍ଡା ପାଖୁଡାର କୂଢ଼ ଦିଜଣଙ୍କ ମଝିରେ ଗୁଡିଏ ଭଗ୍ନଜାନୁ ଛିନ୍ନମସ୍ତକ ସେବତୀ ଆଉ ଡାହାଲିଆର ଶବାଧାର।

ମୋତେ ଦେଖି କ୍ଷୁଦ୍ରତର ପିଶାଚଟି ତାର ମଝିଦାନ୍ତ ଚାରୋଟି ଦେଖାଇ ଦେଇ ଗୋଟାଏ ଛିଣ୍ଡା ଫୁଲ ମୋ ଆଡକୁ ବଢ଼ାଇ କହିଲା - 'ଦାଦା - ଫୁଅ'।

ମୋ ଆଖିରୁ ନିଆଁ ବାହାରୁଥିଲା । କହିଲି - "ଫୁଅ... ରହ ତୋ ପାଟିର ସବୁ ଫୁଅ ଯଦି ବାହାର କରି ନ ଦେଇଛି!" ତାପରେ ତା' ହାତ ଧରିବାକୁ ଯାଇଛି କି ନାହିଁ ସେ ଭେଁ-ଏଁ କରି ରଡ଼ି ଛାଡିଲା। ତହିଁରେ ଯୋଗ ଦେଲା ତା' ବଡଭଉଣୀ।

ପୁଅ ବୋହୂ ଘର ଭିତରକୁ ଛୁଟି ଆସିଲେ। ଆଈ ମଧ୍ୟ କଣ ହେଲା ବୋଲି ଡରି ଓଦା ଶାଢ଼ିରେ ବାଥ୍‌ରୁମ୍‌ରୁ ଧାଇଁଆସିଲେ। ସେ ସମସ୍ତେ ମୋ ପ୍ରାଇଜ୍ ଫୁଲ ସବୁର ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖିଲେ। ଆହା ପଦେ ବି ନାହିଁ। ବୋହୂ ଆଉ ଇଏ ଦି' ଛୁଆଙ୍କୁ କାଖେଇ ନେଇ 'ନାଇଁ- ନାଇଁ- ନାଇଁ' କହିବା ମଝିରେ ଆଈ ଯେତେବେଳେ କହିଲେ - 'ଦାଦାଙ୍କୁ ଠାଏ ଠାଏ କରିବା' ମୁଁ ବୁଝିନେଲି ଯେ ଏଥର ମଧ୍ୟ ସବୁ ଦୋଷ ମୋର । କାହାକୁ କଣ କହିବି ?

ଆଜିର ଶିଶୁମାନଙ୍କ ମୁଣ୍ଡ ଯେ ପୂରାପୂରି ବିଗିଡ଼ି ଯାଇଛି ଏଥିରେ ସନ୍ଦେହ ନାହିଁ । ଏମାନେ ହେଲେ ଦେଶର ଭବିଷ୍ୟତ - ଦେଶର ଭାବୀ କର୍ଣ୍ଣଧାର। ଏମାନଙ୍କ ଅଧୋଗତିର କାରଣ ଅନୁଧାନ କରି ଏମାନଙ୍କୁ ସତ୍ ମାର୍ଗରେ ଚାଳିତ କରିବା ଆମର ପରମ ତଥା ପବିତ୍ର କର୍ତ୍ତବ୍ୟ। ଆଜିର ଏ ପରିସ୍ଥିତି ପାଇଁ କେବଳ ଆଈମାନଙ୍କୁ ଅଥବା ଭାରତ ସରକାର କିମ୍ବା ପ୍ରାଦେଶିକ ସରକାରଙ୍କୁ ଦୋଷ ଦେଇ ଲାଭ ନାହିଁ। ଆମେ ସମସ୍ତେ ଏଥିପାଇଁ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷଭାବରେ ଦାୟୀ।

ନଇଲେ ଗାଈ ଛୁଆ କହ, ଘୋଡା ଛୁଆ କି ମାଙ୍କଡ଼ଛୁଆ କହ - ସେମାନେ ଯଦି ଜନ୍ମ ହେବା ପରେ ପରେ ଡେଇଁ ବୁଲିବେ , ଆମ ଛୁଆମାନେ କାହିଁକି ମାସ ମାସ ଧରି ଶୋଇରହିବେ ଆଉ ଆକାଶକୁ ଚାହିଁଥିବେ ? ସୁଦ୍ଧୁ ଅଳସୁଆମି। ତାଙ୍କୁ ଜଣେ ଖୁଆଇବେ, ଗାଧୋଇଦେବେ,ତାଙ୍କ ପାଇଁ ଗାଇବ 'ଶୋ ଯା... ଶୋ...ଓ...ଯା ପ୍ୟାରେ ହମାରେ...' ଏମାନଙ୍କ ମୁହଁ ବଢିବନି ? ଏ ପରିସ୍ଥିତି ପାଇଁ ଆମର ପୂର୍ବପୁରୁଷମାନେ ମଧ୍ୟ ଦୋଷମୁକ୍ତ ହୋଇ ନ ପାରନ୍ତି। ବଡ ଲୋକଙ୍କୁ ଉତ୍ତର ନ ଥିଲେ ମଧ୍ୟ ଦେଖନ୍ତୁ ଆମ ସୃଷ୍ଟିକର୍ତ୍ତା ଏ ବ୍ରହ୍ମାଙ୍କୁ ! ଭୁଲ ଆରମ୍ଭ ହୋଇଛି ସେଇଠୁ । ସୃଷ୍ଟି ରଚନା କରାଇବା ଉଦ୍ଦେଶ୍ୟରେ ତ ଭଗବାନ ତାଙ୍କ ନାଭି-କମଳରୁ ବ୍ରହ୍ମାଙ୍କୁ ଜାତକଲେ। ବ୍ରହ୍ମା କିନ୍ତୁ କାଳ କାଳ ଧରି ସୃଷ୍ଟି ରଚନା ନ କରି ତାଙ୍କ ଚତୁର୍ମୁଖରେ ଖାଲି ଭଗବାନଙ୍କ ସ୍ତୁତି ଗାନ କରି ବସିଲେ। ଯେତେବେଳେ ତାଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ଚେତା ପଶିଲା ସେ ସୃଷ୍ଟି କଲେ ସନକ ସଉନକ ଆଦି ଚାରି ଭାଇଙ୍କୁ, ଆଉ ସୃଷ୍ଟି ଭିଆଣ ପାଇଁ ତାଙ୍କୁ ଆଦେଶ ଦେଲେ। ସେ ଚାରି ଭାଇ ବାପାଙ୍କ କଥା ମାନିବେ କଣ, କାଳେ ବଡ ହେଲେ କିଛି ଅସୁବିଧା ହେବ ଜାଣି ଛୋଟ ଛୋଟ ହୋଇ ଚିରଦିନ ରହିଗଲେ ଆଉ କେବଳ ଜ୍ଞାନ ଚର୍ଚ୍ଚା କରିବସିଲେ। ସେମାନଙ୍କର ଏହି ଖାମଖିଆଲି ପାଇଁ କୌଣସି ଶାସ୍ତି ବିଧାନ ନାହିଁ । ବ୍ରହ୍ମା ଏଥର ଜାତକଲେ ନାରଦଙ୍କୁ ! ଆମ ଘରେ ବୋନି ରୀତି ପାଖକୁ ଯାଇ ବୁଦ୍ଧି ଶିଖିଲା ଭଳି ନାରଦଙ୍କ ପାଇଁ ବି କୌଣସି ଶାସ୍ତିବିଧାନ ନାହିଁ। ବ୍ରହ୍ମା ଏଥର ଜାତ କଲେ ଦକ୍ଷପ୍ରଜାପତିଙ୍କୁ। ସେ ବିଚରା ବାପାଙ୍କ କଥା ମାନି ସୃଷ୍ଟି ଭିଆଣ କଲାରୁ ଯେଉଁ ହଟହଟା ହେଲେ ସେ କଥା ଜଣାଶୁଣା। ତାଙ୍କର ଛେଳି ମୁଣ୍ଡ ହେବାଯାଏ କଥା ଗଲା। ଏମିତି ହେଲେ ପିଲାମାନେ ଅବୋଲକରା ହେବେନି ?

ଏଥର ଆମେ ଯଦି ପୁରାଣ ଅଧ୍ୟୟନ କରୁ ଦେଖିବା ଧ୍ରୁବ ପ୍ରହ୍ଲାଦମାନଙ୍କୁ । କି ଏକଜିଦିଆ ପିଲାଗୁଡା! ବାପା ହିରଣ୍ୟକଶିପୁ କହିଲେ - 'ବେଟା ପ୍ରହ୍ଲାଦ, ତୁ ଏ ନାରାୟଣ ଭଜନ ଛାଡି ଶିବଙ୍କୁ ଭଜନ କର।' ଶିବ କିଏ, ବିଷ୍ଣୁ କିଏ କୁହନ୍ତୁ ତ! ତଥାପି ବାପାଙ୍କ କଥା ନ ମାନି ଏକଜିଦିଆ ପ୍ରହ୍ଲାଦ ଧରିବସିଲେ ଯେ ସେ ନାରାୟଣଙ୍କୁ ହିଁ ଭଜନ କରିବେ । ବାପ କେମିତି ବା ନ ରାଗିବେ! ଦି ଚାରିଥର ବୁଝାଇଲେ ଶିବ ତାଙ୍କ ବଂଶଯାକର ଗୁରୁ ବୋଲି, ତଥାପି ସେ ପିଲା ନମାନିଲେ ଆଉ କରନ୍ତେ କଣ? ଦେଲେ କଷ୍ଟିକରି। ବାପକୁ ମାନିବା ପାଇଁ ଭଗବାନ ପ୍ରହ୍ଲାଦଙ୍କୁ ଶିଖାନ୍ତେ କଣ. ଓଲଟା ବାପର ଅନ୍ତବୁଜୁଳା କାଢ଼ିପକାଇଲେ । ଏଥର ପିଲାମାନେ ଏକଜିଦିଆ ହୋଇଯିବେନି?

ସବୁଠାରୁ ମାରାତ୍ମକ ଭୁଲ କରିଛନ୍ତି ନନ୍ଦ ଓ ଯଶୋଦା। ହେଲା 'ବୃଦ୍ଧକାଳେ' ତୁମ୍ଭର 'ଏକଇ ନନ୍ଦନ', ତା' ବୋଲି ବିଳାପ କରିବ 'ଆରେ ବାବୁ ଶ୍ୟାମଘନ ତୁ ଗଲେ ମଧୁଭୁବନ, କାହା ମୁଖ ଅନାଇ ବଞ୍ଚିବି...' ସିଧା ତ କହିବ - 'ତୁ ମଥୁରା ଯାଇପାରିବୁନି - ଖବରଦାର କହିଦେଉଛି।' ତା' ନ କରି କଣ ନା 'କାହାକୁ ଅଞ୍ଜନ ଦେବି, ବସ୍ତ୍ର ପାରି ଶୁଆଇବି'! ତମର ମଥୁରା ଯିବା ଶ୍ୟାମଘନ କ'ଣ ଏମିତି ଟିକି ପିଲାଟିଏ ଯେ ନିଜ ବିଛଣା ବି ପକାଇ ପାରିବନି? ସେଇ ନନ୍ଦବଳା ହେଉଛନ୍ତି ଦୁଷ୍ଟଙ୍କ ଶିରୋମଣି- ଦୁଷ୍ଟ ନମ୍ବର ଉଆନ। ଷୋଳ ସହସ୍ର ଗୋପନାରୀଙ୍କୁ ଯେଉଁ ହଟହଟା କରିଛନ୍ତି! କିଏ ଗାଧୋଇବାବେଳେ ତାଙ୍କ ଶାଢ଼ି ନେଇ ଗଛ ଉପରେ ଥୋଇ ଦେଲେଣି ତ କାହା ଘରେ ପଶିଯାଇ ଦହି, ଲହୁଣି ଦୁଧସର ଚୋରି କଲେଣି। କେଉଁ ସାପର ଫଣା ଉପରେ ହାତ ମାରିଦେଲେଣି ତ କେଉଁ ବଗର ଥଣ୍ଟ ଚିରିଲେଣି। କେଉଁଠି ଶଗଡ଼ ଭାଙ୍ଗିଲେଣି ତ ପୁଣି କେଉଁଠି ଗଛ ଉପାଡ଼ିଲେଣି। କେଉଁ କାମୁଡ଼ା ଘୋଡ଼ା ମୁହଁରେ ହାତ ପୂରାଇଲେଣି ତ କେଉଁ ମାରଣା ଷଣ୍ଢ ପିଠିରେ ଚଢ଼ିଗଲେଣି। ଯେମିତି ଗୋଟାଏ ଟୋକା - 'ସେ କୁଆଡ଼େ ଅନ୍ଧାରକୁ ଡରିବେ ଯେ ମା'ଙ୍କ କାନ୍ଦଣା - 'ଡରୁଥାଉ ଅନ୍ଧାରକୁ...'

ଏ ପିଲାଙ୍କ ମନ ମାନିବା ପାଇଁ ସରକାର ମଧ କମ୍ ଦାୟୀ ନୁହନ୍ତି। ଧରି ନିଅନ୍ତୁ ଜଣଙ୍କ ଘରେ ଦଶ କି ପନ୍ଦର ପୁଅଝିଅ। କିଏ ଖାଇଲା, କିଏ ଶୋଇଲା, କାହା ଦେହରେ ଲୁଗାପଟା ନାହିଁ, କାହା ଦେହରେ ଜର, ବାପା ମା' ବୁଝିବାକୁ ତର ପାଆନ୍ତେ କେଉଁଠି? କିଏ ରହିଲା, କିଏ ଗଲା, ସେକଥା ବି ଜାଣିପାରନ୍ତେନି। ତା' ନ କରି କଣ ନା ଦିଓଟି ସନ୍ତାନ ଯଥେଷ୍ଟ, ପୁଅ ଗୋଟିଏ ତ ଝିଅ ଗୋଟିଏ। ସେ ଦିହିଁଙ୍କ ଭିତରୁ ଗୋଟାଏ ଗଲା ତ ଶାଖାଟିଏ ପୂରାପୂରି ବୁଡ଼ିଗଲା। ବାପା ମା' ତାଙ୍କ

ପାଇଁ ସବୁବେଳେ ବ୍ୟସ୍ତ ହେବେନି? ତାଙ୍କ ପାଇଁ ସୁନ୍ଦର ପେଣ୍ଟ, ସୁନ୍ଦର ଫ୍ରକ। ଏମିତି ଡରିମରି ରହିବା ଯୋଗୁ ପୁଅଝିଅ ପୂରା ଫାଇଦା ଉଠାଇବା ସ୍ୱାଭାବିକ।

ଆମର ଶିକ୍ଷାନୀତି ମଧ୍ୟ ଏଥିପାଇଁ ଯଥେଷ୍ଟ ମାତ୍ରାରେ ଦାୟୀ। ଛୁଆଙ୍କ ପାଇଁ ସହଜ ସରଳ ଆଉ ତାଙ୍କ ମନଲାଖି ପାଠ୍ୟ। ସେସବୁ ପାଠ ସହଳ ସାରିଦେଇ ଏଗୁଡ଼ାକ ସର୍ବଦା ଡେଇଁ ବୁଲୁଛନ୍ତି। ଧରିନିଅନ୍ତୁ ଏମାନଙ୍କର ତିନିବର୍ଷ ବେଳକୁ ଧରାଇ ଦିଆହେଲା ବର୍ଣ୍ଣବୋଧ, ଆଉ ଘୋଷିବାକୁ ଦିଆହେଲା ଯୁକ୍ତାକ୍ଷର। ଏ ରନ୍‌ଜନ, ବ୍ୟନ୍‌ଜନ, ଯଗ୍ୟଁ, ଯାଗ୍ୟଁସେନୀ କିମ୍ବା ଲାନ୍‌ଛିତ, ବାନ୍‌ଛିତ, ପଂଡା, ମୁଂଡ - ଖାଣ୍ଟି ରଞ୍ଜନ, ବ୍ୟଞ୍ଜନ, ଯଜ୍ଞ, ଯାଜ୍ଞସେନୀ ଇତ୍ୟାଦି। ସେମାନଙ୍କୁ ସମୟ ମିଳିବ ଦୁଷ୍ଟାମି କରିବା ପାଇଁ? ତା'ପରେ ଚାରିବର୍ଷ ବୟସ ବେଳକୁ ଧରାଇଦିଅ ପଚିଶି ଖନ୍ଦା ପଣକିଆ - ଖାଲି ସତର ତିରିକି ଏକାବନ ନୁହେଁ - କେତେ କାହାଣ କେତେ ପଣ ତାହା ମଧ୍ୟ। ପାଞ୍ଚବରଷ ବେଳକୁ ସାହିତ୍ୟ - 'ସାକ୍ଷୀ ତୁହିରେ ଗଗନ ସୃଷ୍ଟି କରିଛି ପ୍ରକ୍ରିୟାର...' ଏଗୁଡାକ ଥଣ୍ଡା ହୋଇଯାଆନ୍ତା । ତଥାପି ଯଦି ଦୁଷ୍ଟାମି କଲେ ହୋମ ଟାସ୍କ ଦିଅ ଅମରକୋଷର 'ହିମାଂଶୁ, ଚନ୍ଦ୍ରମା, ଚନ୍ଦ୍ର, ଇନ୍ଦ୍ର, କୁମୁଦବାନ୍ଧବ...' । ଆମର ଶିକ୍ଷାନୀତି ତ 'ବର୍ଣ୍ଣବୋଧ ଛାଡ଼ି ' ମୋ ଛବିବହି' ଧରାଇଦେବ ଆଉ କହିବ ଏ କାଲ୍‌କୁଲେଟର ଯୁଗରେ ପଣିକିଆର ମୂଲ୍ୟ କଣ - ଏମାନେ ମଣିଷ ହେବେ?

ତିନି ବର୍ଷ ବୟସ ପୂର୍ବରୁ ମଧ୍ୟ ଏମାନଙ୍କ ଭିତରେ ଟିକିଏ ଡର ପଶିବା ଦରକାର। ନ ହେଲେ ଏଗୁଡ଼ାକ ନିଡ଼ର ହୋଇ ମୁଣ୍ଡରେ ଚଢ଼ି ବସିବେ। କୋକମିନା, ଝୁଲାମୁଣି ଧରିଥିବା ଦାଢ଼ିଆ ବୁଢ଼ା, ଗଧିଆ, ବାଘ, ସଜନା ଗଛରେ ବସି କେତେ ରଙ୍ଗରେ ଡାକୁଥିବା ଭୂତ... ସେ ସମସ୍ତଙ୍କ ସାଙ୍ଗରେ ଏମାନଙ୍କୁ ଯେତେ ଶୀଘ୍ର ପରିଚିତ କରାଇଦେବେ ସେତେ ଭଲ। 'ହଅ ଟିକି ବାଲୁତ ଟିକେ ଲାଡ଼ରା ହେବେନି' କହି କେହି ଯଦି ଏ କହିଲାର ବୋଲ ନ କରନ୍ତି ତେବେ ସେ ବିପଦରେ ପଡ଼ିବା ସମ୍ଭାବନା ଯଥେଷ୍ଟ। ଏ ପୁତନା ପ୍ରାଣହରଣକାରୀଗୁଡ଼ାକ ଟିକି ଛୁଆ ପରି ଦିଶନ୍ତି ସିନା, ତାଙ୍କ ପାଟି ଖୋଲି ଦେଖିଲେ ବେଳେବେଳେ ବିଶ୍ୱବ୍ରହ୍ମାଣ୍ଡ ଦେଖାଯାଏ। ଏ ଭୟଙ୍କର ଜୀବମାନଙ୍କଠାରୁ ଦୂରେଇ ରହିବା ଭଲ, ନହେଲେ ଏମାନେ ଆପଣଙ୍କୁ ସଂସାର ଖମ୍ବରେ ଏମିତି ବାନ୍ଧିଦେବେ - ଯଶୋଦା କୃଷ୍ଣଙ୍କୁ ବାନ୍ଧିଲା ପରି ନୁହେଁ, ତାର ଠିକ୍ ଓଲଟା ରୀତିରେ - ଆପଣ ସେ ବନ୍ଧନରେ ପଡ଼ି ଉଁ କିମ୍ବା ଚୁଁ କରିପାରିବେନି।

ଏଇ ଦିନକର କଥା। ପ୍ରଦର୍ଶନୀ ଦିନର ଦୁର୍ଘଟଣା ପରେ ମୁଁ ଏ ଚଣ୍ଡାଳମାନଙ୍କ ଭବିଷ୍ୟତ ସମ୍ବନ୍ଧରେ ଚିନ୍ତାଗ୍ରସ୍ତ ହୋଇପଡ଼ି ମୋର ଅଧିକାଂଶ ସମୟ ଉପର ମହଲା କୋଠରିରେ ଏକଲା କଟାଉଥାଏ। ଝିଅ ତାର ତିନି ପିଶାଚ ପିଶାଚୁଣୀଙ୍କୁ ନେଇ ବଡ଼ଦିନ ଛୁଟିରେ ଆସିଥାଏ। ବାହାରେ ପାଟିତୁଣ୍ଡ, କାନ୍ଦବୋବାଳି ଶୁଣି କଥା କଣ

ଜାଣିବାକୁ ତଳକୁ ଓହ୍ଲାଇ ଆସିଲି। ବାହାରେ ଝିଅ-ବୋହୂ, ନାତି ନାତୁଣୀ ଆଉ ଇଏ। ନାତି ନାତୁଣୀ ସବୁ ଚିତ୍କାର କରୁଛନ୍ତି ଯେ ଆକାଶ କମ୍ପୁଛି। ମୋତେ ଦେଖି ଝିଅ କହିଲା – 'ବାପା, ଆମେ ଟିକେ ବଜାର ଯାଉଛୁଁ ଯେ ମା'ଙ୍କୁ ବି ସଙ୍ଗରେ ନେଇଯାଉଛୁଁ। ସେ ତ ଅନେକ ଦିନ ହେଲା ବଜାରକୁ ଯାଇନାହାନ୍ତି। ଏଗୁଡ଼ାକ ଲଗାଇଛନ୍ତି, ସେମାନେ ବି ବଜାର ଯିବେ। ପୁଟୁନ୍‌କୁ ଆମେ ନେଇଯାଉଛୁ, ତମେ ଟିକେ ପିଲୁ, ନୀଲୁ, ରୀତି ଆଉ ବୋନିକୁ ଦେଖନ୍ତନି? ଘଣ୍ଟାକର କଥା। ସାହୁ ଦୋକାନକୁ କୁଆଡ଼େ ତଟକା କାଜୁବାଦାମ ଆସିଛି...'

ମୁଁ ଡାକ ଛାଡ଼ିଲି – 'ଚାଲରେ ରେଳ ଇଞ୍ଜିନ ଖେଳ ଖେଳିବା।' ପୁଟୁନ ଆଇଙ୍କ ପଣତ ଛାଡ଼ି ଦେଇ କହିଲା, 'ଦାଦା, ତୁମେ ତ ଇଞ୍ଜିନ ହେବ। ମୁଁ ଟ୍ରେନର ଗାର୍ଡ ହୋଇ ଶାଗୁଆ ପତାକା ହଲାଇବି ଆଉ ସିଟି ଦେବି। ଏମାନେ ହେବେ ମଝିରେ ରେଳଡବାସବୁ।' ଝିଅ ପଚାରିଲା, 'ତେବେ ତୁ କଣ ବଜାରକୁ ଯିବୁନି କିରେ ପୁଟୁନ!' 'ଆମେ ଦାଦାଙ୍କ ସାଙ୍ଗରେ ରେଳ ଇଞ୍ଜିନ ଖେଳ ଖେଳିବୁ'... – ଶୁଣି ମୋତେ ବେଶ୍ ଖୁସି ଲାଗିଲା। ପିଲୁ ଆଉ ରୀତି ଉଁ...ଉଁ...ଭୁସ୍...ଭୁସ୍...ଭୁସ୍... ଆରମ୍ଭ କରିଦେଇଥିଲେ। ନୀଲୁ ଆଉ ବୋନି ବି କିଛି ନ ବୁଝି କହୁଥିଲେ – ଭୁସ୍-ଭୁସ୍-ଭୁସ୍...।

ସେମାନେ ବଜାରକୁ ଗଲେ ଆଉ ଆମର ଖେଳ ଆରମ୍ଭ ହୋଇଯାଇଥିଲା। କେତେ ସମୟ ପରେ ଫେରିଲେ କେଜାଣି, ସେମାନେ ଘର ଭିତରକୁ ଢୁକିଲା ବେଳକୁ ଆମ ରେଳଗାଡ଼ି ଛ ଛ ପଇସେ, ଛ ଛ ପଇସେ – ଗାଇ ଜୋରରେ ଧାଉଁଥାଏ। ନୀଲୁ ମୋ ପିଠିରେ ଚଢ଼ି କାନ ଦିଟାକୁ ଧରି ପିଁ...ପି... କରୁଥାଏ ନା କଣ, ଝିଅ ତାକୁ ମୋ ପିଠିରୁ ଭିଡ଼ି ନେଇ କହିଲା – 'ଦାଦାଙ୍କ କାନ ଧରନ୍ତି?'

ସେଥିପାଇଁ ତ ମୁଁ କହୁଛି ଏକ କୁଳାଙ୍ଗାରମାନଙ୍କଠାରୁ ଦୂରେଇ ରହିବା ଭଲ। ନ ହେଲେ ରାସ୍କେଲଗୁଡ଼ାକ କି ମୋହିନୀ ମନ୍ତ୍ର ଜାଣନ୍ତି କେଜାଣି, ଦେଖିଲାକ୍ଷଣି ଭେଳିକି ଲଗାଇଦେବେ, ଆଉ ତମକୁ ଏମିତି ବନ୍ଧନରେ ବାନ୍ଧିଦେବେ ଯେ ତମେ ବାନ୍ଧି ହୋଇପଡ଼ିଥିବ ରାମ ନାମ ସତ୍ୟ ହେି ବୋଲା ହେବାଯାକେ।

ନ ହେଲେ କଣ ମାହାଳିଆଟାରେ ଆମ ପୂର୍ବପୁରୁଷମାନେ ରିଟାୟାର କଲା ପରେ ବାନପ୍ରସ୍ଥ ଯାଉଥିଲେ!

# ରତନପଲାର ଦାଢ଼ିଆବାବୁ

ବିଶ୍ୱାସ କରନ୍ତୁ, କୌଣସି ବଦ୍‌ମତଲବ୍ ନେଇ ମୁଁ ସେଦିନ ରତନପଲାର ଦାଢ଼ିଆବାବୁଙ୍କୁ ପାନାମା ବ୍ଲେଡ୍ ଉପହାର ଦେଇ ନ ଥିଲି। ମୁଁ ଜାଣେ ଏବେ ଅନେକେ ମୋତେ ଭୁଲ ବୁଝିବେ, ଭାବିବେ ଜାଣିଶୁଣି କିଛି ଅଭିସନ୍ଧି ନେଇ ହିଁ ମୁଁ ସେମିତି କରିଥିଲି। ଅଘଟଣଟିଏ ଘଟିଗଲେ ତ ଆଜିକାଲି ସମସ୍ତେ ଉପରଠାଉରିଆ ବିଚାର କରିଦେଇ ନିର୍ଦ୍ଦୋଷ ଉପରେ ବି ଦୋଷ ଲଦିଦେବେ - ଗହୀର ଭିତରକୁ ପଶୁଛି କିଏ ? ଦାଢ଼ିଆବାବୁ ମୋର ସାଙ୍ଗ ନା ସାଥୀ - ଦୋସ୍ତ ନା ୟାର୍ ଯେ ମୁଁ ତାଙ୍କୁ ପରିହାସ କରିବାକୁ ଯିବି - କହୁ ନାହାନ୍ତି ?

ହଁ, ଏକଥା ସତ ଯେ ବ୍ଲେଡଟିଏ ଦେଖିଦେଲେ ଆପଣମାନେ ଯେମିତି ନିଜ ଦାଢ଼ିର ଦୈର୍ଘ୍ୟ ପ୍ରସ୍ଥ କଥା ଭାବିବସନ୍ତି, ମୁଁ ବି ଉଣାଅଧିକେ ସେମିତି କରେ। ବେଳେବେଳେ ଗାଲ ଆଉ ଥୋଡ଼ି ଉପରେ ହାତ ବି ଆଉଁସି ଆଣେ। ତା' ବୋଲି ଦାଢ଼ିଟିଏ କାହା ଥୋଡ଼ିରେ ଝୁଲୁଥିବାର ଦେଖିଲେ ଯେଉଁମାନେ ସାଙ୍ଗେ ସାଙ୍ଗେ ଖୁରକୁ ମନେପକାନ୍ତି, ମୁଁ ସେମାନଙ୍କ ଭିତରୁ ଜଣେ ନୁହେଁ - କଦାଚ ନୁହେଁ ଆଉ କାହିଁକି ନୁହେଁ ତା'ର ବି ଯଥାଯଥ କାରଣ ରହିଛି। ପିଲାଦିନୁଁ କାହିଁକି କେଜାଣି ମୋର ଗହୀରିଆ ମନ ଭିତରେ ଶ୍ମଶ୍ରୁ ପ୍ରତି ସମ୍ମାନ ଯେତେ ରହିଆସିଛି, ଖୁର ପ୍ରତି ଡର ବି ସେତେ ରହିଛି। ସାନବେଳେ ମୋର ଯାବତୀୟ ଆପତ୍ତି ଅଭିଯୋଗ ଆଉ ଟଣାଓଟରାକୁ ବେଖାତିର କରି ବାପା ମଝିରେ ମଝିରେ ଜବରଦସ୍ତି ମୋତେ ନେଇ ବାରିକ ପାଖରେ ବସାଇ ଦେଉଥିଲେ। ବାରିକ ଯେତେବେଳେ ମୋ ଆଡ଼ିକି ଅବଜ୍ଞାଭରା ତେର୍ଛା ନଜରଟିଏ ଢାଳିଦେଇ ଚକାମାଡ଼ି ବସିଥିବା ଭଦ୍ରଲୋକଙ୍କ ମୁହଁରେ ପାଣି ଆଉ ସାବୁନଫେଣ ମାରି ତା' ଖୁରମୁଣିରୁ ଧାରୁଆ ଲମ୍ବା ଖୁର ବାହାର କରି ଆଣୁଥିଲା, ମୋର ପ୍ରାଣବାୟୁ ଆଉ ଅପାନବାୟୁ ଛାତି ଆଉ ପେଟ ଭିତରେ ଗୋଳେଇ ହୋଇ ଯାଉଥିଲେ। ତା'ପରେ ବାଁ ହାତରେ ଭଦ୍ରଲୋକଙ୍କ ଥୋଡ଼ିକୁ ଉପରକୁ ଟେକି ଧରୁଥିଲା ସେ ବାରିକ, ଆଉ ନିଜ ଆସ୍ଥାନକୁ ଦୃଢ଼ କରିବା ପାଇଁ ଦି'ହାତ ପାପୁଲିକୁ ତଳେ ଥାପି ଉପରକୁ ଅନାଉଥିଲେ ଭଦ୍ରଲୋକ। ପଛଗୋଡ଼ ଦି'ଟାକୁ ଟେକି ଧରିଲା

ପରେ, କୁରାଢ଼ି ଉଠାଇଲା ବେଳେ ଛେଳି ଯେମିତି 'ମେଁ' କରେ, ମୁଁ ଭାବୁଥିଲି ଭଦ୍ରଲୋକ ବି ଏଥର ମେଁ କରିବେ। ସେ କିନ୍ତୁ ସେପରି କିଛି କରୁ ନ ଥିଲେ। ଦୁଇ ତିନି ଆଙ୍ଗୁଠିରେ ଲାଗିଥିବା ପାଣିକୁ ଭଦ୍ରଲୋକଙ୍କ ସରୁ ଲମ୍ବାଳିଆ ବେକରେ ଜଳଜଳ ଦେଖାଯାଉଥିବା ଗଣ୍ଠିଆନଳି ଉପରେ ବୋଳି ଆଣୁଥିଲା ବାରିକ ଆଉ ହଠାତ୍ ଥୋଡ଼ିକୁ ଛାଡ଼ିଦେଇ ଖୁରକୁ ବାଁହାତ ପେଣ୍ଠାରେ ଫଟାଫଟ୍ ଏପାଖ ସେପାଖ ଲେସି ଶାଣ ଦେଉଥିଲା। ତାପରେ...। ପୁଣି ସେ ଥୋଡ଼ିକୁ ଟେକିଧରି ବେକକୁ ଅନାଉଥିଲା ଆଉ ଧୀରେ ଧୀରେ ଖୁରକୁ ନେଉଥିଲା ସେ ବେକଆଡ଼ିକି। ଛେପ ଢୋକି ଡବଡବ ଆଖିରେ ମୁଁ ଚାହିଁ ରହୁଥିଲି ଆସନ୍ନ ଘଟଣାକୁ। ରହମାନ ଚାଚା କୁକୁଡ଼ାର ବେକନଳି କାଟି ଦେଇ ଆକାଶକୁ ଫିଙ୍ଗିଦେଲା ପରେ ସେ କୁକୁଡ଼ା କେମିତି ମାଟି ଉପରେ ପଡ଼ି ଡେଣା ଫଡ଼ଫଡ଼ କରେ, ଡରୁଆ ଆଖିରେ ମୁଁ ଅନାଇ ରହୁଥିଲି ସେ ଭଦ୍ରଲୋକଙ୍କ ଦୁଇହାତ ଆଡ଼ିକି...ଆଉ ଛନ୍ଦାଛନ୍ଦି ହୋଇ ରହିଥିବା ତାଙ୍କର ଦୁଇ ଗୋଡ଼କୁ।

କେଉଁକାଳରୁ ମୁଁ ଦାଢ଼ିକୁ ସମ୍ମାନ ଦେବା ଶିଖିଥିଲି ସେ କଥା ମୋର ଠିକ୍ ମନେନାହିଁ। ମହାଭାରତରେ ପଢ଼ିଥିଲି ଶଲ୍ୟ ଯେତେବେଳେ ଯୁଧିଷ୍ଠିରଙ୍କ ଦାଢ଼ିକୁ ବାଁ ହାତରେ 'ତୋ ବୋପା ମା'ଙ୍କୁ ସ୍ମରଣ କର' କହି ଖଡ଼୍ଗ ଉଠାଇଥିଲେ, ବିଚରା ଯୁଧିଷ୍ଠିର 'ଜଳିଲା ଜଳିଲା ମାମୁଁ ଜଳିଲା ଜଳିଲା' କହି କାନ୍ଦି ପକାଇଲେ, ଆଉ ସେଥିରେ ହିଁ ଶଲ୍ୟ ଗୋଟାପଣେ ଜଳିଗଲା। ଆଫଜଲ ଖାଁ ବି ସେମିତି ଶିବାଜୀଙ୍କ ଦାଢ଼ିକୁ ଧରିଥିଲା ନା କଅଣ! ସେ ବି ସେମିତି ଛୁରା ଉଠାଇଛି କି ନାହିଁ, ତା' ପେଟର ଅନ୍ତବୁଜୁଳିକୁ ଟାଣି ଆଣିଥିଲେ ଶିବାଜୀ- ତାଙ୍କ ବାଘ ନଖରେ। ସେ ଦିନରୁ ହୁଏତ ମୋର ଧାରଣା ହୋଇଯାଇଥିଲା ଯେ ଦାଢ଼ିଟିଏ ଥିଲେ ତାକୁ ଯଦି କିଏ ଧରେ ସିଏ ସିଓର୍ ଖତମ୍।

ଏବଂ ମୁଁ କେଉଁଠି କେଜାଣି ଦେଖିଥିଲି, ବିଶ୍ୱାମିତ୍ରଙ୍କ କୋଳରେ ବସି ମେନକା ଅପ୍ସରୀ ତାଙ୍କ ଦାଢ଼ି ଆଉଁସୁଥିଲେ। ଓମରଖାୟାମର ଚିତ୍ରରେ ମଧ୍ୟ ଦେଖିଥିଲି ସେ ହାରୁନ୍ ଅଲ୍ କି ଆବୁ ବେନ୍‌ଙ୍କ ଦାଢ଼ି ଚାରିଆଡ଼େ ପହଁରି ବୁଲୁଥିବା ସୁନ୍ଦରୀମାନଙ୍କ ଅପରୂପ ଦୃଶ୍ୟ। ମୋର ବିଶ୍ୱାସ ହୋଇଯାଇଥିଲା ଯେ ସୁନ୍ଦରୀ ତରୁଣୀମାନେ ଦାଢ଼ିକୁ ଭାରି ଭଲପାଆନ୍ତି। କଲେଜରେ ପଢ଼ିଲାବେଳେ ଦେଖିଥିଲି ରବୀନ୍ଦ୍ରନାଥ, ଅରବିନ୍ଦ, ବାର୍ଣ୍ଣାଡ଼୍ଶ ଆଉ ଡାରଉଇନ୍‌ଙ୍କ ଚିତ୍ରପଟ। ଆମ ଗୋପବନ୍ଧୁ, ହରିହର, ନୀଳକଣ୍ଠଙ୍କ ଫଟୋ ସବୁ ବି ଦେଖିଥିଲି। ପୁଣି ଦେଖିଥିଲି କାର୍ଲମାର୍କସ ଆଉ ଲେନିନଙ୍କୁ, ହୋ ଚି ମିନ, ଚି ଗୋଭେରାଙ୍କୁ।ମୋର ଧାରଣା ଦୃଢ଼ୀଭୂତ ହୋଇ ଯାଇଥିଲା ଯେ ଦାଢ଼ି ଜ୍ଞାନର ଯେପରି ପ୍ରତୀକ, ବୀରତ୍ୱ ଏବଂ ରସିକତ୍ୱର ସେପରି ପ୍ରତୀକ।

ଏଥର ଆପଣ ଭଲା କୁହନ୍ତୁ ମୁଁ ରତନପଲାର ଦାଢ଼ିଆବାବୁଙ୍କ ଦାଢ଼ିକୁ ଦେଖି ପରିହାସ କରିବାକୁ ଯିବି କାହିଁକି ? ପ୍ରକୃତ କଥା କଣ ତେବେ ଏଥର ଶୁଣନ୍ତୁ।

ସମ୍ବଲପୁର ଝାଡ଼ୁଆପଡାରେ ରହୁଥିବା ମୋର ଜଣେ ଡାକ୍ତର ବନ୍ଧୁଙ୍କ ବାହାଘର ଠିକ୍ ହେଲା କଳାହାଣ୍ଡିରେ ରତନପଲାର ଗୌନ୍ତିଆଙ୍କ ଘରେ। ଆମ ସାଙ୍ଗସାଥୀ ଦଳେ ବରଯାତ୍ରୀଙ୍କ ସଙ୍ଗରେ ଯାଇଥିଲୁଁ। ଗୁଡ଼ିଏ ବାଟ, ଆଉ ଧୂଳି। ତଥାପି ଆମ ମଉଜ ମଜଲିସ୍ ବେଶ୍ ଜମିଯାଇଥିଲା। ସବୁଠେଇଁ ତ ବରଯାତ୍ରୀବାଲାଏ ଗଡ଼ଜିଣିଥିବା ଢଙ୍ଗ କରନ୍ତି - ସହରରୁ ଯାଇଥିବା ଆମେ ବାବୁମାନେ ବି ନିପଟ ମଫସଲ ରତନପଲାରେ ସେମିତି ଢଙ୍ଗରଙ୍ଗ କଲୁଁ - ସିଟିମାରି, ଫଟୋ ଖିଞ୍ଚି, ଗଜଲ ଗାଇ ଅଣ୍ଟାକୁ ଅଣ୍ଟା ହାତ ଭିଡ଼ି, ଟୁଇଷ୍ଟ ନାଚି, ଯାବତୀୟ ସହରିଆ ଠିଆ ଠାଣି ଦେଖାଇଲୁ। 'ଏମାନେ କଣ ଜୋତା ଉପରେ ବି ପାଣି ଢାଳି ଗାମୁଛାରେ ପୋଛି ଦେବେ କିରେ'ଠାରୁ 'ଏ ଅଞ୍ଚଳର ଲୋକେ କ'ଣ ଭଲ ପାନ ବି ଖାଇ ଜାଣନ୍ତିନି' ପର୍ଯ୍ୟନ୍ତ ଟୀକା ଟିପ୍‌ପଣୀ କଲୁଁ; ଆଉ ବେଦୀ ପାଖରେ ବସି 'ଆରେ ରଘୁ, ଅନା ଅନା ସେ ଆଡ଼ିକି ଟିକିଏ ଅନା'ରୁ 'ଜାଳି ଦେବ କିରେ' ପର୍ଯ୍ୟନ୍ତ ମନ୍ତବ୍ୟମାନ ଦେଇ ଶେଷରେ ବୋର୍ ହୋଇଗଲୁ। ଦିନ ଏଗାରଟା ବେଳକୁ କୌଣସି ଦୁର୍ଘଟନା ବିନା ହାତଗଣ୍ଠି ପଡ଼ିଗଲା, ଆଉ ବରକନ୍ୟା ପଶିଗଲେ ଘର ଭିତରକୁ କଣ ସବୁ ଖେଳ ଖେଳିବା ପାଇଁ। ଆମେ ଆଉ କରୁଁ କ'ଣ ? ଛୋଟ ଗାଁଟିଏ। ଏପାଖ ସେପାଖ ଦି' ଚାରିଥର ଘେରା ମାରିଲା ବେଳକୁ ଶେଷ। ଆଖୁ କିଆରି, ପୋଖରୀର ମାଛମରା, ଯାହା ଯେଉଁଠି ଦେଖିବା କଥା, ଖାଇବା ବା ଚାଖିବା କଥା ସେସବୁ ବି ସରିଗଲା। ତା'ପରେ ! ବାହାଘରେ ଗାଉଁଲି ବାଜାର ମହୁରିଟିଏ ମଝିମଝିରେ ନିଦରୁ ଉଠିଲା ପରି ପେଁ ପେଁ କରୁଥାଏ। ଗ୍ରାମୋଫୋନଟିଏ ବି ଭେଁ ଭେଁ କରି 'ଧନୁର୍ଦ୍ଧାରୀ' ବୀରବରଙ୍କ କରରେ ଧନୁଶର ଥିଲା ନା ନାହିଁ ପଚାରି ଦେଇ ପୁଣି ଅଯୋଧ୍ୟାକୁ ଗଲେ ମାଆ କ'ଣ ପଚାରିବେ ସେ କଥା ସାତ ଆଠଥର ଘୋଷଣା କରିସାରିଲାଣି। ମଧ୍ୟାହ୍ନ ଭୋଜନ ବି ଭଲ ଭାବରେ ସରିଗଲା। ତା'ପରେ ସମୟ କଟିବ କେମିତି ? ସିନେମା ଘରଟିଏ ତ ନାହିଁ ଯେ ମାଟିନି ଶୋ ଦେଖିହେବ। ଏତେ ଦୂରକୁ ଆସି ଶୋଇବ ବା କ'ଣ ! କେତେ ଜଣ ବସି ତାସ୍ ଖେଳୁଥାନ୍ତି ! ଆଉ କେତେ ଧରିଥାଆନ୍ତି ଗପସପ। କୌଣସିମତେ ସମୟ କଟାଇଦେବା କଥା। ବଡ଼ ବୋରିଂ। ଆମେ ଚାହିଁ ରହିଥିଲୁଁ ସନ୍ଧ୍ୟାରେ ଫୁଲସଭାକୁ, ସେଇଠି ହୁଏତ ପାଣ୍ଡିତ୍ୟର କିଛି ଆତସବାଜୀ ଆଉ ବରକନ୍ୟା ଦୁଇ ପକ୍ଷର କିଛି ବଳ କଷାକଷି ହୋଇଯିବ।

ଆମ ଦଳରେ ଅଛନ୍ତି ବାଚସ୍ପତି ପଣ୍ଡିତ ଲିଙ୍ଗରାଜ ଶର୍ମା। ସେ ଯଦି କାଳିଦାସ ଭବଭୂତିଙ୍କୁ ଧରିଦେବେ, ବରଗଡ଼, ବଲାଙ୍ଗୀର, ଭବାନୀପାଟଣା ପଣ୍ଡିତଙ୍କ ପାଟି ବି ଖନି ମାରିଯିବ। ଅଛନ୍ତି ଅଧ୍ୟାପକ ଗଉରା ମିଶ୍ର। ମାନସିଂହ, ରାଉତରା, ଗଡ଼ନାୟକ,

ଗୁରୁ ମହାନ୍ତି ଯେମିତି ତାଙ୍କ ମୁହେଁ ମୁହେଁ - ରାଧାନାଥ, ଗଙ୍ଗାଧର ସେମିତି ତାଙ୍କ ଜିଭ ଅଗରେ। ଆଉ ଅଛନ୍ତି ପାଲା ଗାୟକ ମଗୁ ପ୍ରହରାଜ। ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଅଭିମନ୍ୟୁ, ଗୋପାଳକୃଷ୍ଣ ସମସ୍ତଙ୍କ ମୁହଁରେ ଚଅଁର ବୁଲାଇ ଲୋକ ସିଏ। ଆମେ ସବୁ ବି ଅଛୁଁ - ୱା-ୱା-ୱା- କହି ତାଳି ମାରିବା ପାଇଁ। ଏ କନ୍ୟା ପାର୍ଟିର 'ଅଇଲେ ନାରଦ ମୁନି ହୋ... କାଖେବାଇଗଣ ଘେନି ହୋ...' ମାନଙ୍କ ନାକ ଯଦି ତଳେ ଘୋଷାରି ନ ଦେଇଛୁଁ! ଅବଶ୍ୟ ଏ ଅଞ୍ଚଳରେ କିଏ ଜଣେ କୁଆଡ଼େ ଅଛନ୍ତି ଯେ ସିଏ ଆସାମାନ୍ୟ - ସାହିତ୍ୟ ଅଳଙ୍କାର, ବ୍ୟାକରଣରେ ଶାସ୍ତ୍ରୀ, ଜ୍ୟୋତିଷରେ ଆଚାର୍ଯ୍ୟ ଆଉ ତର୍କବାଗୀଶ। ତେବେ ସେ କାହିଁକି ଏଠିକି ଆସିବେ ?

ଚା' ଜଳଖିଆ ଖାଇସାରିବା ପରେ ହିଁ ଚାରୋଟି ବଡ଼ବଡ଼ ଦରିର ଗୋଟାଏ ପଟରେ ଆମେ ଆମ ପଣ୍ଡିତମାନଙ୍କୁ ବରକର୍ତ୍ତାଙ୍କ ସହ ସାମନାରେ ଥାପି ଦେଇ 'ରଣଂ ଦେହି' ଢଙ୍ଗରେ ବସିଗଲୁଁ। ଅନ୍ୟ ପଟରେ କନ୍ୟା ପିତାଙ୍କୁ ନେଇ ପୁରୋହିତ ମଧ ବସିଗଲେଣି। କନ୍ୟା ପାର୍ଟିର ଆଉ କେତେ ଆସିଗଲେ ସଭା ଆରମ୍ଭ ହେବ। ଅତର, ଚନ୍ଦନ, ଫୁଲ, ପାନ, ସିଗାରେଟ ବି ଆସିଗଲାଣି। କନ୍ୟାପିତା ଡାକିଲେ - 'ଆରେ ସୁର, ଦାର୍ଢ୍ୟତା କୁଆଡ଼େ କଲା କିରେ ? ସେ ଆଡ଼ିକି ତ ଅନେକ ଲୋକ ଅଛନ୍ତି... ତାକୁ ଡାକିଦେ ଏଆଡ଼ିକି ?'

'ଦାର୍ଢ୍ୟତା' - କେମିତି ଅଦ୍ଭୁତିଆ ନାଁଟିଏ!

କିଛି କ୍ଷଣ ପରେ ଗୋଟାଏ ଟ୍ରେରେ ପଣା ଗିଲାସ କେତେ ଧରି ଜଣେ କେହି ସଭାସ୍ଥଳରେ ଦେଖାଦେଲେ। ତାଙ୍କ ପଛରେ ଥିଲେ ଜଣେ ଅସାଧାରଣ ଭଦ୍ରଲୋକ। ସେ ଭଦ୍ରଲୋକଙ୍କ ମୁହଁକୁ ଅନାଇଦେଇ ରଘୁ ମୋ କାନ ପାଖରେ ଫୁସୁରୁ ଫୁସୁରୁ କହିଲା, ଦେଖିଲୁଣି ସେ...' ମୁଁ କିନ୍ତୁ ତା'ର ପୂରା କଥା ଶୁଣିପାରିଲିନି। ମୋ' ମନ ଚାଲିଯାଇଥିଲା କେତେ ବର୍ଷ ତଳକୁ।

ରାଉରକେଲାର ଇନ୍ଦିରା ଗାନ୍ଧୀ ପାର୍କରେ ଜର୍ମାନ କ୍ଲବ ଆଡ଼ିକି ଯେଉଁ ଫେନସିଂ ସେପାଖର ଗୋଟାଏ ଦେବଦାରୁ ଗଛ ଭିତରର ଝାପ୍‌ସା ଅନ୍ଧାରରେ ମୁଁ ଦେଖିଥିଲି କେମିତି ଗୋଟାଏ ଦୃଶ୍ୟ।

ଆମେ ସେଦିନ ପୁରୁଣା ରାଉରକେଲାରୁ କିଛି ବଜାରସଉଦା କରି ଫେରୁଥିଲୁଁ। ଭିଣୋଇଙ୍କ କାର୍‌ରେ ଭିଣୋଇ, ମୁଁ ଓ ଭିଣୋଇଙ୍କ ଡ୍ରାଇଭର। ଇନ୍ଦିରା ଗାନ୍ଧୀ ପାର୍କ ଡେଇଁଯିବା ଆଗରୁ ଦେଖିଲୁ, ରୋଡ ଉପରେ ସାଇକେଲ ଆଉ ସ୍କୁଟର କେତେ ଜମା ହୋଇଛନ୍ତି। ଆମ ଗାଡ଼ିକି ସେମାନେ ଅଟକାଇ ଦେଇ ବାଘୁଆ ମହୁମାଛି ମାତିଛନ୍ତି କହି କାଚସବୁ ବନ୍ଦ କରି ଆଗକୁ ଯିବାକୁ ଉପଦେଶ ଦେଲେ। ମୁଁ ଦେଖିଲି ଆଗରେ

ରାସ୍ତା ଖାଲି, କିନ୍ତୁ ରାସ୍ତା ଉପରକୁ ଆକାଶ କେମିତି ଧୂସର ଦିଶୁଛି। ଠିକ୍ ସେ ଦେବଦାରୁ ଗଛର ସାମାନ୍ୟ ଆଗକୁ ରାସ୍ତା ଉପରେ ସାଇକେଲଟିଏ ପଡ଼ିଛି; ଆଉ କେହି ଜଣେ (ସେହି ସାଇକେଲର ଆରୋହୀ ବୋଧହୁଏ) ରାସ୍ତା ମଝିରେ ଡେଉଁଛନ୍ତି ଆଉ 'ମରିଗଲି ମରିଗଲି' ଚିତ୍କାର କରୁଛନ୍ତି। ଆମ ଡ୍ରାଇଭର ଝରକା କାଚ ବନ୍ଦ କରୁ କରୁ ଉପଦେଶ ଛାଡ଼ିଦେଲା - 'ଦଉଡ଼ି ଯାଇ ପୋଖରୀ ଭିତରେ ବୁଡ଼ ମାର', ତା'ପରେ ନିଜ ଅବିବେକିତା ବୁଝିପାରିଲା ନା କ'ଣ - କହିଲା 'ବସିପଡ଼ି ଧୋତିରେ ମୁହଁ ଢାଙ୍କି ଦିଅ।'

ସେ ସାଇକେଲବାଲା ଟ୍ରାଉଜର ପିନ୍ଧିଛି - ଧୋତି ତା' ପାଖକୁ ଆସିବ କେଉଁଠୁ? ମୋର ହଠାତ୍ ଖିଆଲ ହେଲା ଆମେ ଯଦି ପିଆଜ ଆଉ ଆଳୁ ସବୁକୁ ଗାଡ଼ି ଚଟାଣରେ ଢାଳି ଦେଇ ସେ ବସ୍ତା ଦୁଇଟା ସାଇକେଲବାଲାକୁ ବଢ଼ାଇ ଦେଇପାରୁଁ! ମୋର ଅନୁରୋଧରେ ଡ୍ରାଇଭର ଗୋଟାଏ କଣା ବସ୍ତାକୁ ନିଜ ମୁଣ୍ଡରେ ଢାଙ୍କି ଦେଇ ଅନ୍ୟ ବସ୍ତା ଧରି ସେ ନୃତ୍ୟକାରୀ ବିଚରା ପାଖକୁ ଦଉଡ଼ିଗଲା; ଆଉ ସେ ବସ୍ତାଟି ବି ତାଙ୍କ ମୁଣ୍ଡରେ ଗଳାଇ ଦେଇ ଧୀରେ ଧୀରେ ତାଙ୍କୁ ଆମ କାର୍ ଆଡ଼ିକି ଭିଡ଼ିଆଣିଲା। ହଜାର ହଜାର ବାଘୁଆ ମହୁମାଛି ଆକାଶକୁ ଘୋଡ଼ାଇ ରଖିଥାଆନ୍ତି। କାର୍‌ର କବାଟ ଟିକିଏ ଖୋଲିଲା କ୍ଷଣି ଅତ୍ୟାଚାରିତଙ୍କ ସାଙ୍ଗକୁ କେତୋଟି ମହୁମାଛି ବି ପଶିଆସିଲେ - ସେ ସମସ୍ତେ ବୋଧହୁଏ ରାଗରେ ଅନ୍ଧ ଅଥବା ଚୋଟ ମାରିମାରି ଅବଶ ହୋଇସାରିଥିଲେ - ଡ୍ରାଇଭର ସେସବୁକୁ ବସ୍ତାରେ ଲପେଟି ନେଇ ଧୀରେ ଧୀରେ କାର୍ ଆଗେଇ ନେଇଥିଲା। ସାଇକେଲ ଆରୋହୀଙ୍କ ପାଖରୁ ଶୁଣିଲୁ ତାଙ୍କ ଆଗରେ ଯାଉଥିବା କେହି ଜଣେ ଚଗଲା ମଟରସାଇକେଲବାଲା ମହୁଫେଣାକୁ ଟେକାଟିଏ ମାରି ଉଭାନ ହୋଇଯାଇଥିଲା; ଆଉ ମହୁମାଛିମାନେ ଆକ୍ରମଣ କରିଥିଲେ ତାଙ୍କୁ।

ମୋର ଏବେ ହଠାତ୍ ଆଶଙ୍କା ହେଲା - ଏ ଭଦ୍ରଲୋକଙ୍କ ବାଘୁଆ ମହୁଫେଣା ଉପରେ ଯଦି କେହି ଆଜି ସେମିତି ଟେକାଟିଏ ଫିଙ୍ଗିଦିଏ!

ଭଦ୍ରଲୋକ ତାଙ୍କ ଥୋଡ଼ିର ସିମେଣ୍ଟ ବସ୍ତା ସହ କନ୍ୟାପିତାଙ୍କ ପାଖରେ ବସିଲେ। ଯଥା ସମୟରେ ବରକନ୍ୟା ସଭାସ୍ଥଳକୁ ଆସି ଯଥାନିୟମ ମୁଣ୍ଡିଆ ମାରି ଆଶୀର୍ବାଦ ଗ୍ରହଣ କଲା ପରେ ପୁରୋହିତ ଆରମ୍ଭ କଲେ - 'ପୁଅ ସିନା ଗୋଟିଏ କୁଳ ରଖେ, ଝିଅ ରଖେ ଦୁଇ କୁଳ...।' ସମସ୍ତେ ମୁଣ୍ଡ ଟୁଙ୍ଗାରୁଥିଲେ। କନ୍ୟାପିତା ଏଥର ବରପିତାଙ୍କୁ ସମ୍ବୋଧନ କରି କହିଲେ - 'ଆପଣ ତ ଜାଣନ୍ତି ଆମ ଏ ପାଖରେ ହାଇସ୍କୁଲ କି କଲେଜ ନାହିଁ, ଝିଅ ତେଣୁ ବେଶି ପଢ଼ିନି। ତେବେ ଘରକରଣା କିଛି

କିଛି ଶିଖିଛି। ଆପଣଙ୍କୁ ଏବେ ଲାଗିଲା। ଅଲିଅଳୀ ଝିଅ, ଗେଲବସରରେ ବଢ଼ିଛି- ଭୁଲଭଟକା ଦୋଷ ଅପରାଧ କିଛି କଲେ କ୍ଷମା ଦେଇ ଚଳାଇନେବେ...।'

ଏଇଠି ସାଧାରଣ ଭାବରେ ବରପିତା କହିବା କଥା - 'ଆପଣଙ୍କ ଝିଅ କଣ ଆମର ଝିଅ ନୁହେଁ?' ଅଥବା ସେମିତି କିଛି। କିନ୍ତୁ ସେ କିଛି କହିବା ପୂର୍ବରୁ ହିଁ ଗଉରାବାବୁ ମାଡ଼ିପଡ଼ିଲେ ଏବଂ ମୁହଁ ବଙ୍କାଇ ଉପଦେଶ ଝାଡ଼ିଦେଲେ - 'ଆପଣ ଏ ଅଞ୍ଚଳରେ କଲେଜଟିଏ ସ୍ଥାପନା କରୁନାହାନ୍ତି କାହିଁକି? ଆଜିକାଲି ତ ଶିକ୍ଷା ହେଲା ସବୁ- ସେ ଅନ୍ଧାରି ଯୁଗ କଣ ଆଉ ଅଛି ଯେ ଝିଅଙ୍କୁ ଗୌରୀ ରୋହିଣୀ କରି ଘର ଭିତରେ ବାନ୍ଧିରଖିଥିବେ?'

ମୋର ଯେଉଁ ଆଶଙ୍କା ଥିଲା ତାହା ହିଁ ଘଟିଗଲା। ମନେହେଲା ଟେକାଯାଇ ସିଧା ପଡ଼ିଛି ସେ ମହୁଫେଣାରେ। ଦାଢ଼ିଆ ପଣ୍ଡିତେ ହାତ ଛିଞ୍ଚାଡ଼ି ଗାଇଉଠିଲେ, 'ମୁଁ ତ ପାସ୍ କରିଅଛି ବି.ଏ. - ମୋତେ ହଳିଆ ରଖିବ କିଏ?' ତାପରେ ସେ ଦାଢ଼ି ନଚାଇ ଯେତେବେଳେ ସୁସୁରେଇଲେ ଏ.ବି.ସି.ଡି... ଏମ୍.ଏନ୍.ଓ.ପି. ... ମୁଣ୍ଡେ ନାଇଥିବୁ କାଳିଆ ଟୋପି ... ହୋ...କଥା ହେବୁ ଦାନ୍ତ ଚିପି...' କନ୍ୟାପିତା ତାଙ୍କ ହାତ ଧରି କଣ ସବୁ ବୁଝାଇବସିଲେ। ଅବସ୍ଥା ଦେଖି ମୁଁ ଠଉରାଇନେଲି ଯେ ଏ କନ୍ୟା ପାର୍ଟିର ପଣ୍ଡିତେ ଇଂରାଜୀ ଶିକ୍ଷା ଉପରେ ବାଘୁଆ ଆକ୍ରମଣ ଆରମ୍ଭ କରିଦେଇଛନ୍ତି; ଆମକୁ ହୁଏତ ଏଥର ରାସ୍ତା ଉପରେ ନାଚିବାକୁ ପଡ଼ିବ। ପରାଜୟ ଅପେକ୍ଷା ସାମୟିକ ପଛଘୁଞ୍ଚା ଶ୍ରେୟସ୍କର ଭାବି ମୁଁ ଉଠିପଡି କହିଲି - 'ଦେଖନ୍ତୁ, ସନ୍ଧ୍ୟା ହୋଇ ଆସିଲାଣି, ଅନ୍ଧାର ହୋଇଗଲେ ପୋଖରୀଆଡ଼ିକି ଯାଇ ଅଣ୍ଟା ପଖାଳିବାକୁ ଅସୁବିଧା ହେବ। ବରକନ୍ୟା ତ ଆଶୀର୍ବାଦ ନେଲେଣି, ଏବେ ଏ ସଭା ବନ୍ଦ ହେଉ।' ଗଉରାବାବୁ କଣ କହିବାକୁ ଯାଉଥିଲେ; କିନ୍ତୁ ସେତିକିବେଳେ ଆମ ଦଳର ରଘୁ, ବିଜୁ, ଟୁନା, ବାଦଲ ସମସ୍ତେ ଏକାସଙ୍ଗରେ ଉଠିପଡ଼ିଲେ। ସଭା ଆପଣଛାଏଁ ଭାଙ୍ଗିଗଲା।

କିଛି ଦିନ ପର କଥା।

ମୁଁ ସମ୍ବଲପୁରର ଗୋଲବଜାରରେ କ'ଣଟିଏ କିଣିବା ପାଇଁ ଗୋଟାଏ ଦୋକାନକୁ ପଶିଯାଉଛି - ହଠାତ୍ ଦେଖିଲି ସେଇଠି ରାଜୁ - ରତନପଲା ଗୌନ୍ତିଆଙ୍କ ବଡ଼ପୁଅ ରାଜୁ କେତେ ବର୍ଷ ତଳେ ଜି.ଏମ୍. କଲେଜରେ ପଢୁଥିଲା - ବେଶ୍ ସ୍ମାର୍ଟ, ରତନପଲାରେ ଆମ ଦଳର ସବୁ ଦେଖରେଖ ବୁଝାମଣା ସିଏ ହିଁ କରୁଥିଲା।

କଥାବାର୍ତ୍ତାରୁ ମୁଁ ଜାଣିଲି, ସେ ତା' ଭଉଣୀକୁ କିଛିଦିନ ପାଇଁ ଗାଁକୁ ନେବାକୁ ଆସିଛି। ମୁଁ ଯେତେବେଳେ ତାଙ୍କ ଗାଁର ସେ ଦାଢ଼ିଆ ପଣ୍ଡିତଙ୍କ ଖବର ପଚାରିଲି -

'ଦାଢ଼ିଆ ପଣ୍ଡିତ!' କହି ସେ ଆବାକାବା ହୋଇଗଲା। ମନେ ପକାଇଦେବାକୁ ଯାଇ ମୁଁ କହିଲି - 'ଆରେ ତମ ଗାଁର ସେ ଭଦ୍ରଲୋକ, ଯିଏ ରୀତିମତ ଗୋଟାଏ କୁଞ୍ଚି ଝାଉଁଗଛକୁ ଓଲଟେଇ ଥୋଡ଼ିରେ ଭିଡ଼ିଛନ୍ତି - ଫୁଲସଭାବେଳେ ତମ ବାପାଙ୍କ ପାଖରେ ବସି - ମୁଁ ତ ପାସ କରିଛି ବି.ଏ.... ଗାଇଥିଲେ।'

ରାଜୁ ହସରେ ଫାଟିପଡ଼ିଲା। ଗରାଖମାନେ ଆମକୁ ଅନାଇଛନ୍ତି ଜାଣି ଆମେ ଦୋକାନରୁ ଓହ୍ଲାଇଆସି ସଡ଼କ କଡ଼ରେ ଠିଆ ହୋଇସାରିଥିଲୁଁ। ରାଜୁ କହିଲା - 'ଆମ ରବି ଦାଢ଼ିଆ! ସେ ପୁଣି ପଣ୍ଡିତ? ଅତି କଷ୍ଟରେ ଗୁଆପରି ଏଡ଼ିକି ଏଡ଼ିକି ଦି' ଚାରିଟା ଅକ୍ଷର ଲେଖେ। କଥାର ଛଟକ କିନ୍ତୁ ବେଶ୍ ଜାଣେ। ଏମିତି ଲଫଙ୍ଗର୍ ଯେ ତା' ଜମିବାଡ଼ି ବିକି ଦେଇ ଭାରତସାରା ଘେରାଏ ବୁଲିଆସିଲା। କାମଧନ୍ଦା କିଛି ନାହିଁ; ଆଉ ଗାଁ ଝିଅ-ବୋହୂଙ୍କ ବାଟରେ ଘାଟରେ ଟାହି ଟାପରା କରୁଛି ବୋଲି ଗାଁବାଲାଏ ତାକୁ ଗାଁରୁ ବାହାର କରିଦେବାକୁ ବସିଥିଲେ। ଯା' ହେଲେ ବି ଗାଁଲୋକ ତ - ବନ୍ଧୁବାନ୍ଧବ ବି ହେବ - ବାପା ତାକୁ ହଳିଆମାନଙ୍କ କାମ ଦେଖରେଖ କରିବା ପାଇଁ ରଖିନେଲେ। ଆମ ଘରେ ଖାଏ। ତାର ମାସିକ ବେତନ ଠୁଳାଇ ବାପା ତାକୁ ବାହା କରିଦେବାକୁ ଠିକ୍ କଲେ ଯେ କେଉଁଠି ବି ଝିଅ ମିଳିଲେନି। ସମସ୍ତଙ୍କର ସେଇ ଗୋଟାଏ କଥା - ସେ ଲଫଙ୍ଗରକୁ କିଏ ଝିଅ ଦେବ? ନିଜ ପ୍ରତି ତାର ତ ଗୋଟାଏ ଗୁଁ ଥିଲା - ରବିକୁ ବୋଧହୁଏ ସେ କଥା ବାଧିଲା - ପ୍ରତିଜ୍ଞା କଲା ଯେ ବାହା ନ ହେବାଯାଏ ସେ ଆଉ ଦାଢ଼ି କାଟିବନି। ଦାଢ଼ି ବି ତାକୁ ଏବେ ବେଶ୍ ମାନୁଛି, ଗାଁରେ ତାର ନାଁ ହୋଇଯାଇଛି ଦାଢ଼ିଆନନା। କେହି କେହି ଥଟ୍ଟାରେ 'ଦାର୍ଢ୍ୟତାଭକ୍ତି' ବୋଲି ବି ଡାକନ୍ତି। ରାଜୁ ତା'ପରେ ଜଣାଇଦେଲା ଯେ ଦାଢ଼ିଆ ବି ତା' ସଙ୍ଗରେ ସମ୍ବଲପୁର ଆସିଛି।

ମୁଁ ପଛ କଥାକୁ ମନେ ପକାଇ ମନକୁ ମନ ହସିଲି ଆଉ ସଞ୍ଜବେଳେ ଆମ ଘରେ ଚା' ଖାଇବା ପାଇଁ ରାଜୁ ଆଉ ଦାଢ଼ିଆବାବୁଙ୍କୁ ଆମନ୍ତ୍ରଣ କଲି।

ଆମ ଘର ପାଖରେ ତ କିଶୋରବାବୁଙ୍କ ଘର। ତାଙ୍କ ଝିଅ ସବିତାର ବୟସ ୩୦ କି ୩୫ ହେବଣି; କିନ୍ତୁ ସେ ଏଯାଏ ବାହା ହୋଇନି। ଝିଅଟି ଦେଖିବାକୁ ବେଶ, କିଛି ମନ୍ଦ ନୁହେଁ - ଅବଶ୍ୟ ଟିକିଏ ଉଦଣ୍ଡୀ। ଭଲ ଘରମାନଙ୍କରୁ ଯେତେ ପ୍ରସ୍ତାବ ଆସିଲା, ସବୁଠେଇଁ ଟାଣ ଯୌତୁକ। ଯେଉଁଠି ଯୌତୁକ ନାହିଁ, ସେଇଠି ବୁଢ଼ାହଡ଼ା ପାତ୍ର। ଘରର ଆର୍ଥିକ ସମ୍ବଳ ତ ଜଣା - ସବିତା ମୁହେଁ ମୁହେଁ ସମସ୍ତଙ୍କୁ ଶୁଣାଇଦେଲା; ଆଉ ବାପା ମା'ଙ୍କୁ କହିଲା ଯେ, ସେ ଏଇଠିସେଇଠି ବାହା ହେବନି କି ତା' ବାପା-ମା'ଙ୍କ ଉପରେ ବୋଝ ବି ହେବନି। ପ୍ରୌଢ଼ଶିକ୍ଷା ତାଲିମ କେନ୍ଦ୍ରଟିଏ ତ ନୂଆ ଖୋଲିଥାଏ; ସେଇଠି ସେ ଭର୍ତ୍ତି ହୋଇଗଲା। ପାସ୍ କରି ଏବେ

ମ୍ୟୁନିସିପାଲଟିର କେଉଁ ଗୋଟାଏ ଛୋଟ ସ୍କୁଲରେ ଛୁଆଙ୍କୁ ପଢ଼ାଉଛି। ମୁଁ ଭାବିନେଲି ଏ ଦାଢ଼ିଆ ହୁଏତ ସବିତାକୁ ବେଶ୍ ଖାପ ଖାଇବ।

ଚା' ଜଳଖିଆ ପରେ ଆମେ କିଶୋରବାବୁଙ୍କ ଘରକୁ ବୁଲିବାକୁ ଗଲୁ। ମନେହେଲା ପ୍ରଥମ ଦେଖାରେ ହିଁ ସବିତା ଆଉ ଦାଢ଼ିଆ - ଦି'ଟା ଉଦଣ୍ଡ ବଗ - ବଗୁଲୀ ପ୍ରେମର ଅଠାକାଠିରେ ଲାଖିଗଲେ। ଗରମ ଗରମ ହିଁ ଲୁହାକୁ ବାଡ଼େଇଦେବା ଭଲ ଜାଣି ମୁଁ ବି ବେଳାବେଳି ପ୍ରସ୍ତାବଟି ବାଢ଼ିଦେଲି। ଦାଢ଼ିଆ ହସି ହସି କହିଲା, 'ଆପଣ ଯଦି ଠିକ୍ ଭାବୁଛନ୍ତି ସେଥିରେ ମୋର ଆପତ୍ତି କ'ଣ ?' ସବିତା ଲାଜୁଆ ଉତ୍ତର ଦେଲା - 'ବାପା ମା' ଯଦି ମତ ଦେଉଛନ୍ତି, ମୁଁ କିଏ ତାଙ୍କ କଥା ଭାଙ୍ଗିବି ?'

କଥାଟି ଏମିତି ଧଡାସ୍‌କିନା ସଫଳ ହୋଇଯିବ ବୋଲି ତ ଆମେ କେହି ଆଶା କରି ନ ଥିଲୁ - ତା' ପରଦିନ ହିଁ ଗଣେଶ ପଣ୍ଡିତଙ୍କ ପାଖକୁ ଯାଇ ବିବାହର ଦିନ ସ୍ଥିର କରିନେଲୁଁ।

ବିବାହ ଦିନ ବି ପହଞ୍ଚିଗଲା। ରତନପଲାରୁ ଗୋଟାଏ ଛୋଟ ବରାତିଦଳ ଆସିଥାଆନ୍ତି। ବାହା ଦିନ ମୁଁ ଆଉ ମୋର ସାଙ୍ଗସାଥୀ କେତେଜଣ ବରାତରେ ସାମିଲ ହୋଇଗଲୁଁ। ହଳଦିଆ ଧୋତି-ଚାଦରର ପୃଷ୍ଠଭୂମିରେ ଦାଢ଼ିଆବାବୁଙ୍କ କଳା ଦାଢ଼ିଟି ସତରେ ଅତି ଚମତ୍କାର ଦେଖାଯାଉଥିଲା। ଗୋଡ଼ ଧୋଇଲାବେଳକୁ ଖୁସିରେ ଦାଢ଼ିଆବାବୁ ଯେତେବେଳେ ହସିଦେଲେ ସେ ଦାଢ଼ି ନିଶ ଆଉ ବାଳର ବେଷ୍ଟନୀ ଭିତରେ ଧଳା ଦାନ୍ତ ଆଉ ଜୁଳୁଜୁଳିଆ ଆଖି ଝଲସି ଉଠିଲା।

କୁଙ୍କୁମ ବେଦୀରେ ପ୍ରାରମ୍ଭିକ କ'ଣ ସବୁ ହେଲା ପରେ ତ ବର ସେ ବେଦୀରୁ ରହଣିସ୍ଥାନକୁ ଫେରିଯାଇ ଲୁଗା ବଦଳାଇ ମୁକୁଟ ପିନ୍ଧି ବିବାହ ବେଦୀକୁ ଆସେ ଦାଢ଼ିଆବାବୁ ଯେତେବେଳେ କୁଙ୍କୁମ ବେଦୀରୁ ବରର ବ୍ୟବହାର ପାଇଁ ଦିଆଯାଇଥିବା କୋଠରିକୁ ଫେରିଗଲେ, ମୁଁ ସେତେବେଳେ ହିଁ ଭୁଲ କରି ବସିଲି। ବାହା ନ ହେବା ଯାଏ ତ ଦାଢ଼ି ରଖିବେ ବୋଲି ଦାଢ଼ିଆବାବୁ ପ୍ରତିଜ୍ଞା କରିଥିଲେ। ମୁଁ ପାନାମା ଖୁରଟିଏ ଏତିକିବେଳେ ଉପହାର ଦେଇ ବାରିକକୁ ଅନୁରୋଧ କଲି, ଦାଢ଼ିଆବାବୁଙ୍କ ଦାଢ଼ି ଏଥର ସଫା କରିଦେବାକୁ। ଆମ ଭିତରୁ କେତେ ମନା କରୁଥିଲେ; କିନ୍ତୁ ଅଧିକାଂଶଙ୍କ ମତ ହେଲା ଯେ, ଦାଢ଼ି ସଫା କରିବା ପାଇଁ ସତରେ ଏହା ହିଁ ପ୍ରକୃଷ୍ଟ ସମୟ। ବର ନିଜେ ବି ଖୁସିରେ ରାଜି ହେଲେ, ଆଉ ସେ ଖିଅର ହେଲା ଦାଢ଼ିକୁ ଗୋଟାଏ ଗାମୁଛାରେ ବାନ୍ଧି ରଖିବା ପାଇଁ ବାରିକକୁ ଆଦେଶ ଦେଲେ।

ଯଥା ସମୟରେ ମୁକୁଟ ପିନ୍ଧାଇ ଆମ ବରକୁ ବେଦୀ ଉପରକୁ ନେଇଗଲୁଁ। ଅନ୍ୟ ପାଖରୁ କନ୍ୟା ବି ବେଦୀ ଉପରକୁ ଉଠି ଆସିଲେ। କିନ୍ତୁ... ଇଏ କ'ଣ ? ଝିଅଙ୍କ

କିଛି ଫୁସୁରୁଫାସୁରୁ କଥାବାର୍ତ୍ତା ପରେ କିଏ ଜଣେ କହିଲା – 'ବର ବଦଳି ହୋଇଛି' ଆଉ ଶୁଣାଇଦେଲା ଯେ ପ୍ରକୃତ ବର ନ ଆସିଲେ କନ୍ୟା ବେଦୀରେ ବସିବନି !

କି ଆଶ୍ଚର୍ଯ୍ୟ କଥା ! ବର କାହିଁକି ବଦଳି ହୁଅନ୍ତା ? ସେହି ବର – ଖାଲି ଏଥର ଦାଢ଼ି ନାହିଁ ଯାହା। ଆମେ ଯେତେ କହିଲୁ – କେତେ ବୁଝାଇଲୁ, ସବିତାର କିନ୍ତୁ ଏକା ଜିଦ୍ – ସିଏ ଇଏ ନୁହେଁ। ସତରେ ରବି ଦାଢ଼ିଆ ଏଥର ଭିନ୍ନ ଦେଖାଯାଉଥିଲା – କେମିତି ବିକଳିଆ ଦିଶୁଥିଲା ତା' ମୁହଁ। ହନୁହାଡ଼ ବାରି ହୋଇ ଯାଉଥିଲା, ଗାଲ ଦି'ଟା ଦିଶୁଥିଲା ପଶିଲା ପଶିଲା – ଆଖି ପଶିଯାଇଥିଲା କୋରଡ଼ ଭିତରକୁ।

ଆମେ ଶେଷରେ ଗାମୁଛାବନ୍ଧା ଦାଢ଼ିକୁ ବି ଆଣି ଦେଖାଇଲୁ। କିନ୍ତୁ ସବିତା ଘର ଭିତରକୁ ଫେରିଗଲା। କୁଆଡ଼େ କହିଲା – ତା' ବର ତ କେଡ଼େ ଜ୍ଞାନୀ – ତାଙ୍କର ବ୍ୟକ୍ତିତ୍ୱ କେଡ଼େ ବିରାଟ – ଆଉ ଏଇ ଚେମେଣିଆ ହାଡୁଆ ଓଳିଆ ? ପୁଣି କୁଆଡ଼େ କହିଲା – 'ଯାର ପୁଣି ସାହସ ଦେଖ, ମୋ ବରର ଆସନରେ ଇଏ ବସିବ ?'

ରବି ଏବେ ଆଉ ଥରେ ଦାଢ଼ି ଛାଡ଼ିଛି। କିନ୍ତୁ ରତନପଲାର କେହିକେହି କହୁଛନ୍ତି ଯେ ରବିବାବୁଙ୍କ ନୂଆ ଦାଢ଼ି କୁଆଡ଼େ ବାୟା ଚଢ଼େଇର ବସା ପରି ଦିଶୁଛି। ଧୂସରରଙ୍ଗ ଯୋଗୁଁ କି ଦାଢ଼ିର ପାଖେ ସାନ ଆଉ ଗଣ୍ଠିଆ ହେଲା ବେଳକୁ ଆଉ ପାଖେ ଲମ୍ବିଯାଇଛି ବୋଲି କେଜାଣି ?

ବାହାଘର କଥା ପଡ଼ିଲେ ସବିତା ନାଗୁଣୀ ପରି ଫଣା ଟେକୁଛି ବୋଲି ତା' ବାପା କହୁଛନ୍ତି। ସେଥିପାଇଁ ମୁଁ ବି ଡରି ତା' ପାଖକୁ ଏଯାଏ ଯାଇନି। ସାମାନ୍ୟ ଟିକେ ଭୁଲ – ତହିଁରେ କେତେ କଥା ଘଟିଗଲା ? 'ଗତସ୍ୟ ଶୋଚନା ନାସ୍ତି' ବୋଲି ଅନେକେ କହନ୍ତି; କିନ୍ତୁ ରବିବାବୁଙ୍କ ଦାଢ଼ି ଆଉ ମହୁଫେଣା ପରି ଦିଶିବ ନା ସବିତା ପୁଣି ଥରେ ତାଙ୍କ ଆଡ଼ିକି କଅଁଳ ନଜର ପକାଇବ ?

# ଗଙ୍ଗଦତ୍ତର ପ୍ରତ୍ୟାବର୍ତ୍ତନ

(ବିଷ୍ଣୁ ଶର୍ମାଙ୍କୁ ନମସ୍କାରାନ୍ତେ)

ଆଶ୍ଚର୍ଯ୍ୟଭରା ଡବଡବ ଆଖିରେ ବଡ଼ପାଟିଟିକୁ ମେଲାକରି ଅନାଇଥିଲା ଗଙ୍ଗଦତ୍ତ - ତାର ଏ ନୂଆ ସଂସାରକୁ। ନାନା ଧରଣର ଜୀବଜନ୍ତୁ, ରଙ୍ଗବେରଙ୍ଗର ଚଢ଼େଇ, କିସମ୍ କିସମ୍‌ର ପ୍ରଜାପତି। ମାଳେ ବଗ ତା' ପାଖଦେଇ ଉଡ଼ିଗଲାବେଳେ ଏକ ଅଜଣା ଭୟରେ ସେ ଡେଇଁଯାଉଥିଲା ଗୋଟାଏ ସାରୁଗଛ ମୂଳକୁ। ବଗମାନେ ଡେଣା ଝାଡ଼ିଝାଡ଼ି ଦୂରାନ୍ତକୁ ଉଡ଼ିଗଲେ। ଭୟରହିତ ମନ ନେଇ ଗଙ୍ଗଦତ୍ତ ପୁଣି ଥରେ ମଜ୍ଜିଗଲା ତାର ଅସରନ୍ତି ଅନୁଶୋଚନାରେ।

କୂଅକୁ ଆଉ ଫେରିବନି ବୋଲି ଭଦ୍ର ଗୋଧି ହାତରେ ପ୍ରିୟଦର୍ଶନ ପାଖକୁ ସନ୍ଦେଶ ପଠାଇଦେଲା ପରେ ସେ ଏଥର କଣ କରିବ, ଅନେକ ସମୟ ଯାଏ କିଛି ଭାବିପାରି ନ ଥିଲା। ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବ କେହି ନାହାନ୍ତି। କୁଆଡ଼େ ଅବା ସେ ଯିବ! ଏକୋଇର ବଳା ଯମୁନା ଦତ୍ତକୁ ଯେଉଁଦିନ ପ୍ରିୟଦର୍ଶନ ଖାଇଗଲା କାନ୍ଦିକାନ୍ଦି ଆଖି ଫୁଲାଇ ଦେଇଥିଲା ତା' ସ୍ତ୍ରୀ - ବେଙ୍ଗୁଲୀ ରାଣୀ। ଶେଷରେ ପରାମର୍ଶ ଦେଇଥିଲା ଯେ ଗଙ୍ଗଦତ୍ତକୁ ଏବେ କୌଣସିମତେ କୂଅରୁ ଖସିଯିବାକୁ ହେବ କିଛି ଗୋଟାଏ ବାହାନା କରି। ବାହାନାଟି ମଧ୍ୟ ଦର୍ଶାଇ ଦେଇଥିଲା ସିଏ। 'ଉପରକୁ ଯାଇ ଅନ୍ୟ ବେଙ୍ଗମାନଙ୍କୁ କୂଅ ଭିତରକୁ ଡାକିଆଣିବି' ଶୁଣିଲେ ସାପ ହୁଏତ ଖୁସିରେ ରାଜି ହୋଇଯିବ। ଗଙ୍ଗଦତ୍ତ କିନ୍ତୁ ସେ ପ୍ରସ୍ତାବ ପ୍ରଥମେ ଗ୍ରହଣ କରି ନ ଥିଲା। ବେଙ୍ଗୁଲୀ ରାଣୀକୁ ଅସହାୟା ଅବସ୍ଥାରେ କୂଅଭିତରେ ଛାଡ଼ିଦେଇ ପ୍ରାଣ ଭୟରେ ପଳାଇଯିବ ଗଙ୍ଗଦତ୍ତ। ବେଙ୍ଗୁଲୀରାଣୀର କିନ୍ତୁ ସେଇ ଏକା ଜିଦ୍ - ତା' ପାଇଁ ଗଙ୍ଗଦତ୍ତର ଚିନ୍ତା କରିବା ଅନୁଚିତ। 'ମୋ କଥା ଚିନ୍ତା କରନି, ମୁଁ କେଉଁ ଫାଟ ସନ୍ଧିରେ ଏମିତି ଗଳିଯିବି ଯେ ପ୍ରିୟଦର୍ଶନ ଯେତେ ଦରାଣ୍ଡିଲେ ବି ମୋତେ ଖୋଜି ପାଇବନି' - କହିଥିଲା ସିଏ। ଯୁକ୍ତିରେ ଜୋର ମଧ୍ୟ ଥିଲା ଯଥେଷ୍ଟ। ପ୍ରଜାଗଣଙ୍କ ଧ୍ୱଂସ ପରେ କୂଅରେ ବେଙ୍ଗରାଜ୍ୟ ବୋଲି ଅବଶେଷ ଆଉ କିଛି ନଥିଲେ ମଧ୍ୟ ଗଙ୍ଗଦତ୍ତର ଥିଲା ରାଜୋଚିତ ଏକ ପୃଥୁଳ ଶରୀର। ସେ ଶରୀର ନେଇ ସେ କେଉଁଠି ଅବ ଲୁଚନ୍ତା! "ତମେ ମୋତେ ପ୍ରତ୍ୟହ ଗୋଟିଏ ଲେଖା ବେଙ୍ଗ ଖାଇବାକୁ ଦେବ" ବୋଲି ପ୍ରତିଶ୍ରୁତି

ଦେଇ କୂଅ ଭିତରକୁ ଡାକି ଆଣିଥିଲ। ଏବେ ଖାଇବାବେଳ ଗଡ଼ିଗଲାଣି, କଣ ଖାଇବାକୁ ଦେଉଛ ?' ପଚାରିଦେଲା ପରେ 'କାହାକୁ ଦେଉଛ ?' ବୋଲି ପଚାରି 'ଆବ୍‌ବେ କାହାକୁ ଦେଉଛୁ'? କହି ପ୍ରିୟଦର୍ଶନ ଯଦି ତମର ତୋଟି ଧରିଦିଏ" - ବେଙ୍ଗୁଲୀ ରାଣୀର ଯୁକ୍ତିରେ ଥିଲା ଅନେକ ଜୋର୍। ବେଙ୍ଗୁଲୀରାଣୀ ସତରେ କେଡ଼େ ଛୋଟ! ଛୋଟଛୋଟ ଆଖି ତୁଳନାରେ ତାର ପାଟି ଟିକିଏ ବଡ଼ ଦେଖାଯାଏ ସିନା; ପେଟ ଯେମିତି ଚେପ୍‌ଟା, ଅଣ୍ଟା ବି ସେମିତି ସରୁ। ଯମୁନାଦତ୍ତର ମୃତ୍ୟୁ ପରେ ସେ ଏବେ ଆହୁରି ପାତଳୀ ହୋଇଯାଇଛି। ହୁଏତ ପ୍ରିୟଦର୍ଶନ ଦେଖି ନ ପାରିଲା ଭଳି କେଉଁ ଫାଟସନ୍ଧିରେ ଲୁଚିଯିବ। ଗଙ୍ଗଦତ୍ତ ଶେଷରେ ବାହାନା କରି କ୍ରୂର ଅହି ପାଖରୁ ଖସିଆସିଥିଲା। ଗଙ୍ଗଦତ୍ତ ଫେରିବନି କି କୌଣସି ବେଙ୍ଗ କୂଅକୁ ଆସିବେନି ଜାଣିଲା ପରେ ବୁଭୁକ୍ଷିତ ଦୁଷ୍ଟ ପ୍ରିୟଦର୍ଶନ ଯଦି କୂଅ ଚାରିଆଡ଼େ ବେଙ୍ଗ ଦରାଣ୍ଡିବାକୁ ଯାଇ ତା ସ୍ତ୍ରୀକୁ...

ଦୁଃଖ ଏବଂ ଶୋକରେ ମ୍ରିୟମାଣ ହୋଇ ଗଙ୍ଗଦତ୍ତ ସେହି ସାରୁଗଛ ମୂଳରେ ହିଁ ଢୁଳେଇପଡ଼ିଥିଲା। ଯେତେବେଳେ ତାର ନିଦ ଭାଙ୍ଗିଲା ସେ ଦେଖିଲା ସୂର୍ଯ୍ୟଦେବ ଏବେ ବି ଆକାଶରେ ପଇଁତରା ମାରୁଛନ୍ତି। ନିଜ ଗୃହ-ସଂସାର କଥା ଭୁଲିଯାଇ ପ୍ରଥମକରି ଏକ ନୂତନ ଜଗତକୁ ଆଶ୍ଚର୍ଯ୍ୟଭରା ଆଖିରେ ଅନାଇଥିଲା ଗଙ୍ଗଦତ୍ତ।

ସୂର୍ଯ୍ୟଦେବଙ୍କୁ ଆଗରୁ ଯେ ସେ ଦେଖିନି, ତା' ନୁହେଁ। କୂଅ ଉପରର ଛତାପରି ଛାତରେ ସୂର୍ଯ୍ୟ କିଛି ସମୟ ଦେଖାଦେଇ ଭିତରକୁ ଉଙ୍କିମାରନ୍ତି। ସେଇ ଛତା ଯେ ଏତେ ବଡ଼ ଆଉ ସୂର୍ଯ୍ୟଦେବ ଦିନସାରା ତହିଁରେ ଘୂରି ବୁଲୁଥାନ୍ତି ତାହା ତା' କଳ୍ପନାର ବହିର୍ଭୂତ ଥିଲା। ପ୍ରିୟଦର୍ଶନକୁ ଡାକି ନେଲାବେଳେ ସେ ଥିଲା କ୍ରୋଧରେ ଅନ୍ଧ - ଆକାଶକୁ ଦେଖି ମଧ ଦେଖି ନ ଥିଲା।

ଦିନର ଶେଷରେ ସୂର୍ଯ୍ୟ ଗୋଟିଏ ପାଚିଲା ଡିମ୍ବିର ପରି ଡଉଲଡାଉଲ ହୋଇ ଦିଗନ୍ତରେ ବୁଡିଗଲେ। ଆକାଶ ରଙ୍ଗ ବଦଳାଇବାକୁ ଲାଗିଲା। ଆକାଶର ଏ ରଙ୍ଗବଦଳା ସ୍ୱଭାବ ମଧ ଆଗରୁ ସେ କୂଅ ଭିତରେ ଥିବା ବେଳେ ଦେଖିଥିଲା ଏବଂ ଥରେ ବେଙ୍ଗୁଲୀ ରାଣୀ ସଙ୍ଗରେ ଖୁସି ଗପ କଲାବେଳେ ମହୀ କେମିତି କ୍ଷଣକ୍ଷଣକେ ଆନ ହୁଏ, ସେ କଥା ବୁଝାଇବାକୁ ଚେଷ୍ଟା କରିଥିଲା। କୁଆଡ଼େ ଗଲା ସେ ସୁଖର ସଂସାର - ଦୀର୍ଘଶ୍ୱାସ ଛାଡ଼ିଥିଲା ଗଙ୍ଗଦତ୍ତ। ହଠାତ୍ ସେ ଦେଖିଲା ଆକାଶର ରଙ୍ଗୀନ ଘୋଡ଼ଣି ଉହାଡ଼ରୁ କୁନିତାରାମାନେ ଗୋଟାକ ପରେ ଗୋଟାଏ ଉଙ୍କିମାରି ସାରା ଆକାଶକୁ ଛାଇଦେଲେଣି। ମୁଗ୍ଧ ଚକିତ ନୟନରେ ସେମାନଙ୍କୁ ଅନାଇ ଉପରକୁ ଉହୁଙ୍କି କେତୋଟି ତାରାଙ୍କୁ ଗିଳି ପକାଇବାକୁ ଚାହିଁଥିଲା ସିଏ। କିଛିକାଳ ଡିଆଁଡେଇଁ କଲାପରେ ସେ ବୁଝିନେଲା ଯେ ଏ ଜୁଳୁଜୁଳିଆ ପୋକଗୁଡ଼ିକ ଅତିଉଚ୍ଚରେ।

ଦିଗ୍‌ବଳୟରେ ଆକାଶ ଯେଉଁଠି ପୃଥିବୀ ସଙ୍ଗରେ ମିଳାଇଯାଇଛି ସେଇଠି। ଏ ଭିତରୁ କେତେଟାକୁ ସହଜରେ ଧରିନେଇ ପାରିବ ଭାବି ଦ୍ୱିଗୁଣିତ ଉତ୍ସାହରେ ଦିଗ୍‌ବଳୟ ଆଡ଼କୁ ଡେଇଁଗଲା ଗଙ୍ଗାଦତ୍ତ।

ତଡ଼ାଗ ତଟରେ ଗୋଟିଏ ବଡ଼ କାଠଗଣ୍ଡି; ଆଉ ସେ କାଠଗଣ୍ଡି ଉପରେ ବସିଛନ୍ତି କେତୋଟି ସମପୋଷାକଧାରୀ ବଡ଼ବେଙ୍ଗ। ତଡ଼ାଗ ଭିତରୁ ଛୋଟ ବଡ଼ ବେଙ୍ଗଙ୍କ ଧାଡ଼ି ଛୁଟିଛି ସେମାନଙ୍କ ପାଖକୁ।

ତଡ଼ାଗ ମଝିରେ ଇତସ୍ତତଃ ମୁଣ୍ଡଟେକି ଠିଆ ହୋଇଛନ୍ତି କେତୋଟି ଥୁଣ୍ଟାଗଛ। ସେ ଥୁଣ୍ଟା ଗଛମାନଙ୍କ ଉପରେ ବସିଥିଲେ ବିଭିନ୍ନ ପୋଷାକରେ ଆବୃତ କେତେ ବୃଦ୍ଧ ତଥା ସାନବଡ଼ ବେଙ୍ଗ। କ୍ରମାଗତ କେଁ-କଟର କରୁଥିଲେ ସେମାନେ। ଗଙ୍ଗାଦତ୍ତର ମନେହେଲା ସେ ବେଙ୍ଗଙ୍କ ସ୍ୱର୍ଗ-ରାଜ୍ୟରେ ପହଞ୍ଚିଯାଇଛି। ପୂର୍ବ ସୁକୃତ, ସୌଭାଗ୍ୟ, ପୂର୍ବଜନ୍ମର ତପସ୍ୟା ଏବଂ ପ୍ରାରବ୍‌ଧ ହିଁ କଢ଼ାଇ ଆଣିଛି କୂଅରୁ ଏ ସ୍ୱର୍ଗ-ରାଜ୍ୟକୁ। ଖୁସିରେ ଡିଆଁଟିଏ ମାରି ତଡ଼ାଗ ଭିତରକୁ ପଶିଯିବା ପାଇଁ ଉଦ୍ୟତ ହେଲାବେଳେ ହିଁ ଗୋଟିଏ ଗୁଳ୍ମ ତଳୁ ହଠାତ୍ ବାହାରି ଆସି ତାର ବାଟ ଓଗାଳିଥିଲେ ତିନିଜଣ ଧୂସର ବେଙ୍ଗ। ସେମାନେ ଦେଖାଯାଉଥିଲେ ହୃଷ୍ଟପୁଷ୍ଟ ଏବଂ ବଳିଷ୍ଠ।

'ଆପଣଙ୍କ ଭିସା ଏବଂ ପାସ୍‌ପୋର୍ଟ ?' ପଚାରିଥିଲା ଜଣେ।

ପ୍ରଶ୍ନ କଣ ବୁଝି ନ ପାରି ପାଟି ମେଲାକରିଦେଲା ଗଙ୍ଗାଦତ୍ତ।

'ଆପଣଙ୍କ ଢଙ୍ଗରଙ୍ଗରୁ ଜଣାପଡୁଛି ଆପଣ ଏ ତଡ଼ାଗ ରାଜ୍ୟର ବାସିନ୍ଦା ନୁହନ୍ତି - ଅନ୍ୟ କେଉଁ ରାଜ୍ୟରୁ ଆସିଛନ୍ତି' - କହିଥିଲା ଆଉ ଜଣେ।

'ଏ ରାଜ୍ୟରେ ପଶିବାକୁ ହେଲେ ଆମ ସରକାରଙ୍କ ଅନୁମତିପତ୍ର ଲୋଡ଼ା ଏବଂ ସେ ପତ୍ର ବିନା ରାଜ୍ୟରେ ପଶିବାକୁ ଦୁଃସାହସ କରନ୍ତୁନି।' - ଚେତାବନୀ ଶୁଣାଇଦେଲା ତୃତୀୟ ଧୂସର ବେଙ୍ଗ।

କିଛି ବୁଝି ନ ପାରି ବିସ୍ଫାରିତ ନେତ୍ରରେ ଗୋଟାକ ପରେ ଗୋଟାଏ ଧୂସର ବେଙ୍ଗକୁ ଅନାଇଥିଲା ଗଙ୍ଗାଦତ୍ତ ଏବଂ ଅନୁମତି ପତ୍ର କଣ କିଛି ବୁଝିପାରୁନି ବୋଲି ଗୁଣୁଗୁଣେଇଥିଲା।

'ଅନଭିଜ୍ଞ, ଆତ୍ମକୈନ୍ଦ୍ରିକ ଏବଂ ଗାଉଁଲି ବେଙ୍ଗଟିଏ' - ଟିପ୍‌ପଣୀ କାଟିଥିଲେ ପ୍ରଥମ ଧୂସର ବେଙ୍ଗ।

'ରାଜନୈତିକ, ସାମ୍ବିଧାନିକ ଏବଂ ବହିର୍ଜାଗତିକ ବ୍ୟାପାର ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞ ଏକ କୂପମଣ୍ଡୁକ' - ପରିହାସ କରିଥିଲେ ଦ୍ୱିତୀୟ ବେଙ୍ଗ।

'ଚେହେରାରୁ କିନ୍ତୁ ମନେ ହେଉଛି ସମ୍ଭ୍ରାନ୍ତ ଏବଂ ଧନୀ। ଶିଳ୍ପପତି, ମିଲ୍‌ମାଲିକ କିମ୍ବା ଜମିଦାର ଶ୍ରେଣୀୟ ହୋଇଥିବ' ଧୀରେ ଧୀରେ ସୂଚାଇ ଥିଲେ ତୃତୀୟ ବେଙ୍ଗ।

'ଅନୁମତିପତ୍ର ନ ଦେଖାଇବା ପର୍ଯ୍ୟନ୍ତ ଶିମୁଳି ଗଛ ତଳେ ରହିବ' - ଶେଷ ନିଷ୍ପତ୍ତି ଶୁଣାଇ ଦେଇ ଫେରିଗଲେ ଧୂସର ବେଙ୍ଗମାନେ ଏବଂ ତଡ଼ାଗ ତଟରେ ଥିବା ବିଶାଳ ଶାଲ୍ମଳୀତରୁ ମୂଳକୁ ବିଷାଦିତ ମନରେ ଘୁଞ୍ଚିଯାଇଥିଲା କିଂକର୍ତ୍ତବ୍ୟବିମୂଢ଼ ଗଙ୍ଗଦତ୍ତ। ନାନା ଦିଗରୁ ନାନା ଦେଶରୁ ଆସି ରୁଣ୍ଡ ହୋଇଥିବା ଚଢ଼େଇମାନେ ଗଛରେ ବସି କୋଳାହଳ ଏବଂ ଚିଁ-ଚାଁ କରୁଥିଲେ। କିନ୍ତୁ ସେ କାକଳି ମୂର୍ଚ୍ଛନା ଉପଭୋଗ କରିବା ଅବସ୍ଥାରେ ଗଙ୍ଗଦତ୍ତ ନ ଥିଲା। ପୁଣିଥରେ ଭାବନା ଜାଲରେ ଛନ୍ଦି ହୋଇ ଯାଇଥିଲା ସିଏ - ଭାବୁଥିଲା ଏ ଧୂସର ବେଙ୍ଗମାନଙ୍କ କଥା।

ଗୋଟାଏ ଗୋଟାଏ ଧୂସର ବେଙ୍ଗକୁ ପାଟିରେ ଟେକିଧରି କଚାଡ଼ି ଦେବାକୁ ତାର ଇଚ୍ଛା ହେଉଥିଲା; କିନ୍ତୁ ସେମାନେ ଥିଲେ ଏକାଧାରରେ ତିନ୍।

ଠିକ୍ ଏମିତି ହୋଇଥିଲା ସେଦିନ। କୂଅ ଭିତରେ ହଠାତ୍ ତାକୁ ବାଟ ଓଗାଳିଥିଲେ ଏପରି ତିନିଜଣ ବଳିଷ୍ଠ ବେଙ୍ଗ। ଗଙ୍ଗଦତ୍ତର ଦେହରକ୍ଷୀ ଡରରେ ଛାନିଆ ହୋଇ ପଳାଇଗଲା। ଏକୁଟିଆ ଗଙ୍ଗଦତ୍ତ ସେ ତିନିଙ୍କୁ ପାରିଲାନି। ତା' ଖୁଡ଼ୁତା ପୁଅ ଭାଇର ଗୁଣ୍ଡା ଥିଲେ ସେମାନେ। ଠିକ୍‌ବେଳେ ଯମୁନାଦତ୍ତ ପହଞ୍ଚି ନ ଥିଲେ ସେମାନେ ହୁଏତ ଗଙ୍ଗଦତ୍ତକୁ ପ୍ରାଣରେ ମାରିଦେଇଥାନ୍ତେ। କୂଅର ଅର୍ଦ୍ଧେକ ଅଂଶ ଦାବୀ କରୁଥିଲା ସେ ଖୁଡ଼ୁତା ପୁଅ। 'ଗୋଡ଼ର କନିଷ୍ଠ ଆଙ୍ଗୁଳି ପ୍ରମାଣେ ବି କୂଅର ଅଂଶ ଦେବନି' - ଶୁଣାଇ ଦେଇଥିଲା ଗଙ୍ଗଦତ୍ତ। ତା'ପରେ ସେ ଦଳ ଉପଦ୍ରବ ଆରମ୍ଭ କରିଦେଲେ। ନିଜେ ତ କୌଣସି ଭେଟି କିମ୍ବା ସଲାମୀ ଦେଲେନି, ବେଠି ବିଗାଡ଼ି କରିବାକୁ ମନା କରିଦେଲେ, ଅନ୍ୟମାନେ ଆଣୁଥିବା ରାଜାଙ୍କ ପ୍ରାପ୍ୟ ଉପଢୌକନମାନ ଛଡ଼ାଇନେଲେ। 'ଜୋର ଯାହାର ମୂଲକ ତାର' ବୋଲି କୂଅ ମଝିରେ ଘୋଷଣା କଲେ ଏବଂ ଅତ୍ୟାଚାରୀ ଖାମଖିଆଲୀ ରାଜାଙ୍କୁ ହଟାଅ ବୋଲି ଧ୍ୱନିମାନ ଦେଲେ। ଅବସ୍ଥା ଅସମ୍ଭାଳ ହେବା ଦେଖି ଗଙ୍ଗଦତ୍ତ ପ୍ରିୟଦର୍ଶନ ସର୍ପ ସଙ୍ଗରେ ବନ୍ଧୁତା କରି ତାକୁ କୂଅ ଭିତରକୁ ଡାକି ଆଣିଥିଲା। ସେଇ ବନ୍ଧୁ ଦିନେ ଯେ ତା' ଅଲିଅଳ ପୁଅ ଯମୁନାଦତ୍ତକୁ ବି ଖାଇଦେବ ସେ କଳ୍ପନା ସେ କରନ୍ତା ଅବା କିପରି ? ଗଙ୍ଗଦତ୍ତର ଆଖିରୁ ଲୁହର ଧାର ଗଡ଼ିବାକୁ ଆରମ୍ଭ କରିଥିଲା ଏବଂ ସେଇ ମୁହୂର୍ତ୍ତରେ ଦେଖାଦେଇଥିଲେ ଏଇ ବାଟୋଇ କାଠବେଙ୍ଗ।

ଶୋକାକୁଳ ଗଙ୍ଗଦତ୍ତକୁ ଶାଲ୍ମଳୀ ମୂଳରେ ଏପରି ଧକଉଥିବା ଦେଖି ନାତି ବୃଦ୍ଧ ବାଟୋଇ ପାଖକୁ ଆସି ଦୁଃଖର କାରଣ ପଚାରିସାରିଲା ପରେ 'ଏଇ କଥାକୁ ନାଆ ପେଲିଦେଲି କଲିକତାକୁ' ବୋଲି ଗୀତ ଯୋଡ଼ିଦେଲେ ଏବଂ ପରାମର୍ଶ ଦେଲେ ଯେ ସେ ତିନିଜଣ ଧୂସର ବେଙ୍ଗଙ୍କୁ ଦୁଇଟା ଲେଖାଁଏ କେରାଣ୍ଡି, କାଠଗଣ୍ଡିର କୋରଡ଼ରେ ବାସ କରୁଥିବା ବିଭାଗୀୟ ମନ୍ତ୍ରୀଙ୍କୁ ଗୋଟିଏ ଶିଶୁ କଙ୍କି ଏବଂ ତିନି-ଚାରୋଟି ରୋହୀ

ଭାକୁର ଯାଆଁଳ ଭେଟିଦେଲେ କଥା ତୁଟିଯିବ। ଏସବୁ ସେ କେଉଁଠୁ ପାଇବ ତାର ମୀମାଂସା ମଧ୍ୟ କରିଦେଇଥିଲେ କାଠ ବେଙ୍ଗ ମହାଶୟ। କହିଲେ – 'ମୁଁ ତମକୁ ତଡ଼ାଗର ଗୋଟାଏ ନିରାପଦ କୋଣକୁ ନେଇଯିବି। ତମେ ରାତିରେ ସମସ୍ତେ ଶୋଇଗଲାବେଳେ ମନଇଚ୍ଛା କେରାଣ୍ଡି ଆଉ ରୋହୀ ଭାକୁର ଯାଆଁଳ ଧରି ତମ ପାଟି କୋଥଳୀରେ ଭର୍ତ୍ତିକରି ଦେବ। ପାହାନ୍ତିଆ ବେଳକୁ ମୁଁ ତମ ପାଖରେ ପହଞ୍ଚିଯିବି। ତମେ ତା'ପରେ ଶିଶୁକଙ୍କି ଧରି କାଠଗଣ୍ଡି କୋରଡ଼ ପାଖରେ...' ବାକୀ ଅଂଶ ସେ ଥିରିଥିରି କହିଲେ। ଏ ଗଛମୂଳେ ରାତି କଟାଇବା ମଧ୍ୟ ନିରାପଦ ନୁହେଁ... ଭାଲୁ ଆଉ ଶିଆଳମାନେ ଏ ଗଛତଳମାନଙ୍କରେ କେମିତି ବେଙ୍ଗ ଖୋଜି ମାଟି ରାମ୍ପୁଡନ୍ତି, ପେଚା ଆଉ ଡାହୁକମାନେ କେମିତି ଥରକୁ ଥର ଝାମ୍ପ ମାରନ୍ତି, ସେ ଦୃଶ୍ୟ ସେ ନିଜେ ଗଛ ଡାଳ ସନ୍ଧିରୁ ଲକ୍ଷ୍ୟ କରିଥିବା କଥା ଶୁଣାଇଦେଇ ଯେପରି ଭାବରେ ହସି ଆଗ ଦୁଇ ଗୋଡ଼ ଘଷିଲେ, ଗଙ୍ଗଦତ୍ତ ତାର ମର୍ମ ବୁଝି ଜଣାଇଦେଲା ଯେ ସେ ତାଙ୍କୁ ମଧ୍ୟ ଦିଓଟି ଭଲ କେରାଣ୍ଡି ଦେବ।

ଯଥା ସମୟରେ କାଠବେଙ୍ଗ ଏବଂ ଗଙ୍ଗଦତ୍ତଙ୍କ ବନ୍ଧୁତା ଘନିଷ୍ଠ ବନ୍ଧୁତ୍ୱରେ ପରିଣତ ହେଲା ଏବଂ କାଠବେଙ୍ଗ ଏ ବେଙ୍ଗରାଜ୍ୟର ଇତିବୃତ୍ତି ଶୁଣାଉଥିଲେ। ବିଶାଳ ହ୍ରଦରେ କେଉଁ ଅଜଣା କାଳରୁ ବସବାସ କରିଆସୁଥିବା ବେଙ୍ଗମାନଙ୍କର ବିଭିନ୍ନ ରଙ୍ଗ; ଚାଲିଚଳନର ଢଙ୍ଗ, ବିଭିନ୍ନ କେଁକଟର୍ ସ୍ୱର ଇତ୍ୟାଦି ଏ ରାଜ୍ୟର ବେଙ୍ଗମାନଙ୍କୁ ଗୃହ କଳହ, ଗୋଷ୍ଠୀ ବିବାଦରେ ସର୍ବଦା ଲିପ୍ତ ରଖିଥିଲା। ଫଳରେ ତଡ଼ାଗଟି ଏକ ହେଲେ ମଧ୍ୟ ତାର ବିଭିନ୍ନ ଅଞ୍ଚଳରେ ବିଭିନ୍ନ କିସମର ବେଙ୍ଗମାନେ ରହିବାକୁ ଭଲ ପାଉଥିଲେ। ବେଳେବେଳେ ଗୋଟିଏ ଦଳ ଅନ୍ୟ ଦଳକୁ ବିନାଶ କରିବା ଆଶାରେ ବାହାରିଆ ବେଙ୍ଗ ଶତ୍ରୁଙ୍କୁ ଆମନ୍ତ୍ରଣ କରି ଆଣୁଥିଲେ। ବେଙ୍ଗଙ୍କ ଏ ରାଜ୍ୟରେ କେବେ ମାନସରୋବରର ହଂସ ତ କେବେ ହଂସରାଳିଙ୍କ ରାଜତ୍ୱ ଥିଲା। ଶେଷରେ ଦେଖାଦେଲେ ଧଳା ବଗ। ହଂସ ହଂସରାଳିଙ୍କ ପରି ଏମାନେ ପାଣିରେ ବସବାସ କଲେନି, କିମ୍ବା ପାଣି ପାଖରେ ଅଣ୍ଡା ଦେଲେନି। ତଡ଼ାଗ ରାଜ୍ୟର ବାସିନ୍ଦା ନହୋଇ ଗଛମାନଙ୍କ ଉପରେ ରହିଲେ ଏବଂ ବେଙ୍ଗମାନଙ୍କୁ ଖାଇବାକୁ ଲାଗିଲେ। ରାଜ୍ୟର ଦୁର୍ଦ୍ଦିନରେ ଦେଖାଦେଲେ ଏକ ହାଡୁଆ ଦୁର୍ବଳିଆ ବେଙ୍ଗ। ସେ ମାଛ କଇଁଛ ବେଙ୍ଗ କଙ୍କଡ଼ା ସମସ୍ତଙ୍କୁ ଏକଜୁଟ କଲେ; ଆଉ କହିଲେ – 'ତମେ ମାଛ ସବୁ ବାହାରେ ପହଁରି ବୁଲୁଛ, ବେଙ୍ଗ ସବୁ ଥୁଣ୍ଟା ଗଛ ଉପରେ ଚଢ଼ି ନାଚୁଛ, ଫଳରେ ବଗମାନେ ତମକୁ ଦେଖିପାରୁଛନ୍ତି, ଆଉ ସୁଯୋଗ ଉଣ୍ଡି ଗୋଟାଏ ଗୋଟାଏ ଉଠାଇ ନେଉଛନ୍ତି। ତମେ ସମସ୍ତେ ଯଦି ଅକାତପାଣିରେ ଏମିତି ବୁଡି ରହନ୍ତ ଯେ ଏମାନେ ତମର ସନ୍ଧାନ ବି ପାଆନ୍ତେନି – ସେମାନେ ନ ଖାଇ ଭୋକ ଉପାସରେ ରହନ୍ତେ, ଆଉ ଶେଷରେ

ବାଧ ହୋଇ ଏ ତଡ଼ାଗ ରାଜ୍ୟ ଛାଡ଼ିଯାନ୍ତେ। ବେଙ୍ଗମାନେ ସେ କଥା ଶୁଣିଲେ ଏବଂ ହାଡୁଆ ବେଙ୍ଗଙ୍କ କଥିତମତେ ଏକଜୁଟ ହୋଇ ପାଣି ଭିତରେ ବୁଡି ରହିଲେ। ଫଳରେ ବଗମାନେ ଯେତେବେଳେ ଦେଖିଲେ ଯେ କୂଳରେ ବସିରହି ଆଉ ଲାଭ ନାହିଁ, ସେମାନେ ଯେଉଁଠୁ ଆସିଥିଲେ ସେଠିକି ଉଡ଼ିଗଲେ। କାଁ ଭାଁ ଓ ଖଣ୍ଡିଏ ଦିଖଣ୍ଡ ଅଞ୍ଚଳ ଛାଡ଼ିଦେଲେ ତଡ଼ାଗ ରାଜ୍ୟ ଏକ ହେଲା। ସେଦିନରୁ ଏ ବେଙ୍ଗମାନେ ତାଙ୍କ ରାଜ୍ୟ ଚଳାଇବା ପାଇଁ ନିଜ ଭିତରୁ ପ୍ରତିନିଧି ବାଛନ୍ତି ଆଉ ଯେଉଁ ଦଳରୁ ବେଶୀ ପ୍ରତିନିଧି ଆସନ୍ତି, ସେ ଦଳ କାଠଗଣ୍ଡିରେ ବସି ଶାସନକରେ।

ଏଠାରେ କାଠବେଙ୍ଗଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇ ଆସୁଥିବା ପରି ମନେ ହେଲା। କହିଲେ - ଦେଖୁଛନା ସେ ଥୁଣ୍ଟାଗଛମାନଙ୍କୁ ? ସେଇଠି ବିରୋଧୀ ଦଳସବୁ ବସିଛନ୍ତି। ଆଉ ଏ ସରକାର ଅପାରଗ ବୋଲି ରାତିଦିନ କହୁଛନ୍ତି। ସେମାନେ କୁଆଡ଼େ କାଠଗଣ୍ଡିରେ ବସିଲେ ଅବସ୍ଥା ବଦଳିଯିବ। କାଠଗଣ୍ଡିବାଲେ କହନ୍ତିଯେ, ତାଙ୍କ ଅମଳରେ ପଙ୍କ ଯେମିତି ବଢ଼ିଛି ଦଳ ଶୈବାଳ ସେମିତି ବଢ଼ିଛି। ଥୁଣ୍ଟାଗଛିଆମାନେ କହୁଛନ୍ତି - ଏମିତି କଲେ ଧୀରେ ଧୀରେ ତଡ଼ାଗ ପଙ୍କରେ ପୋତି ହୋଇଯିବ। ନୂଆ ନୂଆ ଅଂଶ ତଡ଼ାଗରୁ ବିଚ୍ଛିନ୍ନ ହୋଇଯିବ ଏବଂ ତଡ଼ାଗ ହେବ ଖଣ୍ଡ ବିଖଣ୍ଡ। ତାପରେ କାଠବେଙ୍ଗ ଯୋଡ଼ିଦେଲେ - ଏ ବିରୋଧୀଦଳମାନେ କାଠଗଣ୍ଡିରେ ବସନ୍ତୁ, ଦେଖିବେ ବିଶେଷ କିଛି ତଫାତ ହେବନି, ସେମାନେ ମଧ୍ୟ ଏମିତି ବିଦେଶୀଙ୍କ ପାଖରୁ କେରାଣ୍ଡି ମାଗିବେ। 'ତମପରି ବଦାନ୍ୟ ବ୍ୟକ୍ତିମାନେ ଚାନ୍ଦା ନ ଦେଲେ, ଆମର ପାର୍ଟି ହେବ କେମିତି ଯେ, ଆମେ ଆମର 'ଭଟର' ବାଲାଙ୍କୁ ଦେବୁ' - କହି ଦି'ଟା କେରାଣ୍ଡି ବଦଳରେ ଦଶଟି ମାଗିବେ; ଆଉ ଏକାଥରକେ ନ ଦେଇ ଥରକୁ ଥର ଦେଲେ ବି ଚଳିବ ବୋଲି ଶୁଣାଇଦେବେ। ଗଙ୍ଗଦତ୍ତ ଦି'ଚାରିଥର କୁକ୍ କୁକ୍ କରି କାଠବେଙ୍ଗର କଥାକୁ ସମର୍ଥନ କରୁଥିଲା।

କିଛିକାଳ ଗଙ୍ଗଦତ୍ତର ତଡ଼ାଗାବସ୍ଥାନ ବେଶ୍ ଶାନ୍ତିପୂର୍ଣ୍ଣ ଥିଲା। ଯଥାସମୟରେ ସେ କିନ୍ତୁ ବୁଝିପାରିଥିଲା ଯେ ଦୂରଗଛମାନଙ୍କୁ ସନ୍ଧ୍ୟାବେଳେ ଆସି ପାହାନ୍ତିଆରେ ଦୂରକୁ ଉଡ଼ିଯାଉଥିବା କେତେ ବଗ ଏଥର ସକାଳେ ଉଡ଼ିଯିବା ପୂର୍ବରୁ ତଡ଼ାଗ କୂଳର ସେ ଥୁଣ୍ଟା ଗଛମାନଙ୍କୁ ଏବଂ କାଠଗଣ୍ଡିକୁ ଲକ୍ଷ୍ୟ କରୁଛନ୍ତି। ଗଙ୍ଗଦତ୍ତ ଏକଥା ମଧ୍ୟ ଲକ୍ଷ୍ୟ କରିଥିଲା ଯେ, ପାଖ ଅଞ୍ଚଳରେ ଥିବା ଗୋଟାଏ ଥୁଣ୍ଟାଗଛ ଉପରେ କଣ୍ଡିଆ ବଗଟିଏ ବରାବର ବସିରହୁଛି, ଆଉ କୁଆଡ଼ିକି ଯାଉନି। ତାର ତେଣୁ ଆଶଙ୍କା ହେଉଥିଲା ଯେ ଥୁଣ୍ଟାଗଛର ବେଙ୍ଗ ଡିଆଁଡେଇଁ ଏବଂ କାଠଗଣ୍ଡିକୁ ଚାଲିଥିବା ବେଙ୍ଗଙ୍କ ସୁଅ ବନ୍ଦ ନ ହେଲେ ଦିନେ ନା ଦିନେ ଏ ତଡ଼ାଗ ରାଜ୍ୟରେ ମଧ୍ୟ କଣ୍ଡିଆବଗ ଦେଖାଦେବ ଏବଂ ସେ ବଗ କିଏ କାଠଗଣ୍ଡିଆ କିଏ ଥୁଣ୍ଟାଗଛିଆ ବିବେଚନା ନ କରି ସମସ୍ତଙ୍କୁ ବାଛିବାଛି

ଗିଳି ପକାଇବ। ଯେଉଁଦିନ କାଠଗଣ୍ଡି ଉପରେ ସତକୁ ସତ ଗୋଟାଏ କଣ୍ଡିଆବଗ ଓହ୍ଲାଇ ପଡ଼ିଲା ଏବଂ ପରେ ପରେ କେତେ ଧୂସର ବଗ ଥୁଣ୍ଟା ଗଛମାନଙ୍କ ଉପରେ ଓହ୍ଲାଇ କୋରଡ଼ ଖୋଜିବାକୁ ଆରମ୍ଭ କଲେ - ସେଇ ରାତିରେ ଅନ୍ୟମାନଙ୍କ ଅଲକ୍ଷିତରେ ଗଙ୍ଗଦତ୍ତ ତଡ଼ାଗରାଜ୍ୟରୁ ବାହାରିଗଲା।

ଅତି ବିପଦସଙ୍କୁଳ ଥିଲା ଗଙ୍ଗଦତ୍ତର ଏ ନୂତନ ଯାତ୍ରା। କିନ୍ତୁ ଜୀବନର ଅନେକ ଅନୁଭୂତି ନେଇ ସେ ହୋଇସାରିଥିଲା ପୋଖତ। ତାର ମନ ଏବଂ ବୁଦ୍ଧି କୌଣସି କୂପ ଅଙ୍କିତ ସୀମାରେ ସୀମିତ ନ ଥିଲା। ବୁଦ୍ଧି ଏବେ ଥିଲା ବିଚକ୍ଷଣତା ଏବଂ ଚତୁରତାରେ ପୂର୍ଣ୍ଣ ପ୍ରସ୍ଫୁଟିତ। ସେ ଖୋଜି ବୁଲୁଥିଲା ଏକ ସଂସାର, ଯେଉଁଠି ବେଙ୍ଗମାନଙ୍କ ଭିତରେ ସାନବଡ଼ ଭେଦଭାବ ନଥିବ, ସମସ୍ତେ ଥିବେ ସମାନ, ସମସ୍ତଙ୍କ ପାଇଁ ଖାଦ୍ୟ ଥିବ ପ୍ରଚୁର। ସମସ୍ତେ ଥିବେ ଭାଇଭାଇ।

ଦିନେ ସେ ହାବୁଡ଼ିଗଲା ତାର ସ୍ୱପ୍ନର ସେମିତି ଏକ ରାଜ୍ୟରେ। ରାଜ୍ୟର ବାସିନ୍ଦାକୁ ଦେଖି ସେ ଚମତ୍କୃତ ହୋଇଯାଇଥିଲା। ସବୁବେଙ୍ଗ ସମାନ ଦିଶୁଥିଲେ। ସମସ୍ତେ ହୃଷ୍ଟପୁଷ୍ଟ, କିଏ ବେଙ୍ଗ କିଏ ବେଙ୍ଗୁଲୀ ଜାଣିବା ବି କଷ୍ଟ। କେତୋଟି ସୁନ୍ଦର ବେଙ୍ଗ(ହୁଏତ ବେଙ୍ଗୁଲୀ ହୋଇଥିବେ) ଆକର୍ଣ୍ଣବିସ୍ତାରୀ ହସ ହସି ଆଖିଡୋଳା ବୁଲାଇ ଆଣି ଆହ୍ୱାନ ଦେଲେ - 'ଆସ ଆଗନ୍ତୁକ, ଆସ।' ଗଙ୍ଗଦତ୍ତ ଅତି ଆନନ୍ଦରେ ସେମାନଙ୍କ ଭିତରକୁ ଡେଇଁପଡ଼ିଥିଲା।

ଖାଦ୍ୟ ଥିଲା ସେ ରାଜ୍ୟରେ ପ୍ରଚୁର - ଯାହାର ଯେତେ ଦରକାର। କାମଧନ୍ଦା ପରେ ରାଜ୍ୟଟି କମ୍ପିଉଠୁଥିଲା ଗାନବାଜଣା, କୁସ୍ତି କସରତ, ନୃତ୍ୟ କ୍ରୀଡ଼ାରେ। ଆନନ୍ଦବିଭୋର ଗଙ୍ଗଦତ୍ତ ଧୀରେଧୀରେ ତା' ବେଙ୍ଗୁଲୀ ରାଣୀକୁ ଭୁଲିଆସୁଥିବା ବେଳେ ଦିନେ ହଠାତ୍ ଦେଖାଦେଲେ ଦଳେ ମଣିଷ। ଜାଲ ପକାଇ ଗୁଡ଼ିଏ ବେଙ୍ଗକୁ ଧରିନେଲେ। ଗଙ୍ଗଦତ୍ତ ଥିଲା ସେମାନଙ୍କ ଭିତରେ।

ଜଣେ ଗଙ୍ଗଦତ୍ତକୁ ନିରେଖି ଚାହିଁଲା। ଆଉ ତା' ପଛଗୋଡ଼ ଦି'ଟା ଟେକିଧରି ପାଟିକଲା - "ଡକ୍‌ଟର ସାହେବ, ଦେଖନ୍ତୁ ଏ ବେଙ୍ଗକୁ - କେମିତି ଗୋଟାଏ ହାଇବ୍ରିଡ୍। ଏ ତ ଆମର ବେଙ୍ଗ ନୁହେଁ, କେଉଁଠୁ ଆସିଛି କେଜାଣି ?"

ଡକ୍‌ଟର ସାହେବ ଗଙ୍ଗଦତ୍ତକୁ ତନ୍ନତନ୍ନ କରି ନିରୀକ୍ଷଣ କଲେ। ବିଜାତୀୟ ବୋଲି ରାୟ ଦେଲା ପରେ କହିଲେ - "ତା' ଗୋଡ଼ର ମାଂସପେଶୀ ସବୁ ଦେଖୁଛ ନା ? କେତେ ଟାଣ-ମାଂସ; ନିଶ୍ଚୟ ଚେରୁଆ ଲାଗୁଥିବ। ଆମର ସେ 'ଜି' ନମ୍ବର ଟେଙ୍କରେ ଯେଉଁ ଜାତିଆ ପାଟ ବେଙ୍ଗସବୁ ଅଛନ୍ତି, ସେମାନଙ୍କ ଜଙ୍ଘର ମାଂସପେଶୀ ନିହାତି ନରମ। ଏ ବେଙ୍ଗକୁ ସେ ଟେଙ୍କରେ ଛାଡ଼ିଦେଲ - ଦେଖିବା ଏସିଆନ ବ୍ରିଡର

ଗୋଡ଼ସବୁ ଆରବ ଦେଶମାନଙ୍କରେ ଭଲ ବିକ୍ରୀ ହେବ। ସେମାନେ ବେଶୀ ନରମ ଫ୍ରଗ୍‌ସ ଲେଗ୍ ପସନ୍ଦ କରନ୍ତିନି।”

ଗଙ୍ଗଦତ୍ତ ଢି ନମ୍ବର ଟେଙ୍କରେ ଛଡ଼ାହେଲା କ୍ଷଣି ସେ ଟେଙ୍କର ବେଙ୍ଗୁଲୀମାନେ ତାକୁ ଘେରିଗଲେ। କି ସୁନ୍ଦର ହଳଦିଆ ପାଟପରି ସେମାନଙ୍କ ଦେହ! ବେଙ୍ଗୁଲୀଟିଏ ତାର ଲହୁଣୀପରି ଦେହ ଗଙ୍ଗଦତ୍ତର ଦେହରେ ଘଷି ଦେଲାରୁ ଗଙ୍ଗଦତ୍ତ ଶୀତେଇ ଉଠିଥିଲା। ଘଣ୍ଟା ଘଣ୍ଟା ଧରି ବେଙ୍ଗୁଲୀମାନେ ଏ ନୂଆ ବେଙ୍ଗ ପାଖରୁ ଘୁଞ୍ଚିଲେନି। ନୃତ୍ୟଗୀତ ସହ ନାନା ଅଙ୍ଗଭଙ୍ଗୀ କଲେ। ଗଙ୍ଗଦତ୍ତ କିନ୍ତୁ ଏବେ ଥିଲା ନିର୍ଲିପ୍ତ।

ରାତି ପ୍ରାୟ ସରିଆସିବା ଉପରେ। ବେଙ୍ଗୁଲୀମାନେ କିଏ କେଉଁଠି ଢୁଳେଇବାକୁ ଆରମ୍ଭ କରିଛନ୍ତି। ଗଙ୍ଗଦତ୍ତ ଖସି ଆସିଥିଲ ଟେଙ୍କରୁ - ଲୁହା ଜାଲିର ଗୋଟାଏ ବଡ଼ ଛିଦ୍ରରେ ସଙ୍କୁଚିତ କରିଦେଇଥିବା ନିଜ ଦେହକୁ କୌଣସିମତେ ଠେଲିଦେଇ। ତାପରେ ଅନବରତ କୁଦା ମାରିଥିଲା ସିଏ। ତାର ମନେହେଉଥିଲା ସତେ ଯେମିତି ତାକୁ ଧରିବା ପାଇଁ କେହି ଜଣେ ପଛରୁ ଗୋଡ଼ାଇଛି।

ତା’ ବେଙ୍ଗୁଲୀ ରାଣୀକୁ ପୁଣି ଥରେ ଦେଖିବା ପାଇଁ ଗଙ୍ଗଦତ୍ତର ମନରେ ଜାଗି ଉଠିଥିଲା ଏକ ଅଦମନୀୟ ଆକାଂକ୍ଷା ତଥା ବାସନା। ପ୍ରିୟଦର୍ଶନକୁ ତାର ଆଉ ଡର ନ ଥିଲା। ସେ ଚାହୁଁ ନ ଥିଲା ତଡ଼ାଗ ରାଜ୍ୟ କିମ୍ବା ଅନ୍ୟ କେଉଁ ରାଜ୍ୟର ସ୍ୱପ୍ନିଳ ପରିବେଶ - ସେ ଚାହୁଁ ନ ଥିଲା କୌଣସି କୂପରାଜ୍ୟ। ଫେରିଯିବାକୁ ସେ ଚାହୁଁଥିଲା ତା’ ନିଜ ଜନ୍ମସ୍ଥାନକୁ - ତା ବେଙ୍ଗୁଲୀ ରାଣୀ ପାଖକୁ। ମରିଲେ ମରିବ ପଛକେ, ସେଇଠିକି ସେ ଏବେ ଯିବ, ଆଉ ତା’ ବେଙ୍ଗୁଲୀ ରାଣୀକୁ ଭେଟିବ।

କେତେ ଦୂର ସେ ଡେଇଁଯାଇଥିଲା ଏବଂ କ୍ରମାଗତ କେତେଦିନ, ସେ ଜାଣିପାରିନି। ଦିନେ କିନ୍ତୁ ସେ ପହଞ୍ଚିଲା ଗୋଟାଏ କୂପ ପାଖରେ। ଆଉ କୂଅ ପାଖରେ ଥିଲା କେତୋଟି ସାରୁଗଛ। କୂଅରେ କିନ୍ତୁ ଥିଲା ନଳଟିଏ ଏବଂ ସେ ନଳରେ ଧାଡ଼ି ହୋଇ କେତେ ବେଙ୍ଗ ଲଟକି ବସିଥିଲେ। କାହିଁକି କେଜାଣି, ଗଙ୍ଗଦତ୍ତର ମନେହେଲା ଯେ ଏଇଟା ହିଁ ତା’ କୂଅ। ବ୍ୟଗ୍ରତାର ସହିତ ବେଙ୍ଗମାନଙ୍କୁ ତା’ ବେଙ୍ଗୁଲୀ ରାଣୀ କଥା ସେ ପଚାରିଥିଲା। କେହି କିଛି କହି ନ ପାରି ଖାଲି ମୁହଁ ଚୁହାଁଚୁହିଁ ହେଲେ। ପ୍ରିୟଦର୍ଶନ କଥା ପଚାରିବାରେ ଜଣେ କହିଲା - ସାପଟିଏ ଏ କୂଅରୁ ମରାହୋଇଛି; କିନ୍ତୁ ସେ ସାପ ପ୍ରିୟଦର୍ଶନ କି ନୁହେଁ ସେ କଥା ସେମାନେ କହିପାରିବେନି।

ଆକାଶ ମେଘାଚ୍ଛନ୍ନ ଥିଲା। ଗଙ୍ଗଦତ୍ତ ଥିଲା ଅତ୍ୟନ୍ତ ଶାନ୍ତ ଓ ବିଷର୍ଣ୍ଣ। ବେଙ୍ଗୁଲୀ ରାଣୀ ଜୀବନରେ ଅଛି ନା ନାହିଁ ସେ ଥିଲା ସନ୍ଦିହାନ।

ଏ ଦୁଃଖୀ ବେଙ୍ଗ ପାଖକୁ କେତୋଟି ବେଙ୍ଗ ଧୀରେଧୀରେ ଘୁଞ୍ଚିଆସୁଥିଲେ - ହୁଏତ ଦୁଃଖର କାରଣ ଜାଣିବା ନିମନ୍ତେ। ସମବେଦନା ଜଣାଇ ମେଘ ଏଥର ବରଷିବାକୁ ଆରମ୍ଭ କରିଦେଇଥିଲା - ଟୁପୁରୁ ଟାପୁରୁ।

ଗଙ୍ଗଦତ୍ତ ଗୋଟିଏ ସାରୁଗଛ ମୂଳକୁ ଘୁଞ୍ଚିଗଲା। ଆକାଶକୁ ଅନାଇ ବେଦନାର ଏକ କରୁଣ ଲହର ଛାଡ଼ିଲା - 'ବେଙ୍ଗୁଲୀ ରାଣୀ ହୋ...'

ପାଖରେ ଥିବା ଅନ୍ୟ ବେଙ୍ଗମାନେ ମଧ୍ୟ ସମବେଦନା ଜଣାଇ ବିଭିନ୍ନ ସ୍ୱରରେ ଡାକିଲେ - 'ବେଙ୍ଗୁଲୀ ରାଣୀ ହୋ...।' କୂପ ଭିତରୁ ଅଥବା ବାହାରୁ କୌଣସି ଜବାବ ମିଳିଲାନି।

ବର୍ଷାର ଧାରା ଥିଲା ଏବେ ମୂଷଳ। ଗଙ୍ଗଦତ୍ତ ପୁଣି ଡାକିଲା - 'ବେଙ୍ଗୁଲୀ ରାଣୀ ହୋ...।'

ଏଥର କିନ୍ତୁ ମନେହେଲା କେହି ଜଣେ ଉତ୍ତର ଦେଉଛି - 'ବେଙ୍ଗ ରଜା କି ହେ...।'

ଗଙ୍ଗଦତ୍ତ ଚମକି ଉଠିଥିଲା। ଦୂର ପର୍ବତର କେଉଁ ପ୍ରତିଧ୍ୱନି ନୁହେଁ ତ ଏ ପାଲଟା ଡାକ !

ପୁଣି ସେ ଡାକିଲା - 'ବେଙ୍ଗୁଲୀ ରାଣୀ ହୋ...।'

ଦୂରର ଉତ୍ତର ଏବେ ସ୍ପଷ୍ଟ - 'ବେଙ୍ଗ ରଜା କି ହେ...।'

'ବେଙ୍ଗୁଲୀ ରାଣୀ ହୋ...'

'ବେଙ୍ଗ ରଜା କି ହେ..'

ଗଙ୍ଗଦତ୍ତ ପାଗଳ ପରି ଡେଇଁଗଲା ଯେଉଁ ଦିଗରୁ ଉତ୍ତର ଆସୁଥିଲା ସେ ଦିଗକୁ।

ବର୍ଷାର ଅବିଶ୍ରାନ୍ତ ଝର୍ଝରକୁ ଭେଦ କରି ଦୂରାନ୍ତରୁ ଭାସି ଆସିଲାବେଳେ ସ୍ୱର ଏବଂ ପ୍ରତିସ୍ୱର ହୋଇଯାଇଥିଲେ ଏକୀଭୂତ। କ୍ରମାଗତ ଶୁଭୁଥିଲା - 'ହେ... ହୋ...ହେ...ହୋ।'

# ଠେଙ୍ଗା

ପ୍ରାଣୀଜଗତ୍ ତଥା ବସ୍ତୁଜଗତ୍‌ରେ କେବଳ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାର ସୃଷ୍ଟି ଏବଂ ସ୍ଥିତି ନିରୂପଣ କରିବାକୁ ଗଲେ ଯେହେତୁ ତାହାର ଗୋଟିଏ ଆଦି, ଗୋଟିଏ ମଧ ଏବଂ ଗୋଟିଏ ଅନ୍ତ ଦେଖିବାକୁ ମିଳେ, ଠେଙ୍ଗାରେ ମଧ ସେପରି ଗୋଟିଏ ଆଦି, ଅନ୍ତ ତଥା ମଧଟିଏ ଯେ ରହିଥିବ ସେଥିରେ ସନ୍ଦେହ ନାହିଁ। କିନ୍ତୁ ଠେଙ୍ଗାର ସୃଷ୍ଟିକାଳ ସ୍ପଷ୍ଟ ଭାବରେ ନିରୂପଣ କରି ତତ୍‌ସମ୍ବନ୍ଧୀୟ ଖ୍ରୀଷ୍ଟାବ୍ଦ ବିକ୍ରମାବ୍ଦ ଅଥବା ଉତ୍କଳ-କଳବର୍ଗେଶ୍ୱରାବ୍ଦ ସୂଚାଇ ଦେବା ସହଜସାଧ୍ୟ ନୁହେଁ। ସେ ସମ୍ବନ୍ଧୀୟ ମତାମତ କେବଳ ଆନୁମାନିକ ମାତ୍ର।

ଋଷି ମୁନିମାନେ ଦଣ୍ଡ କମଣ୍ଡଳୁ ଧରି ଘୂରି ବୁଲୁଥିବା କଥା ସମସ୍ତଙ୍କୁ ଜଣା। କମଣ୍ଡଳୁରେ ପିଇବା ପାଣି ରଖିବା ସୁବିଧା ଯେ ହୁଏ, ସେ କଥା ସ୍ୱତଃସିଦ୍ଧ। କିନ୍ତୁ ଋଷି ମୁନିମାନଙ୍କ ହାତରେ ଥିବା ଦଣ୍ଡର ତାତ୍ପର୍ଯ୍ୟ ସମ୍ବନ୍ଧରେ କିଛି କହିବା କଠିନ। ତାହା ବାଘ ଭାଲୁ, ଭୂତ ପ୍ରେତ, ଗାଈ ଗୋରୁ ତଥା ସାପବେଙ୍ଗମାନଙ୍କୁ ହୁରୁଡ଼ାଇବାରେ ସାହାଯ୍ୟ କରୁଥାଇପାରେ ବୋଲି ଭାବିବସିବା କେବଳ ଯେ ଧୃଷ୍ଟତା ହେବ ତା' ନୁହେଁ, ସେ ଚିନ୍ତା ଅବାନ୍ତର ହେବା ସମ୍ଭାବନା ମଧ ରହିଛି। ତେବେ ତାଙ୍କ ହାତରେ ଦଣ୍ଡଟିଏ ଯେ ଥାଏ ସେ କଥା ସ୍ପଷ୍ଟ। 'ଅଇଲେ ନାରଦ ମୁନି ହୋ, କରେ କମଣ୍ଡଳୁ ଘେନି ହୋ' ସାଙ୍ଗକୁ 'କାଖେ ଆଶାବାଡ଼ି ହାତରେ ଧୋକଡ଼ି' ସଙ୍ଗରେ ସମସ୍ତେ ଭଣାଅଧିକେ ପରିଚିତ। ଏ ତୁଣ୍ଡବାଇଦ ନିଶ୍ଚିତ କରିଦିଏ ଯେ ନାରଦ ଆଶାବାଡ଼ିଟିଏ ବ୍ୟବହାର କରନ୍ତି।

ବ୍ରହ୍ମା ମଧ କମଣ୍ଡଳୁ ବ୍ୟବହାର କରୁଥିବା କଥା ପୁରାଣରୁ ଜଣାପଡ଼େ। ଥରେ କୁଆଡ଼େ ସେ ବୃନ୍ଦାବନକୁ ଗଲେ ଶ୍ରୀକୃଷ୍ଣଙ୍କୁ ଟିକିଏ ଦେଖାକରି ଆସିବେ ବୋଲି। ଦେଖିଲେ ଶ୍ରୀକୃଷ୍ଣ ଗାଈମାନଙ୍କୁ ମନଇଚ୍ଛା ଚରିବାକୁ ଛାଡ଼ିଦେଇ ଗୋପବାଳକମାନଙ୍କ ସାଙ୍ଗରେ ଡୁ ଡୁ ଖେଳୁଛନ୍ତି। ଧୂଳିଧୂସରିତ ଦେହ, ମୁଣ୍ଡ ବାଳକୁ ଜୁଡ଼ାର ମୟୂରଚୂଳ ସହିତ ବାନ୍ଧି ଦେଇଛନ୍ତି ତାଙ୍କ ଉତ୍ତରୀୟରେ ଠେକି କରି, ଅଣ୍ଟାରେ ଖୋସିଛନ୍ତି ତାଙ୍କ ମୁରଲୀ, ଆଉ ଧରିଛନ୍ତି 'ମାର କିତ୍ କିତ୍' ରାହା। ଛଟକରେ ଅନ୍ୟ ଦଳ ଭିତରକୁ ଧସାଇ ପଶି କାହାକୁ ଛୁଇଁଦେଇ ଆସୁଛନ୍ତି ନିଜ ଦଳ ଭିତରକୁ। ତାପରେ ଆରମ୍ଭ

ହେଉଛି ଗୋଳମାଳ। ସେ ପଟରେ କେହି କେହି କହୁଛନ୍ତି କୃଷ୍ଣ କାହାକୁ ଛୁଇଁନି - କୃଷ୍ଣ କହୁଛନ୍ତି ଅଲ୍‌ବତ୍ ଛୁଇଁଛି। 'ଅଃ, ଛୁଇଁଛି, ମିଛୁଆ କାହାଁକା' ଟିପପ୍ପଣୀରେ ବଳଦେବ ଟିକିଏ ମୁରୁକି ହସ ହସି ଦେଉଛନ୍ତି। ବ୍ରହ୍ମା ତାଙ୍କ ଅଦୃଶ୍ୟ ଗଛ ଉହାଡ଼ରୁ ଏସବୁ ଅନାଇ ସନ୍ଦେହ କଲେଣି ଯେ ଦେବତାମାନେ ସ୍ତୁତି କରି ପଠାଇଥିବା ଦେହଧାରୀ ଭଗବାନ ଇଏ ହୋଇ ନ ପାରନ୍ତି। ହୋଇଥିଲେ ସେ ଜାଣନ୍ତେଣି ବ୍ରହ୍ମା ଆସି ଗଛ ପଛଆଡ଼େ ଠିଆହୋଇଛନ୍ତି - ଆଉ ପାଖକୁ ଆସି ନମସ୍କାର କରନ୍ତେଣି। ଠିକ୍ କଥା କଣ ବୁଝିବା ପାଇଁ ସେ ଏଇଠି ସେଇଠି ଚରୁଥିବା ସବୁ ଗାଇମାନଙ୍କୁ ଠୁଳ କରି ଦେଇ ତାଙ୍କ କମଣ୍ଡଳୁ ଭିତରେ ଭର୍ତ୍ତି କରିଦେଲେ ଆଉ ସ୍ୱର୍ଗଧାମକୁ ଚାଲିଗଲେ - ଭାବିଲେ ଦେଖିବେ ଗଉଡ଼ ଟୋକା ଯଦି ସତରେ ବିଷ୍ଣୁ ତାଙ୍କ ପାଖକୁ ଆସୁଛି ନା ନାହିଁ।

କୃଷ୍ଣ ଖେଳର ଯୁକ୍ତି-ତର୍କ ଭିତରେ ଜାଣିସାରିଥିଲେ ଯେ ବ୍ରହ୍ମା ଗାଇଗୋରୁଙ୍କୁ କମଣ୍ଡଳୁ ଭିତରେ ପୂରାଇ ନେଇଗଲେଣି। ସଞ୍ଜ ହୋଇଗଲେ ପିଲାମାନେ ଗାଈ ଖୋଜିବସିବେ। ସେ ଆଉ ଗୋଟିଏ ଲେଖାଏଁ ଗାଇମାନଙ୍କ ପ୍ରତିମୂର୍ତ୍ତି ସୃଷ୍ଟି କରିଦେଲେ। ସେ ପ୍ରତିମୂର୍ତ୍ତିଗୁଡ଼ିକ ଏମିତି ନିଖୁଣ ଯେ ଗାଇଚରୁଆ ଟୋକାମାନଙ୍କୁ ତ ଛାଡ଼, ଘରକୁ ଗଲା ପରେ ବାଛୁରୀମାନେ ବି ତାଙ୍କ କୃତ୍ରିମ ମା'ମାନଙ୍କୁ ଚିହ୍ନି ପାରିଲେନି। କଥାଟି ଏମିତି କେତେକାଳ ଚାଲିଲା। ବ୍ରହ୍ମା ଆଶା କରୁଥିଲେ ଶ୍ରୀକୃଷ୍ଣ ବୃନ୍ଦାବନରେ ହଟହଟା ହୋଇ ତାଙ୍କ ପାଖକୁ ଗାଇ ମାଗିବା ପାଇଁ ଆସିବେ। ସେମିତି କିଛି ନ ହେବାରୁ ବର୍ଷେ ପରେ ପୁଣି ଥରେ ସେ ଆସିଲେ ବୃନ୍ଦାବନକୁ କଥା କଣ ଜାଣିବା ପାଇଁ। ଏ ବର୍ଷ ଯେ ଆମ କାଳର ହୋଇଥିବ ସେ କଥା କହିବା ଅପ୍ରାସଙ୍ଗିକ ହେଉଥିଲେ ମଧ୍ୟ କହିବା କଥା - ଯେହେତୁ ବ୍ରହ୍ମାଙ୍କ ବର୍ଷେ ଲାଇଟ୍ ଇୟରରୁ ମଧ୍ୟ ଅଧିକ। ତାଙ୍କ ଦିନବେଳେ କୁଆଡ଼େ ସୃଷ୍ଟି ସଞ୍ଚରି ତାଙ୍କ ରାତିରେ ପ୍ରଳୟ ହୁଏ। ବ୍ରହ୍ମା ଆସି ଦେଖିଲେ ଯେ, ଗୋପାଳ ଟୋକାଗୁଡ଼ାକ ଏଥର ଡୁ ଡୁ ନ ଖେଳି କଇଁଥ ଝାଡ଼ି ଖାଉଛନ୍ତି ଆଉ ଗୋ ପଲ ତାଙ୍କ ମନଇଚ୍ଛା ସେମିତି ଚରି ବୁଲୁଛନ୍ତି। ବ୍ରହ୍ମା ଭାବିଲେ ଗାଇଗୁଡ଼ିକ ତେବେ ତାଙ୍କ କମଣ୍ଡଳୁ ଭିତରୁ ଯେଉଁ କଣାବାଟେ ଖସିଆସିଛନ୍ତି - ପାଣି ନ ରଖି ଜୀବଜନ୍ତୁ ରଖିଲେ ଏମିତି ଅସୁବିଧା ହୁଏ ଭାବି କମଣ୍ଡଳୁର ଛିଦ୍ର ଖୋଜିଲା ବେଳକୁ ବ୍ରହ୍ମା ଦେଖନ୍ତି କମଣ୍ଡଳୁରେ ଏବେ ବି ଗାଇ ଭର୍ତ୍ତି। ଏଣେ ବାହାରେ ପଲେ ଗାଇ ତ ତେଣେ କମଣ୍ଡଳୁ ଭିତରେ ଏକା ଧରଣର ପଲେ। ତା'ପରେ ବ୍ରହ୍ମା ନିଜ ଦେହକୁ ଅଦୃଶ୍ୟ କରିଦେଇ କୃଷ୍ଣଙ୍କ ପାଖରେ ପହଞ୍ଚି କେମିତି ଗଡ଼ଘାଲି ହୋଇ ଶୋଇଲେ ଆଉ ଭଗବାନ ମୋ ଦୋଷ ସବୁ କ୍ଷମା କରିଦେ' ବୋଲି କହିଲେ ସେ କଥା କହିବା ଏଠାରେ ଅବାନ୍ତର ହୋଇପାରେ; କିନ୍ତୁ କଥାଟି ପ୍ରମାଣିତ କରେ ଯେ, ବ୍ରହ୍ମାଙ୍କ ପାଖରେ ବି କମଣ୍ଡଳୁଟିଏ ଥିଲା। କମଣ୍ଡଳୁ ଯଦି ଥିଲା, ତେବେ ଦଣ୍ଡ ବା ଠେଙ୍ଗା ଅବା ଆଉ କେତେ ଦୂର।

ଭଗବାନଙ୍କ ନାଭିକମଳରୁ ବ୍ରହ୍ମା ଯେତେବେଳେ ଜାତ ହେଲେ, ସେ ମୁହୂର୍ତ୍ତକୁ ଯଦି ସମୟ ବା କାଳର ଜନ୍ମ ବୋଲି ଧରିନିଆଯାଏ, ଭଗବାନଙ୍କ ନାଭି କମଳରୁ ବାହାରିଲା ବେଳେ ବ୍ରହ୍ମା କ'ଣ ଲୋଟା ଆଉ ଠେଙ୍ଗା ଧରି ବାହାରିଥିଲେ - ସେ ପ୍ରଶ୍ନ କାହାରି କାହାରି ମନରେ ଜାଗ୍ରତ ହେବା ସ୍ୱାଭାବିକ। ଅର୍ଥାତ ଠେଙ୍ଗାର ଜନ୍ମ ଏବଂ ସମୟର ଜନ୍ମ ଏକା ନା ନୁହେଁ, ତାହା ଏକ ଯୁକ୍ତିଯୁକ୍ତ ପ୍ରଶ୍ନ। ମନେହୁଏ ଠେଙ୍ଗାର ଜନ୍ମ ସମୟର ଜନ୍ମର କିଛି କାଳ ପରେ।

ଶୁଣାଯାଏ ଅସୁର ଓ ଦେବତାମାନେ ମିଳିମିଶି ଯେତେବେଳେ ସମୁଦ୍ର ମନ୍ଥନ କଲେ, ସମୁଦ୍ରରୁ ଐରାବତ ହାତୀ, ଉଚ୍ଚୈଶ୍ରବା ଘୋଡ଼ାଠାରୁ ଆରମ୍ଭ କରି ଅମୃତ, ଗରଳ, ଲକ୍ଷ୍ମୀ, ଚନ୍ଦ୍ରମା ପର୍ଯ୍ୟନ୍ତ ମିଳିବା ସଂଗେସଂଗେ ଲମ୍ବା ବାଉଁଶଟାଏ ବି ମିଳିଲା। ସେସବୁ ଭିତରେ କିଏ କଣ ନେଲା ସେ କଥା ଜଣାଶୁଣା। ବାଉଁଶକୁ କିଏ ନେବ! ସେ ପଡ଼ିଲା ବିଶ୍ୱକର୍ମାଙ୍କ ହାତରେ। ବାଉଁଶରୁ ଖଣ୍ଡେ କାଟି ବିଶ୍ୱକର୍ମା ଶିବଙ୍କ ପାଇଁ ଧନୁଟିଏ ତିଆରି କଲେ। ସେ ହେଲା ଶିବଧନୁ 'ପିନାକ'। ଧନୁ ଦେଖି ଅନ୍ୟ କେହି କେହି ମୋ ପାଇଁ ମଧ ଏମିତି ଗୋଟିଏ କରିଦିଅ ବୋଲି ନିଶ୍ଚୟ କହିଥିବେ। ଇଞ୍ଜିନିୟର ମହୋଦୟ ଆଉ ଯେଉଁସବୁ ଧନୁ ତିଆରି କଲେ ସେସବୁ କାଳକ୍ରମେ ସୀତାବିବାହ ବେଳର ଭଗ୍ନ ଶିବଧନୁ, ଶ୍ରୀରାମ କୋଦଣ୍ଡ, ଅର୍ଜୁନଙ୍କ ଗାଣ୍ଡିବ ପ୍ରଭୃତି ନାମରେ ପରିଚିତ। ବାଉଁଶ ଖଣ୍ଡକ କଟି କଟି ଶେଷରେ ଯେଉଁ ଟିକକ ରହିଲା ତାହା ଯଥା ସମୟରେ ଶ୍ରୀକୃଷ୍ଣଙ୍କ ମୁରଲୀ ହେଲା ବୋଲି ମଧ ଶୁଣାଯାଏ। ବ୍ରହ୍ମାଙ୍କ କମଣ୍ଡଳୁ ସେ ସମୁଦ୍ର ମନ୍ଥନ ବେଳେ ହିଁ ବାହାରିଥିଲା ଏବଂ ତହିଁରେ ବ୍ରହ୍ମା କିଛି ଅମୃତ ରଖନ୍ତି ତା' ମଧ ଜଣାଶୁଣା। ତେବେ ବ୍ରହ୍ମା ଯେ ବିଶ୍ୱକର୍ମାଙ୍କୁ କହି ସେ ବାଉଁଶରୁ ନିଜ ପାଇଁ ଦଣ୍ଡଟିଏ କରାଇ ନେଇଥିବେ ଏକଥା ଅନୁମାନ କରାଯାଇପାରେ। ସମୁଦ୍ରମନ୍ଥନ ତେଣୁ ଦଣ୍ଡର ଜନ୍ମକାଳ ବୋଲି ଗ୍ରହଣୀୟ।

ହରିଶ୍ଚନ୍ଦ୍ର ଶ୍ମଶାନରେ ଚଣ୍ଡାଳ ବେଶରେ ଥିଲା ବେଳେ ଠେଙ୍ଗା ଦେଖାଇ ଶ୍ମଶାନ ଟିକସ୍ ଆଦାୟ କରୁଥିଲେ ବୋଲି ମଧ ପୌରାଣିକ ବର୍ଣ୍ଣନା ଅଛି।

ଧୃତରାଷ୍ଟ୍ର, ଗାନ୍ଧାରୀ, କୁନ୍ତୀ ଏବଂ ବିଦୁର ଯେତେବେଳେ ବାନପ୍ରସ୍ଥରେ ବାହାରିଲେ, କୁନ୍ତୀ ଗାନ୍ଧାରୀଙ୍କୁ ସମବେଦନା ଜଣାଇ ନିଜେ ଅନ୍ଧ ପୁଟୁଳି ବାନ୍ଧିଥିଲେ। ତିନିଙ୍କୁ ବାଟ କଢ଼ାଇବା ପାଇଁ ଏକା ଥିଲେ ବିଦୁର। ତାଙ୍କ ଦୁଇ ହାତରେ ଥିଲା ଗୋଟିଏ ଲେଖାଁଏ ଦଣ୍ଡ। ଡାହାଣ ହାତରେ ସେ ନିଜେ ଭରାଦେଇ ଚାଲୁଥିଲେ ଓ ବାଁ ହାତ ଦଣ୍ଡର ଗୋଟାଏ ମୁଣ୍ଡକୁ ଧୃତରାଷ୍ଟ୍ର ଧରିଥିଲେ ଓ ଅନ୍ୟ ମୁଣ୍ଡ ଧରିଥିଲେ ଗାନ୍ଧାରୀ। କୁନ୍ତୀ ଏବଂ ଗାନ୍ଧାରୀ ସେମିତି ଆଉ ଗୋଟାଏ ଦଣ୍ଡର ମୁଣ୍ଡ ଧରାଧରି ହୋଇଥିଲେ। ପ୍ରଶେଶନ୍ ବାହାରିଥିଲା ହସ୍ତିନାପୁରରୁ।

ଯୁଧିଷ୍ଠିର ଯେତେବେଳେ ତାଙ୍କ ଅନ୍ୟ ଚାରିଭାଇଙ୍କ ସହ ଦ୍ରୌପଦୀଙ୍କୁ ନେଇ ସ୍ୱର୍ଗାରୋହଣରେ ବାହାରିଲେ, ଆଉ ହିମାଳୟ ଚଢ଼ିବସିଲେ, ଭୀମ ତାଙ୍କ ଗଦାକୁ ଦଣ୍ଡ ଭାବରେ ବ୍ୟବହାର କରିଥିଲେ ବୋଲି ବର୍ଣ୍ଣିତ ଅଛି। ଯୁଧିଷ୍ଠିରଙ୍କ ହାତରେ କିନ୍ତୁ ଥିଲା ରୀତିମତ ଗୋଟାଏ ଦଣ୍ଡ। ପଛରେ ତାଙ୍କର ଚାଲିଥିଲା ସେ ଜଣାଶୁଣା କୁକୁର।

ଆମେ ଏଥର ଆସୁ ଐତିହାସିକ ଯୁଗକୁ। ଶଙ୍କରାଚାର୍ଯ୍ୟ ସାରା ଭାରତ ପ୍ରଦକ୍ଷିଣ ଏବଂ ପରିକ୍ରମା କରିଥିଲେ ଚାରିଥର - ଏ ମୁଣ୍ଡରୁ ସେ ମୁଣ୍ଡ - ସେ ମୁଣ୍ଡରୁ ଏ ମୁଣ୍ଡ - ହିମାଳୟରୁ କୁମାରିକା - କୁମାରିକାରୁ ହିମାଳୟ। ତାଙ୍କ ହାତରେ ଥିଲା ଦଣ୍ଡଟିଏ। ଦଣ୍ଡ ସାହାଯ୍ୟରେ ସେ ଯେ ବୌଦ୍ଧ ଧର୍ମକୁ ଘଉଡ଼ାଇ ବୁଲୁଥିଲେ ତା' ନୁହେଁ, ସନାତନ ଧର୍ମକୁ ପୁନଃପ୍ରତିଷ୍ଠା କରୁଥିଲେ ସିଏ।

ଆସିଲା ଆଧୁନିକ ଯୁଗ। ଗାନ୍ଧିଜୀ ବାହାରିଥିଲେ ତାଙ୍କ ଦାଣ୍ଡି ମାର୍ଚ୍ଚରେ - ଠେଙ୍ଗାଟିଏ ଧରି।

ଏଥିରୁ ମନେହୁଏ ଯେ ଅନ୍ଧର ଲଉଡ଼ି ବୋଲି ସୁବିଦିତ ହେଲେ ମଧ ଛୋଟା, କୁଜା, ଡେଙ୍ଗା, ଠୁରା, ମୋଟା, ସରୁ ସବୁଜାତୀୟ ଚକ୍ଷୁଷ୍ମାନ୍‌ମାନଙ୍କ ପାଇଁ ମଧ ଠେଙ୍ଗା ଗୋଟାଏ ସର୍ବସହାୟକ ଲଉଡ଼ି।

ପ୍ରତ୍ୟେକ କଥାର ଭଲମନ୍ଦ, ଏ ପାଖ ସେ ପାଖ ଥିଲା ପରି ଠେଙ୍ଗାର ମଧ ଆଉ ଗୋଟାଏ ପାଖ ଯେ ରହିବ ସେଥିରେ ସନ୍ଦେହ ନାହିଁ। ବେଳେବେଳେ ଠେଙ୍ଗା ତା ବିଭିନ୍ନ ବିନାଶକାରୀ ରୂପ ନେଇ ଦେଖାଦିଏ। ଲାଠିଧାରୀ ପୋଲିସ ହାତରେ ଲାଠି ଓ ଅଶ୍ୱାରୋହୀ ପୋଲିସ ହାତରେ ବେଟନ୍ ନାମରେ ସେ ମାଡ଼ ବିଞ୍ଚି ବୁଲେ। ଡେଙ୍ଗାମୁଣ୍ଡରେ ଠେଙ୍ଗା ପଡ଼େ। ସାପ ନ ମରି ଲାଠି ଭାଙ୍ଗେ।

ଅବସ୍ଥାଚକ୍ରରେ ପଡ଼ି ମୁଁ ସେଦିନ ଠେଙ୍ଗାର ଏହି ବିନାଶକାରୀ ରୂପ କଥା ହିଁ ଚିନ୍ତା କରୁଥିଲି। ମଇ ମାସ ତିରିଶି ଏକତ୍ରିଶି ତାରିଖର ଦିନବେଳିଆ ଖଇଫୁଟା ଖରାବେଳେ ବିଜୁଳି ପଙ୍ଖା ସବୁ କ୍ରମାଗତ ହରତାଳ ଆରମ୍ଭ କରିଦେଇ ଯେତେବେଳେ ଢୁଳେଇବାକୁ ଲାଗିଲେ, ଆଉ ମଝିରେ ମଝିରେ ନିଦରୁ ବିଳିବିଳେଇ ଉଠି ପୁଣି ଢୁଳେଇ ବସିଲେ, ମୁଁ ଗେଞ୍ଜି କାଢ଼ି ଦେଇ ଗାମୁଛା ଖଣ୍ଡକରେ ବିଞ୍ଚି ହେଲା ବେଳେ ଝାଳ ଏବଂ ନିଷ୍ଫଳ କ୍ରୋଧରେ ଜୁଡୁବୁଡୁ ହୋଇ ପଙ୍ଖାମାନଙ୍କୁ ପାହାରେ ଲେଖାଏ ଦେବାର ଔଚିତ୍ୟ ସମ୍ବନ୍ଧରେ ଚିନ୍ତା କରୁଥିଲି। ଶାଶୁକୁ ରାଗି ବୋହୂ ଚୁଲିକୁ ଲାତେ ମାରିଲା ପରି ଇଞ୍ଜିନିୟରମାନଙ୍କ ଦୋଷ ପାଇଁ ବିଚରା ପଙ୍ଖା କାହିଁକି ମାଡ଼ ଖାଇବ ବୋଲି ଭାବିଲାବେଳକୁ ହିଁ ମନେ ପଡ଼ିଲା ପିଲାଦିନର ସେ କାହାଣୀ।

ବାପା ମା' ଛେଉଣ୍ଡ ମେଣ୍ଢାଚରୁଆ ପିଲାଟିଏ। ଖରାବେଳେ ତା ମେଣ୍ଢାମାନଙ୍କୁ ଘରକୁ ଆଣିଲେ ଗୃହସ୍ୱାମୀ କେବେ 'ଆବେ ଏତେ ଆଗରୁ ନେଇ ଆସିଲୁଣି' କହନ୍ତି

ତ କେବେ ସଞ୍ଜବେଳେ ଟିକେ ଡେରି ହୋଇଗଲେ ଅଥବା ମେଣ୍ଢା ଛୁଆଟିଏ ଗଧିଆ ହାବୁଡ଼ରେ ପଡ଼ିଗଲେ 'ହଇବେ, ତୋ ବୋପାର ମେଣ୍ଢା-' କହି ବିଧା ଚାପୁଡ଼ା ଲଦି ଦିଅନ୍ତି। ଖାଇଲାବେଳେ ବିଚରାକୁ ମିଳେ ପଖାଳ ଗଣ୍ଡିଏ, ତୋରାଣି ମୁନ୍ଦିଏ। ଦୁଃଖରେ ଛେଉଣ୍ଡ ପିଲାଟି ଆଖିରୁ ଲୁହ ଝରାଏ। ନିତିଦିନ ମେଣ୍ଢାମାନଙ୍କୁ ଘାସପତ୍ର ଲଟାବଟା ଚରିବାକୁ ଛାଡ଼ିଦେଇ ପାଖ ଭଙ୍ଗା ଶିବ ମନ୍ଦିରର ପାହାଚ କୋଣରେ ବସି ଲୁହ ଗଡ଼ାଏ।

ଯଥା ସମୟରେ ପାର୍ବତୀ ଏ ଦୃଶ୍ୟ ଦେଖି ବିକଳ ହେଲେ ଏବଂ ଶିବଙ୍କ ଧ୍ୟାନ ଆକର୍ଷଣ କଲେ। ଆଶୁତୋଷ ପ୍ରସନ୍ନ ହୋଇ ବର ଯାଚିଲେ ମେଣ୍ଢା ଚରୁଆଳକୁ।

ଦୁଃଖ କଷ୍ଟ ଏବଂ ନିଷ୍ଫଳ କ୍ରୋଧ ନେଇ ମେଣ୍ଢା ଚରୁଆ ବେପରୁଆ ନମସ୍କାରଟିଏ କଲା ଆଉ କହିଲା - "ତୁ କେଉଁ ଡୁମା କି ଦେବତା ମୁଁ ତୋତେ ଚିହ୍ନିନି। ବର ଯଦି ଦେବୁ ତେବେ ଦେ ଗୋଟେ ବର ଯେ ମୁଁ ଯାହାକୁ ଆଙ୍ଗୁଠି ଦେଖାଇ କହିବି 'ବାନ୍ଧ୍ ବାନ୍ଧ୍ ଦଉଡ଼ି ମାର୍ ମାର୍ ଠେଙ୍ଗା, ଦଉଡ଼ିଏ ଆପଣା ଛାଏଁ ତାକୁ ବାନ୍ଧି ପକାଇବ ଆଉ ଠେଙ୍ଗା ଦେବ କଷିକରି - ମୁଁ ବନ୍ଦ ନ କରିବା ଯାଏ।"

ଶିବ ତଥାସ୍ତୁ କହି ଦଉଡ଼ି ଏବଂ ଠେଙ୍ଗା ମେଣ୍ଢା ଚରୁଆ ସାମନାରେ କୁଢ଼େଇ ହୋଇ ପଡ଼ିବା ପୂର୍ବରୁ ଅନ୍ତର୍ଦ୍ଧାନ ହୋଇଗଲେ - ଡର ବୋଧହୁଏ ହେଲା ଯେ, ଭସ୍ମାସୁର ପରି ଏ ବାଳକ ବି ଯଦି ବରର ସତ୍ୟାସତ୍ୟ ଜାଣିବା ଆଶାରେ ତାଙ୍କୁ ହିଁ ଆଙ୍ଗୁଠି ଦେଖାଇ 'ବାନ୍ଧ୍ ବାନ୍ଧ୍ ଦଉଡ଼ି ମାର୍ ମାର୍ ଠେଙ୍ଗା' କହିଦିଏ।

ତାପରେ ତ ଯାହା ହେଲା ସମସ୍ତେ ଜାଣନ୍ତି। ପିଲାଟି ଦଉଡ଼ି ଆଉ ଠେଙ୍ଗା ନେଇ ଯେତେବେଳେ ଘରକୁ ଗଲା ଗୃହସ୍ୱାମୀ 'ଠେଙ୍ଗା ଦଉଡ଼ି କାହାଠାରୁ ଚୋରାଇ ଆଣିଛି' କହି ମାଡ଼ ଦେବାକୁ ଆରମ୍ଭ କରିଦେଲେ। ପିଲାର ସବୁ କାକୁତି ମିନତି କିଛି ଫଳ ଦେଲାନି। ଶେଷରେ ସେ ଲୁହ ପୋଛି ଅଦୃଶ୍ୟ ବରଦାତାଙ୍କୁ ହାତ ଯୋଡ଼ି ଗୃହସ୍ୱାମୀଙ୍କୁ ଆଙ୍ଗୁଠି ଦେଖାଇଁ କହିଦେଲା - 'ବାନ୍ଧ୍ ବାନ୍ଧ୍ ଦଉଡ଼ି...'

ଠେଙ୍ଗମାଡ଼ ଖାଉଥିବା ଗୃହସ୍ୱାମୀଙ୍କ ଚିତ୍କାର ଶୁଣି ଗୃହପତ୍ନୀ ଯେତେବେଳେ ଦଉଡ଼ିଆସିଲେ ଆଉ ଠେଙ୍ଗାମାଡ଼ ବନ୍ଦ କରିବାକୁ ବାଳକକୁ ଅନୁରୋଧ କଲେ, ବାଳକର ଆଦେଶରେ ଠେଙ୍ଗାମାଡ଼ ବନ୍ଦ ହେଲା।

ମୁଁ ଭାବୁଥିଲି ସେଇ କଥା। ମୋତେ ଯଦି କେଉଁ ଦେବତା ଏମିତି କୁହୁକ ଦଉଡ଼ି ଏବଂ ଠେଙ୍ଗାଟିଏ ଦିଅନ୍ତେ, ଏ ବିଜୁଳିବାଲାଙ୍କୁ ଏମୁଣ୍ଡରୁ ସେ ମୁଣ୍ଡ ବନ୍ଧେଇ ଦେଇ ମାର୍ ମାର୍ ଠେଙ୍ଗା କହିଦିଅନ୍ତି।

ପରେ ଭାବିଲି ବିଜୁଳିବାଲାଙ୍କୁ ମାର୍ ମାର୍ ଠେଙ୍ଗା କଲେ ତ ହେବନନି, ଏ ରାସ୍ତା, ଘାଟ, କୋଠାବାଡ଼ି, କଳକାରଖାନାର ସିମେଣ୍ଟ ଲୁହାଛଡ଼ ଚୋରମାନେ କେଉଁ

ଭଲ ଲୋକ ଯେ ଛାଡ଼ ପାଇଯିବେ। ପାଣି ପାଇପବାଲାଗୁଡ଼ାକ ଦି' ଦିନରେ ପାଞ୍ଚ ମିନିଟ ପାଣି ପଡ଼ିବ ଟପ୍-ଟପ୍- ତାପରେ ପାଇପରେ ଯେଉଁ ସଁ- ସଁ- ସମସ୍ତଙ୍କୁ ବାନ୍ଧି ମାର୍ ମାର୍ କରିବା କଥା।

ପୁଣି ଭାବିଲି - ଖାଲି ଇଞ୍ଜିନିୟରମାନେ କାହିଁକି ମାଡ଼ ଖାଇବେ ? ଏଇ ଯେଉଁ ରେଭିନ୍ୟୁ ଜମିଜମାବାଲେ - ସେମାନେ କଣ କମ୍ ? ଆଉ ଶାଳମଞ୍ଜି, କେନ୍ଦୁପତ୍ର, ସୋରିଷ ତେଲ, ଧାନ, ବିହନବାଲେ - ରେଳଗାଡ଼ି ଟି.ଟି.ଆଇ., ବସ୍ କଣ୍ଡକ୍ଟରଗୁଡ଼ା କିଏ କାହାକୁ କମ୍ ?

ପୁଣି ଅଛନ୍ତି ଚୋରା କାରବାର କରୁଥିବା ଦଳ - ସଚ୍ଚାକୁ ଭେଜାଲ କଲାବାଲେ, ବଦଳି ଆଦେଶ କରାଇଦେଲେ ଏତିକି ବାଲେ - ଠକ ଭଣ୍ଡ ମାଷ୍ଟ୍ରେ - ଆଖିଫୁଟାନେବାଲେ - ଫାଇଲକୁ ଗାଈ ଖାଇଗଲା କହନେବାଲେ।

ଆଉ ଆମେ ସରକାର ଗଠନ କଲେ ଏମିତି ସେମିତି କରିବାକୁ ସହି ସୁବିଧା ମିଳିଗଲେ କୋଠା ବାଡ଼େଇ ଟ୍ରକ୍ ବସ୍ କାର୍ ଲୁଣ୍ଠ କରୁଥିବା ଠକ ଭଣ୍ଡ ନେତା, ବ୍ୟାଙ୍କ ରବର୍ସ, ହୋଟେଲିୟର୍ସ, ସ୍ୱିଣ୍ଡଲର୍ସ, ବ୍ଲଡ ସକର୍ସ - କିଏ କାହିଁକି ବାଦ୍ ଯିବେ ? କମ୍ବଳଯାକ ତ ବାଳ। ସାରା କମ୍ବଳଟାକୁ ବାନ୍ଧ୍ ବାନ୍ଧ୍ ଦଉଡ଼ି... କରାଇଦେବା କଥା- ଚଟାପଟ୍।

ଅବଶ୍ୟ ନିଜେ ନିଜକୁ ସୁଧାରିନେବା ପାଇଁ ଏମାନଙ୍କୁ କିଛି ସମୟ ଦେବା କଥା। ଏ ପଙ୍ଖା ଯଦି ରାତିଦିନ ଭଲ କରି ନ ବୁଲିଛି - ନିଅ ଅଣସର ଗୁଳୁଗୁଳି ଆରମ୍ଭ ହେବା ଆଗରୁ...

ଅଣସର ଗୁଳୁଗୁଳି କଥା ମନେ ପଡ଼ିଲାକ୍ଷଣି ଚକାନୟନଙ୍କୁ ମନେପଡ଼ିଗଲା। ସେ ଆଉ କଣ କରୁଛନ୍ତି ଯେ! ଏବେ ରଥଯାତ୍ରାବେଳେ ବାହାରିବେ। ଏବେ ବି କଣ ଲୋକଙ୍କୁ ଦୁଃଖ କଷ୍ଟ ଦେଖିବେ ଶୁଣିବେ ବୁଝିବେ ? ଆମ ଗାଁର ମହାଜନ ଯେମିତି ତା' ଦାଣ୍ଡ ଦୁଆରେ ବସି ରାସ୍ତା ଉପରକୁ ଅନାଇଥାଏ ଦୁଃଖୀରଙ୍କିଙ୍କ ଗହଣାପତ୍ର, ବାସନକୁସନ, ଗଣ୍ଡିଲି ଜମିପଟ୍ଟା ଦଲିଲ ଆଡ଼କୁ ଲୋଭିଲା ଦୃଷ୍ଟି ପକାଇ - ଆଶ୍ୱାସନା ଦେଇଥାଏ 'ତୋର ଦୁଃଖକଷ୍ଟ ବେଳକୁ ମୁଁ ଅଛି' ବୋଲି, ଆମ ଚକାଡୋଳା ସେମିତି ରଥ ଉପରୁ ସମସ୍ତଙ୍କ ଭୋଗଡାଲା ଆଡ଼କୁ ଅନାଇ ଅଭୟ ମୁଦ୍ରାରେ 'ତମ କଥା ବୁଝିବା, ଶୁଣିବା' କହିବେ ନାହିଁ ତ ? ତାଙ୍କୁ ବି ବାନ୍ଧ୍ ବାନ୍ଧ୍...

ହଠାତ୍ ମୋର ମନେପଡ଼ିଗଲା, ଚକାନୟନଙ୍କୁ ଏବେ ବୋଧହୁଏ ଜର ହେବାକୁ ଆରମ୍ଭ କରିବଣି। ଜର କେମିତି ହେବନି ? ଏ ଗରମ ଦିନେ ବି ତାଙ୍କର ଭଗତମାନେ ତ ତାଙ୍କୁ ଚାମର ଟିକିଏ ଦେଖାଇ ଦେଇ ଝରକାବିହୀନ ମନ୍ଦିର କୋଠରି

ଭିତରେ କବାଟ କିଳିଦେବେ। ରଥଯାତ୍ରା ବେଳେ ଚକାଡୋଳା ଟିକିଏ ପବନ ପାଇବେ ଯାହା। ତା'ପରେ ମାଉସୀ ଘର ଭିତରେ ଯେଉଁ କଥାକୁ ସେଇ କଥା। ପୁଣି ସେ ମନ୍ଦିର ଭିତରର ଚାମର ବିଞ୍ଚଣା ଟିକିଏ - ଏଆର କଣ୍ଡିସନରନା ଏଆର କୁଲର୍। ଆମ ଗାମୁଛା ବିଞ୍ଚଣାଠାରୁ ତାଙ୍କ ଚାମର ବିଞ୍ଚଣା କେଉଁ ଗୁଣେ ଅବା ଭଲ ଯେ! ଆହା ବିଚରା! ଆମଠୁ ଆହୁରି କଷ୍ଟ ଭୋଗୁଛନ୍ତି। କିଏ ତାଙ୍କ କଥା ବୁଝୁଛି ? ଏମିତି ଗରମ ଦିନେ ଦହି ପଖାଳ ସାଙ୍ଗକୁ ପିଆଜ ଦି'ଚାରିଟା, ଆଚାର, ବଡ଼ିଭଜା, ଘାମଡ଼ରୁ କିଛି, ଟିକିଏ ଆମ୍ବଛେଚା, ମାଲଦା ଲେଙ୍ଗଡ଼ା ନ ହେଲେ ବି ଭଲ ବାଇଗଣପଲୀ ଗୋଟାଏ ଦିଟା... ଆହା! ତାଙ୍କୁ ପୁଣି ମୁଁ ବାନ୍ଧ୍ ବାନ୍ଧ୍ ଦଉଡ଼ି କହୁଥିଲି!

ତାଙ୍କ ଚକା ଚକା ଆଖି ମୋ ଆଖି ସାମନାରେ ଭାସିଉଠିଲା; ମନେହେଲା ସେ ମୋତେ ଦେଖି ହସୁଛନ୍ତି। କହୁଛନ୍ତି - ତୁ ଯେଉଁମାନଙ୍କୁ ବାନ୍ଧିବାକୁ ଏକାଠି କରିଛୁ, ସେମାନଙ୍କ ମୁହଁକୁ ଅନାଇଲୁଣି ତ! ସେ ସମସ୍ତେ ଯେ ତୋର ଭାଇ, ବନ୍ଧୁ, ଜ୍ଞାତି, କୁଟୁମ୍ବ, ଶଳା, ସମୁଧି, ମାମୁ, ଖୁଡୁତା, ପୁଅ ପୁତୁରା - କାହାକୁ ବାନ୍ଧିବୁ ? ତୁ ଯେଉଁ ଇଞ୍ଜିନିୟରମାନଙ୍କ କଥା କହୁଛୁ, ସେମାନେ ପରା ତୋ ଛାତ୍ର ଥିଲେ ? କାହାକୁ ଠେଙ୍ଗା ଦେଖାଇବୁ ?

ସହିଯା। ଶୀତ ଉଷ୍ଣ - ସୁଖ ଦୁଃଖ ତ ଆସିବ। ପଙ୍ଖା ନ ଥିଲା ବେଳେ କଣ ସେ ମହୁଲ ଗଛ ତଳେ ଆମ୍ବ ତୋଟା ଭିତରେ ବର ଅଶ୍ୱତ୍ଥ ବର ଗଛ ଛାଇରେ ବସୁ ନ ଥିଲୁ କି ? ଏବେ ଏତେ ପରାଧୀନ ହେଉଛୁ କାହିଁକି ଯେ ?

ମୁଁ ଦଉଡ଼ି ଆଉ ଠେଙ୍ଗାକୁ ଜଗନ୍ନାଥଙ୍କ ପାଖରେ ସଅଁପି ଦେଇ ମୁଣ୍ଡିଆଟିଏ ମାରି କହିଲି - ହଉ ଜଗନ୍ନାଥେ, ତୋ କଥା ମାନିଲି, ତୁ ଏବେ ଯାହା କରିବୁ କର। ଏତିକି କିନ୍ତୁ ମନେରଖିଥା, ଏ ଜାତିର ମନକୁ ଯଦି ନ ବଦଳାଇଛୁ, ତୁ ନିଜେ ସବୁଠାରୁ ବେଶି କଷ୍ଟ ଭୋଗିବୁ। ହୁଏତ ସେ ଦୁର୍ଦ୍ଦିନ ପୁଣି ଥରେ ଆସିବ; ଆଉ ତୁ ମନ୍ଦିର ଛାଡ଼ି କେଉଁଠି ଲୁଚି ବୁଲିବୁ। ସେତିକିବେଳେ ଆମ ଲେଖକ ଦଳ ଭିତରୁ କେହି ଜଣେ ହୁଏତ ଲୁହ ଝରାଇ ଗାଇବେ 'କେଣେ ଘେନି ଯାଉଛ...'

ଯୁଗଯୁଗର ଅଧଃପତନ ପରେ ଏ ଜାତିର କେହି ହୁଏତ ତୋର ଲୁଚିଲା ସ୍ଥାନ ଠାବ କରି ତୋତେ ନେଇ ଆସିବ ଆଉ ମନ୍ଦିର ଭିତରେ ଭର୍ତ୍ତି କରିଦେଇ ତାଲା ଠୁକିଦେବ। ସେତିକିବେଳେ ତୋର ଦାରୁମୂର୍ତ୍ତି ଶୁଖି ପାଷାଣରେ ପରିଣତ ହୋଇ ନ ଥିଲେ ହେଲା!

# କୃଷ୍ଣଚୂଡ଼ା ଠାକୁରାଣୀ

କେନ୍ଦୁଗୁଡ଼ା ଗାଁରୁ କସ୍ତୁରିପଦର ଗଲାବେଳେ ବାଟରେ ସେ ଯେଉଁ ଚାରିଛକ ପଡ଼େ, ତାର ଡାହାଣକୁ ଗଲେ ସୁନାଡଙ୍ଗ୍ରି, ବାଆଁକୁ ଗଲେ ମହୁଲକୋଟ ଆଉ ସିଧା ଗଲେ କସ୍ତୁରିପଦର - ଠିକ୍ ସେଇଠି ମାଧୁଆ ତା' ବାଁ ହାତକୁ ଭାରର ଲାଠି ଉପରେ ବୁଲାଇଆଣି ଡାହାଣ ହାତ ପାପୁଲିରେ ଯୋଡ଼ି ଜୁହାର ହେଉଁ ହେଉଁ କହିଲା - "ଜାଇଁଲ ବାବୁ - ଏ ଠାକୁରାଣୀ ଭାରି ପ୍ରତ୍ୟକ୍ଷ।"

ରାଧୁବାବୁ ତାଙ୍କ ଗତି ମନ୍ଥର କରି ଠାକୁରାଣୀଙ୍କ ଆଡ଼କୁ ଅନାଇଲେ। କାଠ ଖୁଣ୍ଟିର ଠାକୁରାଣୀ ସିନ୍ଦୂର ମେଞ୍ଚେ ବୋଲି ହୋଇ ଗୋଟାଏ ଥୁଣ୍ଟା ଗଛ ତଳେ ନିଶ୍ଚଳ ଠିଆରହିଛନ୍ତି। ତାଙ୍କ ସରୁ କାଠୁଆ ଦେହକୁ ଲାଗି ଆସ୍ଥାନ ଜମେଇଛନ୍ତି ଦୁଇ-ଚାରିଟା ଚିକଣିଆ ଦେବତା - ଛେଳି କୁକୁଡ଼ା ବଳିଭୋଜା ଖାଇ, ରକ୍ତ ମାଖି ନାଲି ଟକ୍‌ଟକ୍ ଟିମା ଟିମା ଦିଶୁଛନ୍ତି - ନିର୍ଦ୍ଦୟ ପଥର ପାଲଟିଯାଇଛନ୍ତି। ସେ ସମସ୍ତଙ୍କ ଚାରିଆଡ଼େ ମାଟିର ଘୋଡ଼ା, ମାଟି ବଳଦ, ମାଟି ଶଗଡ଼, ରୁଖା, ତେଲୁଣୀ, ଭଙ୍ଗା ସୋରେଇ ଆଉ ମାଠିଆର ଭିଡ଼ - ଦଦରା କୁଲା ଟୋପା, ଚାଙ୍ଗୁଡ଼ିର କୁଢ଼।

ଠାକୁରାଣୀଙ୍କ ପ୍ରତି ଠିକ୍ ତାଙ୍କର କର୍ତ୍ତବ୍ୟ କ'ଣ, ବୁଝି ନ ପାରି ରାଧୁବାବୁ ଥତମତ ହେଉଥିଲେ। କହିଲେ - 'ପ୍ରତ୍ୟକ୍ଷ! ମିଛ କଥା!' ସେ ଜାଣିଥିଲେ ଯେ ଏମିତି ଟିକେ ଟିକେ ଟିହାଇ ଦେଲେ ମାଧୁଆ ଚିହିଁକି ଉଠି ଠାକୁରାଣୀଙ୍କ ମହିମା ବଖାଣି ବସିବ, ଆଉ କିଛି କାହାଣୀ ଶୁଣିଲେ ହୁଏତ ତାଙ୍କୁ ଏ ବାଟଚଲା କଷ୍ଟ ଜଣାପଡ଼ିବନି।

ରାଧୁବାବୁ ବୁଝିସାରିଥିଲେ ଯେ ସେ କେଉଁଠି ଗୋଟାଏ ଭୁଲ କରି ବସିଛନ୍ତି। ତାଙ୍କୁ କସ୍ତୁରିପଦର ନେଇଯିବା ପାଇଁ ଚିଲଗୁଡ଼ାଠାରେ କିଛି ଗୋଟାଏ ସୁବିଧା କରାହୋଇଥିବ ବୋଲି ଲେଖିଥିଲେ ତାଙ୍କ ସହପାଠୀ ବନ୍ଧୁ ରସିକଲାଲ। ବନ୍ଧୁଙ୍କ ଝିଅ ବାହାଘରର ସ୍ୱତନ୍ତ୍ର ଆମନ୍ତ୍ରଣ ରକ୍ଷା କରି ସେ ଆସିଛନ୍ତି। ଏ ଅଞ୍ଚଳକୁ ଆସିବା ତା'ର ଏହି ପ୍ରଥମ। ବସ୍‌ରେ ସମସ୍ତେ କହିଲେ, କେନ୍ଦୁଗୁଡ଼ାଠାରୁ କସ୍ତୁରିପଦର ଅତି ପାଖ - ଧାପେ ବାଟ। ଆଉ ଚିଲଗୁଡ଼ାରୁ କସ୍ତୁରିପଦର ବେଶ ବୁଲାଣିଆ। ରାଧୁବାବୁ କେନ୍ଦୁଗୁଡ଼ାଠେଇଁ ବସ୍‌ରୁ ଓହ୍ଲାଇପଡ଼ିଲେ। ଭାବି ନେଇଥିଲେ ଟେକ୍‌ସି କି ରିକ୍ସାଟାଏ

କରି କଣ୍ଟୁରିପଦର ପହଞ୍ଚିଯିବେ। ବସ୍ ଚାଲିଗଲା ପରେ ସେ ଯେତେବେଳେ ଟେକ୍‌ସି, ରିକ୍‌ସା ଖୋଜି ବସିଲେ, ଦେଖିଲେ କେନ୍ଦୁଗୁଡ଼ା ଗୋଟିଏ ଅତି ଛୋଟ ଗାଁ। ଟେକ୍‌ସି, ରିକ୍‌ସା କ'ଣ, ସଡ଼କ ଉପରେ ଜନମାନବର ମଧ୍ୟ ଦେଖାଦର୍ଶନ ନାହିଁ। ଟିକିଏ ଆଗକୁ ଯାଇ ଦେଖିଲେ ସଡ଼କ ଉପରେ ଧାନ ଶୁଖାଇ କେହି ଜଣେ ସ୍ତ୍ରୀ ଲୋକ ମହୁଲ ଗଛ ଛାଇରେ ବସି ଆଉ ଜଣେ କାହା ମୁଣ୍ଡରୁ ଉକୁଣି ବାଛୁଛି। ସେ ଯେତେବେଳେ ପାଖକୁ ଯାଇ ଟେକ୍‌ସି ଏଇଠି କୋଉଠି ମିଳିବ କି ବୋଲି ପଚାରିଦେଲେ, ସ୍ତ୍ରୀ ଲୋକଟି ରାଧୁବାବୁଙ୍କ ଉପର ତଳ ଅନାଇ ଖିକ୍ ଖିକ୍ ହସି ମୁହଁ ବୁଲାଇନେଲା; ଆଉ ଉକୁଣୀମୁଣ୍ଡୀକୁ ପଚାରିଲା – 'ଟେକ୍‌ସି କଅଣ କିଲୋ ?' ଉକୁଣିମୁଣ୍ଡୀ ଆଉ ଟିକିଏ ଆଗକୁ ଥିବା ଗୋଟାଏ ଘରକୁ ଆଙ୍ଗୁଠି ଦେଖାଇ ଦେଇ କହିଲା, "ଆମେ ତମ କଥା ବୁଝିପାରୁନୁ – ସେ ଆଡ଼କୁ ସୁନାରୀଶାଳାରେ ପଚାର।"

ରାଧୁବାବୁ ଯଥା ସମୟରେ ସୁନାରୀଶାଳରେ ପହଞ୍ଚିଯାଇଥିଲେ। ସୁନାରୀ ବୁଢ଼ା ତା' ବାଉଁଶ ନଳୀରେ ଉହ୍ନେଇ ଫୁଙ୍କି କିଛି ଗୋଟାଏ ତରଳାଉଥିଲା – ଫୁଙ୍କା ବନ୍ଦ କରି ଅଷ୍ଟମୀ ଚାନ୍ଦ ପରି ଦେଖାଯାଉଥିବା ଚଷମା ଭିତରୁ ରାଧୁବାବୁଙ୍କୁ ଅନାଇ ସବୁ କଥା ପଚାରି ବୁଝିନେଲା; ଆଉ ବୁଝାଇଦେଲା ଯେ ଏଇ ଗାଁରେ ଶଗଡ଼ ଛଡ଼ା ପାଲବନ୍ଧା ବଳଦଗାଡ଼ି ବି ନାହିଁ। ଚିଲଗୁଡ଼ାକୁ ଚାଲିଯାଇ ସେଠାରୁ ବଳଦଗାଡ଼ି ଧରିବା ଅପେକ୍ଷା ସିଧା କଣ୍ଟୁରିପଦର ଚାଲିଯିବା ଭଲ। ଆଉ ଯଦି ଚାହାଁନ୍ତି ତାଙ୍କ ଜିନିଷପତ୍ର ବୋହିନେବା ପାଇଁ ଭାରୁଆ ମିଳିବେ। ତା'ପରେ ରାଧୁବାବୁଙ୍କ ଅନୁରୋଧରେ ସେ ସଡ଼କ ଉପରକୁ ଆସି ଡାକ ଛାଡ଼ିଥିଲା ଏଇ ମାଧୁଆ ଉଦ୍ଦେଶ୍ୟରେ। ସୁନାରୀବାବୁଙ୍କ 'ଆରେ, ମାଧୁଆ...ମାଧୁଆରେ-'ର ଜବାବ ଦୂର ବିଲରୁ ଆସିଥିଲା – 'କଅଣ କି ସୁନାରୀ ମାମୁ ?' ସୁନାରୀ ମାମୁ ଏଣୁ କୁହାଟ ଛାଡ଼ିଲେ – 'ଶୀଘ୍ର ଆ– କଣ୍ଟୁରିପଦର ଯିବୁ ବାବୁଙ୍କ ସାଙ୍ଗରେ।' ରାଧୁବାବୁଙ୍କୁ ଆଶ୍ୱସ୍ତ କରି ଏଥର ଉତ୍ତର ଦେଲା – 'ହଁ-ହଁ... ଆସୁଛି।'

ସତେ ଅବା ଏପରି ଏକ ଜନସେବାର ସୁଯୋଗ ଲାଭ ହିଁ ଥିଲା ମାଧୁଆର ପରମ କାମ୍ୟ। ଅଳ୍ପ ସମୟ ଭିତରେ ସେ ଗାମୁଛା ସାଙ୍ଗକୁ ବଳକା ଧୋତି ଖଣ୍ଡିଏ ଧରି ପେଡ଼ିସାଇତା ଫତେଇ ପିନ୍ଧି ପହଞ୍ଚିଯାଇଥିଲା ଭାର ହାତରେ। ତା'ପରେ ସେ ଭାରର ଗୋଟାଏ ପଟରେ ରାଧୁବାବୁଙ୍କ ସୁଟ୍‌କେଶ ଏବଂ ଅନ୍ୟ ପଟରେ ବିସ୍ତର ରଖି ଯେତେବେଳେ ଚଲାବାଟରେ ଆଗେଇଲା, ପଛରେ ଚାଲିଥିଲେ ରାଧୁବାବୁ – ଧାପେ ବାଟ କହିଲେ ଠିକ୍ କେତେ ସେ କଥା ଚିନ୍ତା କରି କରି।

ଯଥା ସମୟରେ ମାଧୁଆର ପ୍ରଶ୍ନମାଳାର ଉତ୍ତର ଦେଇ ସେ ଜଣାଇ ଦେଇଥିଲେ ଯେ ତାଙ୍କ ଘର କଟକରେ – ପୁଅ ଝିଅ ଦୁଇ – ଝିଅ ବାହା ହେଲାଣି ପୁଅ ବାହା

ହୋଇନି; ଆଉ ନାତି କି ନାତୁଣୀ କାହାରି ବି ଆବିର୍ଭାବ ଏଯାଏ ହୋଇନି। ଚାଲିଲା ବେଳେ ଏମିତି ଗୁଡ଼ିଏ କଥା ନିଜେ କହିବସିଲେ ସେ ଯେ ଶୀଘ୍ର ଥକିଯିବେ ସେପରି ଏକ ଆଶଙ୍କା ତାଙ୍କ ମନ ଭିତରେ ଉଙ୍କି ମାରୁଥିବା ବେଳେ ହିଁ ମାଧୁଆ 'ଏ ଠାକୁରାଣୀ ଭାରି ପ୍ରତ୍ୟକ୍ଷ' ବୋଲି କହିଥିଲା। 'ପ୍ରତ୍ୟକ୍ଷ। ମିଛ କଥା।' ସାଙ୍ଗକୁ ତାକୁ ଚିହ୍ନାଇଦେବା ପାଇଁ ରାଧୁବାବୁ ଯୋଡ଼ି ଦେଇଥିଲେ, 'ଠାକୁରାଣୀ ଯଦି ପ୍ରତ୍ୟକ୍ଷ, ତାଙ୍କୁ ଛାଇ ଦେଉଥିବା ଗଛ ଥୁଣ୍ଟା ହେଲା କେମିତି ?' ବନିଶୀ ପକାଇଲା କ୍ଷଣି ମାଛ ଥୋପ ଗିଳିଲା ପରି 'ତାଙ୍କର ଇଚ୍ଛା କିଏ କହିବ ?' କହି ମାଧୁଆ ଆରମ୍ଭ କରିଥିଲା କୃଷ୍ଣଚୂଡ଼ା ଠାକୁରାଣୀଙ୍କ କାହାଣୀ।

ଅନେକ ବର୍ଷ ତଳର କଥା। ଏବେ ଯେଉଁଠି ସେ ଥୁଣ୍ଟାଗଛ ଅଛି, ସେଇଠି ଥିଲା ମହୁଲକୋଟ୍, କସ୍ତୁରିପଦର, ସୁନାଡଙ୍ଗ୍ରି ଆଉ କେନ୍ଦୁଗୁଡ଼ା ଚାରି ମୌଜାର ସନ୍ଧି ଖୁଣ୍ଟି। ଲାଠିଏ ଜମି ଏପାଖ ସେପାଖ କରିବା ପାଇଁ ଖୁଣ୍ଟି ଘୁଞ୍ଚାଉଥିବା ଯୋଗୁ ଚାରି ମୌଜାର ଚାଷୀଙ୍କ ଭିତରେ ମାଡ଼ଗୋଳ ଲାଗି ରହିଥାଏ। ସେ ବର୍ଷ ଜୁନାଗଡ଼କୁ ଆସିଥାଆନ୍ତି ଜଣେ ବଢ଼ିଆ ସାହେବ। ସେ ଚାରି ଗାଁର ମୁଖିଆମାନଙ୍କୁ ଡାକିଲେ ଆଉ ବୁଝାଇଶୁଝାଇ କହିଲେ ଯେ, ପଥର ଖୁଣ୍ଟି ବଦଳରେ ସେ ସେଇଠି ଇମିତି ଗୋଟାଏ ସୁନ୍ଦର ଫୁଲଗଛ ପୋତିଦେବେ ଯେ ସେଇ ଫୁଲଗଛ ସନ୍ଧି ଖୁଣ୍ଟି ହେବ; ଆଉ ତା' ଫୁଲର ଶୋଭା ଚାର ମୌଜା ଲୋକଙ୍କୁ ବନ୍ଧୁପ୍ରେମରେ ଏକାଠି ବାନ୍ଧି ରଖିବ। କଥାଟି ସମସ୍ତଙ୍କ ମନକୁ ପାଇଲା। ଚାରି ମୌଜାର ଘଣ୍ଟ, ଶଙ୍ଖ, ମହୁରି, ସଂକୀର୍ତ୍ତନ ଭିତରେ ସାହେବ ପୋତିଥିଲେ ପଥର ଖୁଣ୍ଟି ପାଖରେ ଗୋଟିଏ କୃଷ୍ଣଚୂଡ଼ା ଗଛ। ସେଦିନ ସଞ୍ଜବେଳେ ପ୍ରଥମ କରି ସମସ୍ତେ ଏକାଠି ବସି ଭୋଜିଭାତ ଖାଇଲେ; ଆଉ ଏତେ ବର୍ଷର ଗାଁ କଳି ଦିନକରେ ତୁଟିଗଲା। ଚାରି-ପାଞ୍ଚ ବର୍ଷ ବେଳକୁ ସତରେ ସେ ଗଛରେ ଯେମିତି ଫୁଲ ଫୁଟିଲା, ସେମିତି ଫୁଲ ଏ ଅଞ୍ଚଳରେ ଆଗରୁ କେହି କେବେ ଦେଖି ନ ଥିଲେ। ଛତା ପରି ସେ ଗଛ। ପେନ୍ଥା ପେନ୍ଥା ଫୁଲରେ ଗଛଟି ପୂରାପୂରି ଭରିଗଲା। ମନେ ହେଉଥିଲା, ସତେ ଯେମିତି ଗଛଟି ବୋହୂ ସାଜି କେଉଁ ବାହାବେଦିକୁ ଯାଉଛି ଯେ ତା' ଦେହରେ ନାଲିପାଟ, ମୁହଁରେ ହଳଦୀ ସିନ୍ଦୂର, ଗୋଡ଼ରେ ଅଳତା ଆଉ ହାତରେ ମେହେନ୍ଦି। ଯିଏ ସେ ବାଟରେ ଯାଏ, ଘଡ଼ିଏ ଠିଆ ହୋଇ ଗଛକୁ ଅନାଇ ରହେ। ସେ ଫୁଲ ଦେଖିବା ଆଉ ଗୋଟାଏ ଦି'ଟା ଫୁଲ ମୁଣ୍ଡରେ ଖୋସିବା ଲୋଭରେ ଧୀରେ ଧୀରେ ଆଖପାଖ ଗାଁର ଛେଳି-ମେଣ୍ଢା-ଗାଈ-ବଳଦ-ଚରୁଆ ସମସ୍ତେ ନାନା ବାହାନାରେ ରୁଣ୍ଡ ହୋଇବସିଲେ। ଗଛତଳେ ଡୁଡୁ, ବୋହୂଚୋରି, ଗୁଳିଦଣ୍ଡା ଖେଳିଲେ। ଏମିତି ଚାଲିଥାଏ - ଜାଇଁଲ ନୂଆବାବୁ - କେବେ ମହୁଲକୋଟର ଦୂତିକା କାହା ସଙ୍ଗରେ ଫସିଗଲା କେହି ଜାଣିପାରିଲେନି।

ଦୁତିକାର ପେଟ ଭାରି ଯେତେବେଳେ ଜଣାପଡ଼ିଲା ସମସ୍ତେ ଫୁସୁରୁଫାସର ହୋଇ ପଚାରିଲେ, ପିଲାଟି କିଏ ? ପାହାଡ଼ରେ ନିଆଁ ଆଉ ପାପଗର୍ଭ କଥା କ'ଣ ଲୁଚି ରହେ ନୂଆବାବୁ ? ଜଣାପଡ଼ିଲା ଯେ ପିଲାଟି ସୁନାଡଙ୍ଗିର କେଶବ। ପଞ୍ଚାଏତ ବସିଲା। ହୁକୁମ ହେଲା ଯେ, କେଶବର ଛୁଆକୁ ଦୁତିକା ଗର୍ଭରେ ଧରିଛି – କେଶବ ଦୁତିକାକୁ ନେଉ ଆଉ ଦୁତିକାର ବାପା ମା' ପଞ୍ଚାଏତକୁ ଦୁଇକୋଡ଼ି ଟଙ୍କା ଜୋରିମାନା ଦିଅନ୍ତୁ। ପଞ୍ଚାଏତ ସିନା ହୁକୁମ ଦେଲା, ହେଲେ କେଶବ ଗଉଡ଼, ଆଉ ଦୁତିକା ମାଳୀ। ସେ ଦୁଇ ସମାଜ ଏଥିରେ ରାଜି ହେଲେ ତ ? ମାଳୀମାନେ ଅନ୍ୟ ସମାଜର କାହା ଘରେ ପାଣି ବି ଛୁଅନ୍ତିନି। ଦୁତିକାର ବାପା ମା' ଝିଅକୁ ଗଉଡ଼ ହାତରେ ଦେବେ କେମିତି ? ସେମାନଙ୍କ ସରମ ମରଣକୁ ବଳିଗଲା ବୋଲୁଛ ନୂଆବାବୁ ! ତା'ପରେ କଅଣ ସବୁ ଘଟିଲା କେଜାଣି, ଦେଖିଲା ବେଳକୁ ଦିନେ ସକାଳେ ସେଇ କୃଷ୍ଣଚୂଡ଼ା ଗଛରେ ଦୁତିକା ଆଉ କେଶବ ପାଖାପାଖି ମରି ଝୁଲୁଛନ୍ତି। କିଏ ସେମାନଙ୍କୁ ମାରି ଝୁଲାଇଦେଲା କି ସେମାନେ ନିଜେ ବେକରେ ଦଉଡ଼ି ଦେଲେ ସେ କଥା କିଏ କହିବ – ପୋଲିସ ତ ପୋଲିସ ?

ସେ ବର୍ଷ ଅଞ୍ଚଳଯାକ ଭାରି ଉତ୍‌ପାତ ହେଲା। ଝାଡ଼ାବାନ୍ତି ଆଉ ଠାକୁରାଣୀ ପ୍ରକୋପ। ସମସ୍ତେ କହିଲେ – ଦୁତିକା ଆଉ କେଶବଙ୍କ ପ୍ରେତ ଏ ଅଞ୍ଚଳରେ ମାତିଛନ୍ତି। ସବୁରି ମୁହଁରେ ସେଇ ଗୋଟିଏ କଥା। ପଣ୍ଡରାପଲିଆ ମଙ୍ଗଲୁ ଓଝା ଏ ପ୍ରେତଙ୍କୁ ପାରିଲେ ପାରିବ। ମଙ୍ଗଲୁ ବି ଆସି ସମସ୍ତଙ୍କ ଆଗରେ ପ୍ରେତଙ୍କୁ ଗଛରେ କିଳିଦେଲା। କିନ୍ତୁ ସେ ପ୍ରେତମାନେ କାହିଁ ତା' କଥା ଶୁଣନ୍ତେ କି ତାକୁ ଡରନ୍ତେ ? ଯେଉଁ କଥାକୁ ସେଇ କଥା।

ଦିନେ ଠାକୁରାଣୀ କଣ୍ଢୁରିପଦରର ଜାନି ପୂଝାରୀକୁ ସପନେଇ କହିଲେ – କୃଷ୍ଣଚଡ଼ା ଗଛ ତଳେ 'ଠୁଟି ମାଏଲି' ଥାପି ଛେଳି କୁକୁଡ଼ା ବଳିଦେବୁ ଯଦି, ଏ ଅଞ୍ଚଳ ରହିବ; ନଇଲେ ଗଲା ଜାଣ। ଜାନିର ଦେହରେ ତ ନିଜେ ମଙ୍ଗଳା ଆଉ ବୁଢ଼ାରଜା ବିଜେ କରନ୍ତି – ତା' କଥାରେ କିଏ ଅବିଶ୍ୱାସ କରିବ ? ସବୁ ଗାଁ ଲୋକଙ୍କ ମେଳରେ ଜାନି ପୂଝାରୀ ଏ ଠାକୁରାଣୀଙ୍କୁ ମଙ୍ଗଳବାର ସଂକ୍ରାନ୍ତି ଦିନ ପୂଜାବିଧି କରି ଗଛ ତଳେ ଥାପିଦେଲା। ସେ ଦିନରୁ କାହିଁ ସେ ଝାଡ଼ାବାନ୍ତି, କାହିଁ ସେ ମା' କମାଣି। ସମସ୍ତେ ଜାନି ପୂଝାରୀକୁ ଆଉ ଠୁଟି ମାଏଲିଙ୍କୁ ଧନ୍ୟ ଧନ୍ୟ କଲେ। ଏଥର କିନ୍ତୁ ଗୋଟିଏ ନୂଆ କଥା ଦେଖାଗଲା – କୃଷ୍ଣଚୂଡ଼ା ଗଛରେ ସେ ବର୍ଷରୁ ଆଉ ଫୁଲ ଫୁଟିଲାନି; ଯେତେ କଢ଼ ଆସେ ଫୁଟିବା ଆଗରୁ ହିଁ ଝଡ଼ିପଡ଼ି କୁଢ଼େଇ ହୋଇଯାଏ। ଆଉ ସମସ୍ତେ ଦେଖିଲେ – ଦି'ଟା ବଣି ଚଢ଼େଇ କେଉଁଠୁ ଆସି ସେ ଗଛରେ ଥଣ୍ଟ ଲଗାଲଗି ହୋଇ ବସି ରହୁଛନ୍ତି – ରାତି ଆଉ ଦିନ। ସେ ଚଢ଼େଇ ଦି'ଟା ଅନ୍ୟ

କୋଉ ଚଢ଼େଇକି ଗଛରେ ବସା ବାନ୍ଧିବାକୁ ଦିଅନ୍ତିନି କି ନିଜେ ବସା ବାନ୍ଧନ୍ତିନି, ଖାଲି ପରସ୍ପରକୁ ଅନାଇ ରହନ୍ତି – ଥଣ୍ଟରେ ଅନ୍ୟର ପର ସଜାଡ଼ି ଦିଅନ୍ତୁ – ଡେଣା ଫୁଲାଇ ନାଚିବା ଢଙ୍ଗ କରନ୍ତି – ଥଣ୍ଟରେ ଥଣ୍ଟ ଘଷନ୍ତି – କିନ୍ତୁ ବସା ବାନ୍ଧନ୍ତିନି, ଅଣ୍ଡା ଦିଅନ୍ତିନି କି ଛୁଆ ଫୁଟାନ୍ତିନି। ସମସ୍ତେ କହିଲେ ସେ ଦୁଇ ଚଢ଼େଇ ଦୂତିକା ଆଉ କେଶବ।

ଏ ଭିତରେ ଆଉ ଗୋଟାଏ କଥା ଘଟିଲା। କୃଷ୍ଣଚୂଡ଼ା ଗଛ ତଳେ ଠୁଟି ମାଏଲି ଠାକୁରାଣୀ ବିଜେକଲା ଦିନରୁ ଜାନି ପୁଝାରିର ଆଉ ପୁଅ ଝିଅ ହେଲେନି। ବର୍ଷକୁ ବର୍ଷ ଗର୍ଭପାତ। ଜାନିର ତ ଆଗରୁ ପୁଅ ଝିଅ ନ ଥିଲେ – ଏବେ ଏ ନୂଆ କଥା। ସ୍ୱାମୀ ସ୍ତ୍ରୀ ଏ ଗଛ ତଳେ ଠାକୁରାଣୀଙ୍କ ପାଖରେ ଅଧିଆ ପଡ଼ିଲେ ଯେ ସାତଦିନ ଆଉ ସାତରାତି। ସାତରାତି ସରିଆସୁଛି – ସେଇ ଭୋର ଜାନିକୁ ଠାକୁରାଣୀ ସପନେଇ କହିଲେ – ଉଠ୍ ଯା' – ତୋ'ର ଗୋଟିଏ ଝିଅ ହେବ – କିନ୍ତୁ ଏବେ ନୁହେଁ, ଯେଉଁ ବର୍ଷ ଏ ଗଛରେ ଫୁଲ ଫୁଟିବ, ସେଇ ବର୍ଷ।

ପୁଣି କେତେ ବର୍ଷ ଗଲା। ସେ ବର୍ଷ ଚଇତ ମାସରେ ବର୍ଷା ହେଲା ଯେ ବର୍ଷାଦିନିଆ ବର୍ଷା ପରି। ସେହି ବର୍ଷ ସମସ୍ତେ ଦେଖିଲେ କୃଷ୍ଣଚୂଡ଼ା ଗଛର ଗୋଟାଏ ଡାଳରେ ଫୁଲ ଫୁଟିଛି। ସମସ୍ତେ ଏଥର ଜାନିର ଘର ଆଡ଼କୁ ଅନାଇ ରହିଲେ। ଠାକୁରାଣୀଙ୍କ ଆଦେଶ କ'ଣ ମିଛ ହେବ ? ଠାକୁରାଣୀଙ୍କ ମହିମା ଦେଖ ନୂଆବାବୁ – ସତକୁ ସତ ସେ ବର୍ଷ ଜାନି ସ୍ତ୍ରୀର ଆଉ ଗର୍ଭପାତ ହେଲାନି। କିନ୍ତୁ ଏଥର ଆଉ ଗୋଟାଏ ନୂଆ କଥା। ନ'ମାସ ପୂରି ଦଶମାସ ହୋଇ ଆସିଲାଣି – ପ୍ରସବ ବେଦନା ନାହିଁ। ପ୍ରସବ କରି ନ ପାରିଲେ ତ ସମସ୍ତେ ଜାନି ପାଖକୁ ଯାଇ ମନ୍ତପାଣି ଆଣନ୍ତି – ସେ ନିଜେ ଏବେ ଯିବ କାହା ପାଖକୁ ! ସମସ୍ତେ କୁହାବୋଲା କଲାରୁ ଜାନି ଶେଷରେ କଥା ମାନିଲା ଆଉ ତା' ସ୍ତ୍ରୀକୁ ଚିଲଗୁଡ଼ା ଡାକ୍ତରଖାନାକୁ ନେଲା। ଡାକ୍ତରମାନେ ଔଷଧପତ୍ର ଦେଲେ – ଝଡ଼ାଫୁଙ୍କା କଲେ। ତଥାପି ପ୍ରସବର ଚିହ୍ନବର୍ଣ୍ଣ ନାହିଁ। କେତେ ବଡ଼ ଡାକ୍ତର ସେମାନେ ! ଜାଣିପାରିଲେ ଯେ କୌଣସି କାରଣରୁ ଛୁଆ ବାହାରକୁ ଆସିବାକୁ ସରମାଉଛି ! ସେମାନେ ଜାନି ସ୍ତ୍ରୀର ପେଟ କାଟି ଛୁଆକୁ ଟାଣିଲେ। ଛୁଆ ତଥାପି ମୁହଁ ବୁଲାଇ ନେଉଥାଏ। କିନ୍ତୁ ଏମାନେ ସରକାରୀ ଡାକ୍ତର – ଛାଡ଼ିବା ଲୋକ ? ଜବରଦସ୍ତି ମୁଣ୍ଡ ଧରି ଟାଣିଆଣିଲେ ଯେ ମୁଣ୍ଡ ଆଉ ବେକ ହାତେ ଲମ୍ବ ହୋଇଗଲା। ଛାତି ଆଉ ପେଟ ବି ହାତେ। ତେବେ ବି କନ୍ଦାକଟା କିଛି ନାହିଁ। ଡାକ୍ତରମାନେ ଦେଲେ ମୁଣ୍ଡ ଆଉ ପାଦରେ କଷିକରି ଥାପ୍‌ପଡ଼। ଡରରେ ସେ ଛୁଆ ଠିକ୍ ହୋଇଗଲା ସିନା ମା' ଥନରେ ଏବେ ମୁହଁ ଦେଲେ ତ ! ଜାନି ଆଉ କ'ଣ କରିବ – ତା'ର ପୂଜାପାଠ ଆରମ୍ଭ କରିଦେଲା। ତା' ଦେହରେ ମଙ୍ଗଳା ଠାକୁରାଣୀ ବିଜେ କଲେ। ସେ ତା'ଥର ଥର ଅଣ୍ଟିରୁ ଟଙ୍କାକିଆ ନୋଟ୍ ଦି'ଟା କାଢ଼ି ଛୁଆର ଦି'

ହାତରେ ଗୁଞ୍ଜିଦେଲା। ଆଉ ହଲି ହଲି କହିଲା - 'ମା' ଦୁତିକା - ତୋ'ର ଅପରାଧ କିଛି ନାହିଁ - ତୁ' ମୋ ଘରେ ଏବେ ଜନ୍ମ ନେଇଛୁ। ତୁ'ଯଦି ହସଖୁସିରେ ମୋ' ଘରେ ବଡ଼ ହେବୁ, ମୁଁ କେଶବକୁ ଯୋଉଠି ଥିଲେ ବି ଖୋଜି ଆଣିବି ଆଉ ତୋତେ ତା' ହାତରେ ଦେବି।' ଦେଖ ତ ନୂଆବାବୁ - ସତକୁ ସତ ସେ ଛୁଆ ଏଥର କାନ୍ଦିଲା ଆଉ ଜାନିର ସ୍ତ୍ରୀ ତା' ମୁହଁରେ ଥନ ଲଗାଇଦେବାରୁ କେଡ଼େ ସଉକରେ ଗୋଡ଼ହାତ ଖେଳାଇ କ୍ଷୀର ଚୂଚୁମିନେଲା।

ଠିକ୍ ସେତିକି ବେଳକୁ ଆଉ ଗୋଟିଏ ଘଟଣା। କେଉଁଠୁ ଖଣ୍ଡିଆଭୂତଟିଏ ଆସିଲା ଯେ କୃଷ୍ଣଚୂଡ଼ା ଗଛ ପୂରାପୂରି ଉପୁଡ଼ି ପଡ଼ିଲା। ଠାକୁରାଣୀଙ୍କର କିନ୍ତୁ କିଛି ହେଲାନି। ସମସ୍ତେ ମୁହଁ ଚୂହାଁଚୂହିଁ ହେଲେ। କେଡ଼େ ବଡ଼ କଥା - ଚାରିଖଣ୍ଡ ଗାଁର ଖୁଣ୍ଟ ସେ ଗଛ। ସମସ୍ତଙ୍କ ଡର ପୁଣି ଏଥର ଅକାଳ ମାଡ଼ି ଆସିବ।

ତେବେ ଯାହା ହେବାର ତ ହୋଇଗଲା। ଠାକୁରାଣୀଙ୍କ ପାଖରେ ସମସ୍ତେ ପୂଜାବିଧି କଲେ, ଆଉ ରାସ୍ତା ସଫା କରିବାକୁ ଯେମିତି ଗଛର ବଡ଼ ଶାଖା ଦି'ଟା କୁରାଢ଼ିରେ କାଟି ଦେଇଛନ୍ତି, ଗଣ୍ଡିଟି ଫକ୍ କରି ଡେଇଁ ନିଜ ଥାନରେ ପୁଣି ଠିଆ ହୋଇଗଲା। ସେଇଟା ହିଁ ସେ ଥୁଣ୍ଟା ଗଛ। ଗଛ ଉପୁଡ଼ି ପଡ଼ିଲା ପରେ ସେ ବଣି ଚଢ଼େଇ ଦି'ଟା କୁଆଡ଼େ କଲେ ଯେ ତାଙ୍କୁ ଆଉ କେହି ଦେଖିନି। ସମସ୍ତେ କହୁଛନ୍ତି ଗୋଟାଏ ତ ଜାନିବୁଢ଼ା ଘରେ ଜନ୍ମ ନେଲା; ଆଉ ଗୋଟାଏ ଅନ୍ୟ କେଉଁଠିକି ଜନ୍ମ ନେବା ପାଇଁ ଯାଇଥିବ।

ସେମାନେ କଣ୍ଟୁରିପଦର ପହଞ୍ଚି ଗଲେଣି ରାଧୁବାବୁଙ୍କର ଖିଆଲ ନାହିଁ। "ଜାନିର ସେ ଝିଅ ଏବେ କେଡ଼େ ବଡ଼ ହେଲାଣି ?" ପଚାରିଲା ବେଳକୁ ଗୌନ୍ତିଆ ରସିକଲାଲ ବାବୁ ଧାଇଁ ଆସି ତାଙ୍କୁ କୁଣ୍ଢାଇ ଧରୁଥିଲେ। ରସିକଲାଲ କହିଲେ - "ହଇରେ ରାଧୁ, ତୋ'ର କେମିତି ଅକଲ କହିଲୁ, ମୁଁ ତୋ' ପାଇଁ ଚିଲଗୁଡ଼ାକୁ ଟ୍ରାକ୍ଟର ପଠାଇଥିଲି, ତୋତେ ଚିଠିରେ ବି ଲେଖିଥିଲି ଚିଲଗୁଡ଼ାରେ ଓହ୍ଲାଇବୁବୋଲି, ତୁ କେନ୍ଦୁଗୁଡ଼ାରେ ଓହ୍ଲାଇ ଏଠିକି ଚାଲିଚାଲି ଆସୁଛୁ ?"

ରାଧୁବାବୁ ମାଧୁଆ ଆଡ଼କୁ ହାତ ଦେଖାଇ କହିଲେ ଯେ ତା'ର ଠାକୁରାଣୀ ଗପ ଯୋଗୁ ବାଟଚଲା କଷ୍ଟ ତାଙ୍କୁ ଆଦୌ ଜଣାପଡ଼ିନି। ମାଧୁଆ ସେତିକିବେଳେ ତଳେ ଭାର ଥୋଇ ଦେଇ ରସିକଲାଲ ବାବୁଙ୍କୁ ଓଳଗି ହେଉଥିଲା। "କେନ୍ଦୁଗୁଡ଼ା ସୁନାରୀ ତୋ'ର କ'ଣ ହେବ କିରେ ମାଧୁଆ ?" ପ୍ରଶ୍ନରେ ସେ ଯେମିତି ଜଣାଇଦେଲା ଯେ ସୁନାରୀ ତା'ର ମାମୁ ହେବ। ରସିକଲାଲ କହିଲେ, ମାଧୁଆ ତାଙ୍କର ବି ତେବେ ଭଣଜା। ତା'ପରେ ମାଧୁଆକୁ ବାହାଘର ସରିବା ପର୍ଯ୍ୟନ୍ତ ରହିବା ପାଇଁ ନିମନ୍ତ୍ରଣ

ଦେଇ ତା'ର ଖାଇବା ପିଇବାର ଦେଖାରଖା ନିମନ୍ତେ ତାଙ୍କ ବିଶ୍ୱସ୍ତ ଚାକର ଦିଗମ୍ବରକୁ ଆଦେଶ ଦେଇଦେଲେ।

ସେଦିନ ସଞ୍ଜବେଳର କଥା। ଦୁଇ ବନ୍ଧୁ ଚାରିଆଡ଼ିକି ବୁଲି ବାହାଘର ଆୟୋଜନ ଦେଖୁଥାଆନ୍ତି। ରନ୍ଧାଘର ଖନ୍ଦାଶାଳ ପାଖରେ ପହଞ୍ଚିଲାବେଳକୁ ରାଧୁବାବୁ ଦେଖିଲେ ବେଶ୍ କେତେଜଣ ପନିକି ଆଉ କାତିମାନ ଧରି ଘେରି ବସିଯାଇଛନ୍ତି ଆଉ ପନିପରିବା କାଟୁକାଟୁ ଗପସପ ଜମେଇ ଦେଇଛନ୍ତି। ଗପସପର ଗୁଞ୍ଜନ ଭିତରୁ ସ୍ପଷ୍ଟ ଶୁଭୁଛି ମାଧୁଆର ସ୍ୱର। ସେ କହୁଥାଏ - 'ସୁନାରୀ ମାମୁ ତ ଏଇଠିକି ଆସିଥିଲା ଗହଣା ଗଢ଼ିବା ପାଇଁ, ଫେରିଯାଇ କହିଲା କସ୍ତୁରିପଦରର ଗୌନ୍ତିଆଙ୍କ ଝିଅ ବାହାଘର ବେଳେ ଭୋଜି ହେବ ଯେ ସେମିତି ଭୋଜି ଏ ଅଞ୍ଚଳରେ କେବେ ହୋଇ ନ ଥିବ। ତାଙ୍କ ଦି'ଟାଯାକ ପୋଖରୀର ମାଛ ମରାହେବ ଆଉ ଖାସି କଟା ହବ ପାଞ୍ଚ କି ଦଶ। ମୁଁ ମନେ ମନେ କୃଷ୍ଣଚୂଡ଼ା ଠାକୁରାଣୀଙ୍କୁ ଡାକିଲି, କହିଲି - ମା' ଠାକୁରାଣୀ, ତୁ ଯଦି ସତରେ ପ୍ରତ୍ୟେକ୍ଷ, ମୋତେ କସ୍ତୁରିପଦର ଗୌନ୍ତିଆଙ୍କ ଘରେ ବାହାଘର ଭୋଜି ଖୁଆଇବୁ। ଦେଖିଲ କେମିତି ହେଲା! ନ ହେଲେ ସେ କଟକିଆ ବାବୁ କିଏ ମୁଁ କିଏ? ଠାକୁରାଣୀ କେମିତି ସାଙ୍ଗ ଜୁଟାଇଦେଲେ!'

ରସିକଲାଲ ବି ମାଧୁଆର ଟିପ୍‌ପଣୀ ଶୁଣୁଥିଲେ। ରାଧୁବାବୁ ତାଙ୍କ ପିଠି ଥାପୁଡ଼େଇ କହିଲେ - 'ଏଥର ବୁଝିଲୁ ମୋତେ କାହିଁକି କେନ୍ଦୁଗୁଡ଼ାରୁ ଚାଲି ଚାଲି ଆସିବାକୁ ପଡ଼ିଲା?' ରସିକଲାଲ ଉତ୍ତର ଦେଲେ - 'ଠାକୁରାଣୀ ଚଳାଇ ଆଣିଲେ ତ?'

ଦୁଇ ବନ୍ଧୁ ଏକା ସଙ୍ଗେ ହସିଉଠିଲେ।

# କଳିଯୁଗର ସମାପ୍ତି ଏବଂ ମିଶ୍ରବାବୁ

ମଣିଷ ମୁଣ୍ଡର ଖପୁରି ତଳେ ଅତ୍ୟାଧୁନିକ କାରଖାନାଟିଏ ଆଉ ତା ସାଙ୍ଗକୁ ଗୋଟାଏ କମ୍ପ୍ୟୁଟର କେନ୍ଦ୍ର ସ୍ଥାପିତ ହୋଇ ରହିଥିବା କଥା ସମସ୍ତଙ୍କ ଜଣା। ଯେକୌଣସି କାରଖାନାର ବିଭିନ୍ନ ସ୍ଥାନମାନଙ୍କରେ ବିଭିନ୍ନ ଯନ୍ତ୍ରପାତି ଖଞ୍ଜା ହେଲା ବେଳେ ଛୋଟ ବଡ଼ ଅସଂଖ୍ୟ ପେଞ୍ଚ-ସ୍କୃ-ଖିଲ-କଣ୍ଟା ଯେପରି ବ୍ୟବହୃତ ହୋଇଥାଏ, ଏଇ ଖପୁରିତଳ କାରଖାନାରେ ମଧ୍ୟ ସେପରି ପେଞ୍ଚ-ସ୍କୃମାନ ଯେ ବ୍ୟବହୃତ ହୋଇଥିବ, ଏଥିରେ ସନ୍ଦେହ ନାହିଁ। ଯନ୍ତ୍ରପାତି ଖଞ୍ଜିଲାବେଳେ କାରିଗର ମେକାନିକ୍‌ର ସାମାନ୍ୟ ଆସବଧାନତା ଯୋଗୁ ହେଉ ଅଥବା କଳ - କବ୍‌ଜାମାନଙ୍କର କ୍ରମାଗତ ବ୍ୟବହାର ଯୋଗୁ ହେଉ, ଦି'ଚାରିଟା ପେଞ୍ଚ-ସ୍କୃ ବେଳେବେଳେ ଢିଲା ହୋଇପଡ଼େ ଏବଂ ସେପରି ଢିଲା ସ୍କୃ ଉପରେ ଆସ୍ଥାନ ମାଡ଼ି ବସିଥିବା କାରଖାନାର ମାଲିକ ନିଜେ ମଧ୍ୟ ଟିକିଏ ତେଢ଼ା ହୋଇପଡ଼ନ୍ତି। ଏପରି ତେଢ଼ା ମଣିଷମାନେ ସାଧାରଣତଃ ଏକଜିଦିଆ, ଏକ-ଶିଙ୍ଗା, ଏକଧର୍ସିଆ। ଅନ୍ଧେର ନଗରୀର ଅବୁଝା ରଜାଙ୍କ ପରି ସେମାନେ ଯାହା ବୁଝିଥିବେ-ବୁଝିଥିବେ।

ପୁନଶ୍ଚ ମୁଣ୍ଡ ଯେତିକି ବଡ଼, ସେ ମୁଣ୍ଡର ଅଧିକାରୀ ସେତିକି ପ୍ରତିଭାବାନ ବୋଲି ଲୋକେ କହନ୍ତି। ସେପରି ପ୍ରତିଭାବାନ୍ ବଡ଼ମୁଣ୍ଡିଆଙ୍କ ଖପୁରି-ତଳ କାରଖାନା ଅପେକ୍ଷାକୃତ ବଡ଼ ହୋଇଥିବାରୁ ସେଥିରେ ଲାଗିଥିବା ପେଞ୍ଚ-ସ୍କୃ ଏବଂ ସେ ଭିତରୁ ଢିଲା ହୋଇଥିବା ସ୍କୃର ସଂଖ୍ୟା ମଧ୍ୟ ଅପେକ୍ଷାକୃତ ବେଶି। ଏଇ ନେପୋଲିୟନ-ହିଟଲରମାନେ ତାଙ୍କ ତେର୍ଛା ନଜର ନେଇ ଯେଉଁ କାମରେ ଲାଗନ୍ତି ଲାଗିଥାନ୍ତି - ଦେବ-ଦାନବ ପଶିବାକୁ ଭୟ କରୁଥିବା ସ୍ଥାନକୁ ଧସାଇ ପଶନ୍ତି। ଖାଲ ଢିପ ନମାନି ସମସ୍ତଙ୍କୁ ଠେଲିପେଲି ଆଗକୁ ମାଡ଼ି ଚାଲନ୍ତି, ଏଭରେଷ୍ଟ ଶୃଙ୍ଗ ଚଢ଼ନ୍ତି, ସମୁଦ୍ରର ଅକାତକାତ ପାଣିରେ ବୁଡ଼ ମାରନ୍ତି, ଚନ୍ଦ୍ର ପୃଷ୍ଠରେ ଓହ୍ଲାଇ ପଡ଼ନ୍ତି, ମହମ୍ମଦ ତୋଗଲକଙ୍କ ପରି ଦିଲ୍ଲୀରୁ ଦୌଲାତାବାଦ ଓ ଦୌଲତାବାଦରୁ ଦିଲ୍ଲୀ ହେଉଥାନ୍ତି।

ମିଶ୍ରବାବୁ ଯେ ଏପରି ଜଣେ ଅସାଧାରଣ ପ୍ରତିଭାବାନ୍ ବ୍ୟକ୍ତି, ସେ କଥା ଜୟଦେବ ଜାଣିଥିଲେ। ତାଙ୍କ ରୀତିନୀତି ଚାଲିଚଳଣ ଜଣାଇ ଦେଉଥିଲା ଯେ

ତାଙ୍କ ମୁଣ୍ଡର କେତେ ସ୍କ୍ରୁ ଢିଲା। କିନ୍ତୁ ସେଦିନର ତାଙ୍କ ଢଙ୍ଗରଙ୍ଗ ଦେଖି ଜୟଦେବଙ୍କ ଆଶଙ୍କା ହେଲା ଯେ, ମିଶ୍ରବାବୁଙ୍କ ମୁଣ୍ଡର ଖପୁରିତଳ କାରଖାନାର କେଉଁ ଗୋଟାଏ ଅଂଶରେ ଲାଗିଥିବା ଗୁଡ଼ିଏ ନଟ୍ ଏକାସଙ୍ଗରେ ଢିଲା ହୋଇଯିବା ଫଳରେ ଅଥବା କେତେକ ବୋଲ୍ଟ ଏକା ସଙ୍ଗରେ ଛିଣ୍ଡିଯିବା ଯୋଗୁ କାରଖାନାର ଫାଳେ ଏକାଥରେ ଭୁଷୁଡ଼ି ପଡ଼ିଛି।

ଖରାଛୁଟି ସରିଆସିଲାବେଳକୁ ଜୟଦେବବାବୁଙ୍କ ଝିଅ ସରିତା ତା' ପୁଅଝିଅଙ୍କୁ ଧରି ଘରକୁ ଫେରୁଥାଏ। ଟ୍ରେନ ତ ଷ୍ଟେସନରେ ମାତ୍ର ଦୁଇ ମିନଟ୍ ଠିଆ ହୁଏ। ଝିଅ ଏବଂ ନାତିନାତୁଣୀଙ୍କୁ ରେଳଗାଡ଼ିରେ ନିଜେ ବସାଇଦେଇ ଆସିବେ ବୋଲି ଜୟଦେବ ସସ୍ତ୍ରୀକ କେସିଙ୍ଗା ଷ୍ଟେସନକୁ ଯାଇଥାନ୍ତି। ଟ୍ରେନ ପହଞ୍ଚିଲା ପରେ ତାଙ୍କ ଡବା ପାଖରେ ନାତି ନାତୁଣୀମାନେ ଯଥାରୀତି ଆଈଙ୍କି ଜାବୁଡ଼ି ଧରିଲେ ଏବଂ ଆଈ ସକେଇବାକୁ ଆରମ୍ଭ କଲେ। ସେମାନଙ୍କ ସୁଁ ସୁଁ ଭିତରେ ରେଳଗାଡ଼ି ମଧ୍ୟ ସୁଁ ସୁଁ କରିଦେଲାଣି ଜାଣି ଜୟଦେବ ନାତି-ନାତୁଣୀମାନଙ୍କୁ କୌଣସିମତେ ଗାଡ଼ି ଉପରକୁ ଉଠାଇଦେଇଛନ୍ତି କି ନାହିଁ, ଟ୍ରେନ ଚାଲିବାକୁ ଆରମ୍ଭ କଲା। ତାପରେ କିଛି ଦୂର ହାତ ହଲାହଲି। ରୁମାଲ ହଲାଇଲା ବେଳକୁ ଟ୍ରେନ ମୋଡ଼ ନେଲା ଯେ ଆଉ କିଛି ଦିଶିଲାନି।

ନାତି ନାତୁଣୀଙ୍କ କେତେ ଦିନର ଆନନ୍ଦ କୋଳାହଳ ପରେ ଏ ବିଚ୍ଛେଦ। ବିଷାଦଭରା ମନ ନେଇ ଜୟଦେବ ଯେ ତାଙ୍କ ସ୍ତ୍ରୀଙ୍କ ସହ ଷ୍ଟେସନ ଛାଡ଼ି କାର୍‌ଆଡ଼ିକି ଆସୁଛନ୍ତି - ଅନୁମାନ କଲେ ଯେ ତାଙ୍କ କାର୍‌ରେ ଲୋକ ଭର୍ତ୍ତି। ଏ ମୁର୍ଖଗୁଡ଼ାକ ପ୍ରାଇଭେଟ୍ କାର୍‌କୁ ଭଡ଼ାଗାଡ଼ି ବୋଲି ଧରି ନେଇ ଆଗତୁରା ବସିଗଲେଣି ଭାବି ସେ ରାଗରେ ସ୍ତ୍ରୀଙ୍କୁ ପଛରେ ପକାଇ ଗାଡ଼ି ପାଖକୁ ମାଡ଼ି ଆସୁଛନ୍ତି, ହସ ଆଉ କାଶର ଗୋଟାଏ ଅଦ୍ଭୁତ ସମ୍ମିଶ୍ରଣ ଶୁଣି ଯେଉଁଠି ଥିଲେ ସେଇଠି ଟିକେ ଥମିଗଲେ। ମନେହେଲା ସେ ହସ ଆଉ ଖଣ୍ଡିକାଶ ତାଙ୍କର ବେଶ୍ ପରିଚିତ। ଗାଡ଼ି ପାଖକୁ ଆସି ସେ ଯେମିତି ଭିତରକୁ ଅନାଇ ଦେଇଛନ୍ତି ଜଣେ ଝିଅର ମୁହଁ ଦେଖି ତାଙ୍କର ମନେହେଲା ମୁହଁଟି ଚିହ୍ନା ଚିହ୍ନା। ସାମନା ସିଟ୍‌ରେ ଜଣେ କେହି ଭଦ୍ରଲୋକ ଦି'ଜଣ ଛୋଟ ଛୁଆଙ୍କୁ ନେଇ ବସିଛନ୍ତି। ପଛପଟ ସିଟ୍‌ରେ ଏ ଝିଅ ଏବଂ ଗୋଟାଏ ସଫେଦ୍ ଦାଢ଼ି। ଦୟଦେବ କଣ କରିବେ ବୁଝି ନପାରି ବଲବଲ ଅନାଇଥିବା ଦେଖି ଦାଢ଼ିବାଲା ବୁଢ଼ା ପାଟିରେ ଫୋଟକା ଫଟାଇ 'ହେ-ହେ-ହେ'ରେ ଗୋଟାଏ ଲହର ଛାଡ଼ିଦେଲେ। ସର୍ବସ୍ୱତ୍ୱ ସଂରକ୍ଷିତ ସେ ହସ ନିଃସନ୍ଦେହରେ ଜଣାଇଦେଲା ଯେ ଦାଢ଼ିବାଲା ଭଦ୍ରଲୋକଟି ସ୍ୱୟଂ ମିଶ୍ରବାବୁ, ତାଙ୍କ ପାଖରେ ବସିଥିବା ଝିଅ ଯେ ଗୌରୀ, ସେଥିରେ ଆଉ ସନ୍ଦେହ

ନଥିଲା। ଜୟଦେବ ଖୁସିରେ ଚିତ୍କାର କଲେ - 'ଆରେ - ମିଶ୍ରବାବୁ... ଆଉ ଗୌରୀ..ତୁ?'

ମିଶ୍ରବାବୁ ଗାଡ଼ି ଭିତରୁ ବାହାରିପଡ଼ି ନମସ୍କାର କରୁକରୁ କହିଲେ - 'ଭାଇନା - ମୁଁ ଆପଣଙ୍କୁ ଏମିତି ଚମକାଇ ଦେବି ବୋଲି ସ୍ଥିର କରି ଆଗରୁ ଆପଣଙ୍କ କାର୍ ଭିତରେ ବସିଯାଇଛି। ମୋ ଜୋଇଁଙ୍କର ତ ଭବାନୀପାଟଣା କଲେଜକୁ ବଦଳି ହୋଇଯାଇଛି - ଖରା ଛୁଟି ପରେ କଲେଜ ଖୋଲିବା ପ୍ରଥମ ଦିନ ହିଁ ନୂଆ ପୋଷ୍ଟରେ ଯୋଗ ଦେବା କଥା - କିନ୍ତୁ ନୂଆ ସହରରେ କେଉଁଠି ରହିବେ, କିଛି ଠିକଣା ନାହିଁ। ଗୌରୀ ଏଣେ ଜିଦ୍ କଲା ଯେ, ସେ ମୂଳରୁ ଆସି ଭଡ଼ା ଘର ଠିକ୍ କରି ରହିବ, ଆଉ ପିଲାଙ୍କୁ ସ୍କୁଲରେ ଛାଡ଼ିବ। ମୁଁ ବି ଦେଖିଲି, ସତରେ ଟିକେ ଡେରି ହୋଇଗଲେ ସାନ ଛୁଆଙ୍କୁ କୌଣସି ସ୍କୁଲରେ ସିଟ୍ ମିଳେନି - ଆପଣ ଏବେ ଭବାନୀପାଟଣାରେ ରହୁଛନ୍ତି ଜାଣି ଦିନେ ଦି'ଦିନ ପାଇଁ ଆପଣଙ୍କ ପାଖେ ରହିଗଲେ ମନ୍ଦ ହୁଅନ୍ତାନି ଭାବି ସେମାନଙ୍କୁ ସାଙ୍ଗରେ ନେଇ ଆସିଲି। ପ୍ଲାଟଫର୍ମ ବାହାରେ ଖାଲି ଗାଡ଼ିଟିଏ ଦେଖି ଆଗତୁରା ଭଲ ସିଟ୍ ସବୁ ଦଖଲ କରିନେଇଥିବା ଉଚିତ ଭାବି ପାଖକୁ ଆସି, ନମ୍ବର ପ୍ଲେଟ ଦେଖି, ମନେହେଲା ଗାଡ଼ିଟି ବେଶ ଚିହ୍ନା - ହୁଏ ତ ଆପଣଙ୍କର। ପାଖରେ ଜଣେ ଦି'ଜଣଙ୍କୁ ପଚାରି କଥାଟି ଠିକ୍ ବୋଲି ବୁଝିନେଲା ପରେ ଗାଡ଼ିରେ ଆମେ ସମସ୍ତେ ବସିଗଲୁଁ।'

ଅନେକ ଦିନ ପରେ ଏ ଦେଖା ସାକ୍ଷାତ। ଗୌରୀ ଓ ତା' ସ୍ୱାମୀ ଯଥାବିଧି ତାଙ୍କ ମାଉସୀଙ୍କୁ ପ୍ରଣାମ କରି କିଏ ଏବେ କେଉଁଠି ଅଛି, କାହାର କେତେ ପୁଅଝିଅ, କାହା ପାଇଁ କେଉଁଠି ପ୍ରସ୍ତାବ ପଡ଼ିଛି, ସେସବୁ ଆରମ୍ଭ କରି ଦେଇଥିଲେ। ଶୀଘ୍ର ପହଞ୍ଚି ରୋଷେଇବାସ ନକଲେ ସାନପିଲାମାନେ ଭୋକରେ ଶୋଇପଡ଼ିବେ - ଜୟଦେବଙ୍କ ଇଙ୍ଗିତରେ ସମସ୍ତେ ଆଉ ଡେରି ନକରି ଗାଡ଼ିରେ ବସିଗଲେ, ଆଉ ଚାଲିଆସିଲେ ଭବାନୀପାଟଣା।

ଦି'ତିନି ଦିନ ପରେ ଭଡ଼ାଘରଟିଏ ପାଇ ଗୌରୀ ତା'ଘରକୁ ଉଠିଗଲା। ଭବାନୀପାଟଣାରେ ତାଙ୍କ ଛୋଟ ରହଣି କାଳ ଭିତରେ ସେ କାହିଁକି ଏପାଖ ସେପାଖ ହେଉଥିବ - ମିଶ୍ରବାବୁ ରହିଗଲେ ଜୟଦେବବାବୁଙ୍କ ଘରେ।

ଅପୂର୍ବ ଆଷାଢ଼। କାଁ ଭାଁ କେତେ ଅସରା ବର୍ଷା ହୋଇଗଲାଣି। ଆକାଶରେ କଳାବଉଦର ଅସରନ୍ତି ପଟୁଆର। ରାତିରେ ଖାଲି ବାହାର ଭିତର ହେବା କଥା। ଖୋଲା ଆକାଶ ତଳେ ଶୋଇଲେ ବର୍ଷାର ଭୟ। ଏଣେ ବାରନ୍ଦାରେ ମଶାଙ୍କ ଭିଡ଼ ଏବଂ ତାଙ୍କ କ୍ରମାଗତ ବେତାଳିଆ ସଙ୍ଗୀତ ସାଙ୍ଗକୁ ମୁନିଆ ଛୁଞ୍ଚିର ଦାଉ। ମଶାରି

ଦେଇ ଶୋଇଲେ ଅଣନିଃଶ୍ୱାସୀ ହୋଇ ମରିବା କଥା - କୋଠରି ଭିତରେ ପଙ୍ଖାତଳ ହିଁ ଥିଲା ଦୁଇବନ୍ଧୁଙ୍କ ପାଇଁ ଏକମାତ୍ର ଆଶ୍ରୟସ୍ଥଳୀ। ରାତି ସାରା ପଙ୍ଖା ଗରମ ପବନ ବିଞ୍ଚୁଛି ବୋଲି ଦି' ବନ୍ଧୁ ପାହାନ୍ତିଆ ହେଉ ନ ହେଉଣୁ ଚଉକି ଦି'ଟା ବାହାରେ ପକାଇ ଶୀତଳ ପବନ ସାଙ୍ଗକୁ ଗରମ ଚା' ଢୋକୁଛନ୍ତି - ଲୁଣିଆ ବିସ୍କୁଟ ଦି'ଚାରିଟା ପାଟିରେ ପକାଉଛନ୍ତି, ଆଉ ଗପ ଧରିଛନ୍ତି ତାଙ୍କ ହୀରାକୁଦ ବନ୍ଧ ଦିନର। ମିଶ୍ରବାବୁ ହଠାତ୍ ତାଙ୍କ ମୁଣ୍ଡ ବଙ୍କାଇ ହାତ ଠାରୁ ଜୟଦେବବାବୁଙ୍କୁ ତୁନି ହେବାକୁ ଇସାରା ଦେଲେ ଏବଂ କିଛିକ୍ଷଣ ପରେ ପଚାରିଲେ 'ଶୁଣୁଛନ୍ତି ନା ସେମାନଙ୍କ କଥା ?'

ଜୟଦେବ ଚାରିଆଡ଼ିକି ଅନାଇଲେ। କାହିଁ କେଉଁଠି କେହିନାହାନ୍ତି ! ଘର ଭିତରେ କେବଳ ଜୟଦେବବାବୁଙ୍କ ସ୍ତ୍ରୀ - କଡ଼େଇରେ କିଛି ଘଣ୍ଟାଘଣ୍ଟିର ଆବାଜରୁ ମନେହେଉଛି ଏତେ ଭୋରରୁ ବି କିଛି ଜଳଖିଆ ପତ୍ର କରିବାକୁ ଆରମ୍ଭ କରିଦେଲେଣି। ବାହାର ସଡ଼କରେ କାଁ ଭାଁ ଗୋଟାଏ ଦି'ଟା ରିକ୍‌ସା - ଏ ପର୍ଯ୍ୟନ୍ତ ଲୋକମାନଙ୍କ ଯାତାୟତ ବିଶେଷ ଆରମ୍ଭ ହୋଇନି। କାନ୍ଥବାଡ଼ର ଦି'ପଟେ ଯେଉଁ ଦି'ଟା ଘର ସେ ଦି'ଟା ପ୍ରାୟ ନିସ୍ତବ୍ଧ। ଗୋଟାଏ ଘରେ କିଏ ଜଣେ ହୁଏତ ଦାନ୍ତ ଘଷି କୁଳି କରୁଛି ଆଉ ନାକ ସଫା କରୁଛି। କାନ୍ଥ ଉପରେ ବଣି ଚାରୋଟି ବସି କେଁକଟର ହେଉଛନ୍ତି। ଦୂର ଖପରେଲି ଛାତ ଗୋଟାକ ଉପରୁ କୁକୁଡ଼ାଟିଏ ଉପର ତଳ ମୁଣ୍ଡ ହଲାଇ ଏବେ ବି ତା'ର ନୂତନ ଦିନର ଆବାହନୀ ଡାକ ଛାଡ଼ିଛି - କକ୍‌ରେ କଅକ୍ -। ଜୟଦେବ ପଚାରିଲେ - 'କାହା କଥା କି ମିଶ୍ରବାବୁ ?'

'ଶୁଣୁନାହାନ୍ତି ସେ କାହାଣୀ ?' - ବିସ୍କୁଟ ଚୋବାଇବା କମାଇ ଦେଇ ଉତ୍ତର ଦେଲେ ମିଶ୍ରବାବୁ।

ଜୟଦେବ ପୁଣି ଥରେ କାନ ଡେରି ଚାରିଆଡ଼ିକି ଆଖି ବୁଲାଇ ଆଣିଲେ। କାହାଣୀ କୁହା ଅଥବା ଗପସପର ସୋର୍ ଶବ୍ଦ ତ ଛାଡ଼, କାହିଁ କେଉଁଠି ଫିସ୍ ଫିସ୍‌ର ଆବାଜ ବି ନାହିଁ। କହିଲେ - 'ଢୁଳେଇ ଢୁଳେଇ କିଛି ସ୍ୱପ୍ନ ଦେଖୁନ ତ ମିଶ୍ରବାବୁ ?'

ବଙ୍କାମୁହଁରେ ସାମାନ୍ୟ ହସ ଖେଳାଇ ମିଶ୍ରବାବୁ ଜବାବ ଦେଲେ - "ଶୁଣି ପାରିଲେନି ସେ ମୁନ୍ନାର ପ୍ରଶ୍ନ ? ପଚାରିଲା- "ଦାଢ଼ିଆ ବୁଢ଼ା ଏ ଘରକୁ ନୂଆ ଆସିଛି ନା ବାପା ?" ବାପ-ବଣିର 'ହଁ' ଉତ୍ତର ସରୁ ନ ସରୁଣୁ ମୁନ୍ନିର ଏଣେ ପ୍ରଶ୍ନ - 'ବୁଢ଼ା ଦାଢ଼ି କାହିଁକି ରଖିଛି କି ବାପା ?' ବାପବଣି ଉତ୍ତର ନ ଦେଇ ବିରକ୍ତି ପ୍ରକାଶ କଲା - କହିଲା - 'ତମେ ସେ ଝିଣ୍ଟିକା ଦି'ଟା ଆଗ ଗିଳି ଦିଅ,

ତା'ପରେ ଏ ବୁଢ଼ାମାନଙ୍କ କଥା ଶୁଣିବ।' ମୁନ୍ନାମୁନ୍ନି କିନ୍ତୁ ଅଝଟ, ବେଣା ହଲାଇ ଜିଦ୍ କଲେ - 'ତମେ ସେକଥା ନ କହିଲେ ଆମେ ଖାଇବୁନି।' ତା'ପରେ ବାପ-ବଣି ଏବେ କହିବାକୁ ଆରମ୍ଭ କରିଛି - ହେଇ ଶୁଣନ୍ତୁ...।"

"ତମେ ଏ ବଣିମାନଙ୍କ କେଁ-କଟର ଶୁଣୁଛ ମିଶ୍ରବାବୁ?" - ଅବିଶ୍ୱାସ୍ୟ ଆଖିରେ ମିଶ୍ରବାବୁଙ୍କୁ ହିଁ ଚାହିଁ ଜିଜ୍ଞାସା କରିଥିଲେ ଜୟଦେବ।

"ଏଇଟା ଖାଲି କେଁ କଟର ନୁହେଁ ଭାଇନା - ଏମାନଙ୍କ ଗପସପ କଥାବାର୍ତ୍ତା ଭିତରେ ବେଳେବେଳେ ଅତି ନିଗୂଢ଼ ତତ୍ତ୍ୱମାନ ଭରି ରହିଥାଏ। ଶୁଣୁଛନ୍ତି ନା ବାପ-ବଣିର ଉତ୍ତର? କହୁଛି - ବୁଢ଼ାମାନେ ବେଳେବେଳେ ଦାଢ଼ି ରଖନ୍ତି- ଦାଢ଼ି ତାଙ୍କ ମୁହଁକୁ ବେଶ୍ ମାନେ ବୋଲି। କିନ୍ତୁ ଧ୍ୱଜା ଯେପରି ଜାତି-ଧର୍ମର ଏକ ପ୍ରତୀକ, ବନ୍ଧନରୁ ମୁକ୍ତି ଚାହୁଁଥିବା କେହି କେହି ଏ ଦାଢ଼ିକୁ ତାଙ୍କ ସାଧନାର ପ୍ରତୀକ ରୂପରେ ରଖନ୍ତି।'

ଜୟଦେବ ପାଟି ମେଲା କରି ଅନାଇଥିଲେ ମିଶ୍ରବାବୁଙ୍କୁ - ତାଙ୍କ ସଫେଦ୍ ଦାଢ଼ିକୁ, ଚନ୍ଦା ହୋଇ ମଝିରେ ଚକ୍ ଚକ୍ କରୁଥିବା ତାଙ୍କ ମୁଣ୍ଡର ଖପୁରିକୁ। ଆପଣା ଛାଏଁ ପଚାରିଦେଲେ - 'ବଣିମାନେ କେମିତି କାହାଣୀ କହିବେ ମିଶ୍ରବାବୁ? ରାତିରେ ନିଦ ହେଲାନି ବୋଲି...'

"ହେଇ ଶୁଣନ୍ତୁ" - ଉତ୍ତର ଦେଲେ ମିଶ୍ରବାବୁ। "ଏଥର ମୁନ୍ନିର ମା' ପଚାରିଲାଣି 'ପେଁ ପାଓ ପିଟର ପଟ୍ - ପାଙ୍ଗ୍ ପୁଙ୍ଗ୍ ଟିର୍‌ର ଟର୍‌ର' - ଚିହ୍ନି ପାରୁଛନ୍ତି ନା ବଣିମାନଙ୍କୁ? ଏ ପାଖ ମୁଣ୍ଡରେ ବସିଛି ମୁନ୍ନିର ମା - ତା' ପାଖକୁ ମୁନ୍ନି ପାଖକୁ ମୁନ୍ନା ଆଉ ମୁନ୍ନାକୁ ଲାଗି ବାପ-ବଣି। ମା' ବଣି ପଚାରିଲା - 'ମୁନ୍ନାର ବା' - ମଣିଷମାନେ ତ ମୁକ୍ତି ପାଇଁ ନାନରକମର ସାଧନା କରନ୍ତି, ଆମେ କାହିଁକି କିଛି କରୁନା?'

ମୁନ୍ନା ବାପର ଉତ୍ତର - 'ଟିର୍ ଠେଟିଙ୍ଗ୍-ପିଆଓଁ ପିଆଓଁ - ଛେରିଙ୍ଗ୍ ଛେଟିଙ୍ଗ୍ କେଁ କଟର୍' - ଶୁଣିଲେ ତ ଚମତ୍କାର ଏ ତତ୍ତ୍ୱ! କହୁଛି - ଯାହାର ବନ୍ଧନ ଅଛି ସେ ସିନା ମୁକ୍ତି ଖୋଜିବ, ଆମର ତ କୌଣସି ବନ୍ଧନ ନାହିଁ, ଅନନ୍ତ ଆକାଶର ମୁକ୍ତ ବିହଙ୍ଗ ଆମେ - ଆମେ-ମାନସରୋବରର ମରାଳ, ପମ୍ପା ସରୋବରର ଚକ୍ରବାକୀ-ବୈକୁଣ୍ଠପୁରର ଗରୁଡ଼। ଜଟାୟୁ ସମ୍ପାତି ପରି ଆକାଶର ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଉଡ଼ି ଉଡ଼ି ଡେଣା ଯେତେବେଳେ ଶେଷରେ ଜଳିଯିବ ଅଥବା ଥକିଯିବ, ତଳେ ପଡ଼ିବୁ କଚାଡ଼ି ହୋଇ। ଆକାଶକୁ ଅନାଇଁ ଆମ ପ୍ରାଣ ଯିବ। ଆଉ ମରିଗଲା ପରେ ଯେଉଁ ମହାଶୂନ୍ୟରୁ ଆମେ ଆସିଥିଲୁଁ ସେଇ ମହାଶୂନ୍ୟରେ ମିଳାଇଯିବୁ। ତା'ପରେ ଆକାଶକୁ ଅନାଇ ସାମାନ୍ୟ ହସି ସେ ଯୋଡ଼ି ଦେଲା - 'ଟିର୍

ଟଅର୍ - ପାଙ୍ଗ୍ ପୁଙ୍ଗ୍' - 'ତମେ ସେ ମଣିଷମାନଙ୍କ ପାଖକୁ ଭୁଲ୍‌ରେ ବି ଯିବନି ଟି। ସେମାନେ ତୁମକୁ ଧରି ପିଞ୍ଜରା ଭିତରେ ଭର୍ତ୍ତି କରିଦେଲ 'ଚକ୍ରଧର' ବୋଲିବାକୁ ଶିଖାଇବେ। ତମେ ବନ୍ଧନରେ ପଡ଼ିଗଲା ପରେ ମୁକ୍ତି ପାଇଁ ଯେତେ ଛଟପଟ ହେଲେ ବି ଆଉ ମୁକ୍ତି ପାଇବନି - ବାଧ ହୋଇ ଚକ୍ରଧରକୁ ଡାକିବ।'

"ଏଥର ବୁଝି ପାରୁଛନ୍ତି ନା ଏମାନଙ୍କ କଥା ?" - ବୁଝାଉଥିଲେ ମିଶ୍ରବାବୁ। ଠିକ୍ ଚାଇନିଜମାନଙ୍କ ଭାଷାପରି ଭାଷା। ସର୍ଟ ହ୍ୟାଣ୍ଡ ପରି ଗୋଟାଏ ଗୋଟାଏ ଶବ୍ଦରେଂ ଠେସି ହୋଇଥାଏ ଅର୍ଥପୂର୍ଣ୍ଣ ମାଳେ ବାକ୍ୟ।

ଏଥର ଶୁଣନ୍ତୁ ମୁନ୍ନି-ମା'ର ଆଉ ଗୋଟାଏ ପ୍ରଶ୍ନ। ପଚାରୁଛି - "ତେବେ ମଣିଷମାନେ କେଉଁ ପିଞ୍ଜରାରେ ବନ୍ଦ ହୋଇଛନ୍ତି ଆଉ ତାଙ୍କୁ ବନ୍ଦୀ କରିଛି କିଏ ? ମୁନ୍ନା-ବାପାର ଉତ୍ତର - ସେ ଯେଉଁ ଧଳା କୋଠାମାନ ଦେଖୁଛ, ସେ ଗୋଟାଏ ଗୋଟାଏ ପିଞ୍ଜରା। ସେ ଭିତରେ ହିଁ ଏ ମଣିଷମାନେ ନିଜେ ନିଜକୁ ବନ୍ଦୀ କରିଦେଇ ମୁକ୍ତି ପାଇଁ ଧନ୍ଦି ହୋଇ ବୁଲୁଛନ୍ତି। କାଳେ ପୁଅ-ଝିଅ-ନାତି-ନାତୁଣୀ ଉଡ଼ିଯାଇ ତାଙ୍କ ପାଖରୁ ଦୂରେଇ ଯିବେ, ସେ ଭୟରେ ସେମାନେ ଯିଏ ନିଜ କୋଠାକୁ ଯେତେ ବଡ଼ ଆଉ ମଜଭୁତ୍ କରିଦେଇପାରିଲେ କଲେ। କାନ୍ଥଘେରା ସେ ଘରୁ, କେବଳ କେତୋଟି ଗ୍ରିଲଦିଆ ଝରକା ଆଉ କେତୋଟି କବାଟ। କାଳେ ସେ କବାଟ ଦେଇ ପୁଅହ-ଝିଅ-ନାତି-ନାତୁଣୀ ବାହାରକୁ ଖସିଯିବେ ଆଉ ବାହାରିଗଲେ ପୁଣି ଫେରିବେନି, ସେଇ ଭୟରେ ସେମାନେ ଘରେ ଖୁନ୍ଦି ଦେଇଥିବେ, ନାନା ରକମର ଲୋଭନୀୟ ସାଜସରଞ୍ଜାମ - ଖାଦ୍ୟସାମଗ୍ରୀ, ବାହାରିଗଲେ ସେସବୁ ପଦାର୍ଥ ଲୋଭରେ ଘରର ବନ୍ଧନୀ ଭିତରକୁ ପୁଣି ଥରେ ଫେରି ଆସିବେ ବୋଲି। ଏଇ ପୁଅ ଝିଅଙ୍କୁ ବାନ୍ଧି ରଖିବା ପାଇଁ ସେମାନେ ଯେଉଁ ଥୋପ ସୃଷ୍ଟି କରନ୍ତି, ସେ ଥୋପର ଅଠାକାଠିରେ ଶେଷରେ ନିଜେ ଲାଖିଯାଆନ୍ତି । ଘରବାଡ଼ି, ଧନସମ୍ପତ୍ତି ସେମାନଙ୍କୁ ଜାବୁଡ଼ି ଧରେ ଆଉ ସେଇ ଧନ ସମ୍ପତ୍ତି ପାଇଁ ତାଙ୍କ ଭିତରେ ଯାବତୀୟ ଟଣାଓଟରା, ମାରପିଟ୍ ହଣାକଟା ପ୍ରତିଯୋଗିତା ଚାଲିଥାଏ - ନିଜ ଘରେ କିଏ କେତେ ସାମଗ୍ରୀ ଖୁନ୍ଦି ଦେଇପାରିବ - ଅନ୍ୟର ଖାଦ୍ୟ ତା'ପାଟିରୁ ଛଡ଼ାଇ ଆଣି, ଅନ୍ୟ ଘରର ସଞ୍ଚିତ ପଦାର୍ଥ ଲୁଟିନେଇ, ଦରକାର ପଡ଼ିଲେ ଅନ୍ୟର ତୋଟି କାଟି। ସେଥିପାଇଁ କେତେ ପ୍ରବଞ୍ଚନା ଠକାମି ଭଣ୍ଡାମି। ତାକୁ ସେମାନେ କହନ୍ତି ସଂସାର-ବନ୍ଧନ। ସେ ବନ୍ଧନ ସେମାନେ ନିଜେ ସୃଷ୍ଟି କରନ୍ତି ଆଉ ସେଥିରୁ ମୁକୁଳିବା ପାଇଁ ଛାଟିପିଟି ହୁଅନ୍ତି। ଅନ୍ୟକୁ ଛନ୍ଦିବାକୁ ଯାଇ ନିଜେ ଛନ୍ଦି ହୋଇଯିବା ପ୍ରକ୍ରିୟାକୁ ସେମାନେ ପୁଣି କହନ୍ତି 'ମାୟା'।"

"ପେ ପୁଉ ଟିଁର୍ ଟର୍‌ଟର୍' - ମୁନ୍ନା ମୁନ୍ନିଙ୍କ ସଙ୍ଗରେ ଆମର କ'ଣ ଏପରି ବନ୍ଧନ ନାହିଁ?"

"ଆମର ମୁନ୍ନା ମୁନ୍ନି ଅଛନ୍ତି ସତ; କିନ୍ତୁ ସେମାନେ ଆଜି ଅଛନ୍ତି, କାଲି ଉଡ଼ିଯିବେ। ତା'ପରେ ଆମର ହୁଏତ ଆଉ ଦେଖା ସାକ୍ଷାତ ବି ହେବନି। ଗଛ ଉପରେ କାଠିକୁଟାର ଯେଉଁ ବସା - ମୁନ୍ନା ମୁନ୍ନିଙ୍କ ଉପରେ ତା'ର ବି କୌଣସି ବନ୍ଧନ ନାହିଁ। ଆମଠାରୁ ଉଡ଼ିଗଲା ପରେ ସେ ଦିହେଁ ଯେ ପୁଣି ପାଖାପାଖି ରହିବେ, ସେମାନଙ୍କ ଭିତରେ ସେମିତି ବନ୍ଧନ ବି ନାହିଁ।"

"ପୁଅ ଝିଅ ନାତି ନାତୁଣୀ, ଜ୍ଞାତିକୁଟୁମ୍ବ ବନ୍ଧୁବାନ୍ଧବଙ୍କ ପାଇଁ ମଣିଷର ଯେଉଁ ସ୍ନେହର ବନ୍ଧନ, ତାହା କ'ଣ ଆମ ମୁକ୍ତି ଅପେକ୍ଷା ଆହୁରି ଭଲ ନୁହେଁ?" ମୁନ୍ନି-ମା'ର ପ୍ରଶ୍ନ।

"କିଏ ଭଲ କିଏ ମନ୍ଦ କେମିତି କହି ହେବ? ସେଇ ସ୍ନେହ ତ ବନ୍ଧନର ରଜ୍ଜୁ - ସେଥିରୁ ମୁକୁଳିବା ପାଇଁ ମଣିଷର ଏତେ ପ୍ରଚେଷ୍ଟା - ଦାଢ଼ି ରଖା, ତଥାପି ଦେଖିଲନି ମୁକ୍ତି ଲୋଡ଼ି ମଧ ବୁଢ଼ା କେମିତି ତା' ଝିଅ ଜୋଇଁ ନାତି ନାତୁଣୀଙ୍କୁ ଧରି ଧାଇଁ ଆସିଛି ଏତେ ବାଟ -" ବାପ-ବଣିର ଉତ୍ତର, କହି ହସି ଉଠିଲେ ମିଶ୍ରବାବୁ।

ତେଣେ ମୁନ୍ନା-ମୁନ୍ନି ବି ଡେଣା ପିଟି ବାପ-ମା'ଙ୍କୁ ଅନାଇଁ ଟିର୍ ଟିର୍ କରି ହସୁଥିଲେ। ଏକା ସଙ୍ଗେ ପଚାରିଦେଲେ - 'ଦାଢ଼ିଆବୁଢ଼ା ତେବେ ବେଶ୍ ସ୍ନେହୀ ଆଉ ଧାର୍ମିକ ଲୋକ ନା ବାପା?'

ବାପ-ବଣି ତାଙ୍କୁ ତାଗିଦ୍ କରି କହିଲା - "ଏମିତି ସଫେଦ୍ ଦାଢ଼ି ଦେଖି ଭାବିବନି ଯେ ସେ ନିଶ୍ଚୟ ବଡ଼ ଧାର୍ମିକ ହୋଇଥିବ। ହୋଇପାରେ ନ ହୋଇ ପାରେ ମଧ। ଏ ମଣିଷମାନଙ୍କ ଭେକ ଅନେକ ପ୍ରକାରର। ସାଧୁ ସନ୍ଥ ବି ନାନା ଧରଣର ଗୋଷ୍ଠୀ କରନ୍ତି, ଆଉ ସେ ଗୋଷ୍ଠୀମାନଙ୍କ ଭିତରେ ବି ଧୂମାଧୂମ୍ ଚାଲିଥାଏ କଳିଗୋଳ। କିଏ ବିଶପ୍, କିଏ ମୁଲ୍ଲା, କିଏ ସାଧୁ, କିଏ ସନ୍ଥ। କାଥଲିକ୍-ପ୍ରୋଟେଷ୍ଟେଣ୍ଟ୍ ସିହା-ସୁନ୍ନି, ଅକାଳୀ-ନିରଙ୍କରୀ। ଅଧର୍ମ ଯେତେ ବଢ଼ିଚାଲିଛି, ସେତେ ବାହାରୁଛନ୍ତି ସାଧୁ-ସନ୍ଥ। ରାମକୃଷ୍ଣ ଅରବିନ୍ଦ, ସତ୍ୟସାଇ, ଶିବାନନ୍ଦ। ଏ ସଫେଦ୍ ଦାଢ଼ି କେଉଁ ଗୋଟାଏ ଦଳର ହୋଇଥିବ। ତା' ବୋଲି ଯେ ସେ ଧାର୍ମିକ ହୋଇଗଲା, ସେମିତି ଭାବି ତା' ପାଖକୁ ଯିବନିରେ ବାବା! ଏମାନେ ନିଜ କୁକର୍ମ ଘୋଡ଼େଇବା ପାଇଁ ନାନା ବେଶ ହୁଅନ୍ତି - ନାନା ସାଧକ ପନ୍ଥରେ ଗୋଡ଼ାନ୍ତି। ସେ ଭିତରୁ କେତେ ଭଲ ଆଉ କେତେ ଠକ ଭଣ୍ଡ। ଝିମିଟି ଖେଳରୁ ମହାଭାରତ ଆରମ୍ଭ ହେଲା ପରି ଛୋଟ ଛୋଟ କଥାରୁ ଏମାନେ

ସମସ୍ତେ ଏବେ ମାରପିଟ ହେବେ - ଈଶ୍ୱରବାଦୀ ନିରୀଶ୍ୱରବାଦୀ; ସାମ୍ୟସମାଜବାଦୀ ବ୍ୟକ୍ତି ସ୍ୱାତନ୍ତ୍ୟ ପୁଞ୍ଜିବାଦୀ। ଘମାଘୋଟ ଲଢ଼େଇ ହେବ। କର୍ଣ୍ଣ ବିରୋଧରେ ଅର୍ଜୁନ, ଭୀମ ବିରୋଧରେ ଦୁଃଶାସନ। ମହାଭାରତ ଯୁଦ୍ଧରେ ଚକ୍ର ଏ ପାଖରୁ ଯାଇ ସେ ପାଖ ଏବଂ ସେ ପାଖରୁ ଆସି ଏପାଖ ଛେଦି ନେଲା ପରି ଏପାଖରୁ ପଡ଼ିବ ବୋମା ସେ ପାଖରେ, ଆଉ ସେ ପାଖରୁ ପଡ଼ିବ ବୋମା ଏ ପାଖରେ। ଅଣୁଯୁଦ୍ଧ ପରମାଣୁ ଯୁଦ୍ଧ। ହାଇଡ୍ରୋଜେନ ବୋମା - ନିଉଟ୍ରନ ବୋମା। ପୃଥିବୀ ଛାରଖାର ହୋଇଯିବ - ସବୁ ଧ୍ୱଂସ ପାଇଯିବ। କେହି ଜୟୀ ହେବାକୁ ନ ଥିବେ।"

: ମାଛମାନେ ମଜା କରିବେ, ନାଇଁ ବାପା ?

: ନାଇଁ ସେମାନେ ବି ଯିବେ। ସମୁଦ୍ର ଭିତରେ ଛପି ରହି ମଣିଷମାନେ ଛାଡ଼ିବେ ବୋମା ଏକ ଅରେକର ଜାହାଜ ଆଡ଼କୁ। ସାତ ସମୁଦ୍ରର ପାଣି ବିଷ ପାଲଟିଯିବ।

: ତେବେ ଖାଲି ଆମର ମଜା। ଉଡ଼ି ଉଡ଼ି ତାମସା ଦେଖିବୁ - ଡେଣା ହଲାଇଲା ମୁନ୍ନା।

: ନାଇଁରେ ବାପା - ଆମେ ବି ଯିବୁ - ଉତ୍ତର ଦେଲା ବାପବଣି। ଜଳସ୍ଥଳ ଆକାଶ ସବୁଠି ହେବ ଲଢ଼େଇ। ଗଛପତ୍ର ସବୁ ଜଳିଯିବ। ବୋମାର ତେଜରେ ପବନ ବି ବିଷ ହୋଇଯିବ। ଆମେ ଆଉ ବଞ୍ଚିବୁ କେମିତି ?

: ଆମେ କ'ଣ ଦୋଷ କଲୁଁ କି ବାପା ? - ଦୁଃଖ କରି ପଚାରୁଥିଲା ମୁନ୍ନି। ତମେ ସେଦିନ ନିଜେ କହୁଥିଲ ଯେ ଅଧର୍ମର ବିନାଶ ଏବଂ ଧର୍ମର ସଂସ୍ଥାପନା ପାଇଁ ଭଗବାନ ମାଛ, କଇଁଛ, ବରାହ, ନରସିଂହ ହୋଇ ପାଞ୍ଚଥର ମଣିଷ ଜନ୍ମ ନେଲେ ମଧ୍ୟ ଚଢ଼େଇମାନେ ଅଧର୍ମ କରନ୍ତିନି ବୋଲି ଥରେ ବି ଚଢ଼େଇ ଜନ୍ମ ନେଇନାହାନ୍ତି। ଆମକୁ ଏବେ ମାରିବେ କାହିଁକି ?'

: 'ମୁଁ ତ ତୁମକୁ ଭୀଷ୍ମ ପିତାମହଙ୍କ କଥା ଆଗରୁ କହିଛି। ମହାଜ୍ଞାନୀ, ପରମ ଧାର୍ମିକ ସତ୍ୟବ୍ରତ ସିଏ, ସତ୍ୟ ରକ୍ଷା କରିବାକୁ ଯାଇ ଅଧର୍ମର ପାଖରେ ରହିଲେ ବୋଲି ତାଙ୍କୁ ବି ମରିବାକୁ ପଡ଼ିଲା। ଆମର ବି ସେଇ ଦଶା ହେବ।' ବିଷର୍ଣ୍ଣ ସ୍ୱରରେ କହୁଥିଲା ମୁନ୍ନିର ବାପା। "ଆମର ଦୋଷ ଥାଉ ବା ନ ଥାଉ, ମଣିଷ ପରି ଜୀବଙ୍କ କୁସଙ୍ଗରେ ଆସି ଆମେ ବି ପରମାଣୁ ବୋମାର ସର୍ବଗ୍ରାସୀ ବିଷଜ୍ୱାଳାରେ ଧ୍ୱଂସ ପାଇଯିବୁ। ଧୂମକେତୁ ପରି କରାଳ ଦେଖାଯାଉଥିବା ବୋମାର ବିସ୍ଫୋଟନମାନ ସମସ୍ତଙ୍କୁ ନିଃଶେଷ କରିଦେବ। ଧରାଧାମରେ ଆଉ କେହି ରହିବେନି। କଳିଯୁଗର ଶେଷ ହେବ। ଆସିବ ପ୍ରଳୟ।"

: ଭଗବାନଙ୍କ ସୃଷ୍ଟିର ବିନାଶ ହେବ ବାପା ?

'ହଁ ବାପ, ପୁଣି ଜନ୍ମ ନେବ ଭଗବାନଙ୍କ ନୂତନ ସୃଷ୍ଟି। କାଳରୂପୀ ମହାଦେବ ଅନେକ କାଳ ପରେ ପୁଣି ଥରେ ସେ ସବୁ ବିଷକୁ ପାନ କରି ନେଇ ବିଷଜ୍ୱାଳା ହରଣ କରିନେବେ। ପୟୋଧି ଜଳେ ଦେଖାଦେବେ ମୀନରୂପୀ ଭଗବାନ୍। ସୃଷ୍ଟିଚକ୍ରର ଗୋଟିଏ ଘୂର୍ଣ୍ଣନ ପରେ ପୁଣି ଥରେ ଆରମ୍ଭ ହେବ ସତ୍ୟଯୁଗ।'

ଜୟଦେବ ବାବୁଙ୍କ ସ୍ତ୍ରୀ ଦି' ଥାଳି ଗରମ ଚକୁଳି ଧରି ଘର ଭିତରୁ ବାହାରି ଆସିଲେ। ମିଶ୍ରବାବୁଙ୍କ ଚା' କପ୍‌ରେ ଥଣ୍ଡା ଚା' ଭର୍ତ୍ତି ହୋଇଥିବା ଦେଖି ଯେମିତି ସେ ଜୟଦେବବାବୁଙ୍କୁ ଅନାଇଛନ୍ତି, ଜୟଦେବବାବୁ ବଣିଚଢ଼େଇଙ୍କ ଆଡ଼ିକି ଆଙ୍ଗୁଠି ଦେଖାଇ କହିଲେ - "ତମ ଭାଇ ବଣି ଚଢ଼େଇଙ୍କ ଗପ ଶୁଣୁଛନ୍ତି।"

ଜୟଦେବ ବାବୁଙ୍କ ସ୍ତ୍ରୀ କ'ଣ ବୁଝିଲେ କେଜାଣି ଥାଳି ଦି'ଟା ଛୋଟ ଟେବୁଲ ଉପରେ ଥୋଇ ଦେଇ ସୁ' କରି ହାତ ହଲାଇଦେବା ଫଳରେ ଚାରୋଟିଯାକ ବଣି ଉଡ଼ିଗଲେ ବେଢ଼ାରେ ଥିବା ତାଳଗଛ ଉପରକୁ।

ମିଶ୍ରବାବୁ ମନ୍ତ୍ରମୁଗ୍ଧ ପରି ଥରେ ଦାଢ଼ି ଆଉଁସୁଥିଲେ ତ ଥରେ ଅନାଉଥିଲେ ଚକୁଳି ଥାଳିକି।

# ବାମନ ଏବଂ ଚନ୍ଦ୍ରମା

'ହଇ ଓ! ତମେ ତ ହେଲ ଗୋଟାଏ ବାମନ। ଚନ୍ଦ୍ରମା ଆଡ଼ିକି ହାତ ବଢାଉଛ କାହିଁକି କହିଲ! - ମୁଁ ଟିକେ ଶୁଣେ? କ'ଣ କହୁଛ ମହାପାତ୍ରବାବୁ!' ପଣାରେ ଚିନି ଠିକ୍ ଲାଗିଛି ନା ନାହିଁ ତୃତୀୟ ବାର ପାଇଁ ପରୀକ୍ଷା କରୁ କରୁ ପ୍ରଶ୍ନ ପଚାରିଥିଲେ ଡଙ୍ଗରିଗୁଡ଼ାର ପୂର୍ବତନ ସରପଞ୍ଚ ଏବଂ ଅଧୁନାତନ ଗୋଲାଘର ସଭାପତି ଶ୍ରୀ ନିରାକାର ଭୋଇ।

ପ୍ଲାଷ୍ଟିକ ବାଲ୍‌ଟି ଗୋଟାକରେ କଦଳୀ ଚକଟୁଥିବା ଆର୍. ଆଇ. ଶ୍ରୀମାନ୍ ନିରଞ୍ଜନ ମହାପାତ୍ର ସରପଞ୍ଚଙ୍କ ତୀରର ଦିଗ କେଉଁଆଡ଼ିକି, ଠିକ୍ ଠଉରାଇ ପାରିଥିଲେ। କିନ୍ତୁ ସେ କିଛି କହିବା ପୂର୍ବରୁ ହିଁ ତଳିପା ଉପରେ ଭରା ଦେଇ ଭାଙ୍ଗ କଲି ସାଙ୍ଗରେ କିଛି ବାଦାମ ବାଟୁଥିବା ଭି.ଏଲ୍.ଡବ୍ଲ୍ୟୁ ସୁଦାମ ବାବୁ ପ୍ରଧାନ ଶିଳ ଉପରୁ ମୁଣ୍ଡ ଟେକି ଡାହାଣହାତ ପାପୁଲିରେ ଉଚ୍ଚତାର ଇଙ୍ଗିତ ଦେଇ କହି ଉଠିଲେ, "ବାମନ ବୋଇଲେ ବାମନ । ବେଶି ହେଲେ ଉଚ୍ଚତା ହେବ, ଚାରିଫୁଟ ଦୁଇଇଞ୍ଚ, କି ତିନିଇଞ୍ଚ, ତାଙ୍କର ପୁଣି ଦିମାକ ଦେଖ। ହଁ, ତମ ସ୍କୁଲ ହତାରେ ଆଦିବାସୀ ହରିଜନ ପିଲାଏ ରୋଇଥିବା ବାଇଗଣ ମରିଚ ଆଡିକି ହାତ ବଢାଇବ ଯଦି ବଢାଅ, କିଏ ମନା କରୁଛି? ନଇଲେ ପିଲାଙ୍କ ମଧ୍ୟାହ୍ନ ଭୋଜନ ପାଇଁ ସେ ଯେଉଁ ଦୁଧଗୁଣ୍ଡ ଆସେ, ଅନ୍ଧାରୁଆ ବେଳ ଦେଖି ସେଥିରୁ ଗୋଟାଏ ଦି'ଟା ଡବାଆଡ଼ିକି ବି ହାତ ବଢାଇଦିଅ। କିନ୍ତୁ ଚନ୍ଦ୍ରମା ଆଡ଼ିକି!!"

ସରପଞ୍ଚବାବୁ ତାଙ୍କ ଗିଲାସରୁ ମୁହଁ ଟେକି ଏଥର ଟିପ୍‌ପଣୀ କାଟିଲେ - "ଭଗବାନ୍ କାହାକୁ କେଉଁ ଉଚ୍ଚତା ଦେଇଛନ୍ତି, ଆମେ କାହିଁକି ସେଥିରେ କିଛି କହିବା? କ'ଣ କହୁଛ ଭବାନୀବାବୁ? ତେବେ..."

"ପଣାରେ ଆଉ ଟିକେ ଚିନି ଲାଗିବ" କହି ଟେବୁଲ ଉପରେ ଗିଲାସ ଥୋଉ ଥୋଉ ମୁଣ୍ଡ ହଲାଇ ଯୋଡ଼ିଲେ, "କଥା ହେଲା ତମେ ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକ। ତମ ପିଲା ଭଲ କରି ବି.ଏ. ପାସ କରି ଦେଲା ବୋଲି ଏତେ ଗର୍ବ କାହିଁକି, କହିଲ? ଏ ଅଞ୍ଚଳରେ କଣ ଆଉ କେଉଁ ପିଲା ବି.ଏ. ପାସ କରିନାହାଁନ୍ତି? ଆଜିକାଲି ଯେଉଁଠି ଦେଖିବ ଗଣ୍ଡା ଗଣ୍ଡା ମେଟ୍ରିକ ଆଉ ବି.ଏ.। କେତେ ଭଲ କାମଟିଏ ଘରେ

ବସି ମିଳି ଯାଉଥିଲା, ତାକୁ ତମ ପୁଅ ଗୋଇଠା ମାରିବ ଯେ ତମେ ବାପ ହୋଇ କିଛି କହିବନି ? ଆଜିକାଲି ଗୋଲାଘର ସେକ୍ରେଟେରୀ ଠାରୁ ବଳି ଭଲ ଚାକିରି କଣ ଅଛି କହିଲ ? ହଁ, ବସ୍ କଣ୍ଡକ୍ଟର କଥା ଅଲଗା, ସେଥିପାଇଁ ତ ପାଞ୍ଚ ଦଶହଜାର ଖର୍ଚ୍ଚ ନ କଲେ ହେବନି, ଆଉ କେଉଁ ବସ୍ ରୁଟ୍ ଯେ ପଡିବ ସେ କଥା ବି କିଏ କହିବ ? ଏଇଟା ହେଲା ଘର କଥା। ଗାଁ ପିଲା, ଲେଖାପଢାରେ ବେଶ୍ ଭଲ, ହିସାବ କିତାପରେ ନେଇ ଆଣି ଥୋଇ ଜାଣିଲେ ହେଲା।"

ଗୋଲାଘରର ସଭାପତି ହେଲେ ବି ଭୋଇବାବୁ ସରପଞ୍ଚ ପଦବୀକୁ ବେଶି ସମ୍ମାନାସ୍ପଦ ବୋଲି ଜ୍ଞାନ କରୁଥିବା ଜାଣି ଆଖପାଖର ସମସ୍ତେ ତାଙ୍କୁ କିଛି କହିଲାବେଳେ ସରପଞ୍ଚ ସାହେବ ବୋଲି ସମ୍ବୋଧନ କରନ୍ତି। ଆଜି ପଣା ସଂକ୍ରାନ୍ତି। ସରପଞ୍ଚ ସାହେବଙ୍କ ଘରେ ଭୋଜି। ଏ ଅଞ୍ଚଳର ଭାବୀ ଏମ.ଏଲ୍.ଏ.ଙ୍କ ନିମନ୍ତ୍ରଣ ପାଇ ଆଖପାଖର ସବୁ ମାନ୍ୟଗଣ୍ୟ ବ୍ୟକ୍ତି ଏପରିକି ନିଜେ ବି.ଡି.ଓ. ମଧ୍ୟ ସାନ୍ଧ୍ୟ ଭୋଜନ ପାଇଁ ଡଙ୍ଗରିଗୁଡ଼ା ଆସିବେ ବୋଲି ଶୁଣାଯାଉଛି। ଜନସମାଗମ ହେବ। ତହସିଲଦାର ସାହେବ, ଆର.ଇ.ଓ.ର ସହକାରୀ ଯନ୍ତ୍ରୀ, ଏ.ଇ.ଓ. ଓଭରସିୟର ବାବୁ ସମସ୍ତଙ୍କ ପାଖକୁ ନିମନ୍ତ୍ରଣ ଯାଉଛି। ସରପଞ୍ଚ ସାହେବ ତାଙ୍କ ଘର ସାମନା ବାରନ୍ଦାକୁ ଭଲ କରି ସଜାଇ ରଖିଛନ୍ତି। ବାରନ୍ଦା ମଝିରେ ପଡ଼ିଥିବା ଲମ୍ବା ଟେବୁଲ ଉପରେ ଖଣ୍ଡିଏ ରଙ୍ଗିନ ଟେବୁଲ କ୍ଲଥ୍। କାନ୍ଥ ପାଖରେ ଟେବୁଲକୁ ମୁହଁ କରି ଗଦିଦିଆ ଦି'ଟା ହାତବାଲା କାଠ ଚଉକି। ଚଉକି ଦି ପାଖରେ ଆଉଜି ହେବାକୁ ସୁବିଧା ଥିବା ଗୋଟାଏ ଲେଖା କାଠ ବେଞ୍ଚ। ଖମ୍ବମାନଙ୍କ ପାଖରେ ଦି'ଚାରିଟା ଷ୍ଟୁଲ ଆଉ ଟେବୁଲ ଦି' ମୁଣ୍ଡରେ ଦି'ଟା ଇଜି ଚେୟାର।

ଭଲ ଇସ୍ତିକରା ଧଳା ଫରଫର ଖଦଡ଼ ଧୋତି ଆଉ ପଞ୍ଜାବି ପିନ୍ଧି କାଠ ଚଉକି ଗୋଟାକରେ ବସିଥିଲେ ସରପଞ୍ଚ ସାହେବ। ଚଉକି ଉପରେ ଦି'ଗୋଡ ଲଦି ଚଉକିର ବାଁ ପାଖକୁ ଦେହ ବୁଲାଇ ନେଇ କୌଣସି ଗୁପ୍ତ କଥା କହୁଥିବା ଢଙ୍ଗରେ ଭବାନୀବାବୁଙ୍କୁ ଅନାଇ ଥିରି ଥିରି କହିଲେ - "ପୁରୁଣା ସେକ୍ରେଟେରୀଙ୍କ କାଳ ହୋଇଗଲା ବୋଲି ସିନା କଥା ଉଠିଲା, ନ ହେଲେ ଏମିତି ଚାକିରି କଣ ସହଜରେ ମିଳେ ? ଖାଲି ରିହାତି ଦରରେ ଛୋଟ ଚାଷୀଙ୍କୁ ସରକାରୀ ଖତ ଯୋଗାଇବାରେ ଯେଉଁ ଦି'ପଇସା, ସେଥିରେ ତ ସେ ପୁରୁଣା ସେକ୍ରେଟେରୀ ଗାଁରେ କୋଠା ଘରଟିଏ ବାଡ଼େଇଦେଲା। ତହିଁରେ ପୁଣି ଜନତା ଧୋତି, ଜନତା ଶାଢ଼ି, କଣ୍ଟ୍ରୋଲ ଚିନି, କିରାସିନି କେତେ କଣ ଅଛି। ସରକାରୀ ଲୋନ ପୁଣି ଏଇ ସେକ୍ରେଟେରୀ ହାତ ଦେଇ ଯିବ। ଦୁଇ ପାପୁଲିର ଆଙ୍ଗୁଠି ସବୁକୁ ପରସ୍ପର ଭିତରେ ଗୁନ୍ଥି କଥାର ମର୍ମଟିକୁ ସ୍ପଷ୍ଟତର କରିଦେଲେ ସରପଞ୍ଚ ସାହେବ।

କାଠ ଚଉକିର ବାଁ ପାଖକୁ ପଡ଼ିଥିବା ବେଞ୍ଚରେ ବସିଥିଲେ ଭବାନୀବାବୁ - ବିରୋଧୀ ଦଳରୁ ସରକାରୀ ଦଳକୁ ଆସିବାକୁ ଏବଂ 'ସି' କ୍ଲାସ କଣ୍ଟ୍ରାକ୍ଟର ପାହିଆରୁ 'ବି' କ୍ଲାସକୁ ଉନ୍ନୀତ ହେବା ପାଇଁ ଆପ୍ରାଣ ଚେଷ୍ଟା କରୁଥିବା ଗାଁ ସଡ଼କ ଠିକାଦାର ଶ୍ରୀଯୁକ୍ତ ଭବାନୀ ଚରଣ ସାମଲ। ଇତି ମଧ୍ୟରେ ସରପଞ୍ଚଙ୍କ ନିର୍ଦ୍ଦେଶ ଅନୁଯାୟୀ ପଣାରେ ଚିନି ସାଙ୍ଗକୁ ଅନ୍ୟାନ୍ୟ ଜଟିଳ ସାମଗ୍ରୀ ସବୁ ଠିକ୍ ପରିମାଣରେ ନ୍ୟସ୍ତ ହୋଇଛି କି ନାହିଁ, ସେ ସମ୍ବନ୍ଧରେ ଦୁଇଥର ମତାମତ ଦେଇସାରିଥିବା ଭବାନୀବାବୁ ସରପଞ୍ଚଙ୍କୁ ପୂର୍ଣ୍ଣ ସମର୍ଥନ ଜଣାଇ କହିଲେ, "କାହାକୁ କହିବେ ସରପଞ୍ଚ ସାହେବ ? ଯୁଗ ତ ଆଜି ସେମିତି। ଯା' ପାଖରେ ଚଣା ତା'ର ଦାନ୍ତ ନାହିଁ, ଆଉ ଯାହାର ଦାନ୍ତ ମଜବୁତ, ତା'ର ଚଣା ଅଭାବ। ଦେଖୁନାହାନ୍ତି, ଆମ ଚଣ୍ଡାଳ ନରସିଂହକୁ। ମେଟ୍ରିକ ଖଣ୍ଡେ ଯଦି ପାସ୍ କରିଥାନ୍ତା, ଆପଣ ଏ ଗୋଲାଘର ସେକ୍ରେଟେରୀ କାମ ତାକୁ ନ ଦେଇ କଣ ଏ ମାଷ୍ଟର ପୁଅକୁ ଯାଚିଥାଆନ୍ତେ ? ମୁଁ ସେଥିପାଇଁ କହେ ସବୁ କପାଳ। କପାଳ ଲିଖନ କେ କରିବ ଆନ। ଦେଖିବେ ଏ ମାଷ୍ଟର ପୁଅ ଯଦି ଆଉ ଗୋଟିଏ ମାଷ୍ଟର ନ ହୋଇଛି। ଅତି ହେଲେ ପ୍ରାଇମେରୀ ସ୍କୁଲ ଶିକ୍ଷକ ନ ହୋଇ ଏମ୍.ଇ. ସ୍କୁଲର ଶିକ୍ଷକଟିଏ ତ ହେବ। ତଥାପି ମାଷ୍ଟର ତ ! ଏମାନଙ୍କର ବିଦ୍ୟା ସିନା ଅଛି, ବୁଦ୍ଧି କାହିଁ ? କୁକୁର ଲାଙ୍ଗୁଳ ପରା ! ବଂଶାନୁକ୍ରମେ ଲାଞ୍ଜ ବଙ୍କା ହୋଇ ଚାଲିଥିବ। କିଏ ଜଣେ କୁଆଡ଼େ ରାମଚନ୍ଦ୍ର ବନବାସ ଗଲାବେଳକୁ ତା' କୁକୁର ଲାଞ୍ଜରେ ପାଇପ ଖଣ୍ଡିଏ ଗଳାଇ ଦେଇଥିଲା ଯେ ରାମଚନ୍ଦ୍ର ବନବାସରୁ ଫେରି ଅଯୋଧ୍ୟାରେ ରାଜା ହେଲାବେଳକୁ ସେ ପାଇପ ଖୋଲିଲା। ଆଉ ଦେଖିଲା ବେଳକୁ କ'ଣ ନା କୁକୁର ଲାଞ୍ଜ ଯେଉଁ ବଙ୍କାକୁ ସେଇ ବଙ୍କା। ଆପଣଙ୍କୁ ଏଣେ ଦେଖନ୍ତୁ, ସପ୍ତମ ଶ୍ରେଣୀ ସିନା ଡେଇଁ ନାହାନ୍ତି, କେହି ଆପଣଙ୍କୁ ବୁଦ୍ଧିରେ ହରାଇ ଦେଉ ତ ! ଜମିଦାରୀ ଉଚ୍ଛେଦ କଲେ ସରକାର, ଆପଣଙ୍କ ଜମିଦାରୀ ସିନା ଗଲା। ଆପଣଙ୍କ ବୁଦ୍ଧିକୁ କିମ୍ବା କପାଳକୁ କଣ କିଏ ନେଇପାରିଲା ? ଆସିଲା ଜମି ସିଲିଂ। ଆପଣଙ୍କ ଜମି ବି ଗଲା; କିନ୍ତୁ ଆପଣ ହେଲେ ସରପଞ୍ଚ। ଏବେ ବି ସରପଞ୍ଚ ପଦବୀ ଯାଇଛି କି ନାଇଁ ଆପଣ ହେଲେ ଗୋଲାଘରର ସଭାପତି। ସେଇଟା ବି କାଳେ ଯିବ ଜାଣି ଆପଣ ଏମ.ଏଲ.ଏ ହେବା ପାଇଁ ପ୍ରସ୍ତୁତି ଆରମ୍ଭ କରିଦେଲେଣି। ଅଞ୍ଚଳଯାକ କୁହାକୁହି ହେଉଛନ୍ତି ଡଙ୍ଗରିଗୁଡ଼ା ସରପଞ୍ଚ ଯେଉଁ ଦିନ ଏମ୍.ଏଲ୍.ଏ. ହେବେ, ତା' ଆରଦିନ ଦେଖିବ ତାଙ୍କ ପକେଟରେ ଥିବେ ଦଳେ ଏମ୍.ଏଲ୍.ଏ. । ଦଳବଦଳକରି ତାଙ୍କୁ ମନ୍ତ୍ରୀଟିଏ ନ କରି କେଉଁ ଦଳପତିର ଚାରା ଅଛି ? ମୁଁ ତେଣୁ ଆମ ନରସିଂହବାବୁଙ୍କୁ କୁହେ, ଆରେ ଚଣ୍ଡାଳ, ପାଞ୍ଚଜଣରେ ଜଣେ ଯଦି ହେବୁ, ଯା' ଭୋଇ ସରପଞ୍ଚଙ୍କ ବାରନ୍ଦାକୁ, କେତେ କଥା ଶିଖି ଆସିବୁ। ଆଜିକାଲି ପାଠ ବଡ଼ ନୁହେଁ, ଶାଠ ବଡ଼, ତା' ନ କଲେ

ଜୀବନସାରା ଦଉଡୁଥିବୁ ସେ ଚୋର ଓଭରସିୟର ପଛରେ - ଛ' ଇଞ୍ଚ ମାଟି ଗହୀରକୁ ବାର ଇଞ୍ଚ ମାପିବା ପାଇଁ। ଭୋଇ ସରପଞ୍ଚଙ୍କ ପାଖରେ ଯଦି ଥିବୁ, ସେ ମନ୍ତ୍ରୀଟିଏ ହେଲେ ତୋ କପାଳ ଫିଟିଯିବ। ଏ ଅଞ୍ଚଳର ସେ ହେବେ - 'କରି କରାଉ ଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ।' ସେତେବେଳେ ଦେଖିବୁ ଏଇ ଓଭରସିୟର ଯଦି ତୋ ପଛରେ ନ ଦୌଡ଼ିଛି -'

ଭୋଇବାବୁ ଟିକେ ହସିଲେ। ଡାକିଲେ, 'ହଇରେ ଏ ଗୋବରା, ଆଣ୍ମ ଗିଲାସେ ଭଲ ପଣା। ଆରେ ଏ ନବୀନା! ଦି'ଚାରିଟା ଭଲ ବରଫି ଆଉ ପେଡ଼ା ଆଣିଲୁ ଏ ଆଡ଼ିକି - ଭବାନୀବାବୁ ଟିକେ ଚାଖନ୍ତୁ।" ଫୁସୁରୁ ଫୁସୁରୁ ଉତ୍ତର ଦେଲେ - କେତେ ଜଣ ଆପଣଙ୍କ ପରି ସବୁକଥା ବୁଝି ପାରୁଛନ୍ତି ଭବାନୀବାବୁ ? ଅନୁନ୍ନତ ଅଞ୍ଚଳ - ସମସ୍ତେ ମୂର୍ଖ, ନ ହେଲେ କ'ଣ ପୋଖରୀ ଖୋଳା କି ପଙ୍କୋଦ୍ଧାର କଥା ଉଠନ୍ତା ? ହେଉ ମୁଁ ଥରେ ଏମ୍.ଏଲ୍.ଏ. ହୁଏଁ, ଦେଖିବା।

ଭାଙ୍ଗପଣା ଦେଲାବେଳେ ଭୋଇବାବୁ ନିଜେ ତଦାରଖ କରୁଥିଲେ। ପଣା ସାଙ୍ଗକୁ ପେଡ଼ା ଆଉ ବରଫି ମିଠା। ଯଥାସମୟରେ ରାତ୍ର ଭୋଜନ ପାଇଁ ଡାକରା ଆସିଲା। ସମସ୍ତଙ୍କ ହସଖୁସ୍ ମିଜାଜ୍। ସମସ୍ତଙ୍କ ମୁହଁରେ ସେଇ ଏକା କଥା - ଏଥର ଭୋଟ ଲଢ଼େଇରେ ଭୋଇବାବୁଙ୍କ ବିରୋଧରେ ଯିଏ ଯିବ ସେ ଯଦି ଅମାନତ ନ ହରାଇଛି !

ରାତ୍ରଭୋଜନ ବେଳକୁ ଭାଙ୍ଗପଣା ତା' କରାମତି ଦେଖାଇଥିଲା। ସରପଞ୍ଚ ସାହେବ ଖାଇବା ଆସନରେ ବସି ଅନର୍ଗଳ ବକ୍ତୃତା ଦେବାକୁ ଆରମ୍ଭ କରି ଦେଇଥିଲେ। ବିଷୟବସ୍ତୁ ଥିଲା ସେଇ ଏକ୍ - ଭବାନୀବାବୁଙ୍କୁ ସାକ୍ଷୀ କରି କହୁଥିଲେ, ବାପ ସିନା ମାଷ୍ଟରଟିଏ - ଚିଙ୍ଗୁଡ଼ି ମୁଣ୍ଡରେ କ'ଣ ଅବା ଥିବ - ତା'ପୁଅ ତ ପୁଣି ବି.ଏ. ପାଶ୍ କରି ଏମ୍.ଏ. ପଢୁଛି, ତାର କ'ଣ ବୁଦ୍ଧିଶୁଦ୍ଧି ନାହିଁ ? ମୁଁ ସେଦିନ କହିଲି - ଆରେ ବାବା ନବଘନ, ତୋ ବାପର ସିନା ମାଷ୍ଟ୍ରିଆ ବୁଦ୍ଧି, ତୁ ତ ଜାଣିବାଶୁଣିବା ପିଲା। ଲୋକଟିଏ ଏବେ ହେଲୁଣି, ତୁ ଟିକେ ଭାବ। ଏଇ ଗ୍ରାମୀୟ ବ୍ୟାଙ୍କ କିରାଣି ଚାକିରି ପାଇଁ ତ ହଜାର ହଜାର ଖର୍ଚ୍ଚ ହୋଇଯାଉଛି; ତୁ ଧାଇଁଛୁ ଆଇ.ଏ.ଏସ୍. ହେବା ପାଇଁ ଯେ ସେଥିପାଇଁ କେତେ ଲାଗିବ ଭାବି ଦେଖିଛୁ ? ପଚିଶ ତିରିଶ୍ ହଜାରରୁ ତ କମ୍ ନୁହେଁ। ତୋ ବାପା ଏତେ ଟଙ୍କା କେଉଁଠୁ ପାଇବ କହିଲୁ ?"

ପୁଅ କ'ଣ କହିଲା ଜାଣିଛି ? କହିଲା - "ମଉସା, ଏମିତି ଟଙ୍କା ଲାଞ୍ଚ ଦେଇ ପିଲାମାନେ ଯଦି ଆଇ.ଏ.ଏସ୍. ହେଉଥାନ୍ତେ ତ ଆପଣଙ୍କ ପରି ଧନୀ ଘରର ପୁଅମାନେ, ଶେଠ ସାହୁକାରମାନଙ୍କ ପୁଅମାନେ ସବୁ ପୋଷ୍ଟ ଜାବୁଡ଼ି ଧରନ୍ତେଣି।

ପ୍ରଫୁଲ୍ଲ ରଥ କି ମାନସ ମହାନ୍ତିଙ୍କ ପରି ପିଲାମାନେ ଆଉ ଆଇ.ଏ.ଏସ୍. ହୁଅନ୍ତେ? ଆଉ ଏ ଚାକିରି ସବୁ ପାଇଁ ଲାଞ୍ଚ ରିସପତ୍ ଚାଲିଲେ ତ ଲକ୍ଷ ଲକ୍ଷ ଟଙ୍କା କାରବାର ହେବ, ପଚିଶି ତିରିଶ ହଜାର କ'ଣ ମଉସା?"

ମୁଁ କହିଲି, "ହଉରେ ବାପା ଧାଇଁଥା ଷଣ୍ଢ ପଛେ ପଛେ, ଛିଣ୍ଡି ପଡ଼ିଲା କ୍ଷଣି ଗୋଟାଇ ଆଣିବୁ ଆଉ କରିବୁ ଭଜା - ସାକରା...ହେଃ... ହେଃ...ହେଃ...।"

ଭବାନୀବାବୁ ନିଜ ଜଙ୍ଘରେ ତାଳିମାରି ମୁଣ୍ଡ ଝୁଣି ଘରଫଟା ହସ ହସି ଯୋଡ଼ିଲେ - 'ଛେଚା...ସନ୍ତୁଳା..ହାଃ...ହାଃ...ହାଃ...'

ସାମନାରେ ବସିଥିଲେ ମହାପାତ୍ରବାବୁ। ସେ ଷ୍ଟକ୍‌ମେନ୍‌ଙ୍କୁ ଅନାଇ ଦୋହରାଇଲେ - 'ଧାଇଁଥା ଷଣ୍ଢ ପଛରେ। ଜର୍ସି ଷଣ୍ଢ, ହୋଃ...ହୋଃ...ହୋଃ...'

ନବୀନା ମାଂସ ବାଲ୍‌ଟିରୁ କଲିଜା ଖୋଜି ବି.ଡି.ଓ.ଙ୍କୁ ଦେଉଁ ଦେଉଁ ହସିଉଠି ଟିପ୍‌ପଣୀ କାଟିଲା, 'ଷଣ୍ଢ ଅଣ୍ଡର ଭଜା-ହିଃ...ହିଃ...ହିଃ...।'

ବାସୁଆ ରନ୍ଧାଶାଳାରେ ଗୋବରାକୁ ପଚାରିଲା, 'କଣ ହେଲା କିରେ ଗୋବିନ୍ଦ?' ଗୋବରା ସରପଞ୍ଚଙ୍କ ପେଟଆଡ଼ିକି ଆଙ୍ଗୁଠି ଦେଖାଇ ଜବାବ୍ ଦେଲା, 'ଦେଖ୍‌ମ ସେ ପେଟକୁ, କେମିତି ଦୋହଲୁଛି।' ଦିହେଁ ହସିଉଠିଲେ - ହିଃ...ହିଃ...ହିଃ..., ହୋଃ...ହୋଃ...ହୋଃ...

ଏପ୍ରିଲ, ମେ ଯାଇ ଜୁନ୍ ଆସିଗଲାଣି। ହାଇସ୍କୁଲ କଲେଜ ଛାତ୍ରମାନେ ଖରାଛୁଟିରେ ନିଜ ନିଜ ଗାଁମାନଙ୍କୁ ଆସିଛନ୍ତି। ବାଣୀବିହାର ବି ଖରାଛୁଟିରେ ବନ୍ଦ ବୋଲି ରାଜନୀତି ବିଜ୍ଞାନର ସ୍ନାତକୋତ୍ତର ଛାତ୍ର ନବଘନ ଏବେ ମଧ୍ୟ ଡଙ୍ଗରିଗୁଡ଼ାରେ। ତାଙ୍କ ଘନିଷ୍ଠ ବନ୍ଧୁ ଏବଂ ଅର୍ଥଶାସ୍ତ୍ରରେ ସ୍ନାତକୋତ୍ତର କରୁଥିବା ଚିଲଗୁଡ଼ାର କହ୍ନାଇ ବି ଏବେ ନିଜ ଗାଁରେ। ପିଲାମାନେ ରୁଣ୍ଡ ହୋଇଛନ୍ତି ଡଙ୍ଗରିଗୁଡ଼ା ସ୍କୁଲ ଘରେ - କ୍ୟାରମ୍ ଚେସ୍ ସାଙ୍ଗକୁ ତାସ ଖେଳର ଧୂମ ଚାଲିଛି।

ଖପରଲି ଛାତଦିଆ ପ୍ରାଇମେରୀ ସ୍କୁଲର ଗୋଟାଏ ବଡ଼ ବଖରା ଆଉ ଦି'ଟା ସାନ କୋଠରି ଭଣା ଅଧିକେ ଏ ଅଞ୍ଚଳର ପ୍ରାଣକେନ୍ଦ୍ର। ଆଖପାଖ ଗାଁରେ ଦି ତିନିଟା ମାଇନର ସ୍କୁଲ ବି ରହିଛି। ତଥାପି ନବଘନଙ୍କ ବାପା ଶିକ୍ଷକ ପୀତାମ୍ବର ଦାସଙ୍କ ଯୋଗୁ ଏଇ ପ୍ରାଇମେରୀ ସ୍କୁଲ ହିଁ ଖରାଦିନ ଛୁଟିରେ ସବୁ ପାଠୁଆ ପିଲାଙ୍କୁ ଆକର୍ଷିତ କରେ। ପୀତାମ୍ବରବାବୁ ଏଇ ସ୍କୁଲର ହେଡ୍‌ମାଷ୍ଟର, ଆଉ ଗାଁ ଡାକଘରର ପୋଷ୍ଟମାଷ୍ଟର। ସ୍କୁଲର ଗୋଟାଏ ଛୋଟ କୋଠରି ତାଙ୍କ ସ୍କୁଲ ଅଫିସ ଆଉ ଡାକଘର। ବାକୀ ଦି'ଟା କୋଠାରିରେ ପିଲାମାନେ ପଢ଼ନ୍ତି। ଗୋଟାଏ ହଲ୍ ପରି ତିଆରି ହୋଇଥିବା ବଡ଼ କୋଠରିର ବିଭିନ୍ନ କୋଣରେ ବିଭିନ୍ନ ଶିକ୍ଷା-ସ୍ତରର ଶିଶୁମାନେ ସ୍ୱର ତୋଳି ସ୍କୁଲକୁ ମୁଖରିତ କରନ୍ତି। ଏଇ ବଡ଼ କୋଠରିଟି ଖରାଛୁଟି ବେଳେ ହାଇସ୍କୁଲ

ଆଉ କଲେଜ ପାଠୁଆଙ୍କ କ୍ଲବ ରୁମ୍‌ରେ ପରିଣତ ହୁଏ। ପୀତାମ୍ବରବାବୁ ଜଣେ ଭଲ ଶିକ୍ଷକ ଆଉ ପିଲାଙ୍କ ମୂଳଦୁଆ ଭଲକରିଦିଅନ୍ତି ବୋଲି ଅନ୍ୟ ଗାଁର କେତେ ପିଲା, ତାଙ୍କ ଗାଁରେ ସ୍କୁଲ ଥିଲେ ମଧ ଏଇ ଗାଁକୁ ପଢ଼ିବାକୁ ଆସନ୍ତି। ସେ ଅଞ୍ଚଳର ଅଧିକାଂଶ ଭଲ ଛାତ୍ର ଏଇ ସ୍କୁଲର ଓଲ୍‌ଡ ବୟ। ପୀତାମ୍ବରବାବୁ ନିଜେ ପଢ଼ାପଢ଼ି ଏବଂ ଲେଖାଲେଖି କରିବାକୁ ଭଲ ପାଆନ୍ତି ବୋଲି ତାଙ୍କ ଡାକଘର ଦେଇ ଆସୁଥିବା ଖବରକାଗଜ ଏବଂ ମେଗାଜିନମାନ ଯଥା ସମୟରେ ଗ୍ରାହକମାନଙ୍କ ଅନୁମତି ନେଇ ଏଇ କ୍ଲବ୍ ରୁମ୍‌ରେ ଦେଖାଦିଏ। ପୁରୁଣା ଖବରକାଗଜ କିମ୍ବା ଓଡ଼ିଆ ତଥା ଇଂରାଜୀ ମେଗାଜିନ ପଢ଼ିବାକୁ ହେଲେ ପିଲାଏ ଏଇ ସ୍କୁଲକୁ ହିଁ ମନେ ପକାନ୍ତି। କ୍ୟାରମ ବୋର୍ଡ, ତାସ୍ ଦି'ମୁଠା, ଚେସ୍‌ବୋର୍ଡଟିଏ ପିଲାଙ୍କ ଚାନ୍ଦାରୁ ସଂଗୃହୀତ। ଖେଳ ଚାଲିଥିବା ବେଳେ ପିଲାଙ୍କ ଭିତରେ ଯୁକ୍ତିତର୍କ, ଆଲୋଚନା, ସମାଲୋଚନା ଓ ବାକ୍‌ବିତଣ୍ଡାରେ ସ୍କୁଲ ଘର ସରଗରମ ହୋଇଉଠେ। ସେଥିପାଇଁ ଖରାଦିନେ ଏଇ ଗାଁ ବି ହୁଏ ମୁଖରିତ।

କହ୍ନାଇ ଖବରକାଗଜ ପଢୁ ପଢୁ ଚିତ୍କାର କଲା – "ଆରେ ଏ ନବ, ଦେଖିଲୁଣି ଆଜିର କାଗଜ। ପୂରା ପୃଷ୍ଠାଏ ହେବ ଜଣେ ବୁଢ଼ା ରାଜନୀତିଜ୍ଞଙ୍କର ଆଉ ଜଣେ ବୁଢ଼ାଙ୍କ ପ୍ରତି କଟୂକ୍ତି।" ତିନିପୃଷ୍ଠା ଗଲା ବିଜ୍ଞାପନରେ। ଆଉ ଦି' ପୃଷ୍ଠା ବିଭିନ୍ନ ଉତ୍ସବରେ ମନ୍ତ୍ରୀମାନଙ୍କ ଭାଷଣ ଏବଂ ଖବରକାଗଜ ସମ୍ପାଦକଙ୍କ ଅଭିଭାଷଣ; ବାସ୍-ତମେ ପଇସା ଗଣି ପଢୁଥାଅ ଏ ସବୁ। ସେଥିପାଇଁ ତ ମୁଁ କହେଁ – 'ଏ ଖବରକାଗଜମାନଙ୍କୁ ଜାତୀୟକରଣ କରିଦେବା ଉଚିତ।' ନବଘନ ଚେସ୍ ବୋର୍ଡରୁ ମୁଣ୍ଡ ନ ଟେକି ଜବାବ ଦେଲା – 'ଆବେ ଜାତୀୟକରଣ କଲେ କଣ ହେବ, ସେଥିରେ ମନ୍ତ୍ରୀଙ୍କ ଭାଷଣ ଆଉ ଦି'ପୃଷ୍ଠା ବଢ଼ିଯିବ ଯାହା। ସମ୍ପାଦକଙ୍କ ଅଭିଭାଷଣ ସାଙ୍ଗକୁ ଖବରକାଗଜ ବିଭାଗ ମନ୍ତ୍ରୀଙ୍କ ଅଭିଭାଷଣ ନିତିଦିନ ପଢ଼ିବୁ।'

ରଣଧୀର ତାସ୍ ମୁଠା ଗୋଟାଉ ଗୋଟାଉ ଟିପ୍‌ପଣୀ କାଟିଲା, 'ନେଶନାଲାଇଜ୍ କରି ତାକୁ ଅଟୋନମସ୍ କରିଦେଲେ ?'

ଚେସ୍ ବୋର୍ଡକୁ ଅନାଇ ଏଥର ନବର ଉତ୍ତର – 'ଏତେ ବର୍ଷ ତ ହେଲା, ଆକାଶବାଣୀ ଅଟୋନୋମସ୍ ହେଲାଣି ? କୋଉ ମନ୍ତ୍ରୀ ହାତରୁ କ୍ଷମତା ଛାଡ଼ିବାକୁ ରାଜି, କହିଲୁ ? ଦେଶର ହିତ ଅପେକ୍ଷା ସେମାନଙ୍କ ନିଜର ଆଉ ନିଜ ଦଳର ହିତ ତ ଆଗ – ଖାଲି ଫମ୍ପା ଦୋମୁହାଁ ଭାଷଣ !'

'ଡାକ୍ ଡାକ୍ କ'ଣ ଭାବୁଛୁ – ମୁଁ ଉଆନ୍ ନୋ ଟ୍ରମ୍ପ ଡାକିଛି' କହି ଟୁନା ଯୋଡ଼ିଲା – 'ମୁଁ ସେଥିପାଇଁ କହେ ପ୍ରେସିଡେନସିଏଲ ଫର୍ମ ଅଫ ଗଭର୍ଣ୍ଣମେଣ୍ଟ ହେଲେ ଏମିତି ଭାଷଣ ସର୍ବସ୍ୱ ମନ୍ତ୍ରୀ ରହନ୍ତେନି କି ଦୋମୁହାଁ ନୀତି ବି ରହନ୍ତାନି।'

ନବ ଚେସ୍‌ବୋର୍ଡରୁ ଏଥର ମୁଣ୍ଡ ଟେକିଲା। କହିଲା - 'ଆରେ, ଗଭର୍ଣ୍ଣମେଣ୍ଟ ଢାଞ୍ଚା ବଦଳାଇବୁ ଯେ ଆମ ଲୋକଙ୍କ ମତିଗତି ଯେମିତି, ଥରେ ପ୍ରେସିଡେନସିଏଲ୍ ଫର୍ମ ଆସିଲେ ସେ ପ୍ରେସିଡେଣ୍ଟ ଆଉ ହଟିବ ନା ଗଣତନ୍ତ୍ର ରହିବ। ଆର୍ମି ବି ଯେ...'

ଏତିକିବେଳେ ହିଁ ଡାକଘର କବାଟ ଖୋଲିଲା। ଆଉ ପୀତାମ୍ବରବାବୁ ଟେଲିଗ୍ରାଫିକ୍ ଚିଠି ଖଣ୍ଡିଏ ହାତରେ ଧରି ହଲ୍ ଭିତରକୁ ପଶିଆସି ହସ ହସ ମୁହଁରେ କହିଲେ, "ତୋର ଆଇ.ଏ.ଏସ୍. ହୋଇଯାଇଛିରେ ନବ। ସର୍ବଭାରତୀୟ ଲିଷ୍ଟରେ ତୋ' ନାଁ ଦଶମ।"

ଯୁକ୍ତିତର୍କ ଖେଳ ତମାସା କ୍ଷଣକରେ ବନ୍ଦ ହୋଇଗଲା। ସମସ୍ତେ ଚିତ୍କାର କରି ଉଠିଲେ - 'ନବଭାଇ ଆଇ.ଏ.ଏସ୍. ପାଇଛି - ସାର୍ ଭୋଜି... ନବଭାଇ କଙ୍ଗ୍ରାଟ୍‌ସ୍... ଏ ନବଭାଇ...'

ପର ମୁହୂର୍ତ୍ତରେ ହିଁ ଗାଁ ଦାଣ୍ଡ ପିଲାଙ୍କ କୋଳାହଳରେ ଉଚ୍ଛୁଳି ଉଠିଲା।

ନବଭାଇ ଆଇ.ଏ.ଏସ୍... ଥ୍ରୀ ଚିୟର୍ସ ଫର ନବଭାଇ...ହିପ୍ ହିପ୍ - ନବଭାଇ ଜିନ୍ଦାବାଦ... ଜିନ୍ଦାବାଦ୍-

ସରପଞ୍ଚ ଭୋଇ ସାହେବ ଗାଁଦାଣ୍ଡ କୋଳାହଳର କାରଣ ଶୁଣି କ୍ଷଣକ ପାଇଁ ନିର୍ବାକ ହୋଇଯାଇଥିଲେ, ଆଉ ଖବରକାଗଜର ପରସଂଖ୍ୟାରେ ଭ୍ରମ ସଂଶୋଧନ ପ୍ରକାଶ ପାଇବ ବୋଲି ଆଶା ପ୍ରକାଶ କରିଥିଲେ। କିନ୍ତୁ ନବଘନଙ୍କ ସାଙ୍ଗ ପାଖରୁ ଟେଲିଗ୍ରାମ ଆସିଛି ଶୁଣି ମୁହଁର ଭାବ ପରିବର୍ତ୍ତନ କରି ସାମାନ୍ୟ ହସି ସୂଚାଇ ଦେଲେ ଯେ ତାଙ୍କ ନବ ଆଇ.ଏ.ଏସ୍. ପାଇବ ବୋଲି ସେ ବରାବର ଜାଣିଆସିଛନ୍ତି।

ସେଦିନ ସଞ୍ଜବେଳେ ଭୋଇବାବୁ ନିଜେ ପୀତାମ୍ବରବାବୁଙ୍କ ଘରକୁ ଯାଇ ଚାଳ ବାଉଁଶର ଘର ବାହାରୁ ଡାକ ଛାଡ଼ିଲେ, 'ଆରେ ବାପା ନବ...'

ନବଘନ ଘରେ ନ ଥିଲା। ସାଙ୍ଗସାଥୀମାନେ ତାକୁ ଭିଡ଼ି ନେଇଥିଲେ କେଉଁଠିକି। ପୀତାମ୍ବରବାବୁ ଘର ଭିତରୁ ବାହାରି ଆସି ଭୋଇବାବୁ ନିଜେ ଆସିଛନ୍ତି ଦେଖି ପ୍ରଥମେ ବିଶ୍ୱାସ କରିପାରିଲେନି। ତାଙ୍କ ଡାକରେ ନବଘନର ମା' ବି ଘର ଭିତରୁ ତାଙ୍କ ଛୋଟ ମାଟି ପିଣ୍ଡାକୁ ଉଠି ଆସିଲେ। ନବଘନର ଆଇ.ଏ.ଏସ୍. ପାଇଁ ଅଭିନନ୍ଦନ ଜଣାଇ ଅନେକବେଳ ସୁଖଦୁଃଖ ହେଲା ପରେ ଭୋଇବାବୁ ଜଣାଇଦେଲେ ଯେ ନବଘନର ବାହାଘର ଦାୟିତ୍ୱ ଏବେ ପୂରାପୂରି ତାଙ୍କ ଉପରେ।

ପୀତାମ୍ବରବାବୁ ଓ ତାଙ୍କ ପତ୍ନୀ ସ୍ୱୀ ଉଲ୍ଲସିତ ମନରେ ଜବାବ ଦେଇଥିଲେ - "ନବ କ'ଣ ଆପଣଙ୍କ ପୁଅ ନୁହେଁ?"

ଏ ଭିତରେ ପୁଣି କେତେ ମାସ ଗଡ଼ିଗଲାଣି। ନବଘନ ମସୌରୀର ଶାସ୍ତ୍ରୀ ଏକାଡେମୀରେ। ଜୟପୁରର ଜନତା ରାଇସ ଆଣ୍ଡ ମିଲ୍‌ର ମାଲିକ ଶ୍ରୀ ରାଘବେନ୍ଦ୍ର

ଦାସ ଆସିଛନ୍ତି ଭୋଇ ସରପଞ୍ଚଙ୍କ ଘରକୁ - ତାଙ୍କ ଚିଠି ପାଇଲା ପରେ ନବଘନ ଏବଂ ତାଙ୍କ ଝିଅର ବିବାହ ପ୍ରସ୍ତାବ ସମ୍ବନ୍ଧରେ ମୁହାଁମୁହିଁ ଏବଂ ଖୋଲାଖୋଲି କଥାବାର୍ତ୍ତା କରି ସବୁ ପକ୍‌କା କରିନେବା ଉଦ୍ଦେଶ୍ୟ ନେଇ।

ଚା' ଜଳଖିଆ ପାନ ସିଗାରେଟ ପରେ ପାଣିପାଗ, ମନ୍ତ୍ରିମଣ୍ଡଳର ଅବସ୍ଥା, କିଏ ମୁଖ୍ୟମନ୍ତ୍ରୀ ହେବା ସମ୍ଭାବନା ଇତ୍ୟାଦି ସାଧାରଣ ଆଲୋଚନା ମଧ୍ୟ ସରିଗଲାଣି। ସରପଞ୍ଚ ପାଟିରେ ପାନ ଖଣ୍ଡିଏ ପୂରାଇ ଆଉ ଟିକେ ଚୂନ ଲେସିଲା ବେଳକୁ କହିଲେ - 'ଆପଣ ଜାଣନ୍ତି ରାଘବେନ୍ଦ୍ରବାବୁ, ଆମେ ଆଉ ଆମ ଦଳ କେମିତି ଯୌତୁକ-ବିରୋଧୀ। ଏଇ କୁପ୍ରଥା ଯୋଗୁ ଏବେ ଦିଲ୍ଲୀରେ କେତେ ଶାଶୁ ବୋହୂମାନଙ୍କ ଦେହରେ କିରୋସିନ ଢାଳି ନିଆଁ ଲଗାଇ ପୋଡ଼ି ମାରିଦେଲେଣି। ଆମେ ତେଣୁ ନୀତିଗତ ଭାବେ ଯୌତୁକ ପ୍ରଥାକୁ ନିଷିଦ୍ଧ କରିବାକୁ ଯାଉଛୁ। ଯୌତୁକ ଏବଂ ଦଳବଦଳ ରୋକିବା ଏବେ ଆମର ପ୍ରଥମ କାମ। ତେଣୁ ଆମ ନବର ବିବାହରେ ଯୌତୁକର ନାଁ ଗନ୍ଧ ଯେପରି ନଉଠେ।'

ରାଘବେନ୍ଦ୍ରବାବୁ ନିଜେ ମଧ୍ୟ ପାନ ଖଣ୍ଡିଏ ପାଟିରେ ଦେଉ ଦେଉ ଅତି ଖୁସିରେ ଏ ମତବାଦର ପ୍ରଶଂସା କରି ତାକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କଲେ। କହିଲେ - 'ଆପଣଙ୍କ ପରି ଅଭିଭାବକମାନେ ପଥପ୍ରଦର୍ଶକ ହେଲେ ଯାଇ ଏ କୁପ୍ରଥା ଆମ ସମାଜରୁ ହଟିଯିବ, ନ ହେଲେ ଅନେକ ଗରିବ ଘରର ଝିଅ ବାହା ହୋଇପାରିବେନି।'

ଭୋଇବାବୁ ମୁଣ୍ଡ ଟୁଙ୍ଗାରିଲେ। କହିଲେ, 'ଯୌତୁକ ରହିବ କାହିଁକି କହିଲେ? ଆମ ହିନ୍ଦୁ କୋଡ୍ ବିଲ୍ ତ ରହିଛି, ପୈତୃକ ସମ୍ପତ୍ତିରେ ପୁଅର ଯେମିତି ଅଧିକାର, ଝିଅର ବି ସେମିତି। ଝିଅ ତାର ନ୍ୟାଯ୍ୟ ପ୍ରାପ୍ୟ ପାଇବ। ଏଇ ନିଅନ୍ତୁ ଆପଣଙ୍କ କଥା - ଆପଣଙ୍କର ତ ଦି'ପୁଅ, ଆଉ ଗୋଟିଏ ଝିଅ। କୋଠ ସମ୍ପତ୍ତିର ତିନି ଭାଗରୁ ଭାଗେ ପାଇବା ପାଇଁ ଝିଅ ତ ହକ୍‌ଦାର। ସେ ତାର ନେବ। ଜୋଇଁ କାହିଁକି ପଇସାଟିଏ ବି ଦାବୀ କରିବ କହିଲେ? ଆମ ନବ ସାଙ୍ଗରେ ଆପଣଙ୍କ ଝିଅର ବାହାଘର ଯଦି ଠିକ୍ ହୋଇଯାଏ, ଭୁବନେଶ୍ୱରରେ ଝିଅ ରହିବା ପାଇଁ କୋଠାଟିଏ, ସେ କୋଠାର ଆସବାବପତ୍ର ବି ଏଆଡ଼େ ଯା'ଆସ କରିବା ପାଇଁ, ଛୋଟ ହେଉ ବଡ଼ ହେଉ, କାର୍ ଖଣ୍ଡିଏ କଣ ଆପଣ ଦେବେନି? ଆଜିକାଲି ପେଟ୍ରୋଲ ଦାମ୍ ଯେମିତି, ଆପଣଙ୍କ ପରି ବିଚକ୍ଷଣ ବ୍ୟବସାୟୀମାନେ ତ ଡିଜେଲ କାର୍ ହିଁ ଚଢୁଥିବେ। ଆପଣଙ୍କ ଝିଅ ତେଣୁ ସେ ଡିଜେଲ କାର୍‌ରୁ ହିଁ ଗୋଟାଏ ପାଇବ। ଗହଣାଗାଣ୍ଠି ତ ଘରର ମହତ ଜାଣି ଝିଅ ପିନ୍ଧିବା କଥା - ସେଥିପାଇଁ ଆଲୋଚନା କଣ? - କଣ କହୁଛନ୍ତି?'

ରାଘବେନ୍ଦ୍ରବାବୁ ସାମାନ୍ୟ ହସିଲେ। କହିଲେ, 'ସେଗୁଡ଼ାକ କଣ ଆଉ କହିବାକୁ ହୁଏ ଭୋଇବାବୁ ?'

ଏଥର ସରପଞ୍ଚ ସାହେବ ରାଇସ୍ ମିଲ୍‌ମାନଙ୍କର ଦୁରବସ୍ଥା କଥା ଉଠାଇଥିଲେ। କହିଲେ - "ଧାନ ଦର ଯାହା ହେଲାଣି, ସେ ଚଢ଼ା ଦରରେ ଧାନ କିଣି କେଉଁ ରାଇସ୍ ମିଲ୍ ଦି' ପଇସା କରିବ ? ଆଉ ମିଲ୍ ସବୁ ଯଦି ବନ୍ଦ ହୋଇଯାଏ, ଚାଷୀମାନଙ୍କ ଧାନ କିଣିବ କିଏ ? ଚାଷୀମାନେ ମରିଯିବେ ?" ତେଣୁ ତାଙ୍କ ବ୍ୟକ୍ତିଗତ ମତ ଯେ ରାଇସ ମିଲ୍‌ମାନଙ୍କଠାରୁ ଶତକଡ଼ା ୨୫ ଭାଗ ଚାଉଳ ସରକାର ନେଇ ବାକୀ ୭୫ ଭାଗ ବାହାରେ ଖୋଲାବଜାରରେ ବିକ୍ରି କରିବାକୁ ଅନୁମତି ଦେଲେ ତ ଧାନ ଆଉ ଚାଉଳ ଦର ଏମିତି ବଢ଼ିଯିବ ଯେ କିଣିଖିଆ ଲୋକେ ହଟହଟା ହୋଇ ମରିବେ। ତେଣୁ ଜିଲ୍ଲା ବାହାରକୁ ନେବା ପାଇଁ କେବଳ ମିଲ୍‌ମାଲିକମାନେ ହିଁ ଲାଇସେନ୍ସ ପାଇବା ଉଚିତ।" ରାଘବେନ୍ଦ୍ରବାବୁ ପୁଣି ଥରେ ହସି ଭୋଇ ସାହେବଙ୍କ ତୀକ୍ଷ୍ଣ ବିଚାର ବୁଦ୍ଧି ଏବଂ ରଚନାତ୍ମକ ଦୃଷ୍ଟିଭଙ୍ଗୀକୁ ପ୍ରଶଂସା କରି କହିଲେ - 'ଆପଣଙ୍କ ପରି ଲୋକସବୁ ଏମ୍.ଏଲ୍.ଏ. ହେଲେ ସିନା ସରକାରଙ୍କୁ ଆଉ ଜିଲ୍ଲା ସାହେବମାନଙ୍କୁ ଉପଯୁକ୍ତ ପରାମର୍ଶ ଦେଇପାରନ୍ତେ।'

ଏ ମନ୍ତବ୍ୟ ଶୁଣି ଭୋଇ ସାହେବ ମୁହଁ ଶୁଖାଇ ଯେତେବେଳେ କହିଲେ - ' ଦୁଇ ତିନି ଲକ୍ଷ ଖର୍ଚ୍ଚ ନ କଲେ କଣ ଏମ୍.ଏଲ୍.ଏ. ହେବା ସହଜ ରାଘବେନ୍ଦ୍ରବାବୁ !' ଉତ୍ତର ମିଳିଲା - ଦରକାର ବେଳେ ଏତିକି ଟିକେ ସାହାଯ୍ୟ କରି ନ ପାରିଲେ ତାଙ୍କ ପରି ବନ୍ଧୁ ପରି ବନ୍ଧୁ ଆଉ ରହିବେ କାହିଁକି ?

ରାଘବେନ୍ଦ୍ର ବାବୁଙ୍କ ଫେରିଯିବା ସମୟ ପାଖେଇ ଆସିଲା ଜାଣି ଭୋଇ ସାହେବ ଖବର ପଠାଇ ପୀତାମ୍ବରବାବୁଙ୍କୁ ଡକାଇ ଆଣିଥିଲେ। ରାଘବେନ୍ଦ୍ର ବାବୁଙ୍କ ଝିଅ ସଙ୍ଗରେ ନବଘନର ବିବାହ ନିର୍ଧାର୍ଯ୍ୟ ହୋଇଗଲା କହି ପୀତାମ୍ବରବାବୁ କିଛି କହିବା ପୂର୍ବରୁ ଭୋଇ ସରପଞ୍ଚ ଝିଅର କୋଷ୍ଠୀ ପଠାଇଦେବା ପାଇଁ ଅନୁରୋଧ କରୁଥିଲେ। ନମସ୍କାର ଏବଂ ପ୍ରତିନମସ୍କାର ପରେ ରାଘବେନ୍ଦ୍ରବାବୁଙ୍କ ଗାଡ଼ି ଛାଡ଼ିଦେଲା।

ପୀତାମ୍ବରବାବୁ ଆଶ୍ଚର୍ଯ୍ୟଭରା ମୁହଁରେ ଭୋଇବାବୁଙ୍କୁ ଅନାଇ କହିଲେ - 'ନବର ମତାମତ ନେଲେ ସିନା...' ବାକ୍ୟ ସମ୍ପୂର୍ଣ୍ଣ ହେବା ଆଗରୁ ହିଁ ଭୋଇ ସାହେବ କୁରୁଳି ଉଠିଥିଲେ। କହିଲେ - 'ତମ ମାଷ୍ଟ୍ରିଆ ବୁଦ୍ଧି ଗଲାନି ଭାଇନା ! ବାପ ପୁଅକୁ ଆଦେଶ ଦେବ, ନା ପୁଅ ଦେବ ବାପକୁ ନିର୍ଦ୍ଦେଶ ? କୁକୁର ତାର ଲାଙ୍ଗୁଳକୁ ହଲାଇବ ନା ଲାଙ୍ଗୁଳ ହଲେଇବ କୁକୁରକୁ ?'

ପୀତାମ୍ବରବାବୁ ଭୋଇବାବୁଙ୍କୁ ଯେମିତି ଅନାଇଥିଲେ ମନେ ହେଉଥିଲା ଭୋଇ ସାହେବ ସ୍କୁଲସମୂହର ସର୍କଲ ଇନ୍‌ସପେକ୍ଟର।

# କାକବାରତା

ଖରାଦିନିଆ ସକାଳ। ଧଳା ହାଫ୍‌ପେଣ୍ଟ, ଧଳା ଗେଞ୍ଜି, ଧଳା ମୋଜା ଆଉ ଧଳା ଜୋତାରେ ଆଭୁଷିତ ଜଣେ ଠିକ୍ ୦ ବର୍ତ୍ତୁଳ ବେଟନ ହାତରେ କ୍ଷେପି ଯାଉଛନ୍ତି। ଲାଙ୍ଗୁଳ ପରି ପଛରେ ଗୋଡ଼ାଇଥିବା ଭଦ୍ରଲୋକ ଜଣାଇ ଦେଉଛି ଯେ, ବେଟନଧାରୀ ଜଣକ ପ୍ରାତଃଭ୍ରମଣରେ ବାହାରିଥିବା କେହି ଜଣେ ଭି.ଆଇ.ପି.। ସ୍କାର୍ଟ ପିନ୍ଧା ଝିଅ ବି' ଜଣ ଛାତି ଫୁଲାଇ ସାଇକେଲ ଉପରେ ଚକ୍‌କର ମାରୁଛନ୍ତି। ଢିଲା ପାଇଜାମା - ଢିଲା କାମିଜଧାରୀ ଦଳେ ଯୁବକ ଅଣ୍ଟା ପାଖରେ କଳାପଟି ଭିଡ଼ି ପଛକୁ ପଛ ଧାଡ଼ିବାନ୍ଧି ଧାଉଁଛନ୍ତି ରାସ୍ତାକଡ଼ରେ। ବୁଢ଼ା ଜଣେ ବାଡ଼ି ଠୁକୁଠୁକୁ କରି ଗୋଟିଗୋଟି ପାଦ ଗଣି ଆଗେଇଛନ୍ତି ମଣିଷଚଲା ବାଟରେ; ଆଉ ସାଙ୍ଗରେ ଘୋଷାରି ହେଲା ପରି ଚାଲିଛନ୍ତି ଜଣେ ବୃଦ୍ଧ ମହିଳା ବୃଦ୍ଧଙ୍କ ପତ୍ନୀ ହୋଇଥିବେ।

ପାଖ କୃଷ୍ଣଚୂଡ଼ା ଗଛରେ ନାଲି ପେନ୍ଥା ପେନ୍ଥା ଫୁଲ, ତା ପଛକୁ ଦୂରରେ ପରଦା ପରି ଏକ ବିଶାଳ ଶାଳ୍ମଳୀ ତରୁ। ଜରଦ୍‌ଗବଟିଏ ଆକାଶରେ ପଇଁତରା ମାରିବା ଆରମ୍ଭ କରିଦେଲାଣି। ରାସ୍ତାକଡ଼ ବୃକ୍ଷ ଗହଳିର ସବୁଜିମା ଭିତରୁ କୋଇଲି ତାର ରାଗିଣୀ ମେଲିଦେଇଛି।

ସାଜାହାନ୍ ରୋଡରେ ଯାନବାହନର ସୁଅ ଏଯାଏ ଛୁଟିନି। ଶାନ୍ତ କାନ୍ତ ପରିବେଶକୁ ବିଦାରି ଦେଇ କାଉଟିଏ ବାଲକୋନିର ରେଲିଂ ଉପରୁ ଆମକୁ ଅନାଇ ରଡ଼ି ଛାଡ଼ିଲା - କା... କା।

ଚା' କପ୍‌ରୁ ମୁହଁ ଟେକି ଇଏ କହିଲେ, 'ଆଜି କିଏ ଆସିବେ - କାଉ ବାରତା ଆଣିଛି।' ମୁଁ ଟିକିଏ ହସିଲି - କହିଲି, 'ଏଇଟା କଣ ଆମ ଗାଁ କାଉ ହୋଇଛି ଯେ ଭଲ ମନ୍ଦ ଖବର ଆଣିବ, ଆଉ ମୁଢ଼ି ଗଣ୍ଡିଏ କି ଚାଉଳ ପୁଞ୍ଜିଏ ପକାଇ ଦେଲେ ଖୁସିରେ ଖୁମ୍ପି ବସିବ। ଇଏ ହେଉଛି ଦିଲ୍ଲୀକା କଉଆ - ତମେ କେତେ ଦୂର ହୁସିଆର ହୋଇ ତମର ଲୁଣିଆ ବିସ୍କୁଟ ଧରିଛ ସେ କଥା ପରଖି ନେଉଛି। ଟିକିଏ ଅସାବଧାନ ଅଛ ଜାଣିଲେ ଝାମ୍ପି ନେଇଯିବେ।'

ସକାଳେ ସେମିତି କହିଦେଇଥିଲି ସିନା ଦିନସାରା ମୋ ମନ ସେଇ କଥା ଘୋଷି ହେଉଥାଏ। ସତରେ  କଣ ଗାଁ କାଉ ଆଉ ସହରିଆ କାଉ ଭିତରେ କିଛି ଫରକ

ଅଛି ? ଦିଲ୍ଲୀରେ ତ ବଣି ଚଢ଼େଇ ଦେଖୁଛି, କାପ୍ତା ଦେଖୁଛି, ଛଞ୍ଚାଣ ଦେଖୁଛି - ସେମାନେ କେଉଁ କଥାରେ ଆମ ଗାଁ ଚଢ଼େଇଙ୍କଠାରୁ ଭିନ୍ନ ? ପଶୁଙ୍କୁ ବି ଦେଖୁଛି - ବଳଦ, ମହିଷି, କୁକୁର, ବିଲେଇ। ସମସ୍ତେ ଗାଁରେ ଯେମିତି, ଏଇଠି ବି ସେମିତି - ସମାନ ଲଗିଲା।

ହାତୀ କଥା ମନେ ପଡ଼ିଲା। ପଶୁ-ରାଇଜର ମଉଡ଼ମଣି ସିଏ। ସେ ହାତୀମାନଙ୍କ ଭିତରେ କଣ କିଛି ପାର୍ଥକ୍ୟ ଅଛି ?

ସେଦିନ ହାତୀଟାଏ ଦେଖୁଥିଲି ଏଇ ସାଜାହାନ ରୋଡରେ, ଆଉ କେତେ କଥା ଭାବିଯାଇଥିଲି। ଆହା ବିଚାରା !! ହାତୀ ବନସ୍ତରେ ଥିଲେ ବି ରାଜାଙ୍କର। ଆମ ଦେଶରୁ ତ ବିଲାତୀ ରାଜା ଗଲେ; ଦେଶୀ ରାଜା, ମହାରାଜା, ନବାବ ବାଦଶାହ ସମସ୍ତେ ଗଲେ - ଏ ହାତୀର ଆଉ ରହିଲା କିଏ ? କିନ୍ତୁ କେହି କଣ ତା' କଥା ବୁଝିଲା ? ପ୍ରି ଭି ପର୍ସ୍ ନା ଫଟା ପାହୁଲା ! ନଇଲେ କେଡ଼େ ଖାନ୍ଦାନି କୁଳର ଏମାନେ। ଦେବତା ଆଉ ଅସୁରମାନେ ମିଳି ସମୁଦ୍ର ମନ୍ଥନ କଲେ ଯେ, ଲକ୍ଷ୍ମୀଙ୍କ ସଙ୍ଗରେ ବାହାରିଥିଲା ଯେଉଁ ଐରାବତ, ତାର ବଂଶଧର ଏ ହାତୀ। ଯାଙ୍କ କୋଳରୁ ହିଁ ମୁଣ୍ଡଟିଏ ନେଇ ଦେବଦେବ ମହାଦେବ ଗଣେଶଙ୍କ ଦେହରେ ଥାପି ଦେଇଥିଲେ। ଗଙ୍ଗା ଯେତେବେଳେ ହିମାଳୟରେ କେଉଁଠି ହଜିଗଲେ, ଭଗୀରଥ ଅନୁରୋଧ କଲେ ବୋଲି ଯାଙ୍କର ଜଣେ ମାରିଥିଲା ତା' ଦାନ୍ତ ଯେ ହିମାଳୟରେ ସୁଡ଼ଙ୍ଗଟିଏ ହୋଇଗଲା; ଆଉ ଗଙ୍ଗା ବାହାରି ଆସିଲେ ସେ ସୁଡ଼ଙ୍ଗ ଭିତରୁ। ଯାଙ୍କ କୁଳରେ ଥିଲା ଅଶ୍ୱତ୍ଥାମା କଳିଙ୍ଗ ରଜାଙ୍କ ହାତୀ। ଯୁଦ୍ଧବେଳେ ସେ ହାତୀର ଘଣ୍ଟି-ଘାଗୁଡ଼ି ଛିଣ୍ଡିଗଲା ଯେ ବିଶାଶହେ ଯୋଜନକୁ ଆବୋରି ଧରିଥିଲା ସେ ଘାଗୁଡ଼ି। ସେ ହାତୀ ମଲାବେଳକୁ ଯୁଧିଷ୍ଠିରଙ୍କ ପରି ଧର୍ମାତ୍ମା ବି ମିଛ କହିଥିଲେ।

ସେଇ ହାତୀଙ୍କ ବଂଶଧର ଇଏ ଏଇ ଗୁଣ୍ଡୁଣି ହାତୀ। ସାଜାହାନ ରୋଡରେ ଚାଲିଥାଏ ସତେ ଯେମିତି କିଛି ଘଟିନି; ନ ହେଲେ ତା' ଅବସ୍ଥା ଯାହା - ମରଣଠୁ ସରମ ବଳିଯିବା କଥା। କିଏ ଜାଣେ ତା' ପିଠିରେ ଲପେଟି ଦେଇଥାଏ ନାଲି ଭେଲଭେଟ୍‌ର ଗୋଟିଏ ପରଦା ଯେ ସେଥିରେ ସୁନେଲି ଅକ୍ଷରରେ ଲେଖା ହୋଇଥାଏ - 'ଚ୍ୟବନପ୍ରାଶ୍' - ଅଷ୍ଟବର୍ଗଯୁକ୍ତ ଅବଲେହ। ସତେ ଯେମିତି ଛେଳିଟିଏ ଏଇ ଚ୍ୟବନପ୍ରାଶ୍ ଖାଇ ଖାଇ ଏମିତି ହାତୀ ବନିଯାଇଛି। ହାୟରେ !! ତଥାପି ସେ ହାତୀର ଲାଜ କି ସରମ। ଚାଲିଥାଏ କି ଢଙ୍ଗରେ - ହଲି ଝୁଲି, ମୁଣ୍ଡ ହଲାଇ ଶୁଣ୍ଢ ଟେକି। ଏଣେତେଣେ ଅନାଇ ଦେଉଥାଏ। ଆଖି ଦେଖି ମନେ ହେଉଥାଏ ସତେ ଯେମିତି ସେ ହସୁଛି - ହର୍ଣ୍ଣ ଦେଇ ଦେଇ ଆଗେଇ ଯାଉଥିବା ଟେକ୍ସି-ସ୍କୁଟର, ଟ୍ରକ୍-ବସ୍‌ମାନଙ୍କୁ କହୁଛି - 'ଆରେ ହଟ୍ - ତୁମକୁ କିଏ ପଚାରୁଛି ? ତମେ ସବୁ

କେତେ ଦୌଡ଼ିବ ଦୌଡୁଥାଅ - ପ୍ରାଣ ମୂର୍ଚ୍ଛା ଦଉଡ଼। ଆମ ସଙ୍ଗରେ କେବେ ସରି ହେବ ! ଆମେ ଦେଲୁ ହାତୀ !' ତା' ପିଠି ହାଉଦାରେ ବନ୍ଧା ହୋଇଥିବା ଦଉଡ଼ି ମୁଣ୍ଡରୁ ଦି' ପାଖରେ ଝୁଲୁଥାଏ ଗୋଟିଏ ଗୋଟିଏ ପିତଳର ଘଣ୍ଟି ଯେ, ଗୋଟିଏ ଘଣ୍ଟି ପେଟରେ ବାଡ଼େଇ ହେଲା ବେଳେ ଅନ୍ୟ ଘଣ୍ଟିଟି ଉଠିଯାଉଥାଏ ଉପରକୁ। ସେ ପୁଣି ତଳକୁ ଖସି ପେଟରେ ବାଡ଼େଇ ହେଲା ବେଳକୁ ଏଇ ଘଣ୍ଟିଟି ଉଠିଯାଏ ଉପରକୁ। ଆବାଜ ଶୁଭୁଥାଏ - 'ଡି...ଙ୍...ଡ...ଙ୍...ଡ...ଙ୍...।'

ଧାନ ଅମଳ ବେଳେ ଥରେ ଆମ ଗାଁକୁ ହାତୀଟିଏ ଯାଇଥିଲା ଖଳାକୁ ଖଳା ଧାନ ମାଗି। ସେ ବି ଏମିତି ହସୁଥିଲା - ଆଖି ଛୋଟ ଛୋଟ କରି ଶୁଣ୍ଢ ଟେକି - ଥୋମଣି ତଳକୁ ଝୁଲାଇ ଦେଇ; ଦାନ୍ତ ପଡ଼ିଯାଇଥିବା ବୁଢ଼ାବୁଢ଼ୀମାନେ ତାଙ୍କ ପାକୁଆ ପାଟି ଦେଖାଇ ଯେମିତି ହସନ୍ତି, ସେମିତି। ଆଉ ଛୁଆଙ୍କୁ ନେଇ ପିଠିରେ ବସାଉଥିଲା। ଏବେ ଗାଁର ସେ ହାତୀ ଆଉ ଦିଲ୍ଲୀ ନଗରୀର ହାତୀ ଭିତରେ ତଫାତ୍ କଣ ? ଏ ପଶୁପକ୍ଷୀମାନେ ତ ମଣିଷଙ୍କ ପରି ଦୋମୁହାଁ ନୁହନ୍ତି ଯେ ଗାଁରେ ତାଙ୍କର ଗୋଟାଏ ରୂପ ହେଲେ ସହରରେ କି ମହାନଗରୀରେ ତାଙ୍କ ସେ ରୂପ ଭିନେ ହୋଇଯିବ ! ସେମାନେ ତ ମଣିଷଙ୍କ ପରି ବହୁରୂପୀ ନୁହଁନ୍ତି ଯେ ସ୍ଥାନ-କାଳ-ପାତ୍ର ଚାହିଁ ରଙ୍ଗ ବଦଳାଉଥିବେ ! ତେଣୁ ଦିଲ୍ଲୀ କାଉ ହେଲା ବୋଲି ସେ କାଉଟି ଗାଁ କାଉଠୁ ଭିନ୍ନ ହେବ କାହିଁକି ? କାଉମାନେ ଯଦି ବାରତା ଆଣନ୍ତି - ଏ କାଉ ଅବା ବାରତା କାହିଁକି ନ ଆଣିବ ? ଆଉ ଗାଁ କାଉମାନେ କଣ ସୁବିଧା ଉଣ୍ଡି ଖାଇବା ଜିନିଷ ଝାମ୍ପି ନିଅନ୍ତି ନି ?

ତା'ପରେ ଅଜଣାତରେ ମୋର ଆଖି ଚାଲିଯାଉଥିଲା ଘର ପାଖରେ ଯା'ଆସ କରୁଥିବା ଟେକ୍‌ସି-ସ୍କୁଟର ଆଡ଼କୁ। ଆପଣାର କେହି ଯଦି ହଠାତ୍ ପହଞ୍ଚିଯାନ୍ତି।

ପାଞ୍ଚଟା ବେଳେ ମନେହେଲା ଘର ସାମନାର ବସ୍-ଷ୍ଟପ ପାଖରେ କିଏ ଜଣେ ହେ-ହେ କରି ହସିଲା। ଅତି ପରିଚିତ ସେ ହସ। ବସ-ଷ୍ଟପ ଆଡ଼କୁ ଅନାଇଲି। ଗୁଡ଼ିଏ ପୁଅ ଝିଅ ଜମା ହେଇଛନ୍ତି - ସମସ୍ତେ ଅଚିହ୍ନା। ସେ ଭିତରେ ବୁଢ଼ାଟିଏ - ଖରାଦିନରେ ବି କୋଟ୍ ଖଣ୍ଡିଏ ପିନ୍ଧିଛି - ଆଉ ମୁହଁରେ ଝୁଲୁଛି ଧୂସର ଦାଢ଼ି। ଲୁଗାପଟା ଚିହ୍ନା-ଚିହ୍ନା ମନେ ହେଉଥିଲେ ମଧ୍ୟ ଲୋକଟି ଅଚିହ୍ନା। ରାସ୍ତାରେ ଅନେକ ଧରଣର ଆବାଜ ହୁଏ - 'ଏ ହେ...ହେ..' ବି ହୁଏତ ସେ ଭିତରୁ ଗୋଟିଏ। ଏ ଯୋଉ ହର୍ଣ୍ଣଗୁଡ଼ାକ - କେତେ ଢଙ୍ଗରେ ଯେ ସେସବୁ ବାଜନ୍ତି !

ଦବିଲା ମନ ନେଇ ସଞ୍ଜବେଳେ ମୁଁ ବସିଥାଏଁ ଆମ ବସିବା କୋଠରିରେ। ମନେହେଲା କହି ଜଣେ କବାଟ ଠକ୍‌ଠକ୍ କରୁଛି। ରଘୁକୁ ଡାକିବାକୁ ଯାଉଥିଲି - କବାଟ ଖୋଲି କିଏ ଦେଖିବା ପାଇଁ। କିନ୍ତୁ ଆଉ ଥରେ ଯେତେବେଳେ ଠକ୍‌ଠକ୍

ଆବାଜ ଆସିଲା, ଉଠିଯାଇ କବାଟ ଖୋଲିଦେଲି। କେହି ଜଣେ ଅଚିହ୍ନା ବୃଦ୍ଧ ଭଦ୍ରଲୋକ। ସେ ବସ୍-ଷ୍ଟପର ବୁଢ଼ା ପରି କୋଟ୍ ପିନ୍ଧିଛନ୍ତି ଆଉ ଦାଢ଼ି ଝୁଲେଇଛନ୍ତି। ଭଦ୍ରଲୋକ ପଚାରିଲେ- 'ଇହାଁ କୋଇ ବୁଦ୍ଧଦେବ ବାବୁ... ?' ତା'ପରେ ହିଁ ସେ ଚିତ୍କାର କଲେ - 'ଭାଇନା!'

ମୁଁ ସେ ସ୍ୱର ଶୁଣି ଅବାକ୍ ହୋଇଗଲି। ଏ ଯେ ମିଶ୍ରବାବୁଙ୍କ ସ୍ୱର! ସେଇ କୋଟ୍ - ସେମିତି ଢୁଗୁଲା ଟ୍ରାଉଜର; କିନ୍ତୁ ନୂତନ ଏ ଦାଢ଼ି। ମିଶ୍ରବାବୁ ଯେ ଏମିତି ଦିଲ୍ଲୀରେ ପହଞ୍ଚିଯିବେ ମୁଁ କଳ୍ପନା ବି କରି ନ ଥିଲି। କାହିଁ ଗୋଟାଏ ଯୁଗ ପରେ ଏ ଅପ୍ରତ୍ୟାଶିତ ଦେଖା। ଖୁସିରେ ମୁଁ ରଡ଼ି ଛାଡ଼ିଲି - 'ଏ ଶୁଣୁଛ ? - ମିଶ୍ରବାବୁ!'

ମୁଁ ମିଶ୍ରବାବୁଙ୍କୁ ଭିତରକୁ ଆସିବାକୁ କହିବା ଆଗରୁ ହିଁ ସେ ହୁକୁମ ଛାଡୁଥିଲେ - 'ନାନୀ, ଗରମ ଗରମ ଦି' କପ୍ ଚା'ହେଉ।' ଆଉ ସୋଫା ଉପରେ ବସି ଯାଉଁ ଯାଉଁ ଟିପ୍‌ପଣୀ କାଟିଲେ - 'ଭାଇନା - ଏଟା ଗୋଟାଏ ସହର ନା ଭୂତକାରଖାନା! ଏଇଠି କଣ ମଣିଷ ରହନ୍ତି ଯେ ଆପଣ ରହିଛନ୍ତି ?'

ସେଇ ମିଶ୍ରବାବୁ। ସେଇ ହାତ ଚିଞ୍ଚାଡ଼ିବା ଢଙ୍ଗ। ସେଇ ଖୁସ୍ ମିଜାଜ୍। ତୁହାକୁ ତୁହା ଠେଲି ଆସୁଥିବା ହସକୁ କୌଣସିମତେ ଚାପି ରଖୁଛନ୍ତି। 'କଣ ହେଲା କି ?' ବୋଲି ମୁଁ ଯେତେବେଳେ ପଚାରିଦେଲି ସେ ବଖାଣି ବସିଲେ ତାଙ୍କ ଅନୁଭୂତି। କହିଲେ - 'ପାଞ୍ଚଟା ବେଳୁ ମୁଁ ଆପଣଙ୍କ ଘର ଖୋଜି ବୁଲୁଛି ଯେ ସାତଟା ହୋଇଗଲା। ଯାହାକୁ ପଚାରିଲେ କହୁଛି - ପତା ନହିଁ। ଏଣେ ଧାଇଁଛନ୍ତି ଯେ ସତେ ଯେମିତି କେଉଁଠି ନିଆଁ ଲାଗିଯାଇଛି। ରାସ୍କେଲଗୁଡ଼ାକ!'

ମିଶ୍ରବାବୁ ତ ରାଗିଲେ ବାଡ଼ବତା ମାନନ୍ତିନି; କଥା ବଦଳାଇବାକୁ ଯାଇ ମୁଁ ତାଙ୍କୁ ହାତଗୋଡ଼ ଧୋଇଆସିବାକୁ କହିଲି। ଚା ଖାଇସାରି ସେ ଦେହହାତ ଧୋଇବାକୁ ଗଲାବେଳେ ହିଁ ମନେ ପକାଇଲେ ଯେ ସେ ତାଙ୍କ ବାକ୍‌ସ କେଉଁ ବସ୍-ଷ୍ଟପ୍‌ରେ ଛାଡ଼ି ଦେଇଛନ୍ତି।

ବସ୍-ଷ୍ଟପ୍‌ରେ! ସେ ବାକ୍‌ସ ଆଉ ସେଇଠି ଥିବ ? ଏବେ ବି ମିଶ୍ରବାବୁ କେଡ଼େ ଅସାବଧାନ, ସେ କଥା ମୁଁ ଯେତେବେଳେ ସୂଚାଇଦେଲି ସେ ଆତ୍ମରକ୍ଷା ଢଙ୍ଗରେ କହିଲେ - ' ମୁଁ କ'ଣ କରନ୍ତି ଭାଇନା ? ଏ ଧର୍ମଛଡ଼ା ସହରରେ ତ ରିକ୍‌ସାଟାଏ ବି ମିଳେନି; ଟେକ୍‌ସି ନ ହେଲେ ସ୍କୁଟର। 'ଏ-ଏକାନବେ'କୁ ଯିବି ଶୁଣି ଅତି ପାଖ ବୋଲି ଯିବାକୁ ମଙ୍ଗିଲେନି। ମୁଁ ବାକ୍‌ସଟିଏ ବୋହି କେମିତି ଯାଆନ୍ତି କୁହନ୍ତୁ। ବାକ୍‌ସ ସେଇଠି ଛାଡ଼ିଦେଇ ଖୋଲି ହେଣ୍ଡବ୍ୟାଗ୍‌ଟା ଧରି 'ଏ-ଏକାନବେ'କୁ ଗଲି। ଭାବିଥିଲି ସେଇଠି ପହଞ୍ଚିଲା କ୍ଷଣି ଆପଣଙ୍କ ଚପରାସକୁ ପଠାଇଦେବି ଯେ ଯେ ଆସି ବାକ୍‌ସ ନେଇଯିବ। 'ଏ-୯୧' ଯାଇ ଦେଖିଲି, ସେଟା ଆପଣଙ୍କ ଘର ନୁହେଁ। ତା'ପରେ

'ବି-୯୧', 'ସି-୯୧'। 'ଡି-୯୧' ବାଲା କହିଲା ଯେ ସେ ଘର 'ଡି-୧-୯୧'; ଆପଣଙ୍କ ଘର 'ଡି-୨-୯୧' ହୋଇଥିବ। ତା'ପରେ ଡି-୨-୯୧କୁ ବି ଗଲି। ସେଇଠି କିଏ ଜଣେ କହିଲା - 'ଏ-ବି-୯୧' ହୋଇଥାଇପାରେ। ହେ ଭଗବାନ ! ଏ-ବି-୯୧ ଯଦି ଅଛି ବି-ସି-୯୧, ସି-ଡି-୯୧ ବି ଥାଇପାରେ ଭାବି ମୋ ମନ ଦବି ଯାଇଥିଲା। ଯା' ହେଉ ଆପଣଙ୍କୁ ପାଇଗଲି।'

ମୁଁ ଆଉ କ'ଣ କହନ୍ତି - କହିଲି 'ଭଲ କଲ। କିନ୍ତୁ କେଉଁ ବସ୍-ଷ୍ଟପ୍ ଜାଣିଲେ ସିନା ରଘୁକୁ ପଠାଇବା। ସେ ବସ୍-ଷ୍ଟପ୍ ଖୋଜୁ ଖୋଜୁ ବାକ୍ସ ଆଉ ଥିବ ?'

ବାକ୍ସ ଆଉ ଥାଇ ନ ପାରେ ଶୁଣି ମିଶ୍ରବାବୁ ଆଦୌ ଚିନ୍ତିତ ହେଲେନି। କହିଲେ - 'ହଅ - ଯିବ ତ ଯାଉ। ଯିଏ ନେବ, ସେ ପସ୍ତାଇବ। ଭିତରେ ଗଙ୍ଗାଜଳ ଲୋଟାଟାଏ ଅଛି ଆଉ ଫୁଲ ନିର୍ମାଲ୍ୟ - ଭଗବାନଙ୍କ ପ୍ରସାଦ। ଠାକୁରମାନଙ୍କ କେତେ ଫଟୋ ଚିତ୍ର ବି ଅଛି। ମୁଁ ତ ସେଗୁଡ଼ିକୁ ବାଣ୍ଟି ଦେଇଥାନ୍ତି - ଏବେ ସେ ନେବ, ସେ ବାଣ୍ଟି ଦେଉ। କିନ୍ତୁ ବିଚରା ଠକିଗଲା ବୋଲି ବାକ୍ସକୁ ଲାତ ନ ମାରିଲେ ହେଲା।' ତା'ପରେ ସେ ତାଙ୍କ ଫମ୍ପା ତାଳିମାରି କହିଲେ - 'ଜାଣିଛନ୍ତି ନା ଭାଇନା - ବୃନ୍ଦାବନରେ କେମିତି ହେଲା ? ଆମ ଓଡ଼ିଶାରୁ ଦଳେ ତୀର୍ଥଯାତ୍ରୀ ଯାଇଥାଆନ୍ତି। ସେମାନେ ଯୋଉ ମନ୍ଦିରକୁ ଯାଆନ୍ତି, ଜଣେ ଅଚିହ୍ନା ଲୋକ ତାଙ୍କ ପଛରେ ଗୋଡ଼ାଇଥାଏ। ଗୋଟାଏ ମନ୍ଦିରରେ ଏମାନେ ତଳେ ମୁଣ୍ଡ ଲଗାଇ ଦିଅଁକୁ ପ୍ରଣାମ କରୁଛନ୍ତି, ସେ ଲୋକ ଏକ ଦଳର ଜଣେ ଭଦ୍ରମହିଳାଙ୍କ ବେକରୁ ହାର ଟାଣିନେଇଗଲା। ପଛକୁ ଅନାଇଲା ବେଳକୁ ସେ କେଉଁଠି ହଜିଗଲାଣି। ସମସ୍ତେ ଟିକିଏ ପାଟିତୁଣ୍ଡ କଲେ; ଆଉ ଦୁଃଖ କଲେ ଯେ ହାରଟିଏ କିଏ ଛିଣ୍ଡାଇ ନେଇଛି। ଭଦ୍ରମହିଳାଙ୍କ କିନ୍ତୁ ଏତିକି ଦୁଃଖ ଯେ ସେ ଏଥର ଖାଲି ବେକରେ ବୁଲିବେ। ସେମାନେ ଆଉ ଗୋଟିଏ ମନ୍ଦିରକୁ ଯାଇ ସେମିତି ଦିଅଁଙ୍କ ପାଖରେ ପ୍ରଣାମ କରୁଛନ୍ତି କେହି ଜଣେ ସେ ଭଦ୍ର ମହିଳାଙ୍କ ପିଠିରେ ଦେଲା କଷିକରି ବିଧାଏ। ଭଦ୍ର ମହିଳା ମାଡ଼ ଖାଇ ଉଠିଲାବେଳକୁ ସେ ଲୋକଟି ତାଙ୍କ ହାର ତାଙ୍କ ଉପରେ ଫୋପାଡ଼ି ଦେଇ କହିଲା - 'ନକଲି ହାର ପିନ୍ଧିଛି।' ଭଦ୍ରମହିଳାଙ୍କର ମୋଟ ଲାଭ ହେଲା ଗୋଟାଏ ବିଧା,' କହି ମିଶ୍ରବାବୁ ହେ-ହେ କରି ହସିଉଠିଲେ।

ଗୋଟାଏ ଝଲକରେ ମୋର ମନେପଡ଼ିଗଲା ଯେ ପାଞ୍ଚଟା ବେଳେ ମୁଁ ଯେଉଁ 'ହେ-ହେ' ଶୁଣିଥିଲା, ଏଇ 'ହେ-ହେ' ଠିକ୍ ସେମିତି। ପଚାରିଦେଲି 'ସେ ବସ୍ ଷ୍ଟପ୍‌ରେ ଏମତି ହସିଥିଲେ ନା ନାହିଁ।'

ମିଶ୍ରବାବୁ ପ୍ରଥମେ ଗମ୍ଭୀର ହୋଇଯାଇଥିଲେ। ତା'ପରେ ହସି କହିଲେ - 'ହଁ-ହଁ, ଏଥର ମନେପଡ଼ିଲା। ଶୁଣିବେ ସେ ମଜା କଥା ? ବସ୍‌ଟି ଆସି ଆମ ଷ୍ଟପ୍‌ର

ଆଗରେ ଠିଆ ହେବାର ଯେମିତି ଉପକ୍ରମ କରିଛି, ଅପେକ୍ଷା କରିଥିବା ଚାରିପାଞ୍ଚ ଜଣ ପୁଅ ଆଉ ଝିଅ ସେ ବସ୍‌ରେ ଚଢ଼ିବା ପାଇଁ ଧାଇଁଗଲେ। ଦୁଇଜଣ ବସ୍‌ରେ ଗୋଡ଼ ଦେଇଛନ୍ତି ନା ନାହିଁ, ବସ୍ ଏଥର ସ୍ପିଡ୍ ଦେଲା। ଅନ୍ୟ ତିନିଜଣ ବସ୍ ସଙ୍ଗରେ ଥୋଡ଼ାଏ ବାଟ ଗୋଡ଼ାଇଗଲେ। ଜଣେ ପୁଣି ଚଢ଼ିବାକୁ ଚେଷ୍ଟା କଲା ଯେ ଗୋଟାଏ ଗୋଡ଼ ବସରେ, ଆଉ ଗୋଟାଏ ଗୋଡ଼ ରାସ୍ତା ଉପରେ। ଡେଇଁଡେଇଁ ଥୋଡ଼ାଏ ବାଟ ଗଲା ପରେ ଭାଗ୍ୟକୁ ପଡ଼ି ଯାଉଁ ଯାଉଁ ବଞ୍ଚିଗଲା। ମୁଁ ତାର ସେ ଡେଇଁବା ଢଙ୍ଗ ଦେଖି ନ ହସି ରହିପାରିଲିନି। ସେମାନେ ଯେତେବେଳେ ଶେଷରେ ବସ୍-ଷ୍ଟପକୁ ଫେରିଆସିଲେ କହିଲି - 'ୟଙ୍ଗ୍ ମେନ୍, ଟେକ୍ ଲାଇଫ ଇଜି, ଗୋଡ଼ ଖସ୍‌କେ ଚକ କା ନୀଚେ ଆ ଜାତା ତୋ...'

ମିଶ୍ରବାବୁଙ୍କ ହିନ୍ଦୀ ଶୁଣି ଇଏ ହସି ହସି ଗଡ଼ିଯାଉଥିଲେ। ମିଶ୍ରବାବୁ କିନ୍ତୁ ବେପରବାଏ ଢଙ୍ଗରେ କହିଲେ - 'ସେମାନେ ଉତ୍ତର ଦେଲେ - ଥେଙ୍କ ୟୁ ଅଙ୍କଲ!'

ବାକ୍‌ସ ଛାଡ଼ିଥିବା ଷ୍ଟପଟି ଯେ ଆମ ଘର ସାମନା ବସ୍-ଷ୍ଟପ ସେ କଥା ସ୍ପଷ୍ଟ ହୋଇଯାଇଥିଲା। ଯଥାସମୟରେ ବସ୍-ଷ୍ଟପରୁ ବାକ୍‌ସ ନେଇ ଆସି ରଘୁ ଦିଲ୍ଲୀ ମହାନଗରୀର ମାନରକ୍ଷା କରିଥିଲା।

ରାତ୍ରିଭୋଜନ ପରେ ଆମେ ଯେତେବେଳେ ପୁଣି ଥରେ ଗପସପ ଜମାଇଦେଲୁଁ, ମୁଁ ମିଶ୍ରବାବୁଙ୍କ ଝିଅ ଗୌରୀ କଥା ପଚାରିଲି। ଗୌରୀର ଦୁଇ ପୁଅ ଆଉ ତା' ବଡ଼ପୁଅ ସୁର ଭାରି ଦୁଷ୍ଟ କହି ମିଶ୍ରବାବୁ କଥା ଛଳରେ ଜଣାଇଦେଲେ ଯେ ସେ ଥରେ ସୁର ସହିତ ମହାନଦୀ ବଢ଼ିରେ ଭାସିଯାଉଥିଲେ। ସେ କଥା ଶୁଣି କ୍ଷଣକ ପାଇଁ ମୋ ଛାତିରେ ପବନ ଅଟକିଗଲା। କେଡ଼େବଡ଼ ଗୁରୁତର ଘଟଣା! - ମୁଁ ପୂର୍ଣ୍ଣ ବିବରଣୀ ଶୁଣିବାକୁ ଚାହିଁଥିଲି। ମିଶ୍ରବାବୁ ଆଉ କପେ ଚା' ମାଗି ତାଙ୍କ ଟ୍ରେଡମାର୍କା ସିଗାରେଟ୍‌ରେ ଦୁଇ ଚାରି ଟାଣ ଧୂଆଁ ଭଲ କରି ଟାଣିନେଲେ, ଆଉ ଆରମ୍ଭ କଲେ ସେ କାହାଣୀ।

ଭାଦ୍ରବ ମାସ ଶେଷ ହୋଇ ଆଶ୍ୱିନ ଆରମ୍ଭ ହେବ। ପୂର୍ଣ୍ଣିମୀ ଏବଂ ସଂକ୍ରାନ୍ତିର ଯୋଟକ ପଡୁଛି; ପୁଣି ଅଷ୍ଟଗ୍ରହକୂଟ। ଆସିଲା ବର୍ଷା ଯେ ଚାରିଦିନ ଆଉ ଚାରିରାତି। ମିନିଟିଏ ବି ସେ ବର୍ଷାର ବିରାମ ନାହିଁ। ନଈ ନାଳ ଚାରିଦିନ କାଳ ଭରି ଚାଲିଥାଏ। ବର୍ଷଣର ଧାରା ଟିକିଏ କମିଯାଇ କିଛି କାଳ ଝିପିରି ଝିପିରି ହେଲା ବେଳକୁ ପୁଣି କଚାଡ଼ି ଦିଏ ଯେ ହାତୀ ଶୁଣ୍ଢରୁ ପାଣି ଢାଳିଲା ପରି। ମହାନଦୀର ତଳମୁଣ୍ଡରୁ ଉପରମୁଣ୍ଡକୁ ଉଠି ଯେଉଁ ମେଘ ତିନିଦିନ କାଳ ଆକାଶ ଢାଙ୍କି ରଖିଥିଲା ସେ ମେଘ ଏଥର ତଳକୁ ଖସୁଥାଏ - ଚାରିଆଡ଼ ଅନ୍ଧାର କରିଦେଇ। ତେଲ, ସୁକ୍‌ତେଲ, ଅଙ୍ଗ, ଜିରା ସବୁ ନଦୀରେ ବଢ଼ି। କଥା ଅଛି ଯେ, ତେଲ ଆଉ ମହାନଦୀର ବଢ଼ି କେବେ

ଏକଜୁଟ୍ ହୁଏନି - ଏଥର ନୂଆ ଇତିହାସ ସୃଷ୍ଟି କରି ଦୁଇ ନଦୀରେ ଏକାସଙ୍ଗେ ଭୟଙ୍କର ବଢ଼ି ଦେଖାଦେଇଛି। ହୀରାକୁଦରୁ କିଛି ପାଣି ନ ଛାଡ଼ି ମଧ ବେଲଭ୍ ଗେଜ୍ ବିପଦ-ସଙ୍କେତ ଟପିଲାଣି। ସମୁଦ୍ରରେ ଜୁଆର ଉଠିଛି ଯେ ନଦୀପାଣି ସମୁଦ୍ରକୁ ଯିବ କ'ଣ, ଓଲଟା ସମୁଦ୍ର ଲହଡ଼ା ପିଟୁଛି ନଦୀ ଭିତରକୁ ମାଇଲ ମାଇଲ ଧରି। ପ୍ରତି ସେକେଣ୍ଡ ୧୨।୧୩ ଲକ୍ଷ ଘନଫୁଟ ପାଣି ନିଷ୍କାସନ କରି ନ ପାରି ମହାନଦୀ ଫୁଲି ଉଠିଲାଣି। ଭୁବନେଶ୍ୱରରୁ ଘନ ଘନ ଆଦେଶ ଆସୁଛି - ହୀରାକୁଦ ବନ୍ଧକୁ ନିବୁଜ କରିଦିଅ। ଏତିକିବେଳେ ହୀରାକୁଦ ଯଦି ତିନିଚାରି ଲକ୍ଷ ବି ଛାଡ଼ିଦିଏ କଟକ ଆଡ଼ିକି ଅବସ୍ଥା ଅସମ୍ଭାଳ ହୋଇଯିବ।

ସେପ୍ଟେମ୍ବର-ଅକ୍ଟୋବର ମାସ। ତଥାପି ହୀରାକୁଦ ଜଳଭଣ୍ଡାରର ପତ୍ତନ ହେଲାଣି ୬୨୫ ଫୁଟ। ଜଳଭଣ୍ଡାରକୁ ପାଣି ପଶୁଛି ସେକେଣ୍ଡକୁ ଦଶଲକ୍ଷ। ଅଧାଅଧି ପାଣି ନ ଛାଡ଼ିଲେ ଦିନକରେ ହିଁ ପାଣିର ପତ୍ତନ ସର୍ବୋଚ୍ଚ ସୀମା ୬୩୦କୁ ଛୁଇଁଯିବ। ମଧ୍ୟପ୍ରଦେଶରୁ ଖବର ଆସୁଛି ଯେ ମହାନଦୀ ବଢ଼ିଚାଲିଛି। ଇବ୍ ନଦୀର ଉପରମୁଣ୍ଡରୁ ବି ସେଇ ସୂଚନା। ପାଣି ନ ଛାଡ଼ିଲେ ବନ୍ଧର ଅବସ୍ଥା କଣ ହେବ କିଏ କହିବ? ତଥାପି ଉପରୁ ଆଦେଶ, କୌଣସି ମତେ ପାଣି ଆଉ ଦିନେ ଅଟକାଇ ଦିଅ- ଯେମିତି ତେଲ ନଦୀର ବଢ଼ି କମିଯାଏ।'

ସେଦିନ ସଞ୍ଜ ଆଗରୁ ହିଁ ଜଳପତ୍ତନ ଉଠିଗଲା ୬୩୦କୁ। ଚିଫ ଇଞ୍ଜିନିୟର ସରକାରୀ ଆଦେଶ ଆଡ଼ିକି ନଜର ନ ଦେଇ ହୁକୁମ ଦେଲେ- ବାଁ ଡାହାଣ ଦି' ପାଖରୁ ତଳ ଉପର ଗେଟ୍ ଅଧାଅଧି ଖୋଲିଦିଅ।

ରାତି ଆଠଟାବେଳକୁ ଜଣାପଡ଼ିଲା ଯେ ଜଳଭଣ୍ଡାରର ପତ୍ତନ ଉଠିଗଲାଣି ୬୩୧କୁ। ପବନ ଉପରୁ ତଳକୁ ପିଟୁଛି ଯେ ଭଣ୍ଡାରରେ ଲହଡ଼ି ଉଠୁଛି ଠିକ୍ ସମୁଦ୍ର ଲହରୀପରି। ଲହଡ଼ି ଉପରେ ବନ୍ଧ ଉପର ଆଉ ମାତ୍ର ଦୁଇ ତିନି ଫୁଟ। ତଥାପି ଜଳପତ୍ତନ ବଢ଼ିଚାଲିଛି। ଇଞ୍ଜିନିୟରଙ୍କ ହିସାବ - ଭଣ୍ଡାରକୁ ପାଣି ପଶୁଛି ସେକେଣ୍ଡକୁ ବାରଲକ୍ଷ ଘନଫୁଟ।

ହେ ଭଗବାନ୍! ଭଣ୍ଡାରର ନିଷ୍କାସନ ଶକ୍ତି ଯେ କେବଳ ପନ୍ଦର ଲକ୍ଷ! ଉପରୁ ଆସୁଥିବା ବଢ଼ି କମିବାର ଲକ୍ଷଣ ଦେଖାଇନି। ଏତିକିବେଳେ ଯଦି ପନ୍ଦର ଲକ୍ଷ ବଢ଼ି ପହଞ୍ଚିଯାଏ!

ରାତି ଦଶଟା ବେଳେ ହୀରାକୁଦ, ବୁର୍ଲା, ସମ୍ବଲପୁରରେ ସତର୍କ ଘଣ୍ଟି ବାଜିଉଠିଲା। ଜଣାଇଦିଆଗଲା ଯେ, ହୀରାକୁଦରୁ ସେକେଣ୍ଡକୁ ବାରଲକ୍ଷ ପାଣି ଛଡ଼ାଯାଉଛି। ସମସ୍ତେ ହୁସିଆର - ରାତିରେ ଯେକୌଣସି ସମୟରେ ହୀରାକୁଦ ପନ୍ଦର ଲକ୍ଷ ପାଣି ଛାଡ଼ିଦେଇପାରେ।

ଆପଣ ତ ଜାଣନ୍ତି, ମୁଁ ଥିଲି କେନାଲ ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର। ଆମେ ଥାଉ ହୀରାକୁଦରେ - ନଈ କୂଳର ସେ ପୁରୁଣା ବତ୍ରା ସାହେବଙ୍କ କୋଠିରେ। ଗୌରୀ ଆସିଥାଏ ତା' ଦୁଇ ପୁଅଙ୍କୁ ନେଇ - ପୂଜାଛୁଟି ହେବା ଆଗରୁ!

ଅବସ୍ଥା ଲକ୍ଷ୍ୟ କରି, ମୁଁ ସଞ୍ଜବେଳୁ ଘରେ ସମସ୍ତଙ୍କୁ ହୁସିଆର କରାଇଦେଇସାରିଥିଲି। କହିଦେଇଥିଲି ଯେ ସମସ୍ତେ ଜାଗତିଆର ରହିବେ। ବନ୍ଧ ପୂରା ପାଣି ଛାଡ଼ିଦେଲେ ତ ଘର ଭିତରକୁ ଦୁଇ ତିନି ଫୁଟ ପାଣି ଚାଲିଆସିବ - ଆମ ସମସ୍ତେ ଘର ଛାତ ଉପରକୁ ଉଠିଯିବା।

ଗୌରୀ ଆଉ ତା' ମା' ଶୋଇଥାନ୍ତି ଭିତର କୋଠରିରେ। ଗୌରୀ ପାଖରେ ଶୋଇଥାଏ ତା' ସାନ ପୁଅ। ମୋ ମନର ଉଚ୍ଚାଟ ଲକ୍ଷ୍ୟ କରି କି ଗପ ଶୁଣିବା ଆଶାରେ ତା' ବଡ଼ପୁଅ ଆଈ ପାଖରେ ନ ଶୋଇ ଚାଲିଆସିଥିଲା ମୋ ଖଟକୁ। ରାତି ଏଗାରଟାବେଳେ ମୁଁ ବାହାରକୁ ଯାଇ ଦେଖିଆସିଲି ଯେ ନଈପାଣି ଆମ ଘର ସାମନା ଲନ୍‌କୁ ବୁଡାଇ ଦେଇଛି; କିନ୍ତୁ ଜଳପତନ ରହିଛି ସ୍ଥିର। ତା'ପରେ ଆମେ ସମସ୍ତେ ଶୋଇବାକୁ ଚାଲିଗଲୁଁ। ଲଗାଏତ ବର୍ଷାର ରିମ୍‌ଝିମ୍ ଆବାଜରେ ନିଦ କେମିତି ଗାଢ଼ ହୋଇଯାଏନି ? - ଆମେ ଶୋଇ ଯାଇଥିଲୁଁ ସେମିତି ଗାଢ଼ ନିଦରେ।

ରାତି ଦୁଇ କି ତିନି ହେବ। ମୋର ମନେ ହେଲା ସମୁଦ୍ର ମାଡ଼ିଆସୁଛି; ହୁଏତ ବନ୍ଧ ପୂରା ପନ୍ଦର ଲକ୍ଷ ଛାଡ଼ିଦେଲାଣି। ମନେହେଲା ଆମ ଘର ଚାରିଆଡ଼େ ପାଣି। ଘର ଗୋଟାଏ ଟାପୁ ପାଲଟିଯାଇଛି। ତଳ ଲାଇନର ଘର ସବୁ ଅଧାଅଧି ପାଣି ଭିତରେ। ଘରୁ ଆଉ କେଉଁଠିକି ପଳାଇଯିବାର ଏବେ ଆଉ ପ୍ରଶ୍ନ ନାହିଁ। ତେବେ କ'ଣ ଗୌରୀ ଆଉ ଗୌରୀ ମା'କୁ ଉଠାଇ ଛାତ ଉପରକୁ ଚାଲିଯିବି! ଭାବୁଛି - ହଠାତ୍ ଘର ଭିତରକୁ ପାଣି ମାଡ଼ିଆସିଲା - କୋଠରି ବାହାରକୁ ବି ଏଥର ଯିବାର ଉପାୟ ନାହିଁ। ମୁଁ ଏବେ କରେ କ'ଣ ? ଖଟ ଧୀରେଧୀରେ ବୁଡ଼ିଯାଉଛି। କିନ୍ତୁ - ଇଏ କଣ! ହଠାତ୍ ଖଟ ଡଙ୍ଗା ପାଲଟିଗଲା କେମିତି ?

ହେଇ - ମୁଁ ଆଉ ସୁର ଡଙ୍ଗାରେ ଭାସୁଛୁ। ବନ୍ଧ ଫୁତ୍କାର ଛାଡ଼ିଛି ଯେ ଡଙ୍ଗା ଉପରକୁ ବୋଲି ଚାଲିଆସୁଛି ଫୁତ୍କାରର ପାଣିଛିଟିକା। ପାଣି ଏମିତି ଉଷୁମ କାହିଁକି କେଜାଣି ? ଆଉ ଟିକିଏ ଲୁଣିଆ ବି।

ଗୌରୀ ଆଉ ତା' ସାନ ପୁଅ ଗଲେ କୁଆଡ଼େ ? ଗୌରୀର ମା' ? ବିକଳ ଚିତ୍କାର କଲି ବୋଧହୁଏ। ଘର ଭିତରର ଲାଇଟ୍ ହଠାତ ଜଳିଉଠିଲା। ମୋ ନିଜ ଚିତ୍କାରରେ ମୁଁ ନିଜେ ଉଠି ପଡ଼ିଥିଲି। ଗୌରୀ ଆମ ଅବସ୍ଥା ଦେଖି କହୁଥିଲା - 'ମୁଁ ତ କହୁଥିଲି ବାପା, ଯାକୁ ପାଖରେ ଶୁଆଅନି - ଇଏ ନିଦରେ ପରିସ୍ରା କରିଦିଏ। ତମେ ଶୁଣିଲନି; ଏବେ ଅଜାନାତି ଦୁହେଁ ଭାସୁଛ!'

ମୁଁ ଥିରିଥିରି କହିଲି - 'ମହାନଦୀର ବଢ଼ିରେ !'

ମିଶ୍ରବାବୁଙ୍କ ଏ କାହାଣୀ ଶୁଣି ମୁଁ କଣ କହିବି ଭାବିପାରୁ ନ ଥିଲି। ଇଏ କିନ୍ତୁ ହସି ଦେଇ କହିଲେ - 'ହେଲା ମିଶ୍ର, ତମ ଗପ ଆଜି ଏତିକିରେ ଥାଉ। ଯାଅ ଏଥର ଶୋଇବ।' ତା'ପରେ ହଠାତ୍ ସେ ପଚାରିଦେଲେ - 'ତମେ ଆସୁଛ ବୋଲି ଆଗରୁ ଖବରଟିଏ ବି ଦେଇପାରିଲ ନି !'

ମିଶ୍ରବାବୁ ଟିକିଏ ମୁହଁ ଶୁଖାଇ ଦେଲେ; କହିଲେ - 'ତୀର୍ଥଯାତ୍ରାରେ ବାହାରିଥିବା ଲୋକ ନାନୀ! କେଉଁଠି କେତେବେଳେ ପହଞ୍ଚିବି,କୋଉ ଠିକଣା ? ତଥାପି ମୁଁ ତ ତମକୁ ଖବର ପଠାଇଥିଲି; କାଲି ସଞ୍ଜବେଳେ ହରଦ୍ୱାରର ଧର୍ମଶାଳାରେ ଥାଏ, କାଉଟିଏ ଏମିତି ବିରକ୍ତ କଲା ଯେ ମୁଁ ତା' ଆଡ଼କୁ ଫାଳେ ଲୁଚି ଫିଙ୍ଗିଦେଲି ଆଉ କହିଲି - ଯିବୁ ମହାନଗରୀ ଦିଲ୍ଲୀ - ଆଉ ନାନୀଙ୍କ ଘରେ ସନ୍ଦେଶ ଜଣାଇଦେବୁ ଯେ ମୁଁ ଆସୁଛି।' ସେ ତାଙ୍କର ମନଖୋଲା ହସର ଲହରଟିଏ ଏଥର ଛାଡ଼ିଦେଇଥିଲେ।

ଆମେ ଦିହେଁ କିନ୍ତୁ ମୁହଁ ଚୁହାଁଚୁହିଁ ହେଉଥିଲୁ।

# ଡୁକା କନ୍ଧ

'ଯିସ୍ କା ବାପ୍ ଚଢ଼େ ଘୋଡ଼ା, ଉସ୍‌କା ବେଟା ଥୋଡ଼ା ଥୋଡ଼ା' ନ୍ୟାୟରେ ମୁଁ ବି ଥିଲି ଗୋଟିଏ ଚାଷୀ। ଛ' ଫୁଟିଆ ଘୋଡ଼ା ଚଢ଼ା ଜେଜେ କେଉଁ ବିଲ ହୁଡ଼ାରେ ଠିଆ ହେଲା ବେଳେ ମୁଣ୍ଡରେ ଖଣ୍ଡିଏ ଗାମୁଛା ଭିଡିଦେଇ ତାଙ୍କ ବିରାଟ ବାଉଁଶ ଠେଙ୍ଗାରେ ଡାହାଣ ଗୋଡ ଛନ୍ଦି ହଳ କରୁଥିବା ହଳିଆମାନଙ୍କ ଲଙ୍ଗଳଗାରକୁ ଅନାଇ ଘଣ୍ଟା ଘଣ୍ଟା ଧରି ଧ୍ୟାନସ୍ଥ ହୋଇଯାଉଥିଲେ। ଆଉ ବେଳେବେଳେ 'ସେ ଲଟା ଫିଟିଗଲା', 'ସେ ବୁଦା ଛାଡ଼ି ଦେଲୁ' ବୋଲି ହୁଙ୍କାର ଛାଡୁଥିଲେ। ଚାଷକାମରେ ମୋର ସେ ଯୋଗ୍ୟତା ତ ନ ଥିଲା; 'ଥୋଡ଼ା ଥୋଡ଼ା' ଚାଷୀ ହୋଇ ମଧ୍ୟ ବିଲ ପାଇଁ ମୋର ଲୋଡ଼ା ହେଉଥିଲା ଛତା, ଜୋତା ଆଉ ଚଉକି ନ ହେଲେ ବି ଖଟୁଲିଟିଏ।

ମାର୍ଗଶିର ମାସର ଏକ ସୁନ୍ଦର ସକାଳ। ହଳିଆମାନେ ରାତ୍ରିର ପରିଶ୍ରମ ପରେ ପଖାଳ ଖାଇବାକୁ ଘରକୁ ଯାଇ ଫେରିନାହାନ୍ତି, ମୁଁ ଥାଏ ଖଳା ଜଗୁଆଳି। ଘର ପଛଆଡ ବାଉଳି ହୁଡ଼ାରେ ଠିଆ ହୋଇଥିବା ଡିମିରି ଗଛ ତଳେ ଖଟୁଲି ଗୋଟାକରେ ବସି ପାଖରେ ଥିବା ଖଳା ଜଗିବା ସାଙ୍ଗକୁ ମୁଁ କଅଁଳିଆ ଖରା ପୋଉଁଥାଏ। ତିନି ପାଖରେ ଧାନ କିଆରି। ପାଚିଲା, ଦର ପାଚିଲା ଧାନଗଛର ସୁଗନ୍ଧ ଧରି ଶୀତଳ ପବନ ବୋହିଆସୁଥାଏ। ପୂର୍ବ ସନ୍ଧ୍ୟାରେ କଟା ହୋଇଥିବା ଧାନ କିଆରିରେ ମାଳେ ଧଳା ବଗ ଖଣ୍ଡି ଉଡା ଦେଇ ପରସ୍ପରକୁ ଡେଇଁଯାଇ ପୋକଜୋକ ଗିଳୁଛନ୍ତି; ଆଉ ଅନ୍ୟ କେତେ କ୍ଷେତ ହୁଡ଼ାର ଗଛ ଆଗରେ ବସି ମୋ ପରି ଖରା ପୋଉଁଛନ୍ତି। ମୁଁ ମୋ ଅଜାଣତରେ ମନକୁ ମନ ଗୁଣୁଗୁଣାଉଛି - "ବଗ-ବଗୁଲି ଲୋ ବଗ-ବଗୁଲି," ହଠାତ୍ ମୋ ନଜର ପଡିଲା ମୋ ଆଡକୁ ଆସୁଥିବା ବୁଢ଼ା ଉପରେ। ଅନେକ ଦିନ ପରେ ଦେଖା - ତଥାପି ବୁଢ଼ାକୁ ଚିହ୍ନିବାକୁ କଷ୍ଟ ହେଲାନି। ଡାକ ପକାଇଲି - "ଡୁକା କିରେ ?"

ମୁହଁରେ ହସ ଖେଳାଇ ଡୁକା ଜବାବ ଦେଲା - "ହଁଏ ଦଦା!"

ଗୋଟିଏ ହାତରେ ଥିବା ତାର ଦା' ଆଉ ଅନ୍ୟ ହାତରେ ପୁଆଲ ବେଣ୍ଟିନିଆଁ ଜଣାଇ ଦେଉଥିଲା ସେ ଡୁକାଧାନ କାଟିବାକୁ ଆସିଛି। ତଥାପି ପଚାରିଲି - "କଣ ବାଟ ବଣା ହୋଇ ଏଆଡ଼ିକି ଚାଲିଆସିଲୁ ?"

ତୁକା ତାର ଦା' ଆଉ ନିଆଁ ବେଣ୍ଟି ତଳେ ଥୋଇ ମୁଣ୍ଡ ନୁଆଁଇ ଦି'ଥର ପ୍ରଣାମ କରିସାରିଥିଲା ଗଲାଫଟା ହସର ଲହରଟିଏ ଛାଡ଼ିଦେଇ କହିଲା - "ତମର କଥା ତ ଦଦା। ମୁଁ କଣ ଖାଲି ବାଟ ବଣା ହେଲେ ତମ ଘର ଆଡ଼ିକି ଆସେ ? ତମ ଭାଉଜ ସୋମବାରୀ ଗାଁ ଯାଇଛି ଯେ, ମୋତେ ତା' କାମ ପଡ଼ିଗଲା ବୋଲି ତ।"

ତୁକା କନ୍ଧକୁ ଦେଖିଲେ କାହିଁକି ମୋତେ ଏତେ ଖୁସି ଲାଗେ ତାର ଯଥାଯଥ କାରଣ କହିବା କଠିନ। ତା' ଦେହର ଗଠନ ହୁଏତ ମୋର କେଉଁ ପ୍ରିୟ ମହାତ୍ମାଙ୍କୁ ମନେ ପକାଇଦିଏ। ସୁରେନ୍ଦ୍ର ସାଏ, ଉପେନ୍ଦ୍ର ଭଞ୍ଜ, ଆଇନଷ୍ଟାଇନ କିଏ କେଜାଣି ? ଗୋଛାଏ ଗୋଛାଏ ମୋଟା ନିଶ ତଳକୁ ସରୁ ସରୁ ଓଠ, ଧଳା ଦାନ୍ତର ନିଖୁଣ ସେଟ୍, ଛୋଟ ଠିଆ ନାକ, ଦରବୁଜା ଜଳନ୍ତା ଆଖି, ଅଯତନିଆ ବାବୁରିବାଳ, ଆଉ ଦେହର ତମ୍ବାଳିଆ ରଙ୍ଗ। ମାଂସପେଶୀରେ ବଳିଆଣିଲା ପରି ସୁସ୍ଥ ବାଙ୍ଗରା ଦେହର ସେ ରଙ୍ଗ ନିଆଁରେ ଜଳିଲା ପରି ତେଜି ଉଠୁଥାଏ। ତୁକାର ବୟସ ଏବେ ହୁଏତ ସତୁରି ଉପରେ; କିନ୍ତୁ ପନ୍ଦର କୋଡିଏ ବର୍ଷ ତଳେ ସେ ଯେମତି ଦିଶୁଥିଲା, ଆଜି ବି ସେମିତି ଦିଶେ କେବଳ ଏଇଠି ସେଇଠି ଛିଟିକି ପଡ଼ିଥିବା କହରା ଅଥବା ଧଳା ବାଳ ପୁଞ୍ଜାଏକୁ ଛାଡ଼ିଦେଲେ।

ମୁଁ ପଚାରିଲି - "ଧାନ କାଟିବା ଭୁତିଆ ଝିଅମାନେ ତ ଆଉ ଘଣ୍ଟାଏ ନ ହେଲେ ଆସିବେନି, ତୁ ଏତେ ଆଗରୁ ଆସିଗଲୁ ଯେ..."

ତୁକା ଟିକେ ପାଖରେ ବସି ଯାଉ ଯାଉ ଅଣ୍ଟାରୁ ପିକା କାଢ଼ି ତହିଁରେ ବେଣ୍ଟି ନିଆଁ ଲଗାଇ କହିଲା - "ଏମାନେ କଣ ଜଲଦି ବାହାରିବେ ଦଦା ? ଭୁତିଆ ଧାନ ଆଗତୁରା ନେଲା ବେଳକୁ ମାଡ଼ଗୋଳ - କୋଡ଼ିଏ ଜାଗାରେ ବାହାରି ପଡ଼ିବେ ତିରିଶ। ଗାଁର ତ ସମସ୍ତେ - କାହାକୁ ମନା କରିବ ? ଧାନ କାଟି ଆସିବାକୁ ଡାକ ଦେଲେ କେହି ଶୁଣିବେନି। ଘରକୁ ଘର ବୁଲିବୁଲି ବାହାର କର। କିଏ କାହା ଘରକୁ ପାଣି ଦେବାକୁ ଯାଇଛି ତ କିଏ କାହା ଘରେ ବାସନ ମାଜୁଛି। କିଏ ଅବା ପୁଅ-ଝିଅ ଗିରସ୍ତ ପାଇଁ ଦି'ଟା ଫୁଟାଇଦେବାକୁ ଆରମ୍ଭ କରିଦେଲାଣି। ଯେଉଁମାନେ ବାହାରିଆସିବେ - ସମସ୍ତେ ଠୁଳ ନ ହେଲେ ଆମେ କାମ ଆରମ୍ଭ କରିବୁନି ବୋଲି ଅଡ଼ିବସିବେ। ଠିକା କାମ - ଜଲଦି ସାରିଦେଲେ ସିନା ଆଉ କେଉଁଠିକି ମୂଲ ଲାଗିବାକୁ ଯିବୁ। ଏ ଝଞ୍ଜଟରେ ପଶନା ବୋଲି ମୁଁ ସୋମବାରୀକୁ ମନା କରୁଥିଲି ଯେ ତମର କାମ, କେମିତି ମନା କରିବ ବୋଲି କହିଲା। ଏବେ ମୋ ଉପରେ ଜଞ୍ଜାଳ ଲଦିଦେଇ ସେ ଗଲା ନାତୁଣୀ ପାଇଁ ବର ଠିକ୍ କରି। ମୁଁ ତମ ପାଖକୁ ଆସି ନ ଥିଲି; ଆଗରୁ ଟିକେ ଆସି ଗପସପ କରିବାକୁ ମନ ଡାକୁଥିଲା।'

"ନାତୁଣୀ ପାଇଁ ବର। ତୋର କେଉଁ ନାତୁଣୀ ? ରୁନୀକୁ ବାହା ଦେବୁ ?"

"ହଁ, ଦଦା, ରୁନୀ ପାଇଁ ତ। ସରଗିପାଲିରେ ଭଲ ପିଲାଟିଏ ଅଛି ଯେ ତାକୁ ନ ଦେଖି ଦେଇଦେବୁ କେମିତି କହ ତ?"

ମୁଁ କହିଲି - "ଠିକ୍ କହୁଛୁ, ବୋହୂଗୁଡିକୁ ବି କେମିତି ବାଛିଛୁ କେଜାଣି ଘାସିର ସ୍ତ୍ରୀ ଆଉ ସୁନ୍ଦରର ସ୍ତ୍ରୀକୁ ଦେଖିଛି ସେମାନେ ତ ବେଳେବେଳେ ମୂଲଲାଗି ଆସନ୍ତି - ଚେହେରା ଯେମିତି, କାମ ବି ସେମିତି।"

ଡୁକା କହିଲା - "ହଏ ଦଦା! ଜଣକର କମାଣିରେ ଘରଯାକ ଚଳିଲେ ଆଜିକାଲି ଜୀଇଁ ହେବ କି ଦଦା? ଅକର୍ତ୍ତବ୍ୟ ପଡ଼ିଲେ ସିନା ଅଲଗା କଥା ନଇଲେ ସମସ୍ତେ ନିଜ ନିଜ ପେଟ ନ ପୋଷିଲେ ନିଜ ଲାଜ ଢାଙ୍କିବା ପାଇଁ ଧରକା ଖଣ୍ଡେ ଯୋଗାଡ଼ ନ କଲେ କେମିତି ଚଳିବ କହ ତ? ଆଗର କଥା ଅଲଗା ଥିଲା।"

"କେମିତି?"

"ହଏ ଦଦା! ଆଗେ ଜଣେ ଜଙ୍ଗଲକୁ ଗଲେ ଭାରେ ଆମ୍ବ, ପଣସ, କେନ୍ଦୂ କି ଝଡ଼େଇ ନେଇ ଆସିବ ତ ଘର ଯାକ ଖାଉ ଥାଅ, ଆଉ ବାର୍ହା କି ସମ୍ବରଟିଏ ମିଳିଗଲା ତ... ଛାଡ଼। ଏବେ ଜଙ୍ଗଲ କାହିଁ? ଯାହା ବା ଏଇଠି ସେଇଠି - ସବୁ ଠିକା। ସରକାର ତ ଦିନେ ପାଣି-ପବନକୁ ବି ଠିକା କରିଦେବେ ଦଦା!" କହି ତାଳିମାରି ହସିଉଠିଲା ଡୁକା।

"ଆଦିବାସୀଙ୍କ ପାଇଁ ତ ପାଠଶାଠ ଚାକିରିବାକିରି ସବୁ ସୁବିଧା କରି ଦେଇଛନ୍ତି ରେ।" ଡୁକା ଉତ୍ତରରେ ଖେଙ୍କାରିବା ଢଙ୍ଗରେ ଖଣ୍ଡ ହସ ଦେଇ କହିଲା - "ହୋଏ...ଗୋଟାଏ ହାତରେ ତୋଟି ଚିପି ଧରୁଛନ୍ତି; ଆଉ ଆର ହାତରେ ପିଠି ଅାଁଉସୁଛନ୍ତି। ଆମେ ତ ଜଙ୍ଗଲ-ପାହାଡ଼ର ଲୋକ। ଜଙ୍ଗଲ ପାହାଡ଼ କାଠ ବାଉଁଶ ଆମଠୁ ଛଡ଼ାଇ ନେଇ ପିଠି କେଉଁଥି ପାଇଁ ଆଉଁସୁଛନ୍ତି ଆମେ ବୁଝୁନୁ କି ଦଦା?"

ରାମାୟଣ-ମହାଭାରତର କେଉଁ ଅଜଣା ଯୁଗରୁ ବଣ ଜଙ୍ଗଲରେ ଧନୁଶର ଧରି ଶିକାର କରି ବୁଲୁଥିବା ଏହି କନ୍ଧ-ଶବରମାନଙ୍କଠାରୁ ଶିକାର କରିବା ଅଧିକାର ଛଡ଼ାଇ ନେବା ଫଳରେ ସେମାନଙ୍କ ମନରେ ଯେଉଁ ଦୁଃଖ ଆଘାତ ଲାଗିଥିବ, ତହିଁର କ୍ଷତ ହୁଏତ ଆଜି ବି କେଉଁଠି କେଉଁଠି ଶୁଖିନି; ତେଣୁ ଜଙ୍ଗଲ କଥା ଉଠାଇ ସେ ଘାଏଲ ମନରେ କଞ୍ଚା ଘା'ରେ ଆଙ୍ଗୁଠି ଗେଞ୍ଜି ତାକୁ ନ ଉସୁକାଇବା ପାଇଁ ମୁଁ କଥା ବଦଳାଇ ନେଲି; ପଚାରିଲି - "ତମ ସମାଜରେ ପରା ଧାଙ୍ଗଡ଼ା-ଧାଙ୍ଗିଡୀମାନେ ଚାନ୍ଦିନୀ ରାତିରେ ମାଦଳ ପିଟି ଢାବ ରାମତାଳି ବଜାଇ ନାଚିଲା ବେଳେ ନିଜେ ନିଜେ ଯୋଡ଼ି ବାଛି ନିଅନ୍ତି; ରୁନୀକୁ ସେମିତି ତା' ଯୋଡ଼ି ବାଛିନେବାକୁ ଛାଡ଼ିଦେଉନ?"

ଡୁକା ଏଥର ପୁଣି ଥରେ ତା ଖୁସ୍ ମିଜାଜି ଅବସ୍ଥାକୁ ଚାଲିଆସି ହସିବାକୁ ଲାଗିଲା। କହିଲା - "ନାଇଁ ଦଦା, ଡଙ୍ଗର୍ଲାର କନ୍ଧ ପରଜାମାନେ ସିନା ଏବେ ବି ସେମିତି କରନ୍ତି, ଆମେ ଚଳପଟ କନ୍ଧମାନେ ସେମିତି ବଛାବଛି କେବେଠୁ ଛାଡ଼ିଦେଲୁଣି। ତମ ସମାଜ ପରି ଆମ ସମାଜରେ ବି ଏବେ ବାପ ମା' ଅଜା ଆଇମାନେ ବର ପାଇଁ କନ୍ୟା ଠିକ୍ କରନ୍ତି ପଣ ଦିଆନିଆ ଚାଲେ। ଭୁତିଆ ଲୋକେ ଠୁଳ ହେବାକୁ ଏବେବି ଡେରି ଅଛି ଜାଣି ମୁଁ ଡୁକା ପାଖରୁ ଆଉ କିଛି ଶୁଣିବା ଆଶାରେ ପଚାରିଦେଲି - "କେବେଠୁ ତମେ ତଳପଟକୁ ଆସିଲଣି ଡୁକା?"

ଡୁକା କିଛି ସମୟ ତୁନି ରହିଗଲା। ଅଣ୍ଟିରୁ ପିକା କାଢ଼ି ବେଣ୍ଟି ନିଆଁ ଧରାଇ ଭଲ କରି ଦି' ଚାରିଥର ଧୂଆଁ ଟାଣିନେଲା; ଆଉ ତାକୁ ମାଟିରେ ଲିଭାଇ ପୁଣି ଥରେ ଅଣ୍ଟାର ଯଥା ସ୍ଥାନରେ ଖୋସି ଦେଉ ଦେଉ କହିଲା - "ଆମ ପିତୃପୁରୁଷଙ୍କ ଦେବତାଙ୍କ କଥା ଦଦା, କେଉଁଠି କହିବା କଥା ନୁହେଁ - କିନ୍ତୁ ତମେ ତ ଘରଲୋକ - ତମ ପାଖରେ କହିଲେ ଦୋଷ କଣ?" କହି ଆରମ୍ଭ କଲା ସେ କାହାଣୀ।

"ବହୁତ ଦିନ ତଳର କଥା ଦଦା ଆମ ପଣ ଅଜାର ଅଜା କିଏଁ ରୂପଲକା ମାଝି ରହୁଥିଲେ ଇନ୍ଦ୍ରାବତୀ ନଦୀର ସେପାରି ମହୁଲପାଟଣାର ଡଙ୍ଗର୍ଲା ଭିତରେ। କଲମପୁର ଘାଟି ତ ଚଢ଼ିଥିବ - ଘାଟି ଉପରୁ ଜୟପାଟନା ସହର କେଡ଼େ ଛୋଟ ଆଉ ସୁନ୍ଦର ଦିଶେ ନାଇଁ ଦଦା? ... ଆଉ ହାତୀ ନଦୀ ଦିଶେ ଖଣ୍ଡିଏ ସରୁ ଅଣ୍ଟାସୂତା ପରି। ସେ ଘାଟି ଚଢ଼ିସାରିଲା ପରେ ଆଉ କେତେ ପାହାଡ଼ିଆ ଘାଟି - ଉଠୁଥିବ ପଡୁଥିବ। କେତେ କୋଶ ବଣ-ଜଙ୍ଗଲ ଭିତରେ ଗଲେ ଦେଖାଦିଏ ଇନ୍ଦ୍ରାବତୀ ନଦୀ। ସେ ନଦୀ ପାରିହେଲେ ପୁଣି ବଣ ଜଙ୍ଗଲ ଆଉ ପାହାଡ଼। ଏମିତି ଆଠ-ଦଶଟା ଡଙ୍ଗର ଡେଇଁ ଗଲେ ଯାଇ ଆସେ ମହୁଲପଦର। ସେଇ ପଦର ଥିଲା ଆମ ପୂର୍ବପୁରୁଷଙ୍କ ଗାଁ। ଛ'ଟା ପାହାଡ଼ର ମଝିରେ ସେ ପଦର ଥାଳି ପରି। ତାକୁ ଦି'ଫାଳ କରି ବୋହିଯାଇଛି ଗଡ଼ିଆ ଝରନ୍। ବର୍ଷଯାକ ଝରନରେ ପାଣି ଯେ... ପଦରର କ୍ଷେତମାନଙ୍କରେ ଯାହା ରୋଇଲେ ବି ସୁନା ଫଳେ।

ପଦରର ଯେଉଁ ଗାଁ ସେଇ ଗାଁର ଗୌନ୍ତିଆ ଥିଲା ଖୁଟୁଲୁ ଜାକ୍‌ତିଆ ମାଝି। ଭାରୀ ବଡ ତାର ମଇଁଷି ଗୋଠ। ଦୁଇ ଚାରିଟା ଡୋଲିକୁ ଛାଡ଼ିଦେଲେ ପଦରର ସବୁ ଜମି ତାର।

ପଦରର ବେଲ-ଉଦିତ ଦିଗର ଡଙ୍ଗରିରେ ଘର ବାନ୍ଧିଥିଲା ଆମ ଅଜା କଏଁରୁ ମାଝି। ଡଙ୍ଗରର ଗଛପତ୍ର କାଟି ତହିଁରେ ନିଆଁ ଲଗାଇ ସଫା କରି ସୋରିଷ, କାନ୍ଦୁଲ, ପୋଡୁଅ ଚାଷ କରେ। ଆଉ ବର୍ଷକୁ ବର୍ଷ ପାହାଡର ଏପାଖ ସେପାଖ ହେଉଥାଏ। କଏଁରୁର ଗୋଟିଏ ବୋଲି ପୁଅ - ସୁନା ମାଝି, ରଜା ପୁଅ ପରି କୁଆଡ଼େ ସୁନ୍ଦର।

ବଲୁଆ ଯେ, ଏକା ତୀରରେ ବଡ଼ ଦନ୍ତା ବାର୍‌ହାକୁ ତଳେ ଶୁଆଇ ଦେବ - ବାଘ ଡୁରୁକା ମୁହଁରୁ ବିତଳ ସମ୍ବର ଛଡ଼ାଇ ଆଣିବ।

ଗଡ଼ିଆ ଝରନ୍‌ର ଗୋଟାଏ ଆଡ଼େ ଗୌନ୍ତିଆ ଖୁଟୁଲୁ ମାଝିର ଘର ତ ଆରପଟେ ଧାଙ୍ଗଡ଼ା-ଧାଙ୍ଗିଡ଼ୀ ଘର। ରାତିରେ ସେ ଧାଙ୍ଗଡ଼ା ଧାଙ୍ଗିଡୀ ଘରେ ମାଦଳ ବାଜିଲେ ପଦର ଆଉ ଏ ଡଙ୍ଗରମାନଙ୍କରେ ରହୁଥିବା ସବୁ ଧାଙ୍ଗଡ଼ା ଧାଙ୍ଗିଡ଼ୀ ଆସିଥାନ୍ତି ସେ ଘରକୁ। ଚଇତ ପରବ, ଫଗୁନ ପୁନି, ମାଣ୍ଡିଆ ରାଣୀ ପରି ପର୍ବପର୍ବାଣିମାନଙ୍କରେ ବୁଢ଼ାବୁଢ଼ୀ ସାନ ବଡ଼ ସମସ୍ତେ ଜମା ହୋଇଯାନ୍ତି।

ଖୁଟୁଲୁ ଗୌନ୍ତିଆର ଦୁଇଟା ପୁଅ, ଗୋଟିଏ ଝିଅ। ହେଲେ ଦୁଇଟାଯାକ ପୁଅ ମଦୁଆ-ମାତାଲ ହୋଇ ବୁଲୁଥିବେ। ଝିଅକିନ୍ତୁ ଯେମିତି ସୁନ୍ଦର, ସେମିତି କାମିକା। ଖୁଟୁଲୁ ଗୌନ୍ତିଆର ଆଉ କେତେଟା ଗାଁ; ଆଉ ସବୁ ଗାଁରେ ମହିଷି ଅଡାର୍। ସେ ଅଡାର୍‌ମାନଙ୍କୁ ଦେଖରେଖ କରି ଦହି ଘିଅ ବିକି ଟଙ୍କା ପଇସା ଗଣି ରଖିବା ପାଇଁ ସେ ଚାହୁଁ ଥିଲା ଗୋଟାଏ ଘରଜୁଆଁଇ।

"ଗୋଟେ ଫଗୁନ୍ ପୁନି ଦିନେ ବୋଲୁଚ ଦଦା - ରାତିସାରା ନାଚିନାଚି ପାହାନ୍ତିଆ ବେଳକୁ ସମସ୍ତେ ଘୁମେଇ ବସିଲେଣି; ସୁନା ରୁଖର ହାତକୁ ଧରିଲା ଆଉ କହିଲା - "ମୋତେ ଭିଆହେବୁ ରୁଖ?"

"ରୁଖ ମୁହଁକୁ ଟିକେ ତଳକୁ କରି ମାଟିରେ ତା' ଗୋଡ଼ ଆଙ୍ଗୁଠିରେ ଗାର ଟାଣୁ ଟାଣୁ ମୁରୁକି ହସି 'ବାପାକୁ କହିବୁ ବୋଇଲେ ସିନା' କହି ହାତ ଛଡ଼େଇ ପଳାଇଗଲା। ସେଦିନ ହିଁ ସୁନା ପହଞ୍ଚିଗଲା ଖୁଟୁଲୁ ଘରେ।"

"ଖୁଟୁଲୁ ସବୁ କଥା ଶୁଣିଲା। କହିଲା - 'ଭଲକଥା, ମୁଁ ବି ତୋର ପରି ଜଣେ ଖୋଜୁଥିଲି। ତୁ ରୁଖକୁ ବାହା ହେଲେ ଭଲ ହେବ। ମାତ୍ର ମୋ ଘରେ ଘର ଜୁଆଁଇ ହୋଇ ରହିବୁ, ମୋର ମହିଷି ଅଡାର ସବୁ ଦେଖରେଖ କରିବୁ।"

ସୁନା ଏ କଥାରେ ବିଗିଡ଼ି ଗଲା। କହିଲା - 'ତମ ଘରେ ଘର ଜୁଆଇଁ ହେବି ତ ମୋ ବାପ-ମା'କୁ କିଏ ଦେଖିବ?' ଖୁଟୁଲୁ ଯେତେ କହିଲା 'ମୁଁ ତାଙ୍କ ପାଇଁ ବି ଦି' ବଖରା ଘର ଆମ ଘର ପାଖରେ କରିଦେବି' ବୋଲି - ସୁନା ମଙ୍ଗିଲାନି। ବରଂ ରାଗିଗଲା। ପଚାରିଲା - 'ତୋ ଝିଅ ଲାଗି ମୁଇଁ ମୋର ବାପ ମା' କେ ପଣ ଦେବି କାଏଁ?'

ଖୁଟୁଲୁ ମୁଣ୍ଡ ହଲାଇ ଜବାବ ଦେଲା - "ପଣ କଥା କହୁଛୁ? ହେଉ ରୁଖକୁ ନେବୁ; କିନ୍ତୁ ପଣ ଦେବୁ ଦୁଇ ଭରି ସୁନା, ହଳେ ମଇଁଷି, ହଳେ ବଳଦ, ଦି'ଟା ଶଗଡ଼, ଚାଉଳ ଦି' ପସ୍ତମା, ମୁଗ ଦଶ ମାଣ, ଛେଳି ବୋଦା ଦଶଟା, ମଦ ଦଶହାଣ୍ଡି। ଏ ସବୁ ଦେଖାଇଲେ ଯାଇ ଏଥର ରୁଖର ହାତ ଛୁଇଁବୁ।"

ସୁନା ଘରକୁ ଫେରିଗଲା। ଏତେ ଦରବ ଦେବା ପାଇଁ କଏଁରୁର ସମ୍ବଳ କାହିଁ? ତା ବାପ ମା'କୁ କହି ରୁଖ ପାଖକୁ ରୁଖର ଜଣେ ସାଙ୍ଗ ମୁହଁରେ ଖବର ପଠାଇ ଦେଇ ସୁନା ବାହାରିଗଲା ଜୟପାଟଣା-ମହୁଲପାଟଣାର ରଜା ଘରକୁ। ଠିକ୍ କରିନେଇଥିଲା ଯେ, ପଣ ପାଇଁ ଟଙ୍କା ସୁନା ଠୁଳ ହେବା ଯାଏ ସେ ଚାକିରି କରିବ।

ଦିନ ପରେ ଦିନ ବିତିଗଲା - ମାସ ପରେ ମାସ ଗୋଟାଏ ବର୍ଷ ପରେ ଆଉ ଗୋଟାଏ ବର୍ଷ। କିଏ ଖବର ଆଣିଲା ସୁନା ଟଙ୍କା-ପଇସା ଧରି ଆସିଲା ବେଳେ ବାଘ ହାବୁଡ଼ରେ ପଡ଼ିଛି। ସୁନାକୁ ବାଘ ଟାଣି ନେଉଥିବା ନିଜ ଆଖିରେ ଦେଖିଛି ବୋଲି ବି ଜଣେ କହିଲା।

ରୁଖ ଦିନ ଗଣି ଗଣି ଜଗିବସିଥିଲା ସୁନାକୁ। ଖୁଟୁଲୁ ବି ରୁଖର ମନ ଜାଣି ଘର ଜୁଆଁଇଁ ରଖିବା କଥା ଉଠାଉ ନ ଥିଲା। ଏଥର କିନ୍ତୁ କଥା ଉଠିଲା। କିଛି ଦିନ କନ୍ଦାକଟା କଲା ପରେ ରୁଖ ବି ତୁନି ହେଲା; ଆଉ ତା' ବାପାର ଘର ଜୁଆଁଇଁ ରଖିବା ପ୍ରସ୍ତାବରେ ଅମଙ୍ଗ ହେଲାନି। ରୁଖର ବାହାଘର ହେଲା ଘର ଜୁଆଁଇଁ ପେଡ଼୍‌ରୁ କନ୍ଧ ସଙ୍ଗରେ।

ସେ ବାହାଘରର ମାସେ ନ ପୂରୁଣୁ ଗାଁରେ ଦେଖାଦେଲା ସୁନା। ସମସ୍ତେ ତାକୁ ଦେଖି ସୁନାର ପ୍ରେତ ଡୁମା ବୋଲି ଡରିଯାଇ ଆଗ ତାର ପାଖ ମାଡ଼ିଲେନି। କିନ୍ତୁ ପରେ ତା' କ୍ଷତ ବିକ୍ଷତ ଦେହ ଏବଂ ତୋଟି ପାଖରେ ଏବେ ବି ସମ୍ପୂର୍ଣ୍ଣ ଶୁଖି ନ ଥିବା ଘା' ଦେଖି ଜାଣିଲେ ଯେ, ସୁନା ବାଘ ମୁହଁରୁ ବଞ୍ଚିଆସିଛି। ସୁନା ତ କାହାକୁ କିଛି କହିଲାନି; କିନ୍ତୁ ସେ ଗାଁକୁ ଆସିଲା ପରେ ଆଗ ତା' ବାପା-ମା'କୁ ଭେଟି ଯେଉଁ କଥା କହିଥିଲା, ସେ କଥା ପରସ୍ପର ମୁହଁରେ ରାଷ୍ଟ୍ର ହୋଇ ଜଣାପଡ଼ିଲା ଯେ, ବାଘ ସୁନାକୁ ଘୋଷାରି ନେଲା ବେଳେ ସୁନା କିଛି ସମୟ ଅଚେତ ହୋଇଯାଇଥିଲା। ବାଘର ଦାନ୍ତ କିନ୍ତୁ ତୋଟିର ଶଙ୍ଖନଳୀରେ ନ ବାଜି ପାଖରେ ବାଜିଥିବାରୁ ତାର ଯେତେବେଳେ ଚେତା ଆସିଲା ସେ ଜାଣିପାରିଲା ବାଘ ତାକୁ ଘୋଷାରି ନେଉଛି। ବାଘ ଟିକେ ଦୂର ନେଲା ପରେ ଗୋଟାଏ ବୁଦା ପାଖରେ ପହଞ୍ଚିଛି କି ନାଇଁ, ସାମନାସାମନି ଦି'ଜଣ କନ୍ଧଙ୍କୁ ଦେଖି ସୁନାର ଦେହକୁ ତଳେ ପକାଇ ଗର୍ଜିବାକୁ ଲାଗିଲା। କନ୍ଧ ଦି'ଜଣ ବାଘର ଆଖିକୁ ଅନାଇଁ ଠିଆ ହୋଇଥାଆନ୍ତି। ସୁନାର ଧନୁ ଆଉ ଟାଙ୍ଗିଆ କେଉଁଠି ପଡ଼ିଯାଇଥାଏ। କିନ୍ତୁ ତା' ଡାହାଣ ହାତ ମୁଠାରେ ଏବେ ବି ତୀରଟିଏ ଥିଲା। ଜୀବନମୂର୍ଚ୍ଛା ସେ ତୀର ଭୁଷିଦେଲା ବାଘର ଛାତିରେ। ବାଘ ଏ ଅପ୍ରତ୍ୟାଶିତ ଆଘାତରେ ଡେଇଁଗଲା ଖଣ୍ଡେଦୂର। ଆଉ ସେଇ ମୁହୂର୍ତ୍ତରେ ହିଁ ଦୁଇ କନ୍ଧଙ୍କ ଭିତରୁ ଜଣେ ସୁନା ପାଖକୁ ଟାଙ୍ଗିଆଟାଏ ଫିଙ୍ଗି ଦେଲା। ବାଘ ଓଲଟିପଡି ସୁନା ଉପରେ କୁଦା ମାରିଲା ବେଳକୁ ବାଘର ଲକ୍ଷ୍ୟକୁ ଏଡ଼ାଇଦେଇ ଟାଙ୍ଗିଆ ଚୋଟ

ପକାଇଥିଲା ସୁନା। ବାଘ ଆଉ ଥରେ କୁଦା ମାରିଲା ବେଳକୁ ଏଥର ବି ତାକୁ ଏଡ଼ାଇ ଚୋଟ ମାରିଥିଲା। ରକ୍ତାକ୍ତ ହୋଇ ବାଘ ଏଥର ବାଘ ଝାମ୍ପିପଡ଼ିଲା ସୁନା ଉପରେ। ବାଘ ସୁନାର ଟୋଟି ଧରିବାକୁ ଚେଷ୍ଟା କଲାବେଳେ ପଛଆଡୁ ଅନ୍ୟ ଜଣେ କନ୍ଧର ଚୋଟ ପଡ଼ିଲା ବାଘ ଉପରେ। ବାଘ କେବଳ ନିଷ୍ଫଳ ଗର୍ଜନ କଲା; କିନ୍ତୁ ଆଉ ଉଠିପାରିଲାନି। ସୁନାକୁ ସେ କନ୍ଧମାନେ ତାଙ୍କ ଗାଁକୁ ବୋହି ନେଇ ଘା'ମାନଙ୍କରେ ଔଷଧ ଛାପି ସେବା-ଶୁଶ୍ରୂଷା କରିବା ଫଳରେ ସୁନା ବଞ୍ଚିଗଲା। କିନ୍ତୁ ପୁଣି ଥରେ ଠିଆ ହୋଇ ଚଲାବୁଲା କରିବାକୁ ତାକୁ ପ୍ରାୟ ତିନିମାସ ଲାଗିଯାଇଥିଲା।

ସୁନାର କଛାକାନିରେ ଯେଉଁ କେତୋଟି ସୁନା ମୋହର ବନ୍ଧା ହୋଇଥିଲା, ସେସବୁ ସେମିତି ବନ୍ଧା ହୋଇଥାଏ। ସେ ମୋହର ସବୁର ମୂଲ୍ୟ ତା' ପଣ-ଧନ ଅପେକ୍ଷା ଯଥେଷ୍ଟ ବେଶୀ। କିନ୍ତୁ ଖୁଟୁଲୁ ଘରକୁ ଯାଇ ସେ ଯେତେବେଳେ ଜାଣିଲା ଯେ ଗୁଖ ଅନ୍ୟ ଜଣକୁ ବାହା ହୋଇଗଲାଣି ଏବଂ ସେ ଏବେ ପର ସ୍ତ୍ରୀ, କିଛିଦିନ ସୁନା ପାଗଳ ପରି ଏଣେତେଣେ ଘୂରିବୁଲିଲା। ଗୋଟାଏ ରାତି ସେ ଗଡ଼ିଆ ଝରଣ୍ ଭିତରର ଚଟାଣ ଉପରେ ବସି ବସି କେତେବେଳେ ଘୁମେଇ ପଡ଼ିଛି ଜାଣି ବି ପାରିନି। ପାହାନ୍ତିଆ ବେଳକୁ ତାର ମନେହେଲା କେହି ଜଣେ ପାଖରେ ବିକଳ ହୋଇ କାନ୍ଦୁଛି। ସୁନାର ନିଦ ପୂରା ଭାଙ୍ଗିଗଲା, ସେ ଦେଖିଲା - ଗୁଖ।

ଗୁଖ ପାଖରେ ବସି ସେମିତି କଇଁକଇଁ ହୋଇ କାନ୍ଦୁଥାଏ। କେତେବେଳେ ଯେ ସେ ସୁନା ଦେହରେ ଲୋଟିପଡ଼ିଛି ସେ କଥା ତାର ଖିଆଲ ନାହିଁ। କାନ୍ଦିକାନ୍ଦି କହିଲା - 'ମୁଁ ଜାଣୁଛି ଏବେ ତୋ ପାଇଁ ମୁଁ ଜଣେ ପରସ୍ତ୍ରୀ; କିନ୍ତୁ ତୋ ପାଖରୁ ଅଲଗା ହୋଇ କେମିତି ଏଡ଼େ ଲମ୍ବା ଜୀବନ କଟାଇବିରେ ସୁନା!'

ସୁନା ବି ଅଧିର ହୋଇ ପଡ଼ିଥିଲା।

କିଛି ଦିନ ପରେ ଲୋକେ କୁହାକୁହି ହେଲେ ଯେ ସଞ୍ଜ କିମ୍ବା ପାହାନ୍ତିଆ ବେଳେ ସୁନା ଆଉ ଗୁଖ ଗଡ଼ିଆ ଝରଣ୍ ପଥର ଚଟାଣ ପାଖରେ ଭେଟାଭେଟି ହେଉଛନ୍ତି। ତା'ପରେ ହିଁ ଅଚାନକ ଦୁର୍ଘଟନାଟିଏ ଘଟିଗଲା। ସୁନା ପାହାନ୍ତିଆ ବେଳେ ଧନୁଶର ଧରି ତା' ଘରୁ ବାହାରି ଆସୁଛି, ଏକାସାଙ୍ଗରେ ତା' ଦେହରେ ଭେଦିଗଲା ଦି'ଟା ତୀର। ସୁନାର ଦେହ ସେଇଠି ହିଁ ଲୋଟିପଡ଼ିଲା।

କଏଁରୁ ମାଝି ସେ ତୀରସବୁ କାହାର - ଚିହ୍ନି ପାରିଥିଲା। ପୁଅର ମଲାଦେହକୁ ବୋହିନେଇ ନିଜ ଜମି ମଝିରେ ପୋତି ଦେଇଥିଲା ସିଏ। ଦିନସାରା ତା' ଦେହରେ ପିତୃପୁରୁଷଙ୍କ ପ୍ରେତ ଖେଳୁଥିଲେ, ଆଉ ତାର ହୋସ୍ ନ ଥିଲା। ସଞ୍ଜବେଳକୁ ସେ ତା' ସ୍ତ୍ରୀ ଗୁରୁବାରୀକୁ କହିଲା ଯେ ଜହ୍ନ ଉଇଁଲାକ୍ଷଣି ଗୁରୁବାରୀ ତା' ଖୁଡୁତାପୁଅ ଭାଇ

ଅଲ୍‌ସୁ ସଙ୍ଗରେ ମହୁଲପାଟଣାର ତଳ ପଟକୁ ଚାଲିଯିବ ଡୁଙ୍ଗୁରିପାଲିରେ ତାଙ୍କର ଯେଉଁ ଧରମପୁଅ ବଲଭଦର୍ ଗଉଡ଼ ଅଛି - ତା ଘରକୁ।

ଗୁରୁବାରୀ ବୁଝି ପାରିଥିଲା କଏଁରୁର ଉଦ୍ଦେଶ୍ୟ। ସୁନାକୁ ଯିଏ ମାରିଛି, ସେ ତାର ବଦଲା ନେବ। ବଦଲା ନ ହେଲେ ସୁନାର ପ୍ରେତ ଡୁମା ଚିରଦିନ ଡଙ୍ଗର ପର୍ବତରେ କାନ୍ଦିବୁଲିବ। ମା' ହୋଇ ସେ ମନା କରିବ ଏବେ କେମିତି ?

ଅନ୍ଧାର ପକ୍ଷ ଭଲ କରି ଅନ୍ଧାର ହୋଇନି; କିଏ ଜଣେ ସ୍ତ୍ରୀ ଲୋକ ଘର ବାହାରେ ସକଉଥିଲା ପରି ମନେହେଲାରୁ ଗୁରୁବାରୀ ବାଉଁଶ ଚାଳ କବାଟ ଖୋଲିଥିଲା। ବାହାରେ ରୁଖା। ରୁଖ ଗୁରୁବାରୀକୁ ଦେଖି ଧକେଇ ଧକେଇ କାନ୍ଦିବାକୁ ଲାଗିଲା - କହିଲା, 'ମୋ ଯୋଗୁ ତୋ ପୁଅ ମଲା; ତୁ ମୋତେ ଏବେ ଯେଉଁ ଶାସ୍ତି ଦେବୁ ଦେ।' ଗୁରୁବାରୀ କିଛି କହିବ କି ନାହିଁ, ପ୍ରଥମେ ଦୋ-ଦୋ-ପାଞ୍ଚ ହେଉଥିଲା; ଶେଷରେ କହିଲା - 'ତୋତେ ମୁଁ କ'ଣ ଶାସ୍ତି ଦେବିରେ ରୁଖ ! ଶୁଣିପାରୁଛୁ ପବନରେ ସୁନାର ନିଃଶ୍ୱାସ ? ମୁଁ ତ ଆଜି ରାତିରେ ଏ ଗାଁ ଛାଡ଼ି ଚାଲିଯାଉଛି।'

ରୁଖ ତା'ପରେ ହିଁ କାନ୍ଧରେ ଭାଙ୍ଗିପଡିଥିଲା। କହିଲା - 'ମୁଁ ସୁନାର ଛୁଆକୁପେଟରେ ଧରିଛି ତୁ ଯେଉଁ ଆଡ଼ିକି ଯିବୁ, ମୋତେ ସେଇଠିକି ନେଇ ଯା।'

କଏଁରୁ ସବୁ ଶୁଣୁଥିଲା। ବାହାରି ଆସି ରୁଖକୁ ଘର ଭିତରକୁ ଡାକିନେଲା। କହିଲା - 'ତୁ ମୋର ବୋହୂ, ତୋ ଶାଶୁ ସଙ୍ଗରେ ତଳପଟକୁ ଯଦି ଯିବୁ ଯା। ପୁଅଟିଏ ହେଲେ ଯଦି ବଞ୍ଚିବ ତା ନାଁ ଦେବୁ ଡୁକା କନ୍ଧ।'

ଶାଶୁ ବୋହୂ ତ ସେ ରାତି ଗାଁ ଛାଡ଼ି ଚାଲିଆସିଲେ। କେତେଦିନ ପରେ ଡୁଙ୍ଗରିପାଲି ପହଞ୍ଚି ବଲ୍‌ଭଦରର ବାଡ଼ିଆଡ଼ ପିଣ୍ଡାରେ ରହି କୁଲିଭୁତି କରି ଖାଇଲେ। ସତକୁ ସତ ରୁଖର ପୁଅଟିଏ ହେଲା ଯେ ତା ନାଁ ହେଲା ଡୁକା। ସେଦିନରୁ ଆମେ ଅଜାନାତି ପୁରୁଷକୁ ପୁରୁଷ ସମସ୍ତେ 'ଡୁକା' ... କହି ହସି ଉଠିଲା ଡୁକା କନ୍ଧ।

ଧାନ କାଟିବାକୁ ଆସିଥିବା ଭୁତିଆ ପୁଅଝିଅମାନେ ତାଙ୍କ ମୁଲି ଖିଆ ଡୁକାଆଡ଼କୁ ଅନାଇ ଜଲଦି ଆସିବାକୁ ଚିତ୍କାର କରୁଥିଲେ। ପର 'ରହରେ ଆଉଟିକେ ରହ, ଏଇ ଡୁକା ଯାଉଛି'ର ଉତ୍ତରରେ ସେମାନେ ଆହୁରି ରଡ଼ିବାକୁ ଲାଗିଲେ। ମୁଁ କହିଲି - 'ହେଉ, ଆଉ ଦି' ମାଣ ଧାନ ଲିଆ ଖାଇବାକୁ ନେବ ପଛକେ ଡୁକା ଟିକେ ରହୁ।' ଡୁକା ଏଥର ସେମାନଙ୍କୁ କହିଲା - 'ଯାଅ ତମେ ସେ ମହୁଲ ଗଛ ତୋଲିକୁ-ପୂରୁବଆଡୁ ଆରମ୍ଭ କରିଦିଅ - ମୁଁ ଆସୁଛି।'

"ବେଳ ଉଦ୍‌ତିରୁ ବେଳ ବୁଡ଼ତିଆଡ଼କୁ ମୁହଁ କରି ବେଳ ଉଦ୍‌ତିଆଡୁ ଆରମ୍ଭ କର' କହି ଡୁକା ମୋତେ ପୁଣି ଥରେ ଅନାଇଥିଲା। ମୁଁ ପଚାରିଲି - 'କଏଁରୁ କଣ କଲା, ନ କହି ଧାନ କାଟିଯିବୁ କେମିତି ?"

ଡୁକା ତା' ପିକାରେ ନିଆଁ ଧରାଇ ନେଇ ପୁଣି ଥରେ ଧୂଆଁ ଟାଣୁଟାଣୁ କହିଲା - 'ସେ କଥା ତ ଏବେ ଠିକ୍ ଜଣାପଡ଼ିନି ଦଦା! ଶୁଣାଶୁଣି କଥା ବୋଲ ତ। କଏଁରୁ ସେ ରାତିରେ ଜହ୍ନ ଉଇଁଲାବେଳକୁ ତାର ପିତୃପୁରୁଷର ଡୁମାମାନଙ୍କୁ ପୂଜା କରି ମନ୍ତପାଣି ପିଇ ପଲଟା-ବାଘ ହୋଇଗଲା। ରାତି ପାହାନ୍ତିଆ ବେଳକୁ ମଇଁଷି ଅଡାର୍‌ରେ ମଇଁଷି ସବୁ ହୁରୁଡ଼ି ରଡ଼ି ଛାଡୁଥିବା ଶୁଣି ଘର ଜୁଆଇଁ ପେଡ୍‌ରା ମାଝି କଥା କଣ ବୁଝିବା ପାଇଁ ସେ ଆଡିକି ଗଲାକ୍ଷଣି ମଣିଷ-ବାଘର ମୁନିଆଁ ଦାନ୍ତ ବସିଗଲା ପେଡ୍‌ରାର ଶଙ୍ଖନଳୀରେ।

ପରେ ପରେ ଖୁଟୁଲୁର ଦି'ପୁଅ ବି ବାଘ ହାବୁଡ଼ରେ ପଡ଼ିଲେ। ବାଘ କେଉଁଆଡୁ ଆସେ, କେଉଁ ସୂତ୍ରରୁ ଆକ୍ରମଣ କରେ କେହି ଜାଣିପାରନ୍ତିନି ତୀର ମାରିବେ କାହାକୁ? ଠିକ୍ ଆଲୁଅ ଅନ୍ଧାର ଛାଇଟିଏ ପରି ବେଳେବେଳେ ଫିକା ଜହ୍ନ-ଆଲୁଅରେ ଦେଖାଦିଏ - ପୁଣି ଅଦୃଶ୍ୟ ହୋଇଯାଏ।

କେହିକେହି କହନ୍ତି ଯେ ପୁଅ, ଜୁଆଇଁ ଗଲା ପରେ ଆଉ ମଇଁଷି ଅଡ଼ାର ଛାରଖାର ହେଲା ପରେ ଖୁଟୁଲୁ ସେ ଗାଁ ଛାଡ଼ି ଚାଲିଗଲା। ଆଉ କେହି କହନ୍ତି ଯେ ଖୁଟୁଲୁ ଜାଣିପାରିଥିଲା କଏଁରୁ ବାଘ ପାଲଟି ବଦଲା ନେଉଛି। ସେ ବି କୁଆଡ଼େ ତା'ପରେ ବାଘ ପାଲଟି ଯାଇ କଏଁରୁ ପଛରେ ଗୋଡ଼ାଇଗଲା। ସାତଦିନ ସାତରାତିର ଦୁଇ ପଲଟା-ବାଘ ଯୁଦ୍ଧରେ ଥରି ଉଠିଥିଲା ସେ ପର୍ବତ ଅଞ୍ଚଳ। ଯୁଦ୍ଧରେ ଦିହିଁଙ୍କି ଦିହେଁ ମଲେ ବୋଲି କହନ୍ତି।

କଏଁରୁ ପଲଟା-ବାଘ ହେଲ ସେ ପଲଟା-ବାଘକୁ ପୁଣି ଥରେ ମଣିଷ କରିବା ମନ୍ତ ଆଉ ଓଷଧ ଗୁରୁବାରୀ କେବଳ ଜାଣିଥିଲା। କଏଁରୁ ବଞ୍ଚିଥିଲେ, ଆଉ ସେ ଆସି ଡୁଙ୍ଗୁରିପାଲି ପାଖରେ ନାଦ ଛାଡ଼ିଥିଲେ ଗୁରୁବାରୀ ତାକୁ ମଣିଷ କରିଦେଇ ଥାଆନ୍ତା ସେ ବାଘ କିନ୍ତୁ ଆଉ ଆସିଲାନି। ତେଣୁ କଏଁରୁ ବାଘ ହୋଇ ମରିଗଲା ବୋଲି ବୁଝିବା କଥା ଦଦା!

'ଏବେ ବି ତମର କେହି ପଲଟା-ବାଘ ହୁଏ କି ରେ?'ର ଉତ୍ତରରେ ଡୁକା କନ୍ଧ ତାଳିମାରି ହସିଉଠିଲା। ସେ ତା' ଦା' ଆଉ ନିଆଁ ବେଣ୍ଟି ଉଠାଉ ଉଠାଉ କହିଲା - 'କଏଁରୁ ଅଜା ଆଉ ଗୁରୁବାରୀ ଆଇ ସଙ୍ଗରେ ତ ଆମ ଘରର ସେ ବିଦ୍ୟା କି ଗଲା ଦଦା। ସୁନା ମାଝିର ପୁଅ ଜନ୍ମ ହେଲା ବେଳକୁ ତ ସେ ବିଦ୍ୟା ଶିଖାଇବା ଲୋକ ମରିଗଲାଣି; ଆଉ କିଏ ଜାଣିବ? ଯାଉଛି ଦଦା, ଡେରି ହେଲାଣି' କହି ଡୁକା ମୋତେ ଓଳଗି ହେଉଥିଲା।

# ବସିବା ଅପେକ୍ଷା...

ଆପଣ କବିତା ଲେଖନ୍ତି ନା ? ବେଶ୍-ଲେଖନ୍ତୁ। ଲେଖିବା ଭଲ। କିଏ କଣ କହିଲା ନ କହିଲା ସେ ଆଡ଼ିକି ମନ ଦିଅନ୍ତୁନି। ଲୋକେ ତ କହିବେ; ନାନା କଥା କହିବେ। ସଜ ମାଛରେ ପୋକ ପକାଇବା ଲୋକ କଣ ଆମ ଏ ଦୁନିଆରେ କମ୍ ? କହିବେ - ଲେଖାଲେଖି ଗୋଟିଏ ଧରଣର ନିଶା। ଚା'କଫିଠାରୁ ଆରମ୍ଭ କରି ଧୂମପାନ ମାଦକ ଦ୍ରବ୍ୟ ସେବନ ପରି ଇଏ ବି ଗୋଟିଏ। ଅଭ୍ୟାସ ହୋଇଗଲା ତ ଛାଡ଼ିବା କଷ୍ଟ। କହିବେ ତମେ ଯଦି ଲେଖୁଛ ଜୀବନସାରା ଲେଖୁଥିବ - କଲମର ପଛପଟକୁ ପାଟିରେ ଭର୍ତ୍ତି କରିଦେଇ ଅନାଇଥିବ ଆକାଶକୁ ବଲବଲ କରି। ଆଉ କଳ୍ପନା କରି ଚାଲିଥିବ କେଉଁ ମେଘ କେମିତି ଦିଶୁଛି। କେଉଁ ମିରିଗକୁ ଗିଳିଦେବା ପାଇଁ ପଛରେ ଧାଇଁଛି କେଉଁ ଡ୍ରାଗନଠାରୁ ଆରମ୍ଭ କରି କେଉଁ ମେଘର ବରାତୀ ପ୍ରୋଶେସନରେ - କେଉଁ ମେଘ ବର ସାଜି ଅନ୍ୟ କେଉଁ ମେଘ ପିଠିରେ ବସିଛି - କେଉଁ ମେଘ କନ୍ୟା ବିଜୁଳି ଝଲକ ଖେଳାଇ ଆଗେଇ ଆସୁଛି ତାର ବରଣମାଳା ଧରି ଆକାଶରୁ ଶୁଭୁଛି ଦୁନ୍ଦୁଭି ବାଦ୍ୟ, ଝରିପଡୁଛି ଅତରଛିଟା ପର୍ଯ୍ୟନ୍ତ।

ଆଉ ଆପଣ ଯଦି ଜଣେ ଲେଖିକା - ତେବେ ତ କଥା ସରିଲା। କହିବେ ଝିଅ ଏଣେ ତାର କବିତା ଲେଖୁଛି ତ ତେଣେ ମାଛ ଭଜା ଜଳିଗଲାଣି, ଦୁଧ ଉତୁରିଗଲାଣି, ସାନ ଛୁଆ ଖଟରୁ ଗଡ଼ିପଡ଼ିବା ଉପରେ - କେଉଁଆଡ଼ିକି ଦୃଷ୍ଟି ନାହିଁ କି ନଜର ନାହିଁ। ଶ୍ୱଶୁର ଧଇଁକାଶକୁ ଶାଶୁଙ୍କ ଗଣ୍ଠିବଥା। ଔଷଧଟିକେ କି ଉଷୁମ ପାଣି ଗିଲାସେ ନାହିଁ - ନଣନ୍ଦ ଦିଅର ଭାତ ନ ଖାଇ ସ୍କୁଲ କଲେଜ ଯିବେ ପଛକେ ଝିଅ ତାର କଲମ ପାଟିରେ ଗୁଞ୍ଜି ଅନାଇଥିବ ତା' ଲେଖାକୁ, ସତେ ଯେମିତି ସଦ୍ୟଜାତ ଶିଶୁଟିଏ।

ଏମାନେ ଏମିତି ନାନା କଥା କହିବେ। ଛିଦ୍ରିଆଗୁଡାକ। ସବୁଥିରେ ଛିଦ୍ର ବାହାର କରିବେ। ତାଙ୍କର ଆଉ କାମ କ'ଣ ଯେ ? ଆପଣ ସେଆଡ଼ିକି ଧ୍ୟାନ ନ ଦେଇ ଲେଖିଯାଆନ୍ତୁ। ଆଗ କାଳରେ ସିନା ଲୋକେ କହୁଥିଲେ ଯେ ବସିବା ଅପେକ୍ଷା କାଶିବା ଭଲ - ଏବେ କଣ ସେ ଯୁଗ ଆଉ ଅଛି ଯେ, ଆପଣ ଲେଖାଲେଖି ନ କରି କାଶିବସିବେ ? ଆଜିକାଲି ସବୁ କଥା ମୂଳରେ ହେଲା ଅର୍ଥନୀତି। କାଶିବା ଦ୍ୱାରା

କିଏ କେଉଁଠି କେବେ ଆର୍ଥିକ ଲାଭ ଉଠାଇଛି ଯେ ଆପଣ ଜାଣିବେ ? - ଯଦିଓ ଅନ୍ଧାରୁଆ ବେଳ ଜାଣି ଛିଙ୍କିଦେବା ଫଳରେ 'ପଞ୍ଚକଟକରେ ରଜା ହୁଅ' ବୋଲି ଭୀଷ୍ମ ପିତାମହ କୁଆଡ଼େ ଅର୍ଜୁନଙ୍କୁ ଭୁଲରେ ଦୁର୍ଯ୍ୟୋଧନ ଭାବି ଆଶୀର୍ବାଦ ଦେଇଦେଲେ ଯେ ଯୁଧିଷ୍ଠିର ଜିଣିଗଲେ। ସେଦିନ କଣ ଆଉ ଅଛି ? ଆପଣ ଏବେ ରାତି ସାରା ଛିଙ୍କନ୍ତୁ ତ - ପଞ୍ଚକଟକ, ପାଞ୍ଚପଇସିଟିଏ ମିଳୁ। ସେ ଭୀଷ୍ମ ପିତାମହ ଅଛନ୍ତି ନା ରାଇଜ ଅଛି ଯେ ରଜା ହେବେ ? କିନ୍ତୁ ଲେଖାଜାଣିଲେ ହେଲା। ବିଶ୍ୱବିଦ୍ୟାଳୟ ପରୀକ୍ଷା ବେଳେ ପ୍ରଶ୍ନକର୍ତ୍ତା କିଏ ? ଜାଣିଲେ ଯେମିତି ସେ ସାଧାରଣତଃ କେଉଁ କେଉଁ ପ୍ରଶ୍ନ ପଚାରିବାକୁ ଭଲପାଆନ୍ତି ଜାଣି ସେସବୁ ବଛାବଛା ପ୍ରଶ୍ନର ଉତ୍ତର ପଢିଦେଲେ କାମ ଫତେ - ଏ କବିତା ଲେଖାରେ ବି ସେମିତି। କେଉଁ କେଉଁ ଭଦ୍ରଲୋକ ସେ ନୋବେଲ ପୁରସ୍କାର ବିତରଣୀ କମିଟିରେ ଅଛନ୍ତି ଜାଣିନେଇ ସେମାନେ ବିଶେଷ ଭାବରେ ଭଲ ପାଉଥିବା ରସ ଗୁଣ ଆଉ ସ୍ୱାଦକୁ କବିତାରେ ଠୁସି ଦେଇପାରିଲେ ହେଲା। ତେଣୁ ନିଶ୍ଚୟ ଲେଖନ୍ତୁ। କାବ୍ୟ ଲେଖନ୍ତୁ କବିତା ଲେଖନ୍ତୁ - ଗଳ୍ପ ପ୍ରବନ୍ଧ ରଚନା କରନ୍ତୁ କିମ୍ବା କୌଣସି ଉପନ୍ୟାସ ଲେଖାରେ ହସ୍ତ ନିବେଶ କରନ୍ତୁ। କେବଳ ଜାଣିରଖନ୍ତୁ ଯେ ବେଳେବେଳେ ଲେଖିଲା ବେଳେ ଏମିତି ବିରାଡ଼ି ଛିଙ୍କେ ଯେ, ପାଠକମାନେ ଆପଣଙ୍କ ଲେଖା ନ ପଢି ମେଗାଜିନର ସେ ପୃଷ୍ଠାକୁ ଖାଲି ଓଲଟାଇ ଦିଅନ୍ତି। ଆମ ସମାଲୋଚକମାନଙ୍କ କଥା ତ ଛାଡ଼। ଦେଖିଛନ୍ତି ନା, କୁକୁର ମୂଷାଗାତ ପାଖରେ କେମିତି ମାଟି ରାମ୍ପୁଡେ ? ଦେଖିନାହାନ୍ତି ଯଦି କୁକୁଡ଼ା ଗୋଟାକ ପରେ ଗୋଟାଏ ଗୋଡ଼ ପକାଇ 'କଥାକଲି' ନାଚ ନାଚିବା ଭଙ୍ଗୀରେ କେମିତି ମାଟି ରାମ୍ପୁଡେ, ସେଟା ତ ଦେଖିଥିବେ - ଏ ସମାଲୋଚକ ପ୍ରାଣୀମାନେ ବି ସେମିତି। ତାଙ୍କ ନାଲି କଲମର ଗୋଜିଆ ମୁନରେ ଲେଖାଟିକୁ ସେମିତି ରାମ୍ପୁଡ଼ି ପକାଇ କାଳି ଜୁଡୁବୁଡୁ କରିଦେବେ, ଆଉ ଶେଷରେ ଘୋଷଣା କରିବେ ଯେ, ଲେଖା ଭିତରେ କେଉଁଠି ମୂଷା, ମୂଷାର ଲେଣ୍ଡି ଅଥବା ଖୁଦ ଦାନାଟିଏ ବି ନାହିଁ। ଏଥିପାଇଁ ହିଁ ଡର। ଠିକ୍ ଯେତେବେଳେ ଆପଣଙ୍କ ମନେ ହେଉଥିବ ଯେ ନୋବେଲ୍ ପୁରସ୍କାରଟି ହାତ ପାଖକୁ ଆସିଗଲା - ହାତ ବଢାଇଲାବେଳକୁ ଦେଖିବେ ସେ ହଠାତ୍ ଦୂରେଇଯିବାକୁ ଆରମ୍ଭ କରିଛି - ସ୍କୁଲ ପାଠପଢ଼ା ଦିନର ପଦ୍ମ ଘୁଞ୍ଚିଯିବା ନ୍ୟାୟରେ।

ସେଥିପାଇଁ ତ ମୁଁ କହୁଛି ଯେ ଆପଣ ଯଦି କବିତା ଲେଖିବାକୁ ଚାହୁଁଛନ୍ତି ଏ ସହରଗୁଡ଼ା ଛାଡ଼ି ଆସନ୍ତୁ ଆମ ଗାଁ ଆଡ଼ିକି। ଦେଖିବେ ଆପଣଙ୍କ ଲେଖାର କେମିତି ଗୁଣାତ୍ମକ ପରିବର୍ତ୍ତନ ହୋଇଯିବ। ଆଗ ଯେପରି ଆପଣଙ୍କ ଲେଖା 'ଦିଲ୍ଲୀ କା ଲଡୁ' ପରି ବାହାରେ ସୁନ୍ଦର ଦେଖାଯାଉଥିଲେ ମଧ୍ୟ ଭିତରେ ଥିଲା ଫମ୍ପା, ଏବେ ଦେଖିବେ ସେ ଲେଖା କେମିତି ମହୁଫେଣା ପରି ରସରେ ଭରିଯିବ। ବାହାରେ ଚକ୍‌ଚକ୍ କରିବ

କେମିତି, ରସ ଭରି ସେମିତି ହେବ ଟୁମ୍ ଟୁମ୍। ମହୁଫେଣା ପାଖକୁ ଗଲେ ତ ମହୁମାଛି ବିନ୍ଧିବା ଡର ବି ଥାଏ - ଆପଣଙ୍କ ଲେଖାରୁ ପାଠକକୁ ଡରିବା ପାଇଁ କିଛି ନ ଥିବ। ଲେଖା ଭିତରକୁ ସେ ଯେତେ ଇଚ୍ଛା ସେତେ ଥର ଆଙ୍ଗୁଠି ପୂରାଇ ଆଙ୍ଗୁଠିକୁ ଚାଟୁଥାଉ; ଆପଣଙ୍କ ଲେଖା ହେବ ରସାଳ। ପାଠକ ତାକୁ ଦି' ହାତରେ ଜାବୁଡ଼ି ଧରି ମନଭରି ରସ ଚୁଷିବା କଥା।

ଗାଁରେ ଲେଖାର ଏପରି ଗୁଣାତ୍ମକ ପରିବର୍ତ୍ତନ କାହିଁକି ହୁଏ ତାର ଯଥୋଚିତ କାରଣ ମଧ୍ୟ ରହିଛି।

ଆପଣ ତ ହେଲେ ଜଣେ କବି। ତେଣୁ ଆପଣ ଜାଣନ୍ତି କବିତା ଲେଖିବା ପାଇଁ ଲୋଡ଼ା ଏକ ସ୍ଥିରମନ। ମନ ଯଦି ସ୍ଥିର ହୋଇଥିବ ସେଥିରେ ଉଦୟ ହେବ ଭାବନା - ପୁଷ୍କରିଣୀର ସ୍ଥିର ଜଳରେ ଭାକୁର ମାଛ ମୁଣ୍ଡ ଟୁଙ୍ଗାରିଲା ପରି। ଭାକୁର ମାଛ ଅଥବା ଭାବନାର ଉଦୟ ସଙ୍ଗେ ସଙ୍ଗେ ଜନ୍ମ ନେବ ତରଙ୍ଗ - ଭାବ ତରଙ୍ଗ ଗୋଟାକ ପଛକୁ ଗୋଟାଏ। କବିତାର ତରଙ୍ଗ ଛୁଟି ଚାଲିବ ପଙ୍‌କ୍ତି ପରେ ପଙ୍‌କ୍ତି। ଆପଣ କେବଳ ସେ ପଙ୍‌କ୍ତିଗୁଡିକୁ ଗୋଟାଇ ନେବେ କୌଣସି ପୁରୁଣା ଡାଏରି ପୃଷ୍ଠାରେ ଅଥବା ସ୍କୁଲ ଦିନର ଅଙ୍କଖାତାରେ ବଳି ପଡ଼ିଥିବା ଖାଲି ପୃଷ୍ଠାରେ। ଗୋଟାଇଥିବା ପଙ୍‌କ୍ତିଗୁଡିକ ହେଲା ଆପଣଙ୍କ କବିତାର ଫ୍ରେମ ବା ଛାଞ୍ଚ। ସରସ୍ୱତୀ ମେଢ଼ ତିଆରି କଲାବେଳେ କାରିଗର ଯେମିତି ପାଳବିଣ୍ଡାକୁ ଗୋଟାଏ କାଠଖମ୍ବରେ ବାନ୍ଧି ହାତଗୋଡ଼ ତିଆରି କରି ପ୍ରଥମେ ଫ୍ରେମ ସୃଷ୍ଟି କରେ ସେମିତି ଗୋଟାଏ ଫ୍ରେମ। ତା'ପରେ ସେ ଯେମିତି ଯଥାସ୍ଥାନରେ ମାଟି ଲେସି ହାତ ଗୋଡ଼ ସୃଷ୍ଟି କରେ, ଆଙ୍ଗୁଳି ଖଞ୍ଜେ, ଆଉ ଶେଷରେ ମୁଣ୍ଡଟିଏ ବନାଏ ଅଥବା ବଜାରରୁ କିଣି ଆଣି ଫ୍ରେମରେ ସେ ମୁଣ୍ଡ ଥାପିଦିଏ, ଆପଣ ବି ସେମିତି କରନ୍ତୁ। ତା'ପରେ ରଙ୍ଗ ବୋଳିବା କଥା। କବିତା ବି ଠିକ୍ ସେମିତି। ଯଦି ଛନ୍ଦ ଚାହୁଁଛନ୍ତି ଯଥାରୀତି ଶବ୍ଦ ସଂଯୋଜନା କରି ଛନ୍ଦ ମିଳାଇନିଅନ୍ତୁ। ଯତିପାତ ସାଙ୍ଗକୁ ଉପଧା ମିଳନ କରାନ୍ତୁ - ଯମକ ଅନୁପ୍ରାସ ଗେଞ୍ଜନ୍ତୁ-ଧ୍ୱନି ପାଇଁ ଶବ୍ଦର ପ୍ରତିଶବ୍ଦ ଲୋଡ଼ି ଯଥାସ୍ଥାନରେ ପୂରାଇ ଦିଅନ୍ତୁ - ଟିକିଏ ଅଳଙ୍କାର ଭର୍ତ୍ତି କରିଦିଅନ୍ତୁ। ବାସ୍ - ଆଜିକାଲି ତ ଆହୁରି ସହଜ। ଛନ୍ଦହୀନ କବିତା। ଯତି ନାହିଁ, ବୃତ୍ତି ନାହିଁ - ଖାଲି ପ୍ରତୀକ ଠୁସି ଦେବା କଥା। ମୃତ୍ୟୁକୁ ବରଫ, ପ୍ରେମକୁ ଗରମ ଚା' ଆଉ ପକୋଡ଼ି, ବାର୍ଦ୍ଧକ୍ୟକୁ ଗହମ ନଡ଼ା, କଲେଜ-ଛାତ୍ରକୁ ଛଞ୍ଚାଣ, ଅଧ୍ୟାପକଙ୍କୁ ଗୁମୁରୁଥିବା କପୋତ ଆଦି କହି ପୁରୁଣାକାଳିଆ ଶବ୍ଦ ସ୍ଥାନରେ ଆଧୁନିକ ଛାୟାମୂର୍ତ୍ତି ଆଉ ଭାବମୂର୍ତ୍ତିମାନଙ୍କୁ ପ୍ରତିଶବ୍ଦ ରୂପରେ ଥାପିଦେବା କଥା।

ଆଉ ଏ ସହରମାନଙ୍କରେ ଆପଣଙ୍କ ମନ ସ୍ଥିର ରହିବ ଯେ ଆପଣ ଦି' ଧାଡ଼ି ଭଲ କରି ଲେଖିବେ। ଦିନ-ରାତି ଢୋ-ଢୋ, ଟିଡ଼ିଙ୍ଗ୍-ଟିଡ଼ିଙ୍ଗ୍। ସକାଳ ହୋଇଛି କି ନାହିଁ ଆରମ୍ଭ ହେବ - 'ସଂଘ... ଜିନ୍ଦାବାଦ, ଆମର ଦାବୀ... ପୂରଣ ହେଉ, ପୂରଣ ହେଉ...।' ସେ ପ୍ରୋଶେସନଯାଇଛି କି ନାହିଁ- ଆସିବ 'ରଙ୍ଗବତୀ...ରେ ରଙ୍ଗବତୀ...।' ଗୀତ ବନ୍ଦ ହେଲା କ୍ଷଣି ମାଇକ୍‌ରେ ଶୁଭିବ ଆଜି କର୍ଣ୍ଣାର୍ଜ୍ଜୁନ ଗୀତିନାଟ୍ୟର ଶେଷ ରଜନୀ, ଆଗତୁରା ଟିକଟ୍ କରିନେଇ ଆପଣଙ୍କ ଘରର ସମସ୍ତଙ୍କ ପାଇଁ ସିଟ୍ ସବୁ ରିଜର୍ଭ କରି ନିଅନ୍ତୁ, ନ ହେଲେ ପଛରେ ଅନୁତାପ କରିବେ।' ତା'ପରେ - 'ଟାଣ ଭାଙ୍ଗି... ବି ତୋ ଟାଣ ଭାଙ୍ଗି...ବି' ଗାଇ ଗାଇ ସେ ଅନ୍ତର୍ଦ୍ଧାନ ହେଲାକ୍ଷଣି ଆପଣ ଠିକ୍ ଭାବୁଛନ୍ତି - 'ଯା ହେଉ ଏ ବି ଗଲା', ପର ମୁହୂର୍ତ୍ତରେ ଶୁଣିବେ - 'ଦହି କିଣ ଦହି...', ଆଉ ପଛକୁ ପଛ- 'ପା...ମ୍ପଡ଼... ପାଆଁ-ପଡ଼...।' ଆପଣ କେମିତି ଆପଣଙ୍କ ମନକୁ କବିତା କିମ୍ବା ଗଳ୍ପର ଯଥାସ୍ଥାନରେ ରଖିପାରିବେ, କହନ୍ତୁ? ପୁଷ୍କରିଣୀ ଚାରିପଟୁ ପାଣିଭିତରକୁ ଟେକା-ଫିଙ୍ଗା ନ୍ୟାୟ। ଏଥିରେ ରୋହି ହେଉ କି ଭାକୁର ହେଉ, ମୁଣ୍ଡ ଟୁଙ୍ଗାରିବ? ଟୁଙ୍ଗାରିଲେ ମୁଣ୍ଡ ଉପରେ ଗୋଟାଏ ପଡ଼ିଯିବା ଭୟ ରହିବନି? ଲେଖାଲେଖି କ୍ଷେତ୍ରରେ ବି ସେଇ ଦଶା। ଆଉ ଏମିତିଗୁଡିଏ ପଥର ପଡ଼ିଲେ ଯେଉଁ ତରଙ୍ଗ ସବୁ ଜନ୍ମ ନେବେ ସେସବୁ ଆପଣା ଆପଣାକୁ ଛେଦି ବସିବେ ସିନା - ସେଥିରେ କେଉଁ ତରଙ୍ଗମାଳ ଗୁନ୍ଥି ହୋଇପାରିବ? ଫଳ ହେବ ମୁଣ୍ଡବ୍ୟଥା। ଆପଣ ପାଗଳ ନ ହେବେ ଯେ ବଡ଼ କଥା।

ଆପଣ ତ ଜାଣିଥିବେ ମୁଁ ବି ବସି ନ ରହି ଗଳ୍ପ ଲେଖାଲେଖି କରେ। ସହରରେ ମୋର ଏତାଦୃଶ ଅବସ୍ଥା ଯୋଗୁ ମୁଁ ଚିନ୍ତିତ ହୋଇପଡ଼ିଛି - ଦିନେ ସଞ୍ଜବେଳେ ଶୁଣିଲି ପୁଅ ବୋହୂ ଆଲୋଚନା କରୁଛନ୍ତି - 'ଯା ହେଉ ଏଥର ବଜେଟରେ କାଗଜ ଶୁଳ୍କ କମିଲା; ନଇଲେ ଆମର ଯେଉଁ କାଗଜ ଖର୍ଚ୍ଚ, ଦେବାଳିଆ ହୋଇଯିବା କଥା-।' ମୁଁ ଜାଣିନେଲି କାହାକୁ ନେଇ ଏ ଟିପ୍‌ପଣୀ-କଟା। ସେଦିନ ହିଁ ମୋ ଗଳ୍ପ ଆଉ ଆଗେଇପାରିଲାନି ବୋଲି ମୁଁ ତାକୁ ଚିରି ଅସନା ଟୋକେଇରେ ଫିଙ୍ଗିବି ନା ନାହିଁ ଭାବୁଥିଲି। ତା' ଆରଦିନ ସକାଳେ ଆଉ ଗୋଟାଏ ଘଟଣା ଘଟିଲା। ଭୋର ସକାଳୁ କଣ ଗୋଟାଏ ଖଟ୍‌ଖଟ୍ ଆବାଜ ଶୁଣି ମୁଁ 'ମୂଷା ହୋଇଥିବ' ଭାବି ଚମକି ଉଠି ଦେଖିଲି - ନାତୁଣୀ ମହାଶୟା ମୋ କଲମକୁ ହାତ ପାପୁଲିରେ ମୁଠେଇ ଧରି ମୋ ଗଳ୍ପ ଉପରେ ହାତୁଡ଼ି ପ୍ରହାର କରିଚାଲିଛନ୍ତି। ତା' ହାତରୁ କଲମ ଛଡ଼ାଇ ନେଲାବେଳକୁ କଲମ ଆଉ ହାତୁଡ଼ିରେ ବିଶେଷ କିଛି ପ୍ରଭେଦ ନ ଥିଲା। ଆଉ ଗଳ୍ପ ହୋଇଥିଲା ସତେ ଯେପରି ସଦ୍ୟ କେଉଁ ସମାଲୋଚକଙ୍କ ପାଖରୁ ଫେରିଛି। ସେଦିନ ହିଁ ଠିକ୍ କଲି, ଏ ସହର ଛାଡ଼ି ଗାଁକୁ ଚାଲିଯିବି।

ଗାଁର ପରିବେଶ କି ସୁନ୍ଦର - କି ଶାନ୍ତ, କି ମଧୁର। ଗଳ୍ପ ତ ଆପଣା ଛାଏଁ କଲମ ମୁନକୁ ଝରିଆସିବ। ସକାଳ ନ ହେଉଣୁ ଗାଁରେ ବାଜି ଉଠୁଥିବ ଶିବାଳୟର ଘଣ୍ଟାଧ୍ୱନି। 'ଓଁ ନମୋ ଶିବାୟ' ମନ୍ତ୍ର ଖଣ୍ଡମଣ୍ଡଳର ସୁଶୀତଳ ପବନକୁ ପବିତ୍ର କରୁଥିବ। ଗାଁର ବୁଢ଼ାମାନେ 'ସର୍ବେ ଭବନ୍ତୁ ସୁଖୀନଃ ସର୍ବେ ସନ୍ତୁ ନିରାମୟାଃ' ଆଶୀର୍ବାଦ ଦେଇ ଦେଇ ମନ୍ଦିରରୁ ବାହାରି ଚାଲିଥିବେ ଗାଁ ଦାଣ୍ଡରେ। ମନ୍ଦିରର କିଛି ଦୂରରେ ପୁଷ୍କରିଣୀ। ଭରି ରହିଥିବ ସୁନିର୍ମଳ ବିମଳେନ୍ଦୁ ଜଳ। ପଦ୍ମଫୁଲରେ ପୁଷ୍କରିଣୀ ଛାଇ ହୋଇଯାଇଥିବ। ଭଅଁରମାନେ ନୂତନ ଦିନର ଆବାହନୀ ସଙ୍ଗୀତ ବୋଲୁଥିବେ। ବୋହୂ ଭୁଆସୁଣୀମାନେ ତେଲ ହଳଦୀ ମାଖି ଗାଧୋଉଥିବେ ସେ ପୁଷ୍କରିଣୀରେ। ସେମାନଙ୍କ ମୁହଁ ତ ଦିଶୁଥିବ ଗୋଟାଏ ଗୋଟାଏ ପଦ୍ମଫୁଲ ପରି। କେତେଜଣ ଓଦା-ସରସର ଶାଢ଼ିରେ ଉଠିଆସୁଥିବେ ପୋଖରୀ ହୁଡ଼ା ଉପରକୁ ଏବଂ ଗାଁ ଦାଣ୍ଡକୁ। ମୁଣ୍ଡରେ ପାଣିଭରା ମାଠିଆକୁ ଟେକି ଧରିଥିବେ ଡାହାଣ ହାତରେ। ପଦ୍ମନାଡ଼ ପରି ଦେଖାଯାଉଥିବା ବାଁ ହାତ ଛନ୍ଦି ଧରିଥିବ କଳସୀର ବେକକୁ। ସଲଜ୍ଜ ବଦନ, ବକ୍ର ଚାହାଣି ତରଙ୍ଗାୟିତ ଲାସ୍ୟମୟ ଭଙ୍ଗୀରେ ପାଦ ପକାଇ ସେମାନେ ଚାଲୁଥିବେ ତାଙ୍କ ଅଳସ ଏବଂ ମନ୍ଥର ଗତି ଦେଇ। ଦୂରରୁ ଭାସି ଆସୁଥିବ ଗାଈ ଚରୁଆ ଗଉଡ଼ପୁଅର ବଇଁଶୀ-ନାଦ। ମାଳମାଳ ବଗବଗୁଲି ଉଡ଼ିଯାଉଥିବେ ଗାଁ ଉପରେ ତାଙ୍କ ଡେଣା ମେଲାଇ। ଛୁଆମାନେ ତାଙ୍କ ଆଡ଼କୁ ପାପୁଲି ହଲାଇ ଆନନ୍ଦ କୋଳାହଳ କରି ଗାଉଥିବେ - 'ବଗୁଲ୍ ବଗୁଲ୍ ଦାଁ ଦେ, ମୋ ନଖରେ ଫାଁ ଦେ।' ଆଉ ଘର ପାଖ ଦେଇ ଉଡ଼ିଯାଉଥିବେ ଯୋଡ଼ିପାରା, ଆପଣ ଗାଇ ଉଠିବେ - 'ଆସ ଆସ ପାରା ଯୋଡ଼ିକ ମୋର ପିଣ୍ଡାରେ ବସ, ଖାଇବାକୁ ଦେବି ତୁମକୁ...।'

ଗାଁରେ ମୋ କଲମ କାଳି, ଆଉ କାଗଜ ଖର୍ଚ୍ଚ ପାଇଁ କୌଣସି କଟକଣା ବି ନ ଥିବ। ଲଙ୍ଗଳ କିଣା ବାବଦକୁ ଚଉଦ ଟଙ୍କା କହିଲେ ବୁଝାଯିବ ସେ ମୁଁ ଗୋଟାଏ ଚଉଦ ଟଙ୍କିଆ କଲମ କିଣିଛି। ଜମି ହଳ କରିବାରେ ମୋଟ ଖର୍ଚ୍ଚ ଷାଠିଏ କହିଲେ ବୁଝାଯିବ କାଗଜ ଆଉ କାଳି କିଣି ଗଳ୍ପ ରାମ୍ପୁଡିବାରେ ଖର୍ଚ୍ଚ ହୋଇଛି ଷାଠିଏ।

ମୋ ଗାଁକୁ ଯିବା ନିଷ୍ପତ୍ତି ଶୁଣି ପୁଅ-ବୋହୂ ବିରକ୍ତ ହେଲେ। କହିଲେ - ମୁଁ ଗାଁରେ ଚଳିପାରିବିନି। ମୁଁ ବୁଝାଇଦେଲି ଯେ ଗାଁକୁ ଯାଇ କେହି ଜଣେ ନ ରହିଲେ ଏ ହଳିଆମାନେ ସବୁ ଖାଇଯିବେ। ଚାଉଳ ଚାରି-ଛଅ ବସ୍ତା ଆଉ ମୁଗ ବିରି ଯାହା କିଛି ଆସୁଛି, ସେତକ ବି ମିଳିବନି। ଲୋକେ ଏବେ ଯେମିତି ଜବରଦଖଲ କରିବାକୁ ଆରମ୍ଭ କଲେଣି; ଶେଷରେ ପୈତୃକ ଜମି ଟିକକ ବି ଚାଲିଯିବ।

ଯେଉଁଦି ସଞ୍ଜ ଚାରିଟା ବେଳେ ମୁଁ ଗାଁରେ ପହଞ୍ଚିଲି ସେହିଦିନ ଠିକ୍ କରିନେଲି ଯେ ତା ଆରଦିନ ସକାଳେ ହିଁ ମୋ ଗଳ୍ପଲିଖନର ଶୁଭାରମ୍ଭ ହେବ। ସକାଳ ୭ଟା

ଯାଏ ମନ ପୂରାଇ ଶୋଇ ତା'ପରେ ଚା' ଦି' କପ୍ ପିଇଦେଇ ଗୋ ଗଳ୍ପ ଲିଖନ ଆରମ୍ଭ କରିଦେବି।

ସକାଳ ପ୍ରାୟ ୬ଟା। କେହି ଜଣେ ଚିତ୍କାର କରି ପଚାରୁଥିଲା - 'କକା, ହଳିଆମାନେ ଆଜି ଲଛର ଭାଗ ହଳ କରିବାକୁ ଯିବେ କି ?' ଜାଣିଲି ସ୍ୱରଟି ଆମ ବୁଢ଼ାହଳିଆ ନୀଳର। ସେ ଅନ୍ୟ ତିନି ହଳିଆଙ୍କ କାମ ଦେଖାରଖା କରେ। ଆଉ ଦରକାର ପଡ଼ିଲେ ଭାତ ଡାଲି ତରକାରିଟିଏ ରାନ୍ଧି ବି ଦେଇପାରେ। ଲଛର ଭାଗ ଜମି ଯେଉଁଠି, ସେ କଥା ବି ମୁଁ ଜାଣେ। ବିରକ୍ତିକୁ ଚାପି ଦେଇ ମୁଁ କହିଲି - 'ହେଉ ଲଛର ଭାଗକୁ ହଳ ନିଅ।' ତାପରେ ପୁଣି ଚିତ୍କାର - 'ଯେ ଲଛର ଭାଗର ମାଟି ଶୁଖିଗଲାଣି କକା - ଆଉ ଅସରାଏ ବର୍ଷା ହେଲା ପରେ ତାକୁ ଚଷିଲେ ଭଲ ହେବ। ଏବେ ମହୁଲ ଗଛର କ୍ଷେତ ଚଷିଦେବା କି ?' ମୁଁ କହିଲି 'ହେଉ - ସେମିତି କର।' ଭାବିଲି ସେ ଏଥର ଗଲେ ପୁଣି ଘଣ୍ଟାଏ ଶୋଇବି। କିଛି କ୍ଷଣ ତୁନି ହେଲା ପରେ ପୁଣି ନୀଳର ସ୍ୱର - 'ମଧୁ ଆଜି ଦିନକ ଛୁଟି ନେଇ ତା' ଶ୍ୱଶୁରକୁ ଦେଖିଯିବ ବୋଲି କହୁଛି।' ମୋର ଜବାବ - 'ଆଜି ନାଇଁ - ସେ କାଲିକି ଯିବ।'

ପୁଣି କିଛି କ୍ଷଣ ପରେ - 'ସେ ଧୋବଲା ଠିଆଶିଙ୍ଗିଆ ବଳଦର ଗୋଡ଼ ଭାଙ୍ଗିଗଲା କକା - ଆଉ ପଟେ ନ କିଣିଲେ ମଧୁ ପାଇଁ ହଳ ନାହିଁ।'

'ମଧୁ ତେବେ ତା' ଶ୍ୱଶୁରକୁ ଦେଖିବାକୁ ଯାଉ।'

'ମୁଁ ବି ଦି'ଦିନ ପାଇଁ ଝିଅକୁ ଦେଖିବାକୁ ଯିବି କକା' - ଝିଅ ଶକ୍ତ ବେମାରରୁ ଉଠିଛି। ତମେ ଗାଁକୁ ଆସିଲେ ମୁଁ ଟିକେ ଯାଇ ଦେଖି ଆସିବ ଭାବିଥିଲି।'

'ନାଇଁ - ମଧୁ ତା' ଶ୍ୱଶୁର ଘରୁ ଫେରିଲା ପରେ ତୁ ଯିବୁ।'

ଏଥର ମୁଁ ଆଉ ଶୋଇବା ପ୍ରଶ୍ନ ନ ଥିଲା। ଦାନ୍ତ ଘଷିଲାବେଳେ ଜାଣିଲି - ଦୁହିଁଲା ବେଳେ ଗାଈ ନାତ ମାରିଛି ଯେ ଥୋପାଏ ବି ଦୁଧ ନାହିଁ। ଗାଁରେ କୁଆଡେ କିଣିବାକୁ ଦୁଧ ମିଳେନି। ଗାଁରେ ସେ ଯେଉଁ ଛୋଟ ଦୋକାନଟିଏ - ସେଠି ଚା' ପୁଡିଆ ବି ନାହିଁ। ମୁଁ ଗାଁକୁ ଆସିଲା ବେଳେ ଚା' ପୁଡିଆଟିଏ ଆଣିବା ଉଚିତ ଥିଲା। ଯା' ହେଉ ନୀଳ କାହା ଘରୁ ଦୁଧ ଟିକିଏ ଆଉ ଗୁଣ୍ଡ ଚା' ରୁ ଚାମୁଚେ ଦି' ଚାମୁଚ ଯୋଗାଡ଼ କରି ଆଣିଲା। ମୁଁ ବି ମଧୁକୁ ପଠାଇଦେଲି ପାଖ ସହରରୁ ଦୁଧ ଗୁଣ୍ଡ ଆଉ ଚା' ଗୋଟିଏ ପେକେଟ କିଣି ଆଣିବା ପାଇଁ।

ଠିକ୍ ୭-୩୦। ମୁଁ ବାରନ୍ଦାରେ ଚୌକି ଆଉ ଛୋଟ ଟେବୁଲଟିଏ ପକାଇ କାଗଜ କଲମ ଧରି ଗଳ୍ପ ଲିଖନ ଆରମ୍ଭ କରିଦେଲି। କେଉଁ ବିଷୟ ନେଇ ଲେଖିବି ବୋଲି ଭାବୁଛି, ମନେ ହେଲା, ବାରନ୍ଦା ସାମନା ଗେଟ୍ ପାଖ ଦେଇ କେହି ଜଣେ

ଛତାଧରା ଭଦ୍ରଲୋକ ଆଗେଇଗଲେ। ଛତା ଅଦୃଶ୍ୟ ହେବା କ୍ଷଣି ମୁଁ ପୁଣି ମୋ ଗଳ୍ପର ବିଷୟବସ୍ତୁ ଆଡ଼ିକି ମନଦେଉଛି, ଛତାଧାରୀ ଭଦ୍ରଲୋକ ଛତାଟିକୁ କାଖରେ ଜାକି ଛୋଟ ଗେଟ୍ ଠେଲି ମୁଁ ବସିଥିବା ବାରନ୍ଦାକୁ ଉଠି ଆସିଲେ ଆଉ ନମସ୍କାର କରୁ କରୁ ପଚାରିଲେ – 'କେବେ ଆସିଲ କି ମାମୁଁ – ବହୁତଦିନ ପରେ ଆସିଲ।' ମୁଁ ଏ ଭଣଜାଙ୍କୁ କେଉଁଠି ବସିବାକୁ ଦେବି ଭାବି ନୀଳକୁ ଖଟଟିଏ ଆଣିବା ପାଇଁ ଡାକ ଦେଉଛି ସେ ନିଜେ ବାରନ୍ଦାର ଗୋଟିଏ ପାହାଚରେ ଗୋଡ଼ ଥାପି ବାରନ୍ଦା ଚଟାଣରେ ବସିଗଲେ। ମୁଁ ମଧ ଯଥାବିଧି ପୂର୍ବ ସନ୍ଧ୍ୟାରେ ଆସିଥିବା କଥା ସୂଚାଇଦେଲି।

ଭଣଜା ଏଥର ପଚାରିଲେ – 'ତମ ସେଆଡ଼ିକି ବର୍ଷା କେମିତି? ଆମେ ଶୁଣୁଛୁ ଜୁନାଗଡ଼ ସେଆଡ଼ିକି ଭଲ ବର୍ଷାଟିଏ ହୋଇଯାଇଛି ଯେ ସମସ୍ତେ ଜମି ଚଷାଚଷି ଅଧାଅଧି ସାରିଦେଲେଣି। ଆମେ...'

"ହଁ – ହେଇଛି ଗୋଟାଏ ପ୍ରକାର।"

"ଦେଖୁଛ, ସେତିକି ହେଲେ ତ ହେଲା। ଆମ ଏଇଠି ଖାଲି କୁଣ୍ଡା ଝାଡ଼ିଦେଲା। ଏ ବର୍ଷ ଧାନ ସାଙ୍ଗକୁ କୋଳଥ, ଚଣା,ମୁଗ, ବିରି, ସବୁ ଫସଲ ଗଲା।"

"ଧାନ ଫସଲ ଦେଶସାରା ଭଲ ହୋଇଛି ବୋଲି କହୁଛନ୍ତି ଯେ?"

"ହେଲା ମାମୁଁ, ଯାହାର ହେଲା ହେଲା, ପାଣିର ସୁବିଧାଥିବା ଲୋକ ଦେଢ଼ା ବି ପାଇଲେ। ଆମ ପରି ଆକାଶଭରସା ଲୋକ ଆଠଅଣା ବି ପାଇଲେନି।"

"ଆଉ କିଛି କଥାବାର୍ତ୍ତା ପରେ ହିଁ ଭଣଜାଙ୍କ ଅସଲ କଥା ପଡ଼ିଲା। କହିଲେ – 'ମାମୁ, ମୋର ବଳଦ ପଟେ ମରିଗଲା – ପେଟ ଫୁଲିଗଲା ଯେ ଷ୍ଟକ୍‌ମେନକୁ ପାଞ୍ଚଟଙ୍କା ଦେଲି, ପନ୍ଦର ଟଙ୍କାର ଇଞ୍ଜନ୍ କିଣିଲି; ତଥାପି ମରିଗଲା। ପଟେ ନ କିଣିଲେ ଏ ବର୍ଷ ଜମି ପଡ଼ିଆ ଯିବ।"

ମୁଁ କହିଲି – 'କିଣି ନିଅ, ଅନ୍ୟ ଉପରେ ନିର୍ଭର କରିବା ଠିକ୍ ନୁହେଁ।'

"ସେଥିପାଇଁ ତ ଆସିଛି ମାମୁ, ଟଙ୍କା ହଜାରେ କି ଧାନ ତିନି ପସ୍ତମା ନ ଦେଲେ..."

"ଗ୍ରାମୀଣ ବ୍ୟାଙ୍କମାନେ ତ ଏଇ ବଳଦ କିଣା ପାଇଁ କମ ସୁଧରେ ଟଙ୍କା ଋଣ ଦେଉଛନ୍ତି।"

'ଗ୍ରାମୀଣ ବ୍ୟାଙ୍କରୁ ଋଣ ନେଲେ ତ ଓ୍ୱାର୍କର ଆଉ ଏ.ଇ. ଛୋଟ ଚାଷୀ ବୋଲି ଲେଖିଦେବାକୁ ଟଙ୍କା ନେବେ... ସରପଞ୍ଚ ନେବ, ବ୍ୟାଙ୍କର କ୍ଲାର୍କ ଆଉ ସାହେବମାନେ ନେବେ; ସବାଶେଷରେ ସେମାନଙ୍କ ସାଙ୍ଗରେ ବଜାରକୁ ଯାଇ ପାଞ୍ଚଶହ ଟଙ୍କାର ବୁଢ଼ାବଳଦଟିଏକୁ ହଜାରେ ଟଙ୍କା ଦେଇ ଋଣ ଆଣିବି ଯେ ବର୍ଷେ

ବି ସେ ବଳଦ ଖଟିବନି। ଉଗ୍ରସେନ ମାଳି ତା' ବଳଦ ବିକୁଛି; ଛାତିଏ ଉଚ୍ଚର ବଳଦ। ଯୁଆନ ମାଲ୍, ଏବେ ଦାନ୍ତ ପୂରା ହୋଇଛି। ହଜାରେରୁ କମ୍ କରିବନି। ତମେ ନ ଦେଲେ କିଏ ସାହାଯ୍ୟ କରିବ?'

ମୁଁ ଯେତେ ବୁଝାଇ ବସିଲି ଯେ ମୁଁ ଋଣ ଦିଏନି, ଋଣ ଦେବାକୁ ଟଙ୍କା ନାହିଁ, ସରକାରୀ ଲାଇସେନ୍ସ ବି ନାହିଁ; ସେ ନଛୋଡ଼ବନ୍ଧା। ତା' କଥାର ସାରମର୍ମ ହେଲା ଯେ ମୁଁ ଟଙ୍କା ନ ଦେଲେ ସେ, ତା' ସ୍ତ୍ରୀ, ତା' ଦୁଇପୁଅ, ସେମାନଙ୍କ ସ୍ତ୍ରୀ ଏବଂ ପୁଅଝିଅଙ୍କ ସହ ତା' ଅନ୍ୟାନ୍ୟ ବଂଶକୁଟୁମ୍ବ ଭାସିଯିବେ। ମୁଁ କେମିତି ଏ ବିପଦରୁ ମୁକୁଳିବି ସେ କଥା ଚିନ୍ତା କରୁଛି, କେହି ଜଣେ ଗେଟ୍ ଠେଲି ବାରନ୍ଦା ଆଡ଼କୁ ଆଗେଇ ଆସିଲା। ଆଉ ମୁଁ ଚିହ୍ନିଲି ମଧୁ ଭାଇନା। ଗାଁର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ଏଇ ମଧୁ ଭାଇନାଙ୍କୁ ନମସ୍କାର କଲି ଏବଂ ସେ ଯଥାବିଧି ଆଶୀର୍ବାଦ ଦେଲା ପରେ ତାଙ୍କ ଛତା ଓ ବାଡ଼ିକୁ କାନ୍ଥକୋଣରେ ଆଉଜାଇ ଦେଇ ନୀଳ ଆଣିଥିବା ଖଟରେ ବସି ଯାଉଁ ଯାଉଁ କହିଲେ - 'ରାଧୁ ଠିକ୍ କହୁଥିଲା। କହିଲା, ସେ ତୋତେ କାଲି ସଞ୍ଜବେଳେ ରତନଗୁଡ଼ାରୁ ଆସୁଥିବା ଦେଖିଛି। ମୁଁ କହିଲି - ଆସିଥିବ, ଲେଖାଲେଖି ତ କରେ; ଲେଖା ପାଇଁ ମସଲା ସଂଗ୍ରହ କରିବା ପାଇଁ ଆସିଥିବ। ଏଡ଼େ ବଡ଼ ଘଟନାଟିଏ ଘଟିଗଲା, ତୁ କେମିତି ଅବା ନ ଆସନ୍ତୁ। ଦେଖିଲୁ - ଏ ଗାଁମାନଙ୍କରେ କେମିତି ରହିବୁ, କେମିତି ଚଳିବୁ।'

ଭଣଜା ଦି' ପାପୁଲିର ଆଙ୍ଗୁଠି ଏକାସଙ୍ଗେ ଫୁଟାଉ ଫୁଟାଉ ଯୋଡ଼ି ଦେଲେ - 'ବଡ଼ କଷ୍ଟକର କଥା।'

'କଷ୍ଟ ବୋଇଲେ କଷ୍ଟ।' - ମଧୁ ଭାଇନାଙ୍କ ମୁହଁରୁ ବାକ୍ୟଟି ସତେ ଯେମିତ ଛିଟିକି ପଡ଼ିଲା। କହିଲେ - 'ଗୋଟିଏ ଚୋଟରେ ମୁଣ୍ଡ ଗଣ୍ଡି ଅଲଗା; ଆଉ ମୁଣ୍ଡ ଗଡୁଛି ଫୁଟବଲ୍‌ଟିଏ ପରି। ଭାଗ୍ୟକୁ ସିନା ଗ୍ରାମରକ୍ଷୀ ଦେଖିଦେଲା; ନ ହେଲେ କାହାର ସାହସ ହୁଅନ୍ତା ପୋଲିସ ଥାନାକୁ ଯାଇ ଏମିତି ଗୋଟିଏ ମାମଲାରେ ଜଡ଼ିପଡ଼ିବା ପାଇଁ?'

କଥା ଶୁଣି ମୁଁ ଚକିତ ହେଲି। ପଚାରିଲି - 'କାହା ମୁଣ୍ଡ ଗଣ୍ଡି କି ଭାଇନା?'

'ଆରେ... ତା' ହେଲେ ତୁ ଜାଣିନୁ?' ସାମାନ୍ୟ ହସିଲା ମୁହଁରେ ଜବାବ ଦେଲେ ମଧୁ ଭାଇନା: 'ନାକ ଶବର - ଆମ ପାଖ ଗାଁ ରେଙ୍ଗାଲିପାଲିର ନାକ ଶବର ଆଉ ଅଛି କି? ତାକୁ ପରା ପଅରଦିନ ସଞ୍ଜବେଳିଆ ମୁହଁ ଅନ୍ଧାରବେଳେ କିଏ ହାଣି ଦେଇଛି ଦି'ଗଡ଼ କରି - ମୁଣ୍ଡ ଆଉ ଗଣ୍ଡି ଅଲଗା।'

"କିଏ ହାଣିଛି? ପୋଲିସ କାହାକୁ ଧରିଲାଣି?"

"ପୋଲିସ କାହାକୁ ଧରିବ ? କୁକୁର ଆଣିବାକୁ ଖାସ୍ ଜମାଦାର ବାବୁ ଯାଇଛନ୍ତି ବୋଲି କହୁଛନ୍ତି। କୁକୁର ଆସିଲେ ଅବା...।"

"କାହିଁକି ହାଣିଲା ?"

"କେମିତି କହିହେବ ? ଘଟଣ କଣ ଠିକ୍ ଜଣାପଡୁଛି ? କେହି କେହି କହୁଛନ୍ତି ଜମିଜମା ମାମଲା। କିଏ କହୁଛି ପ୍ରେମ-କାହାଣୀ। ଘଟଣା ଘଟିଛି ମଙ୍ଗଲୁ ଗଉଡ଼ର ଘର ସାମ୍ନାରେ। ମଙ୍ଗୁଲୁ କୁଆଡ଼େ ଜଙ୍ଗଲକୁ ଯାଇଥିଲା। ସଞ୍ଜବେଳେ ଘରକୁ ଫେରି ଦେଖିଲା ନାକ ଘରୁ ବାହାରୁଛି। ଆଗରୁ କୁଆଡ଼େ ତାର ସନ୍ଦେହ ଥିଲା। ଦେଲା ଟଙ୍ଗିଆରେ ଚୋଟେ ଯେ ଏକାଥରେ ଏଡ଼େବଡ଼ ମୁଣ୍ଡ ଛିଣ୍ଡିପଡ଼ିଲା। ତା'ପରେ ମଙ୍ଗୁଲୁକୁ ଆଉ କିଏ ଦେଖିଛି ? ସକାଳେ ଗ୍ରାମରକ୍ଷୀ ସେ ମୁଣ୍ଡକୁ ଦେଖି ଥାନାକୁ ନେଇଗଲା।"

"ତେବେ ତ ସିଧାସଳଖ ମଙ୍ଗୁଲୁର କାମ।"

'କେମିତି କହିଦେବୁ ?' - ଫିସ୍ ଫିସ୍ କରି କହିଲେ ମଧୁ ଭାଇନା: 'ଏଡ଼େ ବଡ଼ କଥାକୁ କେମିତି ମୁହଁରେ ସିଧାସଳଖ କହିଦେବୁ ? ଆମର ପୁଣି ନିଜ ମୁଣ୍ଡ ଆଉ ପୁଅ ଝିଅଙ୍କ ମୁଣ୍ଡ ଅଛି। ଗାଁ ପରା, ଆଉ କଣ ତୋ ପୁରୁଣା ଗାଁ ଅଛି। ଏଇଠି ସବୁବେଳେ ହାତେ ମାପି ଚାଖଣ୍ଡେ ଯଦି ନ ଚାଲିବୁ, କେତେବେଳେ କଣ ହେବ କିଏ କହିବ ?'

ମନେ ହେଲା, ଭଣଜା ବି ଏ କଥା ଶୁଣି ନ ଥିଲା। ମଧୁ ଭାଇନା ଚା' କପେ ପିଇ ଆମ ଘରୁ ଗଲାବେଳକୁ ସେ ବି ତାଙ୍କ ସାଙ୍ଗରେ ଏ ଖୁନ୍ ମାମଲା ସମ୍ବନ୍ଧରେ ଗପସପ କରି କରି ଚାଲିଗଲା।

ସେଦିନ ଉପରଓଳି ବି ଯେଉଁ କେତେଜଣ ଆସିଲେ ତାଙ୍କ ମୁହଁରେ ଏଇ ଖୁନ୍ କଥା। ସଞ୍ଜବେଳେ ବିଜୁଳି ଆସିଲାନି ଯେ ରାତିରେ ଡିବିରି ଆଲୁଅରେ ଖିଆପିଆ ହେଲା। ମୁଁ ଠିକ୍ କରିନେଲି ତା' ଆରଦିନ ହିଁ ଗଳ୍ପ-ଲେଖା ଆରମ୍ଭ କରିବି।

ତା' ଆରଦିନ କିନ୍ତୁ ସକାଳ ୬-୩୦ରେ ନୀଳ ଜଣାଇଦେଲା ଯେ, ପାଖ ଗାଁ ଗୌନ୍ତିଆ କୃତ୍ତିବାସବାବୁ ରାଧୁବାବୁଙ୍କ ସଙ୍ଗରେ ଆସିଛନ୍ତି; ସାଙ୍ଗରେ ଆଉ ଦୁଇ ଚାରିଜଣ। 'ସେମାନଙ୍କୁ ବସିବାକୁ କହ' କହି ମୁଁ ତରବରରେ ଦାନ୍ତ ଘଷି ମୁହଁ ପୋଛୁ ପୋଛୁ ବାହାର ବାରନ୍ଦାକୁ ଚାଲିଗଲି।

ନମସ୍କାର ଆଦାନପ୍ରଦାନ ପରେ ରାଧୁ ଜଣାଇଦେଲା ଯେ କୃତ୍ତିବାସ ବାବୁ ୧୨ ଅଧିକା ଭୋଟରେ ନିରାକାର ଭୋଇକୁ ହରାଇ ବ୍ଲକ ଚେୟାରମେନ୍ ହେଲେ। ପାଞ୍ଚଜଣ ପ୍ରାର୍ଥୀ ଭିତରୁ ଅନ୍ୟ ତିନିଜଣଙ୍କର ତ ଦୁଇ ତିନି ଲେଖା ଭୋଟ ହେଲା, ଆମ ଗାଁର ସବୁ ୱାର୍ଡମେମ୍ବର ତାଙ୍କୁ ଭୋଟ ଦେଇଥିବାରୁ ଗାଁର ସମସ୍ତଙ୍କୁ କୃତଜ୍ଞତା ଜଣାଇବା ପାଇଁ ସକାଳୁଆ ଆସିଛନ୍ତି ଚେୟାରମେନ କୃତ୍ତିବାସବାବୁ ନିଜେ।

ମୁଁ ଯଥାବିଧି ଉତ୍ଫୁଲ୍ଲ ହେଲି ଏବଂ ଅଭିବାଦନ ଜଣାଇଲା ବେଳେ 'ଗୁଡ଼ିଏ ଖର୍ଚ୍ଚ ହୋଇଥିବ ତ ?' ବୋଲି ଟିପ୍‌ପଣୀ ବି କାଟିଦେଲି । ତା'ପରେ କୃତ୍ତିବାସବାବୁଙ୍କୁ ତାଙ୍କୁ ସ୍ୱଭାବସୁଲଭ ବକ୍ତୃତା ଦେବା ସୁଯୋଗ ମିଳିଗଲା । ଛାତି ଫୁଲାଇ କହିଲେ, 'ନିରାକାର ପାଇଁ ତାଙ୍କ ପାର୍ଟି ଏମ.ଏଲ.ଏ. ଘର ଘର ବୁଲି ଟଙ୍କା ବାଣ୍ଟିଲେ ମଧ୍ୟ ସେ ଜିଣି ପାରିଲାନି । କିଏ ଭଲ, କିଏ ଭେଲ ଆମ ଲୋକ କଣ ବୁଝୁନାହାନ୍ତି ? ଚେୟାରମେନ ହେବା ପାଇଁ ନିରାକାର ନଗଦ ବାସ୍ତରି ହଜାର ଟଙ୍କା କ୍ୟାଶ୍ ଖର୍ଚ୍ଚ କରିଛି । ଆଉ ଜିପ୍, ଟ୍ରାକ୍ଟର, ଖିଆପିଆ କଥା ତ ଛାଡ଼ ।'

"ଆପଣଙ୍କୁ ତ ଅନେକ ପରିଶ୍ରମ ପଡ଼ିଥିବ ।"

'କହନ୍ତୁନି ଜୟଦେବବାବୁ !' – ଉତ୍ତର ଦେଲେ କୃତ୍ତିବାସବାବୁ: 'ଟଙ୍କା ଖର୍ଚ୍ଚ ନ କଲେ ତ ଏମିତି ପରିଶ୍ରମ କରିବାକ ପଡ଼ିଥାଏ । ତାକୁ ଡରିଲେ ଆଉ ହେବ ? ସମସ୍ତଙ୍କୁ ଚିହ୍ନି କାହାର କି ଅସୁବିଧା, ଦେହ ପା, ଗାଁର ସୁବିଧା ଅସୁବିଧା – ସଡ଼କ, ପରିବହନ, ଜଳଯୋଗାଣ, ହାଇସ୍କୁଲ, ଡାକ୍ତରଖାନା ଆଦି ବୁଝିବା କଥା । ଲୋକଙ୍କୁ ବୁଝାଇଦେବା କଥା ଯେ, ଆପଣ ଚେୟାରମେନ୍ ହେଲେ ସେମାନଙ୍କର କଣ ସବୁ ଲାଭ ହେବ । ସେ କଥା ବାରମ୍ବାର ଚେତାଇଦେଇ ପ୍ରତିଶ୍ରୁତି ଦେବାକୁ ହେବ । ଖାଲି ଘରେ ବସି ଟଙ୍କା ଖର୍ଚ୍ଚ କଲେ କଣ ଏଡ଼େ ବଡ଼ ଲଢ଼େଇ ଜିଣି ହୁଏ ? ହଁ – ଏମ.ଏଲ.ଏ. ଲଢ଼େଇରେ ଟଙ୍କା ବିଞ୍ଚିଦେଇ ଜିଣିଯିବେ; କିନ୍ତୁ ଚେୟାରମେନ୍ ହେବାରେ ? କଦାପି ନୁହେଁ । କେମିତି ହେବ କହୁନାହାନ୍ତି । ତିନିଶ ଅଠର ବୋଲି ଭୋଟ; ପ୍ରତ୍ୟେକ ଶିକ୍ଷିତ; ଭଲମନ୍ଦ ବୁଝିପାରିବା ଲୋକ ଜଣକୁ ଖାଲି, ଦୁଇଶ ପଚାଶ ଲେଖା ଟଙ୍କା ଦେଇ ଆପଣ ଜିଣିଯିବେ ?'

ବକ୍ତୃତା ଅନେକ ସମୟ ଦେଲେ ମୋ ଗଳ୍ପ ଲେଖାରେ ବ୍ୟାଘାତ ଆସିବ ଜାଣି ମୁଁ କୃତ୍ତିବାସବାବୁଙ୍କୁ ଚେତାଇଦେଲି ଯେ ଚେୟାରମେନ୍ ଭାବରେ ଅଞ୍ଚଳ ପାଇଁ ତାଙ୍କର ଏବେ ଗୋଟିଏ ବଡ଼ ଦାୟିତ୍ୱ ଅଛି । ପୋଲିସ ଯଦି ଏ ଖୁନ୍ ମୋକଦ୍ଦମାର ଦୋଷୀକୁ ଶୀଘ୍ର ଗିରଫ ନ କରିନ୍ତି ତେବେ ଆଖପାଖ ଗାଁ ଲୋକେ... ।

କୃତ୍ତିବାସବାବୁ ମୋତେ ଭଲ କରି ଅନାଇଲେ । ପଚାରିଲେ – 'କେଉଁ ଖୁନ୍ ?'

ମୁଁ କହିଲି – 'କାହିଁକି ନାକ ଶବରର ? ମଙ୍ଗୁଲୁ ପରା ଗୋଟିଏ ଚୋଟରେ ତା' ମୁଣ୍ଡଗଣ୍ଠି ଅଲଗା କରିଦେଲା ?'

କୃତ୍ତିବାସବାବୁ ଏଥର ଜୋରରେ ହସିଉଠିଲେ ! କହିଲେ – 'ତା' ହେଲେ ଆପଣଙ୍କ ଗାଁରେ ବି ଏ ଖବର ବ୍ୟାପିଗଲାଣି ? କାଲି ସଞ୍ଜବେଳେ ମୁଁ ପୋଲିସ ଥାନାକୁ ଯାଇଥିଲି । ସେଠାରୁ ଗଲି ପବ୍ଲିକ ହେଲ୍‌ଥ ସେଣ୍ଟର । ନାକ ତା ବେକ ମୂଳର ଆଞ୍ଚୁଡ଼ା ଚିହ୍ନ ଦେଖାଇ କୌଣସି ଧାରୁଆ ଅସ୍ତ୍ର ଦ୍ୱାରା ଗୁରୁତର ଆଘାତ ବୋଲି

ସାର୍ଟିଫିକେଟ ଦେବା ପାଇଁ ଚେଷ୍ଟା କରୁଥିଲା ଯେ, ଡାକ୍ତର ଆୟୋଡିନ ଟିକିଏ ଘଷି ଦେଇ ତାକୁ ବିଦାୟ କରିଦେଲେ। ଶୁଣିଲି ମରଣକାଳୀନ ଜମାନବନ୍ଦି ଦେବବୋଲି କେତେ ଲୋକ କୁଆଡ଼େ ତାକୁ ପୋଲିସ ଥାନାକୁ ବୋହି ନେଇ ଯାଇଥିଲେ ଯେ ପୋଲିସ ତାକୁ ଡାକ୍ତରଖାନାକୁ ପଠାଇଦେଲା।'

"କଣ ଆପଣ କହୁଛନ୍ତି ଯେ ଆଦୌ ଖୁନ୍ ହୋଇନି ?"

"ସବୁ ନିର୍ବାଚନ କାରସାଦି ଆଜ୍ଞା ! ଭୋଟଗଣତିର ଫଳାଫଳକୁ ରଦ୍ଦ କରିଦେବା ପାଇଁ ଯାବତୀୟ ଅପଚେଷ୍ଟା। ଆପଣଙ୍କ ପରି ଲୋକ ବି ଏକଥାଗୁଡ଼ାକ ବିଶ୍ୱାସ କରୁଛନ୍ତି ? ମୁଁ ପରା କାଲି ସଞ୍ଜରେ ମଙ୍ଗଲୁ ଘରେ ଥିଲି।"

ସେଦିନ ବି ମୋର ଆଉ ଗଳ୍ପ ଲେଖା ହୋଇପାରିଲାନି। ତା'ଆର ଦିନ ମଧୁ ତା' ଶ୍ୱଶୁରଘରୁ ଆସିଲା ପରେ ନୀଳ ଯେତେବେଳେ ତା' ନିଜ ପାଇଁ ଛୁଟି ନେବାକୁ ଆସିଲା, କହିଲା - 'କକା, ଦଶଜଣ ରେଜା ଦିନ ମଜୁରି ଆସିଛନ୍ତି। ବିରି ଉପୁଡ଼ା ହେବ। ତମେ ଟିକେ କ୍ଷେତରେ ଠିଆ ନ ହେଲେ ଏମାନେ ସମସ୍ତେ ଖାଲି ଗପ ଜମେଇବେ। ବିରି ଖାଇ ଦେବେ ଆଉ ଅଣ୍ଟିମାନଙ୍କରେ ଛୁଇଁ ଭର୍ତ୍ତିକରି ନିଜ ନିଜ ଘରକୁ ବୋହି ନେବେ।' ମୁଁ ଜାଣିଲି ସେଦିନ ବି ମୋ ଗଳ୍ପ ଲେଖା ବନ୍ଦ।

ତା' ଆରଦିନ ବି...

କେମିତି ଲେଖିବେ କହୁନାହାନ୍ତି ! ଦିନବେଳିଆ ଅନ୍ଧାର ନ ହେଉଣୁ ଗାଁକୁ ଚାଲିଆସି ସମସ୍ତଙ୍କ ଦୃଷ୍ଟିରେ ପଡ଼ିଗଲେ ଗଳ୍ପ ଲେଖିବେ କେମିତି ? ମୁଁ ସେଥିପାଇଁ କହୁଛି ଆପଣ ଗାଁକୁ ଆସିଲେ ଅନ୍ଧାରୁଆ ବେଳ ଦେଖି ଆସିବେ। କେହି ଯେମିତି ଜାଣିପାରିବେନି ଯେ ଆପଣ ଗାଁକୁ ଆସିଛନ୍ତି।

ଅବଶ୍ୟ ଆପଣଙ୍କର ବି ନୀଳ ପରି ହଳିଆମାନେ ଥିବେ। ଆଉ ସେମାନେ ବି ଆପଣଙ୍କ ଚା ପାଇଁ ଦୁଧ ଖୋଜିବସିବେ। ତେବେ...

ମୁଁ ଏବେ ଭାବୁଛି, ଆମ ଗାଁ ପାଖ ହାତୀ ନଦୀ କୂଳରେ ଯେଉଁ ପାହାଡ଼ଟିଏ ଅଛି ସେ ପାହାଡ ତଳେ କୁଡିଆଟିଏ ରଚି ସେଇଠି ବସିଗଲେ କେମିତି ହୁଅନ୍ତା ?

କିନ୍ତୁ ସାଧୁବାବାଟିଏ ଆଶ୍ରମ କଲା ଭାବି ଲୋକେ ବିଭୁତି ନେବା ପାଇଁ ଜମା ହୋଇଯିବେନି ତ ? ତହିଁରେ ବି ବିପଦ।

ଯାହା କୁହନ୍ତୁ, ଏ ନୋବେଲ ପୁରସ୍କାର ପାଇବା ଟିକେ କଷ୍ଟ। ତଥାପି...

ೠೠ

# କହ ମନ୍ତ୍ରୀବର

## ଏବଂ ଅନ୍ୟାନ୍ୟ ଗଳ୍ପ

ପ୍ରଫେସର ଭୁବନେଶ୍ୱର ବେହେରା

ପ୍ରକାଶକ :

ଗ୍ରନ୍ଥମନ୍ଦିର, କଟକ - ୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୯୧

# ସୂଚୀ

# ଏକ ଜୀଅନ୍ତା ଭୂତର କାହାଣୀ

କି ଅଦ୍ଭୁତ ସତରେ ଏ ଦୁନିଆ ! କିସ ପୁଣି ତହିଁ ଦେଖାନଯାଏ ! ! ଗ୍ରୀକ୍ ଦାର୍ଶନିକ ଏରିଷ୍ଟଟଲ୍ ଅଥବା ଚୀନ ପଣ୍ଡିତ କନ୍‌ଫୁସିଅସ୍ ଅବଶ୍ୟ ଏ କଥା କହିନଥିଲେ । କହିଥିଲା ଆମ ଦେଶର ବେଙ୍ଗଟିଏ । ସେ ପୁଣି ତା' ବେଙ୍ଗୁଲୀକୁ । କିନ୍ତୁ କେଡ଼େ ନିରାଟ ସତକଥାଟିଏ କହିନଥିଲା ।

ଏ କଥା କହିଲାବେଳେ ମୁଁ କୌଣସି ପୁରାଣର କାହାଣୀ ବର୍ଣ୍ଣନା କରିବାକୁ ଯାଉନି । 'ଗୋବିନ୍ଦ ଯାହାର ମାତୁଳ, ଧନଞ୍ଜୟ ଯାହାର ପିତା – ସେଇ ଅଭିମନ୍ୟୁ କେମିତି ତଳେ ମରି ଶୋଇଛି, ସେ କଥା ବ୍ୟାଖ୍ୟାନ କରୁନି । ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀରର ଗାଥା ଗାନ କରି ରାଜା ହରିଶ୍ଚନ୍ଦ୍ର, ରାଜା ଯୁଧିଷ୍ଠିର କିମ୍ବା ଯୁବରାଜ ରାମଚନ୍ଦ୍ରଙ୍କ ବନଗମନ କଥା ବଖାଣୁନି । କହୁନି ରାଜଦୁଲାରୀ ସୀତାଙ୍କୁ ବଣରୁ ରାବଣ ଚୋରାଇ ନେବା କଥା ଅଥବା ରାଜବଧୂ ଦ୍ରୌପଦୀଙ୍କ କେଶ ଧରି ହସ୍ତିନାର ରାଜଦାଣ୍ଡରେ ଦୁଃଶାସନ ଘୋଷାରି ନେଉଥିବା କଥା । ସେ ସବୁ ହେଲା ଭାଗ୍ୟର ବିଡ଼ମ୍ବନା, ନିୟତିର ଅଟ୍ଟହାସ୍ୟ, ବିଧିର ବିଧାନ, ତାକୁ ଅବା ଲଂଘନ କରିବ କିଏ ? ମୁଁ ଯେଉଁ ଅଦ୍ଭୁତ କଥାଟି କହିବାକୁ ଯାଉଛି, ସେ ହେଲା ଏକ ସଂପୂର୍ଣ୍ଣ ଭିନ୍ନଧରଣର କଥା । ଖାସ୍ ଏକ ଜୀଅନ୍ତା ଭୂତର କଥା ।

ଭୂତପ୍ରେତ ବେଳେ ବେଳେ ସତ ବୋଲି ଜଣାପଡୁଥିଲେ ମଧ୍ୟ ପ୍ରକୃତରେ ସେ ସବୁ ଯେ ମିଛ, ସେ କଥା କିଏ ଅବା ନଜାଣେ ? ତେଣୁ ସେଦିନ ଉଆଁସ ଅନ୍ଧାରିଆ ଅଧରାତିରେ ଆମ ଶ୍ରୀମତୀ ଯେତେବେଳେ 'ଅ....ଅ....ଓ....ଓ' ଆର୍ତ୍ତଧ୍ୱନି ଛାଡ଼ିବାକୁ ଆରମ୍ଭ କଲେ, ମୁଁ ବୁଝିନେଲି ଯେ, ସ୍ୱପ୍ନରେ ତାଙ୍କୁ ଏଇ ମିଛ ଭୂତଟିଏ ଆକ୍ରମଣ କରିଛି । ଡ଼ାକିଲି – 'ହେ....ଉଠ.....ଏମିତି ବିକଳ ହୋଇ ବିଳିବିଳଉଛ କାହିଁକି ?' ସେ କିଛି ସମୟ ତୁନି ହୋଇଗଲେ । କିନ୍ତୁ ତାର ପର ମୁହୂର୍ତ୍ତରେ ହିଁ ଆରମ୍ଭ କଲେ ପୁଣିଥରେ ସେଇ 'ଏ...ଏ...ଇ...ଓ.....ଓ....ଓ.......।' ମୁଁ ଏଥର ରୀତିମତ ଚିତ୍କାର କଲି ଆଉ ତାଙ୍କ ଦେହ ଝୁଣିଦେଇ ପଚାରିଲି – 'ହେ... କ'ଣ ହେଲା ? ଉଠ –' ଦୁଇ ତିନିଥର ଦେହଝୁଣା ପରେ ସେ ଉଠିଲେ – ମୋ ହାତକୁ ଜାବୁଡ଼ି ଧରିଲେ । ଘନ ନିଶ୍ୱାସଟିଏ ଟାଣି ଟିକିଏ ହୁଏତ ହସିଲେ । ଅନ୍ଧାର ହେଲେ ବି ସେ ହସ ଯେ,

ଏକ ଅପ୍ରସ୍ତୁତ ହସ ତାହା ତାଙ୍କ ସ୍ୱରରୁ ଜଣାପଡୁଥିଲା । କହିଲେ – 'ଭୂତଟିଏ ! କେଡ଼େ କେଡ଼େ ଆଖି କଳା ମଚମଚ ଝୁପୁର ଝୁପୁରୁ ବାଳ ଆଉ ଗୋଜିଆ ନଖ । ମୋ ଛାତି ଉପରେ ମାଡ଼ିବସି ତଣ୍ଟି କଣା କରୁଥିଲା । ମୁଁ ହାତ ଗୋଡ଼ ଛାଟିବାକୁ ବହୁତ ଚେଷ୍ଟାକଲି, କିନ୍ତୁ ହାତ ଗୋଡ଼ ଚଳିଲାନି । ପାଟି କରିବାକୁ ଚାହିଁଲି ଯେ, ତଣ୍ଟିରୁ ଶବ୍ଦ ବାହାରିଲାନି । ବାପ୍‌ରେ ଏବେ ବି ମୋ ଛାତି ଥରୁଚି ।'

ଏମିତି ସ୍ୱପ୍ନ ତ ମୁଁ ବି କେତେଥର ଦେଖିଛି, ଡ଼ରରେ ମୁଁ ବି ଚିତ୍କାର କରିବାକୁ ଚେଷ୍ଟାକରି ଖାଲି ଗଁ ଗଁ କରିଛି, କିନ୍ତୁ ଆଜିର କଥା ଅଲଗା । ଶ୍ରୀମତୀ ସ୍ୱପ୍ନ ଦେଖି ଡ଼ରିଛନ୍ତି, ମୁଁ ନୁହେଁ । ଏ ଭଦ୍ରମହିଳାମାନେ ତ ନିତିଦିନ ଆମକୁ ବାଳୁତ ଜ୍ଞାନକରି ଖାଇବା ପିଇବା ସବୁ କଥାରେ କଟକଣା କରି ନୀତିବାକ୍ୟ ଝାଡୁଥାଆନ୍ତି । ମୁଁ ଅବା ଏମିତି ସୁଯୋଗଟିଏ ହରାଇବି କାହିଁକି ? ସହାନୁଭୂତିଭରା ସ୍ୱରରେ କହିଲି – 'ଭୂତ ବୋଲି କିଛିନାହିଁ। ଭୂତ କେବଳ ମନର ଏକ ବିକାର । ଚେତନ ମନର କୌଣସି ଭୟ ଅବଚେତନ ମନରେ ଯଦି ବସା ବାନ୍ଧିରହେ, ତେବେ ସେ ଭୟ ଏମିତି ଭୂତ ଆକାରରେ ଅର୍ଦ୍ଧଚେତନ ମନରେ ବେଳେବେଳେ ସ୍ୱପ୍ନ ରୂପରେ ପ୍ରକାଶ ପାଏ । ମାନସ ଅତିମାନସ କଥା ବି କହିଲି ଏବଂ ମନ ବୁଦ୍ଧି ଅହଂକାର ଡ଼େଇଁ ଦଶଇନ୍ଦ୍ରିୟ, ପଞ୍ଚ ମହାଭୂତ ଅତିକ୍ରମ କରି ସୁଖଦୁଃଖ ପରେ ଯେତେବେଳେ ଭୟ ସବୁ ଦୁଃଖର କାରଣ ବୋଲି ବୁଝାଇ ବସିଲି, ଶ୍ରୀମତୀ ମୋ ସତ୍ ପରାମର୍ଶ ହୃଦୟଙ୍ଗମ କରିବେ କ'ଣ, ଓଲଟା 'ହେଲା ହେଲା ବହୁତ କହିଲଣି ଏବେ ଶୁଅ' କହି ମୋ କଥାକୁ ଉଡ଼ାଇଦେବାକୁ ଚେଷ୍ଟା କଲେ । ମୁଁ କିନ୍ତୁ ଦବିଗଲିନି । କହିଚାଲିଲି – 'ଅଜ୍ଞାନ ଦୂରୀକରଣ ହିଁ ଭୟ ଦୂରୀକରଣର ପ୍ରକୃଷ୍ଟ ପନ୍ଥା । ଜ୍ଞାନ ହିଁ ଅମୃତ, ଜ୍ଞାନପ୍ରାପ୍ତି ହିଁ ଅମୃତତ୍ୱ ପ୍ରାପ୍ତି ଏବଂ...' ହଠାତ୍ ମୁଁ ଜାଣିପାରିଲି ଯେ, ଶ୍ରୀମତୀ ଏ ଭିତରେ ଘୁଙ୍ଘୁଡ଼ି ମାରିବାକୁ ଆରମ୍ଭ କରିଦେଲେଣି । ବିରକ୍ତ ହେଲି । ଆମେ ପୁରୁଷସିଂହମାନେ ଯେ ଏଇ ଦୁର୍ବଳା ଅବଳାମାନଙ୍କ ଦ୍ୱାରା ସଦାସର୍ବଦା ଉପେକ୍ଷିତ, ଅନାଦୃତ, ଅବହେଳିତ ଏବଂ ତାଚ୍ଛଲ୍ୟପ୍ରାପ୍ତ, ସେ କଥା ଅନ୍ଧାରକୁ ଅନାଇ ରହି ଭାବୁ ଭାବୁ ମୁଁ ବି କେତେବେଳେ ଶୋଇପଡ଼ିଲି ।

ଘଣ୍ଟି ଧ୍ୱନିରେ ମୋର ନିଦ ଭାଙ୍ଗିଗଲା । ଶ୍ରୀମତୀ କେତେବେଳୁ ଉଠି ତାଙ୍କ ଗାଧୁଆପାଧୁଆ ସାରି ପୂଜାପାଠ ଆରମ୍ଭ କରିଦେଲେଣି । ଶାନ୍ତାକାରଂ ଭୂଜଙ୍ଗ ଶୟନଂ... ପରେ ମଧୁକର ଶ୍ୟାମ ହମାରେ ଚୋର' ଶେଷକରି 'ଜଗନ୍ନାଥ ସ୍ୱାମୀ ନୟନପଥଗାମୀ' ଭବତୁ ମେ...ରେ ପହଞ୍ଚି ଘଣ୍ଟି ହଲାଇ ହଲାଇ ତାଙ୍କ ଦେବଦେବୀଙ୍କୁ ଆରତି ଦେଖାଉଛନ୍ତି । ମୁଁ ଆଖି ମଳି ମଳି ବାହାରକୁ ଆସିଲି, ଆଉ ଆଖିରେ ଦି' ଚାରିଥର ପାଣି ଛାଟିଦେଇ ବାହାରିପଡ଼ିଲି ମୋ ପ୍ରାତଃଭ୍ରମଣରେ । ଘରୁ

ବାହାରିଲାବେଳେ ଭାବୁଥାଏ ଆମ ଧର୍ମ କର୍ମ ପୂଜାବିଧି କଥା । କେଡ଼େ ମହାନ୍ ସତରେ ଆମ ଧର୍ମ! ଏଇ ସହଧର୍ମିଣୀମାନେ ଯାହାସବୁ ଭଜନ କୀର୍ତ୍ତନ କରି ପୁଣ୍ୟଫଳ ଅର୍ଜନ କରନ୍ତି, କିଛି ନକରି ମଧ୍ୟ ତହିଁର ଅଧାଅଧି ଭାଗର ଅଂଶୀଦାର ଆମେ ପୁରୁଷପୁଙ୍ଗବଗଣ, ସେମାନେ ରାନ୍ଧିଲା ଖାଦ୍ୟପେୟର ଅଧାଅଧି ଯେମିତି ଆମର ପ୍ରାପ୍ୟ, ସେଇ ନ୍ୟାୟରେ । (ଭଗବାନ ଏମାନଙ୍କର ମଙ୍ଗଳ କରନ୍ତୁ!)

ଗାଁ ଦାଣ୍ଡ ଥିଲା ପ୍ରାୟ ନିଛାଟିଆ । ପରିବେଶ ଥିଲା ଅତ୍ୟନ୍ତ ମଧୁର । ବୃକ୍ଷଲତାଦି ସ୍ୱ ସ୍ୱ ସ୍ଥାନରେ ଆନନ୍ଦରେ ଅବସ୍ଥିତ ଥିଲେ । ଜଣେ ଝିଅ ନଳକୂଅର ଲୁହା ହାଣ୍ଡଲକୁ ଜୋର୍‌ରେ ଖଣ୍ଡ ଖଣ୍ଡକରି କଚାଡୁଥିଲା । ଆଉଜଣେ ଅପେକ୍ଷାକରି ରହିଥିଲା ତା' ପାଳିକୁ । ହଳେ ଦି'ହଳ ଯୋଡ଼ିବଳଦ ହଳିଆଙ୍କ ସହ ପୂର୍ବଦିଗସ୍ଥ ଜଙ୍ଗଲ ଆଡ଼କୁ ମୁହାଁଇଥିଲେ । ହୁଏତ କାଠ ବାଉଁଶ ଆଣିବା ଉଦ୍ଦେଶ୍ୟରେ । କେହି ଜଣେ ମହିଳା, ତା' ଦାଣ୍ଡଦୁଆର ଆଗରେ ଯିଏ ପାଇଖାନା କରିଦେଇଛି, ତା' ବଂଶର କଣ ସବୁ ହେବ ତାର ତାଲିକା ଗ୍ରାମବାସୀଙ୍କ ଗୋଚରାର୍ଥେ ଯଥାରୀତି ଚିତ୍କାର କରି ଘୋଷଣା କରୁଥିଲା । ମାଳେ ବଗ ରଡ଼ିଦେଇ ଆକାଶ ଉପରକୁ ଉଠିଯାଉଥିଲା ଏବଂ କଚାଡ଼ି ହେଲା ପାରି ତଳକୁ ଖସୁଥିଲା । ଆଉ ଛଞ୍ଚାଣଟିଏ ଶୂନ୍ୟ ମାର୍ଗରୁ ତଦାରଖ କରୁଥିଲା ଗାଁର ପରିମଳତା ।

ପୂର୍ବଘାଟ ପର୍ବତମାଳାର ଆକାଶ ଉପରେ ରକ୍ତିମ ଛଟା ଜଣାଇ ଦେଉଥିଲା ପ୍ରଭାତୀ ସୂର୍ଯ୍ୟଙ୍କ ଆଗମନୀ ଏବଂ ମୁଁ ଚାଲିଥିଲି ଚିଲ୍‌କପୁର ଗାଁ ଯିବା ବାଟରେ । ମାଇନର ସ୍କୁଲ ଡ଼େଇଁ ଗଲାପରେ ଦୂରରେ ଦେଖିଲି ପ୍ରଧାନ ସଡ଼କରେ ଜୁନାଗଡ଼ ଆଡୁ କଲମପୁର ଆଡ଼ିକି ବସ୍‌ଟିଏ ଛୁଟି ଚାଲିଛି । ଜନାର୍ଦ୍ଦନ ବସ୍ ସର୍ଭିସ୍‌ର ବସ୍ ବୋଧହୁଏ । ଆଉ ଟିକିଏ ଆଗକୁ ଡ଼ାହାଣପଟେ ଆମ୍ବତୋଟା । ଏ ବାଟରେ ବୁଲିବାକୁ ଆସିଲେ ସେ ତୋଟା ପାଖରୁ ମୁଁ ଫେରିଆସେ । ଆଜି ବି ତାହା ହିଁ ଥିଲା ମୋର ଉଦ୍ଦେଶ୍ୟ ।

ଆମ୍ବତୋଟା ପାଖେଇ ଆସିଲା ବେଳକୁ ମନେହେଲା ପ୍ରଧାନ ସଡ଼କରୁ ଆମ ଗାଁକୁ ଯେଉଁ କଚ୍ଚାରାସ୍ତା ମୋଡ଼ ଖାଇଛି, ସେ ରାସ୍ତା ଉପରେ ଦି'ଜଣ ଭଦ୍ରଲୋକ ଏଟାଚି ଓ ବ୍ୟାଗ୍ ହାତରେ ଆମ ଗାଁ ଆଡ଼ିକି ମୁହାଁଇଛନ୍ତି । ଛକ ପାଖରେ ବୋଧହୁଏ ବସ୍‌ରୁ ଓହ୍ଲାଇଲେ । ଦିହେଁ କେମିତି ଚିହ୍ନା ଚିହ୍ନା। ଡ଼ାହାଣ ପାଖରେ ଧୋତି କମିଜ ପିନ୍ଧା ଭଦ୍ରଲୋକ ମନେହେଉଛି । ହରି ହୁଏତ କୌଣସି କାମରେ ଭବାନୀପାଟଣା ଯାଇଥିଲା। ଆଜି ଗାଁକୁ ଫେରୁଛି । ଆଉ ବାଁ ପାଖ କୋଟ୍ ଟ୍ରାଉଜର୍ ପିନ୍ଧା ଭଦ୍ରଲୋକ । ଢ଼ଙ୍ଗ ରଙ୍ଗ ଚାଲିଚଳନ ଦେଖି କାହିଁକି କେଜାଣି ମିଶ୍ରବାବୁଙ୍କୁ ମନେପଡ଼ିଗଲା । ଆଉ ସେ ସଂଗେ ସଂଗେ ମନ କେମିତି ଘାଣ୍ଟିଚକଟି ହୋଇଗଲା ।

କାହିଁ କେତେ ବର୍ଷର ସାଙ୍ଗ ଆମେ ଦୁହେଁ ଇଞ୍ଜିନିୟରିଂ କଲେଜରେ ପାଠ ପଢ଼ିବା ଦିନଠାରୁ । ମୋ'ଠୁ ବୟସରେ ସାନ, କିନ୍ତୁ ଆଗ ଚାଲିଗଲେ । ଏଇତ ଏ ଅଜବ ଦୁନିଆ । ଆଗପଛ ହୋଇ ସମସ୍ତେ ତ ଦିନେ ଯିବାକଥା । କିନ୍ତୁ ଆଗ ବଡ଼ ନଯାଇ ଆଗ ସାନ ଯିବାର ବିଧିର କି ଖାମଖିଆଲି ବିଚାର କେଜାଣି ?

ଖବରକାଗଜରେ ବାହାରିଥିଲା ମିଶ୍ରବାବୁ ତାଙ୍କ ଝିଅ ଗୌରୀକୁ ଦେଖିବାକୁ ଯାଇଥିଲେ । ସେଠାରେ ହଠାତ୍ ତାଙ୍କର ଖିଆଲ ହେଲା ଯେ, ସେ ଏଲହାବାଦ ଯିବେ । ଖିଆଲି ଲୋକ ତ ! ଗୌରୀ କୁଆଡ଼େ ଏକା ଯିବାକୁ ମନାକରୁଥିଲା କିନ୍ତୁ ତା' କଥା ନମାନି ଏକୁଟିଆ ହିଁ ବାହାରିଗଲେ । ଚାରିଦିନ ଯାଇଛି କି ନାହିଁ ପ୍ରୟାଗ ଠାରେ ତାଙ୍କର ଆକସ୍ମିକ ମୃତ୍ୟୁ ! ହୃଦଯନ୍ତ୍ର କ୍ରିୟା ବନ୍ଦ ବୋଲି କେହି ଜଣେ ସ୍ୱତନ୍ତ୍ର ପ୍ରତିନିଧି ଏଲାହାବାଦରୁ ଖବର ପଠାଇଥିଲେ । ତାଙ୍କ ପକେଟରେ କୁଆଡ଼େ ସେ ଉଇଲ୍ ଛାଡ଼ିଯାଇଥିଲେ ଯେ, ତାଙ୍କ ମର ଶରୀରକୁ ସିଧାସଳଖ ଗଙ୍ଗାନଦୀରେ ଭସାଇ ଦିଆଯିବ । ଘର ଲୋକେ ଗଲାବେଳକୁ...

କେତେ ଶୋକବାର୍ତ୍ତା ଅଶ୍ରୁତର୍ପଣ ଖବରକାଗଜରେ ବାହାରିଲା । ଜଣେ ସମ୍ପାଦକ କାନ୍ଦି କାନ୍ଦି ବିବୃତିଟିଏ ଦେଲେ । ଅତି ଅମାୟିକ ଧର୍ମପ୍ରାଣ ଭଦ୍ରଲୋକ ବୋଲି ଲେଖିଲେ । ଇଂଜିନିୟର ହିସାବରେ ତାଙ୍କର ଖ୍ୟାତି କଥା କହିବାକୁ ଯାଇ ହୀରାକୁଦ ବନ୍ଧରେ ଓଡ଼ିଶା ପ୍ରତି ତାଙ୍କ ଚିରସ୍ମରଣୀୟ ଅବଦାନ କଥା ସୂଚାଇଥିଲେ, ବେଦ ବେଦାନ୍ତ ଓ ଦର୍ଶନ କ୍ଷେତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ କଥା ଉଲ୍ଲେଖ କରି ତାଙ୍କର ସମାଜସେବା କଥା ମଧ୍ୟ ପ୍ରକାଶ କରିଥିଲେ । କେହି ଜଣେ ରାମୁ ବି ତାଙ୍କ ସଚ୍ଚୋଟପଣିଆ ଆଉ ସାଧୁତା ସମ୍ବନ୍ଧରେ ଲେଖି ତାଙ୍କର ସ୍ୱର୍ଗତ ଆତ୍ମା ପାଖରୁ କ୍ଷମାଭିକ୍ଷା କରିଥିଲା ।

କି ଅଦ୍ଭୁତ ଏ ଦୁନିଆ - ଜଣେ ଆଜି ଅଛି ତ କାଲିନାହିଁ । ଅଜାଣତରେ ମୁଁ ଜନ୍ମାନ୍ତର କଥା ଭାବିବାକୁ ଆରମ୍ଭ କରିଥିଲି । ଅନ୍ୟ ଜନ୍ମରେ ମିଶ୍ରବାବୁ କ'ଣ ହେବେ କେଜାଣି । ଜନ୍ମାନ୍ତର ଅଛି କି ନାହିଁ ସେ କଥା ଅବା କିଏ ଜୋର୍ ଦେଇ କହିପାରିବ। ଆତ୍ମା ଜୀବାତ୍ମା ବାସନାବୃତ ଆତ୍ମା, ମୋକ୍ଷ-ନିର୍ବାଣ ମୁକ୍ତି କ'ଣ ଯେ, ସତ !

ପ୍ରକୃତି କୁଆଡ଼େ ଜଡ଼ ଓ ପୁରୁଷ ହିଁ ଚେତନ । ଦିଓଟିର ସହାବସ୍ଥାନରେ ନିର୍ଜୀବ ହୁଏ ସଜୀବ । ମଲାବେଳେ ପ୍ରକୃତିକୁ ଛାଡ଼ିଦେଇ ପୁରୁଷ କୁଆଡ଼େ ଅଲଗା ହୋଇଯାଏ । ପଡ଼ିରହେ ନିର୍ଜୀବ ପ୍ରକୃତି ଆଣବିକ ବିସ୍ଫୋରଣରେ ୟୁରାନିୟମ ୨୩୮ରୁ ଇଲେକ୍‌ଟ୍ରନ୍ କଣିକା ବାହାରିଆସିଲା ପରେ ୟୁରାନିୟମ ୨୩୫ ପଡ଼ିରହିଲା ପରି । ମୌଳିକ ଧାତୁପରି ଜୀବ ବି କ'ଣ ଗୋଟିଏ ମୌଳିକ ବସ୍ତୁ !

ମିଶ୍ରବାବୁଙ୍କ ମୃତ୍ୟୁ ପୂର୍ବରୁ ତାଙ୍କୁଥରେ ଦେଖିପାରିଲିନି ବୋଲି ଅନୁଶୋଚନା କରି ଆଗେଇଯାଉଛି, ହଠାତ୍ 'ହେ-ହେ-ହେ'ର ଗୋଟାଏ ଲହରରେ ଚମକିଉଠିଲି ଓ ଆପଣାଛାଏଁ ଆଗକୁ ଚାହିଁଲି । ଭାବିଲି, ମିଶ୍ରବାବୁଙ୍କ କଥା ଏତେ ତୀବ୍ର ଭାବରେ ଅନୁଭବ କରୁଥିଲି ବୋଲି ହୁଏତ ତାଙ୍କ ହସର ଗୋଟିଏ ପ୍ରତିଧ୍ୱନି ମୋ ମନରେ ସ୍ୱପ୍ନ ପରି ହଠାତ୍ ଜାଗିଉଠିଲା ।

ଆଗନ୍ତୁକ ଦୁଇଜଣ ବେଶ୍ ଆଗେଇ ଆସିଥିଲେ । ତାଙ୍କ ଭିତରୁ ଜଣେ ନିଶ୍ଚିତ ଭାବରେ ହରି । ଆଉ ଅନ୍ୟ ଜଣକ ? ସେଇ ମୁହଁ ସେଇ କୋଟ୍ ସେଇ ଚାଲି । ମନେହେଲା, ମୋ ଛାତିରେ ପବନ ଧିରେଧିରେ ଅଟକି ଯାଉଛି । ଠିକ୍ ସେଇ ମୁହୂର୍ତ୍ତରେ ହିଁ ଭଦ୍ରଲୋକଟି ପୁଣିଥରେ 'ହେ-ହେ' ହସର ଲହର ଖେଳାଇ ଡ଼ାକଛାଡ଼ିଲେ – 'ଭାଇନା' !

ମୋ ପାଟି ମେଲା ହୋଇସାରିଥିଲା । ଛେପ ଶୁଖିଯାଇ ପାଟି ଅଠାଳିଆ ଧରିଗଲା । ଆଖିର ଫୋକସ୍ କେମିତି ବିଛୁରି ଗଲା ଯେ, ପ୍ରତ୍ୟେକ ମଣିଷ ଦୁଇ ତିନି କରି ଦେଖାଗଲେ । ମନେହେଲା ଅଶରୀରୀ କୌଣସି ଛାୟା ମୋ ଆଡ଼ିକି ମାଡ଼ିଆସୁଛି । ମୁଁ ପଛକୁ ଫେରିଧାଇଁବି, ତଳେ ବସି ଯିବି, ହରିକି ପାଖକୁ ଡ଼ାକି ମୋ ହାତ ଧରିବାକୁ କହିବି, ଏସବୁ ଭାବିଲାବେଳେ ହିଁ ମୋର ମନେହେଲା ମୋ ଡ଼ାହାଣ କତିକି ଆକାଶ ତଳକୁ ଖସିଆସିଛି ଆଉ ବାଁ ପାଖେ ପୃଥିବୀର ଗୋଟାଏ ମୁଣ୍ଡ ଆକାଶକୁ ଧୀରେ ଧୀରେ ଟେକି ହୋଇଯାଇଛି । ତା' ପରେ ପରେ ହିଁ ଆକାଶ ଓ ପୃଥିବୀ, ପୃଥିବୀ ଓ ଆକାଶ ଚକା ଚକା ଭଉଁରୀ ଖେଳିବାକୁ ଆରମ୍ଭ କଲାପରେ କ'ଣ ଘଟିଲା ମୋର ଆଉ ମନେନାହିଁ ।

ମୁଁ ଆଖି ଖୋଲିଲା ବେଳକୁ ଦେଖିଲି, ପାଖ ହରିଜନପଡ଼ାର ଚିତ୍ରୁ ମୋତେ ଖଣ୍ଡିଏ ଗାମୁଛାରେ ବିଞ୍ଚୁଛି । ହରି ମୁଣ୍ଡରେ ପାଣି ଢ଼ାଳୁଛି । ଆଉ ମିଶ୍ରବାବୁ...

ମନେହେଲା, ମିଶ୍ରବାବୁ ପୁଣିଥରେ ଭିତରକୁ ପଶିନଯାଇ ସୂର୍ଯ୍ୟ ଦେବତାଙ୍କୁ କୋଳରେ ଧରି ଦୋଳି ଖେଳିବାକୁ ଆରମ୍ଭ କଲେ । କେହିଜଣେ କହୁଥିଲା 'ଭୟଙ୍କର ରକ୍ତଚାପ । ଏମିତି ଅବସ୍ଥାରେ ଭାଇନା ଏକୁଟିଆ ବୁଲିଆସିବା ଉଚିତ୍ ନଥିଲା ।'

ତା'ପରେ ସମସ୍ତେ ମୋତେ ଧରାଧରି କରି ଘରକୁ ଆଣିଲେ । କିଏ ଆଗରୁ ଖବର ଦେଇଥିଲା କେଜାଣି ଶ୍ରୀମତୀ ଆମ କମ୍ପାଉଣ୍ଡ ଗେଟ୍ ଯାଏ ଧାଇଁଆସିଥିଲେ । ମୋ ଦୁରାବସ୍ଥା ଦେଖିଲେ କି ଆଉ କ'ଣ ଦେଖିଲେ କେଜାଣି ଏମିତି ଭୀତତ୍ରସ୍ତ ଭାବବିହ୍ୱଳ ହୋଇଗଲେ ଯେ, କାଳେ ତଳେ କଚାଡ଼ି ହୋଇପଡ଼ିବେ, ସେ ଆଶଙ୍କାରେ ମୋ ହାତ ଦି'ଟା ଜାବୁଡ଼ି ଧରିଲେ, ଆଉ ମୁଁ ମଧ୍ୟ ତାଙ୍କ ହାତ ଜାବୁଡ଼ି ଧରିବାକୁ ବାଧ ହେଲି ।

ଆମ ସାଙ୍ଗରେ ଆସିଥିବା ସମସ୍ତେ ବାରନ୍ଦାରେ ଆମକୁ ଛାଡ଼ିଦେଇ ଧିରେ ଧିରେ ନିଜ ଘରକୁ ଫେରିଗଲେ । ଗଲାବେଳେ ହରି କହିଗଲା - 'ଭବାନୀପାଟଣା ବସ୍‌ଷ୍ଟାଣ୍ଡରେ ମିଶ୍ରବାବୁଙ୍କ ସଂଗେ ଦେଖାହୋଇଗଲା । ସେ ତମ ଘରକୁ ଆସୁଛନ୍ତି ଜାଣି ମୁଁ ତାଙ୍କୁ ସଂଗରେ ନେଇଆସିଲି ।'

ମିଶ୍ରବାବୁ ଏ ଭିତରେ ତାଙ୍କ ସିଗାରେଟ୍ ଜାଳି ସାରିଥିଲେ । ଗୋଟାକ ପରେ ଗୋଟାଏ କରି ତିନି ଚାରିଟି ଦିଆସିଲି କାଠି ମାରି ସେ ସିଗାରେଟ୍‌ରେ ନିଆଁ ଲଗାଇ ପୁଳାଏ ଧୂଆଁ ଛାଡ଼ିଲାବେଳେ କହିଲେ - 'ମୁଁ ବଞ୍ଚିଛି ନାନୀ - ଖବରକାଗଜରେ ମୋ ମୃତ୍ୟୁକଥା ଯାହା ବାହାରିଥିଲା, ତାହା ମିଛ । ମୁଁ ହିଁ ସ୍ୱତନ୍ତ୍ର ପ୍ରତିନିଧି ଭାବେ ନିଜେ ସେ ଖବର ପରିବେଷଣ କରିଥିଲି ।'

ମୁଁ ମିଶ୍ରବାବୁଙ୍କୁ ଅନାଇଲି ଓ ପରେ ପରେ ଶ୍ରୀମତୀଙ୍କୁ ଚାହିଁଲି । ଶ୍ରୀମତୀ ମଧ ମିଶ୍ରବାବୁଙ୍କୁ ଅନାଇ ମୋତେ ଚାହୁଁଥିଲେ । ମିଶ୍ରବାବୁ ବେଶ୍ ଗମ୍ଭୀର ଦେଖାଯାଉଥିଲେ, କହିଲେ - 'ଚା କପେ ଆଗେ ହେଉ ନାନୀ - କପେ ଚା' ଭାଇନା ଆଉ ଆପଣଙ୍କ ପାଇଁ ଯେମିତି ଜରୁରୀ, ମୋ ପାଇଁ ବି ସେମିତି ଜରୁରୀ - ତେବେ ମୋ ପାଇଁ ଅବଶ୍ୟ ଦି'କପ୍ । ଆଉ କାହାକୁ ଟିକେ କହିଦେବେ ଦାନ୍ତ ଘଷିବା ପାଇଁ ପାଣି ଢ଼ାଳେ ନେଇଆସିବ ।'

ମିଶ୍ରବାବୁ ତାଙ୍କ ସ୍ୱାଭାବିକ୍ ଢ଼ଙ୍ଗରେ କଥା ସବୁ କହିଚାଲିଥିଲେ । କିନ୍ତୁ ମୋର ମନେପଡୁଥିଲା ସେ ଦ୍ୱିବିଧା ଫିଲ୍ମର ଭୂତ। ସେ ଭୂତ ବି ସେମିତି ସିନେମାରେ ସହଜ ସରଳ ଭାବରେ କଥା କହିଚାଲିଥିଲା ।

ଚା' ସୁଡ଼ୁକିବା ଭିତରେ ମିଶ୍ରବାବୁ ଆରମ୍ଭ କରିଥିଲେ ତାଙ୍କ କାହାଣୀ । କହିଲେ - 'ତମେ ତ ରାମୁକୁ ଜାଣ ଭାଇନା !'

ମୁଁ ପଚାରିଲି - 'କେଉଁ ରାମୁ ?'

ହରଗୋବିନ୍ଦ ପତିର ପୁଅ ରାମପ୍ରସାଦ ପତି ।

କେଉଁ ହରଗୋବିନ୍ଦ ପତି ?

ମିଶ୍ରବାବୁ ଟିକେ ହସିଲେ । ସିଗାରେଟ୍ ଲିଭିଗଲାଣି ଜାଣି ପୁଣି ଗୋଟିଏ ଦିଆସିଲି କାଠି ମାରି ଭଲକରି ଜାଳି ଧୂଆଁ ଟାଣିଲେ ଆଉ କହିଲେ - 'ବୁର୍ଲା ମାର୍କେଟରେ ସେ ଯେଉଁ କିରାନା ଦୋକାନଟିଏ ଦେଇଥିଲା, ଆଉ ସମସ୍ତଙ୍କଠାରୁ ଡ଼ବଲ ଦାମ୍ କଷୁଥିଲା ।' ତା'ପରେ ମିଶ୍ରବାବୁ ଲମ୍ୱେଇଲେ - 'ସେ ରାମୁ କେଡ଼େ ବଦ୍‌ମାସ ଥିଲା ସେ କଥା ବି ତ ଜାଣ । ତୁଳସୀପତ୍ର କି କ'ଣ ଗୋଟାଏ ଯେଉଁ ଦି ପତ୍ରରୁ କୁଣ୍ଡାଇହୁଏ...'

'ବିଛୁଆତି ।'

ମିଶ୍ରବାବୁ କହିଚାଲିଲେ - ସେଇ ବିଛୁଆତି ଦିନେ ମୋ ଘରେ ହାଜର । ଏବେ ବେଶ୍ ଷଣ୍ଢାମାର୍କା ହୋଇଗଲାଣି । କହିଲା, 'ମୋର ଏ ସାର୍ଟିଫିକେଟ୍‌ର ଟ୍ରୁ କପିରେ ଟିକେ ଦସ୍ତଖତ ଦେଇଦିଅ ମଉସା ।'

ସାର୍ଟିଫିକେଟ୍ ଦେଖିଲି । ବିଶ୍ୱବିଦ୍ୟାଳୟର ଡ଼ିଗ୍ରୀ ସାର୍ଟିଫିକେଟ୍ ରାମ ପ୍ରସାଦ ପତି ଡ଼ିଷ୍ଟିଙ୍କ୍‌ସନ ସହ ବିଏ ପାସ୍ କରିଥିବା ସାର୍ଟିଫିକେଟ୍‌ର ଏକ ନକଲ ।

ମୁଁ ପଚାରିଲି 'ଓରିଜିନେଲ୍ କାହିଁ ?'

'ଓରିଜିନାଲ ହଜିଯାଇଛି ବୋଲି ତ ଏ ଟ୍ରୁ କପି ।'

'ତେବେ ୟୁନିଭରସିଟିକୁ ଡୁପ୍ଲିକେଟ୍ ପାଇଁ ଦରଖାସ୍ତ ଦିଅ । ଓରିଜିନାଲ୍ କିମ୍ବା ଡୁପ୍ଲିକେଟ୍ ସାଙ୍ଗରେ ତୁଳନା କରି ସିନା ମୁଁ ଟ୍ରୁ କପି ବୋଲି ନକଲରେ ଦସ୍ତଖତ ଦେବି ।'

ରାମ କହିଲା - 'ଡୁପ୍ଲିକେଟ୍ ଆଣୁ ଆଣୁ ତ ତିନି ଚାରି ମାସ କି ବର୍ଷେ ଗଡ଼ିଯିବ । ଆଜିକାଲି ବିଶ୍ୱବିଦ୍ୟାଳୟମାନଙ୍କ ଅବ୍ୟବସ୍ଥା ତ ଜାଣିଛନ୍ତି ମଉସା । ଆପଣମାନଙ୍କ ସେ ଯୁଗ କଣ ଆଉ ଅଛି ? ଏଣେ ମୁଁ ସଂଗେ ସଂଗେ ନଦେଖାଇଲେ ଚାକିରି ଯିବ । ଆଜିକାଲି ଚାକିରିଟିଏ ପାଇବା କେମିତି କଥା ତ ଜାଣନ୍ତି । ହେଡ୍ ଆସିଷ୍ଟାଣ୍ଟ କହିଛନ୍ତି ଟ୍ରୁ କପିଟିଏ ଦାଖଲ କଲେ ଏବେ ଚଳିଯିବ । ପରେ ଯଥା ସମୟରେ ଡୁପ୍ଲିକେଟ୍ ଦେଲେ ହେବ ।'

ମୁଁ କହିଲି - 'ତମେ ଯାହା କହୁଛ ସତ ଯେ ବାବା ରାମ, ମୁଁ କେମିତି ଓରିଜିନାଲ୍ କିମ୍ବା ଡୁପ୍ଲିକେଟ୍ ନଦେଖି ଏମିତି କପିରେ ଦସ୍ତଖତ ଦେଇଦେବି ? ମୁଁ ଜାଣିବି କେମିତି ଯେ, ତମେ ସତରେ ଡ଼ିଷ୍ଟିଙ୍କ୍‌ସନ୍ ସହ ଡ଼ିଗ୍ରୀ ପାସ୍ କରିଛ ?'

'ମୁଁ କ'ଣ ତେବେ ମିଛ କହୁଛି ? କହିବେ ଯଦି ଡ଼ଜନେ ଖଣ୍ଡେ ସାକ୍ଷୀ ହାଜର କରିଦେବି ।'

'ମୁଁ କିନ୍ତୁ ତଥାପି ଦସ୍ତଖତ କରିବାକୁ ମନାକରିଦେଲି ଆଉ ରାମୁ ବିଶେଷ ପ୍ରତିବାଦ ନକରି ଚାଲିଗଲା ।'

ମିଶ୍ରବାବୁ କହୁଥିଲେ - ତା'ପରଦିନ ସକାଳେ ମୁଁ ଜଳଖିଆ ଖାଇ ବସିଛି ହରିହରବାବୁ ସିଧାସଳଖ ଘର ଭିତରକୁ ଧସାଇ ପଶିଲେ । କିଏ ? ମିଶ୍ରବାବୁଙ୍କ ଏ 'କିଏ' ମୁଦ୍ରା ଦୋଷ ତ ମୁଁ ଜାଣେ । ଉତ୍ତରିଲି - 'ହରିହର ବାବୁ ।'

ସେ ଟିକିଏ ହସିଲେ, ପଚାରିଲେ 'ହରିହରବାବୁ କିଏ ?'

'ହୋଇଥିବେ କୌଣସି ଟାଉଟର ଶିରୋମଣି ଅଥବା କେହି ସର୍ବଜ୍ଞାନ ସର୍ବକର୍ମ ବିଶାରଦ ।'

'ନା ବିଶିଷ୍ଟ ସମାଜସେବୀ ହରିହର ଚମ୍ପତିରାୟ । ହରିହରବାବୁ ପଶି ଆସୁ ଆସୁ କହିଉଠିଲେ । ଆଜି ଆପଣଙ୍କ ଶୁଭଦିନ ମିଶ୍ର ସାହେବ, କଂଗ୍ରାଚ୍ୟୁଲେସନ୍ ! ଆଗ ମୁହଁ ମିଠା କରନ୍ତୁ । ମୁଁ ଆଶ୍ଚର୍ଯ୍ୟ ହୋଇ ଚାହିଁଲି ଆଉ ତାଙ୍କୁ ଖାଇବା ଟେବୁଲର ଗୋଟିଏ ଚୌକିରେ ବସିବାକୁ କହି ତାଙ୍କ ପାଇଁ ଜଳଖିଆ ମଗାଇଲି । ହରିହର ବାବୁ କହିଲେ 'ଭାଗ୍ୟଲକ୍ଷ୍ମୀ ଉଦୟ ହେଲେ ଏମିତି ଏକା ସଂଗେ ଦଶହଜାର ମିଳିଯାଏ ଆଜ୍ଞା ! ରାମପ୍ରସାଦବାବୁ ଟଙ୍କାତକ ମୋତେ ଦେଇ ଆସିବାକୁ କହିଲେ । ମୁଁ କିନ୍ତୁ ସେ ନିଜେ ଦେବା ଉଚିତ୍ ହେବ ବୋଲି ଜଣାଇଦେଲି । ସେ କହୁଥିଲେ, ଦରକାର ପଡ଼ିଲେ ଆଉ ଦୁଇ ତିନି ହଜାର ବି ଦେବେ । କେଡ଼େ ବଡ଼ଲୋକ ଏ ରାମପ୍ରସାଦବାବୁ ଆଜ୍ଞା ! ଯେମିତି ଜ୍ଞାନ ସେମିତି କର୍ମ । ବକ୍ତୃତା ଦେବେ ତ ଘଣ୍ଟା ଘଣ୍ଟା ଧରି ପାଟିରେ ବାଟୁଲି ବାଜିବନି । ଲୋକେ ଭେଲକା ହୋଇ ଶୁଣୁଥିବେ । ପ୍ରତ୍ୟେକ ବିଷୟରେ ଅଗାଧ ଜ୍ଞାନ । ଅନ୍ୟ ଦେଶ ହୋଇଥିଲେ ସେ କେବେଠୁ ଡ଼କ୍ଟରେଟ୍ ପାଆନ୍ତେଣି । ଆଉ ଆମ ବିଶ୍ୱବିଦ୍ୟାଳୟମାନଙ୍କୁ ଦେଖନ୍ତୁ । ସେ କୁଆଡ଼େ ବି.ଏ ଡ଼ିଗ୍ରୀ ପାଇଁ ବି ଯୋଗ୍ୟ ନୁହନ୍ତି ।'

ମୁଁ ଚକିତ ହୋଇ ତାଙ୍କୁ ଅନାଇଲି । ସେ କ'ଣ ବୁଝିଲେ କେଜାଣି, କହିଲେ - 'ଆମ ବିଶ୍ୱବିଦ୍ୟାଳୟ ମାନଙ୍କରେ ତ ଖାତା ହଜିବା ନିତ୍ୟନୈମିତ୍ତିକ ବ୍ୟାପର । ରାମପ୍ରସାଦ ବାବୁଙ୍କ ଖାତା ହଜାଇଦେଇ ଶୂନ୍‌ମାର୍କ ଦେଇଦେଲେ । ସେ କୁଆଡ଼େ ଶୂନ୍ ପାଇବା ଲୋକ । ଯାହା କୁହନ୍ତୁ, ଗାଁ କନିଆଁ ସିଙ୍ଘାଣିନାକୀ, କ'ଣ କହୁଛନ୍ତି ? ନହେଲେ ଆପଣଙ୍କ ପରି ଲୋକ ଭାରତରତ୍ନ ନ ହେଲେ ବି ଭାରତବିଭୂଷଣ କି ଭାରତଭୂଷଣଟିଏ ପାଆନ୍ତେନି ?'

'ଓରିଜିନାଲ ଡ଼ିଗ୍ରୀ ସାର୍ଟିଫିକେଟ୍ ହଜିଯାଇଛି କହୁଥିଲେ ଯେ, କହୁଥିଲେ ଡୁପ୍ଲିକେଟ୍ ମିଳିବାରେ ଡ଼େରି ହୋଇଯିବ ।'

ହରିହରବାବୁ ଚୌକିଟାରେ ଭଲକରି ଭିଡ଼ିଭାଡ଼ି ହୋଇ ବସିଲେ । କହିଲେ ଡ଼ିଗ୍ରୀରେ କଣ ଅଛି ମିଶ୍ର ସାହେବ - କହୁନାହାନ୍ତି ? ଡ଼ିଗ୍ରୀ ନଥିଲେ କଣ ମନ୍ତ୍ରୀ ହେଉନାହାନ୍ତି । ତେବେ କେନ୍ଦ୍ରମନ୍ତ୍ରୀ ହେବା ପାଇଁ ଡ଼ିଗ୍ରୀଟିଏ ଥିଲେ ଭଲ । ଡୁପ୍ଲିକେଟ୍‌ଟିଏ ତ ଯେବେ ବି ମିଳିବ । ଦଶ ବାର ହଜାର ଖର୍ଚ୍ଚ କରିବା କଥା । ମୁଁ କହିଲି ସେ ବଦମାସମାନଙ୍କୁ ଦଶ ବାର ହଜାର ଦେବ କାହିଁକି । ଆମ ନିଜ ଲୋକଙ୍କୁ କାହିଁକି ଦେବନି ? ଏଁ ? କ'ଣ କହୁଛନ୍ତି ? କହିଲି - ମିଶ୍ରବାବୁଙ୍କୁ କହିଲେ ତ ସେ

ଟୁ କପି ଆଟେଷ୍ଟ କରିଦେବେ । ଆଉ ସେ ତ ମଉସା ବି ହେବେ । ଏଇଟା ହେଲା ଘରୋଇ କଥା । ଜଣଙ୍କର ଡ଼ିଗ୍ରୀ ସାର୍ଟିଫିକେଟ ହୋଇ ଗଲା ତ ଅନ୍ୟଜଣଙ୍କର ଦଶହଜାର ।'

'ମୁଁ ମୋ ବିରକ୍ତି ଚାପି ପାରିଲିନି । କହିଲି ଆଜ୍ଞା, ଆପଣ ଆସନ୍ତୁ । କୌଣସି ନେତାଙ୍କୁ ଦଶହଜାର ଦେବେ, କାମକୁ ଆସିବ । ମୋତେ ଧନ ଦେଖାନ୍ତୁନି ଯଥେଷ୍ଟ ଦେଖିଛି ନମସ୍କାର ।'

ହରିହର ବାବୁ ମୋତେ କଣେଇ ଚାହିଁଲେ ଆଉ ଘରୁ ବାହାରିଗଲେ ।

'ସେଦିନ ସନ୍ଧ୍ୟାରେ ହେମନ୍ତମଞ୍ଜରି ବି ଆସିଥିଲେ - କିଏ ?'

'କିଏ ଜଣେ ଚିତ୍ରତାରକା ହୋଇଥିବେ ।'

'ଠିକ୍ ଧରିଛନ୍ତି । ସେ ବି ମୋତେ କଣେଇ କଣେଇ ଗୁଡ଼ିଏ ଦେଖାଦେଖି କଲେ । ପାଖେଇ ଆସି ରାମପ୍ରସାଦ ବାବୁଙ୍କ ଗୁଣଗାନ କଲେ, ଆଉ କହିଲେ ସେ କୁଆଡ଼େ ମୋତେ ବହୁତ ଖାତିର କରେ । ତା'ପରେ ସୂଚନା ଦେଲେ ଯେ, ମୁଁ କଣ ଗୋଟାଏ ଦସ୍ତଖତ କରିବା କଥା । ଦସ୍ତଖତ ଟିକେ ନିଶ୍ଚୟ କରିଦେବେ ବୋଲି ଅନୁରୋଧ କରି ଆଖିମାରି ଭୁରୁ ନଚାଇ ଫେରିଗଲେ ।'

'ତା' ଆରଦିନ ଆସିଲେ ଦି'ଜଣ । ଘର ସାମନାରେ ପଚାରିଲେ - 'ୟାହାଁ ମିଶ୍ରବାବୁ ଠହରନ୍ତି ନା ?'

କିଏ ଜଣେ ଜାବବ ଦେଲା - 'ହଁ' ।

କଥାବାର୍ତ୍ତା ଶୁଣି ମୁଁ ଘରୁ ବାହାରିଆସିଲି । ଦେଖିଲି, ଲାଲ ଲାଲ ଆଖି ମଇଁଷି ଶିଙ୍ଗିଆ ନିଶ ସହ ଦିଓଟି ଶାଳଗଛ । ଜଣେ କୀଚକ ହେବ ତ ଅନ୍ୟ ଜଣକ ଦୁଃଶାସନ । କୀଚକ ମହାଶୟ ଠେଙ୍ଗା ଉଠାଇ ନମସ୍କାରଟିଏ ଜଣାଇଦେଲେ । କହିଲେ - 'ହାମେ ରାମପ୍ରସାଦଜୀ କେ ୟାହାଁ ସେ ଆସିଛ ।'

ମୁଁ ସେମାନଙ୍କୁ ଭିତରକୁ ଡ଼ାକିବି କି ନାହିଁ ଦୋଦୋ ପାଞ୍ଚ ହେଉଥିଲି - ଡ଼ାକିଲି ଏବଂ ଚୌକିମାନଙ୍କରେ ବସିବାକୁ କହିଲି । ଏଥର ଦୁଃଶାସନଙ୍କ ପାଳି । କହିଲେ - 'ଡ଼ଃ ରାମପ୍ରସାଦଜୀ ହଟିବା ଲୋକ୍ ନହିଁହେ ଆଜ୍ଞା ! କେଉଁ ପୁଅର ଜିଭରେ ହାଡ଼ ଅଛି ତାଙ୍କ କଥାକୁ ଠୁକୁରାଇ ଦେବ ? ଜାଣିଛନ୍ତି ନା ସେ ଚାହିଁଲେ ରାତାରାତ ଘର ଖାକ୍ ହୋଇଯାଏ ।'

'କୀଚକ ଦୁଃଶାସନକୁ ଦବାଇଦେଇ ବୁଝାଇଦେଲେ । ରାମପ୍ରସାଦଜୀ ହୁକୁମ ଦେଲେ ଘରର ବାଲବଚ୍ଚା ଅଉରତ୍‌ମାନେ ବି କାହିଁ ଉଭାନ ହୋଇଯାନ୍ତି ଆଜ୍ଞା ।

ଆପଣ ଟିକେ ସମଝ ବୁଝ୍ କରି କାମ କରିବେ । ହାମେ ଆର୍ ପାଳି... ଆରେ ଧୁସା, ଆଜ କ୍ୟା ବାର୍ ହୈରେ ? ଶନିବାର, ହାଁ ଆର୍ ଶନିବାର୍‌କୁ ଆସିବୁ । ତା' ଆଗରୁ ଦସ୍ତଖତ ଫସ୍ତଖତ୍ ହେଇଯାଇଥିବା କଥା ଆଜ୍ଞା' କହି ସେ ତାର ଡ଼ାହାଣ ପାଖ ନିଶ ମୋଡ଼ି ମୋଡ଼ି ବାହାରକୁ ଗଲାବେଳେ ଦୁଃଶାବାବୁ ମୋ ଘର ଚାରିଆଡ଼େ ଥରେ ନଜର ବୁଲାଇ ଆଣିଲେ ଆଉ ତାଙ୍କ ବାଁପାଖ ନିଶ ମୋଡ଼ି ମୋଡ଼ି ବାହାରିଗଲେ ।'

"ସେ ଦିନଯାକ ମୋ ମନରେ ଅଶାନ୍ତି ଭରିରହିଲା । ରାତିରେ ନିଦ ହେଲାନି । ଏ ଦୁଷ୍ଟଗୁଡ଼ାକ କ'ଣ ଯେ, କରିବସିବେ !

ଭାବିଲି, "ସହର ଛାଡ଼ି ଗୌରୀ ଘରକୁ ଚାଲିଯିବି । ଗଲି ମଧ୍ୟ । ସେଇଠି ବି ମୋର ସେଇ ମାନସିକ ଦଶା । ସେ ଦୁଷ୍ଟଗୁଡ଼ା ଯଦି ଜାଣିବେ ଯେ, ମୁଁ ଗୌରୀ ଘରେ ଅଛି, ନାତି ନାତୁଣୀଙ୍କୁ ବିପଦ ପଡ଼ିବନି ତ ? ସେମାନେ ତ ନିତ୍ୟ ପ୍ରତ୍ୟହ ସ୍କୁଲ କଲେଜ ଯାଆନ୍ତି । ଠିକ୍ କଲି ଗୌରୀ ଘରେ ବି ରହିବିନି । ଆଉ କୁଆଡ଼େ ଚାଲିଯିବି । ତେବେ ସେମାନେ ଆମ ଘରେ ଧମକ ଚମକ ଦେଇ ଠିକଣା ଜାଣିବାକୁ ଚେଷ୍ଟାକରିବେ । ଶେଷରେ ଏଇ ନିଷ୍ପତ୍ତି ନେଲି ଯେ, ଏଲାହାବାଦ ଯିବି ଆଉ ସେଠାରୁ ସ୍ୱତନ୍ତ୍ର ପ୍ରତିନିଧି ମୋ ହୃଦଯନ୍ତ୍ର କ୍ରିୟା ବନ୍ଦ ହୋଇଯିବା କଥା ଖବରକାଗଜକୁ ଜଣାଇଦେବେ ।"

ମିଶ୍ରବାବୁଙ୍କ କଥାରେ ମୋ ମୁଣ୍ଡ କେମିତି ଗରମ ହୋଇଉଠିଥିଲା । ତାଙ୍କ କଥା ସରିଗଲା ପରେ ମଧ୍ୟ ମୁଁ କିଛି କହିପାରିଲିନି । ସେ ତୁନିତାନି ତାଙ୍କ ସିଗାରେଟ୍ ବଳି ଦିଆସିଲି କାଠି ମାରିଚାଲିଲେ ।

ମୁଁ ଏଥର ବୁଝିପାରିଲି ରାମୁ କିଏ ଆଉ କାହିଁକି ସେ ଅଶ୍ରୁତର୍ପଣ କରୁଥିଲା । ହୁଏତ ତାର ମନର ପରିବର୍ତ୍ତନ ଘଟିଛି ।

ହଠାତ୍ ମୁଁ ପଚାରିଦେଲି - 'ଏବେ କେତେଦିନ ଏମିତି ଲୁଚି ରହିବ ମିଶ୍ର ? ଗୌରୀ ହେରିକା ଯେ, କାନ୍ଦି କାନ୍ଦି ବିକଳ ହୋଇଯିବେଣି ।

ମିଶ୍ରବାବୁ ହସିଲେ । କହିଲେ, 'ସେଇଥିପାଇଁ ତ ଏଠିକି ଆସିଛି ଭାଇନା ।

ଏଉଠୁ ସ୍ୱତନ୍ତ୍ର ପ୍ରତିନିଧି ଜଣାଇଦେବେ ଯେ ମିଶ୍ରବାବୁ ମରିନାହାନ୍ତି ଏବେ ବି ଜୀବିତ ଅଛନ୍ତି ଆଉ ସୁସ୍ଥ ।

"କେମିତି ? ଗୋଟାଏ ମିଛରେ କଣ ଆଉ ଗୋଟାଏ ମିଛ ଘୋଡ଼ାଇ ହୁଏ ମିଶ୍ର ?" ଏଥର ମିଶ୍ରବାବୁଙ୍କର ହସ ଥିଲା ବେଶ୍ ମନଖୋଲା । ହେ-ହେ-ହେ'ର ତରଙ୍ଗ ଖେଳାଇ ଦେଇ କହିଲେ - 'ମୁଁ ଆପଣଙ୍କ ପରି ଗାନ୍ଧୀବାଦୀ ନୁହେଁ ଭାଇନା,

ଯେସାକୁ ତେସା ମୋ ନୀତି । ଅବଶ୍ୟ ଏ ଦୁଷ୍ଟଙ୍କୁ ଅକ୍ତିଆର କରିବା ପାଇଁ ମୋର ଧନବଳ ନାହିଁ କି ପଶୁବଳ ନାହିଁ । ତେବେ....'

'କ'ଣ କହି ପୁଣିଥରେ ଜୀଇଁଉଠିବ ?'

ଧୂଆଁ ଛାଡୁ ଛାଡୁ ମିଶ୍ରବାବୁ କହିଲେ - 'ସେ କଥା ବି ଠିକ୍ କରି ରଖିଚି ଭାଇନା । ସେ ପୁରୁଣା କାହାଣୀମାଳାରୁ ପୃଷ୍ଠାଏ । ମିଶ୍ର ବାବୁଙ୍କ ଦେହକୁ ଗଙ୍ଗାନଦୀରେ ପିଙ୍ଗିଦେଲା ପରେ ସେ ଭାସି ଭାସି ଯାଇ ଗୋଟାଏ କୂଳରେ ଲାଗିଗଲେ । ପାଖରେ କେଉଟ ଜଣେ ତା' ଡ଼ଙ୍ଗା ବାନ୍ଧି ମାଛ ଧରୁଥିଲା । କ'ଣଟିଏ ଲାଗିଲା ବୋଲି ପାଖକୁ ଆସି ଦେଖିଲା କେହିଜଣେ ଭାସିଆସୁଛି ଅଚେତ୍ କିନ୍ତୁ ଠିକ୍ ମରିନି । କେତେଜଣଙ୍କ ସାହାଯ୍ୟରେ ମିଶ୍ରବାବୁଙ୍କୁ ଟେକା ଟେକି କରି ସେ ତା' ପାଖ ଘରକୁ ନେଇଗଲା । ତା' ସ୍ତ୍ରୀ ଆଉ ଝିଅର ସେବାରେ ମିଶ୍ରବାବୁ ଅଳ୍ପଦିନରେ ଭଲ ହୋଇଗଲେ । ଆଉ ଏବେ ତାଙ୍କ ପରମ ବନ୍ଧୁ....'

'ସେ ସେବା କରିଥିବା ଝିଅର ପାଲାରେ ପଡ଼ିଯାଇନ ତ ମିଶ୍ର ?' ମୋ ଟିପ୍ପଣୀରେ ଶ୍ରୀମତୀ ଆଉ ମିଶ୍ରବାବୁ ଦୁହେଁ ହସିଉଠିଲେ । ଠିକ୍ ପରେ ପରେ ଶ୍ରୀମତୀ ଉଠି ଯାଉ ଯାଉ କହିଲେ, 'ତମେ ଦୁହେଁ ଗପ କରୁଥାଅ, ମୁଁ ଜଲ୍‌ଦି ମିଶ୍ରବାବୁଙ୍କ ପାଇଁ କିଛି ଗରମ ଜଳଖିଆ ତିଆରି କରି ନେଇଆସୁଛି ।'

ପଛଆଡୁ ମିଶ୍ରବାବୁ କହୁଥିଲେ... 'ନାନୀ ଜଳଖିଆ ଆଣିବେ ଯେ, ଆଗ କିଛି ପକୋଡ଼ି ଫକୋଡ଼ି ଆସୁ ।'

ମୁଁ ମାନସିକ ଦ୍ୱନ୍ଦ୍ୱରେ ପଡ଼ିଯାଇଥିଲି । ସେଇ ମିଶ୍ରବାବୁ, ସେଇ ଆନ୍ତରିକତାପୂର୍ଣ୍ଣ ବ୍ୟବହାର । ତଥାପି କାହିଁକି କେଜାଣି ମୋ ମନରେ ବେଳକୁ ବେଳ ଶଙ୍କା ଉପୁଜୁଥିଲା ଯେ, ଇଏ ଯଦି ସତରେ ମିଶ୍ରବାବୁ ହୋଇନଥିବେ !

# ବିଲେଇ

'– ଏ ମାଇଚିଆ ମାଇଗୁଲିଆ ମାନେ ! ତମ ଭିତରେ କେହି ଯଦି ମରଦ ଅଛି, ଭେଣ୍ଟିଆ ଅଛି ଆସ ଡ଼େଇଁବ ଏ ଉପରୁ !' ବାଉଳୀର ତେଣ୍ଡା ଉପରୁ ଡ଼ାକ ଛାଡ଼ିଥିଲା ବିଲେଇ । ଆଣ୍ଠୁ ଚଉଡ଼ା ଶାଢ଼ୀର ପଣତକୁ ଛାତି ଉପରେ ଗୁଡ଼ାଇ ଦେଇ କାନିକି ସେ ଭିଡ଼ି ଦେଇଥିଲା ଅଣ୍ଟା ଉପରେ । ମୁଣ୍ଡବାଳକୁ ପଛ ଆଡ଼ିକି ଜୁଡ଼ାକରି ବାନ୍ଧି ଦେଇଥିଲା । ଶଗଡ଼ ଚକର ଲୁହା ପାତିଆ ପରି ତା' ଦେହ ମୁଣ୍ଡରୁ ପାଣି ଝରି ଆସି ସୂର୍ଯ୍ୟ କିରଣରେ କରୁଥିଲା ଚକ୍ ଚକ୍ । ମୁହଁ ଉପରୁ ହାତ ପାପୁଲିରେ ପାଣି ନିଗିଡ଼ି ସେ ଠିଆ ହୋଇଥିଲା ଖୁଣ୍ଟ ଉପରେ ସିଧାସଳଖ । ବାଦାମୀ ରଙ୍ଗର ବାଉଳୀ ଖୁଣ୍ଟ ଉପରେ ସତେ ଯେମିତି ଗୋଟିଏ ତାଳଗଛର କଳାଖୁଣ୍ଟ । ଡ଼ାକ ଛାଡ଼ିଲା ପରେ ବିଲେଇ ଚାରିଆଡ଼ିକି ମୁହଁ ବୁଲାଇ ଆଣି ଡ଼େଇଁ ପଡୁଥିଲା ଗହୀରିଆ ପାଣି ଭିତରକୁ ।

ବାଉଳୀର ଚାରିଆଡ଼େ ଛୋଟ ବଡ଼ ପୁଅ ଝିଅ ବୁଢ଼ା ବୁଢ଼ୀ ବିଭିନ୍ନ ସ୍ନାନ ପ୍ରକ୍ରିୟାରେ ବ୍ୟସ୍ତ ଥିଲେ । କେତେ ମା'ମାନେ ଛୁଆମାନଙ୍କୁ ଗାଧୋଇ ଦେଉଥିଲେ ତ କେହି ବାଉଳୀ ଉପରେ ଥିବା ପଥରମାନଙ୍କରେ ଗୋଇଠି ଘଷୁଥିଲେ ଚିକିଣିଆ ଖପୁରୀ ଖଣ୍ଡରେ ହାତ ଗୋଡ଼ର ମଇଳା ସଫା କରୁଥିଲେ। କେହି ଦାନ୍ତ ଘଷୁଥିଲା ତ କେହି ମୁହଁରେ ସାବୁନ ଫେଣ ଟିକିଏ ମାରି ଦେଉଥିଲା । କେହି କେହି ଅବା କୂଳରୁ ବାଉଳୀକୁ ଡ଼େଇଁ ପାଣିରେ ପହଁରି ପାଟିରୁ ଫୁତ୍କାର ଛାଡୁଥିଲେ । ବୁଢ଼ା ଜଣେ ତା ଗାମୁଛାକୁ ବଳିଆଣି ପିଠି ଘଷୁ ଘଷୁ ଉତ୍ତର ଦେଇଥିଲା – 'ମରିଯିବୁରେ ଅଣ୍ଡିରାଚଣ୍ଡୀ କେଉଁଠି ମୁଣ୍ଡ ବାଡ଼େଇ ହୋଇଯିବ ତ ଆଉ ପାଣି ଭିତରୁ ଉଠିପାରିବୁନି !' ବିଲେଇ ସେମିତି ପରାମର୍ଶକୁ ହସି ଉଡ଼ାଇ ଦେଉଥିଲା ଆଉ ସେ ଗହୀରିଆ ପାଣି ତଳୁ ବାଲିଆମାଟି ମୁଠାଏ ହାତ ପାପୁଲିରେ ଉଠାଇ ଆଣି ସମସ୍ତଙ୍କୁ ଦେଖାଇ କହୁଥିଲା – ହେଇ ଦେଖ ତଳେ କେମିତି ବାଲି ପଡ଼ିଛି ।

ଜ୍ୟେଷ୍ଠ ମାସର ଖରାଦିନ । ଚାରିଆଡ଼ ସତେ ଯେମିତି ଜଳୁଛି। କୂଅ ପୋଖରୀ ନଈ ନାଳ ସବୁ ଶୁଖିଲା । ଗାଁର ଦି' ଚାରିଟା କୂଅରୁ ଭୋର ବେଳେ ଯେଉଁ କେତେ ମାଠିଆ ପାଣି ବାହାରେ ସେ ପାଣି ପାଇଁ କେତେ କଳିଗୋଳ । କାହିଁ ମାଇଲିଏ ବାଟ ଗଲେ ନଈ ବାଲି ଉଖାରି ପିଇବା ପାଣି ମାଠିଆଏ ଦି' ମାଠିଆ ଆଣି ସମସ୍ତେ ଘର

ଚଳାନ୍ତି । ଗାଧୋଇବା ପାଇଁ ଗାଁରେ ଏଇ ଗୋଟିଏ ମାତ୍ର ବାଉଳୀ । କୋଡ଼ିଏ ହାତ ଲମ୍ବ ଆଉ କୋଡ଼ିଏ ହାତ ଓସାର । ମାଙ୍କଡ଼ା ପଥରରେ କେମିତି ଝର ଫିଟିଥିଲା କେଜାଣି ଯେତେ ବଡ଼ ଖରା ଦିନେ ବି ପାଣିର ଗଭୀର ଦଶ ହାତରୁ କମ୍ ହୁଏନି। ଗୌନ୍ତିଆ ବୁଢ଼ାର ସାନ ପୁଅ କେମିତି ସ୍ଥାନ ବାଛି ବାଉଳୀ ଖୋଳାଇଥିଲା ଯେ, ସମସ୍ତେ ତା ପାଠପଢ଼ାକୁ ବାହାବା ଦିଅନ୍ତି । ସେ ପୁଅ ବାହାରେ କେଉଁଠି ସରକାରୀ ଚାକିରି କରେ ଆଉ ତାଙ୍କ ଜମିବାଡ଼ି ଦେଖରେଖ କରୁଥିବା ହଳିଆକୁ ଖବର ପଠାଇ ଦେଇଥାଏ ଯେ, ଖରାଦିନେ ବାଉଳୀରେ ଗାଧୋଇବା ପାଇଁ କାହାକୁ ଯେମିତି ମନାକରି ଦିଆନଯାଏ । ଗାଧୋଇବାକୁ ସୁବିଧା ହେବ ବୋଲି ବାଉଳୀ ଚାରିଆଡ଼େ ମାଟି ହାଣି ପାହାଚ ବି କରିଦେଇଥାଏ । ପହଁରି ନଜାଣିବା ଲୋକେ ସେ ପାହାଚମାନଙ୍କରେ ବସି ବାଲଟିରେ ପାଣି ଆଣି ଗାଧାନ୍ତି । ପ୍ରଥମେ କେହି କେହି ହରିଜନମାନେ ଗାଧୋଇଲା ବେଳେ ଆପତ୍ତି ଉଠାଇଥିଲେ । କିନ୍ତୁ ମାଲିକର ହୁକୁମନାମା ଶୁଣି ଏବେ ଆଉ ଆପତ୍ତି କରନ୍ତିନି । କିନ୍ତୁ କେହି ଡ଼ିଆଁଡ଼େଇଁ କରି ପାଣି ଗୋଳିଆ କଲେ ବିରକ୍ତ ହୁଅନ୍ତି । ଉଚ୍ଚବାଚ ହୁଏ । ବିଲେଇକୁ ଆକଟ କରିବାକୁ କିନ୍ତୁ କାହାରି ସାହସ ହୁଏନି । ଚଣ୍ଡୀର ତୁଣ୍ଡରେ ଲଗାମ ନା ମୁହଁରେ ବାଡ଼ବତା । କଣ ଯେ କହିବ ତାର ଅବା କି ଠିକଣା ? ଦୁନିଆରେ ସେ କାହାକୁ ଡ଼ରେ ନା ଖାତିର କରେ ?

ବିଲେଇର ଭଲ ନାଁ ଆଉ କିଛିଥିଲା ନା ନାହିଁ କେହି ଜାଣନ୍ତିନି । ବିଲେଇ ନାଁ ହିଁ ଗାଁରେ ଯଥେଷ୍ଟ । ଟୁଲୁର ଝିଅ ବିଲେଇ । ତେବେ ଠିକ୍ ଟୁଲୁର ଝିଅ ବି ନୁହେଁ । ବାନ୍ଦନ୍ ପଲାରେ ଥିଲା ବିଲେଇର ବାପାଘର । ତା’ ବାପା ଜଣକ ଘରେ ହଳିଆ ଥିଲା । ବିଲେଇକୁ ଯେତେବେଳେ ଦେଢ଼ବର୍ଷ ତା ବାପ ମରିଗଲା । ଦୁଇପୁଅ ଆଉ ଏ ଛୋଟ ଝିଅକୁ ଧରି ବିଲେଇର ମା’ ଚାଲିଆସିଥିଲା ଏ ରତନପୁର ଗାଁକୁ । କୁଲି ମଜୁରୀ କରିବା ପାଇଁ । ମାଗି ଯାଚି ଲୋରି ଖାଇବା ପାଇଁ । ବଡ଼ପୁଅର ବୟସ ଆଠ କି ନଅ । ସେ ଗାଈ ଚରେଇ ପାରେ । ସାନପୁଅକୁ ଛଅ-ସାତ ବର୍ଷ । ସେ ବାଛୁରୀ କି ମେଣ୍ଢା ବି ଚାରାଇଦେବ । ରତନପଲାର ବୁଢ଼ା ଗୌନ୍ତିଆ ଦୟାଳୁ ଲୋକଟିଏ ଜାଣି ତାଙ୍କର ଆଶ୍ରାକରି ବାନ୍ଦନପଲା ଛାଡ଼ିଥିଲା ବିଲେଇର ମା । ଗୌନ୍ତିଆ ବୁଢ଼ା ବି ସାହାପକ୍ଷ ହେଲେ । ତାଙ୍କ ହଳିଆ ଟୁଲୁକୁ ଡ଼କାଇ କହିଲେ, ‘ଦେଖିରେ ଟୁଲୁ ତୋ କନିଆର ତ ଏମିତି ଅବସ୍ଥା ଯେ, ଖଟରୁ ଆଉ ଉଠିପାରୁନି । ଏବେ ଯିବକି କିଛିଦିନ ଗଲେ ଯିବ । ଏ ବିଚାରୀକି ତୋ ଘର ଓଳିରେ ଆଶ୍ରା ଦେ ଯେ, ତା’ ଛୁଆମାନେ ମୁଣ୍ଡ ଗୁଞ୍ଜିବାକୁ ଥାନ ଟିକିଏ ପାଇ ଯେମିତି ବଞ୍ଚିବେ, ସେ ବି ବେଳ ଅବେଳରେ ତୋ ପାଇଁ ଧାନ ଗଣ୍ଡିଏ କୁଟିଦେବ କି ଚାଉଳ ଗଣ୍ଡିଏ ଫୁଟାଇଦେବ । ତାର ତ

ବୟସ ଅଛି; ଜଙ୍ଗଲରୁ ନେଇ ଆସିଲେ, କାହାଘରେ ବାସନ କୁସନ ମାଜିଦେଲେ ତା ପେଟ ସେ ପୋଷିନେବ । ପିଲା ଦି'ଟା ବି ଗାଈମେଣ୍ଢା ଚରାଇ ନିଜ ନିଜ ପେଟ ପୋଷି ନେବେ । ଆଉ ତୋ ମନକୁ ଯଦି ପାଇବ ତୋ କନିଆଁ ମରିଗଲେ ତାକୁ ରଖିବୁ ତ ରଖିନେବୁ ।' ଟୁଲୁର ମନକୁ କଥାଟା ବେଶ୍ ପାଇଥିଲା । ସେତେବେଳକୁ ତା ବୟସ ତିରିଶ ପାଖାପାଖି, ତା କନିଆଁ ମରିଗଲେ ତ ଗୋଟିଏ କି ଛାଡ଼ିରୀଟିଏ ଖୋଜିବ । ବିଲେଇ ମା'ର ବୟସ ବା କେତେ ଯେ!

ସେ ଦିନରୁ ବିଲେଇର ମା' ଟୁଲୁ ଘରେ ରହିଲା ଯେ, ରହିଗଲା । ଷତକୁ ସତ କେତେ ମାସ ପରେ ଟୁଲୁର ସ୍ତ୍ରୀ ଯେତେବେଳେ ମରିଗଲା ସେ ଛାଡ଼ିଦେଇ ଗଲା ତା'ର ଏକମାତ୍ର ଝିଅ ବସୁମତୀକୁ ଏଇ ବିଲେଇର ମା' ପାଖରେ । ବସୁମତୀ ଆଉ ବିଲେଇ ହେଲେ ଟୁଲୁର ଦୁଇଝିଅ । ବସୁମତୀକୁ ବିଲେଇର ମା ସେମିତି ଆଦର ଯତ୍ନରେ ପାଳିନେଲା ଟୁଲୁ ବି ସେମିତି ଯତ୍ନରେ ପାଳିନେଲା ବିଲେଇକୁ । ବସୁମତୀ ଆଉ ବିଲେଇର ବୟସ ପ୍ରାୟ ସମାନ । କିନ୍ତୁ ବସୁମତୀ ପିଲାଦିନରୁ ରୋଗଣୀ ତ ବିଲେଇ ପିଲାଦିନୁ ଉଦଣ୍ଡୀ । ଦେଖିବାକୁ ଚିକ୍କଣ କଳା, ଚଞ୍ଚଳ ଆଉ ପଖାଳ ହାଣ୍ଡିଠାରୁ ଆରମ୍ଭ କରି ଯାବତୀୟ ହାଣ୍ଡି କୁଣ୍ଡି ଦରାଣ୍ଡିବାରେ ସିଦ୍ଧହସ୍ତ । ତାକୁ ଟୁଲୁ ଚୋରଣୀ ବିଲେଇ ବୋଲି ଡ଼ାକୁ ଡ଼ାକୁ ତା ନାଁ ସତକୁ ସତ ବିଲେଇ ହିଁ ରହିଗଲା ।

ଟୁଲୁ ସାଙ୍ଗରେ ଘର କଲାପରେ ବିଲେଇ ମା'ର ଆଉ ଗୋଟିଏ ଝିଅ ହେଲା ହୀରା । ହୀରା କିମ୍ବା ବସୁମତୀ ଘରେ ଜୋର୍ ଜବରଦସ୍ତି ଦଖଲକରି ନେଇଥିବା ବିଲେଇର ସ୍ଥାନ ଛଡ଼ାଇ ନେଇପାରିନଥିଲେ । ସାବତ ବାପା, ମା' ଦୁଇଭାଇ ଆଉ ଦୁଇଭଉଣୀ। ସମସ୍ତଙ୍କର ମୁରବି ହୋଇ ଉଠିଥିଲା ସିଏ । ବିଲେଇର ଖୁସ୍ ମିଜାଜ, ଚଞ୍ଚଳ ସ୍ୱଭାବ ଏବଂ କର୍ମପଟୁତା ଯୋଗୁଁ ଗାଁରେ ତାର ଅଚିହ୍ନା ବୋଲି କେହି ନଥିଲେ । କୌଣସି କାମ ପାଇଁ କୁଲି ମଜୁରିଆ ଦରକାର ପଡ଼ିଲେ ସମସ୍ତେ ଆଗ ବିଲେଇକୁ ହିଁ ମନେପକାନ୍ତି । ଫଳରେ ବିଲେଇକୁ କେବେ କାମରେ ଅଭାବ ପଡ଼େନି । ତା' ନିତିଦିନିଆ ମଜୁରି ଘରର ଅଭାବ ଅନଟନ ସୁଧାରିବାରେ ଯେମିତି ସାହାଯ୍ୟ କରେ ଭାଇ ଭଉଣୀଙ୍କ ଅଣ୍ଟିରେ ମୁଢ଼ି ଗଣ୍ଡିଏ ଗୁଞ୍ଜି ଦେବାକୁ ସାହାଯ୍ୟ କର ସେମିତି ।

ବିଲେଇକୁ ଚଉଦ ବର୍ଷ ନ ପୂରୁଣୁ ତା' ଘରେ ତା ମୁଣ୍ଡରେ ହଳଦୀ ପାଣି ଢ଼ାଳିଥିଲେ ଏବଂ ତାର ସାତଦିନ ପରଠୁ ବର ସବୁ ବିଲେଇର ହାତ ଧରିବା ପାଇଁ ପହଞ୍ଚିଥିଲେ ଟୁଲୁର ଘର ଦୂଆରେ । ଟୁଲୁର ପଣ କିନ୍ତୁ ଥିଲା ବେଶ୍ ଟାଣ । ଛ' ଶହ ଟଙ୍କାରୁ କମ୍‌ରେ ସେ ବିଲେଇକୁ ଦେବନି । ଝିଅର କମାଣି ଖାଉଛି ବୋଲି, ଟୁଲୁ ବିଲେଇକୁ ବାହା ଦେଉନି, ଏଇକଥା ଶୁଣି ଶୁଣି ଟୁଲୁକୁ ଟିକେ ବାଧିଥିଲା । ତେଣୁ

ଶେଷରେ ଜଣେ ଯେତେବେଳେ ପାଞ୍ଚଶହ ଟଙ୍କା ପଣ ଦେବାକୁ ରାଜି ହେଲା ବିଲେଇକୁ ବାହାଦେବା ପାଇଁ ଜବାବ ଦେଇ ଦେଲା ଟୁଲୁ ।

ବିଲେଇର ବାହାଘର ବି ହୋଇଥିଲା ବେଶ୍ ଭଲରେ । ଟୁଲୁ ବିଲେଇର ନାକରେ ଦୁଇଅଣି ସୁନାର ଗୋଟିଏ ଫାସିଆ ମୁଦି ପିନ୍ଧାଇ ଦେଇଥିଲା ଆଉ ଯୌତୁକ ଦେଇଥିଲା, ଦୁଇଖଣ୍ଡ ନୂଆ ଶାଢ଼ୀ ଖଣ୍ଡିଏ କଂସା ଥାଳି, କଂସା ଖୁରି, ଏଲୁମିନିୟମର ଡ଼େକ୍‌ଚିଟିଏ, ଗଡୁ ଓ ଗିଲାସ ସାଙ୍ଗକୁ ଦୁଇଟା ଗିନା । ନାଲି ରିବନ ଦି' ହାତ, ଟଙ୍କା ବସା ପିତଳ ମୁଦି, ପୋହଳା କଣ୍ଠିର ହାର ଆଉ କଳା ମାଳି ସାଂଗକୁ ମଙ୍ଗା ଘଷା ପାଇଁ ସାବୁନଟିଏ ବି ବାଉଁଶ ପେଡ଼ିରେ ଭରିଦେଇଥିଲା ବିଲେଇର ମା' । କୁଟୁମ୍ବଙ୍କୁ ଭୋଜିଭାତ ଦେଇ ବାହା ବେଳେ ରାତିସାରା ବାଜା ବଜାଇ ଗାଁର ଝିଅମାନଙ୍କୁ ନାଚିବା ପାଇଁ ସୁଯୋଗ ଯେମିତି ଦେଇଥିଲେ ସେ ଦୁହେଁ, ବର ଘରେ ଭଲକରି ଖଟିବା ପାଇଁ ଘରୁ ବିଦାୟ ଦେଲାବେଳେ ପରାମର୍ଶ ବି ଦେଇଥିଲେ ଯଥେଷ୍ଟ । କିନ୍ତୁ ବର ଘରକୁ ଯିବା ମାସେ ନପୂରୁଣୁ ବିଲେଇ ବର ଘରୁ ଚାଲିଆସିଲା ନିଜ ଗାଁ ରତନପଲାକୁ । ସମସ୍ତେ ପ୍ରଥମେ ଧରିନେଇଥିଲେ ଯେ, ବାପା ମା' ଭାଇ ଭଉଣୀଙ୍କି ଦେଖିବା ପାଇଁ ବିଲେଇ ଗାଁକୁ ଆସିଚି । କିନ୍ତୁ ବର ତ ତା' ସାଙ୍ଗରେ ଆସିବା କଥା । ବିଲେଇ ଏକୁଟିଆ ଆସିଥିବା ଦେଖି ଟୁଲୁର ପାଖ ପଡ଼ୋଶୀମାନେ ମୁହଁ ଚୁହାଁଚୁହିଁ ହୋଇଥିଲେ । ଯେତେବେଳେ ଚାରି ପାଞ୍ଚ ଦିନ ପରେ ବର ଗାଁକୁ ଆସି ବିଲେଇକୁ ଫେରିଯିବା ପାଇଁ ଡ଼ାକିଲା ବିଲେଇ ରୋକ୍‌ଠୋକ୍ ମନାକରିଦେଲା । ଟୁଲୁ ବି ବର ଘରକୁ ଫେରିଯିବା ପାଇଁ ବିଲେଇକୁ ଅନେକ ବୁଝାଇଲା । ବିଲେଇର କିନ୍ତୁ ସିଧାସଳଖ ଜବାବ ସେ ମଦୁଆ କାଙ୍ଗାଳ ଘରକୁ ଆଉ ଯିବନି । ସେତେବେଳକୁ ଜଣାପଡ଼ିଲା ଯେ, ଜମି କିଣିବ ବୋଲି କହି ବିଲେଇର ନାକଗୁଣା ନେଇ ତା' ବର ମଦପିଇ ଦେଲା ପରେ ଘରର କଂସା ବାସନ ବି ବିକିଦେଲାଣି। ଯାହା ରନ୍ଧା ହୋଇଥାଏ ବର କୁଆଡ଼େ ଏକୁଟିଆ ଖାଇଦେଇ ବିଲେଇକୁ ପେଟପୂରା ଖାଇବାକୁ ବି ଦିଏନି । ପେଟ ପୂରୁନି ବୋଲି ବିଲେଇ ଯେତେବେଳେ ମଜୁରୀ କରିବ ବୋଲି ବାହାରିଲା, ବର କୁଆଡ଼େ ଏ ଲୋକ ସେ ଲୋକକୁ ଲଗାଇ ବାଜେ ଆକ୍ଷେପ ମାନ କଲା । ସେମିତି ଘରକୁ ସେ ଆଉ ଫେରିଯିବ ? ପାଞ୍ଚଶହ ଟଙ୍କା ପଣ ଦେଇଛି ବୋଲି ବର ତାର ବରପଣିଆ ସାବ୍ୟସ୍ତ କରିବାକୁ ବିଲେଇର ହାତଧରି ନିଜ ଗାଁକୁ ନେବା ପାଇଁ ଟାଣୁଥିଲା, କିନ୍ତୁ ବିଲେଇ ନିଜକୁ ଛଡ଼ାଇନେଲା ପରେ ବରମାଡ ଦେବା ପାଇଁ ତା' ବାଡ଼ି ଉଠାଇବାରୁ ବିଲେଇ ନିଜେ ବି ନେଇଆସିଥିଲା ଗୋଟାଏ ବାଡ଼ି ।

ଏଇ ଘଟଣାର କିଛିଦିନ ପରେ ବର ପୁଣି ଦୁଇତିନି ଜଣ ସାଂଗସାଥୀଙ୍କ ସହ ମଦ ପିଇ ଠେଙ୍ଗା ବାଡ଼ି ଧରି ଆସିଥିଲା ବିଲେଇକୁ ନେଇଯିବାକୁ ନହେଲେ ପାଞ୍ଚଶହ ଟଙ୍କା

ଫେରସ୍ତ ନେବ ବୋଲି । ନାକଗୁଣା ଆଉ ବାସନକୁସନ ସେ ଆଗ ଫେରାଇ ଦେଉ ବୋଲି ରତନପଲାର କେତେ ଗାଁ ବାଲାଏ ଯେତେବେଳେ ଧରିବସିଲେ ଏବଂ ସେମାନେ ବି ଠେଙ୍ଗା ବାହାର କଲେ, ବର ଫେରିଗଲା ଯେ, ଆଉ ରତନପଲାରେ ଦେଖାଦେଲାନି । ବିଲେଇ ପୁଣି ତାର ଖୁସ୍ ମିଜାଜ୍ ନେଇ ପଇଁତରା ମାରିବାକୁ ଆରମ୍ଭ କଲା ଗାଁ ଦାଣ୍ଡରେ ।

ବାଉଳୀର ପାଣି ଭିତରକୁ ତେଣ୍ଡା ଖୁଣ୍ଟରୁ ଡେ଼ଇଁବା ଘଟଣା ଥିଲା ପରବର୍ତ୍ତୀ କାଳର ।

ପ୍ରାୟ ବର୍ଷେ ପରେ ବିଲେଇର ବାହାଘର ହେଲା ଦ୍ୱିତୀୟ ଥର ପାଇଁ । କମ୍ ବୟସର ଯୁବତୀଝିଅ ହେଲେ ମଧ୍ୟ ଛାଡ଼ିରୀ କନ୍ୟା ବୋଲି ଯୁଆନ୍ ବରପାତ୍ର କେହି ଆସୁନଥିଲେ । ଆଉ ପାତର ଟିକିଏ ବୟସ ବେଶୀ ହୋଇଯାଇଥିଲେ ବିଲେଇ ବାହା ହେବାକୁ ରୋକ୍‌ଠୋକ୍ ମନା କରି ଦେଉଥିଲା । କିନ୍ତୁ ଶେଷରେ ଭଲ ପାତ୍ରଟିଏ ଆସିଥିବା ଦେଖି ନିହାତି କମ୍ ୧୫୦ ଟଙ୍କା ପଣରେ ଟୁଲୁ ଯେମିତି ଝିଅ ଦେବାକୁ ରାଜି ହୋଇଗଲା ବିଲେଇ ମଧ୍ୟ ସେ ନୂଆ ବର ସଂଗରେ ଯିବାକୁ ଅମଙ୍ଗ ହେଲାନି । ଏଥର ବିଲେଇର ଯୌତୁକ ଥିଲା ତା'ର ପୁରୁଣା ଶାଢ଼ୀ ସାଂଗକୁ ଖଣ୍ଡିଏ ମାତ୍ର ନୂଆ ଶାଢ଼ୀ । ବାହାଘର ନଥିଲା କି ଭୋଜିଭାତ ନଥିଲା । ଖାଲି ଘରେ ଘରେ ବନ୍ଧୁବାନ୍ଧବ ଦି' ଚାରିଜଣ ଖାଇ ବିଲେଇକୁ ବିଦାୟ ଦେଇଥିଲେ ଯାହା ।

ଏ ନୂଆ ବର ସଂଗରେ କିନ୍ତୁ ବିଲେଇର ଘରସଂସାର ସୁଖରେ କଟୁଛି ବୋଲି ସମସ୍ତେ ଜାଣିପାରିଥିଲେ । 'ନୂଆଖାଇ' ପରେ ବରକନ୍ୟା ଯେତେବେଳେ ଟୁଲୁ ଆଉ ବିଲେଇର ମା'କୁ ଜୁହାର ଭେଟ କରିବା ପାଇଁ ଆସିଥିଲେ ଚିକ୍କଣ ଚାକଣ ଦେହ ଓ ଦେହରେ ଲାଗିଥିବା ଚର୍ବି ସଂକେତରୁ 'ଛୁଆ ହେବ କିଲୋ' ବୋଲି କିଏ ପଚାରିଦେଲେ ବିଲେଇର ମୁହଁରେ ପ୍ରଥମ କରି ଲାଜ ଦେଖାଦେଉଥିଲା, ଆଉ ସେ ମୁହଁକୁ ବୁଲାଇଦେଇ ପଣତ କାନିରେ ପାଟି ଢ଼ାଙ୍କି ହସୁଥିଲା । ସେ ହସ ବି ଥିଲା ଶାନ୍ତ ଏବଂ ମଧୁର, ପୂର୍ବର ଖିଁ ଖିଁ ଶବ୍ଦ ବିହୀନ ।

ଗାଁର ସମସ୍ତେ ବିଲେଇକୁ ଉଣାଅଧିକେ ଭୁଲିଆସିଲା ବେଳକୁ ସେ ପୁଣି ଦେଖାଦେଲା ଗାଁରେ । ଗୋଟିଏ ତିନିବର୍ଷର ଛୋଟ ଝିଅକୁ ଧରି । କି ଅଜଣା ରୋଗଟିଏ ଆସି ତା ବରକୁ ନେଇଗଲା ଯେ, ବିଲେଇ ଔଷଧ ଦି' ପାନ ବି ଭଲକରି ଦେଇପାରିଲାନି । ତା' ସୁନାର ସଂସାର ଚୂନା ହୋଇଗଲା । ହଳିଆ ବରର ଧନସଂପତ୍ତି ଅବା କଣ? ପୁଣି ଏଡ଼ିକି ଛୋଟ ଝିଅଟିଏ ଧରି କୁଆଡ଼ିକି ଅବା ସେ ମୂଲ ଲାଗିଯିବ? ତା ନିଜ କୁଡ଼ିଆ ଘର ସବୁଦିନ ପାଇଁ ଛାଡ଼ିଦେଇ ପୁଣି ସେ

ଫେରିଆସିଲା ରତନପଲା ତା ମା’ ପାଖକୁ । ଟୁଲୁ ବି ଆଖିରେ ଲୁହ ନେଇ ବିଲେଇର ଝିଅକୁ କାଖେଇ ନେଇଥିଲା ।

କେତେଟା ମାସ ନଯାଉଣୁ ତା’ ପୁରୁଣା ରତନପଲା ଗାଁରେ ବିଲେଇ ପୁଣିଥରେ ତା’ ଆଗ ଦିନର ରୂପ ନେଇଗଲା । ଯୁଆଡ଼େ ଯାଏ ତା’ ଝିଅ ସାନ ବିଲେଇ ତା’ ପଛରେ ଗୋଡ଼ାଇଥାଏ । ଖଣ୍ଡିଏ ଛୋଟ ଶାଢ଼ୀ ପିନ୍ଧି ଆଉ ସେଥିରେ ବୁଜୁଳାଏ ମୁଢ଼ି ବାନ୍ଧି । ବିଲେଇ ମଜୁରୀ କରିବାକୁ ଗଲେ ଏ ସାନ ବିଲେଇ କ୍ଷେତ ହୁଡ଼ାରେ ତା’ ଶାଢ଼ୀରେ ଢ଼ାଙ୍କିଢୁଙ୍କି ହୋଇ ତୁନି ତାନି ବସିଥାଏ । ଆଉ ଗୋଟିଏ ଗୋଟିଏ କରି ମୁଢ଼ି ଚୋବାଉଥାଏ । ହୁଡ଼ାର କଙ୍କି ଝିଣ୍ଟିକା ଧରିବାକୁ ଚେଷ୍ଟା କରେ । କିନ୍ତୁ ଅନେକ ଦିନ ସେ ତା’ ବୁଢ଼ାଦାଦା ଟୁଲୁ ସାଂଗରେ ଯାଏ ଗାଈ ଚରାଇବାକୁ ନହେଲେ ତା’ ଆଈ କାହା ଘରକୁ ବାସନକୁସନ ମାଜିବାକୁ ଗଲେ ତା ପଛରେ ଗୋଡ଼ାଇ ଯାଏ ।

ଟୁଲୁ ପ୍ରଥମ ପ୍ରଥମ ଲଗାଇଥିଲା ବିଲେଇକୁ ପୁଣିଥରେ ବୁଢ଼ା ହଡ଼ା ବର ଯିଏ ଆସିଲା ତାକୁ ଦେବା ପାଇଁ । ବିଲେଇର ବୟସ ଅବା କେତେ, ମାତ୍ର କୋଡ଼ିଏ କି ବାଇଶି, ତଥାପି ଦ୍ବିତୀୟ ପକ୍ଷ ବୋଲି କମ୍ ବୟସର ପାତ୍ର କେହି ମିଳୁନଥିଲେ । ବିଲେଇ ନାଁରେ ଗାଁ ଲୋକଙ୍କ ସତ ମିଛ ଟିପ୍ପଣୀ ଶୁଣିଲେ ଟୁଲୁକୁ ବୋଧେ.... ସେ ତେଣୁ ଠିକ୍ କରି ନେଲା ଯେ, ଏଥର ଯିଏ ଆସିବ ବିଲେଇକୁ ନ ପଚାରି ତାକୁ ଦେଇଦେବ । ଯଥା ସମୟରେ ଛତା ଓ ବାଡ଼ି ଧରି ଜଣେ ବରପାତ୍ର ମଧ୍ୟ ଦେଖାଦେଲେ । ପଚାଶ ଷାଠିଏ ଟଙ୍କା ପଣ ଦେବା ପାଇଁ ମଧ ସେ ପ୍ରସ୍ତୁତ ଥିଲା, କିନ୍ତୁ ବିଲେଇ ତାକୁ ଦେଖି ହସି ହସି ଦୋହଲିଗଲା । ଟୁଲୁ କହିଲା – ‘କେତେଦିନ ତୋତେ ମୋ ଘରେ ଏମିତି ପେଜ ତୋରାଣି ଦେବି ଆଉ ଲୋକଙ୍କ କଥା ଶୁଣିବି ?’ ବିଲେଇ ହସ ସମ୍ଭାଳି ନେଇ କହିଲା – ‘ଏ ତ ଯାଉଁ ଯାଉଁ ବାଟରେ ମରିଯିବ କକା, ତା’ପରେ ତ ମୁଁ ପୁଣିଥରେ ଏଠିକି ଫେରିଆସିବି ।’ ଟୁଲୁ ପାଖରେ ଏ କଥାର ଉତ୍ତର ନଥିଲା ସେ ଖାଲି ହାଣ୍ଡି ପରି ମୁହଁଟିଏ କରି ଉଠିଗଲା ଦାଣ୍ଡକୁ ।

ଏ ଘଟଣାର କିଛିଦିନ ପରେ କିନ୍ତୁ ଜଣେ ଭଲପାତ୍ର ଦେଖାଦେଲା ଟୁଲୁର ଘର ଦୁଆରେ । ବୟସ ତିରିଶ କି ପଇଁତିରିଶ, ଛ’ ସାତ ମାଇଲ ଦୂର ଗାଁର ଜମି ବାଡ଼ି ବି ତିନି ଚାରି ଏକର ଅଛି । ବିଲେଇ ରାଜି ହୋଇଗଲା ଏ ବର ସାଙ୍ଗରେ ପୁଣିଥରେ ଘର ସଂସାର କରିବା ପାଇଁ ।

ରତନପଲାରୁ ବାହାରିଲା ବେଳକୁ ଏ ନୂଆବର ରାମୁ କିନ୍ତୁ ଛୋଟ ବିଲେଇ କକଇକୁ ସାଙ୍ଗରେ ନେବାକୁ ମନାକରୁଥିଲା । ଟୁଲୁ ବି କକଇକୁ ଘରେ ରଖିବା ପାଇଁ ରାଜି ହୋଇଯାଇଥିଲା । କିନ୍ତୁ କକଇ ଗୋଡ଼ାଇଗଲା ତା’ ମା’ ପଛରେ । ବାଟରେ

କକଇ ଯେତେବେଳେ ଥକିଗଲା, ବିଲେଇର ନୂଆ ବର ତାକୁ କାଖେଇବାକୁ ପ୍ରସ୍ତୁତ ନଥିଲା । ପ୍ରଥମ ଚିହ୍ନାରେ ହିଁ ରାମୁ କକଇ ଭିତରେ ଦେଖାଦେଇଥିଲା ବିଦ୍ୱେଷ ।

ବିଲେଇର ଏ ନୂଆ ସଂସାର କିଛି ମନ୍ଦ ନଥିଲା । ଖାଇବା ପିଇବାରେ କିଛି ଅଭାବ ନାହିଁ। ନୂଆଖାଇ, ରଥଯାତ୍ରା ବେଳେ ଦାମୀକା ନୂଆ ଶାଢ଼ୀ ବି କିଣିଦେଇଥିଲା ରାମୁ । ଜଞ୍ଜାଳ କହିଲେ ଏକମାତ୍ର କକଇ ଆଉ ରାମୁର ସମ୍ବନ୍ଧ । ସେ ସମ୍ବନ୍ଧକୁ ତିକ୍ତତର କରିଦିଏ ସେଇ ଗାଁରେ ରହୁଥିବା ତାର ଏକ ନଣନ୍ଦ । ବେଳ ଅବେଳ ସବୁବେଳେ କକଇର ପାଟି ଚାଲିଥିବା ଦେଖି ସେ ସହିପାରେନି । ତା ଭାଇକୁ କହେ – "ପଖାଳ, ମୁଢ଼ି, ଚଣା, କାନ୍ଦୁଲ କଣ ଏମିତି ପରଘର ଝିଅ ପାଇଁ? ଏ ତୋର କିଏ କିରେ? ମୋ ରାଧିକା ତ ଏମିତିନୁହେଁ।"ତାର ଉତ୍ତର ସ୍ୱରୂପ ମିଳେ କକଇର ଗାଲରେ ରାମୁର ଚାପୁଡ଼ା ।

ଏମିତି ଚାପୁଡ଼ା ଖାଇଲେ କକଇ ଯେତେବେଳେ କାନ୍ଦେ, ସେ ଆଶା କରୁଥାଏ ଯେ ତା' ମା ତାକୁ କୋଳକୁ ନେଇ ଗେଲ କରିବ । ବେଳେ ବେଳେ ବିଲେଇ ହାଣ୍ଡି ପରି ମୁହଁକରି କକଇକୁ କାଖେଇ ନିଏ । କିନ୍ତୁ ଅନ୍ୟବେଳେ ଫଣ ଫଣ ମୁହଁରେ 'ଖାଇରି ସବୁବେଳେ ଖାଉ ଥା' କହି ଗେଲକରିବ କଣ ଓଲଟା ଗାଲକୁ ଭଲକରି ଚିମୁଟି ଟାଣିଦିଏ ।

ବିଲେଇ ଯେ, କକଇ ଆଉ ରାମୁର ସମ୍ବନ୍ଧ ଟିକିଏ ସ୍ନେହପୂର୍ଣ୍ଣ କରିବାକୁ ଚେଷ୍ଟାକରି ନଥିଲା, ତା ନୁହେଁ କିନ୍ତୁ ଫଳ ହୋଇଥିଲା ଓଲଟା । ସେ ଯେତେବେଳେ ରାମୁକୁ ନୂଆବାପା ବୋଲି ଡ଼ାକିବାକୁ କକଇକୁ ବୁଝାଇଲା, କକେଇ ନାକ ଛିଞ୍ଚାଡ଼ି କହିଲା "ଛି ଇଏ କାହିଁକି ମୋଲ ବାପା ହେବ । ମୋ ବାପା ତ ମଲି ଯାଇଚି । ସେ ଯେତେବେଳେ ଫେଲିଆସିବ ମୋ ପାଇଁ କନ ସବୁ ଆନିବ ଜାନିଚୁ?" ତା'ପରେ ଚିଡ଼େଇବା ଢ଼ଙ୍ଗ କରି କହିବ – "ବୁଲା ଦାଦା କହୁଥିଲା ମୋ ବାପା ଯୋଉ ଛଲଗ ପୁଲକୁ ଯାଇଚି, ସେଇଠି କେତେ ଲକମ ଲିବନ୍ ମିଲେ, ଆଉକେତେ ଖେଲନା । ସେ ଗୌନ୍ତିଆ ଘଲ ଅନୁ ଯେମିତି କଣ୍ଢେଇଟିଏ ଧଲି ବୁଲୁଥାଏ, ମୋ ବାପା ବି ସିମିତି କଣ୍ଢେଇ ଆନିଦେବ ଯେ ମୁଁ ତାକୁ ଗାଧୋଇଦେବି ଶୁଆଇଦେବି" ଆଉ ତା ଛୋଟହାତ ପାପୁଲି ଦିଟା ଦେଖାଇ କହେ "ଏତିକି ଚକ୍‌ଲେଟ୍ ଆନିଦେବ। 'ତୋତେ ଦେବିନି' – କହି କିଛିବାଟ ଧାଇଁଯାଏ । ତା' ପରେ ଧୀରେ ଧୀରେ ପାଖକୁ ଆସି ଗେଲେଇ ହେଇ କହେ, 'ଆହା କାନ୍ଦନା, ତତେ ବି ଗୋଟେ ଦେବି, ଏଁ...'

ଅବସ୍ଥା କିନ୍ତୁ ଜଟିଳ ହୋଇଗଲା । ଯେଉଁଦିନ ରାତି ଅଧରେ କକଇ ହଠାତ୍ ତା ବିଛଣାରୁ ଉଠିପଡ଼ି କାନ୍ଥର କେଉଁ ଫାଙ୍କରୁ ଆସୁଥିବା ଜହ୍ନ ଆଲୁଅରେ ଦେଖିପାରିଲା

ଯେ, ତା ମା ତା' ପାଖରେ ତଳ ବିଛଣାରେ ନଶୋଇ ଖଟରେ ସେ ନୂଆଲୋକ ସାଂଗରେ ଶୋଇଚି ସେ ରାଗି ମାଗି ତା ମା'ର ହାତ ଧରି ଟାଣିଲା । ତା' ମା କିନ୍ତୁ ଶୋଇ ଯାଇଥିଲା ନିଘୋଡ଼ ନିଦରେ । ତା'ପରେ କକଇ କାନ୍ଦିବାକୁ ଆରମ୍ଭ କଲା ଆଉ ଧକେଇ ଧକେଇ ସେମିତି ତା' ମା ହାତ ପାଖରେ ଖଟକୁ ଆଉଜି ବସି ରହି ଶୋଇପଡ଼ିଲା । ସକାଳେ ସେ ରାମୁକୁ "ବଦମାଛ କୁକୁର, ମୋ ମା' ସାଂଗରେ ଛୋଉଚି' ବୋଲି ଗାଳିଦେଇ ରାମୁ ପାଖରୁ ଚାପୁଡ଼ା ମାଡ଼ ଖାଇଥିଲା ।

ଅବସ୍ଥା ସୁଧାରିବା ପାଇଁ ବିଲେଇକୁ କୌଣସି ଉପାୟ ଦେଖାଯାଏନି । ମନରେ ତାର ଦେଖାଦିଏ ଦ୍ୱିଧା । କକଇ ପାଇଁ ସେ ତାର ନୂଆ ସୁଖର ସଂସାର ଛାଡ଼ିବ ବା କେମିତି ? ଯୁଆନ ବର ସାଂଗକୁ ସେ ପାଇଛି ଗୋଟିଏ ଭଲ ଘର, ଚାରି ବଖରାର ମାଟିକାନ୍ଥ ଦିଆ ଖପରେଲି ଛାତର ଘର। ବଖରାଏ ଶୋଇବା ଘର ବଖରାଏ ରନ୍ଧାଘର । ବଖରାଏ ଧାନ ଅମାର ଆଉ ବଖରାଏ ଗୁହାଳ । ଧାନ ଅମାରରେ ସାତ ଆଠଟି ପୁଆଳ ବେଣ୍ଟିବନ୍ଧା ଧାନ ପୁଡ଼ା ସାଂଗକୁ ଅଛି ପୁଡ଼ାଏ ଚାଉଳ ଆଉ କିଛି ମୁଗ। କୁକୁଡ଼ା ବି ଅଛି ଘରେ ଆଠ କି ଦଶ । ଶାଶୁ ଶ୍ୱଶୁର ତ ଭିନେ ରହନ୍ତି । ତାଙ୍କର ବି ସେମିତି କିଛି ଅଭାବ ନାହିଁ । ପର୍ବ ପର୍ବାଣିକୁ ଛାଡ଼ିଦେଲେ ଯାହା ଘରେ ସିଏ।

ବିଲେଇ ପାଇଁ ଏକମାତ୍ର ଉପାୟ ଥିଲା କକଇକୁ କିଛିଦିନ ପାଇଁ ତା ମା' ପାଖରେ ଛାଡ଼ିଦେଇ ଆସିବା । ହୁଏତ ସାମୟିକ ଶାରୀରିକ ବିଚ୍ଛେଦ ପରେ ରାମୁ କକଇ ଭିତରେ ସମ୍ବନ୍ଧ କିଛି ସୁଧୁରିବ ।

କକଇ ଧରିନେଇଥିଲା ଯେ, ସେମାନେ ଏ ଗାଁ ଇଛାପୁରକୁ କିଛିଦିନ ପାଇଁ ଆସିଛନ୍ତି । ପୁଣି ରତନପଲା ଫେରିଯିବେ । ବିଲେଇ ଯେତେବେଳେ କହିଲା ସେମାନେ ରତନପଲା ଯିବେ । କକଇ ସତରେ ଖୁସି ହେଇଥିଲା ତାର ବୁଢ଼ାଦାଦା ଓ ଆଇକୁ ଦେଖିବ ବୋଲି । ରତନପଲାରେ ଦି' ଦିନ କଟେଇଲା ପରେ ଅନ୍ଧାରୁଆ ବେଳ ଜାଣି କକଇ ଶୋଇଥିଲା ବେଳେ ବିଲେଇ ଖସି ଚାଲିଆସିଥିଲା ଇଛାପୁରକୁ । କିନ୍ତୁ ଦି' ଦିନ ପରେ ହିଁ କକଇକୁ ଧରି ଟୁଲୁ ପହଞ୍ଚିଗଲା ଇଛାପୁରକୁ ତାର ଅଖିଆ ଅପିଆ କାନ୍ଦ ସମ୍ଭାଳିନପାରି ।

ରାମୁ ଓ ବିଲେଇର ପୁଣି ଦେଖାଦେଲା ସେଇ ମାନସିକ ଦ୍ୱନ୍ଦ୍ୱ । କକଇ ପାଇଁ ରାମୁ ବି ବିଲେଇକୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲା । ବିଲେଇକୁ ନେଇ ସତରେ ସେ ଗଢ଼ିଥିଲା ଏକ ସୁଖର ସଂସାର ଯାହାକି ସେ କେବେ ଆଗରୁ ପାଇନଥିଲା । ବିଲେଇକୁ ସଂପୂର୍ଣ୍ଣ ତା' ନିଜର କରିବାରେ ହିଁ ସେ ଥିଲା ଚିନ୍ତାଗ୍ରସ୍ତ ।

ସେଦିନ କ୍ଷେତର ଘାଇ ବାନ୍ଧିଲା ପରେ ବଳକା ପାଣି ଛାଡ଼ିବା ପାଇଁ ହୁଡ଼ାର ଗୋଟିଏ କୋଣରେ ରାମୁ ଗୋଟିଏ ନାଳର ବ୍ୟବସ୍ଥା କରୁଥିଲା । ତହିଁରେ ମାଟି

ଧୋଇ ନଯିବା ପାଇଁ କେତୋଟି ପଥର ଖଞ୍ଜିବ ବୋଲି ସେ ପାଖର ଗୋଟିଏ ପଥର ଚଟାଣରୁ କୋଦାଳିରେ କେତେଟା ବଡ଼ପଥର ତାଡୁ ତାଡୁ ତଳେ ଦେଖିଥିଲା ବିରାଟ କଙ୍କଡ଼ା ବିଛାଟିଏ । ଠିକ୍ ବେଳେ ତରକି ନଥିଲେ ବିଛାର ଚୋଟ ବାଜିଥାନ୍ତା ତା' ହାତରେ । ପ୍ରାୟ ଫୁଟେ ଲମ୍ବର ବିଛା ଏତେବଡ଼ ଏବଂ ଏମିତି କଳା ସେ କେବେ ଆଗରୁ ଦେଖିନଥିଲା । ବିଛା ଉପରେ କୋଦାଳି କେଞ୍ଚାଟିଏ ଦେଇ ସେ ତାକୁ ପୂରାପୂରି ମାରିଦେବାକୁ କୋଦାଳି ଉଠାଇଛି ହଠାତ୍ ଅଟକିଗଲା । କେହି ଜଣେ ସତେ ଯେମିତି ତା' ମନ ଭିତରେ କହୁଥିଲା ଏ ବିଛାକୁ ଘର ଭିତରେ ଦେଖିଲେ କକଇ ଡ଼ରିଯିବ ଏବଂ ତା'ପରେ ରତନପଲା ଗଲେ ଆଉ ଇଛାପୁର ଘରକୁ ଫେରିଯିବନି । ଶିଆଳି ଲଟାରେ ଦଉଡ଼ିଟିଏ ବଳି ସେ ସନ୍ତର୍ପଣରେ ବିଛାଇ ଲାଞ୍ଜ ପାଖରେ ଦଉଡ଼ି ବାନ୍ଧି ଦେଲା ଏବଂ ଦରମଲା ବିଛାଟାକୁ ତା' ବାଡ଼ିରେ ଝୁଲାଇ ସଞ୍ଜ ହେଲାପରେ ଘରକୁ ନେଇଆସି ରାତିରେ ଶୋଇବା ଘର କୋଣରେ ବାଡ଼ିଟିକୁ ଆଉଜେଇ ଦେଇଥିଲା ।

ସେଇ ରାତିଅଧରେ ତଳେ ଶୋଇଥିବା କକଇ କୌଣସି ଏକ ତୀବ୍ର ଦଂଶନ ଜ୍ୱାଳାରେ ଚିତ୍କାର କରିଉଠି ତା' ମା'କୁ ବିକଳରେ ଦରାଣ୍ଡିଥିଲା କିନ୍ତୁ ଦରାଣ୍ଡିଲା ବେଳେ ପୁଣିଥରେ ତାର ମନେହେଲା କିଛି ଗୋଟିଏ ତାର ହାତପାପୁଲିରେ ଜଳନ୍ତା ନିଆଁର ଚେଙ୍କ ଦେଇଛି । ମାକୁ ଡ଼ାକୁଥିବା ତା'ର କାନ୍ଦଣାସ୍ୱର ଏଥର କ୍ଷୀଣ ହୋଇଯାଇଥିଲା । ତା ମା' ସେତେବେଳେ ଖଟ ଉପରେ ଶୋଇଥିଲା ପ୍ରଗାଢ଼ ନିଦରେ ।

ପାହାନ୍ତିଆ ବେଳେ ବିଲେଇ ଖଟରୁ ଉଠି ବାରିଆଡୁ ଫେରି ମୁହଁ ଧୋଇ ଗୋବର ପାଣି ଛେରା ଦେଇଥିଲା । ତା'ପରେ ସେ ଯେତେବେଳେ ମାଠିଆ ହାତରେ ଗାଁ ଦାଣ୍ଡକୁ ବାହାରି ଆସିଲା କକଇ ତା' ପଛରେ ଗୋଡ଼ାଇ ଆସୁନଥିବା ଦେଖି ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ସତ, କିନ୍ତୁ ଶୋଇଛି ତ ଆଉ ଟିକେ ଶୋଉ ବୋଲି ସେ ଚାଲିଗଲା ଗାଁ ମୁଣ୍ଡ ପୋଖରିକି ପାଣି ଆଣିବାକୁ । ପାଣି ମାଠିଆ ଧରି ଫେରିଲା ବେଳକୁ ମଧ୍ୟ କକଇ ଉଠି ନଥିବା ଦେଖି ସେ ସତରେ ଚକିତ ହେଲା ଏବଂ କକଇକୁ ଉଠାଇଦେବ ବୋଲି ଘର ଭିତରକୁ ପଶିଲା କ୍ଷଣି ଚକିତ ହେଲା ଏବଂ କକଇକୁ ଦେଖି ତା ମନକୁ କେମିତି ପାପ ଛୁଇଁଲା । କୁଢ଼ାଇ ହୋଇ ପଡ଼ିଥିବା କକଇକୁ ଦେଖି ତା' ମନକୁ କେମିତି ପାପ ଛୁଇଁଲା । ପରେ ପରେ ହିଁ ସେ ଦେଖିଥିଲା ସେ ବିରାଟ କଳା ବିଛାକୁ । ଏବେ ବି ବିଛାର ଲାଞ୍ଜରେ ଝୁଲୁଥିବା ଶିଆଳିଡ଼ୋରିର ଖଣ୍ଡେ ଆଉ ବିଛାଥିଲା ଅର୍ଦ୍ଧମୃତ ।

ବିଲେଇର ଆର୍ତ୍ତ ଚିତ୍କାର ଶୁଣି ଜୁଆଳି ନେଇ ହଳ ଯୋଚୁଥିବା ରାମୁ ଯେମିତି ଦୌଡ଼ିଆସିଥିଲା, ପାଖ ପଡ଼ୋଶୀ କେତେଜଣ ବି କଣ ହେଲା ବୋଲି ଧାଇଁ ଆସିଥିଲେ । ରାମୁ ପାଇଁ କଥାଟି ଥିଲା ସ୍ପଷ୍ଟ । ବିଛା ରାତିରେ ତାର ଧାରୁଆ ଆଗ ଗୋଡ଼ କତୁରିରେ ଶିଆଳି ଡ଼ୋରି କାଟି ବାଡ଼ିରୁ ଖସି କକଇକୁ ଦଂଶିଛି । ଦୋଷୀ ମନ ନେଇ ସେ ଧାଇଁଥିଲା ପାଖ ଗାଁର ଗୁଣିଆ ପାଖକୁ ।

ଗୁଣିଆ ଆସି ମନ୍ତ୍ର ପଢ଼ି ତାର ଝଡ଼ା ଫୁଙ୍କା କଲା । ଟିକେ ଆଗରୁ ଆସିଥିଲେ ଭଲ ହୋଇଥାନ୍ତା, କିନ୍ତୁ ଏବେ ବି ଘଡ଼ିଏ ଦି' ଘଡ଼ି ବେଳ ପରେ କକଇ ଉଠି ବସିବ କହି ସାନ୍ତ୍ୱନା ଦେବା ସଂଗେ ସଂଗେ ନାନାଦି ମନ୍ତ୍ର ପଢ଼ି ମାଟିରେ ଚିତ୍ରସବୁ ଅଙ୍କନ କରୁଥିଲା ଏବଂ ଫୁଟିପରି ଫୁଲିଯାଇଥିବା ହାତରେ ଚେରମୂଳ ବଟାର ଲେପ ଦେଇଥିଲା ।

କକଇ କିନ୍ତୁ ଦିନ ଦି'ପହର ହେଲେ ବି ଉଠିଲାନି । ବିଲେଇର କ୍ରମାଗତ ଅନୁରୋଧରେ କକଇକୁ ପାଖ ଡ଼ାକ୍ତରଖାନା କଲମପୁରକୁ ରାମୁ ଆଉ କେତେଜଣ ବୋହିନେଇଥିଲେ । କିନ୍ତୁ ସଞ୍ଜ ହେବା ପୂର୍ବରୁ କଲମପୁରର ଡ଼ାକ୍ତର କକଇକୁ ଦେଖି ସେ ଅନେକ ବେଳୁ ମରିଗଲାଣି ବୋଲି କହିଲେ ।

ସାପ ବିଛା ଦଂଶନଗ୍ରସ୍ତ ବେଳେ ବେଳେ ଚବିଶ ଘଣ୍ଟା ଯାଏ ଅଚେତ ରହି ମରିଗଲାଣି ବୋଲି ଭାବୁଥିବା ବେଳେ ପୁଣି ଥରେ ବଞ୍ଚି ଉଠୁଥିବା ପ୍ରଚଳିତ ଲୋକକଥାରେ ବିଶ୍ୱାସ ରଖିଥିବା ବିଲେଇ ଆଶା ପୋଷଣ କରିଥିଲା ଯେ, ତା କକଇ ପୁଣିଥରେ ବଞ୍ଚିଉଠିବ । କିନ୍ତୁ ତା ଆରଦିନ ସକାଳେ କକଇକୁ ଯେତେବେଳେ ତା' କୋଳରୁ ଛଡ଼ାଇନେଇ ଗାଁ ବାଲାଏ ରାମୁର ଜମି ପାଖ ନାଳ କୂଳରେ ପୋତିଦେଲେ ବାହୁନା କାନ୍ଦ ତ ଛାଡ଼, ବିଲେଇର ଆଖିରୁ ଲୁହ ବି ଝରୁନଥିବା ଦେଖି ସମସ୍ତେ ଚକିତ ହୋଇଥିଲେ ।

ପୋତା ହୋଇଥିବା ମାଟି ତଳୁ କକଇ କାଳେ ଡ଼ାକିବ ସେ ଆଶାରେ ସକାଳୁ ସଞ୍ଜଯାଏ ବିଲେଇ ସେଇଠି ବସିରହିଥିଲା । ରାତିରେ ଗାଁର କେତେଜଣ ସ୍ତ୍ରୀ ଲୋକ ତାକୁ ସଇଠୁ ଭିଡ଼ି ଆଣିଥିଲେ । କିନ୍ତୁ ତା ପରଦିନ ବି ଭୋରରୁ ବିଲେଇ ପହଞ୍ଚିଥିଲା ସେ ଗାତ ପାଖରେ ।

ବିଛାର ଲାଞ୍ଜରେ ବନ୍ଧା ହୋଇଥିବା ଶିଆଳି ପଟ ଯୋଗୁ ବିଲେଇର ଯେଉଁ ସନ୍ଦେହ ହୋଇଥିଲା ସେ ସନ୍ଦେହ ବିଶ୍ୱାସରେ ପରିଣତ ହେଲା ସେଇଦିନ ଯେତେବେଳେ ତାଙ୍କ ପାଖ କ୍ଷେତର ଝିଅ ଜଣେ ରାମୁ ବିଛାଟିଏ ବାଡ଼ିରେ ବାନ୍ଧି ଆଣୁଥିବା କଥା ତା' ଆଗରେ ପ୍ରକାଶ କରିଥିଲା । ସେହି ଖବରରେ ବିଲେଇର ନାକପୁଡ଼ା ଫୁଲିଉଠିବା ସାଂଗକୁ ଆଖିରୁ ଝରିଥିଲା ଅଗ୍ନିକଣା ।

ମାସେ ନ ପୂରୁଣୁ ଇଛାପୁରରେ ଆଉ ଗୋଟିଏ ଅପ୍ରତ୍ୟାଶିତ ଘଟଣା ଘଟିଥିଲା । ରାତିରେ ଶୋଇଲା ବେଳେ ଖଟ ଉପରେ ସାପଟିଏ ମାରିଥିଲା ରାମୁକୁ ଚୋଟ । ରାମକୁ ବି କେହି ବଞ୍ଚାଇ ପାରିଲେନି । ଗାରେଡ଼ି ମନ୍ତ୍ର ଜାଣିଥିବା ଗୁଣିଆ ପାରିଲାନି କି କଲମପୁର ଡ଼ାକ୍ତର ବି ପାରିଲାନି । ଡ଼ାକ୍ତରଖାନା ପହଞ୍ଚିଲା ବେଳକୁ ଡ଼ାକ୍ତର କେବଳ ଘୋଷଣା କଲେ ଯେ, ରାମୁ ଅନେକ ଆଗରୁ ମରିଗଲାଣି ।

ଏଇ ଘଟଣା ପରେ ପରେ ବିଲେଇ ପୁଣି ଥରେ ଦେଖାଦେଇଥିଲା ତା' ଗାଁ ରତନପଲା ଦାଣ୍ଡରେ । ଏ ବିଲେଇ କିନ୍ତୁ ଥିଲା ଭିନ୍ନ । ତା' ମୁହଁରେ ହସ ଆଉ କେହି ଦେଖିନଥିଲେ ।

ବିଲେଇର ମା' ପୁଣି ଥରେ ନୂଆ ଘର କରିବା କଥା ଉଠାଇଥିଲା । କିନ୍ତୁ ବିଲେଇର ଲୋତକଭରା ଆଖି ଦେଖି ସେ କଥାକୁ ଆଉ ଦୋହରାଇଲାନାହିଁ । ବିଲେଇର ମା' ଯେତେବେଳେ ତା ପଣତକାନିରେ ବିଲେଇର ଆଖିଲୁହ ପୋଛିଦେଲା - ଅଶ୍ରୁଧାର ବୋହି ଆସୁଥିଲା ବିଲେଇର ଆଖିରୁ କ୍ରମାଗତ ଭାବରେ ।

ଅନେକକ୍ଷଣ ପରେ ବିଲେଇ ନିଜକୁ ସମ୍ଭାଳି ନେଇ ଉତ୍ତର ଦେଇଥିଲା "ଫଟା କପାଳ ନେଇ କେଉଁଠିକି ଯିବି ମା ? ଯେଉଁଠିକି ଯିବି କପାଳ ବି ତା ସଂଗରେ ଗୋଡ଼ାଇଯିବ । ତୁ ତ ତିନି ତିନିଟା ଛୁଆଙ୍କୁ ଧରି ପୁଣିଥରେ କେଡ଼େ ଭଲ ଘରସଂସାର କଲୁ । ମୁଁ ଗୋଟିଏ ମାତ୍ର ଝିଅକୁ ରଖିପାରିଲିନି । ସମସ୍ତଙ୍କ କପାଳ ସମାନ ହେବ କି ମା ? ମୋର ତ ହୀନ କପାଳ ।"

ଇଛାପୁରକୁ ଫେରି ଜଣେ କୁଆଡ଼େ ରତନପଲାରେ କହୁଥିଲା ଯେ, ରାମୁ ମରିବା ପୂର୍ବ ସନ୍ଧ୍ୟାରେ ବିଲେଇ ଦରମଲା ଚିତି ସାପଟିଏ ବାଡ଼ି ଗୋଟାକରେ ଟେକି ଆଣୁଥିବା କଥା ନିଜ ଆଖିରେ ଦେଖିଛି ବୋଲି କେହି ଜଣେ ଇଛାପୁରରେ କହୁଛି ।

# ଆଖିଧରା

ଝିଅ ଲେଖିଥିଲା – "ବାପା, ତମେ ଏଥର ପୂଜାବେଳେ ଆମ ଏ ସହରକୁ ଆସ – ଭାରି ଭଲଲାଗିବ । ନାଟକ ପ୍ରତିଯୋଗିତା ହେବ ଯେ ଭାରତୀ ଭବନବାଲେ ହବୀବ ତନ୍‌ବୀର୍‌ଙ୍କ ଦଳକୁ ବି ନିମନ୍ତ୍ରଣ କରିଛନ୍ତି । ତମେ ତ ହାସ୍ୟରସ ଭଲପାଅ, ଦେଖିବ ଏ ଦଳ କେମିତି ସମସ୍ତଙ୍କୁ ହସାଇ ହସାଇ ବେଦମ୍ କରିଦିଅନ୍ତି । କଣ୍ଠସଂଗୀତ ଆଉ ଯନ୍ତ୍ରସଂଗୀତ ପ୍ରତିଯୋଗିତା ବି ହେବ । କହୁଛନ୍ତି ଶେଷ ରାତ୍ରିରେ ଅନୁପ ଜାଲୋଟା ତାଙ୍କ ଭଜନମାନ ଶୁଣାଇବେ । ଫିଲ୍ମ ଶୋ – ଅର୍କେଷ୍ଟ୍ରା । ଶହ ଶହ ମେଢ଼ – ଆଉ ସବୁଆଡ଼େ ନାଚ ଗୀତର ଆସର । ଦୋକାନ ବଜାରମାନଙ୍କରେ ସାଜସଜ୍ଜାରେ ଆଖି ଝଲସି ଯାଉଥିବ । ସତରେ ପୂଜା ବେଳେ ଆମ ଏ ସହର ଭାରି ସୁନ୍ଦର ଦିଶେ । ମା' ତ ଅନେକ ଦିନ ହେଲା ଗାଁରୁ ବାହାରି ନାହାନ୍ତି – ଗୀତ ଶୁଣିବାକୁ ସେ କେତେ ଭଲ ପାଆନ୍ତି । ବେଶ୍ ଉପଭୋଗ କରିବେ, ଆଉ ଛୁଆମାନେ ମଧ ଆଈଙ୍କ ଦେଖି କୋଟିନିଧି ପାଇଲା ପରି ହେବେ । ନିଶ୍ଚୟ ଆସିବ ।"

ମୋର ଜବାବ – "ହଅ.... ପୂଜାବେଳେ କୋଉ ସ୍ଥାନ ସୁନ୍ଦର ଦିଶେନି ଯେ ! ବଣପାହାଡ଼, ନଈନାଳ, ବାଟଘାଟ ସବୁ ସୁନ୍ଦର । ତେବେ ଆମ ଗାଁ ପରି ଆଉ କେଉଁ ସ୍ଥାନ ଏତେ ସୁନ୍ଦର ଦିଶିବ କହିଲୁ? ଚାରିଆଡ଼େ ସବୁଜ କ୍ଷେତ । ଛୋଟ ଝିଅଙ୍କ ବଉଳ ଫୁଲ ଗୁନ୍ଥା ବେଣୀ ପରି ଧାନ କେଣ୍ଡାମାନ ସାମାନ୍ୟ ଟିକିଏ ପବନରେ ଦୋହଲୁଥିବେ । ନୀଳ ଆକାଶରେ ଧଳା ବଉଦ । ଧୂଳି ନାହିଁ କାଦୁଅ ନାହିଁ । ଗାଁ ବାହାରେ କାଶତଣ୍ଡି ଫୁଲ ଡ଼ାଲା ଖୋଲି ଦେଇଥିବ ଯେମିତି, ଗାଁ ଭିତରେ ଜହ୍ନିଫୁଲ ତା' ପସରା ମେଲିଦେଇଥିବ ସେମିତି । କ୍ଷେତରୁ କ୍ଷେତକୁ ବୋହିଯାଉଥିବା ପାଣିରେ କେତେ ମାଛ ଦେଖିବୁ । ଘର ବଗିଚାରେ ପିଜୁଳି ଆତ, ସୀତାଫଳ । ଜହ୍ନି ଝୁଡ଼ଙ୍ଗ ସାଙ୍ଗକୁ ବାଇଗଣ,ବିଲାତିବାଇଗଣ, ସାରୁ ମୂଳା, କଖାରୁ ଯାହା ଖୋଜିବୁ । ଫୁଲକୋବି ବି ହାଟକୁ ଆସିଲାଣି ବୋଲି କହୁଛନ୍ତି । ତୁ ଛୁଆମାନଙ୍କୁ ନେଇ ଗାଁକୁ ଚାଲିଆ । ପୂଜା ଛୁଟିରେ ସେମାନେ ଡ଼ିଆଁ ଡ଼େଇଁ କରିବେ ଯେମିତି ଦୁଧ ଦହି ସାଙ୍ଗକୁ ଚୂଡ଼ା ଆରିସା ଆଉ ମକା କାକୁଡ଼ି ବି ଖାଇବେ ସେମିତି । ଗାଁରେ ଯାତ୍ରା ବି ହେବ ଯେ, ସେମାନେ ସୁଆଙ୍ଗ ଆଉ ଘୁମୁରା ନାଚ ଦେଖିବେ ।

"ଆଉ ତୁ ତ ଜାଣୁ ମୋର ଟିକିଏ ଶ୍ୱାସ ବେମାରୀ ଅଛି । ଗାଁର ଖୋଲା ପବନ ଛାଡ଼ି ତୁମ ସହରକୁ ଯିବି ପୂଜା ବେଳର ଭିଡ଼ ଆଉ ବସ୍ କାର୍‌ର ଧୂଆଁରେ ଛାତି ରୁନ୍ଧି ହୋଇଯିବ । ତେଣୁ ନାତି ନାତୁଣୀଙ୍କୁ ନେଇ ତୁ ଆ - ଜୋଇଁଙ୍କୁ କହିବୁ ସେ ବି ନିଶ୍ଚୟ ଆସିବେ ।"

କେହି କିନ୍ତୁ ପୂଜା ବେଳେ ଗାଁକୁ ଆସିଲେନି । ସପ୍ତମୀ, ଅଷ୍ଟମୀ ତ ଗଲା, ରାବଣପୋଡ଼ା ଦେଖିବେ ବୋଲି ବିଜୟା ଦଶମୀରେ ବି ସହର ଛାଡ଼ିଲେନି । ଏ ଯୁଗରେ ବୁଢ଼ା ବୁଢ଼ୀଙ୍କୁ ଅବା କିଏ ପଚାରେ ! ମନର ଦୁଃଖ ମନରେ ମାରି ଆମେ ଘରେ ବସିରହିଛୁ । ଦଶମୀ ପରେ ଦିନେ ହଠାତ୍ ଏକସଂଗେ ଦେଖାଦେଲେ ଝିଅ - ଜୋଇଁ, ପୁଅ ବୋହୂ ଆଉ ନାତି-ନାତୁଣୀଙ୍କ ପଙ୍ଗପାଳ ଦଳ ଆଖିମାନ ଏଡ଼ିକି ଏଡ଼ିକି କରି ।

'ଜୟ ବାଂଲା' ଆଖିଧରା ପରେ ଏଥରର ଏ ଆଖିଧରା ବ୍ୟାପକ ରୂପ ଦେଖାଦେଇଛି । ସେଇ ବ୍ୟାପକତାକୁ ଖୋରାକ ଯୋଗାଇଛି ପୂଜା ବେଳର ସହରିଆ ଠେଲାପେଲା । ଛୋଟ ଛୋଟ କଅଁଳିଆ ଆଖିଗୁଡ଼ିକ ତାର ସହଜ ଶିକାର ହୋଇଛନ୍ତି । ପୂଜା ପ୍ରଣାମ ଅଭିବାଦନ ଏବଂ ନାତି ନାତୁଣୀଙ୍କ କୋଳାକୋଳି ପରେ ହିଁ ଏମାନଙ୍କ ଏ ଦଶା ଦେଖି ମୁଁ ଝିଅକୁ କହିଲି - "ଦେଖିଲୁ ପୂଜା ବେଳେ ସହର ଭଲ ନା ଗାଁ ଭଲ ! ସହରରେ ଖାଲି ବାସି ପରିବା ଖାଇବ ଆଖି ଧରିବନି ? ତମ ସହରିଆ ଡାକ୍ତରମାନେ ବି କଣ କରୁଛନ୍ତି କେଜାଣି ? ଗାଁରେ ସବୁ ଟଟକା । ଦେଖିବୁ ଏ ଆଖିଧରା କେମିତି ଭଲହେଇଯିବ । ସଞ୍ଜବେଳେ କୂଅପାଣି ଢ଼ାଳେ ଖଟ ତଳେ ଥୋଇଦେଇଥିବୁ ଆଉ ସକାଳେ ଥଣ୍ଡାପାଣି ସମସ୍ତଙ୍କ ଆଖିରେ ଛାଟିଦେବୁ ଦେଖିବୁ ଆଖିଧରା ନା ତା' ବାପାଦାଦି...."

ଆନନ୍ଦ କୋଳାହଳରେ ସେଦିନଟା କଟିଲା । ତା' ଆରଦିନ ସକାଳେ କିନ୍ତୁ ମନେହେଲା ମୋ ଆଖି ସହଜରେ ଖୋଲୁନି । ମନଭରି ଥଣ୍ଡାପାଣି ଆଖିରେ ଛାଟିଲି । ତଥାପି ଆଖି କୁଣ୍ଡାଉଥାଏ ଯେ ନକୁଣ୍ଡାଇ ସମ୍ଭାଳି ହୁଏନି । ସଞ୍ଜବେଳକୁ ଦିଟା ଯାକ ଆଖି ଡ଼ିମା ଡ଼ିମା ହୋଇସାରିଥିଲା । ବୁଢ଼ାବେଳେ ଏ ଆଖିଧରା କଷ୍ଟକୁ ସରମ ବଳି ପଡୁଥାଏ । ତହିଁରେ ପୁଣି ଝିଅ ଜୋଇଁ ପୁଅବୋହୂଙ୍କ ପଞ୍ଚ ପଙ୍ଗପାଳ ତାଳି ମାରି ହସୁଥାନ୍ତି, ଆଉ କହୁଥାଆନ୍ତି "ବୁଢ଼ା ଦାଦା ଗାଁରେ ଆଖିଧରେନି ନା ?"

ସଞ୍ଜବେଳେ ପାଖ ଗାଁ ମାଳିଗୁଡ଼ା ବଇଦ ପାଖକୁ ଖବର ପଠାଇଲି । ଧନ୍ୱନ୍ତରୀ ସମାନ ଏ ବଇଦ ଆଖ ପାଖରେ ଭାରି ନାଁ । କର୍କଟ ରୋଗକୁ ବି ପାନେ ଔଷଧରେ ଖତମ୍ କରିଦିଅନ୍ତି କୁଆଡ଼େ । ଅବିଳମ୍ୱେ ବଇଦ ବୁଢ଼ା ବାଉଁଶ ନଳୀରେ କ'ଣ ସବୁ

ବଟିକା ଓ ନାନାଦି ଜଡ଼ିବୁଟି ଧରି ପହଞ୍ଚିଗଲେ । ଖାଲି ପାଦ, ଧୋତିକୁ ମାଲ କଚ୍ଛା କରି ଭିଡ଼ିଛନ୍ତି । ଲୋଚାକୋଚା କାମିଜ ଉପରେ ଗାମୁଛା, ବଇଦ ଗୋଡ଼ ହାତ ଧୋଇ ଚଉକି ଗୋଟାକରେ ଚକାମାଡ଼ି ବସିଗଲେ, ଆଉ ଟେବୁଲ ଉପରେ ବାଉଁଶ ନଳୀରୁ କିଛି ଅଜାଡ଼ି ଦେଇ ଲମ୍ୱ ପିପଳୀ ପରି ଦେଖାଯାଉଥିବା ଗୋଟିଏ କାଠି ମୋ ଆଡ଼ିକି ବଢ଼ାଇଦେଲେ କହିଲେ - "ଏଇଟା ବାର୍‌ହା ଲଣ୍ଡି, ଚନ୍ଦନ ପେଡ଼ିରେ ମୁନ୍ଦିଏ ଥଣ୍ଡାପାଣି ଦେଇ ଘଷିଦେଲେ ଯେଉଁ ଚନ୍ଦନ ପରି ଲେହ ବାହାରିବ, ତାକୁ ସକାଳେ ଆଖିରେ ଥଣ୍ଡା ପାଣି ଛାଟିସାରିବା ପରେ ଅଞ୍ଜନ କରି ଲଗାଇବେ । ଥରେ ଦି'ଥର ଲେପରେ ଭାଲୁର ଆଖିଧରା ବି ସାଫ୍ ହୋଇଯାଏ ।"

ବଇଦ ବାବୁ ତ ଚା ଖାଆନ୍ତିନି - ସବୁ ରୋଗର ମୂଳ କାରଣ କୁଆଡ଼େ ଏଇ ଚା । ଟଟକା ଲେମ୍ୱୁ ସରବତରୁ ଗିଲାସେ ପିଇ ବିଦାୟ ନେଲେ ।

ରାତି ପାହିଲାକ୍ଷଣି ଆଖିରେ ପାଣି ଛିଟା ମାରି ମୁଁ ଯଥାଶୀଘ୍ର ନିତ୍ୟକର୍ମ ସାରି ବଇଦଙ୍କ କଥିତ ବାର୍‌ହା ଲଣ୍ଡିକୁ ଚନ୍ଦନ ପେଡ଼ିରେ ଘଷି ଆଖିରେ ଅଞ୍ଜନ ଲଗାଇଲି । କେମିତି ଗୋଟାଏ ଅଖାଡୁଆ ଲାଗିଲା । ତା'ପରେ ତୀବ୍ର ଜ୍ୱଳନ । ଆଖିବୁଜି ସେ କଷ୍ଟ କୌଣସିମତେ ସମ୍ଭାଳିନେଲି । ଭାଗ୍ୟକୁ ପଙ୍ଗପାଳମାନେ ଉଠିନଥାନ୍ତି । ଟିକିଏ ସହ୍ୟ ହେଲାପରେ ଆଖି ଯେମିତି ଖୋଲିଦେଇଛି ପ୍ରଥମ ନଜର ପଡ଼ିଲା ସାମ୍‌ନାରେ ଥିବା ଗୋଲାପ ଗମ୍‌ଲାରେ । ସତରେ କି ପ୍ରକାଣ୍ଡ ନାଲି ଫୁଲର ଅର୍ଦ୍ଧ ପ୍ରସ୍ଫୁଟିତ କଢ଼ଟିଏ । କିନ୍ତୁ ସେ କଅଣ ? ଫୁଟେ ଲମ୍ୱ ହେବ କି କଣ ମୋ ଝରକଲମ ଠାରୁ ବି ମୋଟା କ୍ୟାଟର୍‌ପିଲର୍ ପୋକଟିଏ ସେ ଦରଫୁଟା ଫୁଲକୁ ଗୋଟାଏ ପାଖରୁ ଉପର ତଳ କରି ତା' ପାଟିରେ ଛାଣ୍ଟି ନେଉଛି । ବାରିକମାନେ ମେସିନ୍ କଇଁଚିରେ ମୁଣ୍ଡ ପଛପଟ ବାଳକୁ ତଳୁ ଉପରକୁ କାଟିଲାପରି । ମନେ ପଡ଼ିଗଲା ଏମିତି ବୃହତ୍‌କାୟ କ୍ୟାଟରପିଲର ମାନେ ଯଦି ଧାନ କ୍ଷେତରେ ଲାଗିଥିବେ । ଏ ବର୍ଷର ଯେଉଁ ବର୍ଷା ! ଦିନଟିଏ ବି ବାଦ୍ ଯାଇନି ପୋକ ତ ହେବେ କିନ୍ତୁ ଏମିତି ସାଇଜ୍ ଯଦି ହୁଅନ୍ତି !!

ବାଡ଼ିଟିଏ ଧରି ଧାଇଁଲି କ୍ଷେତ ଆଡ଼ିକି । ମୁସୌରୀ ଧାନର ଖେଡ଼ ସବୁ ବାହାରିଗଲାଣି । ଉଃ କି ପ୍ରକାଣ୍ଡ ଖେଡ଼ ! ହାତେ ଲମ୍ୱ ହେବ ଆଉ ଧାନ ! ଗୁଆ କି ଖଜୁରୀ ପରି ଦିଶୁଛି ପୋକ ନ ଖାଇଲେ ଏ ବର୍ଷ ଭଲ ଧାନ ହେବ ।

ପୋକ ଲାଗିଛି ନା ନାହିଁ ଖୋଜିବାକୁ ଯାଇ ଧାନଗଛମାନଙ୍କୁ ଉପରୁ ତଳ ଅନାଇଗଲି । ହଠାତ୍ ପାଣିରେ ଆଖି ପଡ଼ିଗଲା । ଯାହା ଦେଖିଲି ଖୁସିରେ ଉଲ୍ଲସି ଉଠିଲି । କେଡ଼େ କେଡ଼େ ରୋହିମାଛ । ଗୋଟାଏ ଗୋଟାଏ ଦେଢ଼ କେଜି ଦୁଇକେଜି ହେବ, କ୍ଷେତର ପାଣିରେ ସାଲୁବାଲୁ ହେଉଛନ୍ତି । ଗୋଟାଏ ଦି'ଟା ମୋ ବାଡ଼ିରେ

ମାରିଦେବାକୁ ଇଛା ହେଲା, କିନ୍ତୁ କାଳେ ହିଡ଼ରୁ ଗୋଡ଼ ଖସିଗଲେ ପାଣି କାଦୁଅରେ ପଡ଼ିବି ଚିତ୍କାର କରି ଡ଼ାକିଲି - "ସିନା ମାଝି ସିନା ମାଝିରେ ।"

ଦୂରରୁ କ୍ଷେତ ଜଗୁଆଳି ହଳିଆ 'ସିନା ମାଝି'ର ଉତ୍ତର ଆସିଲା - 'ଆସୁଛି କକା - ଏ ପାଣି ନାଳ ବାନ୍ଧିଦେଇ ଆସୁଛି ।"

ମୋ ମନ ଖୁସିରେ କେମିତି ଅସ୍ଥିର ହୋଇଉଠୁଥାଏ । ପୁଣି ଡ଼ାକିଲି ତୁ ଆଗ ଏଠିକି ଧାଇଁ ଆ ପରେ ନାଳ ବାନ୍ଧିବୁ ।'

ସିନା ମାଝି ତା' କୋଡ଼ିଟିକୁ ବାଁ କାନ୍ଧରେ ପକାଇ ବାଡ଼ି ହାତରେ ସତକୁ ସତ ଧାଇଁଆସିଲା । ପାଖକୁ ଆସିଲାରୁ ମୁଁ କହିଲି 'ଧାଇଁଗଲୁ, ଘରୁ ଗୋଟାଏ ବଡ଼ ବାଲ୍‌ଟି ନେଇ ଆସିବୁ ।"

ସିନା ମାଝି ତା' କୋଡ଼ିକୁ ସେଇଠି ତେଳ ଥୋଇଦେଇ ଘରକୁ ଧାଇଁଗଲା, ଆଉ କିଛି ସମୟ ପରେ ଦେଖାଦେଲା ବାଲ୍‌ଟି ଧରି । ମୁଁ ତାକୁ ଏଥର ଆଦେଶ ଦେଲି - "ଏ ରୋହି ମାଛରୁ ଦୁଇଟା ଧରି ବାଲ୍‌ଟିରେ ଥୋଇଲୁ ।"

ସିନା ମାଝି ପାଣିକୁ ଥରେ ଆଉ ମୋ ମୁହଁକୁ ଥରେ ଅନାଇ ପଚାରିଲା - "ରୋହି ମାଛ କେଉଁଠି ଅଛି ?"

ମୁଁ ମାଛମାନଙ୍କ ଆଡ଼ିକି ଆଙ୍ଗୁଠି ଦେଖାଇଦେଲି । କହିଲି - "ଦେଖି ପାରୁନୁ? କେମିତି ସାଲୁବାଲୁ ହେଉଛନ୍ତି ।"

ସିନା ମାଝି ପୁଣିଥରେ ମୋତେ ଅନାଇ ସ୍ୱଗତୋକ୍ତି କଲା "କେରାଣ୍ଡି ! କେରାଣ୍ଡି ପାଇଁ ବାଲ୍‌ଟି ।"

ମୁଁ କିନ୍ତୁ ରାଗିଯାଇଥିଲି । କହିଲି, 'କେରାଣ୍ଡି ରୋହିମାଛ ଚିହ୍ନି ପାରୁନୁ, କେରାଣ୍ଡି ଏଡ଼େ ବଡ଼ ବଡ଼ ହୁଏ ?'

ନାତି ନାତୁଣୀମାନଙ୍କୁ ମୁଁ କେରାଣ୍ଡି ଦେଖାଇ ରୋହି ବୋଲି କହିବି ବୋଧହୁଏ ଭାବି କି କଣ ସିନା ମାଝି ଟିକିଏ ହସିଦେଲା ଆଉ ଅତି ସନ୍ତର୍ପଣରେ ଆଞ୍ଜୁଳାରେ ପାଣି ସହ ଗୋଟିଏ ଧରି ବାଲ୍‌ଟିରେ ଛାଡ଼ିଦେଲା । ବାଲ୍‌ଟିରେ ଟିକିଏ ପାଣିଦେଇ ସେ ପୁଣି ସେମିତି ଆଉ ଗୋଟିଏ ବି ରଖିଦେଲା । ମୁଁ ଖୁସିରେ ତାକୁ ମାଛ ଦି'ଟା ଘରେ ଦେଇ ଆସିବାକୁ କହି ଅନ୍ୟ ଗୋଟାଏ କ୍ଷେତ ଆଡ଼କୁ ଆଗେଇଗଲି ।

ଟିକିଏ ଦୂର ଆଗେଇଛି କି ନାହିଁ ପଛକୁ ବୁଲି ପାଟିକରି କହିଲି - "ତୁ ମାଛ ଦି'ଟାର ପିତ୍ତ ବାହାର କରି ଭଲକରି ସଫା କରିବୁ ଆଉ କଟାକଟି କରି ରାନ୍ଧୁଣିଆ ରଘୁକୁ କହିବୁ ସେ କିଛି ଝୋଳ କରିବ ଆଉ କିଛି ଭାଜିଦେବ ।"

ସିନା ମାଝି ହସ ହସ ମୁହଁରେ ବାଲ୍‌ଟି ଧରି ଘର ଆଡ଼କୁ ଚାଲିଗଲା ।

ମୁଁ ଅନ୍ୟ କ୍ଷେତ ଆଡ଼କୁ ମୁହାଁଇଥିଲି ସିନା ମନ ରହିଥିଲା ଏ ମାଛ ଆଡ଼ିକି । ଆଗକୁ ଯିବା ବନ୍ଦକରି ମୁଁ ଏଥର ଫେରିଲି ଘରକୁ । ନିଜେ ନ ବୁଝାଇଲେ ଏଗୁଡ଼ାକ କ'ଣ ଯେ, କରିବେ ତାର ଠିକଣା କଣ ? ତହିଁରେ ପୁଣି ଏ ଆଦିବାସୀ ପିଲାର ବୁଦ୍ଧି ଯାହା ! କହୁଛି କଣ ନା କେରାଣ୍ଡି ।

ଘର ହତା ଭିତରକୁ ପଶିଲାକ୍ଷଣି ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖିଲି । ମେଣ୍ଢା ଛୁଆଟିଏ ମୁଣ୍ଡରେ କିନ୍ତୁ ମୁକୁଟ ଚୂଳ ଆଉ ଥଣ୍ଟ ପଛଆଡ଼କୁ ଝାଲର୍ ସତେ ଯେମିତି ଗୋଟାଏ କୁକୁଡ଼ା । ନିଘେଇ ଚାହିଁଲି । ଏଥର ମନେହେଲା କୁକୁଡ଼ାଟାଏ, ମେଣ୍ଢାଛୁଆ ପରି ଦିଶୁଛି କି ବିରାଟ । କାଟିଲେ ୪/୫ କେଜି ମାଂସ ବାହାରିବ । ଏଡ଼େ ବଡ଼ କୁକୁଡ଼ା ତ କେବେ ଆଗରୁ ଦେଖିନଥିଲି । କିଛି ଦୂରରେ ଗାଈଚରୁଆ ନୀଳକୁ ଦେଖି ପଚାରିଲି । କୁକୁଡ଼ାଟି କାହାର ? ନୀଳ ଖୁସି ମନରେ ଉତ୍ତରଦେଲା 'ଏଇଟା ତ ଦାଦି ସେଦିନ ମଝିଆ କକାଙ୍କ ପାଇଁ ଯେଉଁ ଦି'ଟା କୁକୁଡ଼ା କିଣି ଆଣିଥିଲି ସେଥିରୁ ଗୋଟାଏ କଟା ହେଲାନି ଯେ, ରହିଯାଇଥିଲା ଟିକିଏ ବଡ଼ ହୋଇଯାଇଛି ।"

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଆମର ଏ କୁକୁଡ଼ା ? କି ଚମତ୍କାର ! ସାମାନ୍ୟ କେତେଦିନ ଭିତରେ କେତ ବଡ଼ ହୋଇଯାଇଛି । କେଉଁଠି କି ହରମୋନ୍ ଖାଇ ଦେଇଥିବ । କହିଲି - "ଚାରି ପାଞ୍ଚ କେଜି ମାଂସ କଟାଇବନି କିରେ ନୀଳ ? ଘରେ ଗୋଟିଏ ଦିନ ମାଛକୁ ଆଉ ଗୋଟିଏ ଦିନ ଏ କୁକୁଡ଼ା ବେଶ୍ ଚଳିଯିବ ।"

ନୀଳ ଟିକିଏ ହସିଲା - କହିଲା "ଏତେ ବେଶୀ ନ କଟାଇଲେ ବି ଅଧ କେଜି ହୋଇଯିବ ଦାଦି.... ଆଉ ତିନି ଚାରିଟା କାଟିଲେ..."

ମୁଁ ବିରକ୍ତ ହୋଇସାରିଥିଲି । ଚାରି କେଜିକୁ କହୁଛି ଅଧ କେଜି ହେବ । ଏ ଗୁଡ଼ାକ ଏମିତି ସବୁ ଚୋରି କରୁଛନ୍ତି । ରୀତିମତ ଲୁଟ୍ । ତାକୁ ତ କୁକୁଡ଼ା କାଟିବାକୁ କୁହାଯିବ । ଏବେଠୁ ସାଢ଼େ ତିନି କେଜି ମାଂସ ଠକିବାକୁ ମସୁଧା କଲାଣି ।

ରାଗିମାଗି ଘର ଭିତରକୁ ପଶୁଛି ସାମନା ସାମନି ପଡ଼ିଗଲି ମହାବଳର ହାବୁଡ଼ରେ । ଖର ନିଶ୍ୱାସରେ ମନେହେଲା ଛାତି ଧଡ଼କ ବନ୍ଦ ହୋଇଯିବ । କି ବିରାଟ ବାଘ ! ଦେଖିବାକୁ ଊଣା ଅଧିକେ ଧଳା । ତୋଟି ପାଖରେ ଆଉ ପିଠା ଆଡ଼ିକି ଟିକିଏ କଳା । ତିନି ଚାରି ହାତର ଲାଞ୍ଜକୁ ଟେକିଛି ଆକାଶକୁ । ଟେଲିଫୋନ୍ ଖୁଣ୍ଟ ପରି ସେ ଲାଞ୍ଜ । କହରା କହରା ନିଶ । କେଡ଼େ ବଡ଼ ମୁଣ୍ଡ କି ଆଖି ।

ମୁଁ ଶୃଙ୍ଖଳା ପାଟି ଆଁ କରି ଠିଆହୋଇଛି । ବାଘ ମୋ ଗୋଡ଼ ପେଣ୍ଡାରେ ଘଷିହେବାକୁ ଆରମ୍ଭ କଲା, ଆଉ ଡ଼ାକିଲା । "ମିଆଉଁ..."

ମୋର ନିଶ୍ୱାସ ଫେରିଆସିଥିଲା । ଅଜାଣତରେ ଭାବିନେଲି... କି ଯୁଗ ହେଲା ! ଦେଖିବାକୁ ଏଡ଼େ ବଡ଼ ମହାବଳ, ଡ଼ାକିଲା ବେଳକୁ ମିଆଉଁ ! ସବୁ ଖାଲି ଦେଖାଣିଆ - ଫମ୍ପା । ମାଦଳ ପରି ଅନ୍ତଃସାରଶୂନ୍ୟ ।

ପୁଟୁନ ଆଉ ପଲ୍ଲବକୁ ଉଠାଇ ରୋହିମାଛ ଦେଖିବାକୁ ଡ଼ାକିବା ପାଇଁ ପ୍ରବଳ ଆଗ୍ରହ ନେଇ ଭିତର ବାରନ୍ଦାକୁ ଉଠିଛି କି ନାହିଁ ପାଖ ଘରୁ ଏକ ସରଗରମ ଆଲୋଚନାର ଆବାଜ କାନରେ ବାଜିଲା । ଉଚ୍ଚବାଚ ନ କରି ବାରନ୍ଦାର ଗୋଟାଏ ଚୌକିରେ ବସିଗଲି ଆଉ ସେ ଆଲୋଚନା ଆଡ଼ିକି କାନ ଡ଼େରିଦେଲି । ବସିବାଘରେ ଚା' କପ୍‌ମାନ ଧରି ଜୋଇଁ ଆଉ ବଡ଼ପୁଅ ଏଇ ଗରମାଗରମ ଆଲୋଚନାରେ ବ୍ୟସ୍ତ ଅଛନ୍ତି । ପାଖରେ ଯେ ପୁଟୁନ ଆଉ ପଲ୍ଲବ ସେ କଥା ବି ଠଉରାଇ ହୋଇଗଲା । ଜୋଇଁ କହୁଛନ୍ତି - "ରାଜୀବ ପ୍ରଧାନମନ୍ତ୍ରୀ ନ ହୋଇ ଏ ବୁଢ଼ାଙ୍କ ଭିତରୁ ଗୋଟାଏ ପ୍ରଧାନମନ୍ତ୍ରୀ ହୋଇଥିଲେ ଦେଶର ଅବସ୍ଥା କ'ଣ ହୋଇଥାନ୍ତା କହିଲ ? ଏ ବୁଢ଼ାମାନେ ଗୋଟାଏ ଗୋଟାଏ ପ୍ରଧାନମନ୍ତ୍ରୀ ହେବା ପାଇଁ ଦେଶକୁ ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ କରି ଭାଗ ଭାଗ କରି ଦେଇଥାଆନ୍ତେ ।" ପୁଅ କହୁଥାଏ - "କହୁଚ !! ବୁଢ଼ାମାନଙ୍କର ଗୋଟାଏ ଲେଖାଏଁ ଗୋଡ଼ କବର ଭିତରେ ତ ଆଉ ଗୋଟାଏ କବର ବାହାରେ, କିନ୍ତୁ କ୍ଷମତା ଲାଳସା କଣରେ ବାବା ! ଠିକ୍ ମ୍ୟୁଜିକାଲ୍ ଚେୟାର୍ ଖେଳରେ ପେଁକାଳି ବାଜିବା କ୍ଷଣି ଚଉକି ଚାରିଆଡ଼େ ଦୌଡ଼ିବାପରି । ପେଁକାଳି ବନ୍ଦହେଲା ତ ଯିଏ ଚଉକି ଗୋଟାକରେ ବସିଯାଇପାରିଲା । ଆଉ ଶେଷରେ ଯେତେବେଳେ ଗୋଟାଏ ଚଉକି ବାକି ପେଁକାଳି ବନ୍ଦ ବେଳେ ଦେଖ ବୁଢ଼ାଙ୍କ ପରସ୍ପର ଭିତରେ ଗୋଡ଼ ଟଣାଟଣି ।"

ଜୋଇଁ ଚା' କପେ ସୁଡ଼ୁକି ନେଇ ଯୋଡ଼ିଦେଲେ, "ଏଣେ ଆଖିକି ଦିଶୁନି କାନକୁ ଶୁଭୁନି, ଦାନ୍ତ ପଡ଼ିଗଲାଣି ଯେ କଥା ଅସ୍ପଷ୍ଟ, ଗୋଡ଼ରେ ସତେ ଯେମିତି କେହି ଲୁହାଜୋତା ପିନ୍ଧାଇ ଦେଇଛି ଯେ, ଗୋଡ଼ ଟେକିବାକୁ ବି ଅକ୍ଷମ ତହିଁରେ ଦେଖ, ଚଉକି ଚାରିଆଡ଼େ ଧାଇଁଲା ବେଳକୁ କି ତୋଡ଼ । କହିବେ କ'ଣ ନା ଆମେ ପ୍ରଧାନମନ୍ତ୍ରୀ ହେଲେ ଆକାଶରୁ କଇଁଆ ତୋଳିବୁ, ଚିଲିକାରୁ ଖାଲି ହାତରେ ମାଛ ଧରିବୁ । ଧାନକ୍ଷେତମାନଙ୍କରେ ରୋହି ଯାଆଁଳ ଛାଡ଼ିବୁ..."

ପୁଅ ତାଙ୍କ କଥା ଛଡ଼ାଇ ନେଇ କହିଲା - "ସେଥିପାଇଁ ତ ଆଗ ବୁଢ଼ା ହେଲେ ଲୋକେ ଘର ଛାଡ଼ି ହିମାଳୟକୁ ଚାଲିଯାଉଥିଲେ । ଏବେ ଏମାନେ ଯିବେ ! ଏମାନଙ୍କୁ ଜୋର୍‌ଜବରଦସ୍ତି ସମାଜରୁ ନହଟାଇଲେ ଦେଶର ପରିତ୍ରାଣ ନାହିଁ ।"

ହଠାତ୍ ପୁଟୁନ୍‌ର ସ୍ୱର - "ନବୀନର ଆଗମନରେ ପୁରାତନ ନିଜ ଆସନ ଛାଡ଼ିଦେବା କଥା, ନା ବାପା ? ଆମ ସୋସିଏଲ୍ ଷ୍ଟଡ଼ିଜ୍ ଶିକ୍ଷକ କହନ୍ତି - ନହେଲେ ହେବ କ୍ରାନ୍ତି ।"

(କିଏ ଜଣେ ପାଟି କଲା- "ଇନ୍‌କ୍ୱିଲାବ୍ ଜିନ୍ଦାବାଦ୍ ।" ସ୍ୱରରୁ ଜଣାପଡୁଛି ନୀଲୁ । ସେ ଦୁଷ୍ଟ ବି ଏ ଭିତରେ ଅଛି ।)

ପୁଟୁନ୍ ଚିତ୍କାର କଲା - "ଏ ତୁ ଚୁପ୍ କର" ତା'ପରେ କହିଲା - "ଶୁଣ ନା ବାପା, ଆମ ଭାରତୀୟ ସଭ୍ୟତା ଓ ସଂସ୍କୃତି ଶିକ୍ଷକ କହନ୍ତି - ଆଗେ କୁଆଡ଼େ ଲୋକେ ବୁଢ଼ା ହୋଇଗଲେ ନିଜ ଘରଦ୍ୱାର ପୁଅଙ୍କ ହାତରେ ସଅଁପି ଦେଇ ତୀର୍ଥ ସ୍ଥାନମାନଙ୍କୁ ଚାଲିଯାଉଥିଲେ । ତାକୁ କୁଆଡ଼େ କହୁଥିଲେ ବାନପ୍ରସ୍ଥ । ମୋ ମତରେ ଏବେ ବି ବୁଢ଼ାମାନେ ବାନପ୍ରସ୍ଥ ଯିବା ଉଚିତ୍, ନ ହେଲେ ସେମାନଙ୍କୁ ଗୋଟିଏ ତୀର୍ଥଯାତ୍ରା ଗାଡ଼ିରେ ଭରିଦେଇ ସବୁ ତୀର୍ଥସ୍ଥାନ ବୁଲାଇ ଆଣିବ ଆଉ ଟ୍ରେନ୍‌ଟି ଗଙ୍ଗାପୋଲ ଉପରେ ଗଲାବେଳେ ପୋଲର ଗୋଟାଏ ସ୍ପାନ୍ ବାରୁଦରେ ଉଡ଼ାଇଦେବ । ସେ କ'ଣ କି ବାପା ଆମେ ଥରେ ଟିଭି ରେ ଦେଖିଥିଲୁ ବ୍ରିଜ୍ ଅନ୍ ଦି ରିଭର କ୍ୱାଏ,' ନା ? ସେପରି ।"

କଅଁଳିଆ ସରୁ ସ୍ୱର ଯୋଡ଼ିଦେଲା - "ଟ୍ରେନ୍‌ର ଡ଼ବାମାନ ନଈ ଭିତରେ ପଡ଼ିବେ - ଭୁସ୍ ଭୁସ୍ ଭୁସ୍ ଭୁସ୍..."

ପଲ୍ଲବ ପାଟିକଲା "ନାନୀ - ମୁଁ ଆହୁରି ବଢ଼ିଆ ଉପାୟଟିଏ କହୁଛି ଗୋଟାଏ ବାର୍ଥ ଡ଼େ ପାର୍ଟିରେ ସବୁ ବୁଢ଼ାଙ୍କୁ ଏକାଠି ଗୋଟିଏ ହଲ୍‌ରେ ବସାଇ ଧରାଇଦେବ ବଡ଼ ବଡ଼ ମିଠାର ପ୍ଲେଟ୍, ବେଲୁନ୍ ଆଉ ଚକୋଲେଟ୍ । ତାପରେ ସମସ୍ତେ ନଜାଣିଲା ବେଳେ ଧୁସ୍ କରି ଘରେ ହାଇ ଭୋଲଟେଜ୍ କରେଣ୍ଟ ଅନ୍ କରିଦେବେ ।"

କଅଁଳିଆ ସରୁ ସ୍ୱର - "ଆମ ବୁଢ଼ାଦାଦାଙ୍କୁ ବି ଏମିତି ଟ୍ରେନ୍‌ରେ ବସାଇ ଦେବ କି କରେଣ୍ଟ୍ ମାରିଦେବ ?"

ପୁଟୁନ୍ ତାଛଲ୍ୟଭରା ହସ ହସି କହିଲା, "ବୁଦ୍ଧୁ, ବୁଢ଼ାଦାଦା ଜଣେ ବୁଢ଼ା ?"

ପୁଣି ସେହି ସରୁ ସ୍ୱର - "ଆମେ କେମିତି ବୁଢ଼ାଦାଦା ବୋଲି ଡାକୁ ?"

- "ଆରେ ! ଖୁସିରେ ।"

ପଲ୍ଲବ ତା ପାଣ୍ଡିତ୍ୟ ଦେଖାଇ କହିଲା - "ଆରେ - ବୁଢ଼ାବାବୁଙ୍କୁ ତ ଏବେ ସତୁରି, ଅଶୀବର୍ଷ ହେଲେ ସିନା ବୁଢ଼ା ହେବେ ।"

ନୀଲୁ ବୋଧହୁଏ ଅଶୀରୁ ସତୁରି ଫେଡ଼ିଦେଲେ କେତେ ହେବ ତା' ଆଙ୍ଗୁଠିରେ ଗଣୁଥିଲା ଗୁଣୁଗୁଣାଇଲା ସେଭେଣ୍ଟି ଉଆନ, ସେଭେଣ୍ଟି ଟୁ-ଥ୍ରିଂ...ଉଁ ....ଉଁ ଟେନ୍ । ଟେନ୍ ବର୍ଷ ପରେ ବୁଢ଼ାଦାଦା ଟ୍ରେନ୍‌ରେ ବସି ଖତମ୍ ।"

ଜୋଇଁ ଏଥର ପାଟିକଲେ... "ରାସ୍କେଲଗୁଡ଼ାକ - ଆମ ଆଲୋଚନାରେ ତମକୁ ଭାଗ ନେବାକୁ କିଏ କହିଲା? ବଦ୍‌ମାସ କହୁଛି ଟେନ୍ ବର୍ଷ ପରେ ବୁଢ଼ାଦାଦା ଖତମ୍ । ଭାଗ୍ ଏଇଠୁ ନିକଲ୍ ନା ଦେଖିବ !"

ପୁଟୁନ୍, ପଲ୍ଲବ ଆଉ ନୀଲୁ ମୁହଁ ଶୁଖାଇ ବାରନ୍ଦାକୁ ଆସିବାକ୍ଷଣି ମୋତେ ହାବୁଡ଼ିଗଲେ । ମୁଁ କହିଲି - "ଚାଲରେ ରୋହି ମାଛ ଦେଖିବ ।" ତାଙ୍କ ମୁହଁ ସବୁ ପୁଣିଥରେ ତେଜିଉଠିଲା । "କାହିଁ କାହିଁ?" କହ ସେମାନେ ମୋ ସଂଗରେ ଦୌଡ଼ିଗଲେ ।

ପୁଟୁନ୍ ମାଛକୁ ଦେଖି ଚିତ୍କାର କଲା - "ବୁଢ଼ାଦାଦା ରହ ଗୋଟାଏ ବୋତଲ ନେଇଆସୁଛି ମୁଁ ଗୋଟିଏ ରୋହିକୁ ପୋଷିବି ।" ପଲ୍ଲବ ବି ଧାଇଁଗଲା ଆଉ ଗୋଟାଏ ଶିଶି କିମ୍ବା ବୋତଲ ଆଣିବାକୁ । ମହାବଳ ବାଲ୍‌ଟି ପାଖରେ ପହଞ୍ଚି ପାଣି ଭିତରକୁ ଅନାଇଥିବା ଦେଖି ନୀଲୁ ତାକୁ ତା' କାଖକୁ ଟେକିନେଲା ।

ମୁଁ ଆବାକାବା ହୋଇ ଏସବୁ ଦେଖୁଥିଲି ।

# ଚିତ୍ରି ଓ ତା'ର ପୁଷ୍‌ପରବ

ପୌଷ ମାସର ଏକ ଶୀତୁଆ ସକାଳ । ଅବସରପ୍ରାପ୍ତ ଜୀବନରେ ତନ୍ଦ୍ରାଳସ ନେଇ ମୁଁ ଭିତର ବାହାର ହେଉଥାଏ । ଘର ଭିତରେ ବସିଲେ ବାହାରକୁ ଯାଇ ଟିକିଏ ଖରା ପୋଇଁବାକୁ ଇଚ୍ଛା ହୁଏ, ଆଉ ବାହାରେ କିଛି ସମୟ ଖରାରେ ବସିଗଲେ ସେ ଖରା ମୁଣ୍ଡକୁ ଧରିଦିଏ । ଦୁଇ ତିନିଥର ଏମିତି ଭିତର ବାହାର ହେଲାପରେ କେତେ ବନ୍ଧୁଙ୍କ ଚିଠିର ଉତ୍ତର ଦେବାରେ ଡ଼େରିହେଲାଣି ଜାଣି କୁଣ୍ଠିତ ମନକୁ ଦୃଢ଼କରି ମୁଁ ପଢ଼ା ଟେବୁଲ ପାଖରେ ବସି ଚିଠିଲେଖାରେ ବ୍ୟାଘାତ ସୃଷ୍ଟି କଲା । ନୂଆ ଢ଼ଙ୍ଗର ସେ ଆବାଜ୍ ଆସି ମୋ ଚିଠିର ଲେଖାରେ କଲା । ନୂଆ ଢ଼ଙ୍ଗର ସେ ଆବାଜ୍ - ଗଦ୍ୟ କଥନ ନୁହେଁ କି ପଦ୍ୟ ସଂଗୀତ ନୁହେଁ - ମିଶାମିଶି କିଛି - ନୂତନ ଧରଣର ଏକ ଗଦ୍ୟ ସଂଗୀତ। ଚିଠିଲେଖା ବନ୍ଦକରି ମୁଁ ସେ ସଂଗୀତ ଆଡ଼ିକି କାନ ଡ଼େରି ବସିଲି ।

ଏଥର ଆବାଜ୍ ଥିଲା ସ୍ପଷ୍ଟ । ସଂଗୀତର ଗାୟକ କିଏ ସେ କଥା ମଧ୍ଯ ଠଉରାଇବାରେ କଷ୍ଟହେଲାନି । ମନେହେଲା ଚିତ୍ରିର ସ୍ୱର । ଆଜି ତ ମଙ୍ଗଳବାର - 'ବାନ୍ଧନ୍‌ପଲାରୁ ହାବସ୍‌ପୁର ହାଟ ଯିବା ବାଟରେ ସେ ହୁଏତ ଆମ ଘରକୁ ଚାଲିଆସିଛି, ଆଉ ତା' ଭାଉଜଙ୍କ ପାଲରେ ପଡ଼ି ଏ ଗୀତ ମେଲିଦେଇଛି ।

ମୁଁ ସନ୍ତର୍ପଣରେ ଭିତର ବାରନ୍ଦାକୁ ଚାଲିଆସି ଅଗଣା ଆଡ଼କୁ ଅନାଇଲି । ସତକୁ ସତ ଚିତ୍ରି । ସେ ତା'ର ଅଣ୍ଟା ନୁଆଁଇ ବାହୁ ଦି'ଟାକୁ ସମାନ୍ତରାଳ ଭାବରେ ତଳକୁ ଝୁଲାଇ ଦେଇ ଥରେ ବାଁପଟକୁ ଆଉଥରେ ଡ଼ାହାଣକୁ ପାଦ ପକାଇ - ଉଷ୍‌କୁ ଉଷା - ଉଷ୍‌କୁ ଉଷା... ରାହା ଧରି ନାଚିଚାଲିଛି ଆଉ ଇଏ ହସି ହସି ଗଡ଼ିଯାଉଛନ୍ତି ।

ମୋ ସ୍ତ୍ରୀ ପଚାରିଲେ - "କଟକର ଦେବତା କେମିତି ତୁମ ସୁନାଡ଼ଙ୍ଗରିକୁ ଆସିବ ଚିତ୍ରି ? ତୁମେ ପୁଣି ସେ ଦେବତାକୁ ଦେଖିବ କେମିତି, ଚିହ୍ନିବ କେମିତି, ତା' ସାଙ୍ଗରେ କଥା ହେବ କେମିତି ?"

ଚିତ୍ରି ସିଧାସଳଖ ଠିଆହୋଇ ଉତ୍ତର ହେଲା - "ହେଁ... ତମେ ତ ପୁଷ୍ ପରବ୍ ଦେଖିନ ଭାଉଜ, ଜାଣିବ କେମିତି ? ସଂସାରର ସମସ୍ତେ ସେ ପରବ ଦେଖିବାକୁ ଠୁଳ ହୋଇଯାଆନ୍ତି । କେତେ ଯେ ଭିଡ଼ ହୁଏ। ତା'ପରେ ସେ ବାଁ ହାତର ଆଙ୍ଗୁଠିମାନଙ୍କୁ

ଗୋଟାକ ପରେ ଗୋଟାଏ ଡ଼ାହାଣ ହାତରେ ବଙ୍କା କରି କରି କହିଚାଲିଲା, ତମ ଏ ରତନପଲା ଗାଁ ନୁହେଁ । ସେ ରତନପଲାର ଦେବତା ବାନ୍ଧନପଲାର କଣ୍ଟୁରୀପଦରର କଟକର ପୁରୀର ସମ୍ବଲପୁରର, ଅମ୍ରିକାର ସବୁ ଠାନର ଦେବତା ଜମାହୋଇ ଗଜ ଗଜ କରୁଥିବେ । ଗୋଟେ ଦେବତା ଆସିଲେ ବାଉଁଶ ଲାଠିରେ ମୟୁରପୁଚ୍ଛ ବନ୍ଧା ହୋଇଥିବା ତାର ଝଲାର୍ ଆସିବ । ମାଟିଘରେ ତ ଗୁରୁମେ ନାଚୁଥିବେ । ତାଙ୍କ ମୁଣ୍ଡରେ ଜଳନ୍ତାନିଆଁ ଖପୁରି ଥାପି ତାଙ୍କ ନାଚ ଯେତେବେଳେ ଟିକେ ଧିମେଇଯିବ ଆଉ ସିଏ ନିଆଁ ଖପୁରି ମୁଣ୍ଡରୁ ତଳକୁ ଓହ୍ଲାଇ ଦେଇ ଅଣ୍ଟା ସଳଖିବେ । ଜଣେ କେହି ଝାଲର ଧରିଥିବା ଜାନି କହିବ, ମୁଁ କଟ୍‌କର୍ ଦେବତା ଆସିଛେଁ ଆଡ଼େ ମୋକେ ଛନେ ନଚାହା' । 'ଗୁରୁମେ' ମୁଣ୍ଡଟେକି ଏ ଜାନିକି ଅନାଇବେ ପୁଣିଥରେ ଖପୁରିର ନିଆଁ ଜାଳିଦିଆଯିବ ଧୂପ ମୁଠାଏ ପଡ଼ିବ ଆଉ ଗୁରୁମେ ତାକୁ ଟେକିନେଇ ପୁଣିଥରେ ନିଜ ମୁଣ୍ଡରେ ଥାପି ନାଚିବେ । ଉଷ୍‌କୁ ଉଷା... ଉଷ୍‌କୁ ଉଷା... । ଗୁରୁମେ ଯଦି ନ ନାଚିବେ ଜାଣିବ ଦେବତା ଏତେ ପ୍ରତ୍ୟକ୍ଷ ନୁହେଁ । ଆଉ ଗୁରୁମେ ତାକୁ ଖାତିର୍ କରୁନି । ଦେବତା ଯଦି ପ୍ରତ୍ୟକ୍ଷ ଗୁରୁମେ ଏମିତି ନାଚିବେ' କହି ଚିତ୍ରି ପୁଣିଥରେ ତା'ର ଅଣ୍ଟା ନୁଆଇଁ ହାତ ଝଲାଇ ନାଚିବାକୁ ଆରମ୍ଭ କରିଦେଲା । ଉଷ୍‌କୁ ଉଷା... ଉଷ୍‌କୁ ଉଷା... ।

ଗୀତର ତାତ୍ପର୍ଯ୍ୟ ମୁଁ ଠିକ୍ ବୁଝିପାରିଲି । ଚିତ୍ରି ଗାଉଛି, ମୁଁ କଟକର ଦେବତା ଆସିଛି ଭାଇ, ମୋତେ ଟିକେ ନଚେଇଦିଅ । ଆଉ ଯେଉଁ ସ୍ତ୍ରୀଲୋକ ସବୁ ଗୁରୁଙ୍କ ମା' ଭାବରେ ଗୁରୁମେ ସାଜି ଦେବତାମାନଙ୍କ ପ୍ରତିନିଧିତ୍ୱ କରୁଛି ସେ ଜାନି - ପୂଜାରୀମାନଙ୍କ ଜରିଆରେ ନୂଆ ଆସିଥିବା ଦେବତାମାନଙ୍କୁ ଚିହ୍ନି ନୂଆ ନାଚ ନାଚି ଯଥାଯୋଗ୍ୟ ସମ୍ବର୍ଦ୍ଧନା କରୁଛି ।

ବାରନ୍ଦାରୁ ପଚାରିଦେଲି - "ଆମେରିକାର ଦେବତା ବି ଆସିବ ଚିତ୍ରି ? ଚିତ୍ରିର ନାଚ ହଠାତ୍ ବନ୍ଦ ହୋଇଗଲା । ସେ ଧୀରେ ଧୀରେ ଆଗେଇ ଆସି ଆଣ୍ଠୁମାଡ଼ି ଭୂଇଁରେ ମୁଣ୍ଡ ନୁଆଁଇ ମୋତେ ପ୍ରଣାମ କରୁ କରୁ ଗୁଣୁଗୁଣେଇଲା - 'ତମେ ଏଇଠି ଠିଆହେଇଛ ଦାଦା ?ମୁଁ ଜାଣିପାରୁନି ।' "କେଡ଼େ ସଉକରେ ତମେ ନଣନ୍ଦ ଭାଉଜ ନାଚ ଗୀତ ଥଟ୍ଟା ତାମସା ମଉଜ ମଜଲିସ୍ କରୁଛ, ମୁଁ କାହିଁକି ସେଥିରେ ଦଖଲ ଦିଅନ୍ତି କହିଲୁ ?" ମୋ ଟିପ୍ପଣୀରେ ଚିତ୍ରି ତା'ର ସୁନ୍ଦର ଦାନ୍ତସେଟ୍ ଦେଖାଇ ହସିଦେଲା ।

ଚିତ୍ରିର ହସ ସତରେ ଭାରି ସୁନ୍ଦର - ଅତି ସରଳ ଏବଂ ନିଷ୍କପଟ । ତମ୍ବାଳିଆ ତା ଗୋଲ ମୁହଁରେ ସେ ହସ ବେଶ୍ ମାନେ । କନ୍ଧଘର ଝିଅ ପଚାଶ ବର୍ଷ ପାଖାପାଖି ବୟସ ହେଲେ ବି ତା' ହାତ ଗୋଡ଼ ବେଶ୍ ପୁରିଲା ପୁରିଲା ଆଉ ଟାଣୁଆ, ଉଣା

ଅଧିକେ ନେପାଳୀ ଝିଅଙ୍କ ପରି - ଆଣ୍ଠୁଏ ଚଉଡ଼ା ଆଠ ହାତ ଲମ୍ବ ନାଲି ତନ୍ତଶାଢ଼ୀ ତଳକୁ ଗୋଡ଼ର କଳାମିଶା ଶାଗୁଆ ଗୋଦନିର ଚିତା ଆଖିକି ଝଟ୍‌କରି ଦିଶେ । ନାକ ତଳେ ପତଳା ସୁନା ଦଣ୍ଡି, କାନରେ ନିଦା ସୁନାର ନୋଳି । ବେକରେ କଳାମାଳି ଆଉ ପୋହଳା ମାଳ । ଚିତ୍ରିକୁ ଦେଖିଲେ ସୁନ୍ଦର ଚିତ୍ରପଟଟିଏ ଦେଖିଲା ପରି ଖୁସିଲାଗେ । ବୁଲାଣିଆ ହେଉଥିଲେ ବି ହାଟପାଳି ମାନଙ୍କରେ ବଜାର ଗଲାବେଳେ ମଝି ମଝିରେ ଚିତ୍ରି ଏଇ ବାଟ ଦେଇଯାଏ । ଏ ଘରେ ପଖାଳ ତୋରାଣି ମୁନ୍ଦେ ପିଇ କିମ୍ବା ମୁଢ଼ି ଗଣ୍ଡାଏ ଚୋବାଇ ଦେଇ । ମୋ ମା' ତା' ମିତମା ।

ମା' ବେଳେ ବେଳେ ତାଙ୍କ ପିଲାଦିନର କଥା କହନ୍ତି । ଆଉ କେଉଁ କାଳର ସେ କଥା ଶୁଣିବାକୁ ଭାରି ମଜାଲାଗେ । ଚିତ୍ରିର ମା' ସାଙ୍ଗରେ କେମିତି ସଙ୍ଗାତ ମିତଣୀ ହେଲେ ସେ କଥା ବି ଥରେ ସେ କହୁଥିଲେ । ତାଙ୍କର ସେତେବେଳେ କୁଆଡ଼େ ଚଉଦ ବର୍ଷ ବୟସ ସେ ବୋହୂ ହୋଇ ଆସିଥିଲେ ଏ ଗାଁକୁ । ଆଜି ବି ମୋର ମନେଅଛି, ମୁଁ ଏକଥା ଯେତେବେଳେ ପ୍ରଥମ ଶୁଣିଲି ମା' ଏ ଗାଁକୁ ଆସିଲା ବେଳେ ମୁଁ କେଉଁଠି ଥିଲି ବୋଲି ପଚାରି ଦେଇଥିଲି । ଆଉ ମୋ ସବ୍‌ଜାନ୍‌ତା ବଡ଼ ଭଉଣୀ 'ଏଇ କଥାକୁ ନାଆ ପେଲି ଦେଲି କଲିକତାକୁ' ଢ଼ଙ୍ଗରେ ମୁହଁ ଛିଞ୍ଚାଡ଼ି ନାକ ଫୁଲାଇ ଉତ୍ତର ଦେଲା - 'ଆମେ ସମସ୍ତେ ମା'ଙ୍କ ପେଟରେ ଥିଲୁ ।' ସେ ଉତ୍ତରରେ ମୁଁ ଯେତେବେଳେ ମା'ଙ୍କ ପେଟକୁ ଚାହିଁ ସେ ଭିତରେ କେଉଁଠି ରହିଥିଲି ସେ କଥା ଠଉରାଇବାକୁ ଚେଷ୍ଟା କରୁଥିଲି, ମା' ମୋ ମନକଥା ବୁଝିପାରୁଥିଲେ କି କଣ ଖାଲି ହସିଦେଉଥିଲେ । ମା'ଙ୍କ ଶାଶୁ ମୋ ଜେଜେମା କୁଆଡ଼େ ଭାରି ବଦ୍‌ରାଗୀ । ତହିଁରେ ପୁଣି ଦୁଇ ନଣନ୍ଦ, ତିନି ଦିଅର । ଭୋର କୁକୁଡ଼ା ଡ଼ାକିଲେ ଜେଜେମା ମା'ଙ୍କୁ ଉଠାଇବା ବାହାନାରେ 'ଅଳସା' ଘୁଷୁରି, ବେଳ ଉଇଁଲା ଯାଏ କବାଟ କିଳି ଶୋଇଛି କହି ଦିନ ଆରମ୍ଭ କରିଦିଅନ୍ତି । ବୋହୂ ହୋଇ ଆସିବା ଆଗରୁ ମା' କୁଆଡ଼େ ସକାଳେ ମନଇଚ୍ଛା ଡେ଼ରିରେ ଉଠି ଦାନ୍ତ ଘଷୁନଘଷୁ ମୁଢ଼ି ଉଖୁଡ଼ା ଗଣ୍ଡିଏ ପାଟିରେ ପକାଇ ଦିନ ଆରମ୍ଭ କରୁଥିଲେ । ବାହାହେଲା ପରେ ଏଇଠି ଗୋବର ପାଣି ଛେରାପହଁରା ଦେବା, ଘର ଓଳାଇବା, ଶାଶୁ, ଶ୍ୱଶୁର, ସ୍ୱାମୀ, ନଣନ୍ଦ, ଦିଅରଙ୍କ ପାଇଁ ସଜପଖାଳ ରାନ୍ଧିବସିବାରେ ଦିନ ଆରମ୍ଭ ହୁଏ । ପୋଖରୀକି ଗାଧୋଇଯିବା ଯାଏ ଦାନ୍ତ ଘଷିବା ଦରକାର ବି ପଡ଼େନି । ତମେ ତେବେ କଣ ଦାନ୍ତ ନଘଷି ଚା ପିଉଥିଲ ? ମୋ ପ୍ରଶ୍ନରେ ମା ହସିଦେଇ କହନ୍ତି - 'ସେତିକିବେଳେ କଣ ଚା'ଖିଆ ଥିଲା କିରେ ? ତୋ ଜେଜେ ଯେତେବେଳେ ଚା' ପିଇବା ଆରମ୍ଭ କଲେ ମୁଁ ଅଧସେର ଖାଣ୍ଟି ଦୁଧରେ ମୋଞ୍ଚାଏ ଗୁଡ଼ ଚକଟି ଦେଇ ନୂଆଘରକୁ ଆସିଥିବା ଚାପତ୍ରରୁ ଚିମୁଟାଏ ପକାଇ ଆଉଟାଇ ଦିଏ ଯେ, ଶ୍ୱଶୁର କଂସାରେ କଂସାଏ ଚା'ଧରି

ବସିଗଲା ବେଳେ ସାନ ନଣନ୍ଦ ଆଉ ସାନ ଦିଅର ଗିନାମାନ ଧରି ତାଙ୍କ ଦୁଇଆଡ଼େ ବସିଯାଆନ୍ତି । ଆଉ ସେ ଦୁହିଁଙ୍କ ଗିନାରେ ଟିକିଏ ଟିକିଏ ଚା' ଢ଼ାଳିଦେଲା ପରେ ନିଜେ ଫୁଙ୍କି ଫୁଙ୍କି ପିଅନ୍ତି । ତୁ ଓ ତୋ ନାନୀ ବି ଏମିତି ପିଲାଦିନେ ତମ ଜେଜେ ପାଖରେ ଗିନା ଧରି ବସିଯାଉଥିଲ ଯେ, ସେ ତମକୁ ବି ଟିକେ ଟିକେ ଦେଉଥିଲେ । ଏକଥା ଶୁଣି ମୁଁ ଖୁସିରେ ତାଳିମାରି ହସିଥିଲି ।

'ତମେ ସକାଳେ କଣ ଖାଉଥିଲ' - ପ୍ରଶ୍ନରେ ପୁରୁଣା ଦିନର କଥା ସବୁ ଭାବି ବୋଧହୁଏ ମା'ଙ୍କ ମୁହଁ କେମିତି ଶୁଖିଗଲା । କହିଲେ - 'କିଛିନାହିଁ! ଭୋକରେ ପେଟ ଜଳିଯାଉଥାଏ, ଗାଧୋଇ ସାରିଲା ପରେ ବି ମୁଢ଼ି ଗଣ୍ଡିଏ କି ପଖାଳ ତୋରାଣି ମୁନ୍ଦିଏ ମିଳେନି ଯେ, ତୁନି ତୁନି କାନ୍ଦିବା ହିଁ ସାରହୁଏ । ଭୋକରେ ପୁଣି ଆରମ୍ଭ ହୁଏ ଦିନ ବେଳର ରନ୍ଧାରନ୍ଧି । ବ୍ରାହ୍ମଣ ଘର ଭୁଆସୁଣୀମାନେ ଘରୁ ପଦାରୁ ବାହାରିବା ବି ମନା । କାହା ସଂାଗରେ କଥା ପଦେ କହିଲେ କେଉଁ କଥାରେ ଟିକେ ହସିଦେଲେ ଖୁଣ୍ଟା ଅଲାଜୁକୀ ବେସରମ ଘର ଝିଅ ସାଙ୍ଗକୁ ବାପା ମା'ଙ୍କ ଉପରେ ବି ବାଣମାନ ବରଷିଯାଏ । ସକାଳେ ପୋଖରୀକି ଗାଧୋଇ ଗଲାବେଳେ କିମ୍ୱା ସଞ୍ଜବେଳେ ପୋଖରୀପାଣି ଗଲାବେଳେ ଯାହା ଟିକିଏ ଫୁରସତ୍ ଯେ ସେତିକିବେଳେ ବି ନଣନ୍ଦମାନେ ଲଟକିଥାନ୍ତି । ଆଉ କିଛି ଟିକେ ଖୁଣ ଦେଖିଲେ ଶାଶୁଙ୍କ ପାଖରେ ଚୁଣ୍ଟି ଦିଅନ୍ତି । ଠିକ୍ ସେତିକିବେଳେ ଦିନେ ଆମ ଘରକୁ ଆସି ଏଇ ଚିତ୍ରିର ମା ଦେଖାଦେଇଥିଲା । କନ୍ଧଘର ବୋହୂ, ମୋରି ବୟସର ହେବ କେଡ଼େ ସୁନ୍ଦର ତମ୍ୱା ମିଶା ଆଉଟା ସୁନା ପରି ତା ଦେହର ରଙ୍ଗ । ବାଉଁଶ ଝୁଡ଼ି କୁଲା ଆଉ ପାଛିଆମାନ ବିକ୍ରି କରିବାକୁ ସାଂଗରେ ଆଣିଥାଏ । ମୁଁ ରନ୍ଧାଘରୁ ବାହାରିଛି କି ନାହିଁ ମୋତେ ଦେଖି ଡ଼ାକ ପକାଇଲା "ମିତେ! ମୁଢ଼ି ପାଛିଆ ନେବୁ?" ମୁଁ ତା' ପାଖକୁ ଆସିଲି ଆଉ 'ଶାଶୁଙ୍କୁ ପଚାରିବ' ବୋଲି କହିଲାକ୍ଷଣି ସେ ଛୋଟ ପାଛିଆଟାଏ ମୋତେ ଦେଇକହିଲା, "ନେ ମିତେ, ମୁଇଁ ତୋକେ ଦେଉଚେଁ ।"

ମା କହୁଥିଲେ ଯେ ସେ କଥା ପଦକରେ ଏଇ ଚିତ୍ରିର ମା' ତାଙ୍କ ମନକୁ ମୋହିନେଇଥିଲା । ମା' ତାପରେ କହିଚାଲିଲେ ।

ଶାଶୁ ନଣନ୍ଦ କେହି ପାଖରେ ନାହାନ୍ତି ଦେଖି ମୁଁ ତାକୁ ଫୁସୁରୁ ଫୁସୁରୁ କହିଲି - 'ମୁଢ଼ି କିଏ କିଣି ଆଣିଦେବ ଯେ, ଏ ପାଛିଆରେ ରଖି ଖାଇବି ମିତେ?' ବ୍ରାହ୍ମଣ ଘର ନୂଆବୋହୂର ଦୁର୍ଦ୍ଦଶା ଶୁଣି ଚିତ୍ରିର ମା'କୁ ବୋଧହୁଏ ବେଶୀ ବାଧିଥିଲା । କନ୍ଧଘର ବୋହୂ କୌଣସି ଧରଣର ସାମାଜିକ ବନ୍ଧନରୁ ଖୋଲା ପବନ ପରି ମୁକ୍ତ ସେଇ ଚିତ୍ରିର ମା' ସମବେଦନାଭରା କଣ୍ଠରେ କହିଲା - 'ମୋକେ ପଇସା କି ଚାଉଳ ଦେବୁ ମିତେ, ମୁଇଁ ତୋକେ ମୁଢ଼ି, ଭଜାଚଣା କିଣିଆଣି ଦେବି । ତୋ ଶାଶୁ ନଣନ୍ଦ

କେହି ଜାଣି ପାରିବେନି । ତା'ପରେ ସେ ହସିଥିଲା ତାର ସୁନ୍ଦର ଦାନ୍ତ ଦେଖାଇ । ସେଦିନଠାରୁ ଆମେ ଦୁହେଁ ସଂଗାତ ମିତଣୀ ହୋଇ ମିତେ ବୋଲାବୋଲି ହେଲୁ ।'

ଚିତ୍ରିର ମା କୁଆଡ଼େ ଜଣେ ବଙ୍କା ପାଇକ ଘରର ଝିଅ । ସେ କେମିତି କନ୍ଧଘର ବୋହୂ ହେଲା ସେ କଥା ମଧ୍ୟ ମା' କହନ୍ତି ।

"ଅନ୍ୟ ବର୍ଷ ପରି ସେ ବର୍ଷ ମଧ୍ୟ ରାଜପୁରରେ ରଥ ବାହୁଡ଼ା ଯାତ୍ରା ଭାରି ଜାକଯମକରେ ହେଉଥାଏ । ସେ ଯାତ୍ରା ଦେଖିବା ପାଇଁ ଚିତ୍ରିର ମା ତା' ସାଂଗସାଥୀମାନଙ୍କୁ ଧରି ଆସିଥାଏ ରାଜପୁର ଗାଁକୁ । ଚିଲକପୁର ଗୌନ୍ତିଆ ଘରେ କାମଦାମ ଦେଖରେଖ କରୁଥିବା ବାହାଦୂର କନ୍ଧ ବି ଆସିଥାଏ ସେ ଯାତ୍ରା ଦେଖିବା ପାଇଁ । ଚିତ୍ରିର ମା' ରାସ୍ତାକଡ଼ରେ ବସାଇଥିବା ଗୋଟାଏ ଦୋକାନରୁ ଦର୍ପଣ ପାନିଆ କିଣିବ ବୋଲି ଦର୍ପଣ ଗୋଟାକରେ ମୁହଁ ଦେଖୁଛି, ବାହାଦୂର ପଛଆଡୁ ଆସି ତା ହାତଧରି ଟାଣିନେଇଗଲା । ବାହାଦୂର କନ୍ଧର ଦେହ ଗଠନ ଯେମିତି ସୁନ୍ଦର ସେ ସେମିତି ବଳୁଆ ବି । କିଛିବାଟ ଟାଣିନେଲା ପରେ ସେ ଚିତ୍ରିର ମା'କୁ ଟେକିଧରି ନେଲା ବୋଲି କେହି କେହି କହନ୍ତି ତ, ଆଉ କେହି କହନ୍ତି ଯେ, ବାହାଦୂର ଆଉ ଏଇ ଚିତ୍ରିର ମା' ଆଗରୁ ହାବସପୁର ହାଟରେ ଭେଟଘାଟ ହୋଇ ଏଇ ହରଣଚାଳ ଯୋଜନା ନିଜେ ନିଜେ ପ୍ରସ୍ତୁତ କରିଦେଇଥିଲେ ।

ଚିତ୍ରିର ମା'ର ବାପା ତ ଜଣେ ରଜାଘର ପାଇକ, ସେ ତା ଗାଁଲୋକଙ୍କୁ ଯୋଟ କରି ଟାଙ୍ଗି ଟାଙ୍ଗିଆ ଆଉ ଟୋଟୋଦାର ବନ୍ଧୁକ ଧରି ଚିଲକପୁର ଆସିଲାବେଳକୁ ବାହାଦୂର ଗୌନ୍ତିଆ ଘରେ ଆଶ୍ରୟ ନେଇସାରିଥାଏ । ବାହାଦୂର ଘରେ ରାଧିକା ଓ ବାହାଦୂର ନାହାନ୍ତି ଜାଣି ସେମାନେ ଶେଷରେ ଗୌନ୍ତିଆ ଘର ଆଡ଼ିକି ମୁହାଁଇଲା । ଭାଗ୍ୟ କ୍ରମେ ରାଧିକାର ବାପ ଏବଂ ଏ ଗୌନ୍ତିଆଙ୍କ ଭିତରେ ଆଗରୁ ଭଲ ଚିହ୍ନା ପରିଚୟ ଥାଏ । ଏ ଦଳ ଘରେ ପହଞ୍ଚିବା ଦେଖି ଗୌନ୍ତିଆ ବିପଦ ଆଶଙ୍କା କରୁଥିଲେ । କିନ୍ତୁ ରାଧିକାର ବାପାର ରାଗ ଶାନ୍ତ କରିବା ଉଦ୍ଦେଶ୍ୟରେ କଥା କଣ ବୋଲି ପଚାରିଦେଇ ସେମାନଙ୍କ ପାଇଁ ବିଡ଼ାଏ ଧୂଆଁପତ୍ର, ପିକା ବଳିବା ପାଇଁ ମେଞ୍ଚାଏ ଶୁଖିଲା ଶାଳପତ୍ର ଏବଂ ନିଆଁ ତଥା ହାତଗୋଡ଼ ଧୋଇବେ ବୋଲି ମାଠିଆଏ ପାଣି ସାଂଗକୁ ଲୋଟାଟିଏ ଅଣାଇଦେଲେ । ଏ ଅପ୍ରତ୍ୟାଶିତ ଅଭ୍ୟର୍ଥନା ସମସ୍ତଙ୍କ ରାଗ କିଛିମାତ୍ରାରେ ଉପଶମ କରିବାରେ ସଫଳ ହୋଇଛି ଦେଖି ଗୌନ୍ତିଆ ଏଥର ରାଧିକାର ବାପକୁ ବୁଝାଇ ବସିଲେ – "ଦେଖ୍ ମଙ୍ଗଲୁ, ବାହାଦୂର ତୋ ଝିଅକୁ ବଳାତ୍କାର କରିନେଇ ଆସି ଦୋଷ କରିଛି ବୋଲି ମୁଁ ମାନୁଛି, କିନ୍ତୁ ତୁ ନିଜେ ଭାବି ଦେଖ୍ – ବାହାଦୂରକୁ ପ୍ରାଣରେ ମାରିଦେବୁ, ସମସ୍ତେ ଜେଲ ଦଣ୍ଡ ଭୋଗିବ କି ଫାଶୀ ଖୁଣ୍ଟରେ ବି ଝୁଲିବ । ରାଧିକାର ବି କେଉଁ ମଙ୍ଗଳ ହେବ ଭାବିଲୁ ? ତାକୁ ବାହାଦୂର

ଟାଣିନେଇ କାହା ଘରେ ରଖିଥିଲା ଶୁଣିଲେ ତାକୁ ବାହାହେବା ପାଇଁ କେଉଁ ଭଲବର ମିଳିବେ ? କନ୍ଧ ଓ ବଙ୍କାପାଇକ ଭିତରେ ବିବାହ ସମ୍ବନ୍ଧ ତ ଚଳିଛି । ବାହାଦୂର ବି ଯୁଆନ୍, ତା' ଠିଆ ଠାଣି, ଚାଲିଚଳଣ ରାଜାପୁଅ ପରି । ତାକୁ ତୋ ଝିଅକୁ ଯଦି ଦେବୁ, ସେ ତୋର ସମାଜକୁ ଯଥାରୀତି ଚାଉଳ, ଡ଼ାଲି, ଛେଳି, ମାଂସ ଆଉ ମଦ ହାଣ୍ଡିଏ ଦେବ । ତାର ବି ତ ତୋପରି ଜମିବାଡ଼ି ଅଛି, ବଳଦ ଦି'ହଳ ପୋଢୁଆ ମଇଁଷି ବି ଅଛନ୍ତି । ତୁ ମୋ କଥା ମାନ, ଏମିତି ହୋହଲ୍ଲା ମାରପିଟି ନକରି ରାଧିକାକୁ ବାହାଦୂର ସାଂଗରେ ବିବାହ କରାଇଦେ । ଖର୍ଚ୍ଚବାର୍ଚ୍ଚର ଜିମାଦାରୀ ମୁଁ ।

ଆସିଥିବା ସମସ୍ତେ ପରସ୍ପର ମଧ୍ୟରେ ପରାମର୍ଶ କଲାବେଳେ ଗୌନ୍ତିଆ ଡ଼ାଲାଏ ମୁଢ଼ି ସାଙ୍ଗକୁ କେତେ ଭେଲା ଗୁଡ଼ ବି ସେମାନଙ୍କ ସାମ୍ନାରେ ଥୁଆଇଦେଲେ । ରାଧିକା ବାପା ଅନ୍ୟମାନଙ୍କ ସହ ଏଇ ବିବାହ ପ୍ରସ୍ତାବରେ ରାଜିହୋଇ ଖୁସି ମନରେ ତା ଗାଁକୁ ଫେରିଗଲା । ଆଉ ଏଣେ ବାହାଦୂର ଘର ଭିତରୁ ବାହାରି ଆସି ଗୌନ୍ତିଆଙ୍କ ପାଦ ତଳେ ପଡୁ ପଡୁ କହିଲା - 'ତମେ ମୋତେ ଆଜି ବଞ୍ଚାଇଦେଲ ବୁଆ....'

ମା' ରାଧିକା ସଂଗରେ ସଙ୍ଗାତ ମିତଣୀ ହେଲା ପରେ ସତଘଟଣା କୁଆଡ଼େ ପଚାରିଥିଲେ । ଆଉ ରାଧିକା ହସିଦେଇ ଉତ୍ତର ଦେଇଥିଲା, ତମେ ତ ଜାଣିଛ ମିତେ, ମୋ ବାପା ମୋତେ କନ୍ଧଘରେ ବାହାଦେଇ ନଥାନ୍ତା । ମୁଁ ହାବସପୁର ହାଟରେ ବାହାଦୂରକୁ କେତେଥର ଭେଟି ସାରିଥିଲି । ଆମେ ଠିକ୍ କରି ନେଇଥିଲୁ ଯେ, ବାହୁଡ଼ା ଯାତ୍ରାଦିନ ମୁଁ ସେ ଦୋକାନ ଆଗରେ ଦର୍ପଣଟିଏ ଧରି ମୋ ମୁହଁ ଦେଖୁଥିବି ଆଉ ସେ ମୋତେ ଟାଣିନେଇଯିବ । ନହେଲେ ମୁଁ ବି ବଙ୍କା ପାଇକଘର ଝିଅ, ମୋତେ କଣ ବାହାଦୂର ଏତେ ସହଜରେ ବୋହିଆଣିଥାଆନ୍ତା ? କହି ରାଧିକା ହସରେ କୁରୁଳିଥିଲା ।"

ମା ପୁଣି କହିଥିଲେ - "ପରେ ତ ଶାଶୁ ମରିଗଲେ, ନଣନ୍ଦମାନେ ବାହା ହୋଇଗଲେ, ଦିଅରମାନେ ଭାଗ ବଣ୍ଟାହେଲା ପରେ ଆମେ ଏଇ ରତନପଲା ଚାଲିଆସିଲୁ । ମୁଁ ଆଉ ସେ ମିତେକୁ ଦେଖିଲିନି । ଅନେକ ବର୍ଷ ପରେ ଦିନେ ଏ ଚିତ୍ରି ହଠାତ୍ ଆମ ଘରେ ପହଞ୍ଚିଗଲା । ଦେଖିବାକୁ ଠିକ୍ ମୋ ମିତେ ପରି । ସେ ବି ଆଣିଥିଲା ସେମିତି ବାଉଁଶ ଝୁଡ଼ି, କୁଲା, ଚାଙ୍ଗୁଡ଼ି । ମୁଁ ତ ଶୁଣିଥିଲି ବିବାହର ଅନେକ ପରେ ମିତେର ଝିଅଟିଏ ହୋଇଥିଲା । ଆଉ ସେ ବାନ୍ଧନପଲାରେ ଖଟୁଛି । ମୁଁ ତାକୁ ତା' ମା ଘର କଥା ପଚାରିଛି କି ନାହିଁ ସେ ମୋତେ ପ୍ରଣାମ କରୁ କରୁ କହିଲା ତମେ ତ ମୋ ମିତମା । ମୁଁ ଚିଲକପୁର ରାଧିକାର ଝିଅ । ମା ମୋତେ ବାରମ୍ବାର କହିଥିଲା ତମକୁ ଆସି ଦେଖିଯିବାକୁ ଯେ, ମୁଁ ଆସିପାରୁନଥିଲି, ଆଜି ଆସିଲି ।"

ସେଇଟା ପ୍ରାୟ କୋଡ଼ିଏ ପଚିଶ ବର୍ଷ ତଳର କଥା । ସେ ଦିନଠୁ ଚିତ୍ରି ମଝି ମଝିରେ ଆମ ଘରକୁ ଆସେ ଆଉ ମା'ଙ୍କ ପାଖରୁ ଆଦର ଯତ୍ନ ପାଏ । ତା'ର ଖୋଲା ମନ, ସହଜ ସରଳ ପ୍ରକୃତି, ଅବାଧ ଚାଲିଚଳନ ଏବଂ ଖୁସ୍‌ମିଜାଜ ଢଙ୍ଗରେ ମୁଗ୍ଧହୋଇ ମୋ ସ୍ତ୍ରୀ ବି ତାକୁ ଭାଉଜର ଯତ୍ନ ଆଦର କରନ୍ତି ।

x x x

ଚିତ୍ରି କହିଲା - 'ତମେ ତ ଦେଖୁଛ ଦାଦା, ଆମ ଏ ପୁଷ୍ପରବରେ ସଂସାରଯାକର ସବୁଲୋକ, ସବୁ ଦେବତା କେମିତି ଠୁଳ ହୁଅନ୍ତି । କେଡ଼େ ବଡ଼ବଜାର ବସେ - ଲିଆ ମୁଆଁ, ଉଖୁଡ଼ା, ମିଠେଇ, ପିଠା, ଆଖୁ ଆଉ ଯାହା ଖୋଜିବ... ଅମ୍ରିକାର୍ ଦେବତା କେମିତି ନ ଆସିବେ ଏଡ଼େ ବଡ଼ ଉତ୍ସବକୁ? ଦେଖ ତ ଦାଦାପୁଷ୍ପରବ ଗୋଟାଏ କ'ଣ ଯେ ତାକୁ ଦେଖିବାକୁ ଯିବେ ଲୋ ଚିତ୍ରି ? ମୁଁ ବି ତ ଏ ପୁଷ୍ପରବ ଦେଖିନି !'

ଚିତ୍ରି ଆବାକ୍ ହୋଇ କିଛି ସମୟ ମୋ ଆଡ଼ିକି ଚାହିଁରହିଲା । ଅବିଶ୍ୱାସର ଭଙ୍ଗୀରେ କହିଲା - 'ତମେ ଠକୁଛ ଦାଦା! ପୁଷ୍ପରବ ନଦେଖି କିଏ ଅଛି ଯେ, ତମେ ଦେଖିନଥିବ ! ଏଇ ତ ଗଲା ବର୍ଷ ତମ ଗାଁ ପାଖ କଣ୍ଟୁରିପଦରରେ ପୁଷ୍ପରବ ଦିନ ଗଡ଼୍ରା ପଡ଼ିଲା । ତା' ପୂର୍ବ ବର୍ଷ ବୁଢ଼ିଦାର ... ତା' ପୂର୍ବବର୍ଷ...'

"ଗଡ଼୍ରା ପଡ଼ିଲା କ'ଣ ଲୋ ?"

ଚିତ୍ରି ଡ଼ବ ଡ଼ବ ଆଖିରେ ମୋ ଆଡ଼ିକି ଅନାଇଲା, ପ୍ରଶ୍ନକୁ ବିଶ୍ୱାସ ବି କରିପାରିଲାନି ବୋଧହୁଏ । କହିଲା - 'ଗଡ଼୍ରା ଦାଦା ଗଡ଼୍ରା, ମେଣ୍ଢା ଅଣ୍ଡିରାଟା । ମେଣ୍ଢା ବଳି ନଦେଲେ କନ୍ଧମାନେ ପୁଷ୍ପରବ କେମିତି ମାନିବେ ଦାଦା ?'

'ଓହୋ, ସତେ ଏଇଟା କେଡ଼େ କଥା ହେଲା ! ଏଥର ଭାଉଜଙ୍କୁ ନେଇ ତମେ ପୁଷ୍ପରବ ଦେଖିବାକୁ ଆସିବ । ଆମର ଲୋକମାନେ ବି ତ ଆସିଥିବେ ତମକୁ କାନ୍ଧରେ ବସାଇ ନଚାଇବେ ।'

'ତୁ କହୁଛୁ ତୋ ଭାଉଜକୁ ଏ କନ୍ଧମାନେ କାନ୍ଧରେ ବସାଇ ନଚାଇବେ - ଏଇ ଆମ ଗାଁରେ ମାଳୀମାନେ ତାଙ୍କ ବାହାବେଳେ ବରକନିଆଁଙ୍କୁ କାନ୍ଧରେ ବସାଇ ନଚାଇଲା ପରି ?'

ଚିତ୍ରି ଖିଁ ଖିଁ କରି ହସିଉଠିଲା । କହିଲା - 'ନାଇଁ ଦାଦା - ଭାଉଜଙ୍କୁ କେମିତି କାନ୍ଧରେ ବସାଇ ନଚାଇବେ ? ଇଏ ବୁଆ... ।' ହଇ ଭାଉଜ ତମେ କାନ୍ଧରେ ବସି ନାଚିବ ? ନାଇଁ... ଗୋଟାଏ ଖଟରେ ତମ ଦୁହିଁଙ୍କୁ ବସାଇ ସେ ଖଟକୁ ଚାରିଜଣ ଟେକି ଧରିନାଚିବେ । ମାଟିଘରକୁ ଗଡ଼୍ରା ଗଲାବେଳେ ତ କେତେ ନାଚୁଥିବେ ।

କେତେ ରକମର ବାଜା ବାଜୁଥିବ ଶିଙ୍ଘ ବାଜା, ଘୁମୁରା । ଢ଼ାବ୍ ବାଜୁଥିବ ଛିକ୍ ଡ଼ବ୍ ଡ଼ବ୍ - ଘୁଡୁକା ବାଜୁଥିବ ଘୁଡୁ ଘୁଡୁ ଘୁଡୁ । ରାମତାଳି ବି ବାଜୁଥିବ ଆଉ ଝିଅମାନେ ନାଚୁଥିବେ....

ଚିତ୍ରିର କଥାରେ ମୁଁ ବାଧାଦେଇ ପଚାରିଲି - 'ତମ ବାନ୍ଧନପଲାରେ ଗଡ଼୍‌ରା ନ ପଡ଼ି ସୁନାଡ଼ଙ୍ଗରିରେ ପଡ଼ିବ କାହିଁକି ଚିତ୍ରି ? ତମେ ବି ପରବ ମାନିବ ପରା ?'

ଚିତ୍ରି କେତେବେଳୁ ତଳେ ବସିଯାଇଥିଲା ମୁଣ୍ଡ ହଲାଇ ଜବାବ ଦେଲା - 'ଆମର ଏତେ ଶକ୍ତି କାହିଁ ଦାଦା ? ପୁଷ୍‌ପରବ ତ କନ୍ଧ ଥିବା ଗାଁମାନଙ୍କରେ ସବୁଠି ମାନିବେ, କିନ୍ତୁ ଯେଉଁ ଗାଁରେ ଗଡ଼୍‌ରା ପୂଜା ଦେବାପାଇଁ ଧନ ଠୁଳ ହୋଇପାରିବ, ସେ ଗାଁରେ ସିନା ଗଡ଼୍‌ରା ପଡ଼ିବ ।' ତା'ପରେ ସେ ତାର ଲମ୍ବା ବ୍ୟାଖ୍ୟାନ ଆରମ୍ଭ କରିଦେଲା ।

'ହଜାରେ କି ଦଶହଜାର କଣ ଏଇଠି ପଡ଼ିଛି ଦାଦା ? ଗାଁର ସମସ୍ତେ ଠୁଳ ହେବେ - ଚାନ୍ଦା ଦେବାକୁ ରାଜିହେବେ ରାଇତ ପିଛା ଚାଳିଶ କି ପଚାଶ । ଯିଏ ଆହୁରି ବେଶୀ ଦେଇପାରିଲା ତ ଭଲକଥା । କେତେ ମାସ ଆଗରୁ ଆଖ ପାଖ ଗାଁମାନଙ୍କର ଜାନି ପୂଜାରୀମାନେ ଗୁଣ୍ଡହୋଇ ହାଟରୁ ଗଡ଼୍‌ରା କିଣିଆଣିବେ। ସେ ଗଡ଼୍‌ରାର ଦାମ୍ ହେବ ଶହେ କି ଦୁଇଶହ । ଯେଉଁ ଗାଁରେ ଗଡ଼୍‌ରା ପଡ଼ିବ ସେ ଗାଁର ଜାନି ଗଡ଼୍‌ରା ପୋଷିବା ଭାର ନେବ । ଜାନିର ଝିଅ ଥିଲେ ସେ ଗଡ଼୍‌ରାକୁ ଚରାଇବ ଯେ, ସେ ନେବ ଶହେ ଛ'କୋଡ଼ି । ରାତିରେ ଗଡ଼୍‌ରାକୁ ଜାନି ନିଜ ଖଟ ପାଖରେ ଅଖାଟିଏ ପାରି ତା' ଉପରେ ଶୁଆଇବ - ଚାଦର ଘୋଡ଼ାଇଦେବ - ନିଜ ଝିଅପରି। ପୁଷ୍‌ପରବ ଆଗରୁ ଗଡ଼୍‌ରା ଯଦି ମରିଗଲା କି ତାକୁ ଗଧିଆ କି ବାଘ ଖାଇଦେଲା, ତେବେ ସବୁ ଦେବତା ଏମିତି ରାଗିଯିବେ ଯେ, ଅଞ୍ଚଳ ଛାର୍‌ଖାର୍ ଦେଖାଯିବ । ଝାଡ଼ାବାନ୍ତି, ମା କମାଣି... ଗଧିଆ, ଡୁର୍‌କା ଚିତାବାଘ ଗାଁ ଭିତରକୁ ପଶି ଆସି ଛେଳି ମେଣ୍ଢା, ହଂସ, କୁକୁଡ଼ା ସବୁ ଟାଣିନେବେ । ଗଡ଼୍‌ରାର ଯତ୍ନ ନେବା ସହଜ କଥା ନୁହେଁ ଦାଦା ! ପୁଷ୍‌ପୁନେଇଁ ପାଖେଇ ଆସିଲା ବେଳକୁ ଗୁରୁମେ ମାଟିଘରେ ତାର ପୂଜାବିଧି ଆରମ୍ଭ କରିଦେବ । ଗଡ଼୍‌ରାକୁ ଚାଉଳ ଖୁଆଇ, ସିନ୍ଦୁର ମଖାଇ, ଫୁଲମାଳ ପିନ୍ଧାଇ, ବାଜା ବଜାଇ ଗାଁକୁ ଗାଁ ଘରକୁ ଘର ବୁଲାଇବେ । ଜାନି ସାଂଗରେ ଥିବ । ଗଡ଼୍‌ରା କାହା ଘରକୁ ଗଲେ ଘର ମାଲିକ ତାର ଗୋଡ଼ ଧୋଇଦେବ, ଚାଉଳ ସିନ୍ଦୁର, ଧୂପ ଦୀପ ଦେଇ ବନ୍ଦାଇବେ । ଧାନ ଚାଉଳ ଟଙ୍କା ଯାହା ଦେଇପାରିଲା ବିଦାକି ଦେବ ।

"ପୁଷ୍ ପୁନେଇଁ ଆଗ ସପ୍ତାହର ହାଟପାଳିରୁ ଉତ୍ସବ ଆରମ୍ଭ ହୋଇଯିବ । ମଙ୍ଗଳବାର ହାଟ ବାଟ କରିବେ, ବୁଧବାର ପତର ତୋଳିବେ, ଗୁରୁବାର ଗୁରପୂଜା,

ଶୁକ୍ରବାର ସୁଖେ ଖାଇବେ, ଶନିବାର ଧାଇଁବେ, ରବିବାର ମାରିବେ, ସୋମବାର ଯୋଗାରିବେ ।"

'କ'ଣ କହୁଛୁ ମୁଁ କିଛି ବୁଝିପାରୁନି' ର ଉତ୍ତରରେ ଚିତ୍ରି ଏଥର ଭଲକରି ବୁଝାଇଦେଲା ।' ଆଜି ତ ମଙ୍ଗଳବାର ପରବ ହାଟ ସମସ୍ତେ ଘିଅ ଗୁଡ଼, ଲୁଣ, ମରିଚ, ଆଳୁ, ବାଇଗଣ, କୁକୁଡ଼ା ପାରା, ଛେଳି ମେଣ୍ଢା କିଣିବେ – ନଇଲେ ଭୋଜି କେମିତି କରିବେ ଦାଦା ? କାଲି ବୁଧବାର ଶାଳ ପଳାଶ ପତର ତୋଳି ଖଲିଦନା ସିଇଁବେ ନଇଲେ ଏତେ ଲୋକ ଭୋଜି ଖାଇବେ କେମିତି ? ଗୁରୁବାର ଖିରି ପିଠା ତିଆରି କରିବେ ସମ୍ବଳ ଅନୁଯାୟୀ କୁକୁଡ଼ା ଛେଳି ନିଜ ଘର ଦେବତା ଆଗରେ ବଳିଦେବେ ମଦପୂଜା କରିବେ । ଶୁକ୍ରବାର ଦିନ ସେ ସବୁ ପେଟ ଭରି ଖାଇବେ । ମଦ ପିଇବେ ଆଉ ଶନିବାର ଦିନ ନିଜ ନିଜ ଗାଁରୁ ଏଇ ସୁନାଡ଼ଙ୍ଗରିକୁ ଧାଇଁବେ । ସେଦିନ ସବୁଘରେ କୁଣିଆ ଭର୍ତ୍ତି ହୋଇଯିବେ ଯେ, ଦଶ କି କୋଡ଼ିଏ ସେର ଚାଉଳ ରାନ୍ଧିଲେ ବି ଅଣ୍ଟିବନି । ରବିବାର ଗଡ଼୍ରା ବଳି ଦେବା ଦିନ । ସେଇଟା ତ ପରବର ସବୁଠୁ ବଡ଼କଥା । ଭୋର ପାହାନ୍ତିଆରୁ ଆଖପାଖ ସବୁ ଗାଁର 'ଜାନି ଗୁରୁମେ'ମାନେ ଗଡ଼୍ରାକୁ ଗାଧୋଇ ପାଧୋଇ ପୂଜା କରିବେ । ସବୁ ରକମ ବାଜା ବାଜୁଥିବ । ଚାରିଆଡ଼େ ଦୋକାନ ବଜାର ହୋଇ ହୋ ଘୋ ଘୋ ଶୁଭୁଥିବ । ଗଡ଼୍ରାକୁ ସୁନାଡ଼ଙ୍ଗ୍ରିର ଜାନି ବୋହିନେବ ତା' ଘରକୁ । ସେ ବି ପିନ୍ଧିଥିବ କାଚଲଗା ଘାଗ୍ରା, ବେକରେ ମନ୍ଦାର ଫୁଲମାଳ, ପୂଜା ଦେଇଥିବା ମଦ ପିଇଥିବ ତୋଟିଯାଏ, 'ଗୁରୁମେ'ମାନେ ପାଣି କଳସ, ଧୂପ ନିଆଁ ଧରି ନାଚୁଥିବେ । ସେମାନେ ବି ପିଇଥିବେ ହୋସ୍ ନବୁଡ଼ିବା ଯାଏ ଆଉ ଗଡ଼୍ରା ବୋହିଥିବା 'ଜାନି' ଚାରିପାଖେ ନାଚିଥିବେ ।

'ଜାନି' ଗଡ଼୍ରାକୁ ପିଠା ଖିରି ଖୁଆଇ ପୂଜା ମଦ ପିଆଇ ଦେବ ଆଉ ତାକୁ ନୂଆ ଖଟରେ ଶୁଆଇଦେଇ ତା' ଧାରୁଆ ଛୁରୀରେ ଗଡ଼୍ରାର କଲିଜା ଓ ଫୁସ୍‌ଫୁସ୍ ବାହାର କରି ଆଣିବ ।'

ମୁଁ ଚିତ୍କାର କଲାପରି କହିଉଠିଲି "କ'ଣ କହିଲୁ ? ଜୀଅନ୍ତା ମେଣ୍ଢାର କଲିଜା ଆଉ ଫୁସ୍‌ଫୁସ୍ ବାହାର କରି ଆଣିବେ ?"

"ଗଡ଼୍ରା କଣ ଜାଣିପାରିବି କି ଦାଦା ? ତାର ତ ହୋସ୍ ନଥିବ ।"

ମୁଁ ପୁଣି କହିବା ଆଗରୁ ସେ କହିଚାଲିଲା – "ସେ କଲିଜା ଆଉ ଫୁସ୍‌ଫୁସ୍‌କୁ ଗୋଟିଏ ଥାଳିରେ ରଖି 'ଗୁରୁମେ' ବାହାରିବ ସେ ଘରୁ । ଠିକ୍ ପଛରେ ଥିବ 'ଜାନି' – ଗଡ଼୍ରାକୁ ଆଉ ଖଣ୍ଡିଏ ନୂଆ ଧୋତି ଘୋଡ଼ାଇଦେଇ ବୋହିଆଣିବ କାନ୍ଧି

କାନ୍ଦି - ସତେ ଯେମିତି ନିଜ ମଲା ଝିଅକୁ ବୋହିନେଉଛି । ବାଜା ବାଜଣା ନାଚ ଗୀତ ସଂଗରେ ସମସ୍ତେ ଚାଲିବେ ମାଟିଘରକୁ । ପ୍ରାୟ ସଭିଏଁ ତ ମଦ ପିଇଥିବେ- ଆଉ ନାଚୁଥିବେ କାଳେ ସେ ଭିତରୁ କେହି ଏ କଳିଜା ଫୁସ୍‌ଫୁସ୍ ଥାଳି କିମ୍ବା ଗଡ଼୍‌ରାକୁ ଛଡ଼ାଇ ନେବେ, ସେଥିପାଇଁ ଜଗିଥିବେ କେତେ କନ୍ଧ ଜଗୁଆଳି ଆଉ ପୋଲିସ ହାବିଲ୍‌ଦାର୍ ତାଙ୍କ ସିପାହୀମାନଙ୍କ ସହ ।

ମାଟିଘରେ ସବୁ ଦେବତାମାନଙ୍କ ଝାଳର ଧାଡ଼ିକରି ରଖା ହୋଇଥିବ । ସେଇଠି ଦେବତାମାନଙ୍କୁ ଏଇ କଳିଜା ଫୁସ୍‌ଫୁସ୍ ସହ ସିନ୍ଦୁର ଚାଉଳ ଭୋଗ ଦିଆହେବ । ଆଉ ଗଡ଼୍‌ରାକୁ ମାଟିଘରର ଖିଡ଼ିକି ପାଖରେ ଗୋଟିଏ ତକ୍ତା ଉପରେ ଶୁଆଇ ଦେବେ । ଲୋକେ ଏଥର ଖୁନ୍ଦାଖୁନ୍ଦି ହୋଇ ଜଣକର ହାତ ଉପରେ ଆଉଜଣେ ଖିଡ଼ିକି ଭିତରେ ହାତ ଗଳାଇ କଟୁରି ଛୁରୀମାନଙ୍କରେ ସେ ଗଡ଼୍‌ରାର ଚମଟିକେ ମାଂସ କି ଚମ ଟିକିଏ ପାଇପାରିଲା ସେ ବଡ଼ଲୋକ ।"

'ଏଡ଼ିକି ଟିକେ ଚମ କି ମାଂସ ନେଇ କଣ କରିବେ - ରାନ୍ଧିଲେ କାହାକୁ ଅଣ୍ଟିବ ?' ପ୍ରଶ୍ନରେ ଚିତ୍ରି ପୁଣିଥରେ ହସିଦେଲା କହିଲା "ସେ ଚମ କି ମାଂସକୁ ରାନ୍ଧି ଖାଆନ୍ତି କି ଦାଦା ? ନାଇଁ ସେଥିରୁ ଟିକିଏ ନିଜ କ୍ଷେତରେ ପୋତିଦେଲେ ଧାନ କି ମାଣ୍ଡିଆ ଫସଲ ଫାଟି ପଡ଼ିବ ଆମ୍ବ କି ପଣସ ଗଛ ତଳେ ପୋତିଦେଲେ ଓଃ କେତେ ଆମ୍ବ ପଣସ ଦେଖିବ । ଘରେ କେଉଁ କୋଣରେ ପୋତିଦେଲେ ରୋଗ ବ୍ୟାଧି, ଜର ମୁଁଡ଼୍ ରୋଦେ ଦୋବୋ କିଛି ନାହିଁ । ସେଇ ଚମ ମାଂସ ଟିକିଏ ପାଇଁ କେତେ ମାରଧର ବେଳେ ବେଳେ ହଣାକଟା ବି ହୋଇଯିବେ । ପୋଲିସ୍ ଥାଏ ବୋଲି ସିନା ରକ୍ଷା । ଗଡ଼୍‌ରା ମୁଣ୍ଡର ଚମଡ଼ା ଆଉ କାନ ବି କାଟି ନେବେ । ତା' ଆରଦିନ ସୋମବାର ମାଟି ଘରୁ ହାଡ଼ଗୋଡ଼ ସବୁ ନେଇ ଫିଙ୍ଗିବେ ସେ ଖାଲକୁ ବାଉଁଶ ତାଟିରେ ଢ଼ାଙ୍କି ଦେବେ - 'କୁକୁର ମାକର' ଯେମିତି ଖାଇବେନି ।"

'ରାତିବେଳେ କେହି ଯଦି ଭୁଲ୍‌ରେ ସେ ଜେନାଖାଲ ଦେଇଯିବ ତାକୁ ବି ହାତ ଗୋଡ଼ ଭାଙ୍ଗି ତଣ୍ଟି ମୋଡ଼ିଦେଇ ସେ ଜେନା ଖାଲରେ ଫିଙ୍ଗିଦିଅନ୍ତି ।' ନୂଆ କଣ୍ଠସ୍ୱରରେ ଏମିତି ଭୟଙ୍କର ଗୋଟିଏ ମନ୍ତବ୍ୟ ଶୁଣି ମୁଁ ସେ ଆଡ଼ିକି ଅନାଇଲି । ଆମ ଚାକରାଣୀ ବୁଢ଼ୀ କେତେବେଳେ ଆସି ଏ ଗପ ଶୁଣୁଛି ଆଉ ଏ ଟିପ୍ପଣୀ କାଟିଛି । ମୋ ଦେହ ଶୀତେଇ ଉଠିଥିଲା । ପଚାରିଲି - 'ଚିତ୍ରି, ଏମିତି ବି ହୁଏ ?' "ନାଇଁ ଦାଦା - କେବେ କେଉଁଠି ହୁଏ ବୋଲି କହନ୍ତି, ସିନା - ପୋଲିସ୍ ତ ସେଥିପାଇଁ ଜଗି ରହିଥାଏ ।" ଚିତ୍ରି କହିଲା ।

'ଭାଉଜକୁ ଦେଖାଇ ଆଣିବ ଦାଦା କେଡ଼େ ବଡ଼ ପରବ ।' କହି ଚିତ୍ରି ଉଠିଗଲା ତା' ଡ଼ାଲା ପାଖକୁ । ଦି'ଗଛ ଝାଡୁ ଆଉ ଦି'ଟା କୁଲା ସାଂଗରେ ଗୋଟିଏ

ଚାଙ୍ଗୁଡ଼ିରେ ରଖା ହୋଇଥିବା ପ୍ରାୟ ଦି'ସେରେ ସୁଜି ଭଳି ଦେଖାଯାଉଥିବା ସରୁ ଚାଉଳ ତା' ଭାଉଜ ପାଖରେ ଥୋଇଦେଇ କହିଲା - "କାଙ୍ଗ୍ ଚାଉଳ ସର୍‌ସରା କରି ଲଗାଇଦେଇ ଝିରି ରାନ୍ଧିଲେ ଭରି ମିଠା । ଦାଦାଙ୍କୁ ଗିନାଏ, ମିତେ ମାଙ୍କୁ ଗିନାଏ ଦେବ ଆଉ ଦେବ ବି ଗିନାଏ ଖାଇବ ହୋ!" କହି ଚିତ୍ରି ପୁଣିଥରେ ହସିଦେଲା । ଏଥର ସେ ଡ଼ାଲା ଉଠାଉ କହିଲା - 'ଯାଉଛି ଭାଉଜ, ହାଟ୍‌କୁ ଯିବି, ଡ଼େରି ହେଇଗଲାଣି । ଆଜି ତ ପରବ ହାଟ ଯେ, ନାହିଁନଥିବା ଭିଡ଼ ହୋଇଥିବ ।'

ଚିତ୍ରି ଗଲାବେଳେ ଇଏ କହିଲେ - 'ଫେରିବା ବାଟରେ ଏଇଠି ପଖାଳ ଗଣ୍ଡିଏ ଖାଇଯିବ ଚିତ୍ରି ।' 'ଆସିବି ଭାଉଜ, ଭଲ ଆଚାର ଟିକିଏ ବି ରଖିଥିବ' କହି ଚିତ୍ରି ଚାଲିଗଲା ।

# ବିଡ଼ାଳର ଆକସ୍ମିକ ମୃତ୍ୟୁ ସମ୍ବନ୍ଧରେ

କେହି ଜଣେ ପଣ୍ଡିତ ଥରେ କୁଆଡ଼େ ଉପଦେଶ ଦେବା ଛଳରେ କହିଥିଲେ ଯେ, ରୋମନଗରୀରେ ରହିଲେ ରୋମାନ୍‌ମାନଙ୍କ ପରି ଚଳିବା ଉଚିତ୍ । ଆମର ବି କଥାଟିଏ ଅଛି - "ଯେ ଦେଶେ ଯାଇ, ସେ ଫଳ ଖାଇ' । ତେଣୁ ସେହି ସବୁ ସତ୍‌ପରାମର୍ଶର ସାରାଂଶକୁ ଗ୍ରହଣ କରି ମୁଁ ଗାଁରେ ରହିଲା ବେଳେ ଲଙ୍ଗଳ ଧରି ଜମି ଚାଷ ନକଲେ ମଧ ଅନ୍ତତଃ ଟୁଥ୍ ବ୍ରଶ୍ ବଦଳରେ ନିମ୍ବକାଠିରେ ଦାନ୍ତ ଘଷେ । ଆଉ କାଠିର ଗୋଟାଏ ମୁଣ୍ଡକୁ ଚୋବାଇ ଚୋବାଇ ବ୍ରଶ୍ ତିଆରି କରିବା ଭିତରେ ବାହାର ଅଗଣା ପଟେ ଥିବା ଗଙ୍ଗଶିଉଳି, ଟଗର, କାଠଚମ୍ପା, ଗନ୍ଧରାଜ ପ୍ରଭୃତି ଫୁଲ ଗଛମାନଙ୍କୁ ଦେଖି ବୁଲେ । ସେଦିନ ସକାଳେ ମଧ ମୁହଁ ଧୋଇ ସେମିତି ବୁଲିବା ଉଦ୍ଦେଶ୍ୟରେ ବାହାରି ବାରଣ୍ଡାରେ ବେଞ୍ଚ୍ ପରେ ଥୁଆ ହୋଇଥିବା ନିମ୍ବ କାଠିଟିଏ ଗୋଟାଇ ନେବାକୁ ଯାଉଛି, ହଠାତ୍ ମୋ ଆଖି ପଡ଼ିଗଲା ବେଞ୍ଚ ପାଖ ବାରଣ୍ଡାର ଗୋଟାଏ କୋଣକୁ ପଡ଼ିରହିଥିବା ବିରାଡ଼ି ଉପରେ । ଠେଙ୍ଗାର ସହଜ ଶିକାର ହେବାପରି ଏମିତି ଗୋଟିଏ ସ୍ଥାନରେ ବିରାଡ଼ିଟି ଏତିକିବେଳେ ଶୋଇରହିବା ତ ସ୍ୱାଭାବିକ୍ କଥା ନୁହେଁ! ମୁଁ ତା' ଆଡ଼କୁ ନିରେଖି ଚାହିଁଲି । ଦେଖିଲି, ବିରାଡ଼ିଟି ଆଖି ଡରାଟି ଶୂନ୍ୟକୁ ଅନାଇ ରହିଛି, ମୁହଁର ଫାଳେ ନିଶ ବେଳକୁ ବେଳ ଚିହିଙ୍କି ଉଠୁଛି, ଫାଳେ ପାଟି ଆପଣାଛାଏଁ ଟୁଙ୍ଗାରି ହେବା ବେଳେ ପଛ ଗୋଡ଼ଟିଏ ବି ମଝିରେ ମଝିରେ ଶୂନ୍ୟକୁ କେଞ୍ଚିଲା ପରି ଝୁମୁକୁଛି । ବିରାଡ଼ିଟି ଯେ, ତା ବିରାଡ଼ି ଲୀଳାର ଶେଷଦୃଶ୍ୟରେ ଆସି ପହଞ୍ଚିଗଲାଣି ସେଥିରେ ମୋର ଆଉ ସନ୍ଦେହ ରହିଲାନି । କାଲି ତାକୁ ସୁସ୍ଥ ସବଳ ଦେଖିଥିଲି ଏବଂ ସେ ଘର ଭିତରକୁ ପଶିଆସୁଥିବା ଦେଖି ତାଳିମାରି ଘଉଡ଼ାଇ ଦେଇଥିଲି ମଧ । କିନ୍ତୁ ଆଜି ! ସତରେ କେଡ଼େ ଆଶ୍ଚର୍ଯ୍ୟର କଥା !

ମନେହୁଏ ଏମିତି କିଛି ଗୋଟାଏ ଅଘଟଣ ଲକ୍ଷ୍ୟ କରି ହିଁ 'ସଂସାରରେ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟର କଥା କ'ଣ ' ବୋଲି ସେଦିନ ଧର୍ମ ବକଟି ଯୁଧିଷ୍ଠିରଙ୍କୁ ପ୍ରଶ୍ନ କରିଥିଲା । ଆଉ ଯୁଧିଷ୍ଠିର ଯେତେବେଳେ ଉତ୍ତର ଦେଲେ ଯେ, ଏପରି ଦିନେ ନିଶ୍ଚୟ ମରିବ ଜାଣି ମଧ ବିରାଡ଼ିଟା ନିତିଦିନ ବଦମାସୀ କରିଚାଲିଛି, ସେ କୁଆଡ଼େ

ଭାରି ଖୁସି ହୋଇଯାଇଥିଲା । ଅବଶ୍ୟ ଯୁଧିଷ୍ଠିର ବିରାଡ଼ି ନ କହି ମଣିଷ ବୋଲି କହିଥିଲେ । ତେବେ ସେ କ'ଣ ଏକା କଥା ନୁହେଁ?

ବିରାଡ଼ିଟା ଯେ ଅତ୍ୟନ୍ତ ଦୁଷ୍ଟ ଥିଲା, ସେଥିରେ କୌଣସି ସନ୍ଦେହ ନାହିଁ। ଅକାଳ ମୃତ୍ୟୁ ଯେ ତାହାର ପ୍ରାପ୍ୟ ସେ ସମ୍ବନ୍ଧରେ ମଧ ଭିନ୍ନ ମତ ପୋଷଣ କରାଯାଇପାରେ । ବିରାଡ଼ି ବଂଶର ନାନାଦି କୁକର୍ମ ଏବଂ ଦୁଷ୍କର୍ମ ସହିତ ସୁପରିଚିତ ମୁଁ କୌଣସି ବଦ୍ଧମୂଳ ଆକ୍ରୋଶାତ୍ମକ ଧାରଣା ନେଇ ଏପରି ମନ୍ତବ୍ୟ ଦେଉଛି, ସେପରି ଭାବିବା ମଧ ଭୁଲ୍ ହେବ, ଯେହେତୁ ସେମାନଙ୍କ ବିପକ୍ଷରେ ଯେପରି ଯୁକ୍ତିମାନ ରହିଛି, ସପକ୍ଷରେ ମଧ ସେପରି ପ୍ରାମାଣିକ ତଥ୍ୟ ବିଦ୍ୟମାନ ଅଛି । ଏକଥା ସତ ଯେ, ଥରେ ରୁଦ୍ରାକ୍ଷ ମାଳାବିଭୂଷିତ କମଣ୍ଡଳୁଧାରୀ କୌଣସି ଏକ ବିରାଡ଼ି ନିଜକୁ ବୈଷ୍ଣବ ଧର୍ମରେ ଦୀକ୍ଷିତ ବୋଲି କହି ଅଧୁନା ସେ ବୃନ୍ଦାବନ ଠାରୁ ପଦଯାତ୍ରାରେ ଦ୍ୱାରକା ଏବଂ ରାମେଶ୍ୱର ଦେଇ ଜଗନ୍ନାଥଧାମକୁ ଯାଉଛି ବୋଲି ଗୋଦାବରୀ ତୀରର ବିଶାଳ ଶାଲ୍ମଳୀ ତରୁରେ ବାସ କରୁଥିବା ବୃଦ୍ଧ ଜରଦ୍‌ଗବକୁ ପ୍ରତାରଣା କରିଥିଲା । ଅପରପକ୍ଷରେ ଏକଥା ମଧ ସତ ଯେ, ଅତ୍ୟାଚାରୀ ଏବଂ ବ୍ୟଭିଚାରୀ ମୂଷିକ ଦୈତ୍ୟକୁ ହତ୍ୟା କରିବା ନିମନ୍ତେ ସ୍ୱୟଂ ଭଗବାନ ମାର୍ଜାର ରୂପ ଧାରଣ କରିଥିଲେ । ତା'ର ପ୍ରମାଣ ଗନ୍ଧମାର୍ଦନ ପର୍ବତସ୍ଥିତ ନୃସିଂହନାଥ ମନ୍ଦିରରେ ଏବେ ମଧ ବିଦ୍ୟମାନ । ପବନପୁତ୍ର ହନୁମାନ ମଧ ସୀତାଙ୍କ • ଅନ୍ବେଷଣ କରି ଗଲାବେଳେ ଲଙ୍କାଗଡ଼ ଭିତରେ ମାର୍ଜାର ରୂପ ଧାରଣ କରି ପ୍ରବେଶ କରିଥିଲେ । ତେଣୁ ବିଡ଼ାଳ ଜଗତର କୌଣସି ବିରାଡ଼ିବିଶେଷକୁ ସ୍ପଷ୍ଟ କାରଣ ବିନା ନିନ୍ଦା କରିବା ଅସଂଗତ ହେବ । ଉପରୋକ୍ତ ବିରାଡ଼ିକୁ କେବଳ ବିରାଡ଼ି ବଂଶଜ ବୋଲି ଯେ, ଦୁଷ୍ଟ ଆଖ୍ୟା ଦିଆଯାଉଛି, ତା' ନୁହେଁ ତା' ଦୁଷ୍କର୍ମ ସମ୍ବନ୍ଧୀୟ ଅବ୍ୟର୍ଥ ପ୍ରମାଣମାନ ଏଠାରେ ବିବେଚନାର୍ଥେ ଉତ୍‌ଥାପିତ କରାଯାଇପାରେ ।

ସେଦିନ ଅଧ ରାତିରେ କାଚ ବାସନ ପତନର ଝନ୍‌ଝନିଆ ଆବାଜ ସାଂଗକୁ କୌଣସି ଧାତବ ବସ୍ତୁର ଠଣନ୍ ଠଣ ଶବ୍ଦ ଯେତେବେଳେ ନୈଶ ନିସ୍ତବ୍ଧତାକୁ ଭଙ୍ଗ କରିଦେଲା, ମୁଁ ମୋ ଖଟରୁ ଚମକି ଉଠିଥିଲି । ବଦ୍‌ମାସ ବିଲେଇର ଭଙ୍ଗାରୁଜା କର୍ମପ୍ରବାହ ଭିତରେ ଏ ଯେ ଗୋଟିଏ ନୂତନ ନମୁନା, ସେ ସମ୍ବନ୍ଧରେ ସନ୍ଦେହ ନକରି ମୁଁ ଖଟତଳେ ଥୁଆ ହୋଇଥିବା ଠେଙ୍ଗା ଓ ଟର୍ଚ୍ଚ ଲାଇଟକୁ ଧରି ଶୋଇବା କୋଠରିରୁ ବାହାରିଆସିଲି । ଟର୍ଚ୍ଚଲାଇଟ ଆଲୁଅ ଦର୍ଶାଇଦେଲା ଯେ କପ୍ ଆଉ ସସର୍‌ର ବିଖଣ୍ଡିତ ଅଂଶମାନ ଚା' ଟେବୁଲ ପାଖରେ ବିଞ୍ଚୁଡ଼ି ହୋଇ ପଡ଼ିଛି, ଆଉ ସେ ପାଖରେ ଷ୍ଟେନ୍‌ଲେସ୍ ଷ୍ଟିଲ୍ ଦୁଧ ଡ଼ବାରୁ ନିଗିଡ଼ି ପଡ଼ିଥିବା ଦୁଧକୁ ବିରାଡ଼ିଟି ଅତି ଆନନ୍ଦରେ ଚାଟିଚାଲିଛି । କ୍ରୋଧର ବହ୍ନି ମୋ ଆଖିରୁ ବାହାରି ତାଲୁ ଦେଇ ଚୁଟିର

ସ୍ଥାନଆଡ଼କୁ ଅଗ୍ରସର ହେବା ସଂଗେ ସଂଗେ କ୍ରୋଧାନ୍ଧ ମୁଁ ଠେଙ୍ଗା ଉଠାଇ ବିରାଡ଼ିକୁ ନିର୍ମମ ପ୍ରହାର କଲି । କିନ୍ତୁ ହାୟ ! ଠେଙ୍ଗା ବିରାଡ଼ିକି ବାଜିବା ପରିବର୍ତ୍ତେ ସିଧା ପଡ଼ିଲା ସେଇ ଟା' ଟେବୁଲ ଉପରେ, ଯେଉଁଠି ଶ୍ରୀମତୀ ଅତି ଯତ୍ନରେ କପ୍ ସସର୍‌ମାନ ସଜାଇ ରଖିଥିଲେ । ପଥର ଚଟାଣ ଫଟାଇବା ବାରୁଦ ବିସ୍ଫୋରଣ ପରି ଭୟଙ୍କର ଶୁଭିଥିଲା ସେ ଆବାଜ । ଗାଁର କୁକୁରମାନେ ଭୁକିଉଠିବା ସଂଗେ ସଂଗେ ଆମ ଘରର ସମସ୍ତେ ଉଠିପଡ଼ିଲେ । କଣ ହେଲା ବୋଲି ପଚାରୁ ପଚାରୁ ଶ୍ରୀମତୀ ଆସି ଗାଁରେ ଦୁର୍ଲଭ କପ୍ ସସର୍‌ମାନଙ୍କର ଏ ଚରମ ଅବସ୍ଥା ଲକ୍ଷ୍ୟ କଲେ ଏବଂ କ୍ଷଣକ ପାଇଁ କପ୍ ସସର୍‌ଙ୍କ ମୃତ ପିଣ୍ଡମାନଙ୍କୁ ଥରେ ଏବଂ ମୋତେ ଥରେ ଅନାଇ, କିଛି ନକହି, ଶୋଇବା କୋଠରିକୁ ଫେରିଗଲେ । ବିରାଡ଼ି ହୁଏତ ପାଖରେ କେଉଁଠି ଛପିରହି ଏ ଦୃଶ୍ୟ ଦେଖି ନାକରେ ହାତମାରି ହସିଥିବ । ମୁଁ କିନ୍ତୁ ଅତ୍ୟନ୍ତ ଅପମାନିତ ବୋଧକରି ଏ ବିରାଡ଼ି ଉପରେ ଯଥୋଚିତ ପ୍ରତିଶୋଧ ନେବି ବୋଲି ସଂକଳ୍ପ ଗ୍ରହଣ କରିଥିଲି ।

ଅନ୍ୟ ଏକ ଦିନର କଥା । ଗାଁରେ ତ ଭଲମାଛ କିମ୍ବା ମାଂସ ମିଳେନି । ସେଦିନ ଜଣେ ଶୁଭେଚ୍ଛୁ କେଉଁ ପଞ୍ଚାୟତ ପୋଖରୀରେ ମାଛ ମରାହୋଇଥିବା ଜାଣି ନିଜପାଇଁ ରୋହୀମାଛ କିଣିଆଣିଲା ବେଳକୁ ମୋତେ ମନେପକାଇ ମୋ ପାଇଁ ମଧ ଦେଢ଼କେଜିଆ ମାଛଟିଏ ନେଇଆସିଥିଲେ । ତାଙ୍କ ଝୁଲାମୁଣିରୁ ମାଛଟିକୁ କାଢ଼ି ସେ ଯେତେବେଳେ ବାରଣ୍ଡା ଚଟାଣରେ ମୋ ସାମନାରେ ଥୋଇଦେଲେ, ମୁଁ ମାଛଟି ଦେଖି ଅତି ଖୁସିରେ ତାଙ୍କୁ ଧନ୍ୟବାଦ ଜଣାଇଥିଲି । ସତରେ କି ସୁନ୍ଦର ଥିଲା ସେ ମାଛ ! କାତି ସବୁ ମୁକ୍ତାପରି ଝଟକୁଥିଲା । ଗାଲି ପାଖରେ ଛିଟିକିପଡ଼ିଥିବା ରକ୍ତ ନାଲି ଟହଟହ ଦିଶି ସେ ମୁକ୍ତାର ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରୁଥିଲା । ଆଖି ଥିଲା ଅମଳିନ । ସୁଗଠିତ ଶରୀରର ଛୋଟମୁଣ୍ଡ ଏବଂ ସରୁପାଟି ସତେ ଯେମିତି ଘୋଷଣା କରୁଥିଲା ଯେ ମାଛ ଯଦି ଖାଇବ ଏମିତି ତଟକା ମାଛ ଖାଇବ । ସରପଞ୍ଚଙ୍କ ପାଇଁ ମଧ ସେ ମାଛଟିଏ ଆଣି ଦେଇଛନ୍ତି କହି ଶୁଭେଚ୍ଛୁ ମହାଶୟ ଯେତେବେଳେ ବିଦାୟ ନେବାକୁ ବସିଲେ, ମୁଁ ଅଗଣା ଦ୍ୱାର ପର୍ଯ୍ୟନ୍ତ ତାଙ୍କୁ ବାଟେଇ ଦେଇଗଲି । ସେ ମଧରେ ହିଁ କଥା ପ୍ରସଙ୍ଗରେ ପୋଖରୀମାନଙ୍କରେ ମାଛଚାଷ କଲେ କେତେ ଲାଭ, ସେ କଥା ପଡ଼ିଲା ଏବଂ କିଏ କେଉଁ ପୋଖରୀ ଠିକାନେଇ କେତେ ଲାଭ କରୁଛି, ତା'ର ତାଲିକା ମଧ ଆଲୋଚିତ ହେଲା । ଯଥା ସମୟରେ ସେ ଚାଲିଗଲେ । ମୁଁ ଘରକୁ ପୁଣିଥରେ ଫେରୁଛି, ସେତିକି ବେଳେ ହିଁ ଧେତ୍ ଧେତ୍ ଚିତ୍କାର ଜଣାଇଦେଲା ଯେ, କିଛି ଗୋଟାଏ ଅଘଟଣ ଘଟୁଛି । ମୁଁ ମୋ ପୂର୍ବ ସ୍ଥାନକୁ ଫେରିଆସିଲା ବେଳେ କିଛି ଦୂରରେ ବିରାଡ଼ି ମୁହଁରେ ମାଛର ଶେଷ ଝଲକଟି ଦେଖିବାକୁ ପାଇଥିଲି । ମୁହଁରେ

ମାଛଟି ଧରି ବିରାଡ଼ିଟି ସ୍ୱଚ୍ଛନ୍ଦରେ କାନ୍ଥ ଡେ଼ଇଁ ଅଦୃଶ୍ୟ ହୋଇଗଲା । ନିଷ୍ଫଳ କ୍ରୋଧ ନେଇ ମୁଁ ଘର ଓଳାଇବା ଚାକରାଣୀ ବୁଢ଼ୀକୁ ଗାଳି ଦେଇଥିଲି ।

ଅଳ୍ପଦିନ ତଳର ପୁଣି ଏକ ଘଟଣା । ସକାଳେ ଉଠିଲାବେଳେ ମନେହେଲା କୋଠରିର କୌଣସି ସ୍ଥାନରୁ ଭୟଙ୍କର ଦୁର୍ଗନ୍ଧ ଆସୁଛି । ସଢ଼ାପଚା ଗନ୍ଧଠାରୁ ତୀବ୍ରତର ଥିଲା ସେ ଗନ୍ଧ । ଶ୍ରୀମତୀ ତାଙ୍କ ପୂଜାପାଠରେ ବ୍ୟସ୍ତ ଥିଲେ । ମୁଁ ତାଙ୍କୁ ଜରୁରୀ ଡ଼ାକରା ଦେଲି । ମୋ ଉତ୍ତେଜିତ ସ୍ୱର ଶୁଣି ସେ ବ୍ୟସ୍ତହୋଇ ଧାଇଁ ଆସିଲେ ଏବଂ ତତ୍‌କ୍ଷଣାତ୍ ଦୁର୍ଗନ୍ଧର ଆଭାସ ପାଇ ନାକରେ ପଣତକାନି ଢ଼ାଙ୍କି ଦୁର୍ଗନ୍ଧର ସୂତ୍ର ଖୋଜିବସିଲେ । ଅଚିରେ ଜଣାପଡ଼ିଲା ଯେ, ଖଟତଳେ ଥୁଆ ହୋଇଥିବା ମୁଗଡ଼ାଲି ପାଛିଆରୁ ହିଁ ତାର ଉଦ୍ଭବ । ହାତରେ ଡ଼ାଲି ଘାଣ୍ଟି ଦେଲାକ୍ଷଣି ହିଁ ସେ ଛି ଛି କହି ଆଙ୍ଗୁଠି ଛିଞ୍ଚାଡ଼ି ଚିତ୍କାର କଲେ – 'ଏ ବିରାଡ଼ିକୁ ପ୍ରାଣରେ ନ ମାଇଲେ ଆଉ ରକ୍ଷାନାହିଁ । ତାକୁ ଆଉ ଜାଗା ମିଳିଲାନି ଯେ ଡ଼ାଲିରେ ହଗିଦେଇ ସେ ଗୁହକୁ ଡ଼ାଲିରେ ଢ଼ାଙ୍କିଦେଇଛି । ଏ ମହଙ୍ଗ ଯୁଗରେ ଏତେଗୁଡ଼ିଏ ଡ଼ାଲି ଅକାରଣ ହେଲା ।'

'ଡ଼ାଲିକୁ କିଏ ଖଟତଳେ ରଖେ ?' ମୋ ଟିପ୍ପଣୀରେ ସେ ବିରକ୍ତି ଏବଂ ଅନୁଶୋଚନାମିଶା ସ୍ୱରରେ କହିଲେ - 'ଟିକିଏ ଫିମ୍ପି ମାରିଯାଉଛି ବୋଲି, କାଲି ଖରା ହେଲା ଯେ ଡ଼ାଲିକୁ ଶୁଖାଇ ଦେଇଥିଲି । ସଞ୍ଜବେଳେ ଟିଣରେ ଭର୍ତ୍ତିନକରି ଏଇ ଖଟତଳେ ଥୋଇ ଦେଇଥିଲି – ସକାଳେ ଆଉଥରେ ଖରାରେ ଦେଇ ଭର୍ତ୍ତି କରିଦେବି ବୋଲି । ରାତିରେ ହିଁ ଏ ବିରାଡ଼ି ଏମିତି କରିବ ବୋଲି କିଏ ଜାଣିଛି ? ତମେ କାହିଁକି ଏବେ ଖୁଣିବ ନାହିଁ! ନିଜ ହାତରେ ତ ଖଡ଼ା...'

ଏ ବିରାଡ଼ି ଆମ ଘରେ ଗୃହଯୁଦ୍ଧର ବି କାରଣ ହେବ ଜାଣି ମୁଁ ସେତିକିବେଳେ ପୁଣିଥରେ ପ୍ରତିଜ୍ଞାବଦ୍ଧ ହୋଇଥିଲି ଯେ, ଏ ବିରାଡ଼ିକୁ ମାରିବି ହିଁ ମାରିବି ।

ତା' ବୋଲି କ'ଣ ମୁଁ ସତରେ ବିରାଡ଼ିକୁ ପ୍ରାଣରେ ମାରିଦେବି ବୋଲି ଭାବୁଥିଲି! ବିରାଡ଼ି ମାରିବା କୁଆଡ଼େ ଭାରି ଦୋଷ । କ'ଣହୁଏ କେଜାଣି! ହୁଏତ ହତ୍ୟାକାରୀ ନିଜେ ମଲାବେଳେ ଏମିତି ଆଖି ତରାଟି ଚାହେଁ ନିଶ ଆଉ ପାଟି ଟୁଙ୍ଗାରେ ଶୂନ୍ୟକୁ ଗୋଡ଼ ଛାଟେ ।

ପ୍ରାଣୀର ଭଲ ମନ୍ଦ ବାଣୀ ମରଣକାଳେ ଜଣାପଡୁଥିଲେ ମଧ୍ୟ ଏବଂ ମୁଁ କେତେଥର ଏ ବିରାଡ଼ିକୁ ମାରିବା ପାଇଁ ଗୋଡ଼ାଇଥିଲେ ସୁଦ୍ଧା ଆଜି ଯେତେବେଳେ ତାକୁ ତା' ଜୀବନର ଶେଷ ମୁହୂର୍ତ୍ତରେ ଦେଖିଲି, ଅନୁକମ୍ପା ଏବଂ ସହାନୁଭୂତିରେ ମୋ ମଣିଷ ପ୍ରାଣ ଭରିଗଲା । ବିରାଡ଼ିଙ୍କର କୁଆଡ଼େ ନଅଟା ଜୀବନ । ସେ ସବୁ ଜୀବନ

ଏମିତି ଗୋଟାଏ ରାତିରେ ଶେଷ୍ । ଭାବିଲି, ଏଥିରେ ନିଶ୍ଚୟ କିଛି ଗୁଢ଼ ରହସ୍ୟ ଛପିରହିଛି ।

ବିଲାତରେ ଏମିତି ଗୋଟାଏ ରହସ୍ୟାବୃତ ମୃତ୍ୟୁ ଘଟିଥିଲେ ସ୍କଟଲାଣ୍ଡ ୟାର୍ଡ଼ ହୁଏତ ରହସ୍ୟ ଉଦ୍‌ଘାଟନ ପାଇଁ ଶେର୍ଲକ୍ ହୋମସ୍‌ଙ୍କୁ ଅନୁରୋଧ କରିଥାଆନ୍ତା, ଆଉ ହୋମ୍‌ସ ଡ଼ାକିଥାଆନ୍ତେ ମିଷ୍ଟର ଓ୍ୱାଟ୍‌ସନ୍‌ଙ୍କୁ । ବିରାଡ଼ିର ଏ ଆକସ୍ମିକ ମୃତ୍ୟୁର କାରଣ ଯଦି ମୁଁ ନିଜେ ବାହାର କରେ!

ଡ଼ାକିଲି – 'ଏ ନୀଳ..... ନୀଳରେ....!!'

ଯଥା ସମୟରେ ଆମ ଗାଈଚରୁଆ ନୀଳ ଆସି ହାଜର ହେଲା । ନୀଳର ବୟସ ପଚାଶ ପାଖାପାଖି ହେଲେ ବି ସେ ଷାଠିଏ ପରି ଦିଶେ । ମଝିରେ ମଝିରେ ଟୋପାଏ ଲେଖା ପକାଉଥାଏ ନା କ'ଣ, ସର୍ବଦା ଦେଖାଯାଏ ସତେ ଯେମିତି ଭାରି ବ୍ୟସ୍ତ । ତା' ଚାଲିରୁ ମନେହୁଏ ସେ ଯେମିତି କିଛି ଗୋଟାଏ ଖୋଜିବୁଲୁଛି । ଆଦେଶ ତାଲିମ୍ କରିବା ପାଇଁ ଏତେ ବ୍ୟଗ୍ର ହୋଇପଡ଼େ ଯେ କିଛି ଗୋଟାଏ ଆଦେଶ ପୂରା ଶୁଣିବା ଆଗରୁ ହେଇ ଯାଉଛି କହି କିଛିବାଟ ଧାଇଁଯାଏ ଏବଂ ହଠାତ୍ ଫେରିଆସି ପଚାରେ, କ'ଣ କହିଲ ?'

ଗାଈ ସମ୍ବନ୍ଧରେ କିଛି ନଜାଣିଲେ ମଧ୍ୟ ନୀଳ ତ ଦୁନିଆର ଆଉ ସବୁକଥା ଜାଣେ! ପଚାରିଲି, 'ହଇରେ ନୀଳ – ଏ ବିଲେଇ ମଲା କେମିତି ?'

ନୀଳର ପ୍ରତ୍ୟୁତ୍ତର – 'ବିଲେଇ ?'

'ହଁ... ଏଇ ବିଲେଇ ।'

ନୀଳ ଚାରିଆଡ଼କୁ ଆଖି ବୁଲାଇ ଆଣି ଶେଷରେ ବିଲେଇକୁ ଦେଖିଲା । ଟିକିଏ ହସିଦେଇ କହିଲା – 'ହଁ ମରିଯାଇଛି ।'

ମୁଁ ମୋ ପ୍ରଶ୍ନ ଦୋହରାଇଲି – 'କାହିଁକି ମଲା ଓ କେମିତି ?'

ନୀଳ ଚିନ୍ତାକରିବା ଢ଼ଙ୍ଗରେ ମୁଣ୍ଡକୁ ତଳ ଉପର ଭଲକରି ହଲାଇ ଜବାବ ଦେଲା – 'ମୂଷା ଖାଇଥିବ ।'

ମୋର ପ୍ରଶ୍ନ: 'ଆରେ! ମୂଷା ଖାଇଲେ ବିଲେଇ ମରିବ କାହିଁକି ?'

"ତା' ମୁଣ୍ଡକୁ କାମୁଡ଼ି ଦେଇଥିବ ।"

"କିଏ – ମୂଷା ବିଲେଇ ମୁଣ୍ଡକୁ କାମୁଡ଼ି ଦେଇଥିବ ?"

"ନାଇଁ ବିଲେଇ ମୂଷାର ମୁଣ୍ଡକୁ କାମୁଡ଼ି ଦେଇଥିବ ।"

"ହଇରେ ମୂର୍ଖ, ସେମିତି ହେଲେ ମୂଷା ସିନା ମରନ୍ତା, ବିଲେଇ କାହିଁକି ମରିବ ?"

ନୀଳ ଏଥର ଟିକିଏ ଚିନ୍ତାକଲା । ପ୍ରଶ୍ନରୁ କ'ଣ ବୁଝିଲା କେଜାଣି, କହିଲା - "କାଲି ତମେ ସେ ଘାସବଛା ମଜୁରିଆମାନଙ୍କୁ ଧାନଦେଲ ନା କକା, ସେତିକି ବେଳେ କିଛି ଧାନ ତଳେ ପଡ଼ିଯାଇଥିଲା । ସେ ଧାନ ଖାଇବା ପାଇଁ ମୂଷାମାନେ ଆସିବେ ବୋଲି ଏଇ ବିଲେଇ ସେ ଧାନ ପାଖରେ ଏମିତି ଛପିକରି ବସିଥିଲା"- କହି ନୀଳ ତା' ମୁଣ୍ଡକୁ ବି' ହାତରେ ଘୋଡ଼ାଇ ଦେଇ ବସିପଡ଼ିଲା । ମୁଁ ତା'ର ସେ ଭଙ୍ଗୀ ଦେଖି ନହସି ରହିଁପାରିଲିନି । ସେ ବୋଧହୁଏ ଭାବିଲା ମୁଁ ତାକୁ ଅବିଶ୍ୱାସ କରୁଛି । ଡ଼ାକିଲା 'ପୋଡ଼ାରେ .... ଏ ପୋଡ଼ା !'

ପଡ଼ୋଶୀ ଘରର ମେଣ୍ଢାଚଉ୍ଥିଆ ଟୋକା ଏଇ ପୋଡ଼ା ନୀଳର ଅନୁଚର, ପାର୍ଶ୍ୱଚର ଏବଂ ସହଚର । ନୀଳ ଗାଈ ଚରାଇ ନେଲାବେଳେ ନିଅଁ ବେଣ୍ଟି ଧରି ତା' ମେଣ୍ଢାପଲ ସହ ସାଙ୍ଗରେ ଚାଲିଥାଏ କେତେବେଳୁ ଆସି ନୀଳ ପଛରେ ଠିଆ ହୋଇଥିଲା କେଜାଣି ଆଗକୁ ଚାଲିଆସି ବିନା ଦ୍ୱିଧାରେ ନୀଳର ଉକ୍ତିକୁ ସମର୍ଥନ କଲା ଏବଂ କହିଲା ଯେ, ଗତ ସନ୍ଧ୍ୟାରେ ବିଲେଇ ନୀଳ କହିବା ଅନୁସାରେ ଅମାର ପାଖରେ ଠିକ୍ ସେମିତି ବସିଥିବା ସେ ବି ଦେଖିଛି । ନୀଳର ମୁହଁରେ ବିଜେତାର ହସ ଥିଲା ଏଥର ସ୍ପଷ୍ଟ କହିଲା, 'ଦେଖିଲ, ବିଲେଇ ସେମିତି ବସିଥିଲା ନା ନାହିଁ ?'

ମୁଁ ଏଥର ନରମେଇ କହିଲି - 'ହେଲା ଯେ, ରେ ନୀଳ - ବିଲେଇ ସେଇଠି ମୂଷାଙ୍କୁ ଧରିବା ପାଇଁ ଛକି ରହିଥିଲା, ତେବେ ସେ ନିଜେ ମରିବ କାହିଁକି ?'

ନୀଳ ଏଥର କଥାଟି ବେଶ୍ ବୁଝିପାରିଲା ନା କଣ ଭଲକରି ହସିଲା । କହିଲା, "ହଁ ସତରେ ! ମୂଷା ନା ମରିଥାନ୍ତା, ବିଲେଇ କାହିଁକି ମରିବ ? ଠିକ୍ କଥା ତେବେ ମୂଷା ବିଷ ଖାଇଥିବ, ଆଉ ସେ ବିଷ ଖାଇଥିବା ମୂଷାକୁ ବିଲେଇ ଖାଇଥିବ ।"

କଥାଟି ବେଶ୍ ଯୁକ୍ତିଯୁକ୍ତ ମନେହେଲା । ପଚାରିଲି, 'ତୁ କ'ଣ ମୂଷାମରା ବିଷ କାଲି କେଉଁଠି ଦେଇଥିଲୁ ?'

ନୀଳ ହୁଏତ ଧରିନେଲା ଯେ, ବର୍ତ୍ତମାନ ଏ ବିଲେଇ ମରା ଦୋଷ ତା ମୁଣ୍ଡରେ ଲଦିଦେବାକୁ ଚେଷ୍ଟା ଚାଲିଛି । ତୀବ୍ର ବିରୋଧ କରିବା ଉଦ୍ଦେଶ୍ୟରେ କହିଲା - 'ନାଇଁ କାଲି ଯଦି ମୂଷାମରା ବିଷ ଦେଇଥିବି...' ତାର କଣ ସବୁ ହେବ, ତହିଁରେ ଏକ ତାଲିକା ପେଶ୍ କରି ସେ ନାନାଦି ରାଣମାନ ପକାଇ ଯୋଡ଼ିଦେଲା - ତମେ ଦଶ ପନ୍ଦର ଦିନ ତଳେ ଓ୍ୱାର୍କର ଘରୁ ସେ ମୂଷାମରା ଔଷଧ ଆଣି ମୋତେ ଯେଉଁ ଦେଲ, ତାକୁ ତ କହିବା ଅନୁସାରେ ଗହମ ଗୁଣ୍ଡରେ ଟିକେ ଘିଅ, କିଛି ଚିନି ଦେଇ ଏଡ଼ିକି ଏଡ଼ିକି ମଣ୍ଡାମାନ କରି ସେ ଭିତରେ ପୂର...'

ଦଶ ପନ୍ଦର ଦିନ ତଳର କଥା - କ'ଣ ମୂଷା ସେ ଔଷଧ ଖାଇନଥିଲା ଯେ, ଏବେ ଖାଇଲା ?

ନୀଳ ଧରିନେଲା ଯେ, ଦୋଷାରୋପ ତା' ଉପରକୁ ଘନୀଭୂତ ହୋଇଆସୁଛି। ପୁଣିଥରେ ରାଣ ପକାଇ ଜୋର୍‌ରେ ମୁଣ୍ଡ ଝାଙ୍କି କହିଲା, "ନାଇଁ ତମ କହିବା ଅନୁସାରେ ମୁଁ ତା' ଆରଦିନ ଦେଖିଲି ଦନାମାନଙ୍କରେ ଗୋଟାଏ ବି ଗହମ ଗୁଳା ନଥିଲା । ମୁଁ ସବୁ ଦନାକୁ ନେଇ ଖତଗଦାରେ ପୋତିଦେଇ ଆସିଥିଲି ।'

ତେବେ ତ ସମସ୍ୟା ଅତି ଜଟିଳ! ମୁଁ ଚିନ୍ତିତ ମନରେ ଦୁଇ ଗାଲ ଓ ଥୋଡ଼ିକୁ ଡ଼ାହାଣ ପାପୁଲିରେ ଆଉଁସି ଆଉଁସି ଅଗଣାରେ ପଦଚାରଣ କରୁଛି, ହଠାତ୍ ମୋ ନଜର ପଡ଼ିଗଲା - କାମିନୀ ଫୁଲଗଛ ତଳେ ଚଣାପରି ଦେଖାଯାଉଥିବା କେତେକ କଳା କଳା ପଦାର୍ଥ ଉପରେ । ଗୋଟାଏ ପାଖରେ ଛତା ଆକାରର ସ୍ଥାନରେ ତଳି ପକାଇଲା ପରି ସେ ସବୁ ବିଞ୍ଚିହୋଇ ପଡ଼ିଥିଲା । ହୁଏତ ଅନାଇଲି, ଚଣାପରି ଠିକ୍ ନୁହେଁ - ସାମାନ୍ୟ ଲମ୍ବାଳିଆ ଆଉ ଗାଢ଼ କଳା । ନୀଳକୁ କହିଲି - 'ଦେଖିଲୁରେ ନୀଳ, ଏସବୁ କ'ଣ ।'

ନୀଳ ଟିକିଏ ଅନାଇ ଦେଇ ହିଁ ଜବାବ ଦେଲା - 'ମୂଷାଲଣ୍ଡି' ।

'ମୂଷାଲଣ୍ଡି ?' ମୁଁ ଚମକି ଉଠିଲି । "ଏତେ ମୂଷାଲଣ୍ଡି ଏକାଠେଇଁ । ଭଲକରି ଦେଖିଲୁରେ ନୀଳ" ନିର୍ଦ୍ଦେଶ ପାଇ ନୀଳ କେତେଟା ତଳୁ ଉଠାଇ ଆଣି ନିରେଖି ଚାହିଁଲା ଆଉ ବିନାଦ୍ୱିଧାରେ ପୁର୍ନଘୋଷଣା କଲା ଯେ ସେ ସବୁ ମୂଷାଲଣ୍ଡି । ଏ ଅପ୍ରତ୍ୟାଶିତ ଦିଗ ପ୍ରତି ଗଭୀର ବିଚାର କରିବା ନିମନ୍ତେ ମୁଁ ସେଠାରୁ ଉଠିଆସି ବାରଣ୍ଡାରେ ପଡ଼ିଥିବା ଚୌକିରେ ବସିପଡ଼ିଲି । ହଁ ଏ ମୂଷାଲଣ୍ଡି ଗୁଡ଼ିକ ଯେ ନିଶ୍ଚିତ ଭାବେ ଏ ଗୁଢ଼ ରହସ୍ୟର ଏକ ପ୍ରଧାନ ସୂତ୍ର, ସେ ସମ୍ବନ୍ଧରେ ମୋର ଆଉ ସନ୍ଦେହ ନଥିଲା ।

ଗୋଟାଏ ସ୍ଥାନରେ ଏତେ ମୂଷାଲଣ୍ଡି ଯଦି ଏକତ୍ରିତ ହେଲା ଏତେ ମୂଷା ଏଇଠି ଏକାଠି ହେଲେ କାହିଁକି ଓ କେମିତି ? ମୁଁ ହୁଏତ ସ୍ୱଗତୋକ୍ତି କରୁଥିଲି ଏବଂ ନୀଳ ତାହା ବୋଧହୁଏ ଶୁଣିପାରିଥିଲା । ମୁଁ ଶୁଣିପାରିଲା ଭଳି ମନକୁ ମନ କହୁଥିଲା। କିଛି ଗୋଟାଏ ଖାଇବା ଜିନିଷ ହୁଏତ ଏଇଠି ପଡ଼ିଥିଲା ଯେ ଆଖ ପାଖର ସବୁ ମୂଷା ଡ଼କାହକା ହୋଇ ଏସବୁ ଖାଇବା ପାଇଁ ଚାଲିଆସିଥିଲେ । ମୋ ମତରେ କିନ୍ତୁ କଥାଟି ଏତେ ସରଳ ଜଣାପଡୁନଥିଲା । ଧରିନିଆଯାଉ ଯେ ସଞ୍ଜବେଳେ କୁକୁରକୁ ସେଇଠି କିଛି ଭାତ କିମ୍ବା ମୁଢ଼ି ଖାଇବାକୁ କିଏ ଦେଇ ଦେଇଛି । ତେବେ ସେ ଛିଟିକି ପଡ଼ିଥିବା ଭାତ କିମ୍ବା ମୁଢ଼ି ଖାଇବା ପାଇଁ ଏତେ ମୂଷା ଡ଼କାହକା ହୋଇ ଜମାହେବେ । ତହିଁରେ ପୁଣି ବିଲେଇ ମରିଥିବା ସ୍ଥାନର ଏତେ ପାଖରେ!!

ସନ୍ଦେହ ନଥିଲା ଯେ, ଅନେକ ମୂଷା ସେ ସ୍ଥାନରେ ରୁଣ୍ଡ ହୋଇଥିଲେ ଏବଂ ସେମାନଙ୍କୁ ହୁଏତ କିଛି ଖାଦ୍ୟ ମଧ୍ୟ ମିଳିଯାଇଥିଲା । କିନ୍ତୁ ସେ ଖାଦ୍ୟ ନିଶ୍ଚୟ ଥିଲା

ଗୌଣ କଦାପି ମୁଖ୍ୟ ହୋଇନପାରେ । କୌଣସି ବିଶେଷ ଆଲୋଚନାଚକ୍ରର ଦୁଇ ବୈଠକ ମଝି ବିରତି ବେଳେ କିଛି ଜଳଯୋଗ ଅବା ଭୋଜନର ଆୟୋଜନ ସଂଗେ ଏହି ଖାଦ୍ୟଯୋଗାଣ ତୁଳନୀୟ ହୋଇପାରେ । କିନ୍ତୁ ମୁଁ ପ୍ରଗାଢ଼ ଭାବନାରେ ନିମଜ୍ଜିତ ରହି ସୂତ୍ରର ବିଭିନ୍ନ ଖିଅ ଗୋଟି ଗୋଟି କରି ଯୋଡ଼ିବାରେ ଲାଗିଥିଲି ।

ଅବଶ୍ୟ ଅନେକ ମୂଷା ସେଇଠି ଏକତ୍ରିତ ହୋଇଥିଲେ । ଗୋଟିଏ ଘରର ନହୋଇ ଆଖପାଖ ସବୁ ଘରର ଏବଂ କୌଣସି ବିଶେଷ କାରଣରୁ, ତଥା କୌଣସି ଗୁରୁତର ଆଲୋଚନା ନିମନ୍ତେ ।

ଏଇ ଦୁଷ୍ଟ ବିଲେଇର ଉପଦ୍ରବରୁ ନିଜ ଜାତିକୁ କେମିତି ରକ୍ଷାକରିବେ, ସେ କଥାର ବିଚାର ପାଇଁ?

ମୁଁ ପୁଣି ସେଇ ଲଣ୍ଡି ସ୍ଥାନକୁ ଗଲି । ତନ୍ନ ତନ୍ନ ନିରୀକ୍ଷଣ କରି ଦେଖିଲି ବିଭିନ୍ନ ଲଣ୍ଡିମାନଙ୍କର ଅବସ୍ଥିତି ତଥା ଦୈର୍ଘ୍ୟର ଦିଗ ସ୍ପଷ୍ଟ ଇଙ୍ଗିତ ଦେଉଥିଲା ଯେ, ଏ ମୂଷାମାନେ ପଶ୍ଚିମପଟ ଯୋଷୀ ଘରୁ, ଉତ୍ତରପଟ ଗୋବିନ୍ଦ ଘରୁ, ପୂର୍ବପଟ ମାଳୀଘରୁ ଏବଂ ଦକ୍ଷିଣପଟ ଅମାର ପାଖରୁ ଆସି ରୁଣ୍ଡ ହୋଇଥିଲେ । ଛତ୍ରାକାର ଲଣ୍ଡିର ପଶ୍ଚିମ ପାର୍ଶ୍ୱରେ ରୁଟି ବେଲଣା ପିଢ଼ା ପରି ସ୍ଥାନରେ କେତୋଟି ମାତ୍ର ଲଣ୍ଡି ସୂଚାଇ ଦେଉଥିଲା ଯେ, ତାହା ହିଁ ଥିଲା ସଭାମଞ୍ଚ । ସଭାପତି ତଥା ଅଭ୍ୟର୍ଥନା କମିଟି ସଦସ୍ୟମାନଙ୍କର ତାହା ହିଁ ଥିଲା ସାମାନ୍ୟ ଅବଦାନ ।

ସଭା ଯଦି ହେଲା, ତେବେ ତା'ର ପରିଣତି !

ଅନେକ କାଳ ପୂର୍ବେ ଏପରି ଏକ ମୂଷିକ ସଭା ହୋଇଥିଲା ଏବଂ ତା'ର ଉଦ୍ଦେଶ୍ୟ ମଧ୍ୟ ଥିଲା ଏପରି ଏକ ଦୁଷ୍ଟ ବିରାଡ଼ି ପାଖରୁ ସେମାନେ କିପରି ପରିତ୍ରାଣ ପାଇବେ । ସେ ସଭାରେ ନିଷ୍ପତ୍ତି ହୋଇଥିଲା ଯେ, ବିରାଡ଼ିର ବେକରେ ଯଦି ଘଣ୍ଟିଟିଏ ବାନ୍ଧିଦିଆଯାଏ, ତେବେ ସେ ଯେଉଁ ଆଡ଼ିକି ଯିବ, ଘଣ୍ଟିର ଆବାଜ ତାହା ସୂଚାଇ ଦେବ ଏବଂ ମୂଷାମାନେ ତଦ୍ୱାରା ସତର୍କ ହୋଇଯିବେ । କିନ୍ତୁ କିଏ ବିରାଡ଼ି ବେକରେ ଘଣ୍ଟି ବାନ୍ଧିବ, ସେ ସମସ୍ୟାରେ ହିଁ ସଭାର ସମାପ୍ତି ଘଟିଥିଲା । ସେ ଥିଲା ଗାନ୍ଧିଙ୍କ ଅହିଂସାବାଦର ପୂର୍ବବର୍ତ୍ତୀ ଯୁଗ । ଗାନ୍ଧିଜୀ ସେତେବେଳେ ଜନ୍ମ ହୋଇନଥିଲେ । ନହେଲେ, ମୂଷାମାନେ ଅହିଂସା ଆନ୍ଦୋଳନରୁ ଶିକ୍ଷାଲାଭ କରିଥାଆନ୍ତେ । 'କରିବୁ ନହେଲେ ମରିବୁ' କହି ଦଳେ ସତ୍ୟାଗ୍ରହୀ ମୂଷିକ ଦଉଡ଼ି ସହ ଘଣ୍ଟିଧରି ବିରାଡ଼ିକୁ ଘେରିଯାଇଥାଆନ୍ତେ । ବିରାଡ଼ି କେତୋଟି ମୂଷା ମାରି ଦେଇଥାନ୍ତା ନିଶ୍ଚୟ, କିନ୍ତୁ ଅନ୍ୟ ମୂଷିକମାନେ ସେ ଭିତରେ ଘଣ୍ଟି ବାନ୍ଧିବାରେ ସକ୍ଷମ ହୋଇଥାଆନ୍ତେ ।

ଏ ନୂତନ ମୂଷିକ-ସଭାରେ ସମ୍ବନ୍ଧରେ କୌଣସି ଆଲୋଚନା ହୋଇଥିଲା ପରି ମନେହୁଏନି । ପୂର୍ବସଭାର କାର୍ଯ୍ୟ ବିବରଣୀ ପାଠ ବେଳେ ସେ କଥା ନିଶ୍ଚୟ ଉଠିଥିବ । କିନ୍ତୁ ପ୍ରଗତୀବାଦୀ ଯୁବ ମୂଷିକମାନେ ସେ ପ୍ରସ୍ତାବକୁ ବହୁ ଭୋଟରେ ପ୍ରତ୍ୟାଖ୍ୟାନ କରିଦେଇଥିବେ - କହିଥିବେ, ବିରାଡ଼ି ଆସିବା କଥା ସିନା ଘଣ୍ଟିଧ୍ୱନିରୁ ଜଣାପଡ଼ିବ, କିନ୍ତୁ ମୂଷାମାନେ ସ୍ୱାଧୀନଭାବରେ ଭୟରହିତ ହୋଇ ନିଜ ନିଜ ଅଞ୍ଚଳରେ ଭ୍ରମଣ କରିପାରିବେ କେମିତି ? ଡ଼ରି ମରି ସବୁବେଳେ ସତର୍କ ହୋଇ ରହିବା ସିନା ସାର ହେବ । ସବୁବେଳେ ମନେହେଉଥିବ ସତେ ଯେମିତି ଚାରିଆଡୁ ଘଣ୍ଟିବାଜି ଉଠୁଛି । ସ୍ୱାଧୀନଭାବରେ ଯେ କୌଣସି ଅମାର, ବାଡ଼ି, ବଗିଚା, ଘର ଭିତରେ, ବହି ଆଲମାରି ପ୍ରଭୃତି ଭିତରେ ବିଚରଣ କରିବା ତ ତାଙ୍କ ଜନ୍ମଗତ ଅଧିକାର । ସେ ଅଧିକାରକୁ ବିରାଡ଼ିଟିର ଛିନ୍ନ କରିନପାରେ । ତେଣୁ ଅହିଂସା ମାର୍ଗରେ ଆତ୍ମବଳି ଦେଇ ଘଣ୍ଟି ବାନ୍ଧିବା ପ୍ରସ୍ତାବ ନିଶ୍ଚୟ ନାକଚ ହୋଇଯାଇଥିବ । ତା'ର ପ୍ରମାଣ ମରିଥିବା ବିଲେଇର ବେକରେ କୌଣସି ଘଣ୍ଟି ନାହିଁ । ପୁନଶ୍ଚ ସେ ଅହିଂସା ମାର୍ଗରେ ବିରାଡ଼ି ଅବା ମରନ୍ତା କାହିଁକି ? ଅହିଂସା ସିନା ବିରାଡ଼ିର କୁପ୍ରବୃତ୍ତିକୁ ଘୃଣା କରେ - ବିରାଡ଼ିକୁ ତ ନୁହେଁ ।

ତେବେ ! !

ଏ କଥା ସ୍ୱତଃସିଦ୍ଧ ଯେ ଏ ଆଧୁନିକ ମୂଷିକମାନେ ଆରାଫତ, କର୍ଣ୍ଣେଲ ଗଡ଼୍ଡ଼ାଫି ପ୍ରମୁଖଙ୍କ କ୍ରିୟାବଳୀରୁ ପ୍ରେରଣା ପାଇଛନ୍ତି । ସେମାନେ ଅହିଂସାବାଦରେ ବିଶ୍ୱାସ କରନ୍ତିନି । ହିଂସା ଉପରେ ହିଁ ସେମାନଙ୍କର ପ୍ରଗାଢ଼ ବିଶ୍ୱାସ । ଏ ସଭା ପୂର୍ବରୁ ସେମାନେ ନିଶ୍ଚିତଭାବେ ଆଉ ଏକ ମହାସଭା ଆହ୍ୱାନ କରିଥିବେ । ଏବର ଏ ସଭାଟି କେବଳ କାର୍ଯ୍ୟକାରୀ କମିଟିର ସଭା । ପୂର୍ବ ସଭାରେ ଏକ ଆତ୍ମଘାତୀ କମାଣ୍ଡୋ ୟୁନିଟ୍ ଗଠିତ ହୋଇଥିବ । ଏ ଚରମପନ୍ଥୀ ମୂଷିକଙ୍କ ସୁଇସାଇଡ଼୍ ସ୍କ୍ୱାଡ଼୍ କିଛି କ୍ରିୟାନୁଷ୍ଠାନ କରିଥିବେ । ନୀଳ ଦେଇଥିବା ବିଷଗୋଳାକୁ ସେମାନେ କେଉଁ ସୁରକ୍ଷିତ ସ୍ଥାନରେ ଲୁଚାଇ ରଖି ସୁବିଧା ଦେଖି ସେ ସବୁ ବିଷକୁ ଏଇ ଅଗଣାକୁ ନେଇଆସି ଗୋଟିଏ ମୂଷା କିମ୍ୱା ଦିଓଟି ମୂଷାଙ୍କୁ ଖୁଆଇ ଦେଇଥିବେ । ବିଷ ଖାଇଥିବା ସେ ମୂଷା ବା ମୂଷାମାନେ ସେଇଠି ମରି ଶୋଇଥିବେ । ଆଉ ଏ ମୁର୍ଖ ବିରାଡ଼ି ସେ ମୂଷାକୁ ଅଥବା ମୂଷାଙ୍କୁ ଭକ୍ଷଣ କରିଦେଇଥିବ। ତାପରେ ବିରାଡ଼ି ଆଉ ବେଶୀ ବାଟ ଯାଇପାରିନି । ବାରଣ୍ଡାକୁ ଉଠିଲାକ୍ଷଣି ହିଁ ଛଟପଟାଇବାକୁ ଆରମ୍ଭ କରିଛି ।

ଏବେ ପ୍ରଶ୍ନ - ମୁଣ୍ଡ ଲାଞ୍ଜ ପରି କୌଣସି ଅବଶିଷ୍ଟ ଅଂଶବିଶେଷର ଚିହ୍ନବର୍ଣ୍ଣ ଦେଖାଯାଉନାହିଁ କାହିଁକି ? ଆରେ ନୀଳ କହି ମୁଁ ତା' ପାଖରେ ସେଇ ପ୍ରଶ୍ନ ହିଁ ଉତ୍‌ଥାପନ କରିଥିଲି । ପ୍ରଶ୍ନର ଉତ୍ତର ଖୋଜିବାର ନୀଳକୁ ବେଶୀ କିଛି ସମୟ

ଲାଗିନଥିଲା । ମୂଷା ମୁଣ୍ଡକୁ ବିଲେଇ ହାଡ଼ ସହ ଚୋବାଇ ଦେଇଥିବ, ଲାଞ୍ଜକୁ ଗିଳି ଦେଇଥିବ, ଆଉ ରକ୍ତର ଚିହ୍ନବର୍ଣ୍ଣକୁ ଚାଟିଚୁଟି ସଫା କରିଦେଇଥିବ' - ଥିଲା ତା'ର ତତ୍କ୍ଷଣାତ୍ ଉତ୍ତର ।

ନୀଳର ବୁଦ୍ଧିକୁ ମୁଁ ପ୍ରଶଂସା ନକରି ରହିପାରିଲିନି । ସେ ଲାଞ୍ଜଧରି ମଲା ବିଲେଇକୁ କେଉଁଠି ପୋତିଦେବା ଉଦ୍ଦେଶ୍ୟରେ ଟେକି ନେଲାବେଳେ ମୁଁ କାହିଁକି କେଜାଣି ଦକ୍ଷିଣ ଆଫ୍ରିକାର ଅଶ୍ୱେତ ଜନତା ତଥା ବୋଥା ସରକାରଙ୍କୁ ମନେପକାଉଥିଲି ।

# ଆମ ଗାଁରେ ମିଶ୍ରବାବୁ

ଚାଷୀର ଜୀବନ ସତରେ ଏକ ହୁଟପୁଟିଆ ଜୀବନ - ଦୁଶ୍ଚିନ୍ତାଗ୍ରସ୍ତ ଏବଂ ବିକଳିଆ । 'କେବେ ବର୍ଷା ହେବ ନା ନାହିଁ' ଚିନ୍ତା ତ ଆଉ କେବେ ଏ ପ୍ରଳୟଙ୍କରୀ ବର୍ଷା କେବେ ଛାଡ଼ିବ' ଭାବନା ତାକୁ ସଦାସର୍ବଦା ଘାରି ରହିଥାଏ । ବର୍ଷା ନହେଲେ ସେ ମଲା ଆଉ ବେଶୀ ବର୍ଷା ହେଲେ ବି ମଲା । ବୃଷ୍ଟି ବିହୁନେ ସୃଷ୍ଟି ନାଶ, ବୃଷ୍ଟି ବହୁଳେ ସୃଷ୍ଟି ନାଶ। ବର୍ଷାଦିନ ପାଖେଇ ଆସିଲେ ସେ ହଳକରା ଶୁଖା ବିଲରେ ଧାନ ବୁଣିଦେଇ ଥରେ ଆକାଶକୁ ଚାହୁଁଥାଏ ତ ଥରେ ଅନାଉଥାଏ ତା କ୍ଷେତକୁ । ମେଘ ଖଣ୍ଡିଏ ଆକାଶରେ ଦେଖାଦେଲେ ଆଶା ନିରାଶାର ଛାତି ଧଡ଼କନ୍ ଢେଙ୍କିଟିଏ ପରି ତା ବୁକୁରେ ପାହାର ପିଟିବା ଆରମ୍ଭ କରିଦିଏ ।

ଏମିତି ଗୋଟାଏ ହୁଟପୁଟିଆ କୃଷକର ଜୀବନ ନେଇ ମୁଁ ଥାଏ ଆମ ଗାଁରେ । କେରଳରେ ମୌସୁମୀ ବାୟୁ ଦେଖାଦେଲାଣି ଜାଣି ଆଠ ଦଶଦିନ ଭିତରେ ଓଡ଼ିଶାକୁ ମୌସୁମୀ ବର୍ଷା ଆସିଯିବ ଭାବି ଶୁଖା ଜମିରେ ଧାନ ଖରଡ଼ି ବୁଣିଦେଇ ଆକାଶକୁ ଅନାଇ ରହିଛି, ହଠାତ୍ ବର୍ଷା ଅସରାଏ କୁଆଡ଼ି ଆସି ପିଟି ଦେଇଗଲା । ଧାନ ଗଜୁରିବା ପାଇଁ ସେ ବର୍ଷା ଯଥେଷ୍ଟ ନଥିଲା । ତେବେ ଜ୍ୟେଷ୍ଠମାସିଆ ଖରାରେ ଭିଜିଲା ମାଟି ପୁଣି ଶୁଖିଯିବ ଆଉ ବୁଣିଲା ଧାନ ଖରାପ ହେବନି । ଆଉ ଗୋଟାଏ ଅସରା । ଜାଣିଲା ଶୁଣିଲା ଲୋକେ କହିଲେ - ଏଥର ଦୁଇ ତିନିଦିନ ଭିତରେ ଭଲ ବର୍ଷାଟିଏ ନହେଲେ ବୁଣା ଧାନ ଉଷୁନା ହୋଇଯିବ, ଆଉ ଗଜୁରିବନି । ମନର ଚିନ୍ତା ମନରେ ମାରି ମୁଁ ବସିରହିଲି ଭଲ ବର୍ଷାର ଅପେକ୍ଷାରେ । ବର୍ଷା କିନ୍ତୁ ଆସିଲାନି ।

ସେଦିନ ଥିଲା ଆଷାଢ଼ର ପ୍ରଥମ ଦିବସ । ସକାଳେ ବାହାର ବାରଣ୍ଡାରେ ଚୌକିଟିଏ ପକାଇ ମୁଁ ଅନାଇ ରହିଥାଏ ଆକାଶକୁ । କଳା କଳା ମେଘଖଣ୍ଡ ଧାଇଁଥାନ୍ତି ସେଇ ଆକାଶରେ - ବିଚିତ୍ର ମୂର୍ତ୍ତିମାନ ଧରି । ମେଘ ଜମାଟ ନ ବାନ୍ଧିଲେ ତ ବର୍ଷା ହେବନି - ଯାହା ହେବାର ଅଛି ହେବ - ବୃଥା ଚିନ୍ତାକରି ଅବା କି ଲାଭ ? ଭାବନାକୁ ବାରମ୍ବାର ମନ ଭିତରେ ଦୋହରାଇ ମୁଁ ନିଜେ ନିଜକୁ ବୁଝାଇବାକୁ ବିଫଳ ପ୍ରୟାସ କରୁଛି, ହଠାତ୍ ଦେଖାଦେଲା ଖଣ୍ଡିଏ ମେଘ ଏକ ଅଦ୍ଭୁତ ବେଶରେ ସତେ ଯେମିତି ବିରାଟକାୟ ମଣିଷଟିଏ ପିଠିରେ ବୁଜୁଳାଟିଏ ଲଦି ଡ଼ାହାଣ ହାତରେ ଟାଙ୍ଗିଆ

ଝମକାଇ ଧାଇଁଛି, ଠିକ୍ ଆମ ପୁରୁଣାକାଳିଆ ଡ଼ାକହରକରା ଚିଠିପତ୍ର ବୁକୁଳା ତା'ର ପିଠିରେ ଧରି ଧାଇଁଲା ପରି । ସେ ଦୃଶ୍ୟ ଦେଖି ମୋର ହଠାତ୍ ମନେପଡ଼ିଗଲା ଅଭିଶପ୍ତ ଯକ୍ଷର କଥା । କୌଣସି ଏକ ଆଷାଢ଼ର ପ୍ରଥମ ଦିବସରେ ହିଁ ଯକ୍ଷ ଦେଖିଥିଲା ଆକାଶରେ ଭାସି ଚାଲିଥିବା ଏମିତି ଖଣ୍ଡିଏ ମେଘକୁ । ମେଘ ଗର୍ଜନରେ ଉଲ୍ଲସିତ ମୟୂର ମୟୂରୀଙ୍କ ଭାବ-ବିହ୍ୱଳ ନୃତ୍ୟ ଦେଖି ସେଦିନ ହୁଏତ ତା ବିରହୀ ପ୍ରାଣରେ ଦେଖାଦେଇଥିଲା ପ୍ରେମର ପୁଲକ । ରାମଗିରି ପର୍ବତ ଉପରେ ବସି ସେ ମନେପକାଉଥିଲା ସୁଦୂର ଅଳକାପୁରୀରେ ଥିବା ତା' ପ୍ରେୟସୀକୁ, ପ୍ରେୟସୀର ଅନିନ୍ଦ୍ୟ ରୂପ-ଲାବଣ୍ୟକୁ, ତା'ର ଚାରୁ କୁନ୍ତଳକୁ, ବିମୋହିନୀ ଚପଳ ନୟନଯୁଗଳକୁ, ଅଳସ ଗତିଛଟାକୁ, ପତିବିଚ୍ଛେଦଜନିତ ଦୁଃଖରେ ନିଷ୍ପ୍ରଭ ମୁଖମଣ୍ଡଳକୁ । ଶୋକାକୁଳ ହୃଦୟରେ ଯକ୍ଷ ସେଦିନ ଏଇ ମେଘକୁ କରିଥିଲା ତା'ର ବାର୍ତ୍ତାବହ । ମେଘ କେଉଁବାଟ ଦେଇ ଯିବ, କଣ ସବୁ ଦେଖିବ, ଅଳକାପୁରୀର କେଉଁ ସ୍ଥାନରେ ତା'ର ପ୍ରେୟସୀକୁ ଭେଟିବ ଓ ତାକୁ କି ସନ୍ଦେଶ ଦେବ, ସେକଥା ସବୁ ଗୋଟି ଗୋଟି କରି ସେ ବୁଝାଇଦେଇଥିଲା ।

ମୋ ମନରେ ଏଥର ନୂତନ ଭାବନାଟିଏ ଦେଖାଦେଲା । ଆମ ଶ୍ରୀମତୀ ଯଦି ଏବେ ଗାଁରେ ନରହି ସହରରେ ଥାଆନ୍ତେ, ମୁଁ ବି ହୁଏତ ଏଇ ଡ଼ାକବାଲା ମେଘ ହାତରେ ତାଙ୍କ ପାଖକୁ ସନ୍ଦେଶ ପଠାଇପାରିଥାନ୍ତି ।

ଅବଶ୍ୟ ଯକ୍ଷ ଓ ମୋ ଭିତରେ ଥିଲା ଅନେକ ପ୍ରଭେଦ । ଯକ୍ଷମାନଙ୍କୁ କୁଆଡ଼େ କିଛି କାମ ଧନ୍ଦା କରିବାକୁ ପଡ଼େନି । କଳ୍ପତରୁ ତଳେ ବସି ସେମାନେ ଯାହା ଇଚ୍ଛାକରନ୍ତି ତାହା ପାଇଯାଆନ୍ତି । ମଧୁ ପିଇ ପିଇ ଚିର ଯୌବନ ଭୋଗୀ ଏଇ ଯକ୍ଷମାନଙ୍କର କୌଣସି ଶାରୀରିକ ପୀଡ଼ା ନଥାଏ । ପୀଡ଼ା କହିଲେ ସେମାନେ କେବଳ ଅନଙ୍ଗ ପୀଡ଼ାହିଁ ବୁଝନ୍ତି ଏବଂ ବ୍ୟଥା ବୋଇଲେ ବିରହ ବ୍ୟଥା ।

ଆମ କଥା ଚିନ୍ତା କେଡ଼େ ଅଲଗା ! ଏ ବୁଢ଼ା ବୟସରେ ଅନଙ୍ଗ କାହିଁକି ଅବା ଶରଟିଏ ଆମ ଦେହରେ ନଷ୍ଟ କରିବ ! ଆମ ଦୁନିଆଯାକର ଅନ୍ୟ ସବୁ ପୀଡ଼ା । ମେଘ ହାତରେ ଖବର ପଠାଇଲେ କହନ୍ତି, ହେ ଶ୍ରୀମତୀ ଆମ ଧାନ ଫସଲ ଏବର୍ଷ ଗଲା ବୋଲି ଜାଣ । ବର୍ଷାକୁ ଅନାଇ ଅନାଇ ଦିନ କାଟୁଛି । ତୁମେ ଗଲାଦିନରୁ ମତେ ନିଦ ନାହିଁ କି ଭୋକ ଶୋଷ ନାହିଁ । ସେ ରାନ୍ଧୁଣିଆ ରଘୁ ଯାହା ରାନ୍ଧୁଛି ପାଟିରେ ଦେଇ ହେଉନି । କେଉଁଟା ପୋଡ଼ା ତ କେଉଁଟା ଲୁଣିଆ । ତହିଁରେ ପୁଣି ମୋ ଦାନ୍ତର ଅବସ୍ଥା ତ ଜାଣିଛ, ବାଁ କଳ ଦାନ୍ତ ଭାରି ବିନ୍ଧୁଛି, ଆଉ ଗାଲଟା ଫୁଲିରହିଛି । ଦି'ଟାଯାକ ଫୁଲିଥିଲେ ଅବା ଲୋକେ ମୋଟା ହୋଇ ଗୋଲଗାଲ ହେଲଣି ବୋଲି କହନ୍ତେ! ଡ଼ାହାଣ ଆଖିରୁ ପାଣି ଝରୁଛି ଯେ, ନଜାଣିଲା ଲୋକେ

ତୁମକୁ ଝୁରି ଝୁରି ମୁଁ କାନ୍ଦୁଛି ବୋଲି କହିବେ । ରାତିରେ ଶୋଇଲା ବେଳେ ସେ ଆଖିରେ ଔଷଧ ନଦେଲେ ନଚଳେ । ଏଣେ ନିଜେ ନିଜେ ଆଖିରେ ଡ୍ରପ୍ ପକାଇଲେ ସେ ଔଷଧ ଆଖିରେ ନପଡ଼ି ନାକରେ ପଡ଼ିଯାଉଛି । ପୁଣି ଅଣ୍ଡାବିନ୍ଧା ! ତମ କଥା ତେଣୁ ସବୁବେଳେ ମନେପଡୁଛି 'ତମେ ଆସ ।'

ମେଘକୁ ବାଟ ବତାଇ ଦେବା ଉଦ୍ଦେଶ୍ୟରେ କହନ୍ତି - "ହେ ବାରିଦ ! ତମେ ଆମ ଗାଁରୁ ଉତ୍ତର ଦିଗକୁ ମୁହାଁଇ ଯାତ୍ରା ଆରମ୍ଭ କରିବ । ବାଟରେ ଦେଖିବ ଅଞ୍ଚଳଯାକର ଚାଷୀ କେମିତି କ୍ଷେତର ହୁଡ଼ାମାନଙ୍କରେ ବର୍ଷଣ ଆଶାରେ ତମକୁ ଚାହିଁ ବସିଛନ୍ତି । ଧାପେ ବାଟ ଗଲେ ପଡ଼ିବ ଗୋଟିଏ ଛୋଟ ସହର । ସେ ସହରରେ ରାମଗିରି ପାଖରେ କେତେ ବଣିକ ଏ ଅଞ୍ଚଳକୁ ଆସି ଧାନ ମିଲ୍‌ମାନ ଥାପିଛନ୍ତି ଯେ, ଚାଷୀଙ୍କଠାରୁ ଶସ୍ତାରେ ଧାନ କିଣି ଗୋଦାମ ଅଭାବରୁ ହଜାର ହଜାର ବସ୍ତା ବାହାରେ କୁଢ଼େଇ କରି ରଖିଛନ୍ତି । ଧନକୁବେରମାନଙ୍କର ଜାତିଭାଇ ଜ୍ଞାତିକୁଟୁମ୍ବ ଏମାନେ ବି ଗୋଟାଏ ଗୋଟାଏ ଯକ୍ଷ । ସମୟର ପରିବର୍ତ୍ତନ ସଂଗେ ଆଜିର ଯକ୍ଷମାନେ ପ୍ରେମ ଅପେକ୍ଷା ଧନକୁ ହିଁ ବେଶୀ ଚିହ୍ନନ୍ତି । ତେଣୁ ତୋ ହାତରେ କିଛି ଖବର ପଠାଇଲେ ଏ ଅଞ୍ଚଳର ଧାନ ବୋରିର ଭାଉ କେତେ ସେ ଖବର ହିଁ ଦିଅନ୍ତେ । ଏମାନେ କିନ୍ତୁ କୌଣସି ଖବର ପଠାଇବେନି । ବରଂ ତୋତେ ଦେଖି ରାଗିଯିବେ ଏବଂ କହିବେ ଯହାଁ ସେ ନିକଲ ଯା ଏ ବାଦଲ, ତୁଇ ଇଠାନେ ନାଇଁ ବରଷ୍ ହାମର ଧାନ୍ ବୋରି ଖରାପ ହୋଇଯିବ ।'

"- ତୁ ସେ ସହରକୁ ଜୁନାଗଡ଼ ବୋଲି ଜାଣିବୁ । ସେଇଠି ବେଶୀ ସମୟ ନରହି ସେମାନଙ୍କୁ ଡ଼ରାଇ ଦେବା ନିମନ୍ତେ ସାମାନ୍ୟ ଗର୍ଜନଟିଏ ଛାଡ଼ିଦେବୁ, ଆଉ ସେଠାରୁ ପୂର୍ବକୁ ମୁହାଁଇବୁ । ବାଟରେ ଦେଖିବୁ ଜାରିଂ ବଣ । ପୂର୍ବର ସେ ଅଗନାଅଗନି ବନସ୍ତ ଆଉ ନାହିଁ । ତୁ କି ଆଗ ସେ ବାଟରେ ଗଲାବେଳେ ବନସ୍ତର ବାଘ, ଭାଲୁ, ହରିଣ, ସମ୍ବରଙ୍କୁ ପାଖରେ ଦେଖିବା ପାଇଁ ତଳକୁ ଖସି ଘନା ପାହାଡ଼ରେ ବସିରହୁଥିଲୁ । ଏବେ ସବୁ ପଦା । ତୁ ତେଣୁ ତଳକୁ ନ ଖସି ବରଂ ବେଶୀ ଉପରକୁ ଉଠିଯିବୁ । ଉପରୁ ଶଗଡ଼ା ନଦୀ ବେଶ୍ ସୁନ୍ଦର ଦେଖାଯିବ । କିଛିବାଟ ଆଗେଇଗଲେ ପଡ଼ିବ ଆଉ ଗୋଟିଏ ସହର । ସହର ପ୍ରାନ୍ତରେ ଥିବା ପଞ୍ଚାୟତ ଭବନରୁ ବାହାରି ସୁନ୍ଦର ସୁନ୍ଦର କଲେଜ ଝିଅମାନେ ତାଙ୍କ ଚଞ୍ଚଳ ଆଖିରେ ତୋତେ ଅନାଇ ଖୁସିରେ କୁହାକୁହି ହେବେ 'ବଡ଼ ବର୍ଷାଟିଏ ହୁଅନ୍ତା କି କଲେଜ ଛୁଟି ହୋଇଯାଆନ୍ତା ।' ତା'ପରେ ଦେଖିବୁ ଭଙ୍ଗା ଦଦରା ମନ୍ଦିରଟିଏ । ଜାଣିବୁ ଭବାନୀପାଟନା ସହର ଆସିଗଲା । ଆଗେଇଗଲେ ଦେଖାଯିବ ଏକ ସୁବୃହତ୍ ଜଳାଶୟ ଆଶା ସାଗର । ତହିଁ ମୁହଁ ଧୋଇବୁନି, ପୋତିହୋଇ ଗଲାଣି । ଖାଲି ମଇଳା ଆଉ କାଦୁଅ । ତା'ପରେ କରି

ଘୋଡ଼ାଘାଟ ବୋଲି ସେ ପୋଲ ଡେ଼ଇଁଲା ପରେ ଉତ୍ତରମୁହାଁ ଗଲେ ନୂଆ ସିନେମା ଘରଟିଏ ପଡ଼ିବ । ରେଖା ଅପରାଜିତାମାନଙ୍କୁ ଦେଖିବା ପାଇଁ ସେ ଭିତରକୁ ପଶିବୁନି ଆଗେଇ ଯିବୁ । ଟିକିଏ ବାଟ ଗଲେ ଦେଖିବୁ ଗୋଟିଏ ଘରର ପାଚେରୀରେ ବଡ଼ ବଡ଼ ଅକ୍ଷରରେ ଚିତ୍ର ସହିତ ଲେଖାହୋଇଛି, ଗାଈ ଚିହ୍ନରେ ଭୋଟ ଦିଅ । ତା ତଳକୁ ଦୁଇଟି ସନ୍ତାନ ଯଥେଷ୍ଟ । ବେଢ଼ା ଭିତରେ ଉଚ୍ଚ ତାଳଗଛଟିଏ । ସେ ଘରେ ହିଁ ମୋ ଶ୍ରୀମତୀ ଥିବେ । ସେଇଠି ସାମାନ୍ୟ ଗର୍ଜନଟିଏ ଛାଡ଼ି ଛାଡ଼ି ତୋ ଦେହରୁ କିଛି କୁଆପଥର ଝାଡ଼ିଦେବୁ । କୁଆପଥର ଗୋଟାଇବାକୁ ଧାଇଁ ଆସିବେ ମୋ ଦୁଇ ନାତୁଣୀ ଏବଂ ତାଙ୍କ ପଛରେ ହିଁ ଥିବେ ଆମ ଶ୍ରୀମତୀ । ଚାରୁ କୁନ୍ତଳ ଅଧା ଧଳା ଓ ଅଧା କଳା ଦେଖାଯାଉଥିବ । ମୁଖମଣ୍ଡଳ....”

ମୋ ଭାବନାର ଖିଅ ଏଇଠି ହିଁ ଛିଡ଼ିଗଲା । ଶ୍ରୀମତୀ ଠିକ୍ ଏତିକି ବେଳେ ଗୋଟିଏ ଟ୍ରେ’ରେ ଚା’ କେଟ୍‌ଲି ସହ କପ୍ ସସର ଧରି ବାରନ୍ଦାରେ ପହଞ୍ଚିଗଲେ, ଆଉ ସେଇ ମୁହୂର୍ତ୍ତରେ ହିଁ ଦୂରରୁ ଶୁଭିଲା ଏକ ମୃଦୁ ମୃଦୁ ନିନାଦ। ମନେହେଲା, ସତେ ଯେପରି ଅତି ଦୂରରୁ ମେଘଟିଏ ଚପା ସ୍ୱରରେ ହସୁଛି - ଏହେ ହେ ହେ ! ମୁଁ ଶ୍ରୀମତୀଙ୍କ ଆଡ଼କୁ ଅନାଇଲା ବେଳକୁ ଦେଖିଲି ସେ ସ୍ଥିର ହୋଇଯାଇ ଆଶ୍ଚର୍ଯ୍ୟଭରା ମୁହଁରେ ଗେଟ୍ ଆଡ଼କୁ ଅନାଇଛନ୍ତି, ଆଉ ମନକୁ ମନ ଗୁଣୁଗୁଣଉଛନ୍ତି - ‘ମିଶ୍ରବାବୁଙ୍କ ହସ ପରି ତ ଏ ହସ ।’

ମୁଁ ବି ଏଥର ହସିଲି - ଚପା ନୁହେଁ ପୂରାପୁରି ଖୋଲା ହସ । କହିଲି ଠିଆ ଠିଆ ସ୍ୱପ୍ନ ଦେଖୁଛି ନା କ’ଣ? ମିଶ୍ରବାବୁ କହନ୍ତି, ଆଉ ଆମ ଏ ଗାଁ କାହିଁ?’ ଠିକ୍ ସେତିକିବେଳେ ହିଁ ଆମ ବାରଣ୍ଡା ସାମନା ଛୋଟ ଗେଟ୍ ପାଖରେ ଜଣେ ଭଦ୍ରଲୋକ ଦେଖାଦେଲେ, ତାଙ୍କ ମୁଣ୍ଡର ବାଳ ବେଶ୍ ସଫେଦ, ଗାଲ ପଶିଲା ପଶିଲା ହେଲେ ବି ମୁହଁ ଚିକ୍କଣ ଚାକଣ । ପରିଧାନରେ ଟ୍ରାଉଜର୍ ଏବଂ କୋଟ୍‌ହାତରେ ଗୋଟାଏ ଆଟାଚି । ଭଦ୍ରଲୋକଙ୍କୁ ଆମେ ଅନାଇ ରହିଲା ବେଳକୁ ସେ ଫାଟକ ଖୋଲୁ ଖୋଲୁ କହିଲେ, ‘ନାନୀ ମୁଁ ଠିକ୍ ମୁହୂର୍ତ୍ତରେ ପହଞ୍ଚିଛି - ତମ ହାତରେ ଚା’ ଟ୍ରେ। ମୋ ପାଇଁ ଦୁଇ କପ୍ ।’

ଆମେ ଦୁହେଁ ପ୍ରାୟ ଉଠି ଆସୁ ଆସୁ ମିଶ୍ରବାବୁ ମୁରୁକି ହସି ଜବାବ ଦେଲେ, “କହୁଛି ଭାଇନା, କହୁଛି । ଆଗ ଦି କପ୍ ହେଉ ।”

ଆମେ ଯଥାରୀତି ଘର ଭିତରକୁ ଚାଲିଆସିଥିଲୁ। ଚା’ ପାନ ଭିତରେ ହିଁ ଗୌରୀ ମିନି ନାତିନାତୁଣୀଙ୍କ କୁଶଳାଦି ସମାଚାର ଦିଆନିଆ ସରିଯାଇଥିଲା । ମିଶ୍ରବାବୁ ତାଙ୍କ ପକେଟରୁ କ୍ୟାପ୍‌ଷ୍ଟାନ୍ ଧୂଆଁପତ୍ର ପୁଡ଼ିଆ ଏବଂ ସିଗାରେଟ୍ ତିଆରି କାଗଜ ବାହାର

କରି ସିଗାରେଟ୍ ବଲୁ ବଲୁ ଟିପ୍ପଣୀ କଲେ, "ମୁଁ ଏ ଅଞ୍ଚଳକୁ ସରକାରୀ କାମରେ ଆସିଛି ଭାଇନା ।"

ମୁଁ ସତକୁ ସତ ଆଶ୍ଚର୍ଯ୍ୟ ହେଲି । ମିଶ୍ରବାବୁଙ୍କ ବୟସ ତ ଏବେ ୬୫-୬୬, ଚାକିରିରୁ ଅବ୍ୟାହତି ନେବା ଯୁଗେ ପାଖାପାଖି ହୋଇଲେଣି । ଏ ସରକାରୀ କାମ ପୁଣି କ'ଣ ? ମୋ ପ୍ରଶ୍ନରେ ମିଶ୍ରବାବୁ ତାଙ୍କ ସର୍ବସ୍ୱତ୍ୱ ସଂରକ୍ଷିତ 'ଏହେ ହେ ହେ' ହସ ଆରମ୍ଭ କରିଦେଇ ଓଲଟା ପଚାରିଲେ ଜାତୀୟ ପରିଧାନ ସମୀକରଣ ସମିତିର ଜଣେ ସଭ୍ୟ ଏ ଅଞ୍ଚଳକୁ ଆସି ଆଦିବାସୀ ହରିଜନ ତଥା ଅନ୍ୟାନ୍ୟ ସାମାଜିକ ଗୋଷ୍ଠୀଙ୍କ ଲୁଗାପଟା ପିନ୍ଧା ଢ଼ଙ୍ଗର ସମୀକ୍ଷା କରିବା ଉଚିତ୍ ନୁହେଁ କି ଭାଇନା ?'

ଭ୍ରୂରୁ କୁଞ୍ଚିତ ହେବା ସଂଗେ ସଂଗେ ମୋ ପାଟି ହୁଏତ ମେଲା ହୋଇଯାଇଥିଲା । ମିଶ୍ରବାବୁ ମୋ ଅବସ୍ଥା ଲକ୍ଷ୍ୟକରି ମନର ଭାବ ଠିକ୍ ଠଉରାଇ ନେଇ କହିଲେ, ମନେହେଉଛି, "ଏ ସମିତି ଗଠନ କଥା ଆପଣ ଆଦୌ ଜାଣିନାହାନ୍ତି । ଗାଁରେ ତ ରହିଲେ, ଦେଶର ଗତି ଏବେ କେଉଁଆଡ଼ିକି ତାର ସଠିକ୍ ଖବର ରଖିପାରିବେ ବା କେମିତି ?" "ତେବେ ଶୁଣନ୍ତୁ" - କହି ଦି' ଚାରିଟା ଦିଆସିଲି କାଠି ମାରି ସିଗାରେଟ ଜଳାଇବା ଭିତରେ ଆରମ୍ଭ କଲେ ତାଙ୍କ କାହାଣୀ ।

"ଏଇ କେତେ ମାସ ତଳ କଥା ଭାଇନା! ବିହାରରେ ତ ସମୂହ କ୍ରାନ୍ତିର ଧାରା ବରାବର ଛୁଟିଚାଲିଛି - ପାଟନା ନଗରୀର ଗୋଟାଏ କଲେଜରେ ଦିନେ ଜଣେ ଇଂରାଜୀ ଅଧ୍ୟାପକ କ୍ଲାସ୍ ନେଉଥିଲେ । ସେ କୋଠରି ଭିତରକୁ ପଶି ହାଜରା ନେବାକୁ ଆରମ୍ଭ କରିଛନ୍ତି । କୋଠରିର ଦ୍ୱାରଦେଶରେ ଦୁଇଜଣ ଦେଖାଦେଇ ଭିତରକୁ ପଶିବାକୁ ଅନୁମତି ମାଗିଲେ । ଦୁହିଁଙ୍କ ଭିତରୁ ଜଣେ ବିଚିତ୍ର ଲୁଙ୍ଗିଟିଏ ପିନ୍ଧି ତାକୁ ଆଣ୍ଠୁ ପାଖରୁ ଅଣ୍ଟା ଉପରକୁ ଟେକି ଦେଇଛି । ଦେହରେ ଖଣ୍ଡେ ଗଞ୍ଜି ଆଉ ତା' ଉପରେ ଖଣ୍ଡିଏ ଗାମୁଛା, ମୁଣ୍ଡରେ ମସ୍ତବଡ଼ ଗୋଟିଏ ପଗଡ଼ି। ଅନ୍ୟଜଣକ ଛାତ୍ରୀ । ସେ ବି ଲୁଙ୍ଗିପିନ୍ଧିଛି ନାଭିଦେଶରୁ ତଳିପାଦ ଯାଏ । ଶାଗୁଆ ରଙ୍ଗର ସେ ଲୁଙ୍ଗି - ବାଁ ପାଖରେ ଅଣ୍ଟାରୁ ତଳକୁ କଟା । ଛାତିରେ ଧଳାରଙ୍ଗର ଚିପା ବ୍ଲାଉଜ୍, ବାବୁରି ବାଳ ।

ଦୃଶ୍ୟ ଦେଖି ଅଧ୍ୟାପକଙ୍କ ଆଖିରୁ ସତେ ଯେମିତି ନିଆଁ ବାହାରି ପଡ଼ିଲା । ଚିତ୍କାର କଲେ - ଇଏ କଲେଜର କ୍ଲାସ୍‌ରୁମ୍ ନା ଫେନ୍‌ସି ଡ୍ରେସ୍ କମ୍ପିଟିସନ୍‌ର ଥିଏଟର ହଲ୍ ? ଗେଟ୍ ଆଉଟ୍ ।'

ଶ୍ରେଣୀର ସବୁ ଛାତ୍ରଛାତ୍ରୀ ଏ ତାମସା ଦେଖି ହସୁଥିଲେ । ବାହାରେ ଠିଆହୋଇଥିବା ଛାତ୍ରଛାତ୍ରୀ ଦି'ଜଣ ମୁଣ୍ଡ ଆଉଁସି ଆଉଁସି ଚାଲିଗଲେ । ମନେହେଲା ନାଟକର ଦୃଶ୍ୟଟି ଶେଷ ହୋଇଯାଇଛି । ତା' ଆରଦିନ କିନ୍ତୁ ଏକ ନୂତନ ଘଟଣା

ଘଟିଲା ସେଇ କ୍ଲାସ୍‌ରେ । ସେଦିନ କ୍ଲାସର ସବୁ ଛାତ୍ରଛାତ୍ରୀ ପିନ୍ଧିଥିଲେ ନାନା ରକମର ଡ୍ରେସ୍ । କିଏ କୋଟ୍ ଏବଂ ଟାଇ ସହ ପୂରା ସୁଟ୍ ତ କେହି ଟ୍ରାଉଜର ସାଂଗକୁ ହାୱାଇନ୍ ସାର୍ଟ । କିଏ ଆଫ୍ରିକାନ୍ ସଫାରି ତ କେହି ରୀତିମତ କଛା ଭିଡ଼ାଧୋତି । ଅନେକ କିସମ କିସମର ଲୁଙ୍ଗି ପିନ୍ଧିଥାଆନ୍ତି - ଧଳା, କଳା, ନାରଙ୍ଗୀ ଆଦି ରଙ୍ଗ ସାଂଗକୁ ଛକିଦିଆ ବୁଟିକରା ନାନାଦି ଚିତ୍ରବିଚିତ୍ର ଡ଼ିଜାଇନ୍‌ର ଝିଅମାନଙ୍କର ଡ୍ରେସ୍ ବି ଥିଲା ବିଭିନ୍ନ ଧରଣର । ସ୍କାର୍ଟ, ବ୍ଲାଉଜ୍-ଶାଢ଼ୀ, ସାଲୱାର-କାମିଜ୍, ଜିନ୍ ବେନିଅନ୍ ଆଉ କାହାରି ଦେହରେ ଥିଲା ବୁର୍‌ଖା ।

ପିଲାଙ୍କ ପରିହାସ ବୁଝିବାକୁ ଅଧ୍ୟାପକଙ୍କୁ ଡ଼େରି ଲାଗିଲାନି । ସେ କ୍ଲାସ୍ ଛାଡ଼ି ପ୍ରିନ୍‌ସିପାଲ୍‌ଙ୍କ ପାଖକୁ ଚାଲିଲେ । କିଛି ସମୟ ପରେ କ୍ଲାସରେ ଦେଖାଦେଲେ ସ୍ୱୟଂ ପ୍ରିନ୍ସିପାଲ । ପିଲାଙ୍କ ବେଶଭୂଷା ଭାବଭଙ୍ଗୀ ଦେଖି ସେ ବି ରାଗରେ ଜଳିଗଲେ । କ୍ଲାସ୍‌କୁ ସସ୍‌ପେଣ୍ଡ୍ କରିଦେବାକୁ କହି ସମସ୍ତଙ୍କୁ ଗରହାଜିରା ଦେବାକୁ ପରାମର୍ଶ ଦେଲେ ଏବଂ ସେଠାରୁ ଫେରିଗଲେ ।

ତା'ପରେ ଦିନର ଘଟଣା । ସାରା କଲେଜରେ ଛାତ୍ରଛାତ୍ରୀଙ୍କର ବିଭିନ୍ନ ବେଶ । ବିଭିନ୍ନ ଧରଣର ଲୁଗାପଟା ସାଂଗକୁ ନାନା ଧରଣର ମୁଣ୍ଡ ପୋଷାକ ଗାନ୍ଧିକେପ୍, ବିହାରୀ ଚିକନ୍‌କରା କେପ୍, ରଙ୍ଗବେରଙ୍ଗର ଫେଜ୍ କେପ୍, ସୋଲା ହ୍ୟାଟ୍, ଫେଲଟ୍ ହ୍ୟାଟ୍, ଶିଖ ପଗଡ଼ି, ମହାରାଷ୍ଟ୍ରୀ ପଗଡ଼ି, ଦକ୍ଷିଣିଆ ଜରିମୁହାଁ ପଗଡ଼ି । କପାଳରେ ବି କେହି ରାମାନନ୍ଦୀ ଚିତା କାଟିଛି ତ କେହି ଚନ୍ଦନ ବୋଲି ସିନ୍ଦୁର ଟୋପା ଦେଇଛି । କାହାରି ଦେହରେ ଗେରୁଆ ବସ୍ତ୍ର ତ କିଏ ଅଣ୍ଟା ପାଖରେ କୌପୁନିଟିଏ ଭିଡ଼ିଦେଇ ହାତରେ ତାଳପତ୍ର ଛତା ଧରିଛି । ଝିଅଙ୍କ ବେଶଭୂଷା କଥା ତ ଛାଡ଼ । କେବଳ ହେଆର୍ ଷ୍ଟାଇଲ୍ ଥିଲା କିସମର କିସମର । ଗହଣା ବି ଅନେକ ଧରଣର ସୁନା ରୂପା ପୋହଳା ମାଳଠାରୁ ଆରମ୍ଭ କରି ମୋତି ଏବଂ ରୁଦ୍ରାକ୍ଷ ମାଳ ଯାଏ। ହାତରେ କଂସା ଏବଂ ପିତ୍ତଳର ଖଡ଼ୁ, ଗୋଡ଼ରେ ନୂପୁର, ଗୋଡ଼ବାଲା ।

ପ୍ରିନ୍‌ସିପାଲ୍ ଜାଣିପରିଲେ - ପିଲାମାନେ କଲେଜରେ ଗଣ୍ଡଗୋଳ ଭିଆଇବାକୁ ବଦ୍ଧପରିକର । ତଥାପି ବୁଝାଇସୁଝାଇ କଥାଟିର ସମାଧାନ କରିବା ଆଶାରେ ଛାତ୍ର ଏବଂ ଅଧ୍ୟାପକମାନଙ୍କର ସାଧାରଣ ସଭା ଡ଼କାଇ ପିଲାଙ୍କୁ ଯେତେବେଳେ ଶୃଙ୍ଖଳା ସମ୍ବନ୍ଧରେ ବୁଝାଇ ବସିଲେ ଛାତ୍ର ପ୍ରତିନିଧିମାନେ ଉତ୍ତର ଦେଲେ ଯେ ଭାଷା ପରି ପରିଧାନରେ ମଧ୍ୟ ସେମାନଙ୍କର ସ୍ୱାଧୀନତା ରହିଛି । ସେଇ ସ୍ୱାଧୀନତାକୁ କେହି ବଳାତ୍କାରରେ ଛଡ଼ାଇ ନେଇ ପାରିବେନି । ବେଶଭୂଷା ଯଦି ମାର୍ଜିତ ନହୋଇ ଅଶ୍ଳୀଳ ହୁଏ, ତେବେ ପ୍ରିନ୍‌ସିପାଲ୍ ଶୃଙ୍ଖଳାଗତ ଶାସ୍ତିବିଧାନ କରିପାରନ୍ତି । କିନ୍ତୁ ସେମାନେ ଆଜି ଯାହାସବୁ ପିନ୍ଧିଛନ୍ତି, ସେ ସବୁ ତ ଦେଶର କେଉଁଠି ନା କେଉଁଠି ଲୋକେ ପିନ୍ଧି

ସର୍ବସାଧାରଣରେ ଯା'ଆସ କରନ୍ତି, ହାଟ ବଜାର ଯାଆନ୍ତି, କୋର୍ଟ କଚେରୀକୁ ଆସନ୍ତି । ତେବେ ବିଦେଶୀ ଶାସକ ଦେଶର ଇଂରାଜୀ ଭାଷା ଲଦିଦେଲା ପରି ପ୍ରିନ୍‌ସିପାଲ୍ ମହୋଦୟ ଛାତ୍ରଛାତ୍ରୀଙ୍କ ଉପରେ ବିଦେଶୀ ପରିଧାନ ଲଦିଦେବାକୁ ଏତେ ବ୍ୟଗ୍ର କାହିଁକି ? ପିଲାମାନଙ୍କର ବେଶଭୂଷାର ପରିପାଟୀ ସମ୍ବନ୍ଧୀୟ ସ୍ୱାତନ୍ତ୍ର୍ୟକୁ କ୍ଷୁର୍ଣ୍ଣ କରିବା ପାଇଁ ଅପଚେଷ୍ଟା ନ କରିବାକୁ ମଧ୍ୟ ସେମାନେ ଚେତାବନୀ ଦେଲେ ।

ଅବସ୍ଥା କେଉଁଆଡ଼ିକି ମୁହାଁଇଛି ସେ କଥା ବୁଝିବାକୁ ଆଉ କିଛି ବାକି ରହିଲାନି । ଅଧ୍ୟାପକମାନଙ୍କ ପରାମର୍ଶ କ୍ରମେ ପ୍ରିନ୍‌ସିପାଲ୍ ଫୋନ୍ କଲେ ଡ଼ି.ପି.ଆଇଙ୍କୁ, ଡ଼ିପିଆଇ କହିଲେ ଶିକ୍ଷା ସଚିବଙ୍କୁ । ଶିକ୍ଷା ସଚିବ କହିଲେ ଶିକ୍ଷାମନ୍ତ୍ରୀଙ୍କୁ ଫୋନ୍‌କରି ଏବଂ ପରେ ଲିଖିତ ଗୁପ୍ତ ଦଲିଲ ପଠାଇ ଜଣାଇଦେଲେ ଯେ, ନିଶ୍ଚିତ ଭାବେ ଏଥିରେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ପ୍ରଚ୍ଛନ୍ନ ହାତ ରହିଛି ଏବଂ ଏହାର ଯଥୋଚିତ ସମାଧାନ ନହେଲେ ସାରା ପ୍ରଦେଶରେ ଛାତ୍ର ଗଣ୍ଡଗୋଳ ଦେଖାଦେଇପାରେ । ଛାତ୍ରମାନଙ୍କୁ ଉସୁକାଇ ସରକାରଙ୍କୁ ଅପଦସ୍ଥ କରିବାରେ, ବିପକ୍ଷ ଦଳମାନଙ୍କ କଥା ତ ଛାଡ଼, ଶାସକ ଦଳରେ ମଧ୍ୟ ମନ୍ତ୍ରୀମଣ୍ଡଳର ଆଶୁ ପତନକାମୀ କେତେଜଣ ରହିଥିବା କଥା ସୂଚାଇ ଜଣାଇଦେଲେ ଯେ, ବିଷୟଟି ସରଳ ଜଣାପଡୁଥିଲେ ମଧ୍ୟ ଅତି ଜଟିଳ । ଏ ଉଚ୍ଛୃଙ୍ଖଳତାକୁ ଦୃଢ଼ ହସ୍ତରେ ଦମନ ନକଲେ ଛାତ୍ର ବିଶୃଙ୍ଖଳା ବଢ଼ିଚାଲିବ ଏବଂ ଯଦି କିଛି କାର୍ଯ୍ୟାନୁଷ୍ଠାନ କରାଯାଏ, ତେବେ ତାହା ନିଆଁରେ ଘୃତାହୂତି ପରି ହୋଇପାରେ । ତତ୍ ସମ୍ବନ୍ଧରେ ତଥ୍ୟମାନ ଯୋଗାଇବାକୁ ଯାଇ ଥରେ ଓଡ଼ିଶାରେ ଛାତ୍ର ଗଣ୍ଡଗୋଳରୁ କେମିତି ମନ୍ତ୍ରୀମଣ୍ଡଳର ପତନ ହେଲା, ଗୁଜୁରାଟରେ କେମିତି ମୁଖ୍ୟମନ୍ତ୍ରୀ ବଦଳିଲେ ପ୍ରଭୃତି ଦର୍ଶାଇ ଆସାମ ଛାତ୍ର ଆନ୍ଦୋଳନ କଥା ମଧ୍ୟ ସୂଚାଇ ଦେଲେ ।

ଯଥା ସମୟରେ ମନ୍ତ୍ରୀମଣ୍ଡଳର ବୈଠକ ବସି କେନ୍ଦ୍ର ସରକାରଙ୍କ ପରାମର୍ଶ ନେବା ନିମନ୍ତେ ସ୍ଥିର ହେଲା ।

ଶୁଣାଯାଏ କେନ୍ଦ୍ର ସରକାରଙ୍କ ବିଭାଗୀୟ ସଚିବ ଆଇନ ମନ୍ତ୍ରଣାଳୟର ପରାମର୍ଶ ନେଇ ପ୍ରାରମ୍ଭିକ ସୂଚନା ଦେଇଥିଲେ ଯେ ଶିକ୍ଷା ଯେହେତୁ ମୁଖ୍ୟତଃ ଏକ ପ୍ରାଦେଶିକ ବ୍ୟାପାର ଏବଂ ବର୍ତ୍ତମାନର ସମସ୍ୟାଟି କେନ୍ଦ୍ର ସରକାରଙ୍କ ଦ୍ୱାରା କୌଣସି ସ୍ଥାପିତ ଶିକ୍ଷା ଅନୁଷ୍ଠାନ ସହିତ ଜଡ଼ିତ ନୁହେଁ, ତେଣୁ କେନ୍ଦ୍ର ସରକାର ଏଥିରେ ହସ୍ତକ୍ଷେପ କରିବା ଅନୁଚିତ ହେବ । ତତ୍‌ସଂଗେ ସେ ପରାମର୍ଶ ମଧ୍ୟ ଦେଇଥିଲେ ଯେ, କନଭେଣ୍ଟ ସ୍କୁଲ, ପବ୍ଲିକ୍ ସ୍କୁଲ ତଥା କେତେ ବୈଷୟିକ ଅନୁଷ୍ଠାନରେ ଯେପରି ଛାତ୍ରମାନଙ୍କର ୟୁନିଫର୍ମ ରହିଥାଏ, ବିହାରର କଲେଜମାନେ ଚାହିଁଲେ ସେପରି ୟୁନିଫର୍ମ ପ୍ରଚଳନ କରିପାରନ୍ତି । କିନ୍ତୁ କେନ୍ଦ୍ର ସରକାର ବିଭାଗୀୟ ମନ୍ତ୍ରୀ କୁଆଡ଼େ

ବିଷୟଟିକୁ ଅଧିକ ଗୁରୁତ୍ୱ ଦେଲେ ଏବଂ ଝିମିଟି ଖେଳରୁ କାଳେ ମହାଭାରତର ସୃଷ୍ଟି ହେବ, ସେଇ ଆଶଙ୍କାରେ ପୂର୍ଣ୍ଣାଙ୍ଗ ମନ୍ତ୍ରୀମଣ୍ଡଳରେ ବିଷୟଟି ଉତ୍ଥାପନ କଲେ । ଦୀର୍ଘ ଏବଂ ପୁଙ୍ଖାନୁପୁଙ୍ଖ ଆଲୋଚନା ପରେ ସ୍ଥିର ହେଲା, ଛାତ୍ରଙ୍କ ପରିଧାନ ସମ୍ବନ୍ଧରେ ଏକ ଜାତୀୟ ନୀତି ନିର୍ଦ୍ଧାରିତ ହେବା ଉଚିତ୍ । ତଦନୁଯାୟୀ ଏ ସମିତି ଗଠନର ଚିଠା ପ୍ରସ୍ତୁତ ହେଲା ଏବଂ ସରକାରଙ୍କ ଦ୍ୱାରା ଯଥାବିଧି ଅନୁମୋଦିତ ହେଲା । କ'ଣ ?

କଥା ଶେଷରେ କ'ଣ ବୋଲି ପଚାରିଦେବା ମିଶ୍ରବାବୁଙ୍କ ଏକ ମୁଦ୍ରାଦେଶ, ତାହା ମୁଁ ଜାଣେ । ପିଲାଙ୍କୁ ପାଠ ବୁଝାଇଲାବେଳେ ଶିକ୍ଷକମାନେ ଯେମିତି, କଅଣ' କହି ଛାତ୍ରମାନଙ୍କଠାରୁ ବିଷୟବସ୍ତୁର ପୁନରାବୃତ୍ତି ଚାହାଁନ୍ତି, ସେଇ ଢ଼ଙ୍ଗରେ ।

ମୁଁ କହିଲି, 'ବୁଝିଲି ଯେ, - ଜାତୀୟ ପରିଧାନ ସମୀକରଣ ସମିତିଟିଏ ଗଠିତ ହେଲା, କିନ୍ତୁ ତମେ ଏଥିରେ ପଶିଲ କେମିତି ?'

ମିଶ୍ରବାବୁ ପୁଣିଥରେ ତାଙ୍କର 'ଏହେ-ହେ-ହେ' ହସର ଲହରୀଟିଏ ଖେଳାଇ ଦେଲେ । ଭିଲିଯାଇଥିବା ସିଗାରେଟ୍‌ରେ ପୁଣି କେତେ ଦିଆସିଲି କାଠି ମାରି ଆଉ ଥରେ ଜଳାଉ ଜଳାଉ ଉତ୍ତର ଦେଲେ, "ସେଇଟା ତ ଆଉ ଗୋଟାଏ ମଜା କଥା ଭାଇନା ! ଆପଣ ତ ଜାଣନ୍ତି, ମୁଁ ଗୋଟିଏ ପ୍ରାଇଭେଟ୍ କଲେଜ ସ୍ଥାପନ କରିଛି । ୟୁଜିସି କଲେଜମାନଙ୍କୁ ଘର ତିଆରିଠାରୁ ଆରମ୍ଭକରି ବୈଜ୍ଞାନିକ ସାଜ ସରଞ୍ଜାମ, ଲାଇବ୍ରେରି ବହି ଏବଂ ଏପରିକି ବ୍ଲାକ୍ ବୋର୍ଡ଼ କିଣିବା ପର୍ଯ୍ୟନ୍ତ ଅନୁଦାନ ଦିଏ ଧରାଧରି କରିପାରିଲେ କରୁଛି । ସେ କଥା ପ୍ରସଙ୍ଗରେ ପ୍ରାଚୀନ କାଳରେ ଭାରତର ଶିକ୍ଷା ପଦ୍ଧତି କଥା ପଚାରିଦେଲେ, ମୁଁ ସେ ସମ୍ବନ୍ଧରେ ବେଦ ବେଦାଙ୍ଗ ତଥା ପୁରାଣମାନଙ୍କରୁ କିଛି କିଛି ଉଦ୍ଧୃତ କରି କହୁଛି, ସହକାରୀ ସଚିବ ସରକାରୀ ଚିଠିଟିଏ ଆଣି ତାଙ୍କ ପାଖରେ ପହଞ୍ଚିଲେ । ଚିଠିରେ ଏ ପରିଧାନ ସମୀକରଣ ସମିତି କଥା ଉଲ୍ଲେଖ କରି ଅନୁରୋଧ ଅଛି ଯେ, ୟୁଜିସି ଏ ସମିତି ପାଇଁ ଦୁଇଟି ନାଁ ସୁପାରିଶ୍ କରୁ ଏବଂ ସେଥିରୁ ଜଣେ ପୂର୍ବାଞ୍ଚଳର ହେଲେ ଭଲ । ୟୁଜିସି ସଚିବ କଣ ଭାବିଲେ କେଜାଣି ହଠାତ୍ ଅନ୍ୟ ଜଣଙ୍କର ନାଁ ସଂଗରେ ମୋ ନାଁଟି ଦେଇଦେଲେ, ଆଉ କହିଲେ, "ମିଶ୍ରଜୀ ତ ଜଣେ ପଣ୍ଡିତ ଲୋକ, କଲେଜଟିଏ ପରିଚାଳନା କରୁଛନ୍ତି, ଅତୀତର ଭାରତୀୟ ଗୁରୁଶିଷ୍ୟ ପରମ୍ପରାଠାରୁ ଆଧୁନିକ ଶିକ୍ଷା ସମ୍ବନ୍ଧୀୟ ରୀତି ନୀତି ପର୍ଯ୍ୟନ୍ତ ସବୁ ଜାଣନ୍ତି ପୂର୍ବାଞ୍ଚଳର ଲୋକ, ପୁଣି ଜଣେ ଇଂଜିନିୟର ହୋଇଥିବା ଯୋଗୁଁ ପ୍ରୟୋଗ ବିଦ୍ୟାରେ ମଧ୍ୟ ଧୂରୀଣ, ତାଙ୍କ ନାଁ ଦେଇଦିଅ ।" ମୁଁ ପ୍ରଥମେ ସମ୍ମତି ଦେବା ପାଇଁ ଦୋଦୋପାଞ୍ଚ ହେଉଥିଲି, କିନ୍ତୁ ସଚିବ ଯେତେବେଳେ କହିଲେ, 'ଏ ସମିତି ତ ଦୁଇ ତିନିବର୍ଷରେ ଯାଇ ତାର ରିପୋର୍ଟ ଦେବ ଆପଣ ସେ ଭିତରେ ଭାରତ ସାରା

ବୁଲିଆସିବେ । ଭାରତର ତୀର୍ଥସ୍ଥାନମାନ ବି ଦେଖିବେ, ମୁଁ ଆପତ୍ତି କଲିନି । ଜାଣିଲି ମୋ ଦାଢ଼ି ଦେଖି ହିଁ ସେ ଏ ତୀର୍ଥ ଭ୍ରମଣ ସମ୍ବନ୍ଧୀୟ ମନ୍ତବ୍ୟ କରୁଛନ୍ତି । ସତକୁ ସତ ତୀର୍ଥ ଭ୍ରମଣ ପାଇଁ ଏ ଗୋଟାଏ ଅପୂର୍ବ ସୁଯୋଗ, ଆଉ ମୁଁ ଏ ଭିତରେ ଭାରତର ଅନେକ ଅଞ୍ଚଳ ବୁଲିଲିଣି ତ ! କହି ମିଶ୍ରବାବୁ ତାଳିମାରି ହସରେ ଦୋହଲିଗଲେ ।

ମିଶ୍ରବାବୁଙ୍କ ପାଇଁ ମଝିରେ ମଝିରେ ଚା' ଦରକାର ହୁଏ ଜାଣି ଇଏ ଆଉ କପେ ଚା' ସାଂଗକୁ କିଛି ଲୁଣିଆ ଆଉ ମିଠା ଗଜା ନେଇ ଆସିଥିଲେ । ଜଳଖିଆ ତିଆରିରେ କିଛି ଡ଼େରିହେବ, ଏ ଗଜାରୁ କିଛି ଖାଇ ନେଇଥାଅ, କହି ଚୌକି ଗୋଟାକରେ ବସୁ ବସୁ ଶ୍ରୀମତୀ ମନ୍ତବ୍ୟ ଦେଲେ 'ସାରା ଦେଶ ପାଇଁ ତ ଗୋଟାଏ ଭାଷା ସ୍ୱୀକୃତ ହୋଇପାରୁନି, ହିନ୍ଦୀକୁ ରାଷ୍ଟ୍ରଭାଷା ନ କହି ଯୋଗାଯୋଗ ରକ୍ଷାକାରୀ ଭାଷା ବୋଲି କହିବା ସତ୍ତ୍ୱେ ଦକ୍ଷିଣରେ ଏତେ ଆପତ୍ତି !'

ଗଜାରୁ ଖଣ୍ଡେ ପାଟିରେ ଦେଉ ଦେଉ ମିଶ୍ରବାବୁ ଗମ୍ଭୀର ହୋଇଗଲେ । କହିଲେ, 'କିଏ କେବେ କୌଣସି ସମିତିର ରିପୋର୍ଟକୁ ଚାହିଁଥାଏ କି ନାନୀ ? ରିପୋର୍ଟ ଅପେକ୍ଷାରେ' କହି କିଛି ତ ଟାଳଟୁଳ କରିଦେଲେ ହେଲା । କେତେବର୍ଷ ପରେ ସେ ଛାତ୍ରମାନେ ଥିବା ଅଧ୍ୟାପକମାନେ ଏ ଘଟଣାକୁ ମନେରଖିଥିବେ ? ହୁଏତ ସେ ଶିକ୍ଷା ସଚିବ କିମ୍ବା ଶିକ୍ଷାମନ୍ତ୍ରୀ ବି ନଥିବେ । ତେବେ ଯଥା ସମୟରେ ରିପୋର୍ଟଟିଏ ଦେଇଦେବା କଥା । ସେ ଯେଉଁ କହନ୍ତିନି – 'ସାପ ବି ମରିବନି କି ବାଡ଼ି ବି ଭାଙ୍ଗିବନି ।'

ମୁଁ ସଂଶୋଧନ କରିଦେଇ କହିଲି – 'ସାପ ମରିବ, ବାଡ଼ି ଭାଙ୍ଗିବନି ।'

ମିଶ୍ରବାବୁ କିନ୍ତୁ ଅସମ୍ମତିରେ ମୁଣ୍ଡ ଟୁଙ୍ଗାରୀ ଟିପ୍ପଣୀ ଦେଲେ, "ଆପଣ ତ କେଉଁ ଯୁଗରେ ଅଛନ୍ତି ଭାଇନା । ସେ ସାପ ମରିବା ଯୁଗ କ'ଣ ଆଉ ଅଛି ? ଏବେ ସାପ ମରିବା ମୁଖ୍ୟ ନୁହେଁ – ମୁଖ୍ୟକଥା ହେଲା ବାଡ଼ି କେମିତି ନ ଭାଙ୍ଗିବ । ବାଡ଼ି ଭାଙ୍ଗିଲେ ଯେ ସବୁ ଗଲା । ନହେଲେ ଚାରିଆଡ଼ିକି ଏମିତି ସାପ ବାହାରି ଯାଆନ୍ତେ କେମିତି ? ସାପ ମରିବ କ'ଣ, ଠେଙ୍ଗା ତ ଆଜି ଓଲଟା ସାପମାନଙ୍କୁ ଆଶ୍ରୟ ଦେଉଛି । ଠେଙ୍ଗା ବିରୁଦ୍ଧରେ କେହି କିଛି କହିଲେ ତାଙ୍କୁ ଦଂଶନ କରିବାକୁ ଏଇ ସାପମାନଙ୍କୁ ଇଙ୍ଗିତ ଦେଇଦେଉଛି । ଲୋକଦେଖାଣିଆ କେବଳ ଆବାଜ ସାପ ସାପ, ମାର ମାର' ସମସ୍ତଙ୍କ ଦୃଷ୍ଟି ଯେମିତି ସେ ମାୟା ସାପ ଆଡ଼ିକି ଧାଇଁଯାଏ । ଖାଲି ଫମ୍ପା ଆବାଜ, ଆନ୍ତରିକତାବିହୀନ ପରିଣାମଶୂନ୍ୟ । ସାପ ଯେ ଏଣେ ଡ଼ାକରା ଦେଉଥିବା ଲୋକର ଗାଦି ତଳେ ପୂର୍ଣ୍ଣ ଆଶ୍ରିତ ଏବଂ ନିରାପଦ ! ଦଣ୍ଡ ଯଦି ଆଜି ଶାସନକର୍ତ୍ତା, ତେବେ ସେଇ ଶାସନର ଡ଼ୋରି ତ ଏଇ ସାପମାନେ ।"

'ତମେ ବି ସେଇ ଶାସନର ଡ଼ୋରିଟିଏ ଥିଲ' - ଶ୍ରୀମତୀଙ୍କ ଟିପ୍ପଣୀରେ ମିଶ୍ରବାବୁ ପୁଣିଥରେ ହସିଲେ । 'ଆମେ ସବୁ ବାହୁଣିଆ ସାପ ନାନୀ ! ଭାଇନା ବେଶୀ ହେଲେ ଢ଼ମଣାଟିଏ' କହି - ହସରେ ଫାଟି ପଡ଼ିଲେ ।

ଆଉ କିଛି ଗଳା ଚୋବାଉ ଚୋବାଉ ମିଶ୍ରବାବୁ ପୁଣିଥରେ ଗମ୍ଭୀର ହୋଇଯାଇ ଗପିଚାଲିଲେ - 'ଆପଣ କହୁଛନ୍ତି - ସାପ ମରିବ, ଠେଙ୍ଗା ଭାଙ୍ଗିବନି । ସାପ ମରିବନି ଭାଇନା ସାପ ମରିବନି । ଦେଖୁନାହାନ୍ତି ଏଇ ଖଳ ସର୍ପମାନଙ୍କ ବିଷ ? କେମିତି ଧିରେ ଧିରେ ସାରା ସମାଜରେ ଘୋଟିଯାଉଛି । ଆପଣ ଶିକ୍ଷାନୀତିରେ ପରିବର୍ତ୍ତନ ପରେ ପରିବର୍ତ୍ତନ କରୁଥାଆନ୍ତୁ - ୧୧+୨+୨ କୁ ୧୧+୧+୩ କରନ୍ତୁ, ୧୧+୧+୧+୨ କରନ୍ତୁ ଅଥବା ୧୦+୨+୩ କରନ୍ତୁ, ଛେଳି ଲାଙ୍ଗୁଳ ଚାଖଣ୍ଡେ ପରି ସେ ସବୁ ମିଶି ୧୫ ହିଁ ହେବ । ଚରିତ୍ର ବଦଳାଇ ନପାରିଲେ ଏ ପରିବର୍ତ୍ତନର କିଛି ମୂଲ୍ୟ ଅଛି ?'

ସେ କହିଚାଲିଲେ, 'ଏଇ ଯେଉଁ ଛାତ୍ରଙ୍କ ପରିଧାନ ସମସ୍ୟା, ଏଇଟା ଗୋଟାଏ ରୋଗର ଲକ୍ଷଣ । ମାନସିକ ଦୁରାବସ୍ଥାର ପରିପ୍ରକାଶ ନିଜେ ରୋଗ ନୁହେଁ । ରୋଗ ଯେ ଅତି ଗଭୀରରେ ମନ ଭିତରେ । ସବୁ ସମସ୍ୟାର ତଳେ ଦେଖିବେ ଚାରିତ୍ରିକ ମାନଦଣ୍ଡର ଅଧଃପତନ । ପିଲାଙ୍କୁ ଏଥିପାଇଁ ଦୋଷଦେଇ ଲାଭ କ'ଣ ? ସେମାନେ ତାଙ୍କ ବାପା-ମା ଗୁରୁଜନମାନଙ୍କର, ସମାଜର ଏବଂ ତାଙ୍କ ଶିକ୍ଷକମାନଙ୍କର ଯେଉଁସବୁ ଆଚରଣ ଦେଖିବେ, ତାହାହିଁ ଶିଖିବେ ।'

ଗାନ୍ଧିଜୀ ତାଙ୍କ ମୌଳିକ ଶିକ୍ଷା ପଦ୍ଧତିରେ ଏହି କଥାଟିକୁ ହିଁ ବେଶ୍ ଜୋର୍ ଦେଇଥିଲେ । ଗାନ୍ଧିଜୀ ଏବଂ ଜାକିର ହୁସେନ୍‌ଙ୍କ ଶିକ୍ଷା ପଦ୍ଧତିରେ ଶିକ୍ଷକ ଥିଲା କେନ୍ଦ୍ରବିନ୍ଦୁ, ତକଲି ଥିଲା ଜାତୀୟ ଜୀବନର ପ୍ରତୀକ । ତମେ ତ ଜାଣ ଭାଇନା, ଜଣେ ଜିଜ୍ଞାସୁ କେମିତି ଗାନ୍ଧିଜୀଙ୍କୁ ପଚାରିଥିଲେ, 'ଏ ବିଜ୍ଞାନ ଏବଂ ଶିଳ୍ପଯୁଗରେ ସ୍କୁଲମାନଙ୍କରେ ଲୁହାକଟା ଲେଥ୍‌କୁ ସ୍ଥାନ ନଦେଇ ଆପଣ ଏ ସୂତାକଟା ତକଲିକୁ ମୁଖ୍ୟସ୍ଥାନ ଦେବା ଫଳରେ ଭାରତକୁ ପୁଣି ଶହ ଶହ ବର୍ଷ ପଛକୁ ଘୁଞ୍ଚାଇ ଦେଉନାହାନ୍ତି କି ?' ଆଉ ଗାନ୍ଧିଜୀ ଉତ୍ତର ଦେଇଥିଲେ - 'ଭାରତର କେତେଟା ସ୍କୁଲ ପିଲାଙ୍କ ପାଇଁ ଲେଥ୍ ଯୋଗାଇପାରିବେ ? ତକଲିର ଦାମ୍ ମାତ୍ର ୧ ପଇସା, ସେଇ ତକଲି ହିଁ ସବୁ ସ୍କୁଲର ସବୁ ଛାତ୍ର କିଣିପାରିବେ । ଭଲ ଶିକ୍ଷକ ସେଇ ତକଲିରେ ସୂତା କଟାଉ କଟାଉ ଛାତ୍ରଙ୍କୁ ଇତିହାସ, ଭୂଗୋଳ, ଜ୍ଞାନ ବିଜ୍ଞାନ ସହିତ ଦର୍ଶନ, ନୈତିକତା ତଥା ଜାତୀୟବୋଧ ଶିକ୍ଷା ଦେଇପାରିବ । ଲେଥ୍ ରଖିବାକୁ ତ ମନା ନାହିଁ ।'

'ଏବେ ସେଇ ଭାରତରେ କୁହାଯାଉଛି - ସ୍କୁଲମାନଙ୍କରେ କମ୍ପ୍ୟୁଟର, ଟେଲିଭିଜନ ରଖାଯିବ । ବଡ଼ ବଡ଼ ସହରମାନଙ୍କରେ ସବୁ ଖ୍ୟାତନାମା ସ୍କୁଲ ତ ପବ୍ଲିକ୍ ସ୍କୁଲ, ସେଣ୍ଟ୍ରାଲ ସ୍କୁଲ, ନବୋଦୟ ସ୍କୁଲ ଇତ୍ୟାଦି ସବୁ ପାଇବେ, ଖୋଦା ଛପ୍ପର ଫାଡ଼ି ଏ ସ୍କୁଲମାନଙ୍କ ଧନ ଢ଼ାଳି ଦେବେ । ଦେଶର ଶତକଡ଼ା ୯୦ ସ୍କୁଲରେ ବ୍ଲାକ୍‌ବୋର୍ଡ଼ ନଥିବ କିମ୍ବା ଲାଇବ୍ରେରି ବୋଲି କିଛି ନଥିବ । ଧନୀ ଆହୁରି ଧନୀ ଗରିବ ଆହୁରି ଗରିବ ହେଲାପରି ଶିକ୍ଷାନୀତିର ଫଳ ବି ସେଇ ଧରଣର ହେବ । ରାଧାକୃଷ୍ଣନ୍ କମିଶନ ରିପୋର୍ଟ, କୋଠାରୀ କମିଶନ ରିପୋର୍ଟ କ'ଣ ଆଜିର ଶିକ୍ଷାନୀତିର ଦୋଷତ୍ରୁଟି ଦେଖାଇ ନାହାନ୍ତି? ଯେଉଁମାନେ ସେ ସବୁକୁ ସଫଳ ଭାବରେ ପ୍ରୟୋଗ କରିବା କଥା, ସେମାନଙ୍କର ଚରିତ୍ରହୀନତା ତ ଆଜି ସମାଜକୁ ପଙ୍ଗୁ କରିଦେଲାଣି । ଏଇ ଶିକ୍ଷକମାନଙ୍କୁ ଦେଖୁନାହାନ୍ତି...'

ମିଶ୍ରବାବୁଙ୍କ ଗପ ତ ସରିବନି, ଆଉ ସେ ଏମିତି ଗପି ଚାଲିଥିବେ । କଥାକୁ ଭିନ୍ନ ମୋଡ଼ ଦେବାପାଇଁ ଶ୍ରୀମତୀ ଏଥର ପଚାରିଦେଲେ, 'ସେ ସବୁ ହେଲା ଯେ, ମିଶ୍ର, ତମେ କାହିଁକି ଦାଢ଼ି କାଟିଦେଲ କୁହ ତ? ଦାଢ଼ି ସତରେ ତମକୁ ବେଶ୍ ମାନୁଥିଲା ।'

ମିଶ୍ରବାବୁଙ୍କ ମୁହଁରେ ପୁଣିଥରେ ହସ ଦେଖାଦେଲା । ସେଇଟା ତ ଆଉ ଗୋଟାଏ ମଜା କଥା ନାନୀ କହି ସେ ଆରମ୍ଭ କଲେ, ଗୌରୀ ତ ତା' ପୁଅର ବାଳ ତିରୁପତିରେ ପକାଇବ ବୋଲି ମାନସିକ କରିଥିଲା, ମୁଁ ଏ ସରକାରୀ କାମରେ ତିରୁପତି ଆଡ଼ିକି ଗଲାବେଳେ ସେ ବି ସାଂଗରେ ବାହାରିଲା । ନାତିକି ସାଂଗରେ ନେଇ ମୁଁ ବାରିକ ପାଖରେ ଲଣ୍ଡା କରାଇବା ପାଇଁ ମନ୍ଦିର ବେଢ଼ାକୁ ଗଲି । ବେଢ଼ା ଭିତର ଗୋଟାଏ ହଲ୍‌ରେ ତ ବାରିକମାନେ ଧାଡ଼ି ଧାଡ଼ି ବସିଯାଇଥାଆନ୍ତି, ଆଉ କ୍ରମାଗତ ମୁଣ୍ଡନ ଚାଲିଥାଏ । ନାତିର ମୁଣ୍ଡନ ପାଇଁ ପଇସା ବାନ୍ଧି ବାରିକ ପାଖରେ ତାକୁ ବସାଉଛି, ବାରିକ କହିଲା - ଆଉ ପାଞ୍ଚଟଙ୍କା ଦେଲେ ସେ ମୋ ଦାଢ଼ି ବି ସଫା କରିଦେବ । ମୁଁ ଦେଖିଲି ସେ ହଲ୍‌ରେ ବୁଢ଼ାବୁଢ଼ୀ ସାନ ସାନ ପୁଅ ଝିଅ ସାଂଗକୁ ୧୮/୨୦ ବର୍ଷର କେତେ ଝିଅ ମଧ୍ୟ ତାଙ୍କ ମୁଣ୍ଡବାଳ ଖିଅର କରାଇ ଦେଉଛନ୍ତି । ମୁଁ ଭାବିଲି ସତରେ ଏହା ଗୋଟିଏ ଭଲ ସୁଯୋଗ । ତିରୁପତିରେ ଦାଢ଼ି କାଟିବା କେତେକଙ୍କ ଭାଗ୍ୟରେ ମିଳେ! ରାଜି ହୋଇଗଲି । ସେ ବଦ୍‌ମାସ ସେଇଠି ହିଁ ମୋ ଦାଢ଼ିକୁ ୨୫୦ ଟଙ୍କାରେ ବିକିଦେଲା । ପରେ ଶୁଣିଲି ପାକିସ୍ତାନୀ ଏଜେଣ୍ଟମାନେ କୁଆଡ଼େ ଶିଖ୍ ସାଜିବାକୁ ଖାଣ୍ଟି ଦାଢ଼ି ବହୁତ ଦାମରେ କିଣନ୍ତି । ଯିଏ ମୋ ଦାଢ଼ି ନେଲା, ସେ ହୁଏତ ସେମାନଙ୍କ ପାଖରେ ମୋ ଦାଢ଼ିକୁ ହଜାରେ ଟଙ୍କାରେ ବିକିବ - ଲମ୍ବା ଘଞ୍ଚ ଆଉ ଦରପାଚିଲା ଦାଢ଼ି ତ ! ସେମିତି ଦାଢ଼ି କୁଆଡ଼େ ସହଜରେ

ମିଳେନି । ଦେଖିଲେ କେମିତି ଠକି ହୋଇଗଲି ।' ମିଶ୍ରବାବୁ ହସିବାକୁ ଆରମ୍ଭ କରିଛନ୍ତି, ଇଏ ପଚାରିଲେ - 'ଦାକ୍ଷିଣାତ୍ୟର ରହଣି ବେଳେ ସେଠାକାର ଖାଇବା ପିଇବା ତମକୁ କେମିତି ଲାଗିଲା ?'

ମିଶ୍ରବାବୁଙ୍କ ମୁହଁକୁ ଦେଖି ମନେହେଲା ସତେ ଯେମିତି ସେ ଖଟା ଖାଉଛନ୍ତି । କହିଲେ - 'ଇଡ଼୍‌ଲି ଦୋଷା ମନ୍ଦ ନୁହେଁ ନାନୀ, କିନ୍ତୁ ରସମ୍, ସମ୍ବର ଯେଉଁ ରାଗ.... ଭଗବାନ! ତାଳୁ ଜଳିଯାଏ । ଆଉ ଚା' ବଦଳରେ ସେ ଯେଉଁ କଫି !'

'ଜାତୀୟ ଭୋଜନ ସମୀକରଣ ସମିତିର ସଭ୍ୟ ହେଲେ ଆମ ଏ ଗାଁକୁ ଆସିବାକୁ ଭୁଲିବନି' - ଶ୍ରୀମତୀଙ୍କ ଏ ମନ୍ତବ୍ୟରେ ମିଶ୍ରବାବୁ ଫମ୍ପା ତାଳି ମାରି ହସରେ ଫାଟିପଡ଼ିଲେ । କି ଭୟଙ୍କର ଥିଲା ସେ ଆବାଜ! ମୁଁ ଚମକିଉଠିଲି ଏବଂ ଆଶ୍ଚର୍ଯ୍ୟଚକିତ ଆଖିରେ ମିଶ୍ରବାବୁଙ୍କ ଆଡ଼କୁ ଅନାଇଲି ।

'ଏଇ ପାଖରେ କେଉଁଠି ଚଡ଼କ ପଡ଼ିଲା' - ଶ୍ରୀମତୀଙ୍କ କଥନ ସଂଗରେ ଝଡ଼ ବର୍ଷାର ପ୍ରାଦୁର୍ଭାବ ହୋଇସାରିଥିଲା । ମୁଁ ଏବେ ଜାଣିଲି ପୂର୍ବର ସେ ଆବାଜ ତାଳିମାରି ବାର ଆବାଜ ନୁହେଁ - ଚଡ଼କର ଆବାଜ । ଦିଓଟିର କି ଅଦ୍ଭୁତ ସଂଯୋଗ । ମୁଁ ବାହାର ବାରଣ୍ଡାକୁ ଚାଲିଆସି ଆକାଶକୁ ଅନାଇ ଦେଖିଲି - ସାରା ଆକାଶକୁ ମେଘ ଘୋଡ଼ାଇ ଦେଲାଣି । କିଛିକ୍ଷଣ ପରେ ହିଁ ବର୍ଷା ପ୍ରବଳରୁ ପ୍ରବଳତର ହୋଇ କଚାଡ଼ି ଦେଲା । ମୂଷଳ ଧାରାର ସେ ବର୍ଷା । ମୁଁ ଖୁସିରେ ପାଟିକଲି - 'ମିଶ୍ର, ତମେ ଆମ ଗାଁକୁ ବର୍ଷା ଆଣିଲ-ଖରଡ଼ି ଧାନ ଏଥର ନିଶ୍ଚିତ ଭାବରେ ଗଜା ହୋଇଯିବ । ଶ୍ରୀମତୀଙ୍କୁ ଅନୁରୋଧ କଲି - ମିଶ୍ରଙ୍କ ପାଇଁ କିଛି ବଢ଼ିଆ ଜଳଖିଆଟାଏ ହେଉ ।

ମିଶ୍ରବାବୁ ବି ଯୋଡ଼ିଦେଲେ - 'ଏମିତି ପାଗରେ ସିଙ୍ଗଡ଼ା ଆଉ ବରା ପିଆଜି ଭାରି ବଢ଼ିଆ ଜମିବ ନାନୀ!'

# ଡ଼ିମ୍ପି ପ୍ରତି

ହଇରେ ଏ ଡ଼ିମ୍ପି ! କି ପାଲା ଲଗେଇଛୁ ଶୁଣେ ? ଏଡ଼େ ପାହାନ୍ତିଆଟାରେ ଦାଣ୍ଡ ଦୁଆର ଆଗରେ ଏମିତି ରାମ୍ଭୁଡ଼ି ଚାଲିଛୁ କାହିଁକି ? ରାତିରେ ତୋତେ ନିଦ ନାହିଁ ବୋଲି ତୁ କ'ଣ କାହାକୁ ଆଉ ଶୁଆଇ ଦେବୁନି ? ଏଇ ଖରାଦିନ ରାତିର ଯେଉଁ ତାତିଲା ପବନ ! ସହଜରେ ତ ନିଦ ହୁଏନି, ରାତି ସାରା ଖଟରେ ଛଟପଟ ଡ଼ହଳ ବିକଳ ହେବା କଥା, ତହିଁରେ ପୁଣି ତ ରାତିସାରା କଅଣ ସବୁ ଦେଖି ଭୁକୁଥାଉ ଯେ, ସେଥିରେ କାହାର ବା ନିଦ ହେବ ? କେବଳ ପାହାନ୍ତିଆ ବେଳେ ଟିକିଏ ଥଣ୍ଡା ପଡ଼ିଯାଏ ଯେ ଚାରିଆଡୁ ନିଦ ଚହଟି ଆସି ଆଖିରେ ଜମାଟ ବାନ୍ଧିଯାଏ । ସେଇ ପାହାନ୍ତିଆଟାରେ ଏମିତି ରାମ୍ଭୁଡ଼ା ରାମ୍ଭୁଡ଼ି ଆବାଜ କରି ନିଦ ଭାଙ୍ଗୁଛୁ କାହିଁକି କହିଲୁ ? ବାହାରକୁ ଯିବୁ ?

ଚଢ଼େଇଗୁଡ଼ିକ ନିଦରୁ ଉଠି ଗଛମାନଙ୍କରେ ତାଙ୍କ ଚିଁ ଚାଁ ଭଜନ ଆରମ୍ଭ କରିଦେଲେଣି ସିନା ସିନ୍ଦୁରା ତ ଏଯାଏ ଭଲକରି ଫାଟିନି । ବାହାରର ଶୀତଳ ପବନ ଏତିକିବେଳେ ସତରେ ଭାରି ମିଠା । କିନ୍ତୁ କିଏ ତୋତେ ଏବେ ସଂଗରେ ବୁଲାଇନେବ ? ଆଜି ପରା ରବିବାର ! ସ୍କୁଲ କଲେଜ ଅଫିସ୍ ସବୁ ବନ୍ଦ । ପୁଟୁନ ପଲ୍ଲବ ନୀଲୁକୁ ତ ଜାଣିଛୁ । କେମିତି ହପ୍ତାଯାକ ଏଇ ରବିବାରକୁ ଟାକି ବସିଥାନ୍ତି । ସେଇ ରବିବାର ଦିନ କଣ ସେମାନେ ସହଳ ଉଠିବେ ? ଆଉ ରହିଲେ ବଡ଼ ଦି'ଜଣ । ସେମାନେ ବି କଣ ଏମିତି ଛୁଟିଦିନଟାରେ ଘଣ୍ଟାଏ ଦି'ଘଣ୍ଟା ଅଧିକା ଶୋଇବେନି ? ହଇରେ - ତୁ ଏତେ ବଡ଼ ହେଲୁ, ଏତିକି ଟିକେ ବି ବୁଝିପାରିଲୁନି ? ଯୋଉ କୁକୁରକୁ ସେଇ କୁକୁର ହୋଇ ରହିଗଲୁ ଏଁ । ।

ତୋ ଅତରଛିଆ ରାମ୍ଭୁଡ଼ା ଆଉ ବିକଳିଆ କୁ'କୁଁରୁ ମନେହେଉଛି ତୋ ପେଟ ଆଉ ତର ସହିବନି । ହଉ ରହ - ମୁଁ କବାଟ ଖୋଲୁଛି । ଦି'ବୁଢ଼ା ବାହାରକୁ ଯିବା । ମୋ ବାସ୍ତରି ବର୍ଷ ବୟସକୁ ତୋ' ଦଶ ବରଷ - କିଏ ଆଗ ମାଟି ଦରାଣ୍ଡିବ କେଜାଣି ?

ଆରେ ଟିକେ ଥୟଧର - କବାଟ ଉପରେ ଛିଟିକିଣି ସିନା ଖୋଲିଛି, ତଳ ଛିଟିକିଣି ବି ଯେ ଖୋଲିବାକୁ ହେବ । ଆଉ ଦେଖ୍ - ମୁଁ ମୋ ବାଡ଼ିଟା ବି

ନେଇଆସିବି । ତୁ ସିନା ସେ ସିଡ଼ିକୁ ଏକାଥରକେ ଦି' ଦି' ପାହାଚ କରି ଡ଼େଇଁଯିବୁ ବାଡ଼ିଟିଏ ନଧରିଲେ ମୁଁ କ'ଣ ସହଜରେ ସେ ସିଡ଼ି ଓହ୍ଲାଇ ପାରିବି ?

ଆଉ ଶୁଣ – କହିଦେଉଛି, ତୁ ସେ ସିଡ଼ି ଡ଼େଇଁ ମୋତେ ଅପେକ୍ଷା କରିଥିବୁ । ଏ ଆଡ଼ ସେ ଆଡ଼ ହେବୁନି । ଡ଼ାହାଣ ପଟ ଲନ୍‌କୁ ଯିବୁନି । ଜାଣିଛୁ ନା ସେ ଡ଼ାହାଣ ପଟ ଘରେ କିଏ ରହନ୍ତି ? ଘର ମାଲିକାଣୀ ଫରେନ୍ ସର୍ଭିସ୍‌ର ଜଣେ ବଡ଼ ହାକିମ । ମାଲିକ ନିଜେ ବି ଜଣେ ସିନିଅର ଆଇଏଏସ୍ । ତୁ ତାଙ୍କ ଘର ଲନ୍‌କୁ ଯାଇ ସେ କାଠଚମ୍ପା ଗଛରେ ଗୋଡ଼ ଟେକି ପିଚ୍‌କାରି ମାରୁ କାହିଁକି କହିଲୁ ? ଚିହ୍ନିଛୁ ନା ତାଙ୍କ ପୁଅକୁ ? ସେଇ ଟୋକା ମ – ଯୁଗାଣ୍ଡାର ଗୋଟାଏ ଛୋଟ ଇଦି ଅମିନ୍ ଭଳି ଦିଶେ । ଆଠ କି ନଅ ଶ୍ରେଣୀରେ ପଢ଼େ ସିନା, ଗୋଟାଏ ମସ୍ତବଡ଼ ଆଲ୍‌ସେଶିଏନ୍ ରଖିଛି । ତୁ ତା' କାଠଚମ୍ପା ଗଛରେ ଏମିତି ମନ୍ତ୍ରପାଣି ଛିଞ୍ଚୁଛୁ, ଦେଖିଲେ ଯଦି ଆଲ୍‌ସେଶିଏନ୍‌ର ଶିକୁଳି ଖୋଲିଦିଏ, ସେ ଆଲ୍‌ସେଶିଏନ୍ ତୋତେ ରଖିବ ନା ? ତୋ ଛୋଟ ଟିବେଟେନ୍ ବେକକୁ ତା' ପାଟିରେ ଧରି ଯଦି ଦି'ଥର ଝୁଣିଦେବ, ତୁ 'ରାମ ନାମ ସତ୍ୟ ହେ – ଡ଼ିମ୍ପି ନାମ ମିଥ୍ୟା ହେ' କହିବାକୁ ବି ଟିକେ ତର ପାଇବୁନି – ଜାଣିଲୁ ?

ଆଉ ସେ ବାଁପଟ କଥା ବି ଶୁଣ୍ । ସେଇଠି ବି ଲନ୍ କଡ଼ରେ ଲେମ୍ବୁଗଛଟିଏ ଅଛି ଯେ ସୁଯୋଗ ମିଳିଲେ ହିଁ ତୁ ଧାଇଁଯାଇ ତା' ଉପରେ ବି ତୋ ଅସରନ୍ତି ଜଳଭଣ୍ଡାରରୁ ପାଣି ଛିଞ୍ଚିବସୁ । ଜାଣିଛୁ ନା, ସେଇଟା କାହାଘର ? ଜଣେ ସର୍ଦ୍ଦାରଜୀ ସେଠି ରହନ୍ତି । ଭାରତୀୟ ବିମାନବାହିନୀର ଉଇଙ୍ଗ୍ କମାଣ୍ଡର । ତାଙ୍କ ଘର ଭିତରକୁ କେବେ ଯାଇଛୁ ? ବସିବା ଘର କାନ୍ଥରେ ସେ ଝୁଲାଇ ରଖିଛନ୍ତି କେଉଁଠି ବର୍ଚ୍ଛା ଆଉ ଢ଼ାଲ ତଲବାର ତ କେଉଁଠି ଶହେ ବର୍ଷ ତଳର ପିତଳ ମୁଦିବସା ଟୋଟାଦାର ବନ୍ଧୁକ । ଆଉ କେଉଁଠି ଝୁଲାଇଛନ୍ତି ଷ୍ଟେନ୍‌ଗନ୍ ତ କେଉଁଠି ମେସିନ୍‌ଗନ୍ । ଜାଣିଛୁ ନା, ଏଇ ବିମାନବାହିନୀର ଅଫିସରମାନେ ଦେଖିବାକୁ ସିନା ଶାନ୍ତଶିଷ୍ଟ, ରାଗିଗଲେ ଶତ୍ରୁର କମାଣ ମୁହଁକୁ ବି ଧସାଇ ପଶନ୍ତି । ତୁ ତାଙ୍କ ଲେମ୍ବୁଗଛ ଉପରକୁ ମଇଳା ପାଣିଛିଟା ମାରୁଛୁ ଦେଖିଲେ, ସେ ଭଦ୍ରଲୋକ ଯଦି କେବେ ରାଗିଯିବେ, ଧାଇଁଯାଇ ବସିବା ଘରୁ ଉଠାଇ ଆଣିବେ ଗୋଟାଏ ଷ୍ଟେନ୍‌ଗନ୍ କି ମେସିନ୍‌ଗନ୍, ଆଉ ଛାଡ଼ିଦେବେ ଦି' ଚାରିଟା ଢ଼ୋ ଢ଼ୋ ଆବାଜ । ପ୍ରଥମ ଆବାଜରେ, ତୁ କଥା କଣ ଜାଣିବା ପାଇଁ ତାଙ୍କ ଆଡ଼କୁ ଅନାଇଲା ବେଳେ, ଆସିବ ଦ୍ୱିତୀୟ ଆବାଜ୍ । ବିକଳିଆ ମୁହଁର ମେଲାପାଟି ନେଇ 'ତ୍ରାହି ମାଂ' ଭଙ୍ଗୀରେ ତୁ ମୋତେ ଅନେଇଲା ବେଳକୁ ଆସିବ ତୃତୀୟ । ଆପଣାଛାଏଁ ତୋ ଗୋଡ଼ ଚାରିଟା ଆକାଶକୁ ଟେକି ହୋଇଯିବ,

ଆଉ ଅପଲକ ଆଖିରେ ଆକାଶକୁ ଅନାଇ ତୁ ହୁଏତ ତୋର ଶେଷ ଡ଼ାକ ଡ଼ାକୁଥିବୁ ସତ୍ ଶ୍ରୀ ଅକାଲ - ଯୋ ବୋଲେ ସେ ନିହାଲ।'

ଆରେ ଏ ଡ଼ିମ୍ପି, ମୁଁ ତ ତଳକୁ ଆସିଗଲିଣି, ତୁ ଏବେ କୁଆଡ଼େ ଗଲୁ? ଧାଇଁବୁଲୁଛୁ ନା? ଏଣିକି ଆ'। ଏଇ ପଣ୍ଡାରା ରୋଡ୍ ଚଲାବାଟ ଛାଡ଼ି ଏଣେ ତେଣେ ଧାଇଁଛୁ ତ ଦେଖିବୁ। କଣ ସବୁ ଶୁଙ୍ଘିବୁଲୁଛୁ କହିଲୁ? ସେ ମଇଳା ଗଦା ଗୁଡ଼ା ନଶୁଙ୍ଘିଲେ କଣ ତୋ ପୂର୍ବ ପୁରୁଷଙ୍କ ଦେହରେ କଳଙ୍କ ଲାଗିଯିବ? ସେ ଗଦା ଭିତରେ କେଉଁଠି ହାଡ଼ ଫାଡ଼ ଖଣ୍ଡେ ଲୁଚିରହିଛି ଖୋଜୁଛୁ ନିଶ୍ଚେ? - ନା ବେଙ୍ଗ, ମୂଷା, ଏଣ୍ଡୁଅ, ଝିଟିପିଟିର ସନ୍ଧାନ ଲୋଡୁଛୁ? ତୋର ଏ କାରବାର ଦେଖିଲେ ଲୋକେ କଣ କହିବେ କହିଲୁ? ଧୋବାତୁଠରୁ ଗାଁ ପରିମଳ ଠଉରାଇଲା ପରି କହିବେ - ଜାତିଆ କୁକୁର ପରି ଦିଶୁଛି ସିନା ବୁଲା କୁକୁରଟାଏ। ତୋ ପାଇଁ ମୁଁ ବି ଲୋକହସା ହେବି। ତୋତେ ଦେଖିସାରି ସେମାନେ ମୋତେ ଅନାଇବେ ଟିପ୍ପଣୀ କାଟିବେ - କୋଉଠିକାର ଗାଉଁଲି ବୁଢ଼ାଟିଏ ବୁଲା କୁକୁରଟାଏ ଧରି ସହରି ଠାଣି କରୁଛି। କେଡ଼େ ଲଜ୍ଜାର କଥା ନା?

ଆରେ ହେ - ମୋ ଆଡ଼ିକି ଏମିତି କଣ ଅନାଇଛୁ ବା? ମୁଁ କଣ ନିଜଆଡୁ ତୋ ଜାତି କୂଳ କଥା ଉଠାଇଛି? ତୋତେ ବାରବୁଲା ବୋଲି କହୁଛି? ମୋ ଆଖିରେ ତୁ ଜାତିଆ ହେଲେ କେତେ ଆଉ ବୁଲାକୁକୁର ହେଲେ କେତେ! ଏ ପୂର୍ବ ପୁରୁଷଙ୍କୁ ରାସ୍ତାଘାଟକୁ ଟାଣିଆଣି ଲାଭ କ'ଣ ଯେ'? ମୁଁ କାହିଁକି ତୋର ଗୁଣ ବାଛିବି? ମୋ ନିଜ କଥା ଦେଖୁନୁ! ଆମେ କୁଆଡ଼େ ଭରଦ୍ୱାଜ ଗୋତ୍ରୀ। ସ୍ୱୟଂ ଦ୍ରୋଣ ଗୁରୁ ଥିଲେ ଆମ ବଂଶରେ। କେତେ କାଳର ବୁଢ଼ା ଥିଲେ ସେ ଦ୍ରୋଣଗୁରୁ - ହାତରେ ଧନୁ ଥଲେ ମହାବୀର ଅର୍ଜୁନ ବି ଯୁଦ୍ଧରେ ଶଙ୍କିଯିବେ। ଏଣେ ମୋତେ ଦେଖ୍ ବାସ୍ତରି ବର୍ଷରେ ବାଡ଼ିଟିଏ ନ ଧରିଲେ ଭଲକରି ପାଦେ ଚାଲିବି ପାରୁନି। ପୁଣି ଆମ ବଂଶରେ ଥିଲେ ଅଶ୍ୱତ୍ଥାମା। ଅଧ ରାତିରେ ଶୋଇଥିବା ବାଳୁତ ପିଲାଙ୍କ ମୁଣ୍ଡ କାଟି ଆଣିଲେ। ସେଥିରୁ ମୁଁ ଜଣେ ଭରଦ୍ୱାଜ ଗୋତ୍ରୀ ଜାତିଆ ମଣିଷ ବୋଲି ଗର୍ବ କରିବି.... ନା ତୁ ଜାତିଆ କି ନୋହୁ, ସେ କଥା ବଖାଣି ବସିବି?

ମୁଁ ସିନା କହିବିନି - ଏ ଦିଲ୍ଲୀବାଲାଙ୍କ ମୁହଁ ରୋକିବି କେମିତି କହିଲୁ? ଏମାନଙ୍କର ଦୟା ନା ମାୟା। ଏଇଠି ତ କିଏ କାହା ପୁଅ, କିଏ କାହା ଜୋଇଁରେ। ସବୁ କଥାବାର୍ତ୍ତାରେ ଧନ ଦଉଲତ, ଜାତି ଗୋତ୍ର ଆଉ କେଉଁ କ୍ଷମତା ସହ କାହାର କେମିତି ସମ୍ବନ୍ଧ, ନ ଜାଣିଲେ ତ ଏମାନେ ମୁହଁ ଟେକି ବି ଅନାଇବେନି - ତୋ' ଢ଼ଙ୍ଗରଙ୍ଗ ଦେଖିଲେ ନାକ ଟେକିବେନି? ଏଇଠି ପିନ୍ଧିବା, ଚାଲିବା, ଖାଇବା ଠାରୁ ଆରମ୍ଭ କରି କେଉଁ ଶବ୍ଦରେ କେମିତି ଠେସ ଦେଇ କଥା ହେବା ପର୍ଯ୍ୟନ୍ତ ସବୁଥିରେ

ଧରାବନ୍ଧା ଆଦବ କାଇଦା । ଚାଲିଚଳଣର ଅବାଧ ସ୍ୱାଧୀନତା କାହିଁ ଯେ, ତୋର ଏ ବାରବୁଲା ଢ଼ଙ୍ଗରଙ୍ଗକୁ ସହନ କରିବେ ? କଥା କଥାରେ ସାମ୍ୟବାଦୀ ଢ଼ାଞ୍ଚାର ସମାଜ ପ୍ରବର୍ତ୍ତନର ବଡ଼ ବଡ଼ କଥା କହୁଥିବେ ଏମାନେ, କଳାବେଳକୁ କିନ୍ତୁ ସତେ ଯେମିତି ପ୍ରତ୍ୟେକ ଜଣେ ଜଣେ ନବାବ - ମଧ୍ୟପ୍ରାଚ୍ୟର କେଉଁ ଆରବ ରାଜପୁତ୍ର !

ସେମାନଙ୍କୁ ଅବା କେମିତି ଦୋଷ ଦେବୁରେ ଡ଼ିମ୍ପି ଅବସ୍ଥାରେ ପଡ଼ି ସମସ୍ତେ ହୁଏତ ସେମିତି ହୋଇଯାଇଛନ୍ତି - ସ୍ୱାର୍ଥପର ଅହଂସର୍ବସ୍ୱ । ସମୟ ଏବଂ ପରିସ୍ଥିତିର ଗୋଲାମ ତରେ ଏଇ ମଣିଷ ! ହେଇ ଦେଖୁଛୁନା - ସେ ଦରବୁଢ଼ା ଭଦ୍ରଲୋକ ଆଉ ଦରବୁଢ଼ୀ ଭଦ୍ରମହିଳାଙ୍କୁ । କେମିତି ଲସର ପସର ହୋଇ ଏ ଆଡ଼ିକି ଛୁଟି ଆସୁଛନ୍ତି । ପ୍ରାତଃଭ୍ରମଣ । ଏମିତି ଭୋର୍ ବେଳେ ବି ଭଦ୍ରମହିଳାଙ୍କ ସାଜସଜ୍ଜାକୁ ଦେଖ୍ - ମୁହଁର ଗୋଲାପୀ ପଲସ୍ତରା - ଭୂରୁର ଢ଼ଙ୍ଗ, ଓଠର ରଙ୍ଗକୁ ଅନା ସତେ ଯେମିତି ଜଣେ ଷୋଡ଼ଶୀ । ଆଉ ଦେଖ୍ - ତାଙ୍କ ହାତରେ ସେ ଚେନ୍‌ବନ୍ଧା କୁକୁରକୁ, କେମିତି ସାବୁନ ଫେଣ ପରି ଧଳା ତକ୍ ତକ୍ କରୁଛି ଜାତିଆ ପୋମେରିଏନ୍ । ବୁଢ଼ା ବୁଢ଼ୀଙ୍କ ପଛରେ ତୋ ଜାତି ଭାଇ ଗୋଡ଼ାଇବା ପରି ଅଣ୍ଟାରେ କଳାପଟି ଭିଡ଼ା ଯେଉଁ ଯୁଆନ୍ ଦି'ଜଣ ଆସ୍ତେ ଆସ୍ତେ ଧାଇଁଛନ୍ତି, ସେ ଦୁହେଁ ଏମାନଙ୍କ ଅଙ୍ଗରକ୍ଷୀ ନିଶ୍ଚେ ।

ଜାଣିଛୁ ସେ ଭଦ୍ରଲୋକଟି କିଏ ? ଗଲ୍‌ଫ ଲି'ଙ୍କର ସେ ଯେଉଁ ବିରାଟ କୋଠା, ତାରି ମାଲିକ ଏଇ ମିଷ୍ଟର ମାଲହୋତ୍ରା । କୋଠାକୁ ଦେଖିଛୁନା' ? କି ଲନ୍ କି ବଗିଚା କେତେ ଯେ ମଟରଗାଡ଼ି ! ଆଉ ତାଙ୍କ କୁକୁରମାନଙ୍କୁ ଦେଖିଛୁ ? ଜାତି ଜାତିକା କୁକୁର - ସେଣ୍ଟ ବେର୍ଣ୍ଣାର୍ଡ଼, ଲାବ୍ରାଡ଼ାର୍ ଠାରୁ ଆରମ୍ଭ କରି ପୋମେରିଆନ୍ ପେକିନିଜ୍ ଯାଏ । କିଏ ବାଘ ପରି ତ କିଏ ବିଲେଇ ପରି । ଖାଲି ଜାତିଆ କୁକୁର ସବୁ ପିଓର ପେଡ଼ିଗ୍ରୀ କୁଆଡ଼େ । ସଫା ଯେ ଦେହରେ ମାଛି ବସିବନି । କେମିତି ତୋର ଏ ବାରବୁଲା ଢ଼ଙ୍ଗ ଦେଖିଲେ ନାକ ଟେକିବେନି କହିଲୁ ?

ଜାଣିଛୁ ନା' ଏ ଭଦ୍ରଲୋକଙ୍କ ଇତିବୃତ୍ତି ? ନିଜ ଜାତି ଗୋତ୍ରର କିଛି ଠିକଣା ନାହିଁ । ପରର ଜାତିଗୋତ୍ରକୁ ଖୁଣିବେନି ? ସେ ଯେଉଁ କହନ୍ତି ନୂଆ ମୁସଲମାନ... !

ଶୁଣ୍ ତେବେ ତାଙ୍କ କଥା....

କାହିଁ କେଉଁ ଚାଳିଶ ବର୍ଷ ତଳର କଥାରେ ଡିମ୍ପି । ଭାରତରେ ଇଂରେଜ ଶାସନର ଅବସାନକାଳୀନ ଏ ଘଟଣା । ଗାନ୍ଧିଜୀଙ୍କ ଅହିଂସା ସଂଗ୍ରାମ ସାରା ଦେଶକୁ ବ୍ୟାପିଯାଇ ତାଙ୍କ ଅସହଯୋଗ ଆନ୍ଦୋଳନ ଇଂରେଜ ଶାସନର ମୂଳଦୂଆକୁ ଦୋହଲାଇ ଦେଲାଣି - ଖଳ ଶାସକ ଚକ୍ରାନ୍ତ କରି ଲଗାଇଦେଲା ହିନ୍ଦୁ ମୁସଲମାନ ଭାଇ ଭାଇଙ୍କ ଭିତରେ ଗୃହବିବାଦ କୁରୁକ୍ଷେତ୍ର ଯୁଦ୍ଧର ପୂର୍ବାଭାସ ଆଉ ଧର୍ମ ନାଁରେ

ଏ ଦୁଇଗୋଷ୍ଠୀ ଭିନ୍ନ ଭିନ୍ନ କହି ନିଷ୍ପତ୍ତି ଶୁଣାଇଦେଲା ଯେ, ଭାରତ ଦୁଇଭାଗ ହେବ । ଫାଳେ ଭାରତ ଆଉ ଫାଳେ ପାକିସ୍ଥାନ ।

ଖାନଦାନୀ ରୀତିନୀତି ଏବଂ ଫେସନର କେନ୍ଦ୍ରସ୍ଥଳୀ ମହାନଗରୀ ଲାହୋର ପଡ଼ିଗଲା ପାକିସ୍ଥାନ ସୀମା ଭିତରେ । ସେ ନଗରୀର ପ୍ରାୟ ସବୁ ବଡ଼ ବଡ଼ ଦୋକାନ ବଜାର, ହୋଟେଲ ରେସ୍ତୁରାଁର ମାଲିକ ଥିଲେ ହିନ୍ଦୁ । ତୈମୁର ଲଙ୍ଗ୍‌ର ବଂଶଧର ଲୁଣ୍ଠନକାରୀ ପଠାଣମାନଙ୍କ ନଜର ପଡ଼ିଗଲା ଏ ଦୋକାନ ବଜାର ଉପରେ । ଆରମ୍ଭ ହେଲା ଲୁଟ୍‌ତରାଜ, ଜଳାପୋଡ଼ା ଏବଂ ପରିଶେଷରେ ହାଣକାଟ ।

ପାକିସ୍ଥାନୀ ଅଞ୍ଚଳର ହିନ୍ଦୁ ଆଉ ଭାରତର ମୁସଲମାନଙ୍କ ଭିତରେ ଧନ ସମ୍ପତ୍ତି ଏବଂ ଲୋକ ଅଦଳବଦଳ କରିବାର ଅବାସ୍ତବ ଯୋଜନା କରିଥାଏ ଶାସନ ଦାୟିତ୍ୱ ଛାଡ଼ି ଚାଲିଯାଉଥିବା ଇଂରାଜୀ ଶାସକ । ଧନ ସମ୍ପତ୍ତି ଏବଂ ପ୍ରାଣରକ୍ଷା କରିବାରେ ଶାସକର ସାହାଯ୍ୟ ବିନା ଆପ୍ରାଣ ଚେଷ୍ଟା ବିଫଳ ହେବା ପରେ ଭୀତତ୍ରସ୍ତ ହୋଇ ଭାରତକୁ ପଳାଇ ଆସୁଥାନ୍ତି ଲାହୋରର ହିନ୍ଦୁମାନେ ଏଣେତେଣେ ଲୁଚି ଛପି । ଲାହୋରରୁ ଯେଉଁସବୁ ଟ୍ରେନ୍ ଆସୁଥାଏ, ସେ ଟ୍ରେନ୍‌ମାନଙ୍କରେ ହିନ୍ଦୁ ପଳାତକ ଶରଣାର୍ଥୀଙ୍କ ନାହିଁ ନଥିବା ଭିଡ଼ । ଗୋଟାଏ ଏମିତି ଟ୍ରେନ୍‌ରେ ଆସୁଥାନ୍ତି ମାଲହୋତ୍ରାଙ୍କ ପରିବାର ସ୍ୱାମୀ, ସ୍ତ୍ରୀ, ପୁଅ ବୋହୂ, ନାତିନାତୁଣୀ, ଝିଅ ଜୋଇଁ ଏବଂ କେତେ ବିଶ୍ୱସ୍ତ ଚାକର ଓ ତାଙ୍କ ପରିବାର । ଲାହୋରର ସର୍ବଶ୍ରେଷ୍ଠ ଫେସନ୍ ହାଉସ୍ ଥିଲା ଏ ମାଲହୋତ୍ରା ପରିବାର । ଥିଲା ସେ ଅଞ୍ଚଳ ଭିତରେ ମାଲହୋତ୍ରା ହୋଟେଲ୍ ଚେନ୍ ଏବଂ ଏକ ବଡ଼ ଲୁଗା କାରଖାନା । ଜୁଆଇଁଙ୍କର ଥିଲା ମାଳେ ନାଇଟ୍ କ୍ଲବ୍ । ଅମ୍ବାଲା ପହଞ୍ଚିବା ପୂର୍ବରୁ ଗୋଟାଏ ଛୋଟ ଷ୍ଟେସନରେ ଠିଆ ହୋଇଥିଲା ସେ ଟ୍ରେନ୍ । ସେହିଠାରେ ହିଁ ଟ୍ରେନ୍ ଉପରେ ଅତର୍କିତ ଆକ୍ରମଣ କଲେ ମାରାତ୍ମକ ଅସ୍ତ୍ରଶସ୍ତ୍ରଧାରୀ ଦୁର୍ବୃତ୍ତ ପଠାଣମାନେ । ଟ୍ରେନ୍‌ର ଡ଼ବାମାନଙ୍କରେ ପଶି ବୁଢ଼ାବୁଢ଼ୀ, ପୁଅଝିଅ ସମସ୍ତଙ୍କୁ ନିର୍ମମ ଭାବରେ ହତ୍ୟାକରି ମାଲ ଝାଲ ଲୁଟି ନେଲେ ସେଇ ହତ୍ୟାକାରୀମାନେ ଏବଂ ଅପହରଣ କରିନେଲେ ଅନେକ ଯୁବତୀ ଝିଅଙ୍କୁ । ରକ୍ତସ୍ରୋତରେ ଯେଉଁ କେତେକ ମୁମୂର୍ଷୁ ଜୀବନର ଶେଷ ଆର୍ତ୍ତ ଚିତ୍କାର କରୁଥିଲେ, ସେ ଭିତରେ ଥିଲେ ଏ ହତଭାଗ୍ୟ ମାଲହୋତ୍ରା ପରିବାର । ବୁଢ଼ା ମାଲ୍‌ହୋତ୍ରାଙ୍କୁ ରକ୍ଷା କରିବାକୁ ଯାଇ ଆହତ ହୋଇ ତଳେ ପଡ଼ିଯାଇଥିଲା ତାଙ୍କ ବିଶ୍ୱସ୍ତ ଚାକର ରମେଶ ।

ସେନାବାହିନୀର ଜବାନମାନେ ଖବର ପାଇ ଷ୍ଟେସନରେ ପହଞ୍ଚିଲା ବେଳକୁ ଲୁଣ୍ଠନକାରୀ ଆତତାୟୀମାନେ ସେଠାରେ ଆଉ ନଥିଲେ । ସେନାବାହିନୀର ସହାୟତାରେ ସେଇ ଅଭିଶାପଗ୍ରସ୍ତ ଟ୍ରେନ୍‌ର ଯେଉଁ କେତେଜଣ ଆହତ ଯାତ୍ରୀ ଅମ୍ବାଲାରେ ପହଞ୍ଚିଲେ, ସେ ଭିତରେ ଥିଲା ଏଇ ରମେଶ ।

ଅମ୍ବାଲା ଶରଣାର୍ଥୀ ଶିବିରର ପ୍ରାଥମିକ ଚିକିତ୍ସାକେନ୍ଦ୍ରରେ କିଛି ଦିନ ଚିକିତ୍ସିତ ହେଲା ପରେ ସେ ସମସ୍ତଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା ଦିଲ୍ଲୀ ମହାନଗରୀର ଶରଣାର୍ଥୀ ଶିବିରକୁ । ମହାନଗରୀର ଶରଣାର୍ଥୀ ଶିବିରରେ ଭର୍ତ୍ତି ହେଲା ବେଳେ ନାମ ଯେତେବେଳେ ପଚରାଗଲା, ରମେଶ କହିଥିଲା ଯେ, ତା'ର ନାମ ଆର୍. ମାଲହୋତ୍ରା । କ୍ଷତିପୂରଣ ହେବା ଉଦ୍ଦେଶ୍ୟରେ ଶିବିରରେ ଯେଉଁ ରେଜିଷ୍ଟର ଖୋଲାଯାଇଥିଲା, ତହିଁରେ ସେ ତାଲିକାଭୁକ୍ତ କରିଥିଲା ଯେ, ତା'ର ସମସ୍ତ ପରିବାର ମୃତ ଏବଂ ପରିବାରର ଥିଲା ଲୁଗା କାରଖାନା, ମାଲହୋତ୍ରା ହୋଟେଲ୍ ଚେନ୍, ଫେସନ ହାଉସ୍, ନାଇଟ୍ କ୍ଲବ୍ ଇତ୍ୟାଦି ।

ଯଥା ସମୟରେ ଆର୍ ମାଲ୍‌ହୋତ୍ରାଙ୍କୁ ମିଳିଥିଲା କ୍ଷତି ପରିମାଣର କିୟଦଂଶ ପନ୍ଦର ଲକ୍ଷ ଟଙ୍କା ଏବଂ କର୍ମସଂସ୍ଥାନ ପାଇଁ ମହାନଗରୀ ଅଞ୍ଚଳରେ ଯଥେଷ୍ଟ ପରିମାଣରେ ସରକାରୀ ଜମି ।

ଆରେ ଏ ଡ଼ିମ୍ପି ! ପୁଣିଥରେ ମୋ ଆଡ଼ିକି ଏମିତି ଅନେଇଛୁ କାହିଁକି ? ରମେଶ ଯେ ମାଲ୍‌ହୋତ୍ରା ନୁହେଁ, ସେ କଥା ସରକାର କେମିତି ଜାଣିଲେନି ସେଇୟା ପଚାରୁଛୁ ? ବିଭାଜନ ବେଳେ ଓ ସରକାରୀ ପାଣ୍ଠି ଏବଂ କର୍ମଚାରୀ ସାଂଗକୁ ନଥିପତ୍ର ଚୌକି ଟେବୁଲ ବି ଭାଗବଣ୍ଟା ହୋଇଯାଇଥିଲାରେ ଡ଼ିମ୍ପି ! ପାକିସ୍ଥାନୀ ଅଞ୍ଚଳର ଏମିତି ଟିକିନିଖି ଖବର ଶିବିରର କର୍ମଚାରୀମାନେ ଜାଣିବେ କେମିତି ରହିଲୁ ? ଏଇ ଶରଣାର୍ଥୀମାନଙ୍କ ପଚରା ଉଚରା କରି ତଥ୍ୟ ସଂଗ୍ରହ କରିବା କଥା ଯାହା ।

ରମେଶ ଯେ ମାଲ୍‌ହୋତ୍ରା ନୁହେଁ, ସେ କଥା ପ୍ରାୟ କେହି ଜାଣିନଥିଲେ । ମହାନଗରୀରେ ଅନେକ ଶିବିର ଏବଂ ପ୍ରତ୍ୟେକ ଶିବିରରେ ହଜାର ହଜାର ଶରଣାର୍ଥୀ ନିଜ ନିଜ ଦୁଃଖ ଦୁର୍ଦ୍ଦଶା ନେଇ ବ୍ୟସ୍ତ ଏବଂ ମ୍ରିୟମାଣ - ବୁଢ଼ାବାପା, ମା' ବଞ୍ଚିଯାଇଛନ୍ତି ଓ ପୁଅ ଝିଅ ନାହାନ୍ତି । ଭାଗ ଭାଗ ହୋଇ କିଏ କେଉଁ ବାଟ ଦେଇ ପଳାଇ ଆସିଥିଲେ । ବାପା ମା' ଆଗେ ନିରାପଦରେ ଯାଆନ୍ତୁ ଭାବି ପୁଅମାନେ ସେମାନଙ୍କୁ ପଠାଇଦେଲା ପରେ ତାଙ୍କ ନିଜ ଦଶା କଣ ହେଲା, ସେ କଥା କିଏ ଅବା କହିବ ? ହୁଏତ ପୁଅ ଝିଅ ଆଜି ପହଞ୍ଚିଯିବେ, ସେଇ ଆଶାରେ ବୁଢ଼ାବୁଢ଼ୀ ନାତିନାତୁଣୀଙ୍କ ସହ ଚାହିଁ ବସିଛନ୍ତି - ଶିବିରକୁ ଶିବର ଖୋଜି ବୁଲୁଛନ୍ତି । ପ୍ରତ୍ୟେକ ଶିବିରରେ ଏମିତି ଖୋଜାଖୋଜି । କେଉଁଠି ଅଜଣା ଶବମାନଙ୍କ ମଧ୍ୟରେ ପୁଅର ମୃତଦେହ ତ' ଝିଅ ବୋହୂଙ୍କର କିଛି ସନ୍ଧାନ ନାହିଁ । କିଏ ଧୈର୍ଯ୍ୟ ଧରି ଏମିତି ହଜିଲା ପରିବାରବର୍ଗଙ୍କୁ ଖୋଜିଚାଲିଛି ତ' କିଏ କାନ୍ଦି କାନ୍ଦି ପାଗଳ ହୋଇଗଲଣି । ଏଇ ରମେଶ ସତରେ ମାଲ୍‌ହୋତ୍ରା କି ନୁହେଁ, କିଏ ସେଥିରେ ମୁଣ୍ଡ ଘୁରାଇବ କହିଲୁ ?

ସମ୍ପଦଶାପନ୍ନ ଯେଉଁ ଜଣେ ଦି'ଜଣ ରମେଶକୁ ଚିହ୍ନିଥିଲେ, ସେମାନେ ରମେଶ ଏବେ ମାଲ୍‌ହୋତ୍ରା ହୋଇଯାଇଛି ବୋଲି ଅବା ଜାଣିବେ କେମିତି ? ଶିବିରର ନୂତନ ଶରଣାର୍ଥୀମାନଙ୍କୁ ବଦ୍ ପରାମର୍ଶ ଦେବାକୁ ମଧ୍ୟ ଏଜେଣ୍ଟଙ୍କ ସଂଖ୍ୟା କିଛି କମ୍ ନଥିଲା । ପଞ୍ଜାବ ଅଞ୍ଚଳର ଗୁଣ୍ଡା ଦୁର୍ବୃତ୍ତମାନେ ତ ଧର୍ମ ନିର୍ବିଶେଷରେ ହିନ୍ଦୁ ଏବଂ ମୁସଲମାନ ଦୁଇ ସଂପ୍ରଦାୟର ଧନ ସଂପତ୍ତି ଲୁଟ୍‌ତରାଜ କରିବାକୁ ପଛାଉ ନଥିଲେ । ଏବେ ଲୋକଙ୍କ ଦୁର୍ଦ୍ଦିନର ଫାଇଦା ବା ସେମାନେ ନ ଉଠାଇବେ କାହିଁକି ? କ୍ଷତିପୂରଣର ପରିମାଣ ବେଶୀ କରାଇ ଦେଇପାରିଲେ ଅଧାଅଧି ଭାଗ ଯେ ସେମାନେ ପାଇବେ ।

ପାକିସ୍ଥାନ ଅଞ୍ଚଳରୁ ଯେଉଁ ହିନ୍ଦୁମାନେ ପଳାଇ ଆସିଥିଲେ, ସେ ଭିତରେ ଅଧିକାଂଶ ଥିଲେ ବୁଢ଼ାବୁଢ଼ୀ ଓ ଛୋଟ ଛୋଟ ପୁଅଝିଅ । ଯୁବକମାନେ ସଂଘର୍ଷ ଓ ହାଣକାଟରେ ମରିଯାଇଥିଲେ । ବିବାହିତା ଏବଂ ଅବିବାହିତା ତରୁଣୀମାନେ ନୃଶଂସଙ୍କ ଶିକାର ହୋଇ ହୁଏତ ମୃତପ୍ରାୟ ଅବସ୍ଥାରେ ଉଦ୍ଧାର ପାଇଥିଲେ ଅଥବା ପରେ ଦୁଇ ଦେଶର ସରକାରୀ ଉଦ୍ୟମରେ ଉଦ୍ଧାର ପାଇ ଶରଣାର୍ଥୀ ଶିବିରର ବାପ ମାଙ୍କ ପାଖକୁ ଫେରିଆସିଥିଲେ । କେବଳ ସରକାରୀ ସାହାଯ୍ୟ ବ୍ୟତୀତ ଏଇ ଶରଣାର୍ଥୀମାନଙ୍କ ଅର୍ଥାଗମର ଅନ୍ୟ ଉପାୟ ନଥିଲା । ଏ ବର୍ବରତା ଏବଂ ନୃଶଂସତାର ପ୍ରଥମ ଶିକାର ତ ହୋଇଥିଲେ ଭଗବାନ ନିଜେ । ବିନା ଅପରାଧରେ ଲକ୍ଷ ଲକ୍ଷ ନିରୀହ ଲୋକ ଏପରି ଅତ୍ୟାଚାରିତ ହେଲାବେଳେ ଯେଉଁ ଭଗବାନ କେଉଁଠି ଲୁଚି ରହିଥିଲେ, ସେଇ ଭଗବାନଙ୍କୁ ଏବେ ଏମାନେ କାହିଁକି ଅବା ରକ୍ଷଣ ପାଇଁ ଡ଼ାକ ଦେବେ ? ଲକ୍ଷ ଲକ୍ଷ ଶରଣାର୍ଥୀଙ୍କ ଆଗମନରେ ମହାନଗରୀର ଜନସଂଖ୍ୟା ଦ୍ୱିଗୁଣିତ ହୋଇସାରିଥିଲା । ସେଇ ମହାନଗରୀରେ ଏବେ ଗଢ଼ିଉଠିଲା ଏକ ନୂତନ ସମାଜ, ଯେଉଁ ସମାଜରେ ନଥିଲା ଭଗବାନଙ୍କ ପ୍ରତି କୌଣସି ଆସ୍ଥା କିମ୍ବା ଧର୍ମଭୟ । ନୈତିକତାର ଆଉ ସ୍ଥାନ ନଥିଲା - ନଥିଲା କୁଳଲଜ୍ଜା, ଦୟା କ୍ଷମା ପାରସ୍ପରିକ ମମତା । ଆବିର୍ଭାବ ହେଲା 'ଯାବତ୍ ଜୀବେତ୍ ସୁଖଂ ଜୀବେତ୍' ଦର୍ଶନର ଏକ ଜୀବନଧାରଣ ପ୍ରଣାଳୀ - ଭୋଗବିଳାସ ଏବଂ ଇନ୍ଦ୍ରିୟ ଲାଳସାର ପରିତୃପ୍ତି ହିଁ ଥିଲା ସେ ଜୀବନଦର୍ଶନର ମୂଳ ଲକ୍ଷ୍ୟ । ବାହାହେବା ପାଇଁ ତ ଆମ ସମାଜରେ ଯଥେଷ୍ଟ ଯୌତୁକ ଧନ ଲୋଡ଼ା - ନିର୍ଯ୍ୟାତିତା ଏ ସୁନ୍ଦରୀ ତରୁଣୀମାନେ ଅଥବା ତାଙ୍କ ବୁଢ଼ାବୁଢ଼ୀ ବାପା ମା' ଯୌତୁକ ପାଇଁ ଅର୍ଥ ଯୋଗାଇବେ ବା କେମିତି ? ଧର୍ମ ଭୟ କିମ୍ବା କୁଳ ଲଜ୍ଜା ନଥିବା ଏ ତରୁଣୀମାନେ ନିଜର ଦେହ ବିକ୍ରୀ କରି ଯୌତୁକ ଧନ ସଞ୍ଚୟ କରିବା ପାଇଁ ମଧ୍ୟ ପଛେଇଲେନି । ଯେ କୌଣସି ଉପାୟରେ ହେଉ ଧନ ସଂଚୟ ହେଲା ସମସ୍ତଙ୍କର ଏକମାତ୍ର ଲକ୍ଷ୍ୟ । ମହାନଗରୀରେ ଦେଖାଦେଲା ଅଜସ୍ର ଡ୍ରିଙ୍କ୍‌ସ ଡ଼େନ୍ ନାଇଟ୍ କ୍ଲବ୍ ।

ସାମାନ୍ୟ କେତେବର୍ଷ ଭିତରେ ହିଁ ଆର୍ ମାଲ୍‌ହୋତ୍ରାଙ୍କ ହୋଟେଲ ଏବଂ ନାଇଟ୍ କ୍ଲବ୍‌ମାନ ଦିଲ୍ଲୀ ନଗରୀର ମୁଖ୍ୟ ସ୍ଥାନମାନଙ୍କରେ ପ୍ରମୁଖ ହୋଇ ଉଠିଥିଲା । ତାରକାଙ୍କ ନାମ ଥିଲା ଅରୁଣା । ଅର୍କେଷ୍ଟାର ତାଳେ ତାଳେ ବକ୍ଷ ଦୋହଲାଇ ନୃତ୍ୟରତା ଅରୁଣା ଯେପରି ଭାବେ ଧୀରେ ଧୀରେ ନିଜ ବସନ ଖସାଇ ତନୁ ନଗ୍ନ କରୁଥିଲେ, ସେ ଢ଼ଙ୍ଗ ଥିଲା ଅପୂର୍ବ ଏବଂ ଏହି ନାଇଟ୍ କ୍ଲବ୍‌ର ବିଶେଷ ଆକର୍ଷଣ । ସେତେବେଳେ ନାଇଟ୍ କ୍ଲବ୍‌ର ପାନ ଭୋଜନରେ ଅସଂଖ୍ୟ ଗ୍ରାହକ ପାନ ଭୋଜନ ଭୁଲିଯାଇ ମୁଗ୍ଧ ନୟନରେ ଏ ରୂପସୀଙ୍କ ରୂପଲାବଣ୍ୟକୁ ଅନାଇ ରହୁଥିଲେ ।

ଏଇ ନାଇଟ୍ କ୍ଲବ୍ ଯେ ଦିନେ ଆର୍ ମାଲ୍‌ହୋତ୍ରାଙ୍କ ନାଇଟ୍ କ୍ଲବ୍‌ମାନଙ୍କର କାଳ ହେବ, ସେ କଥା ବୁଝିପାରି ରମେଶ ଦିନେ ତା' ସାଙ୍ଗସାଥୀଙ୍କୁ ନେଇ ଦେଖାଦେଲା ଏଇ ନାଇଟ୍ କ୍ଲବ୍‌ରେ, ଏ ନୂତନ ତାରକାଙ୍କୁ ତାର ନିଜ ନାଇଟ୍ କ୍ଲବ୍ ଚେନ୍‌କୁ ଖସାଇ ଆଣିବା ଉଦ୍ଦେଶ୍ୟ ନେଇ ।

ପ୍ରଥମ ଦର୍ଶନରେ ହିଁ ରମେଶ ଚିହ୍ନିପାରିଥିଲା ଅରୁଣା ମାଲ୍‌ହୋତ୍ରାଙ୍କୁ । ତାଙ୍କ ବିଶ୍ୱସ୍ତ ଚାକର ରମେଶକୁ ଚିହ୍ନିବାକୁ ଅରୁଣାକୁ ମଧ୍ୟ ସମୟ ଲାଗିନଥିଲା । ଯେଉଁଦିନ ମାଲ୍‌ହୋତ୍ରା ପରିବାର ଆସୁଥିବା ଟ୍ରେନ୍‌କୁ ପାକିସ୍ତାନୀ ପଠାଣମାନେ ଚଢ଼ାଉ କଲେ, ସେହିଦିନ ଅନେକ ତରୁଣୀଙ୍କ ସାଂଗରେ ଅରୁଣା ମାଲ୍‌ହୋତ୍ରାଙ୍କୁ ବି ଅପହରଣ କରିନେଇଥିଲେ ଦୁର୍ବୃତ୍ତମାନେ । କିଛିକାଳ ପାଶବିକ ଅତ୍ୟାଚାରର ଅସହ୍ୟ ନିର୍ଯ୍ୟାତନା ସହନ କଲା ପରେ ପେଶୱାରର ଜଣେ ପଠାଣ ରଖିନେଇଥିଲା ଏହି ଅରୁଣାକୁ । କେତେବର୍ଷ ପରେ, ଭାରତ ଓ ପାକିସ୍ତାନ ସରକାର ଯେତେବେଳେ ଏପରି ଅଭାଗିନୀମାନଙ୍କ ଖୋଜଖବର ପାଇ ସରକାରୀ ସୂତ୍ରରେ ସେମାନଙ୍କ ଆଦାନପ୍ରଦାନ କଲେ, ଅରୁଣା ଦେଖାଦେଲା ଦିଲ୍ଲୀ ମହାନଗରୀରେ । ଆଶ୍ରୟ ନେବା ପାଇଁ ନଗରୀରେ ତାର ଜଣାଶୁଣା କେହିନଥିଲେ - ଥିଲେ ମଧ୍ୟ ସେ କେଉଁ ମୁହଁରେ ସେମାନଙ୍କ ଆଶ୍ରୟ ନେବ ? ସେ ବାଛି ନେଇଥିଲା ଜୀବିକା ଅର୍ଜନ ଏବଂ ଜୀବନଯାପନର ନିଜ ପନ୍ଥା ।

ମାଲ୍‌ହୋତ୍ରା ନୁହେଁ ବୋଲି ଜଣାଗଲେ ତାର ଯେଉଁ ଅବସ୍ଥା ହେବ, ସେ କଥା ବେଶ୍ ବୁଝିଥିଲା ରମେଶ । ସେ ତାର ଆଶ୍ରିତ ଗୁଣ୍ଡାମାନଙ୍କ ସାହାଯ୍ୟରେ ଅରୁଣା ମାଲ୍‌ହୋତ୍ରାଙ୍କୁ ପ୍ରାଣରେ ମାରିଦେବା ପାଇଁ ପ୍ରୟାସ କରିଥିଲା । କିନ୍ତୁ ଜୀବନର ସର୍ବବିଧ କର୍କଶ ଅଭିଜ୍ଞତା ସହ ସଂପୂର୍ଣ୍ଣ ପରିଚିତ ଅରୁଣା ପାଇଁ ପ୍ରାଣପଣ କରିଦେବା ଭଳି ଦୁଃସାହସିକ ଯୁବକଙ୍କ ସଂଖ୍ୟା ମଧ୍ୟ କିଛି କମ୍ ନଥିବାରୁ ସେସବୁ ପ୍ରୟାସ ବିଫଳ ହୋଇଗଲା । ଫଳରେ ଦେଖାଦେଲା ଏକ ବୁଝାମଣା ରମେଶ ଏବଂ ଅରୁଣାର ମିଳନ, ଶୃଙ୍ଖଳାର ଶିକୁଳି ବିହୀନ ବୈବାହିକ ବନ୍ଧନ । ଆଜି ଏଇ ରମେଶ ଏବଂ

ଅରୁଣା ପରି ତ' ମହାନଗରୀର ଅନେକେ ସେମାନଙ୍କଠାରୁ କି ମମତା ଆଶା କରିବୁରେ ଡ଼ିମ୍ପି!

ହଇରେ ଏ, ମୋ କଥାଗୁଡ଼ାକ କଣ ଏଯାଏ କିଛି ଶୁଣୁ ନଥିଲୁ? କୁଆଡ଼େ ଧାଇଁଛୁ କହିଲୁ? ଏଇ 'ସୁବ୍ରମଣ୍ୟମ୍ ଭାରତୀ' ମାର୍ଗ ଡ଼େଇଁ ସେ ପାଖ ଗଲ୍ଫ କୋର୍ସର ମଇଳାଗଦା ଆଡ଼ିକୁ ଯିବୁ? ଯାଅନା - ମରିଯିବୁରେ, ଦେଖିପାରୁନୁ କେମିତି କାର୍, ସ୍କୁଟର, ବସ୍, ଟ୍ରକ୍‌ର ସୁଅ ଛୁଟିଛି ଏ ମାର୍ଗରେ ଲାଞ୍ଜକୁ ଲାଞ୍ଜ ଛୁଇଁ । ତେଣୁ ମାଡ଼ିଆସୁଛି ତିନିଧାଡ଼ି ତ ଏଣୁ ଚାଲିଯାଉଛି ତିନିଧାଡ଼ି । ତୁ ରାସ୍ତା ଡ଼େଇଁ ଧାଇଁଗଲା ବେଳେ କେଉଁ ଗୋଟାକରେ ପିଚି ହୋଇଯିବୁ, ଆଉ କେଁ କଲା ବେଳକୁ ତୋ ଛିଟିକିଲା ଦେହ ଉପରେ ମାଡ଼ି ଚାଲିଯିବେ ଗୋଟାକୁ ଗୋଟା ଏଇ ମଟରଗାଡ଼ି ମାନ । ତୋ ଦେହ ଚେପିଟି ଯାଇ ଖାଲି ଚମଡ଼ାର ଛାଲଟିଏ ହୋଇଯିବ । ସେ ଦଶା ଦେଖି ଆକାଶକୁ ମୁହଁଟେକି କାନ୍ଦବୋବାଳି ଛାଡ଼ିବା ପାଇଁ ତୋର ପୁତ୍ର କଳତ୍ର ବି କେହି ନଥିବେରେ ଡ଼ିମ୍ପି ।

ଶିକୁଳି ନ ବାନ୍ଧି ତୋତେ ଏମିତି ଖୋଲା ବୁଲାଇ ଆଣିବାରେ ହିଁ ମୋର ଭୁଲ୍ ହୋଇଯାଇଛି । ଶୃଙ୍ଖଳାଜ୍ଞାନବିହୀନ ତୋ'ପରି ଅଧମମାନଙ୍କୁ ସ୍ୱାଧୀନତା ଦେବା ହିଁ ମସ୍ତବଡ଼ ଭୁଲ୍ । ତମେ ସବୁ ସେ ସ୍ୱାଧୀନତାର ମୂଲ୍ୟ ବୁଝିଲେ ତ'! ତମ ଆଖିରେ ଯେ, ସ୍ୱାଧୀନତା ଏବଂ ସ୍ୱେଚ୍ଛାଚାରିତା ସମାନ । ଶୁଣିବାକୁ ମିଳେ ତୋ ପୂର୍ବଜ କେହି ଜଣେ କୁଆଡ଼େ ଧର୍ମରାଜ ଯୁଧିଷ୍ଠିରଙ୍କ ପଛେ ପଛେ ସ୍ୱଦେହରେ ସ୍ୱର୍ଗକୁ ଚାଲିଯାଇଥିଲା - ଆଉ ତୁ! ତୁ ଏଡ଼େ ଅଧମଟିଏ ଯେ, ତୋତେ ଆଜି ଯଦି କେହି ଏ ମହାନଗରୀର ନବାବ୍ କରିଦିଏ, ତୁ ସିଂହାସନରେ ବସି ମଧ୍ୟ ତୋ ଉପାନହ ଚୋବାଇବସିବୁ ।

ଅବଶ୍ୟ ଆମେ ବି କେଉଁ ଭଲ ଯେ? ତୋ ଭଳି ଆମେ ସବୁ ବି ଉଚ୍ଛୃଙ୍ଖଳରେ ଡମ୍ପି । ସତରେ ମଣିଷ ଆଉ କୁକୁର ଦୁହେଁ ସମାନ । କୁକୁର ପାଇଁ ଯଦି ଶିକୁଳିଟିଏ ଲୋଡ଼ା, ମଣିଷ ପାଇଁ ବି ସେମିତି ଶିକୁଳିଟିଏ ଲୋଡ଼ାରେ ଡ଼ିମ୍ପି! କିନ୍ତୁ ତମ ଶିକୁଳି ସିନା ଆମେ ଧରିବୁ, ଆମ ଶିକୁଳି କିଏ ଧରିବ କେଜାଣି!

# ବାର୍ଦ୍ଧକ୍ୟ ସମ୍ବନ୍ଧରେ

ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ଯେ ଦୁଃଖପୂର୍ଣ୍ଣ ସେ କଥା ମୁଁ ଜାଣିଥିଲି । ଏହା ମଧ୍ୟ ଜାଣିଥିଲି ଯେ, ପ୍ରତ୍ୟେକ ମଣିଷକୁ ଦିନେ ନା ଦିନେ ସେ ସବୁ ଅବସ୍ଥା ଦେଇ ଗତି କରିବାକୁ ପଡ଼ିବ । ତେଣୁ ବାର୍ଦ୍ଧକ୍ୟର ଆଗମନୀରେ ମୁଁ ଚିନ୍ତିତ ହୋଇଥାନ୍ତି ଅବା କାହିଁକି ? କିନ୍ତୁ ଜନ୍ମ ମୃତ୍ୟୁ ତଥା ବ୍ୟାଧି ସମ୍ବନ୍ଧରେ ମୋର ଏକ ସ୍ପଷ୍ଟ ଧାରଣା ଥିବା ସ୍ଥଳେ ବାର୍ଦ୍ଧକ୍ୟ ସମ୍ବନ୍ଧରେ ମୋର ଧାରଣା ଥିଲା ଅସ୍ପଷ୍ଟ । ବାର୍ଦ୍ଧକ୍ୟ କହିଲେ ମଣିଷର ଠିକ୍ କେଉଁ ଅବସ୍ଥାକୁ ବୁଝାଏ, ସେ ଅବସ୍ଥାର ଆରମ୍ଭ କେଉଁଠି ଏବଂ ଶେଷ କେଉଁଠାରେ ତଥା ବୁଢ଼ା ହେଲେ ମଣିଷ ଠିକ୍ କେଉଁ ଧରଣର ଦୁଃଖ ଯନ୍ତ୍ରଣା ଭୋଗକରେ ସେ ସମ୍ବନ୍ଧରେ ମୋର ଜ୍ଞାନ ଥିଲା ଅନିଶ୍ଚିତ। ଶୁଣିଥିଲି ଯେ, ପୂର୍ବକାଳରେ ଶୁକ୍ଳକେଶଧାରୀ ମଣିଷବିଶେଷଙ୍କୁ ବୃଦ୍ଧ ନକହି ଜ୍ଞାନଚର୍ଚ୍ଚାରେ ରତ ଥିବା ମଣିଷମାନଙ୍କୁ ଏବଂ ଏପରିକି ସେ ଶ୍ରେଣୀର ଯୁବକମାନଙ୍କୁ ମଧ୍ୟ ଲୋକେ ବୁଢ଼ା କହୁଥିଲେ । ତେବେ ସେ ଥିଲା ସ୍ୱର୍ଣ୍ଣଯୁଗର କଥା । ସେତେବେଳେ ଜ୍ଞାନୀ ଓ ବୁଢ଼ା ଦୁଇ ସମ ଅର୍ଥବ୍ୟଞ୍ଜକ ଭିନ୍ନ ଶବ୍ଦ ଥିଲା । କିନ୍ତୁ ସମୟର ପରିବର୍ତ୍ତନ ସଂଗେ ହିନ୍ଦୁ ରାଜତ୍ୱ ପରେ ମୋଗଲ ରାଜତ୍ୱ ଏବଂ ତା'ପରେ ଇଂରାଜ ରାଜତ୍ୱ ଆସି ଆଜିର ଅବୁଝା ରାଜତ୍ୱ ଆସିଲା ପରି ସେ ସମସ୍ତ ରାଜନୈତିକ ପରିବର୍ତ୍ତନ ସାଙ୍ଗକୁ ସାମାଜିକ ପରିବର୍ତ୍ତନ ଯେ ନିଶ୍ଚୟ ଆସିଥିବ ଏବଂ ଫଳରେ ଜ୍ଞାନୀ ଓ ବୁଢ଼ା ଶବ୍ଦ ମଧ୍ୟରେ ପାର୍ଥକ୍ୟ ଦେଖାଦେଇଥିବ ସେଥିରେ ମୋର ସନ୍ଦେହ ନଥିଲା । ତେଣୁ ସେ ଦିନର ଜ୍ଞାନୀ ବ୍ୟଞ୍ଜକ ବୁଢ଼ା ଶବ୍ଦ ଆଜି ଯେ, କେବଳ ତାଚ୍ଛଲ୍ୟସୂଚକ ବୁଢ଼ା ଶବ୍ଦରେ ପରିଣତ ହୋଇଯାଇଛି ସେଥିରେ ଅବା ମୋର ସନ୍ଦେହ ରହନ୍ତା କାହିଁକି ? ତେବେ ଏ ପରିବର୍ତ୍ତନ କେବେ ହେଲା ଏବଂ କିପରି ଭାବରେ ହେଲା ତାହାହିଁ ଥିଲା ମୋର ବିଚାର୍ଯ୍ୟ ।

ଏ ସମ୍ବନ୍ଧରେ ଯଥାରୀତି ଅନୁଧ୍ୟାନ କରି ମୁଁ ଯେଉଁ ସିଦ୍ଧାନ୍ତରେ ଉପନୀତ ହେଲି, ତା'ର ସାରମର୍ମ ହେଲା ଯେ ଯେଉଁ ଦିନଠାରୁ ସମାଜରେ ଜ୍ଞାନ ପରିବର୍ତ୍ତେ ଧନ ଏବଂ କର୍ତ୍ତବ୍ୟ ପରିବର୍ତ୍ତେ କ୍ଷମତା ବେଶି ଆଦୃତ ହେବାକୁ ଆରମ୍ଭ କଲା, ସେଇଦିନଠାରୁ ହିଁ ବୃଦ୍ଧମାନେ ଜ୍ଞାନୀ ନ ବୋଲାଇ ଅଦରକାରୀ ତୁଚ୍ଛ ବୁଢ଼ା ହୋଇଗଲେ । ସେଇ

ପରିପ୍ରେକ୍ଷୀରେ ପର୍ଯ୍ୟାଲୋଚନା କଲେ ଦେଖିବାକୁ ମିଳେ ଯେ ଯେଉଁଦିନ ଠାରୁ ମଣିଷ ତାର ଅର୍ଥ ଆହରଣ ଶକ୍ତି ହରାଇବାକୁ ଆରମ୍ଭ କରେ ଏବଂ ଯେଉଁଦିନ ଠାରୁ ସେ ଧଳାକୁ କଳା, ଅଯୋଗ୍ୟକୁ ଯୋଗ୍ୟ, ଅବାଞ୍ଛିତକୁ ବାଞ୍ଛିତ କରିବା ଅଥବା ବଦଳି ସ୍ଥଗିତ କରିବା ଅଥବା କରାଇବା ପ୍ରଭୃତି କ୍ଷମତା ହରାଇବସେ, ସେଦିନରୁ ତାର ବାର୍ଦ୍ଧକ୍ୟ ଆରମ୍ଭ ହୁଏ ଏବଂ ପରିଣାମ ସ୍ୱରୂପ ଯେତେବେଳେ ଏ ଅବସ୍ଥା ଲକ୍ଷ୍ୟ କରୁଥିବା ତା'ର ବନ୍ଧୁବାନ୍ଧବ ଜ୍ଞାତି କୁଟୁମ୍ବ ସଖା ସହୋଦର ତା'ଠାରୁ ଦୂରେଇ ଯାଆନ୍ତି, ସେ ସଂପୂର୍ଣ୍ଣ ବୁଢ଼ା ହୋଇଯାଏ ।

ଉପରୋକ୍ତ ମାପକାଠି ନେଇ ମୁଁ ମୋ ନିଜ ଅବସ୍ଥା ସମ୍ବନ୍ଧରେ ବିଚାର କରି ଜାଣିପାରିଲି ଯେ, ମୁଁ ଯେଉଁଦିନ ସରକାରୀ ଚାକିରିରୁ ଅବ୍ୟାହିତ ନେଲି ସେ ଦିନରୁ ହିଁ ମୋର ବାର୍ଦ୍ଧକ୍ୟ ଆରମ୍ଭ ହେଲା । ପରେ ଏପରି କେତୋଟି ଘଟଣା ଘଟିଗଲା, ଯାହାର ପରିଣତି ଜଣାଇଦେଲା ଯେ, ମୁଁ ଏଥର ସଂପୂର୍ଣ୍ଣ ବୁଢ଼ା ହୋଇଯାଇଛି ।

ସେଦିନ ବାବୁ ହରିହର ମୋ ଶାରୀରିକ ତଥା ମାନସିକ କୁଶଳାଦି ସମ୍ବନ୍ଧରେ ଅବଗତ ହେବା ନିମନ୍ତେ ଆମ ଘରକୁ ଆସିଥିଲେ । ଯଥାବିଧି ନମସ୍କାରାନ୍ତେ ମୁଁ କିପରି ଅଛି ପଚାରିଦେଲା ପରେ ଟିପ୍ପଣୀ କାଟିଲେ ଯେ, ମୋତେ ଦେଖି କିଏ କହିବ ମୁଁ ଚକିରିରୁ ଅବସର ନେଲିଣି ! ଏଥର ମୁଁ ମଧ ଯଥାରୀତି ତାଙ୍କ ପରିବାରର କୁଶଳାଦି କଥା ଜିଜ୍ଞାସା କରିଦେଲି । ଆଉ ପଚାରନ୍ତୁନି ଭାଇନା, କହି ସେ ଜଣାଇଦେଲେ ଯେ ତାଙ୍କ ପୁଅ ନରହରି ଏଥର ବି ମେଟ୍ରିକ୍ୟୁଲେଶନ୍ ପରୀକ୍ଷା ଦେଇଛି । କେତେ ବଡ଼ପିଲା ଏ ନରହରି ! ଜିନ୍ ଟ୍ରାଉଜର୍, ଡ଼ାହାଣ ହାତିଆ ଘଡ଼ି ଓ କେଡ୍‌ସ ଜୋତା ପିନ୍ଧି ସେ ଯେତେବେଳେ ସ୍କୁଟର ଚଢ଼ି ଗାଁ ଦାଣ୍ଡରେ ପଇଁତରା ମାରୁଥାଏ ମୁଁ ତାକୁ କେତେଥର ଭେଟିଛି । ତେବେ ମୋର ଧାରଣା ଥିଲା ଯେ ସେ ଜଣେ କଲେଜପାଠୁଆ । ମେଟ୍ରିକ୍ୟୁଲେଶନ୍ ପରୀକ୍ଷା ଦେଉଛି ଶୁଣି ମେଟ୍ରିକ୍ୟୁଲେଶନ୍ ନା ବି,ଏ ବୋଲି ପଚାରିଦେଲି । ମୋ ପ୍ରଶ୍ନରେ ହରିହର ବାବୁ ମୁହଁ ଆମ୍ବିଳିଆ କରିଦେଲେ ଆଉ କହିଲେ - "ମେଟ୍ରିକ୍ୟୁଲେଶନ୍ କେଉଁଠୁ ପାସ୍ କରିଛି ଭାଇନା - ପ୍ରଥମ ବର୍ଷ ତ ପଇସା ଅଭାବରୁ ପରୀକ୍ଷା ବି ଦେଇପାରିଲାନି, ଦ୍ୱିତୀୟ ବର୍ଷ ଠିକ୍ ପରୀକ୍ଷା ବେଳେ ହିଁ ତାର ଦେହ ଖରାପ ହୋଇଗଲା । ତଥାପି ଦେହରେ ଜର ନେଇ ସେ ପରୀକ୍ଷା ଦେଲା, କିନ୍ତୁ ପାସ୍ କରିପାରିଲାନି । ଦୁର୍ଭାଗ୍ୟ ଆସିଲେ ତ ଗୋଟାକ ପରେ ଗୋଟାଏ ଗୋଡ଼ାଇ ଆସେ - ଗଲାବର୍ଷ ଇଲେକସନ୍ ଯୋଗୁଁ ଯେଉଁ ଅଶାନ୍ତି ଓ ଗଣ୍ଡଗୋଳ ଦେଖାଦେଲା, ସେଥିରେ ପଢ଼ାପଢ଼ି ଅବା ହୁଅନ୍ତା କ'ଣ, ପୁଣି ଫେଲ୍ ହୋଇଗଲା ।"

ମୋର ପ୍ରଶ୍ନ: "ଗଲା ବର୍ଷ ହାଇସ୍କୁଲ ରେଜଲ୍ଟ ପରା ବେଶ୍ ଭଲ ହୋଇଥିଲା ? କେତେ ଜଣ ପ୍ରଥମଶ୍ରେଣୀ ପାଇଲେ ବୋଲି ବି ଶୁଣିଥିଲି ।"

ହରିହର: "ସେଇ ତ ଭାଇନା ଯେଉଁମାନେ ପ୍ରଥମଶ୍ରେଣୀ ପାଇଲେ ସେମାନଙ୍କୁ ଦେଖି ସମସ୍ତେ କହୁଛନ୍ତି - ହାଇସ୍କୁଲ ଶିକ୍ଷକଙ୍କୁ ଧରି ଟିଉସନ୍ ନକରାଇଲେ ଅଥବା ପରୀକ୍ଷକଙ୍କୁ ଧରାଧରି ନକଲେ ଆଜିର ଏ ଯୁଗରେ କେହି କ'ଣ ପାସ୍ କରେ ? ଆମର ସେତେ ଅର୍ଥବଳ କାହିଁ ଯେ, ଭାଇନା ଆମେ ଟିଉସନ୍ କରାଇବୁ ଆଉ ଶିକ୍ଷକମାନେ ଆମ ପିଲାଙ୍କୁ ପରୀକ୍ଷାହଲ୍‌ରେ ନକଲ ଯୋଗାଇ ଦେବେ ! ପରୀକ୍ଷକଙ୍କୁ ଧରିଲେ ଯାଇଁ..."

ମୁଁ : "ପରୀକ୍ଷକଙ୍କୁ ଧରିବ ?"

ହରିହରବାବୁ ତାଙ୍କ ପଞ୍ଜାବି ପକେଟ୍‌ରୁ ଥାକେ କାଗଜ କାଢ଼ି ମୋତେ ଦେଖାଇଦେଲେ, କହିଲେ - 'ହେଇ ଭାଇନା, କେଉଁ କେଉଁ ସ୍କୁଲ କଲେଜର ଶିକ୍ଷକ ଅଧ୍ୟାପକ ମେଟ୍ରିକ୍ ପରୀକ୍ଷାର ପରୀକ୍ଷକ ନିଯୁକ୍ତି ହୋଇଛନ୍ତି, ଆଉ କେଉଁ କେନ୍ଦ୍ରର କେଉଁ ପେପର୍ କାହା ପାଖକୁ ଯାଇଛି ସେ ସବୁର ଏ ତାଲିକା ।' ତା'ପରେ ସେ ସାଦା କାଗଜ ବିଡ଼ାଏ ଏବଂ ଡ଼ଟ୍ ପେନ୍‌ଟିଏ ବଢ଼ାଇଦେଇ କହିଲେ - 'ଆପଣ ଟିକେ ପରୀକ୍ଷକଙ୍କ ପାଖକୁ ଲେଖି ନଦେଲେ...'

ମୁଁ ଭଦ୍ରଲୋକଙ୍କୁ ଜଳଜଳ ଚାହିଁଥିଲି ! କହିଲି - 'ପରୀକ୍ଷକଙ୍କୁ ଲେଖିବି ? କ'ଣ ଲେଖିବି ?'

ସେ ଏଥର ପଞ୍ଜାବିର ଅନ୍ୟ ପକେଟ୍‌ରୁ ଆଉ ଖଣ୍ଡେ କାଗଜ ବାହାର କଲେ, କହିଲେ - 'ଏଇଟା ଭାଇନା ଲେଖିବାର ଗୋଟାଏ ଫର୍ମା । ଆମ ଅଞ୍ଚଳର ଜଣେ ଖ୍ୟାତନାମା ଶିକ୍ଷକ ଏ ଫର୍ମା ଲେଖିଦେଇଛନ୍ତି - ସେ ଢ଼ଙ୍ଗରେ ଲେଖିଦେଲେ ହେବ ।'

'ତମ କୁଳାଙ୍ଗାର ପୁଅ ପାଇଁ ମୁଁ ପରୀକ୍ଷକଙ୍କୁ ସୁପାରିଶ୍ ପତ୍ର ଲେଖିବି ! ହେଁ... ତମକୁ କହିବାକୁ ଲାଜ ମାଡୁନି ?' ମୋ ଅଜାଣତରେ ବାକ୍ୟଟି ମୋ ମୁହଁରୁ ଛିଟିକି ପଡ଼ିଲା । ମୁଁ ହୁଏତ କଣେଇ ଚାହିଁଥିବି ମଧ୍ୟ, କିନ୍ତୁ "ତମ ପୁଅ ପାଇଁ ତମେ ଯେତେବେଳେ ପରୀକ୍ଷକଙ୍କୁ ଲେଖିଥିବ, ତମକୁ କଣ ଲାଜ ମାଡ଼ିଥିଲା ଭାଇନା ?' ରେ ମୋ ମୁଣ୍ଡକୁ ରକ୍ତ ଚଢ଼ିଗଲା । ବୁଢ଼ା ରକ୍ତ ହେଲେ କ'ଣ ହେଲା - ରକ୍ତ ତ ରକ୍ତ ! ମୁଁ ଚିତ୍କାର କଲି - 'ରାସ୍କେଲ୍, ଗେଟ୍‌ଆଉଟ୍ ।'

ସେ ଭଦ୍ରଲୋକ ମୋ ଆଡ଼ିକି ତରାଟି ଚାହିଁଲେ - ପଞ୍ଜାବିର ଦୁଇହାତ କହୁଣି ଉପରକୁ ଟେକିଲେ ଓ ଲୁଗା ମଧ୍ୟ ଭିଡ଼ାଭିଡ଼ି କଲେ; କିନ୍ତୁ ପୁଣି କଣ ପାଞ୍ଚିଲେ

କେଜାଣି ଘରୁ ବାହାରିଗଲେ । ଟିକିଏ ପରେ କାହାରି ପ୍ରଶ୍ନରେ ସେ ଉତ୍ତର ଦେଉଥିବା ଶୁଣିଲି – 'ବୁଢ଼ା ସଢୋଟପଣିଆ ଦେଖେଇ ହେଉଛି । ତା' ପୁଅମାନେ ତ ଗୋଟାଏ ବୃହସ୍ପତି ଯେ ବିନା ସାହାଯ୍ୟରେ ମେଟ୍ରିକ୍ୟୁଲେଶନ୍ ପାସ୍ କରିଗଲେ । ବୃଦ୍ଧ ଜରଦ୍‌ଗବ ।'

ସେ ଟିପ୍ପଣୀ ଶୁଣି ମୁଁ କ୍ଷୁବ୍ଧ ହୋଇଥିଲି ସତ, କିନ୍ତୁ ତା' ପୂର୍ବରୁ ଅଯଥା ରାଗିଯାଇ ନକହିବା କଥା କହିଦେଇଥିବା ଯୋଗୁଁ ପଶ୍ଚାତାପ କରିଥିଲି । ମୁଁ ପୂର୍ବରୁ ଜାଣିଥିଲି ଯେ, ବୁଢ଼ାବେଳେ ମଣିଷ ବଦ୍‌ରାଗୀ ହୋଇଯାଏ, ତେଣୁ ଏଥର ଯଥାସାଧ୍ୟ କ୍ରୋଧ ସମ୍ଭାଳିବାକୁ ଚେଷ୍ଟା କରିବି ବୋଲି ସଂକଳ୍ପ କରିଥିଲି ।

କିଛିଦିନ ପରେ ହିଁ ଆଉ ଗୋଟାଏ ଘଟଣା ଘଟିଲା । ମୁଁ ଘରର ବାହାର ବାରନ୍ଦାରେ ବସିଛି, ବାରନ୍ଦା ପାଖ ଗେଟ୍ ଖୋଲି ଧସାଇ ପଶିଲେ ଭଣଜା ନରସିଂହ । ନମସ୍କାର କରୁ କରୁ ପଚାରିଦେଲେ – 'ଦେହପା ଭଲ ତ ମାମୁ ?' ମୁଁ ନୀରବ ସମ୍ମତି ଜଣାଇ ପାଖ ଚୌକି ଆଡ଼ିକି ହାତ ଦେଖାଇଦେଲି । ଚୌକିରେ ବସୁ ବସୁ ନରସିଂହ ଭଣଜା ତାଙ୍କ ଖଦି ଝୁଲାମୁଣିକୁ ପାଖ ଟେବୁଲ୍ ଉପରେ ଥୋଇଦେଲେ ଆଉ କହିଲେ – 'କେତେଦିନ ହେଲା ଆସିବି ଆସିବି ହେଉଥିଲି ଯେ ମାମୁ, ଆସି ପାରୁନଥିଲି । କାଲି ଝଙ୍କାରରେ ତମ କବିତା 'ସତ୍ୟଂ ଶିବଂ ସୁନ୍ଦରଂ' ପଢ଼ିଲି । ଓଃ– କି ଚମତ୍କାର କବିତା ! ଭାବିଲି ନିଶ୍ଚୟ ଯାଇ ମାମୁଙ୍କୁ ବଧାଇଦେଇ ଆସିବି । ଜୀବନରେ କ୍ୱଚିତ୍ ଏମିତି ଉଚ୍ଚକୋଟୀର ଲେଖା ପଢ଼ିବାକୁ ମିଳେ ।'

ମୁଁ ତ ଆଦୌ କବିତା ଲେଖେନି – ତେଣୁ ଭଣଜା ମହୋଦୟ ଯେ, ଅନ୍ୟ କାହାର କବିତା ପଢ଼ି ଏମିତି ମୁଖର ହୋଇଉଠିଛନ୍ତି ସେ କଥା ବୁଝିବାକୁ ଡ଼େରିହୋଇନି । କିନ୍ତୁ ସେ ଜାଣିଶୁଣି ଏବଂ ହୁଏତ କିଛି ମତଲବ ନେଇ ଯେ, ଏମିତି ପ୍ରଶଂସା ଆରମ୍ଭ କରିଛନ୍ତି ସେ କଥା ଭାବି ତୁନିହୋଇ ତାଙ୍କୁ ଅନାଇ ରହିଲି ।

ଭଣଜା କହି ଚାଲିଥିଲେ – 'ଏମିତ କବିତା ରବୀନ୍ଦ୍ରନାଥ ଲେଖିଥିଲେ ତାଙ୍କ 'ପୁଷ୍ପାଞ୍ଜଳି'ରେ ।'

'ଗୀତାଞ୍ଜଳି' କଥା କହୁଛ କି ନରସିଂହ ?' ମୋ ଟିପ୍ପଣୀରେ ସେ ଟିକିଏ ମାତ୍ର ଅପ୍ରସ୍ତୁତ ନହୋଇ କହି ଚାଲିଲେ – 'ହଁ ଗୀତାଞ୍ଜଳି । ତେବେ ତମ କବିତା ଆହୁରି ମଡ଼ର୍ଣ୍ଣ । ଏମିତି ଲେଖାର ଲେଖକଙ୍କୁ ନୋବେଲ୍ ପୁରସ୍କାର ନଦେଇ ଦେଉଛନ୍ତି କେଉଁ ଆଫ୍ରିକା, ଆମେରିକାର ଅଜ୍ଞାତକୁଳଶୀଳ ଅନାମଧେୟ ତଥା କଥିତ ଲେଖକମାନଙ୍କୁ । ଖାଲି ଧରାଧରି ଦିଆନିଆର କରାସାଦି । ତମର ଆମର ଗୁଣକୁ କିଏ ଚିହ୍ନିବ ମାମୁ ? – ଗୁଣ ଚିହ୍ନେ ଗୁଣିଆ କି ସୁନା ଚିହ୍ନେ ବଣିଆ ।'

କଥାର ଗତି ଯେ, କୁଆଡ଼େ ମୁଁ ଠିକ୍ ଠଉରାଇ ନେଇଥିଲି । ପଚାରିଦେଲି କିଛି କାମ ଥିଲା କି ନରସିଂହ ?'

ନରସିଂହ ଭଣଜା ଇଙ୍ଗିତକୁ ଜାବୁଡ଼ି ଧରିଲେ । କହିଲେ – 'ଥିଲା ଯେ, ମାମୁ, ତମକୁ କହିବାକୁ ଟିକେ ସଂକୋଚ ଲାଗୁଛି । କେତେ ବଡ଼ଲୋକ କରିବ ନକରିବ !'

: 'କଣ କିଛି କହିବାର ଥିଲା କି ?'

: ହଁ ମାମୁ – ତମେ ତ ଦିବ୍ୟସିଂହକୁ ଜାଣିଛ – ଏବର୍ଷ ବିଏ ପାସ୍ କଲା, କଣ ସବୁ ବ୍ୟାଙ୍କ୍, ଇନସ୍ୟୁରେନ୍ସ ଆଉ କି କି ପରୀକ୍ଷାମାନ ଦେବା ପାଇଁ କହୁଛି ଯେ, ମୁଁ ମନାକଲି । କହିଲି – ଏବେ ଯେଉଁ ଫରେଷ୍ଟ ଗାର୍ଡ଼ ଚାକିରି ପାଇଁ ବିଜ୍ଞାପନ ବାହାରିଛି ସେଥିରେ ଦରଖାସ୍ତଟିଏ ଦେଇ ଦେ । ମାମୁ ତ ଅଛନ୍ତି, ସେ ଯଦି ଉପର ହାକିମଙ୍କୁ ଦି' ଧାଡ଼ି...

: 'ଫରେଷ୍ଟ ଗାର୍ଡ଼ ? ରେଞ୍ଜର କଥା କହୁନ ତ ?'

ମୋ ପ୍ରଶ୍ନ ଶୁଣି ନରସିଂହ ଭଣଜା ସାମାନ୍ୟ ଟିକିଏ ହସିଦେଲେ । କହିଲେ – "ରେଞ୍ଜର ସର୍ଭିସ୍‌ରୁ ଆମକୁ କଣ ମିଳିବ ମାମୁ ? ଦୁନିଆଯାକର ଦାୟିତ୍ୱ ଆଉ ଝାମେଲା । ଜଙ୍ଗଲ କାହିଁକି ସଫା ହୋଇଗଲା ତାର କୈଫିୟତ୍ ଦେଉଥାଅ । ବେତନ ବି ମିଳିବ ମାସକୁ ବେଶୀ ହେଲେ ଦୁଇହଜାର । ଫରେଷ୍ଟ ଗାର୍ଡ୍ ହେଲେ ବି ଦିବ୍ୟସିଂହ ଘରେ ବସି ଦିନକୁ ଦି'ଶହ ତିନିଶହ କମାଇ ନେବ । ଦେଖୁଛ ତ ଗାଁ ଦାଣ୍ଡରେ କେମିତି କାଠ ବାଉଁଶର କେଡ଼୍‌ମାନ ରାତିଦିନ ଟଣାହୋଇ ଚାଲିଛି । ଗୋଟାଏ ବୋଝକୁ ଦି'ଚାରି ଟଙ୍କା ଖୁସିରେ ପକାଇଦେବେ ସେମାନେ । ଦିନକୁ ପାଞ୍ଚ ଦଶ ଟଙ୍କା ଜୋରିମାନା ଦେଖାଇଦେଲେ ହେଲା । ଆଉ ନର୍ଲା, ଅମ୍ବାଦୋଲା ଆଡ଼ିକି ପୋଷ୍ଟିଂ କରାଇପାରିଲେ ତ ଦିନକୁ ହଜାରେ । ଯେଉଁ ସାଇଜ୍‌ର ଦାମିକା ଗଛମାନ ଟ୍ରକ୍‌ମାନଙ୍କରେ ଚୋରା ଚାଲାଣ ନିତିଦିନ ହେଉଛି ମାମୁ....।"

: କ'ଣ ଘୁଷ୍ ଖୋରୀକୁ ତମେ ଏମିତି ପ୍ରଶ୍ରୟ ଦେଉଛ ?

: ପାର୍ଟି ପାଇଁ ଚାନ୍ଦା ସଂଗ୍ରହ କ'ଣ ଘୁଷ୍ ଖୋରୀ ମାମୁ ? ଆଉ ସରକାରୀ ବେତନରେ କିଏ ଆଜି ଚଳିଲାଣି କହୁନାହାନ୍ତି ? କିଏ ଘୁଷ୍ ନଖାଉଛି ଯେ ? ଖାଲି ଆକାର ପ୍ରକାରର ପ୍ରଭେଦ ।

: ଯେ – ତମେ କଣ କହିବାକୁ ଚାହୁଁଛ ?

: ଡ଼ିଏଫ୍‌ଓଙ୍କୁ ଟିକେ କହିଦେବ ମାମୁ ? ମୁଁ ଗାଡ଼ି ବନ୍ଦୋବସ୍ତ କରିଦେଇଛି । ମୁଁ ଶୁଣିଛି ଏ ପୋଷ୍ଟ ପାଇଁ ପନ୍ଦର କୋଡ଼ିଏ ହଜାର ଖର୍ଚ୍ଚ କରିବାକୁ ପଡ଼େ । ଟଙ୍କା ବି....

ମୁଁ କହିଲି – 'ନରସିଂହ, ତମେ ଏ ଜଣେ ଅଞ୍ଚଳର ନେତା । ଟିକିଏ ଭାବି ଦେଖିଲ କ'ଣ କରିବାକୁ ମୋତେ କହୁଛ ! ଏମିତି ତ ଆମ ଦେଶ ଏବେ ରସାତଳକୁ ଗଲାଣି । ତମେ ସିନା ଲୋକଙ୍କୁ ଆଦର୍ଶ ଦେଖାନ୍ତି । ତମେ ନିଜେ...'

ନରସିଂହ କିନ୍ତୁ ମୋ ଉପଦେଶ ଶୁଣିବାକୁ ପ୍ରସ୍ତୁତ ନଥିଲେ । କହିଲେ – 'ମୁଁ ଭାଷଣ ଶୁଣିବାକୁ ଆସିନି ମାମୁ – ଏମିତି ତ ଆମ ପାର୍ଟିର ନେତାମାନେ ନିତିଦିନ ବଡ଼ ବଡ଼ କଥାମାନ କହୁଛନ୍ତି । ଅର୍ଥ କିମ୍ବା କ୍ଷମତା ଟିକେ ପାଖରେ ନଥିଲେ ଆଜିର ଏ ଚାରିଟଙ୍କାକୁ କେଜିଏ ଲୁଣ ଯୁଗରେ ଚଳିହେବ ତ ମାମୁ ? ଆଉ ଜାଣିଛତ ଝିଅ ପାଇଁ ପାତ୍ରଟିଏ ଖୋଜିଲେ ସାଧାରଣ ପ୍ରାଇମେରୀ ସ୍କୁଲ ଶିକ୍ଷକକୁ ବି ଦେବାକୁ ପଡ଼ିବ ରଙ୍ଗୀନ ଟିଭି, ବଜାଜ୍ ସ୍କୁଟର, ରେଫ୍ରିଜରେଟର୍ ଆଉ କେତେ କ'ଣ । ଆଦର୍ଶକୁ ଧରି କ'ଣ ମଣିଷ ଘୋରି ଖାଇବ ?'

ମୁଁ ମୋ ଅସହାୟ ଅବସ୍ଥା ସୂଚାଇ କହିଲି – 'ତା' ବୋଲି କଣ ଏ ଘୁଷ୍‌ଖୋରି ବ୍ୟବସାୟକୁ ମୁଁ ବି ଜାଣିଶୁଣି ପ୍ରଶ୍ରୟ ଦେବି ? ଏମିତି କାମ ମୋ ହାତରେ ହେବନି ନରସିଂହ । ନୈତିକତା ଯେତେ ତଳକୁ ଖସିଯାଇଥିଲେ ବି ଆଜି ବି ତ ଏ ଦେଶରେ ଭଲ ମଣିଷ ଅଛନ୍ତି ଆଉ ସଚ୍ଚୋଟ ଡ଼ିଏଫ୍‌ଓ ମାନେ ବି ଅଛନ୍ତି । ଏଡ଼ିଏଫ୍‌ଓ ଯଦି ମୋତେ ଓଲଟା ପୋଲିସ୍ ହାତରେ ଦେଇଦେବେ ।

ମୋ କଥା ଶୁଣି ଭଣଜା ଠିଆ ହୋଇସାରିଥିଲେ । ଖଦିମୁଣି ପୁଣି ବାଁ କାନ୍ଧରେ ଯଥା ସ୍ଥାନରେ ସ୍ଥାପନ କରୁ କରୁ କହିଲେ – "ତମେ ସୁପାରିଶ୍ କରି ନଦେଲେ କ'ଣ ମୋ କାମ ବାକି ରହିଯିବ ମାମୁ ? ଆମ ଲୋକାଲ୍ ଏମ୍‌ଏଲ୍‌ଏ, ଏମ୍‌ପି ଆଉ ଜିଲ୍ଲାର ମନ୍ତ୍ରୀ କଣ ନାହାନ୍ତି ? ମୁରବି ଶ୍ରେଣୀର ଜଣେ ପାଖରେ ଅଛ ବୋଲି ସିନା ଖାତିର କରି ତମ ପାଖକୁ ଆସିବା କଥା – ନହେଲେ...'

କଣ ସବୁ ଗୁଣୁଗୁଣେଇ ସେ ଘରୁ ଚାଲିଗଲେ । ମନେହେଲା ବାହାରେ ସେ କାହାକୁ କହୁଛନ୍ତି – 'ବୃଦ୍ଧାବେଶ୍ୟା ତପସ୍ୱିନୀ !'

ନରସିଂହ ଭଣଜାର ବହିରାଗମନ ପରେ ଅନେକ ଦିନ ପର୍ଯ୍ୟନ୍ତ କେହି ଆଉ ମୋ କୁଶଳ ସମାଚାର ନେବାକୁ ଆସିନଥିଲେ । ତେଣୁ ଯେଉଁଦିନ ବୃନ୍ଦାବନ ହଠାତ୍ ଆମ ଘରକୁ ଆସି ରୀତିମତ ପ୍ରଣାମ କରି ବସିଲା ମୁଁ ଆନନ୍ଦିତ ହେବା ସଂଗେ ସଂଗେ ପ୍ରମାଦ ମଧ୍ୟ ଗଣିଥିଲି । ଅନୁଭୂତିରୁ ଜାଣିପାରିଥିଲି ସ୍ୱାର୍ଥଜଡ଼ିତ କୌଣସି ଆବଶ୍ୟକତା ନପଡ଼ିଲେ ଆଜିକାଲି ପ୍ରାୟ କେହି କେବଳ ଆଶୀର୍ବାଦଟିଏ ପାଇବା ଆଶାରେ କୌଣସି ବୁଢ଼ାଙ୍କ ପାଖକୁ ଯାଆନ୍ତିନି । ବୁଢ଼ା ବାପାମା'ଙ୍କ ସେବା ଶୁଶ୍ରୂଷା କିଛି ପରିମାଣରେ ରହିଥିଲେ ମଧ୍ୟ କେବଳ କର୍ତ୍ତବ୍ୟ ଅନୁରୋଧରେ ଅନ୍ୟ ବୃଦ୍ଧ ଗୁରୁଜନଙ୍କ ନିଃସ୍ୱାର୍ଥ

ସେବା କରିବା ଯୁଗ ଆଜି ପ୍ରାୟ ଉଭେଇ ଗଲାଣି । ତେଣୁ ବୃନ୍ଦାବନ ଯେ ଆଜି ଖାଲି ମୋ ଭଲମନ୍ଦ ବୁଝିବା ଆଶାରେ ଘରକୁ ଆସିଛି ସେ, ସ୍ୱପ୍ନିଳ ଆଶା ମୋର ନଥିଲା । ତଥାପି ବୃନ୍ଦାବନକୁ ତ ତା' ପିଲାଦିନରୁ ଦେଖିଆସିଛି – ସେ ଲେଖାଯୋଖାରେ ମୋ ପୁତୁରା ହେବ । ଗରିବ ଘରର ପିଲା ହେଲେ ମଧ୍ୟ ଏଣୁତେଣୁ ସାହାଯ୍ୟ ଭିକ୍ଷାକରି ନିଜ ଅଧ୍ୟବସାୟ ବଳରେ ସେ ମେଟ୍ରିକ୍ୟୁଲେଶନ୍ ଭଲକରି ପାସ୍ କରିଥିଲା । ତା' ଉପରେ ତେଣୁ ମୋର ସ୍ନେହ ଥିଲା ସ୍ୱାଭାବିକ । ଶୁଣିଥିଲି ସେ ସିଟି ଟ୍ରେନିଂ ନେଇ ଏବେ ଶିକ୍ଷକତା କରୁଛି ପଇଁତାଳିଶ କିଲୋମିଟର ଦୂର ଜୟପାଟଣା ନିକଟସ୍ଥ କେଉଁ ଏକ ପ୍ରାଥମିକ ସ୍କୁଲରେ । ତେବେ ହପ୍ତାକୁ ଚାରିଦିନ ଗାଁରେ ଥାଏ ବୋଲି ଶୁଣିଥିଲି । କିନ୍ତୁ, ମୁଁ ଗାଁରେ ରହିବା ଦିନ ଠାରୁ ତା' ସଂଗରେ ମୋର ଏଇ ପ୍ରଥମ ଦେଖାସାକ୍ଷାତ ।

ଆର୍ଶୀବାଦ ଦେଉ ଦେଉ ପଚାରିଲି – "କେମିତି ଅଛୁରେ ବୃନ୍ଦାବନ ? ଜୟପାଟଣା ପାଖ କେଉଁ ସ୍କୁଲରେ ଚାକିରି କରୁଛୁ ପରା ? ପିଲାପିଲି ନେଇ ରହିଛୁ ନା ?"

ଶିକ୍ଷକସୁଲଭ ବିନୀତ ମୁଦ୍ରା ନେଇ ବୃନ୍ଦାବନ ବସିଥିଲା ମୁଁ ଦର୍ଶାଇଥିବା ଚଉକିଟାରେ । କହିଲା – 'କକେଇ, ସେ ସ୍କୁଲରେ ଶିକ୍ଷକଙ୍କ ପାଇଁ ଘର କାହିଁ ଯେ, ମୁଁ ଫେମିଲି ନେଇ ରହିବି ? ଗାଁରେ ଲୋକଙ୍କର ଯେଉଁ ଅବସ୍ଥା ସେଥିରେ ଗୁହାଳଟିଏ ବି ଭଡ଼ାରେ ଖୋଜିଲେ ମିଳିବନି । ଯଦି ଅବା ମିଳେ ଫ୍ୟାମିଲି ରଖିଲେ ମାଇନର୍ ସ୍କୁଲଟିଏ ଏତେ ପାଖରେ କାହିଁ ଯେ, ପୁଅ ଝିଅ ପାଠ ପଢ଼ିବେ ? ସ୍କୁଲର ଗୋଟାଏ କୋଠରିରେ ଆମ ଦୁଇ ଶିକ୍ଷକ କୌଣସିମତେ ରହିଯିବା କଥା ।'

"ଆଉ ରନ୍ଧାବଢ଼ା ଖିଆପିଆ ?"

"ଆଗରୁ କିଏ ଜଣେ ସେ ସ୍କୁଲ ହତାରେ ଚାଳ ବାଉଁଶର କୁଡ଼ିଆଟିଏ କରି ଦେଇଥିଲା ଯେ, ସେଇଠି ଆମ ସ୍କୁଲ ଚପରାସୀ ଗଣ୍ଡିଏ ସିଝାଇଦିଏ ।"

"ତୁ କ'ଣ ଏବେ ଛୁଟିରେ ଆସିଛୁ ?"

ବୃନ୍ଦାବନ ତାର ଦି ପାପୁଲି ଘଷୁ ଘଷୁ ଟିକିଏ ଲାଜେଇ କହିଲା – 'ଆଜି କାଲି କେଉଁ ଶିକ୍ଷକ ଛୁଟି ନିଏ କକେଇ ? ତମ ପାଖରେ ଲୁଚେଇବି କ'ଣ ? ଆମେ ଦୁଇ ଶିକ୍ଷକ ପାଳିକରି ଅଧା ଅଧା ଦିନ ଗାଁକୁ ଯାଉ । ତାରିଖ ନଦିଆ କେଜୁଏଲ ଛୁଟି ଦରଖାସ୍ତଟିଏ ସ୍କୁଲରେ ଥାଏ ଯେ, କେଉଁ ନିରୀକ୍ଷକ ଅଚାନକ ପରିଦର୍ଶନ କରିବାକୁ ଆସିଲେ ସେ ଦରଖାସ୍ତଟିଏ କାମରେ ଲାଗେ । ଆଜିକାଲି ନିଜ ଦରକାର ନଥିଲେ କିଏ ବି ପରିଦର୍ଶନ କରେ ଯେ କକେଇ ?'

ମୁଁ ଏମିତି ସବୁ ଘଟେ ବୋଲି ଶୁଣିଥିଲି । ଭାବୁଥିଲି ଶିକ୍ଷାବିଭାଗକୁ ବଦନାମ୍ କରିବା ଅଭିଳାଷରେ କେହି ଏସବୁ ଗୁଜବ ରଟାଉଛି । କିନ୍ତୁ ସେ ସବୁ ଯେ, ଅନେକାଂଶରେ ସତ ସେ କଥା ଜାଣି ମନ କେମିତି ଘାଣ୍ଟି ହୋଇଗଲା । ପଚାରିଲି - 'ଶିକ୍ଷକ ହୋଇ ଏମିତି କଲେ ପିଲାମାନେ କଣ ଶିଖିବେରେ ବୃନ୍ଦାବନ ?' ମନେହେଲା ବୃନ୍ଦାବନ ସେ ପ୍ରଶ୍ନପାଇଁ ପ୍ରସ୍ତୁତ ଥିଲା । କହିଲା - 'ସେଥିପାଇଁ ତ କକେଇ ମୁଁ ତୁମକୁ ଅନୁରୋଧ କରିବାକୁ ଆସିଛି । ମଣ୍ଡଳ ଶିକ୍ଷା ଅଧିକାରୀଙ୍କୁ ଟିକେ ଲେଖିଦେଲେ ସେ ଆମ ଗାଁ ସ୍କୁଲକୁ ମୋତେ ବଦଳି କରିଦିଅନ୍ତେ ।'

ଏଥର ବୁଝିପାରିଲି ବୃନ୍ଦାବନ ଏ ଆକସ୍ମିକ ଆଗମନ ଓ ଭକ୍ତିପୂତ ପ୍ରଣାମର ରହସ୍ୟ । ମୁଣ୍ଡ ହଲାଇ କହିଲି - 'ଏ ସବୁ ମୋ ଦେଇ ହେବନିରେ ବୃନ୍ଦାବନ ! ନିଜ ଗାଁ ସ୍କୁଲରେ ନରଖି ଶିକ୍ଷକମାନଙ୍କୁ ଦୂର ସ୍କୁଲରେ ରଖିବା ପଛରେ କିଛି ଗୋଟାଏ ନୀତିଗତ ଉଦ୍ଦେଶ୍ୟ ଥିବ । ମୁଁ ଏମିତି ସରକାରୀ କାର୍ଯ୍ୟରେ ହସ୍ତକ୍ଷେପ କରିବା ଅନୁଚିତ୍ ହେବ ।' ତା'ପରେ ତାକୁ ନିରାଶ ନ କରିବା ଅଭିଳାଷରେ ହିଁ ଯୋଡ଼ିଦେଲି - 'ଦେଖି କେଉଁ ଏମ୍ଏଲ୍ଏ କିମ୍ବା ଏମ୍ପିଙ୍କୁ । ଆମପରି ବୁଢ଼ାଙ୍କ ଅନୁରୋଧକୁ କିଏ ଅବା କାହିଁକି ଖାତିର୍ କରିବ କହିଲୁ ?'

ବୃନ୍ଦାବନ ହୁଏତ ପୁଣିଥରେ କିଛି କହିବାକୁ ଚାହୁଁଥିଲା । କଣ ଭାବିଲା କେଜାଣି ମୋତେ ଥରେ ଅନାଇ ପୁଣି ମୁଣ୍ଡ ତଳକୁ କରି ଚଉକିରୁ ଉଠି ଠିଆହେଲା ଏବଂ ନମସ୍କାରଟିଏ କରି ଧିରେ ଧିରେ ଘରୁ ବାହାରିଗଲା ।

ତା' ପରଠାରୁ ଆମ ଘରକୁ କେହି ଆଉ ଆସିନାହାନ୍ତି । ମୁଁ ବି ଏଥର ଧରିନେଇଥିଲି ଯେ, ଏପରି ଶୁଭାକାଂକ୍ଷୀଙ୍କ ମିଳନ ଅପେକ୍ଷା ନିଃସଂଗ ଜୀବନଯାପନ ଶ୍ରେୟସ୍କର । ନିଜ ସାଂଗରେ ନିଜେ ଏକୁଟିଆ ରହି ଶିଖିବା ତ ଏକଧରଣର ସାଧନା - ତପସ୍ୟା । କହନ୍ତି - ମଣିଷ ଏ ସଂସାରକୁ ଏକେଲା ହୋଇଆସେ ଆଉ ସଂସାରରୁ ଫେରିଯାଏ ମଧ୍ୟ ଏକେଲା । ତେଣୁ ସେ ସାଂଗସାଥୀ ଖୋଜିବସିବ ବା କାହିଁକି ? ମଣିଷ ନିଜେ ହିଁ ନିଜର ସଖା ନିଜର ବନ୍ଧୁ ।

ସେଦିନ ସକାଳେ ଚା' ଖାଇଲାବେଳେ ମୁଁ ଆମ ଶ୍ରୀମତୀଙ୍କୁ ସେ କଥା ହିଁ କହିବାକୁ ଚାହିଁଥିଲି । କହିଲି - 'ଆମେ ହେଉଛୁ ଏ ସଂସାରର ଦୁଇଦିନିଆ ମେହ୍‌ମାନ୍ । ଯେଉଁଠୁ ଆସିଥିଲୁ ସେଠାକୁ ଏବେ ଫେରିଯିବାର ସମୟ ପାଖେଇ ଆସିଲା । ଜୀବନର ବାକି କିଛି ଦିନ ଜପ ତପ ପୂଜାପାଠ ଭଜନକୀର୍ତ୍ତନରେ......'

ବାକ୍ୟ ପୂରା କରିବା ପୂର୍ବରୁ ହିଁ ମୋର ମନେହେଲା ଶ୍ରୀମତୀ ତାଙ୍କ ଚା' କପ୍‌ରୁ ମୁହଁ ଟେକି ମୋତେ ନିରେଖି ଚାହିଁଛନ୍ତି । ଝାମ୍ପିପଡ଼ିଲା ପରି କହିଲେ, 'ହଁ ହଁ, କହ

ଗିନି ମର୍ଦ୍ଦଳ ଆଉ ଖଞ୍ଜଣି ଦିଟା ଏଥର କିଣିଦେବା । ହଇଓ - ଆମ ଘରକୁ କେଉଁ ମେହମାନ୍ ଦି'ଦିନ ପାଇଁ ଆସିଲେ ସେ ଆମ ଘରେ ଏମିତି ଗିନି ମର୍ଦ୍ଦଳ ଖଞ୍ଜଣି ପିଟେ ? ତମ ବନ୍ଧୁ ମିଶ୍ରବାବୁ ଯେବେ ଆମ ଘରକୁ ଆସନ୍ତି ଦି' ଦିନ ଚା' ଜଳଖିଆ ଖୁସିଗପ ଖାଇବାପିଇବାରେ କଟେ ନା ଦୁହେଁ ମିଶି କୀର୍ତ୍ତନ କରି ବସ ?'

ମୁଁ ଟିକେ ଅଡୁଆରେ ପଡ଼ି ବୁଝେଇବାକୁ ଚେଷ୍ଟାକଲି । କହିଲି - 'ସେ କଥା ଠିକ୍ ନୁହେଁ ଯେ, ଆମେ ତ ଏବେ ବୁଢ଼ାବୁଢ଼ୀ ହେଲୁ, ଆମର ରହଣି ଆଉ ଅଳ୍ପଦିନ ରହିଲା ନା ନାହିଁ କହିଲ ?'

'ବୁଢ଼ାବୁଢ଼ୀ ହେଲୁ ମାନେ ?'

ମୁଁ ଏଥର ବାର୍ଦ୍ଧକ୍ୟ ସମ୍ବନ୍ଧୀୟ ମୋ ଗବେଷଣାଲବ୍ଧ ଜ୍ଞାନ ତାଙ୍କ ପାଖରେ ପ୍ରକାଶ କରିବାକୁ ଯାଇ କହିଲି - 'ମଣିଷର ଅର୍ଥ ଆହରଣ ଶକ୍ତି ଯେତେବେଳେ କମିଯାଏ ଓ ସେ ତାର କ୍ଷମତା ହରାଇବସେ, ଆରମ୍ଭ ହୁଏ ତାର ବାର୍ଦ୍ଧକ୍ୟ ଏବଂ ସେ ଯେତେବେଳେ ତାର ସେ ସାମର୍ଥ୍ୟ ଓ କ୍ଷମତା ପୁରାପୁରି ହରାଇଦିଏ, ଲକ୍ଷ୍ୟକାରୀ ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବ ତା'ଠାରୁ ଦୂରେଇ ଯା'ନ୍ତି ଏବଂ ସେ ସଂପୂର୍ଣ୍ଣ ଅଦରକାରୀ ତୁଚ୍ଛ ବୁଢ଼ା ହୋଇଯାଏ । ଆଜି ଯେହେତୁ ଆମର ସେଇ ଅବସ୍ଥା ଆମେ ବୁଢ଼ାବୁଢ଼ୀ ହେଲୁନି କି ?'

ଶ୍ରୀମତୀ ତାଙ୍କର ବିରକ୍ତି ଏଥର ଖୋଲାଖୋଲି ପ୍ରକାଶ କଲେ । କହିଲେ, 'ତେବେ ତୁମେ ବୁଢ଼ା ହୋଇଥିବ, ମୁଁ ବୁଢ଼ୀ ହେବି କାହିଁକି ?'

'କଣ କହୁଛ ? ମୁଁ ବୁଢ଼ା ହୋଇଗଲି ଆଉ ତମେ ସେଇ ଚିର.....'

ସେ ଏଥର ଟିକିଏ ମୁରୁକି ହସିଲେ । କହିଲେ - 'ତମେ ଗବେଷଣାଲବ୍ଧ ଜ୍ଞାନକୁ ନିଜେ ଟିକେ ପର୍ଯ୍ୟାଲୋଚନା କଲ । ମୁଁ କେବେ ଅର୍ଥ ଆହରଣ କରୁଥିଲି ଯେ, ଏବେ ସେ ସାମର୍ଥ୍ୟ ହରାଇ ବସିବି ? ଆଗ ଯେମିତି ଚାଉଳ, ଡ଼ାଲି, ତେଲ, ଲୁଣ ଆହରଣ କରୁଥିଲି ଆଜି ବି ତ ସେମିତି କରୁଛି । ଆଉ କ୍ଷମତା - ଆମ ବୈବାହିକ ଜୀବନ ପ୍ରାୟ ପଚାଶ ବର୍ଷ ପାଖାପାଖି ହୋଇଗଲା । ମନେପକାଇଲ, ତମେ ସେ ଭିତରେ କେବେହେଲେ କାଣିଚାଏ କ୍ଷମତା ବି ମୋତେ ଦେଇଛ ଯେ, ମୁଁ ସେ କ୍ଷମତା ହରାଇ ବସିବି ? ଖଟ ବିଛଣା ପକାଇବା, ଘର ଝଡ଼ାଝଡ଼ି କରିବା ଠାରୁ ଆରମ୍ଭ କରି ଚା' ଜଳଖିଆ ଭାତ ଡ଼ାଲି ରାନ୍ଧି କେଉଁଟା ଲୁଣିଆ ହୋଇଛି, କେଉଁଟା ପୋଡ଼ିଯାଇଛି ବୋଲି କାରଣେ ଅକାରଣେ ଗାଳିଖାଇବା ତ ଆମ ସ୍ତ୍ରୀଲୋକଙ୍କ ସବୁଦିନିଆ ଦଶା । ତାକୁ ତୁମେ କର୍ତ୍ତବ୍ୟ କହ ଅଥବା କ୍ଷମତା କହ ସେଇଟା କଣ ଗଲାଣି ଯେ, ମୁଁ ବୁଢ଼ୀ ହେବି ?'

ଆଉ ଶୁଣ ତମେ ଏ ବାର୍ଦ୍ଧକ୍ୟ ସମ୍ବନ୍ଧୀୟ ଗବେଷଣା ଫବେଷଣା ବନ୍ଦକର । ଏଥିରେ ଗବେଷଣା କରିବାର କଣ ଅଛି କହିଲ ? ବାର୍ଦ୍ଧକ୍ୟ ହେଉଛି ମଣିଷର ଏକ ମାନସିକ ଅବସ୍ଥା । ସେ ଯେଉଁଦିନ ନିଜେ ନିଜକୁ ଅଦରକାରୀ ବୋଲି ଗଣନା କରେ ବୁଢ଼ା ହୋଇଯାଏ । ନିଅ ଗାନ୍ଧିଜୀଙ୍କୁ । ସେ ଆଫ୍ରିକାରୁ ଭାରତ ଫେରିଆସିଲା ପରେ କେବେ ଅର୍ଥ ଆହରଣ କରିଥିଲେ ନା ତାଙ୍କର କିଛି କ୍ଷମତା ଥିଲା ? ସେ ତ କେବେ ନିଜକୁ ବୁଢ଼ା ବୋଲି ଜ୍ଞାନ କରିନାହାନ୍ତି ! ଆଉ ଆଇନ୍‌ଷ୍ଟାଇନ୍‌ଙ୍କୁ ଦେଖ - ତମ ଇଂଜିନିୟର ବିଶ୍ୱେଶ୍ୱରାୟା ତ ୧୦୨ ବର୍ଷ ବୟସରେ ବି ନିଜକୁ ବୁଢ଼ା ବୋଲି ଭାବୁନଥିଲେ । ମୋରାରଜୀ ଦେଶାଇ - କମଳାପତି ତ୍ରିପାଠୀ....'

ଆଲେକ୍‌ଜାଣ୍ଡରଙ୍କ ଅଶ୍ୱାରୋହୀ ବାହିନୀର ସୁଶୃଙ୍ଖଳ ଆକ୍ରମଣରେ ପୁରୁରାଜାଙ୍କ ଗଜାରୋହୀ ସେନାନୀ ଛତ୍ରଭଙ୍ଗ ଦେଲାପରି ଶ୍ରୀମତୀଙ୍କ ଅକାଟ୍ୟ ଯୁକ୍ତିର ପ୍ରଖରତାରେ ମୁଁ ଛତ୍ରଭଙ୍ଗ ଦେଲି ଏବଂ ମୋ ବାରନ୍ଦାସ୍ଥିତ ଚେୟାରକୁ ଚାଲିଆସିଥିଲି । ସେଠାରେ ଏକୁଟିଆ ବସି ମୋର ବିପର୍ଯ୍ୟୟ ରୋମନ୍ଥନ କଲାବେଳେ ଅନିଚ୍ଛାସତ୍ତ୍ୱେ ମଧ ଏ ମହିଳାମାନଙ୍କ ପ୍ରଖର ବୁଦ୍ଧିକୁ ପ୍ରଶଂସା ନକରି ରହିପାରିନଥିଲି ।

ମଧ୍ୟାହ୍ନ ଭୋଜନ ପରେ ଦାଣ୍ଡଘର ଖଟରେ ଗଡ଼ି ବିଶ୍ରାମ ନେଉଛି ହଠାତ୍ ଘର ଭିତରେ କୋଳାହଳ ଶୁଣାଗଲା । ଚଢ଼େଇଙ୍କ କଳରବ ପରି ନାନାଦି ଚିଁ ଚାଁ ଶବ୍ଦ । ଧଡ଼ପଡ଼ ହୋଇ କଥା କଣ ଜାଣିବା ଆଶାରେ ଭିତର ବାରନ୍ଦାକୁ ଆସି ଦେଖିଲି ଛୋଟ ବଡ଼ ଅନେକ ଝିଅ ଶ୍ରୀମତୀଙ୍କୁ ବେଢ଼ିଯାଇ ଏଇ କୋଳାହଳ କରୁଛନ୍ତି । କେହି ସ୍ୱେଟର ବୁଣା କଣ୍ଟାଧରି ନୂଆ ପ୍ରାଟର୍ଣ୍ଣଟିଏ ଶିଖିବାକୁ ଚାହୁଁଛି ତ କେହି ତା' ମାପର ବ୍ଲାଉସ୍ କାଟିଦେବା ପାଇଁ କଇଞ୍ଚିଟିଏ ଦେଖାଉଛି । କେହି ସେ ତିଆରି କରିଥିବା ଚିତ୍ରରେ କେଉଁଠି କି ରଙ୍ଗ ଦେବ ବୋଲି ପଚାରୁଛି ତ ଆଉ କେହି ବାହାରେ ଠିଆହୋଇ ରହି ତା' ଛୁଆର ପତଳା ଝାଡ଼ା ପାଇଁ ଔଷଧ ମାଗୁଛି । ଏଣେ ଗୀତ ଶିଖାଳି ଦି'ଜଣ ତାଙ୍କ ରାଗରାଗିଣୀ ଆରମ୍ଭ କରିଦେଲେଣି ଏବଂ ଶ୍ରୀମତୀ ନିଜ ବିରକ୍ତି ପ୍ରକାଶ କରି କହୁଛନ୍ତି ଯେ, ଆଜି ଗୀତ ଶିଖାଇବା ପାଇଁ ତାଙ୍କର ସମୟ ନାହିଁ ।

ଏଥର ବୁଝିପାରିଲି ମୁଁ ସିନା ସତରେ ଏକ ନିଃସଙ୍ଗ ବୃଦ୍ଧ, ଏପରି ସାଙ୍ଗସାଥୀଙ୍କ ଗହଳି ଭିତରେ ଇଏ କାହିଁକି ନିଜକୁ ବୃଦ୍ଧା ବୋଲି ସ୍ୱୀକାର କରିବେ ?

ତା'ଆର ଦିନର କଥା । ସବୁଦିନ ପରି ମୁଁ ସେଦିନ ବି ବାହାର ବାରନ୍ଦାର ଚେୟାରରେ ବସି ଆକାଶକୁ ଅନାଇଛି ଦଳେ ଛୋଟ ପିଲା ଅଗଣା ଭିତରକୁ ଚାଲିଆସି ନମସ୍କାର କଲେ । ସ୍କୁଲ ପିଲା ନିଶ୍ଚୟ । ମୋ ପ୍ରଶ୍ନର ଉତ୍ତରରେ କହିଲେ ଯେ, ସମୋନେ ଆମ ଗାଁର 'କଲରାପତରିଆ ବାଘ କ୍ଲବ୍'ର ସଦସ୍ୟ । ମୁଁ ସାହାଯ୍ୟ ଦେଇଥିବା ଟଙ୍କାରେ ସେମାନେ ଯେଉଁ କ୍ରିକେଟ୍ ବ୍ୟାଟ୍‌ଟିଏ କିଣିଛନ୍ତି, ଗାଁର

ରାଇଜିଂଷ୍ଟାର ଦଳ (କେହି ଜଣେ ଗଧିଆ ଦଳ ବୋଲି ଟିପ୍ପଣୀ ଦେଉଥିଲା) ସେ ବ୍ୟାଟ୍‌କୁ ଦେଖି ଆସନ୍ତା କାର୍ତ୍ତିକ ପୂର୍ଣ୍ଣମୀ ଦିନ ସେମାନଙ୍କ ମ୍ୟାଚ୍ ଖେଳିବା ପାଇଁ ଚ୍ୟାଲେଞ୍ଜ ଦେଇଛନ୍ତି । ତା'ପରେ ସେମାନେ ଅନୁରୋଧ କରି କହିଲେ, 'ଆମର ବୋଲିଂ ଓ ବ୍ୟାଟିଂ ତ ଏତେ ଭଲ ନୁହେଁ, ଆପଣ ନିଜେ ଟିକେ ଶିଖାଇ ଦିଅନ୍ତେ!'

ସ୍କୁଲ ତ ଗାଁରେ ପଶ୍ଚିମ ପଟ ମୁଣ୍ଡରେ - ବେଶ୍ ଗୁଡ଼ିଏ ବାଟ । ଆଣ୍ଠୁ ଦରଜ କଥା କହି ମୁଁ ଚାଲିବା ଅସୁବିଧା ଦର୍ଶାଇଲି । ସେମାନେ କିନ୍ତୁ ଆମେ ଆପଣଙ୍କୁ ହାତଧରି ନେଇଯିବୁ କହି ଯୋଡ଼ିଦେଲେ - ଆପଣ ଶିଖାଇ ନଦେଲେ ସେ ନରହରିର ଗୁଣ୍ଡାଦଳକୁ ହରାଇ ହେବନି ।'

ନରହରି? ହରିହରର କୁଳାଙ୍ଗାର ପୁଅ? ମୁଁ ଖେଳ ଶିଖାଇ ଦେବାପାଇଁ ରାଜି ହୋଇଗଲି ।

ଏବେ କେତେ ଦିନ ପିଲାଙ୍କ ସଂଗେ ଖେଳିଲା ପରେ ଦେଖୁଛି - ପିଲାମାନେ ବୋଲିଂ ମନ୍ଦ କରୁନାହାନ୍ତି । ଇନ୍ ସ୍ୱିଙ୍ଗର୍, ଆଉଟ୍ ସ୍ୱିଙ୍ଗର୍, ଗୁଗ୍‌ଲି । ଛାଞ୍ଚୁଣି ଧରିଲା ପରି ବ୍ୟାଟ୍‌କୁ ବି ଆଉ ଧରୁନାହାନ୍ତି । ଷ୍ଟ୍ରେଟ୍ ବ୍ୟାଟ୍, ବଲ୍‌କୁ ସାମନା କରୁଛନ୍ତି ସିଧା ବ୍ଲେଡ୍‌ରେ ।

ଆସନ୍ତା ରବିବାର ଦିନ ମ୍ୟାଚ୍ । ଏଇ କଲରାପତରିଆ ମାନେ ମୋତେ ତାଙ୍କ ମ୍ୟାନେଜର କରି ଡ଼ାକିଛନ୍ତି । ମଧ୍ୟାହ୍ନ ଖେଳ ବିରତି ବେଳେ ଭୋଜନ ପାଇଁ ବି ନିମନ୍ତ୍ରଣ । କାର୍ତ୍ତିକ ମାସ ତ, ଆଇଁଷ କୁଆଡ଼େ ହେବନି । କ'ଣ ହବିଷ ଭାତ, ଗୋଟାମୁଗ ଆଉ ଟମାଟୋ ଚଟଣି । ବିରତିବେଳେ ହାଲୁକା ଖାଇବା ଭଲ ବୋଲି ଉପଦେଶ ଦେଇ ମୁଁ ପରାମର୍ଶ ଦେଲି - 'କିଛି ବାଇଗଣ ଭଜା ଆଉ ସାମାନ୍ୟ ସାଲାଡ଼୍ ବି ରଖିବ । ମୂଳା ତ ବେଶ୍ ମିଳୁଛି । ଟମାଟୋ, ପିଆଜ ଆଉକିଛି ଦହି ମିଶାଇ ଦେଲେ ହେଲା ।'

ପିଲାମାନେ ନିମନ୍ତ୍ରଣ ଦେଇ ଫେରିଯାଉଥିଲେ। ମୁଁ ଦୂରରୁ ଡ଼ାକି କହିଲି - 'ଆରେ ହେ ଚିତାବାଘ ମାନେ - ତମର ସେ ମଧ୍ୟାହ୍ନ ଭୋଜନର ସମସ୍ତ ଖର୍ଚ୍ଚ ମୋ ଉପରେ ।'

ପିଲାମାନେ ଆନନ୍ଦ କୋଳାହଳ କରି ଫେରିଯାଉଥିଲେ । ଆଉ ମୁଁ ମୋ ଚେୟାରକୁ ଫେରିଆସି ଗଣିବସିଲି କାର୍ତ୍ତିକ ପୂର୍ଣ୍ଣମୀ ରବିବାରକୁ ଆଉ କେତେ ଦିନ ରହିଲା!

# 'ମା ମାର୍ଜାର....'

ଶୁଣାଯାଏ ଯେ, ଥରେ ଆରବ ଦେଶର କେଉଁ ପ୍ରିନ୍ସ ଆବୁବେନ୍ ମହମ୍ମଦ ଦୀନ ଇଲାହୀ ବୁଲ୍‌ବୁଲ୍ ଉଲ୍ ହୁଲକ୍ କି ସେପରି କିଛି ନାମଧାରୀ ଜଣେ ରାଜକୁମାର ଭାରତ ପରିଦର୍ଶନରେ ଆସିଥିଲେ । ତାଙ୍କର ସେ ପରିଦର୍ଶନର ଉଦ୍ଦେଶ୍ୟ ଠିକ୍ କଣ ଥିଲା କହିବା କଠିନ - ହୁଏତ ସେ ଆସିଥିଲେ ଖଣିଜ ତୈଳ କାରବାର ସମ୍ବନ୍ଧୀୟ କୌଣସି ଆଲୋଚନା କରିବା ଉଦ୍ଦେଶ୍ୟରେ ଅଥବା ପୋଷା ବାଜ ସାହାଯ୍ୟରେ ବିଭିନ୍ନ ଜାତୀୟ ପକ୍ଷୀ ଶୀକାର କରିବା ମତଲବ ନେଇ, ନତୁବା ରାଜସ୍ଥାନର ଅଭୟାରଣ୍ୟରେ କୌଣସିମତେ ପଶି ସୁରକ୍ଷିତ ବିରଳ ବଷ୍ଟାର୍ଡ୍ ପକ୍ଷୀମାରି ନେଇ ତାଙ୍କ ସାଂଗସାଥୀ ଆରବ ରାଜକୁମାର ଓ ରାଜକୁମାରୀଙ୍କୁ ଚକିତ କରାଇଦେବା ଅଭିଳାଷ ପୋଷଣ କରି କିମ୍ବା ତାଙ୍କ ମତଲବ ଥିଲା ଆଉ ଅନ୍ୟ କିଛି । ଆଗ୍ରାର ତାଜ ଆଦି କେତେ ଦର୍ଶନୀୟ ଏବଂ ରମଣୀୟ ସ୍ଥାନ ପରିଭ୍ରମଣ କରି ଦିନେ ସେ ହଠାତ୍ ସଞ୍ଜବେଳେ ପହଞ୍ଚିଗଲେ ଦିଲ୍ଲୀସ୍ଥିତ ଏକ ପଞ୍ଚତାରକା ହୋଟେଲ ସାମନାରେ । ଧନ କୁବେରମାନଙ୍କ ରାଜ୍ୟର ଏକ ରାଜକୁମାର, ହୋଟେଲ ମେନେଜର, ସହକାରୀ ମେନେଜର ଏବଂ ଅଭ୍ୟର୍ଥନା ଦାୟିତ୍ୱରେ ରହିଥିବା ପରିଚାରିକା ହୋଷ୍ଟେସ୍‌ମାନେ ଅନ୍ୟାନ୍ୟ କାମ ଧନ୍ଦା ଛାଡ଼ି ଧାଇଁଆସିଲେ ରାଜକୁମାରଙ୍କ ପାଖକୁ ଏବଂ କୁର୍ଣ୍ଣିସ୍ କରି କରି ତାଙ୍କୁ ଏବଂ ତାଙ୍କ ସହଚରବର୍ଗଙ୍କୁ ପାଛୋଟି ନେଇଗଲେ ହୋଟେଲର ସୁସଜ୍ଜିତ ପ୍ରକୋଷ୍ଠମାନଙ୍କୁ ।

ସାୟଂକାଳୀନ ପାନଭୋଜନ ସମାପନାନ୍ତେ ରାଜକୁମାର ଯେତେବେଳେ ତାଙ୍କ ସୁକୋମଳ ପଲଙ୍କ ଉପରେ ଅଙ୍ଗନ୍ୟସ୍ତ କଲେ ତାଙ୍କୁ ତନ୍ଦ୍ରା ଘାରିଆସୁଥିଲା, କିନ୍ତୁ ନିଦ୍ରାଭିଭୂତ ହେବା ପୂର୍ବରୁ ସେ ପ୍ରକୋଷ୍ଠର ସୁନ୍ଦର ସାଜସଜ୍ଜା ଆଡ଼କୁ ଥରେ ନଜର ଘୂରାଇ ଆଣିଲେ । ସେ ସାଜସଜ୍ଜା ଥିଲା ଅନିନ୍ଦ୍ୟ । ଅନ୍ତରାଳରୁ ବୀଣାର ସୁଲଳିତ ମୃଦୁ ମଧୁର ନିନାଦ ପ୍ରକୋଷ୍ଠକୁ ଝଙ୍କୃତ କରୁଥିଲା । ଅଦୃଶ୍ୟ ସ୍ଥାନମାନଙ୍କରୁ ବିଚ୍ଛୁରିତ ହୋଇ ପ୍ରବେଶ କରୁଥିବା ଝିଲିମିଲି ଆଲୁଅ ଉଦ୍ଭାସିତ କରୁଥିଲା ପ୍ରକୋଷ୍ଠକୁ । ବାଇଗଣୀ ରଙ୍ଗର ପ୍ଲାଷ୍ଟିକ୍ ଇମଲସନ୍‌ରେ ରଞ୍ଜିତ ଛାତ ସେ ଆଲୁଅରେ ଦେଖାଯାଉଥିଲା ଅତ୍ୟନ୍ତ ରମଣୀୟ ଓ ସ୍ୱପ୍ନିଳ । ରାଜକୁମାର ହାଇମାରି ଅର୍ଦ୍ଧନିମୀଳିତ ନୟନରେ ଅନାଇଥିଲେ ସେ ଛାତର ବୈଚିତ୍ର୍ୟକୁ । ହଠାତ୍ ତାଙ୍କ ନଜର ପଡ଼ିଗଲା

ଛାତର ଏକ ବିଚିତ୍ର ଚିତ୍ର ଉପରେ । ସେପରି ଏକ ପରିବେଶ ଏବଂ ପରିବେଷ୍ଟନୀ ମଧ୍ୟରେ ଚିତ୍ରଟି ଦେଖାଯାଉଥିଲା ଅଜୀବ ଖାପଛଡ଼ା । ରାଜକୁମାର ଚିତ୍ରଟିକୁ ଅନାଇ ରହିଥିବା ମଧ୍ୟରେ ଅଜୀବ ଚିତ୍ରଟି ସଜୀବ ହୋଇ ଉଠି ବିଚରଣ କରିବାକୁ ଆରମ୍ଭ କରିଦେଲା ।

ରାଜକୁମାର ପଲଙ୍କରୁ ଲମ୍ଫ ପ୍ରଦାନ କଲେ । ତଳେ ବିଛାଇହୋଇ ପଡ଼ିଥିବା କୋମଳ ଗାଲିଚା ଉପରେ କିଛି ସମୟ ଡ଼ିଆଁ ଡ଼େଇଁ କରି ଆତଙ୍କ ଚିତ୍କାର କଲେ, ଡ଼ାକରା ଘଣ୍ଟି ବୋତାମ କିଛି ସମୟ ଚିପିଧରି ଆପତ୍‌କାଳୀନ ଫୋନ୍ ରିସିଭର୍ ଉଠାଇଲେ । ଫୋନ୍‌ରେ କିଛି ସମୟ ତାଙ୍କ ବାକ୍‌ସ୍ଫୂର୍ତ୍ତି ହେଲାନି, କିନ୍ତୁ ପରିଶେଷରେ ସେ ଅସ୍ପଷ୍ଟ ଉଚ୍ଚାରଣ କରିଥିଲେ - 'ଡ୍ରାଗ୍ ଡ୍ରାଗ୍.....'

ତାହାହିଁ ଥିଲା ମ୍ୟାନେଜରଙ୍କ ପାଇଁ ଯଥେଷ୍ଟ । ସେ ଜାଣିପରିଲା ରାଜକୁମାର କୌଣସି କାରଣରୁ ଭୟାନକ ଭାବେ ଆତଙ୍କିତ । କାଳବିଳମ୍ବ ନକରି ସେ ପ୍ରକୋଷ୍ଠକୁ ଧାଇଁଆସିଲେ । ଏହି ସମୟ ମଧ୍ୟରେ ହୋଟେଲରେ ଚାଞ୍ଚଲ୍ୟ ଖେଳିଯାଇସାରିଥିଲା । ବିଭିନ୍ନ ଦିଗରୁ ଧାଇଁ ଆସିଥିଲେ ହୋଟେଲର ଝକମକ ପୋଷାକଧାରୀ ସେବକ ଅନୁସେବକଗଣ । ଧାଇଁ ଆସିଥିଲେ ରାଜକୁମାରଙ୍କ କେତେ ପାର୍ଶ୍ୱଚର ।

ରାଜକୁମାରଙ୍କ ଆତଙ୍କିତ ଦୃଷ୍ଟି ନିବଦ୍ଧ ଥିଲା ଛାତର ସେ ଜୀବ ଉପରେ ଅଙ୍ଗୁଳି ନିର୍ଦ୍ଦେଶ କରି କିଛି କାଳ ଥତମତ ହେଲାପରେ ସେ ଅତି କଷ୍ଟରେ ଉଚ୍ଚାରଣ କଲେ - 'ଡ୍ରାଗନ୍' ।

ମ୍ୟାନେଜର ପ୍ରୋଟକଲ୍ ଅନୁମୋଦିତ ସୀମାରେଖା ମଧ୍ୟରେ ମୁଖ ବିସ୍ତାର କରି ମୃଦୁ ହାସ୍ୟକଲେ ଏବଂ କହିଲେ - 'ଝିଟିପିଟି' । ପୋଷାକଧାରୀ ସେବକଗଣ ମଧ୍ୟ ଯଥାସାଧ୍ୟ ହାସ୍ୟ ସମ୍ବରଣ କରି କହିଉଠିଲେ - 'ଝିଟିପିଟି ।'

ରାଜକୁମାରଙ୍କ ବିରକ୍ତି ଏଥର ସ୍ପଷ୍ଟ । ସେ କ'ଣ ସବୁ ଆରବ ଭାଷାରେ କହିଲା ପରେ ଜଣେ ପାର୍ଶ୍ୱଚର ବୁଝାଇଦେଲା ଯେ, ରାଜକୁମାର କହୁଛନ୍ତି - 'ନୋ ଝିଟିପିଟି - ଡ୍ରାଗନ୍ ଶାବକ । ମଦର୍ ଡ୍ରାଗନ୍ ପ୍ରକୋଷ୍ଠ ଭିତରେ କେଉଁଠି ଲୁଚି ରହିଛି ।'

ମ୍ୟାନେଜରଙ୍କର ଯାବତୀୟ ଅର୍ଥ ବ୍ୟର୍ଥ ହୋଇଗଲା ଏବଂ ରାଜକୁମାର ସଦଳବଳେ ହୋଟେଲ ପରିତ୍ୟାଗ କଲେ । ତା'ପରେ କଣ ସବୁ ଘଟିଥିଲା ଜଣାନାହିଁ । ହୁଏତ ଉଲ୍ଲିଖିତ ଆରବ ଦେଶ ସଂଗରେ ଭାରତର କୂଟନୈତିକ ସମ୍ପର୍କ କିଛିକାଳ ପାଇଁ ଛିନ୍ନ ହୋଇଥିବ କଥା କିନ୍ତୁ ରହିଗଲା ।

ଏପରି କୂଟନୈତିକ ସମ୍ପର୍କ ଜଡ଼ିତ ଝିଟିପିଟି ସମସ୍ୟା ଚୀନ୍ ଦେଶରେ ଦେଖାଦେବା ସମ୍ଭବ ନୁହେଁ, ଯେହେତୁ ଶୁଣାଯାଏ ଯେ, ସେ ଦେଶରେ ପଞ୍ଚତାରକା

ହୋଟେଲ କାହିଁକି, ଯେ କୌଣସି ହୋଟେଲ କିମ୍ବା ସାଧାରଣ ଘରେ ଝିଟିପିଟିଟିଏ ଦେଖାଦେଲେ ଗୃହକର୍ତ୍ତା ଅଥବା କର୍ତ୍ତ୍ରୀ ତାକୁ ସଯତ୍ନରେ ଧରି ନେଇ ଜିରା ମସଲା ସହ କିଛି ସୋରିଷବଟା ଓ ଭିନିଗାର ମିଶାଇ ବୋତଲରେ ଭରିଦିଅନ୍ତି ଏବଂ କିଛିଦିନ ଖରାରେ ଦେଖାଇ ଦେଲାପରେ ସେ ସ୍ୱାଦିଷ୍ଟ ଆଚାରକୁ ଚାଉଚାଉ କିମ୍ବା ଚାଉମିନ୍ ସଂଗରେ ବିଶିଷ୍ଟ ଅତିଥି ଅଭ୍ୟାଗତଙ୍କୁ ପରିବେଷଣ କରିଦିଅନ୍ତି ।

ଚୀନା ଲୋକେ ଆମ ଭାରତୀୟଙ୍କ ପରି ଅଯଥା ଭାବପ୍ରବଣ କିମ୍ବା ଫମ୍ପା ଆଦର୍ଶବାଦୀ ନୁହନ୍ତି । ସେମାନେ ବାସ୍ତବବାଦୀ । ଝିଟିପିଟି କାହିଁକି, ଉପଦ୍ରବକାରୀ ସାପ ବେଙ୍ଗ, ମୂଷା ବିଲେଇ ଏପରିକି ବୁଲା କୁକୁର ଆଦିକୁ ମଧ୍ୟ କଟା ବଛାକରି ରନ୍ଧନାନ୍ତେ ଭୋଜନ କରିଦିଅନ୍ତି । ଫଳରେ ଏସବୁ ପ୍ରାଣୀଙ୍କ ଉପଦ୍ରବ ସେ ଦେଶରେ ନାହିଁ ।

ଆମ ଦେଶ କଥା କିନ୍ତୁ ଅଲଗା। ଜନସମାଜ ଭିତରେ ନିରଙ୍କୁଶ ଅତ୍ୟାଚାର କରିବା ପାଇଁ ସତେ ଯେମିତି ସବୁ ପ୍ରାଣୀଙ୍କ ସାର୍ବଜନୀନ ଅଧିକାର। ଆଉ ସେ ସବୁ ଦୋଷକୁ ଘଣ୍ଟ ଘୋଡ଼ାଇବା ପାଇଁ ପ୍ରତ୍ୟେକଙ୍କ ପଛରେ ଜଣେ ଜଣେ ବଡ଼ ଦେବତା । ମୂଷିକ ହେଲା ବିଘ୍ନରାଜ ଗଣେଶଙ୍କ ବାହନ । ଘରଦ୍ୱାର, ବିଲବାଡ଼ି, ଧାନ ଅମାର, ବହି ଆଲମିରା ପ୍ରଭୃତି ଭୋଗ ଦଖଲ କରିବାରେ ତେଣୁ ତାର ବିଶେଷ ବାଧାବିଘ୍ନ ନାହିଁ । ବେଙ୍ଗ ବି ଶନି, ରାହୁ କି କେତୁଙ୍କ ବାହନ । ଏ ମହାଗ୍ରହଙ୍କୁ ନଡ଼ରିବ ଅବା କିଏ ? ଆମ ସାପ କଥା ତ ଛାଡ଼୍ - ସ୍ୱୟଂ ଶିବଙ୍କ ଗଳାରେ ଛନ୍ଦି ହୋଇ ଫଣା ଟେକି ବିଶ୍ୱବ୍ରହ୍ମାଣ୍ଡକୁ ଅନାଇ ରହିଛି । ଭଗବାନ ବିଷ୍ଣୁ ବି କୁଆଡ଼େ ଗୋଟିଏ ବିରାଟ ସାପ ଉପରେ ଶୋଇ ରହିଛନ୍ତି । ତେଣୁ ଏ ସାପମାନେ ଆଉ ଡ଼ରିବେ ଅବା କାହାକୁ? କଥା ଅଛି ଯେ, ସ୍ୱୟଂ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କ ନାତି ପରୀକ୍ଷିତଙ୍କୁ ବି ଦଂଶି ଦେଇ ପ୍ରାଣରେ ମାରିଦେଲା ସାପଟିଏ । ରାଗରେ ପରୀକ୍ଷିତଙ୍କ ପୁଅ ଜନ୍ମେଜୟ ଏମାନଙ୍କୁ ନିର୍ମୂଳ କରି ଦେବାପାଇଁ ସର୍ପ ଯଜ୍ଞ କଲେ । ଯଜ୍ଞକୁଣ୍ଡରେ ଗୁଡ଼ିଏ ସାପ ମଲେ, କିନ୍ତୁ ଇନ୍ଦ୍ରଙ୍କ ପାଖରେ ଶରଣ ପଶି ଗୋଟାଏ ସାପ କେମିତି ବର୍ତ୍ତିଗଲା ସେ କଥା ସମସ୍ତଙ୍କୁ ଜଣା । ଆଜି ସେଇ ଗୋଟିଏ ସାପର ବଂଶଧରମାନଙ୍କର ଦୌରାତ୍ମ୍ୟ ଏ ଦେଶରେ କିଏ ଅବା ନଭୋଗୁଛି। ଚୀନ ଦେଶରେ କିନ୍ତୁ ଏପରି ସର୍ପ ସମସ୍ୟା ମଧ୍ୟ ନାହିଁ । ସେମାନେ ଏମିତି ହୋମ ଯଜ୍ଞ ନକରି ସାପଟିଏ ପାଇଲେ ତାକୁ ସିଧାସଳଖ ଚପ୍ କଟ୍‌ଲେଟ୍ କରି ଭକ୍ଷଣ କରି ଦିଅନ୍ତି - 'ମୂଳୁଁ ମାଇଲେ ଯିବ ସରି ଦେବଙ୍କ ସଂଗେ କିପାଁ କଳି' ନ୍ୟାୟରେ ।

ଚଢ଼େଇମାନଙ୍କ ସମ୍ବନ୍ଧରେ ମଧ୍ୟ ସେଇ ଏକା କଥା । ଶୁଣାଯାଏ ଥରେ ଚୀନ ଦେଶର ଦାର୍ଶନିକ କନ୍‌ଫୁସିଅସ୍ କହିଦେଲେ ଯେ, ଚଢ଼େଇମାନେ କୃଷକଙ୍କ ଶତ୍ରୁ ।

ବାସ୍ ସେତିକି - ଚୀନାମାନେ ଚଢ଼େଇଙ୍କୁ ଧରି ଖାଇବାକୁ ଆରମ୍ଭ କଲେ । ଫଳରେ ଆଜି କୁଆଡ଼େ ଚୀନ ଦେଶରେ କାଉଟିଏ ବି ଦେଖିବାକୁ ମିଳେନି ।

ଆମ କଥା କିନ୍ତୁ ଭିନ୍ନ । ଏ ଦେଶର ଚଢ଼େଇମାନଙ୍କ ପଛରେ ବି ମହାନ୍ ମହାନ୍ ଦେବତା । ଗରୁଡ଼ ହେଲେ ବିଷ୍ଣୁଙ୍କ ବାହନ । ବ୍ରହ୍ମା ଏବଂ ସରସ୍ୱତୀଙ୍କ ବାହନ ହେଲେ ହଂସ । କାର୍ତ୍ତିକେୟଙ୍କ ବାହନ ମୟୂର ଏବଂ ସ୍ୱୟଂ ମା' ଲକ୍ଷ୍ମୀଙ୍କ ବାହନ ପେଚା । କାହାକୁ ମାରିବ !

ଏଇ ଚଢ଼େଇଙ୍କ କଥା... ମନେପଡ଼ିଲେ ହିଁ ମୋର ମନେପଡ଼ିଯାଏ ଆମ ଘରଚଟିଆମାନଙ୍କ ଦୌରାତ୍ମ କଥା । ବସେଇ ଉଠେଇ ବି ଦେବେନି - ସବୁବେଳେ ଚିଁ-ଚିଁ । ଇଚ୍ଛାହୁଏ ଏ ସମସ୍ତଙ୍କୁ ଧରି ଏକାଥରେ ରୋଷକରି ଭୋଜନ କରିଦିଅନ୍ତି । କିନ୍ତୁ ଏଣେ ଡ଼ର । ଏମାନେ ବି କୁଆଡ଼େ ଲକ୍ଷ୍ମୀଙ୍କ ଚରଣାଶ୍ରିତ, ଲକ୍ଷ୍ମୀ ଯଦି ରାଗରେ ଆମଘର ଛାଡ଼ିଦିଅନ୍ତି ! କିଛି କରିହୁଏନି କି ସହି ହୁଏନି ।

ଥରକର ଘଟଣା -

ମାର୍ଗଶିର ଯାଇ ପୌଷ ଅଧାଅଧି । ଗାଁରେ ସମସ୍ତଙ୍କ ଧାନ ଅମଳ ସରିଗଲାଣି । କିନ୍ତୁ କେତେକ କାରଣରୁ ମୋର ଧାନ ଅମଳ ସରିବାରେ ଡ଼େରି ହୋଇଯାଇଛି । ହଠାତ୍ ଦେଖିଲି ଶହ ଶହ ଘରଚଟିଆ ମୋ ଖଳାରେ ହାଜର ହୋଇ ତାଙ୍କ କିଚିରି ମିଚିରି ନୃତ୍ୟ ଗୀତ ଆରମ୍ଭ କରିଦେଇଛନ୍ତି । ଏସବୁ ଘରଚଟିଆ ନିଶ୍ଚୟ ଏ ଯାବତ୍ ଗାଁର ବିଭିନ୍ନ ଖଳାମାନଙ୍କରେ ଭାଗ ବଣ୍ଟାହୋଇ ରହିଥିଲେ ଏବଂ ସେ ସବୁ ଖଳାମାନଙ୍କରେ ଅମଳ ସରିଯିବା ପରେ ଏବେ ଆମ ଖଳାରେ ହାଜର ହୋଇଯାଇଛନ୍ତି । ମୁଁ ପ୍ରଥମେ ଭାବୁଥିଲି ଆଗରୁ ଆମ ଖଳା ଅଧିକାର କରି ରହିଥିବା ଚଟିଆମାନେ ଏ ନୂତନ ଆଗନ୍ତୁକଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବେ - କିନ୍ତୁ ଆଶ୍ଚର୍ଯ୍ୟର କଥା ଏମାନେ ଲଢ଼ାଇକରିବେ କ'ଣ ଓଲଟା ତାଙ୍କୁ ପ୍ରୀତି ସମ୍ଭାଷଣ ଜଣାଇ ତାଙ୍କ ସଂଗେ ରାସକ୍ରୀଡ଼ା କରିବସିଲେ । ଦିନେ ଦି'ଦିନ ପରେ ଦେଖାଗଲା ଏସବୁ ନୂଆ ଚଟିଆ ସଞ୍ଜବେଳେ ଯେ ଯାହା ଘର ବଗିଚାକୁ ଆଉ ଉଡ଼ି ନଯାଇ ମୋ ଘରର ଗନ୍ଧରାଜ, ଗଙ୍ଗଶିଉଳି ଓ ତରାଟ ଗଛରେ ଛାଇହୋଇ ବସିଛନ୍ତି । ଏମାନଙ୍କ ସମୂହ କୋଳାହଳ ସହ୍ୟକରିନପାରି ମୁଁ ତାଳିମାରି ସେ ସମସ୍ତଙ୍କୁ ଘଉଡ଼ାଇ ଦେବାକୁ ଚେଷ୍ଟାକଲି । ସେ ସବୁ ଖଣ୍ଡମଣ୍ଡଳ ଘୋଡ଼ାଇ ଉଡ଼ିଗଲେ ମଧ୍ୟ। କିନ୍ତୁ କିଛି ସମୟ ପରେ ଛୋଟ ଛୋଟ ଦଳରେ ପୁଣିଥରେ ସେ ଗଛମାନଙ୍କରେ ଜମା ହୋଇଗଲେ । ରାତ୍ରି ହେବା ସଂଗେ ସଂଗେ ସେମାନଙ୍କ କୋଳାହଳ ବନ୍ଦ ହୋଇଗଲା ଏବଂ ମୁଁ ମଧ୍ୟ ସେମାନଙ୍କ କଥା ଆଉ ଭାବିଲିନି ।

ତା'ପରେ ହିଁ ମୁଁ ଲକ୍ଷ୍ୟକଲି ଦିନବେଳେ ବି କେତେ ଚଟିଆ ଖଳା ଆଡ଼ିକି ଆଉ ନଯାଇ ମୋ ଘର ଅଗଣାରେ ହିଁ ଡ଼ିଆଁଡ଼େଇଁ କରୁଛନ୍ତି । ସେ ଭିତରେ ମାଈ ଓ ଅଣ୍ଡିରାଙ୍କୁ ସ୍ପଷ୍ଟ ଚିହ୍ନି ହୋଇଯାଉଛି । ମାଈ ଗୁଡ଼ିକ ଛୋଟ ଏବଂ ଖଇରା, ଅଣ୍ଡିରାମାନେ ହୃଷ୍ଟପୁଷ୍ଟ ଏବଂ ଦେଖିବାକୁ କଳାମିଶା ଖଇରା, ଅଣ୍ଟା ତଳକୁ କଳାଦାଗ ଏବଂ ଧଳା ବେକରେ ମାଳାକୃତି କଳାରଙ୍ଗ । ଲକ୍ଷ୍ୟ କଲି ଏ ଦଳ ଭିତରେ ମାଈ ପାଖକୁ ଅଣ୍ଡିରାଟିଏ ଆସିଲେ ସିଏ ତାକୁ ଲକ୍ଷ୍ୟ କରିବା ଢ଼ଙ୍ଗ କାଢ଼ି ଡ଼େଇଁ ଡ଼େଇଁ ଶସ୍ୟକଣା ଖୋଜିବୁଲୁଛି । କିନ୍ତୁ ସେଇ ମାଈ ପାଖକୁ ଅନ୍ୟ କୌଣସି ଅଣ୍ଡିରାଟିଏ ଯଦି ଚାଲିଆସେ ଏଇ ଦୁଇ ଅଣ୍ଡିରା ଭିତରେ ଲାଗିଯାଉଛି ଖଣ୍ଡଯୁଦ୍ଧ ଖୁମ୍ପାଖୁମ୍ପି ଗଡ଼ାଗଡ଼ି । ଯୁଦ୍ଧ ମଝିରେ ଗୋଟାଏ ଯଦି କେଉଁ ଗଛ ଡ଼ାଳକୁ ଉଡ଼ିଯାଉଛି ଅନ୍ୟଟି ଗୋଡ଼ାଇ ଯାଉଛି ତା ପଛରେ । ପୁଣି ଲଢ଼େଇ, ଆଉ ଦୁହେଁ ଭିଡ଼ାଭିଡ଼ି ହୋଇ ଗଛ ଉପରୁ ତଳକୁ କଚାଡ଼ି ହୋଇ ପଡ଼ୁଛନ୍ତି । ଏ ମଧ୍ୟରେ ମାଈଚଟିଆଟି ନିର୍ବିକାର ଭାବରେ ତା' ଶସ୍ୟ କଣିକା ଖୋଜି ଖାଇଚାଲିଛି, ଆଉ ବେଳେ ବେଳେ ଏମାନଙ୍କୁ ଅନାଇ ଖୁସିରେ ବୋଧହୁଏ ଟିକେ ନାଚିଦେଇ ପାଟି ମେଲାକରି ଚିଁ ଚାଁ ରାବି ରାବି ପୁଣି ତା' ନିଜ କାମରେ ମନଲଗାଇ ଦେଉଛି । ଯୁଦ୍ଧର ଅବସାନ ହେଉଛି ଯେତେବେଳେ ଗୋଟାଏ ଅଣ୍ଡିରା ସେ କ୍ଷେତ୍ର ଛାଡ଼ିଦେଇ ଆଉ କେଉଁଠିକି ଉଡ଼ିଯାଉଛି । ଆଉ ବିଜୟୀ ଅଣ୍ଡିରା ସେ ଛୋଟ ମାଈ ପାଖକୁ ଫେରିଆସି ଛାତି ଫୁଲାଇ ଲାଞ୍ଜ ଟେକି ଡ଼େଣା ଫର୍‌କଟାଇ ମେଲାଥଣ୍ଟରେ ତା' ଚାରିପଟେ ଡ଼େଇଁ ବୁଲୁଛି ।

ଦିନେ ଏମିତି ଗୋଟାଏ ମାଈ ଅଣ୍ଡିରା ଚଟିଆଯୁଗଳ ସଞ୍ଜବେଳେ କୌଣସି ଗଛକୁ ଉଡ଼ିନଯାଇ ମୋ ଘର ବାରନ୍ଦାରେ ରହିଗଲେ । ଗୋଟାଏ ଆଶ୍ରୟ ନେଲା ଟିଉବ୍ ଲାଇଟର ଲୁହାଫ୍ରେମ୍ ଉପରେ । ଆଉ ଅନ୍ୟଟି ସେଇଠି କିଛି ସମୟ ବସି ରହିଲା ପରେ ବିଜୁଳି ତାର ଲାଇନ୍ ଯେଉଁଠି ଗୋଟିଏ କାନ୍ଥରୁ ଆଉ ଗୋଟିଏ କାନ୍ଥକୁ ମୋଡ଼ ନେଇଛି, ସେଇ ମୋଡ଼ ଉପରେ ହିଁ ଆଶ୍ରୟ ନେଲା ।

ଏଥର ଦିନ ବେଳେ ସେମାନେ କିଛି ସମୟ ବାହାରକୁ ଉଡ଼ିଯାଇ ପୁଣି ଫେରିଆସିଲେ ଏଇ ବାରନ୍ଦାକୁ ଏବଂ ଆରମ୍ଭ ହେଲା ତାଙ୍କ ଅଭିସାର କ୍ରମରେ ନାଚ ଆଉ ଗୀତ । ମାଈର ଚିଁ ଚିଁକୁ ଅଣ୍ଡିରାର କ୍ରୁଅଙ୍କ୍ କ୍ରୁଅଙ୍କ୍ ଜଣକର ସିଧାସଳଖ ଡ଼ିଆଁକୁ ଅନ୍ୟଟିର ଲାଞ୍ଜ ଟେକା ଗୋଲାକାର ଢ଼ଙ୍ଗର ନାଚ ।

କିଛିଦିନ ପରେ ମୁଁ ଆବିଷ୍କାର କଲି ସେ ମାଈଚଟିଆକୁ ମୋ ଶୋଇବା ଘରର ଦର୍ପଣ ପାଖରେ । ଦର୍ପଣକୁ ସେ କ୍ରମାଗତ ଖୁମ୍ପି ଚାଲିଛି । ମନେହେଲା ସେ ଦର୍ପଣରେ ତା ପ୍ରତିବିମ୍ବକୁ ଅନାଇ ତାକୁ ଆଉ ଗୋଟିଏ ମାଈଚଟିଆ ଭାବି ଏଇ ସଉତୁଣୀକୁ ଖୁମ୍ପୁଛି । ପ୍ରଥମେ ଟିକେ ମଜା ଲାଗିଲା, କିନ୍ତୁ ସମୟ ଅସମୟରେ ସେ

ଯେତେବେଳେ ଖାଇବା ପିଇବା ଛାଡ଼ି ଦର୍ପଣ ପାଖକୁ ଆସି ଖୁମ୍ପି ବସିଲା ଶ୍ରୀମତୀ ବାଧହୋଇ ଦର୍ପଣକୁ ତା ଥଣ୍ଟ ଦାଗରୁ ରକ୍ଷାକରିବା ପାଇଁ କନାରେ ଘୋଡ଼ାଇଦେଲେ । ତା'ପରେ ଚଟିଆ ଦେଖାଦେଲା ଟେବୁଲରେ ଥୁଆହୋଇଥିବା ଗୋଟାଏ ଟାଇମ୍ ପିସ୍ ଉପରେ । ନିକେଲ ପ୍ଲେଟେଡ୍ ସେ ଟାଇମ୍ ପିସ୍‌ର ଖୋଳରେ ଦେଖାଯାଉଥିଲା ତା ପ୍ରତିବିମ୍ବ, ଏଥର ସେ ଖୁମ୍ପିବସିଲା ଏ ଖୋଳକୁ । କେତେଥର ଘଉଡ଼ାଇ ଦେଲାପରେ ମଧ ସେ ଚଟିଆ ଯେତେବେଳେ ବାରମ୍ବାର ସେ ଖୋଳ ପାଖକୁ ଫେରିଆସିଲା ଶ୍ରୀମତୀ ସେ ଟାଇମ୍ ପିସ୍‌କୁ ମଧ କନାରେ ଘୋଡ଼ାଇ ଦେଲେ । ଏଥର ପାଳି ପଡ଼ିଲା ସୁଟ୍‌କେଶର ଷ୍ଟେନ୍‌ଲେସ୍ ଷ୍ଟୀଲ୍ ପଟି ଉପରେ । ତାକୁ ଘୋଡ଼ାଇଲା ପରେ ଷ୍ଟେନ୍‌ଲେସ୍ ଷ୍ଟୀଲ୍ ଚା' କେଟ୍‌ଲି ।

ମନେହେଲା ଚଟିଆଟି ଆଉ ଖାଇବାକୁ ବି ଯାଉନି । ଯେତେବେଳେ ଦେଖ କିଛି ନା କିଛି ଜିନିଷରେ ନିଜ ପ୍ରତିବିମ୍ବ ଦେଖି ତାକୁ ଖୁମ୍ପୁଛି । ଆଉ ଅଣିରା ଚଟିଆଟି ଟିକେ ଦୂରରେ କେଉଁ ଝରକା କିମ୍ବା କବାଟରେ ବସି ଏ ଦୃଶ୍ୟକୁ ଅନାଇ ରହିଛି । ତାଳିମାରିଲେ ଦୁହେଁ ଫୁର୍‌କରି ଉଡ଼ି ଯାଉଛନ୍ତି, କିନ୍ତୁ କିଛି ସମୟ ପରେ ହିଁ ମାଈଚଟିଆର ପୁନରାଗମନ ଘଟୁଛି । କେତେ ଜିନିଷକୁ ଅବା ଶ୍ରୀମତୀ କନା ଘୋଡ଼ାଇବେ। ଏ ଭିତରେ ଛାତ ପଙ୍ଖାର ନବ୍, ଟେବୁଲ୍ ଫେନ୍‌ର ନବ୍ ବି ରକ୍ଷାପାଇନି ।

ତା'ପରେ ଦିନେ ଲକ୍ଷ୍ୟ କଲି ଚଟିଆଟି ଦର୍ପଣର କନା ଭିତରେ କେମିତି ପଶି ଦର୍ପଣକୁ ପୁଣିଥରେ ଖୁମ୍ପିବାକୁ ଆରମ୍ଭ କରିଛି । ତା'ପରେ ଟାଇମ୍ ପିସ୍ କନା ଭିତରେ ।

ଏ ଭିତରେ ଅନେକ ଦିନ ବିତିଗଲାଣି । ଉପର କୋଠରିର କାନ୍ଥ କଣାମାନଙ୍କରେ ଏବଂ ସ୍କାଇ ଲାଇଟ୍ ପାଖରେ କେତେକ ସମସାମୟିକ ଚଟିଆ ଛୁଆ ଦେଇସାରିଲେଣି ସେ ଛୁଆମାନଙ୍କର କ୍ରମାଗତ କ୍ଷୁଧିତ ଡ଼ାକରା ରାତ୍ରିର ନିସ୍ତବ୍ଧତାକୁ ଭଙ୍ଗକରି ଦେଉଛି । ବାହାର ଘରେ ଆଶ୍ରୟ ନେଇଥିବା ସମକାଳୀନ ଚଟିଆ ଦମ୍ପତି ବିଜୁଳି ତାର ଲାଇନ୍ ଉପରେ ପାଳକୁଟା ସବୁ ଜମା କରିବାକୁ କିଛିଦିନ ଚେଷ୍ଟା କଲାପରେ ଖଣ୍ଡିଏ ଦିଖଣ୍ଡ କୁଟାକୁ ଛାଡ଼ି ବାକି ସବୁତଳେ ପଡ଼ିଯାଇଥିଲେ ମଧ ତାଙ୍କ ବସା ବନ୍ଧା କର୍ତ୍ତବ୍ୟ ସରିଯାଇଛି ଭାବି ବୋଧହୁଏ ଅଣ୍ଡାଦେଇ ସାରିଲେଣି ଯେ, ସେ ଅଣ୍ଡା ଦୁଇଟି ତଳେ ପଡ଼ି ଫାଟି କେମିତି ଆଇଁଷିଆ ଗନ୍ଧ ସୃଷ୍ଟି କରିସାରିଛି । ବାରନ୍ଦାର ଆମ ଏ ମାଈଚଟିଆର ଅଭିଯାନ କିନ୍ତୁ ବନ୍ଦହୋଇନି । ଚଟିଆ ଦୁଇଟିଙ୍କ ଅଭିସାର କେବେଠୁ ବନ୍ଦ ହୋଇଗଲାଣି । ସେ ଦୁହେଁ ସବୁବେଳେ ପାଖେ ପାଖେ ରହୁଛନ୍ତି ଆଉ

ମାଇଚଟିଆ ତା ପ୍ରତିବିମ୍ବ ଖୋଜି ଏମିତି ଖୁମ୍ପି ବୁଲିଲା ବେଳେ ଅଣ୍ଡିରାଟି ପାଖରେ କେଉଁଠି ପାଟିମେଲା କରି ଉଦାସୀନ ଦୃଷ୍ଟିରେ ଏ ଦୃଶ୍ୟକୁ ଅନାଇ ରହିଛି।

ଗାଁ କୁ ଦିନେ ସାନପୁଅ ଅଜୟ ଆସିଥାଏ । ସେ ତା ସୁଟ୍‌କେଶଟିକୁ ଆମ ଶୋଇବା ଘର ଚଟାଣରେ ଥୋଇ ଦେଇଥିଲା । କିଛି ସମୟ ପରେ ତା ମା ସୁଟକେଶ୍ ଉପରେ ଗାମୁଛା ଢ଼ାଙ୍କି ଦେଇଥିବା ଦେଖି ସେ ଆଶ୍ଚର୍ଯ୍ୟ ହୋଇ କାରଣ ବୁଝିଥିଲା । ପରଦିନ ହିଁ ଚଟିଆ ଦର୍ପଣ କନା ଭିତରେ ପଶି ଦର୍ପଣକୁ ଖୁମ୍ପୁଥିଲା ବେଳେ ସେ ତାକୁ ସହଜରେ ଧରିନେଲା, କିନ୍ତୁ ଏଡ଼ିକି ଟିକେ ଚଢ଼େଇ ତାକୁ ଅବା ସେ କି ଶାସ୍ତିଦେବ। ଦୁଷ୍ଟାମି ଆଉ ନକରିବାକୁ କେତେ ପରାମର୍ଶ ଦେଇ ପୁଣିଥରେ ଉଡ଼ାଇ ଦେଇଥିଲା । ମାରିବା ସୁଯୋଗଟିଏ ଗଲା ବୋଲି ମୁଁ ତା' ଉପରେ ବିରକ୍ତି ହୋଇଥିଲି । ସେ କିନ୍ତୁ ଦୃଢ଼ ବିଶ୍ୱାସ ବ୍ୟକ୍ତ କରିଥିଲା ଯେ, ଡ଼ରରେ ଏଥର ଆଉ ଚଟିଆ ଘରକୁ ଆସିବନି ।

ସତକୁ ସତ ଦିନେ ଦି'ଦିନ ଚଟିଆ ଆଉ ଭିତରକୁ ଆସିଲାନି । କିନ୍ତୁ ଅଜୟ ଫେରିଗଲା ପରେ ହିଁ ସେ ପୁଣି ଦେଖଦେଲା ଘର ଭିତରେ ।

ଭୋରରେ ତା' ଖଟ୍‌ଖଟ୍ ଶବ୍ଦରେ ହିଁ ଆମ ନିଦ ଭାଙ୍ଗିଗଲା । ମଶାରି ଭିତରୁ ମୁଁ ନିଦୁଆ ଧାଡ୍‌ଟିଏ କରିଦେଲେ ସେ ଫୁର୍‌କରି ଉଡ଼ିଯାଏ । କିଛି ସମୟ ପରେ ପୁଣି ଶୁଣିବାକୁ ମିଳେ ସେଇ ଖଟ୍‌ଖଟ୍ ଆବାଜ ।

ସେଦିନ ରଘୁଭାଇନାଙ୍କ ଘର ଭାଉଜ ବୁଲିବାକୁ ଆସିଥିଲେ । ପୁଅ ଝିଅ ନାତି ନାତୁଣୀଙ୍କ ଭଲମନ୍ଦ, ପଢ଼ାଶୁଣା, ବାହାଘର ପ୍ରସ୍ତାବ ଆଦି ପଡ଼ିଲା ପରେ ଭଜାବଡ଼ି ଫୁଲବଡ଼ି ତିଆରି କଥା ପଡ଼ିଗଲା । ମୁଁ ଆମ ବସିବା ଘରୁ ଶୁଣିବାକୁ ପାଇଲି ଆମ ଶ୍ରୀମତୀ କହୁଛନ୍ତି - 'ଏ ଚଟିଆ ଆଉ ବିଲେଇଙ୍କ ଉପଦ୍ରବରେ ଗାଁରେ ଆଉ ରହିହେବନି । ବିରିବାଟିବା ଲୋକଟିଏ ମିଳିଗଲେ ସେ ଦିନେ ଭଜା ବଡ଼ି ଆଉ ଦିନେ ଫୁଲବଡ଼ି ପାରିଦେଇ ହିଁ ସହରକୁ ଚାଲିଯିବେ । ତାପରେ ସେ ଚଟିଆ ଉପଦ୍ରବ କଥା ବଖାଣି ବିଲେଇ କଥା କହିବସିଲେ । କହିଲେ - 'ବିଲେଇଟିଏ ଅଛି ଯେ, ତା ପାଖଦେଇ ମୂଷାମାନେ ଚାଲିଯାଉଛନ୍ତି - ଖଟ ଉପରକୁ ଚଢ଼ି ଶେଯ ଚାଦର ସବୁ କଣାକରି ସେ ଭିତରେ ଛୁଆ ବି ଦେଉଛନ୍ତି । ଏ ବିଲେଇ କିନ୍ତୁ କିଛି କରିବନି । ସନ୍ନ୍ୟାସୀ ପାଲଟି ଯାଇଛି ନା କ'ଣ, ନିର୍ବିକାର ଖାଲି ଚୁପ୍‌ଚାପ ଦେଖୁଥିବ । ଏଣେ ଆଜି ଦୁଧହାଣ୍ଡି ଓଲଟାଇ ଦେଲାଣି ତ କାଲି ଟା' ଟେବୁଲ ଉପରେ ଚଢ଼ି କପ୍ ସସର୍ କଚାଡ଼ି ଦେଲାଣି । ଚାଉଳ ଡ଼ାଲି ଦିନେ କେଉଁଠି ଖୋଲା ଛାଡ଼ିଦେଲେ ତ ଯାହା କରୁଛି ଛାଡ଼ ।' ଶେଷରେ ଯୋଡ଼ିଦେଲେ - 'ଏ ମଣିଷମାନେ ଗାଁରେ ଏମାନଙ୍କ ଦୌରାତ୍ମ୍ୟ ସମ୍ଭାଳି କେମିତି ରହୁଛନ୍ତି କେଜାଣି ।'

ମୋତେ ତ ଗାଁରେ ରହିବାକୁ ଭଲଲାଗେ, ଏ ଟିପ୍ପଣୀ ଟିକେ ବାଧିଲା । ମୁଁ ଠିକ୍ କରି ନେଲି ଏ ଚଟିଆକୁ କୌଣସିମତେ ମାରିବି ଅଥବା ଘରୁ ବାହାର କରିବି । ତା'ପରଦିନ ହିଁ ଆମ ଗାଁର ସର୍ବ କର୍ମ ବିଶାରଦ ଯୋଶୀ ଟୋକାକୁ ଧରି ଗୁଲିଏରିଟିଏ ତିଆରି କଲି ଏବଂ ଚଟିଆ ଟେବୁଲ ଉପରେ ବସି କେଉଁଠିକି ଯିବ କଳ୍ପନା ଜଳ୍ପନା କରୁଛି ଦେଖି ବାଟୁଳିଟିଏ ଛାଡ଼ିଦେଲି । କିନ୍ତୁ ହାୟ! ଗୁଲିଏରିର ପ୍ରଥମ ଚୋଟରେ ହିଁ ଟେବୁଲ୍ ଉପରେ ଥୁଆ ହୋଇଥିବା କିରାସିନି ଟେବୁଲ୍ ଲାମ୍ପର କାଚ ଖଣ୍ଡ ଖଣ୍ଡ ହୋଇଗଲା । ମାଈଚଟିଆଟି ଘଟଣା କଣ ଜାଣିପାରି ଟିକିଏ ପାଟିମେଲା କରି ହସିଲା ନା କଣ ତା'ପରେ ଘରୁ ବାହାରିଗଲା । କିଛି ସମୟ ପରେ ପୁଣିଥରେ ଯେତେବେଳେ ଖଟ୍ ଖଟ୍ ଆବାଜ ଆସିଲା ମୁଁ ଦବିଲା ମନ ନେଇ ସେ ଆବାଜକୁ ନଶୁଣିଲା ପରି ରହିଗଲି । ମୋର ମନେହେଲା ମୁଁ ସଂପୂର୍ଣ୍ଣ ପରାଜିତ ।

ତହିଁ ଆରଦିନ ସକାଳେ ମୁଁ କାହିଁକି କେଜାଣି ତଳେ ଠିଆରଖାଯାଇଥିବା ମୋ ସୁଟ୍‌କେଶକୁ ଖୋଲିଥିଲି । କିନ୍ତୁ ପୁଣିଥରେ ବନ୍ଦ କଲାପରେ ତା ଉପରେ କନା ଢ଼ାଙ୍କି ଦେବାକୁ ଭୁଲିଗଲି । ବାରନ୍ଦାରେ ବସି ଚା' ଖାଉଛି ଶୁଭିଲା ଖଟ୍‌ଖଟ୍ । ପରାଜିତରେ ମନନେଇ ମୁଁ ଚଟିଆକୁ ଆଉ ଘଉଡ଼ାଇବାକୁ ବି ଚେଷ୍ଟା କଲିନି । ଠିକ୍ ସେତିକିବେଳେ ହିଁ ଦେଖିଲି ଆମ ଘରର ବିଲେଇ ବାହାରୁ ବାରନ୍ଦାକୁ ଚାଲିଆସି ଚା' ଟେବୁଲ ଉପରକୁ ଉଠିବାକୁ ଚେଷ୍ଟା କରୁଛି । ମୋ ଆପତ୍ତିର ଇଙ୍ଗିତ ପାଇ ସେ ଧୀର ପଦକ୍ଷେପରେ ଶୋଇବା କୋଠରି ଆଡ଼କୁ ଆଗେଇଗଲା । କିଛିକ୍ଷଣ ପରେ ଖଟ୍‌ଖଟ୍ ଆବାଜ ଶୁଣିବାରେ ସଦା ଅଭ୍ୟସ୍ତ ମୁଁ ହଠାତ୍ ସେ ଆବାଜ ବନ୍ଦ ହୋଇଯାଇଥିବା ଜାଣି ଆପଣାଛାଏଁ ମୋ କପ୍ ଉପରୁ ଶୋଇବା ଘର କବାଟ ଆଡ଼କୁ ଅନାଇଲି ଏବଂ ସେଇ ମୁହୂର୍ତ୍ତରେ ହିଁ ଦେଖିଲି ବିରାଡ଼ି ମୁହଁର ଗୋଟିଏ କୋଣରେ ଉବୁରି ଆସିଥିବା ଚଟିଆର ଲାଞ୍ଜ ।

ମୁଁ ଖୁସିରେ ଏ ସୁଖବର ଦେବାପାଇଁ ଶ୍ରୀମତୀଙ୍କୁ ଡ଼ାକିଲି । ସେ କିନ୍ତୁ ମୋ କଥାକୁ ବିଶ୍ୱାସ ବି କଲେନି । କହିଲେ - 'ଏଡ଼େ ଅପଦାର୍ଥ ଏ ବିଲେଇ, ମୁହଁ ଆଗରେ ମୂଷାକୁ ଯିଏ ଧରୁନି, ସେ ପୁଣି ଉଡ଼ନ୍ତା ଚଟିଆକୁ ଧରିବ!' କିନ୍ତୁ ମୁଁ ଯେ ନିଜ ଆଖିରେ ଦେଖିଛି !

ତା'ପରେ ଆଉ ଖଟ୍‌ଖଟ୍ ଆବାଜ ଶୁଭିଲାନି । କେତେଘଣ୍ଟା ପରେ ଅଣ୍ଡିରା ଚଟିଆ ଆମ ଶୋଇବା ଘର ଆଡୁ ଉଡ଼ିଆସି ବାରନ୍ଦା ଟିଉବ୍ ଲାଇଟ୍ ଉପରେ ବସି ଡ଼ାକିଲା - 'କ୍ରିକ୍ କ୍ରିକ୍ ବି କୁଇକ୍' । ଏ ନୂତନଧରଣର ଆବାଜ ସ୍ପଷ୍ଟ ଜଣାଇ ଦେଉଥିଲା ଯେ, ତାହାଥିଲା ଏକ ଧରଣର ଡ଼ାକରା । ଚଅଁ ଚଅଁ କ୍ରଅଙ୍କ୍ କ୍ରଅଙ୍କ୍ ପରିବର୍ତ୍ତେ ଏଥିଲା କ୍ରିକ୍ କ୍ରିକ୍ । ମାଈଚଟିଆ କିନ୍ତୁ ଆସିଲାନି । ଅଣ୍ଡିରାଚଟିଆଟି

ଟିଉବ ଲାଇଟ୍ ଉପରୁ ବାରନ୍ଦା ଜାଲି ଉପରକୁ ଜାଲି ଉପରୁ ଶୋଇବା କୋଠରି ଝରକାକୁ ଏବଂ ସେ ଝରକାରୁ ପୁଣି ଟିଉବ ଲାଇଟ୍ ଉପରକୁ ଉଡ଼ି ବୁଲୁଥିଲା । ଆଉ ଯେଉଁଠି ବସେ ସେଇଠି ସେ ଚାରିଆଡ଼କୁ ଅନାଇ ଡ଼ାକେ – 'କ୍ରିକ୍ କ୍ରିକ୍ ବି କୁଇକ୍ ।'

ଦୁଇ ତିନି ଦିନ ଏମିତି ବିତିଗଲା । ଅଣ୍ଡିରାଚଟିଆ ବେଳେ ବେଳେ ବାହାରକୁ ଉଡ଼ିଯାଇ କିଛି ସମୟ ପରେ ଫେରିଆସେ ଆଉପୁଣି ଡ଼ାକେ କ୍ରିକ୍.... କ୍ରିକ୍ ।

ଦିନେ ଦେଖିଲି ଆଉ ଗୋଟାଏ ମାଈଚଟିଆ ବସି ସେ ବାରନ୍ଦା ଜାଲି ଉପରେ ବସି ଚିଁ ଚିଁ କରୁଛି । ଆମ ଅଣ୍ଡିରା ଚଟିଆଟି ସେତେବେଳେ ଟିଉବ ଲାଇଟ୍ ଉପରେ । ଏଥର ଆମ ଚଟିଆ ବି ଡ଼ାକିଲା ଚଅଁ... ଚଅଁ... କ୍ରଅଙ୍କ୍... ଟିକିଏ ଛାତି ଫୁଲାଇ ନାଚିବା ଢ଼ଙ୍ଗକଲା ମଧ୍ୟ । ନୂଆ ମାଈଚଟିଆଟି ଜାଲି ଉପରୁ ଉଡ଼ିଆସି ଟିଉବ ଲାଇଟ ପାଖ ବିଜୁଳି ଲାଇନ୍ ଉପରେ ବସିଲା । ତା'ପରେ ଡ଼େଇଁ ବୁଲିଲା ସେ ଲାଇନ୍ ଉପରେ ଏ ମୁଣ୍ଡରୁ ସେ ମୁଣ୍ଡକୁ । ମଝି ମଝିରେ ଚିଁ ଚିଁ କରେ, କିନ୍ତୁ ଅଣ୍ଡିରାଚଟିଆ ପାଖକୁ ନଆସି ସେ ତାର ଉପରେ ଡ଼େଇଁବୁଲେ । ଅଣ୍ଡିରା ପୂର୍ବବତ୍ ବସିରହିଥାଏ ସେ ଟିଉବ ଲାଇଟ୍ ଉପରେ । କିଛି ସମୟ ପରେ ମାଈ ଚଟିଆଟି ବାହାରକୁ ଉଡ଼ିଗଲା ଏବଂ ଅଣ୍ଡିରା ଚଟିଆ ମଧ୍ୟ କ୍ରିଅଙ୍କ୍ କ୍ରିଅଙ୍କ୍ ଦୁଇଚାରି ଥର ଡ଼ାକି ଉଡ଼ିଗଲା ବାହାରକୁ ।

ନୂଆ ମାଈଚଟିଆ କେଉଁଥିପାଇଁ ଆସିଥିଲା କେଜାଣି ? ହୁଏତ ଏ ଅଣ୍ଡିରାଚଟିଆ ସହିତ ଘର ସଂସାର କରିବା ଉଦ୍ଦେଶ୍ୟରେ ଏବଂ ପରିବେଶକୁ ପସନ୍ଦ ନକରି ଅନ୍ୟ କେଉଁଠିକି ଚାଲିଗଲା । ଅଥବା ଅଣ୍ଡିରା ଚଟିଆର କୌଣସି ଜଣାଶୁଣା ଏ ଚଟିଆ ଆସିଥିଲା ଦୁଃଖବେଳେ ତାକୁ ସଙ୍ଗୋଳି । ଅନ୍ୟ କୌଣସି ଚଟିଆ କିନ୍ତୁ ଯା' ପାଖକୁ ଆସିନାହାନ୍ତି ।

ଏ ଘଟଣା ପରଠାରୁ ଅଣ୍ଡିରାଚଟିଆ ପୁଣିଥରେ ବାରନ୍ଦା ଟିଉବ୍ ଲାଇଟ୍ ଉପରକୁ ଆସି ତା ଡ଼ାକ ଆରମ୍ଭ କରିଛି – କ୍ରିକ୍ କ୍ରିକ୍ । କ୍ରମାଗତ ସେ ଡ଼ାକ, ଅନ୍ୟ ପାଖରୁ କିଛି ଜବାବ ନାହିଁ । ଚାରିଆଡ଼େ ଅନ୍ୟ ଚଟିଆଦମ୍ପତିଙ୍କ ଆନନ୍ଦ କୋଳାହଳ ଏ ଚଟିଆ କିନ୍ତୁ ଚାରିଆଡ଼କୁ ଅନାଇ ଡ଼ାକି ଡ଼ାକି ଚାଲିଛି – କ୍ରିକ୍ କ୍ରିକ୍ ବି କୁଇକ୍ । ସେ ଶବ୍ଦରେ ଫୁଟିଉଠୁଛି ତା ନିଃସଙ୍ଗତା । କ୍ରମାଗତ ତା ଡ଼ାକରାରୁ ମୁଁ ବୁଝିପାରୁଛି ତା ପ୍ରାଣର ବ୍ୟାକୁଳତା । ଥରେ କୁଆଡ଼େ କୌଣସି ବଗଯୁଗଳର ଦାମ୍ପତ୍ୟ ଅଭିସାର ବେଳେ କେହି ଜଣେ ବ୍ୟାଧ ଜଣକୁ ଶରବିଦ୍ଧ କରିଦେଇଥିଲା । ବଞ୍ଚିରହିଥିବା ବଗର କାରୁଣ୍ୟରେ ବିଗଳିତ ହୋଇଉଠିଥିଲେ ବାଲ୍ମୀକି ଏବଂ ତା'ପରେ ହିଁ ଲେଖିଥିଲେ

ରାମାୟଣ । ଚଟିଆ ଦମ୍ପତିର ଏ ଦୁର୍ଦ୍ଦଶାରେ ମୋ ଆମିଷ ଖିଆ ନିଷ୍ଠୁର ହୃଦୟ ବି ଅନୁକମ୍ପାରେ ଭରିଯାଇଥିଲା । ରାମାୟଣ ନ ଲେଖିଲେ ମଧ ମୁଁ ବି ଆଧୁନିକ କବିତାର ଖଣ୍ଡ କାବ୍ୟଟିଏ ଲେଖିବାକୁ ଚେଷ୍ଟାକରିଛି କିନ୍ତୁ ପାରିନି ।

ଆମେ ଏବେ ଗାଁରୁ ଆସି ସହରରେ । ଏଇ ସହରରେ ବି ମୁଁ ବେଳେ ବେଳେ ଚଟିଆମାନଙ୍କୁ ଦେଖେ । ସେମାନଙ୍କୁ ଭାଜି ଖାଇବା ଅଭିଳାଷ କିନ୍ତୁ ମୋର ଏବେ ନାହିଁ; ବରଂ ସେଦିନ ଯେତେବେଳେ ବିଲେଇଟିଏ ଦେଖିଲି ମୋ ଅନ୍ତଃକରଣରୁ ବାହାରିପଡ଼ିଲା - 'ମା ମାର୍ଜାର ଅଭିସାର ରତ ଚଟିଆ ଯୁଗଳାତ୍ ଏକଃ ଅପି ଭକ୍ଷଣ କୁରୁ ।' ବିଲେଇଟି ଯାଇ ଏ ସତ୍ ପରାମର୍ଶକୁ ନଶୁଣିଲା ପରି ଢ଼ଙ୍ଗ କରି ଦୂରେଇଗଲା । କିଛିଦୂର ଆଗେଇଗଲା ପରେ କିନ୍ତୁ ସେ ପଛକୁ ଓଲଟି ମୋତେ ଯେଉଁ ତାଚ୍ଛଲ୍ୟଭରା ଦୃଷ୍ଟି ଦେଲା ମୋର ମନେହେଲା ସେ କହୁଛି - 'ତମେ ମଣିଷମାନେ ଏମିତି ବଡ଼ ବଡ଼ କଥା କହ - କାମ କଲାବେଳକୁ କିନ୍ତୁ ଠିକ୍ ଓଲଟା ।'

ମୁଁ ନିର୍ବାକ୍ ହୋଇ ସେଇଠି ଠିଆହୋଇଗଲି ।

# କହ ମନ୍ତ୍ରୀବର !

ଶୀତଦିନ । ରାତ୍ରି ପ୍ରାୟ ଏଗାରଟା । ଘରର ସମସ୍ତେ ଶୋଇଗଲେଣି । କାଁ ଭାଁ ଗୋଟିଏ ଅଧେ କୁକୁରର ବିକଳିଆ ଡ଼ାକକୁ ଛାଡ଼ିଦେଲେ ଗାଁଟିଯାକ ନିସ୍ତବ୍ଧ । ଲୋ ଭୋଲଟେଜ୍ ଯୋଗୁ ବିଜୁଳିବତୀ ସବୁ ଡ଼ିବିରିବତି ପରି ମିଞ୍ଜି ମିଞ୍ଜି ଜଳୁଛି । ସେଇ ମିଞ୍ଜି ମିଞ୍ଜି ପୂରାପୂରି ଲିଭିଯାଇ ଆଉଥରେ ବିଜୁଳି ଆସିଲାବେଳକୁ ପୁଣି ନାହିଁ । ଜୟଦେବ ରେଡ଼ିଓକୁ ଧୀର ଆବାଜରେ ଚାଲୁ କରିଦେଇ ବିଛଣାରେ ଗଡ଼ିଗଲେ । ତାଙ୍କର ଆଶା ଥିଲା ଯେ, ଏଥର ଆଲୁଅ ଲିଭିଗଲେ ବିଜୁଳିବତି ପୂର୍ଣ୍ଣ ଶକ୍ତିନେଇ ଜଳିଉଠିବ, ଆଉ ସେତିକିବେଳେ ସେ କ'ଣ କରିବେ ନକରିବେ ବିଚାର କରିବେ ।

ବିଛଣାରେ ପଡ଼ିରହି ଜୟଦେବ ରେଡ଼ିଓର ମୃଦୁ ସିତାର ବାଦନ ଉପଭୋଗ କରୁଥିଲେ । ବେଳେବେଳେ ପାଖ ଗାଁ ଦାଣ୍ଡନାଟର ବାଜା ପବନରେ ଲହର ଖେଳାଇ ଭାସିଆସୁଥିଲା - ଡ଼ିମ୍ ଡ଼ିମ୍ ଡୁଡୁମ୍ । ଏକେ ତ ଶୀତଦିନ, ତହିଁରେ ପୁଣି ପରିବେଶ ଅତ୍ୟନ୍ତ ଶାନ୍ତ ଏବଂ ମଧୁର, ସମୟ ବି ଅଧରାତି ପାଖାପାଖି ବିଛଣାରେ ପଡ଼ି କମ୍ବଳର ଉଷୁମ ଟାଣୁ ଟାଣୁ ସେ ଯେ, କେତେବେଳେ ଘୁମେଇ ପଡ଼ିଛନ୍ତି, ତାଙ୍କର ଆଉ ଖିଆଲ ନାହିଁ ।

ଯଥା ସମୟରେ ତାଙ୍କ ନାସିକାର ହୁଇସିଲ୍ ବାଜିଉଠିଲା ଏବଂ ତତ୍‌କ୍ଷଣାତ୍ ତାଙ୍କ ମୁଣ୍ଡ ଭିତରର କେଉଁ ଉହାଡ଼ରେ ଲୁଚି ରହିଥିବା ରଙ୍ଗମଞ୍ଚର ପର୍ଦ୍ଦା ଧିରେ ଧିରେ ଉଠିଗଲା ଉପରକୁ ।

ରଙ୍ଗମଞ୍ଚ ଉପରେ ପଦଚାରଣ କରୁଥିଲେ ରାଜା । ପଛ ପାଖରେ ଦୁଇହାତ ଛନ୍ଦି ସେ ଅନ୍ୟମାନଙ୍କ ମଧ୍ୟରେ ଜୟଦେବ ବସିଥିବା ଦର୍ଶକମଣ୍ଡଳୀ ଆଡ଼କୁ ବକ୍ର ଦୃଷ୍ଟିରେ ବେଳେବେଳେ ଅନାଉଥିଲେ । ତାଙ୍କର ଗତିପଥ ଥିଲା ସ୍ୱସ୍ଥାନରୁ ଉତ୍ତରକୁ, ଉତ୍ତରରୁ ପଶ୍ଚିମ ଏବଂ ପଶ୍ଚିମରୁ ଦକ୍ଷିଣପଥ ଦେଇ ରଙ୍ଗମଞ୍ଚର ପୂର୍ବ ନିର୍ଦ୍ଧାରିତ ସ୍ଥାନକୁ । ପଛରେ ହାତପାପୁଲି ଘଷି ଘଷି ଗୋଡ଼ାଉଥିଲେ ପାଟମନ୍ତ୍ରୀ ।

ପଦଚାରଣକୁ ଈଷତ୍ ମନ୍ଥର କରି ମନ୍ତ୍ରୀଙ୍କୁ ସମ୍ବୋଧି ରାଜା ଗାନକଲେ -

କହ ମନ୍ତ୍ରୀବର, ମୋର ରାଜ୍ୟ ସମାଚାର ହେ !

(କହ ମନ୍ତ୍ରୀବର)

କୁଶଳେ ଅଛନ୍ତି ଟିକି ପରଜା ସକଳ ହେ....
(କହ ମନ୍ତ୍ରୀବର)
ପ୍ରଗତିମୂଳକ କାର୍ଯ୍ୟେ ସୁଫଳ ହେ .....
(କହ ମନ୍ତ୍ରୀବର)

ତା'ପରେ ମହାରାଜା ରଙ୍ଗମଞ୍ଚରେ ଘେରାଏ ଘୂରିଯାଇ ସଦର୍ପରେ ଠିଆହୋଇ ଦର୍ଶକଙ୍କୁ ଅନାଇ ପାପୁଲି ଦ୍ୱୟକୁ ଅଣ୍ଟାରେ ଥାପି ମନ୍ତ୍ରୀବରଙ୍କୁ ପୁଛାକଲେ, "କହ ମନ୍ତ୍ରୀବର ଆମ୍ଭ ରାଜ୍ୟରେ ସମସ୍ତେ କୁଶଳରେ ଅଛନ୍ତି ତ ?"

ଅତଃପର ମନ୍ତ୍ରୀ ତାଙ୍କ ପଦଚାରଣ ସ୍ଥଗିତ କଲେ ଏବଂ ଅଧା ଡ଼ୋଳା ମହାରାଜାଙ୍କ ଆଡ଼କୁ ଢ଼ାଳି ଏବଂ ଅନ୍ୟ ଅଧା ଦର୍ଶକମଣ୍ଡଳୀ ଆଡ଼ିକି ଥାପି ଗାନ କଲେ -

ଆହେ ମହାରାଜା - କୁଶଳେ ଅଛନ୍ତି ତବ
ସମସ୍ତ ପରଜା ହେ
(ଆହେ ମହାରାଜା)

ପରଦା ଅନ୍ତରାଳରୁ ବାଜା ବାଜିଲା - ଡ଼ିମ୍ ଡ଼ିମ୍ ଡୁଡୁମ୍ । ସେହି ବାଜା ସାଂଗରେ ତାଳଦେଇ କେହି ଜଣେ ନେପଥ୍ୟରୁ ଗାଇଉଠିଲେ -

ଉପରିସ୍ଥ ହାକିମିଏ ଖା'ନ୍ତି ଖଣ୍ଡ ଖଜା ହେ
(ଆହେ ମହାରାଜା)
ଶିଳ୍ପପତି ଠିକାଦାର ଭାଗ୍ୟେ ମାଛ ଭଜାହେ
(ଆହେ ମହାରାଜା)

ବାଦ୍ୟ ଏବଂ ଗାନ ସ୍ଥଗିତ ହେଲାପରେ ମନ୍ତ୍ରୀ ମହୋଦୟ ତାଙ୍କ ବାହୁଦ୍ୱୟକୁ ଦୁଇ ଦିଗରେ ପ୍ରସାରଣ କରି ବୁଝାଇଦେଲେ, "ସମସ୍ତେ କୁଶଳ ମହାରାଜ, କେଡ଼େ ବଡ଼ ବନ୍ୟା ଗଲା, ବାତ୍ୟା ଗଲା ଏବଂ ମରୁଡ଼ି ବି ଗଲା, ଆମ ରାଜ୍ୟରେ କେହି ମରିନାହାନ୍ତି । ଆମେ ଜାଣେ କାହାକୁ ବି ମରିବାକୁ ଦେଇନୁ ମହାରାଜ !"

ତତ୍ପରେ ପ୍ରସାରିତ ବାହୁଦ୍ୱୟକୁ ପୁନଃ ସଙ୍କୁଚିତ କରି ଦର୍ଶକମଣ୍ଡଳୀଙ୍କୁ ମନ୍ତ୍ରୀବର ଅନାନ୍ତେ ରାଜା ଶଙ୍କିତ ସ୍ୱରରେ କହିଲେ, "ତଦ୍ୱାରା ଯେ ଜନସଂଖ୍ୟା ବୃଦ୍ଧି ପାଇବାର ସମ୍ଭାବନା ମନ୍ତ୍ରୀବର ! ତାହା ଅତୀବ ଚିନ୍ତାର ବିଷୟ ।"

"ସେଥିପ୍ରତି ଆମ୍ଭେ ସଂପୂର୍ଣ୍ଣ ସଚେତନ ମହାରାଜ ।" - ଉତ୍ତରରେ ମନ୍ତ୍ରୀ । "ଖାସୁ ଏବଂ ବନ୍ଧ୍ୟାକରଣ ଅସ୍ତ୍ରୋପଚାରରେ ଆମ୍ଭ ରାଜ୍ୟ ଏଥର ଏକ ନୂତନ ରେକର୍ଡ଼ ସ୍ଥାପନ କରିଛି ।"

: ସାଧୁ ମନ୍ତ୍ରୀବର ସାଧୁ!

: କିନ୍ତୁ ମହାରାଜ!!

: କିନ୍ତୁ ପୁଣି ଗୋଟାଏ କାହିଁକି ମନ୍ତ୍ରୀବର?

ମନ୍ତ୍ରୀ : ଜମିଜମା ସିଲିଂ ନିୟମ ତହିଁରେ ଏକ ଅନ୍ତରାୟ ହେଉଛି ।

ରାଜା: କେମିତି? ଜମି ସିଲିଂ ଯେ ଏକ ପ୍ରଗତିମୂଳକ ପଦକ୍ଷେପ ମନ୍ତ୍ରୀବର!

ମନ୍ତ୍ରୀ: ଅବିବାହିତମାନେ ସିଲିଂ ପାଇବା ପାଇଁ ହକ୍‌ଦାର ହେଉନଥିବାରୁ ପଚାଶବର୍ଷିଆ ଅବିବାହିତ ବୁଢ଼ାମାନେ ମଧ୍ୟ ଏବେ ବିବାହ କରି ନେଉଛନ୍ତି ଏବଂ ତିନିରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ସନ୍ତାନ ପାଇଁ ଦୁଇ ଷ୍ଟାଣ୍ଡାର୍ଡ ଏକର ଲେଖାଁ ବଳକା ଜମି ଦେବା ଫଳରେ ଚାଷୀକୂଳ ଯଥାଶୀଘ୍ର ସନ୍ତାନ ପ୍ରସବ କର୍ମରେ ନିମଜ୍ଜିତ ହୋଇଗଲେଣି ମହାରାଜ!

ରାଜା: ସେଥିପାଇଁ ମଧ୍ୟ ସିଲିଂର ଗୋଟିଏ ସୀମା ରଖାଯାଇଛି ନା ମନ୍ତ୍ରୀବର?

ମନ୍ତ୍ରୀ: ହଁ ମହାରାଜ! ଅଛି, କିନ୍ତୁ ଦଶ ଷ୍ଟାଣ୍ଡାର୍ଡ଼ ଏକର ସ୍ଥଳରେ ସେ ସୀମା ୧୮ ଷ୍ଟାଣ୍ଡାର୍ଡ଼ ଏକର । ତେଣୁ ସେ ସୀମା କେବଳ ଶ୍ରୀକୃଷ୍ଣଙ୍କ ଜନ୍ମକୁ ରୋକିଦେଇପାରିଛି ।

ରାଜା: ସାଧୁ ମନ୍ତ୍ରୀବର ସାଧୁ! ଶ୍ରୀକୃଷ୍ଣ ହିଁ ଏକମାତ୍ର ଭୟର କାରଣ ଏବଂ ସେ ଜନ୍ମନେଇ ନପାରିଲେ, ଆମ୍ଭର ଚିନ୍ତା କରିବାର କୌଣସି କାରଣ ନାହିଁ । ତଥାପି କହ ମନ୍ତ୍ରୀବର, ଏକଥା କଣ ସତ୍ୟ ଯେ, ମୋ ରାଜ୍ୟରେ ଦୁର୍ନୀତି, ଦୁରାଚାର, ଲାଞ୍ଚମିଛ, ପ୍ରିୟାପ୍ରୀତିତୋଷଣ ଅତିମାତ୍ରାରେ ବୃଦ୍ଧିପାଇଛି? କହ ମନ୍ତ୍ରୀବର, ନିଃସଂକୋଚରେ କହ, ଭୟଶୂନ୍ୟ ହୃଦୟରେ ସେକଥା ଆମ୍ଭ ନିକଟରେ ପ୍ରକାଶ କର ।

ମନ୍ତ୍ରୀ: ଏକଥା ଉଣା ଅଧିକେ ସତ ମଣିମା । କିନ୍ତୁ ଅତିମାତ୍ରାରେ ବୋଲି କହିବା ଅତିରଞ୍ଜିତ ହେବ । ଲାଞ୍ଚମିଛ, କଳାବଜାର ଟିକେ ନହେଲେ ପାର୍ଟିଫଣ୍ଡକୁ ଚାନ୍ଦା ଆସିବ କେମିତି ମହାରାଜ? ଆଉ ସେ ଚାନ୍ଦା ବିନା ଯେ, ପାର୍ଟିରେ ଅସ୍ତିତ୍ୱ ସନ୍ଦିହାନ! ଆମ ବିଧାୟକମାନଙ୍କର ମତ ଯେ, ଯିଏ ନିଜ ନିଜ ହିତ ନିଜ ପରିବାର ତଥା ବନ୍ଧୁବାନ୍ଧବଙ୍କ ହିତ ରକ୍ଷାକରିବାରେ ଅସମର୍ଥ, ସେ ପର ହିତ ସାଧନ କରିବାକୁ ସମର୍ଥ ହେବ କିପରି? ବିଧାୟକଙ୍କୁ ନେଇ ତ ମନ୍ତ୍ରୀମଣ୍ଡଳ ମହାରାଜ!

ରାଜା: ଯଥାର୍ଥ ମନ୍ତ୍ରୀବର, ଯଥାର୍ଥ । ତୁମ୍ଭ ବାଣୀ ନିରାଧାର ସତ୍ୟ । ଲାଞ୍ଚମିଛ, ପ୍ରିୟାପ୍ରୀତିତୋଷଣ କେବଳ ମଣିଷ ସମାଜରେ ସମ୍ଭବ। ପଶୁପକ୍ଷୀ କୀଟପତଙ୍ଗଙ୍କ ପରି ଇତର ସମାଜରେ ସମ୍ଭବପର ନୁହେଁ। ତେବେ ଲୋକେ ଯେମିତି ଏ ବିଷୟରେ ପାଟିତୁଣ୍ଡ ନକରିବେ, ସେଥିପାଇଁ କଣ ସବୁ ବ୍ୟବସ୍ଥା କରିଛ ମନ୍ତ୍ରୀବର? ପାଟିତୁଣ୍ଡରୁ ତ ଶ୍ରୀକୃଷ୍ଣଙ୍କ ଆଗମନ ହୁଏ ।

ମନ୍ତ୍ରୀ: ଆମ୍ଭ ଉପଦେଷ୍ଟାମାନଙ୍କ ମତ ଯେ, ତିନୋଟି କାରଣରୁ ପାଟିତୁଣ୍ଡ ହୁଏ ମହାରାଜ !

ପ୍ରଥମରେ - ମଣିଷକୁ ଯେତେବେଳେ କୌଣସି କଥା ବାଧେ ।

ଦ୍ୱିତୀୟରେ - ବାଧିଲେ, କଣ ବାଧୁଛି ବୁଝିବାକୁ ତାର ସାମର୍ଥ୍ୟ ଥାଏ ଏବଂ ପାଟିତୁଣ୍ଡ କରିବାର ଶକ୍ତି ଥାଏ ।

ଏବଂ ତୃତୀୟରେ - ନବାଧୁଥିଲେ ମଧ୍ୟ ବାଧୁଛି ବାଧୁଛି ବୋଲି କହି କୁମ୍ଭୀର କାନ୍ଦଣା କାନ୍ଦୁଥିବା ବ୍ୟକ୍ତିବିଶେଷଙ୍କ 'ତିନି ତୁଣ୍ଡରେ ଛେଳି କୁକୁର' - ପ୍ରଚାର ଫଳରେ ସାଧାରଣ ନିର୍ବୋଧ ମଣିଷ ନବାଧୁଥିଲେ ମଧ୍ୟ ବାଧୁଛି ବୋଲି ଧରିନିଏ ।

ଆମେ ସେସବୁ ଅନୁଧ୍ୟାନ କରି ଯଥୋଚିତ ପ୍ରତିକାର କରିଛୁ ମହାରାଜ !

ରାଜା : କିପରି ?

ମନ୍ତ୍ରୀ : ପ୍ରଥମ କାରଣଟି ଦାରିଦ୍ର୍ୟ ଏବଂ କ୍ଷୁଧାଜନିତ । ତେଣୁ ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଆମର ଶତକଡ଼ା ୬୭ ଭାଗ ଲୋକଙ୍କୁ ସେ ସୀମାରେଖାର ଉପରକୁ ଠେଲିବା ପାଇଁ ଆମେ ସିଲିଂ ଉଦ୍‌ବୃତ୍ତ ଜମି ବଣ୍ଟନ କରୁଛୁ । ତନ୍ତୀ, କମାର, କୁମ୍ଭାର, ବଢ଼େଇ ପ୍ରଭୃତି କାରିଗର ଶ୍ରେଣୀୟ ଲୋକଙ୍କୁ ଯନ୍ତ୍ରପାତି କିଣିବା ପାଇଁ ଋଣ ଦେଉଛୁ ! ଗାଈ, ମେଣ୍ଢା, କୁକୁଡ଼ା, ବତକ ଏବଂ ମାଛଚାଷ ପାଇଁ ଋଣ ଦେଉଛୁ । ସେହି ୬୭ ଭାଗ ଲୋକଙ୍କ ଭିତରୁ ଅଧିକାଂଶ ଏତେ ଅନୁନ୍ନତ ଯେ, ଭୋକ ବ୍ୟତୀତ ଅନ୍ୟ କଣ ତାଙ୍କୁ ବାଧୁଛି ସେକଥା ଜାଣିବା ପାଇଁ ମଧ୍ୟ ସେମାନେ ଅକ୍ଷମ ।

ଦ୍ୱିତୀୟ ଶ୍ରେଣୀର ଚାକିରି-ବାକିରି, ବାର୍ଦ୍ଧକ୍ୟ-ପେନ୍‌ସନ୍ ଇତ୍ୟାଦି ଦିଆଯାଉଛି ମହାରାଜ !

ଏବଂ ତୃତୀୟ ଶ୍ରେଣୀର ଲୋକଙ୍କୁ ଲାଇସେନ୍ସ, ପରମିଟ୍, ଠିକାଦାରୀ ଦେଇ ବୋର୍ଡ଼୍, କର୍ପୋରେସନ ଏବଂ କମିଶନମାନଙ୍କ ଚେୟାରମ୍ୟାନ୍ କରି, ବିଦେଶ ପର୍ଯ୍ୟଟନରେ ପଠାଇ, ଦଳ ବଦଳର ସୁଯୋଗ ଦେଇ ଏବଂ ଏପରିକି ମନ୍ତ୍ରୀମଣ୍ଡଳରେ ସ୍ଥାନ ଦେଇ ସେମାନଙ୍କ ସହାୟତା ଲୋଡ଼ାଯାଉଛି ।

ରାଜା : "ସାଧୁ ମନ୍ତ୍ରୀବର - ଅତୀବ ସାଧୁ ! କିନ୍ତୁ ତୁମ୍ଭେ ତ ଜାଣ ସିଲିଂ ଉଦ୍‌ବୃତ୍ତ ଜମି ପ୍ରାୟ ନିରସ । ତେଣୁ ନିରସ ଜମି ବିତରଣରେ କେବଳ ଦାରିଦ୍ର୍ୟ ବଣ୍ଟନ ହେବ, ମନ୍ତ୍ରୀବର ! ସେପରି ଜମିକୁ ସରସ କରିବା ପାଇଁ ଋଣ ଦେଉଛି ତ ? ଆଉ ଦେଖ - ଏ ସମସ୍ତେ ଋଣ ନେଇ ଘୃତ ପିଇଦେବେ - ଛେଳିମେଣ୍ଢା, କୁକୁଡ଼ା, ବତକ

ମରିଗଲା ବୋଲି କହି ଭୋଜନ କରିଦେବେ । କଠିନ ପରିଶ୍ରମ ବିନା ଦାରିଦ୍ର୍ୟ ଦୂରୀକରଣ ସମ୍ଭବପର ନୁହେଁ, ତେଣୁ ଏ ସମସ୍ତଙ୍କୁ କଠିନ ପରିଶ୍ରମ କରିବାକୁ ପ୍ରବର୍ତ୍ତାଉଛ ତ ? କଠିନ ପରିଶ୍ରମ କରୁଥିବା କୁଶଳୀ କର୍ମୀମାନଙ୍କୁ ମାନପତ୍ର ଏବଂ ଉପଢ଼ୌକନ ଦେଇ ପ୍ରୋତ୍ସାହନ ଦେଉଛ ତ ? ଏବଂ ପରିଶେଷରେ ସାହିତ୍ୟିକିମାନଙ୍କର ସାହାଯ୍ୟ ଲୋଡୁଛ ତ ?

ତୁମ୍ଭେ ତ ଜାଣ ମନ୍ତ୍ରୀବର - ତଲ୍‌ୱାର ଅପେକ୍ଷା କଲମ ଅଧିକ ଶକ୍ତିଶାଳୀ । ତାଙ୍କ କଲମକୁ ତୁମେ ଜନକଲ୍ୟାଣ କର୍ମରେ ନିୟୋଜିତ କର । ସାହିତ୍ୟିକମାନଙ୍କୁ ମାନପତ୍ର ସହ ଉପଢ଼ୌକନ ଦେଇ ତାଙ୍କ କଲମ ମୁନରେ ଦାରିଦ୍ର୍ୟର ସୀମାରେଖାକୁ ଦନ୍ତୁରିତ କରାଇଦିଅ । ଲୋକେ ବୁଝନ୍ତୁ ଯେ ଦୁରାଚାର, ଭ୍ରଷ୍ଟାଚାର ସମ୍ବନ୍ଧରେ ଯାହାସବୁ ପ୍ରଚାର ହେଉଛି, ସେସବୁ ଅପପ୍ରଚାର । ଏବେ ପ୍ରଜାକୁଳ ଶାନ୍ତି ଓ ସୁଖରେ କାଳାତିପାତ କରୁଛନ୍ତି । ହିସାବକିତାପ ଦେଇ ସାହିତ୍ୟିକମାନେ ବୁଝାଇ ଦିଅନ୍ତୁ ଯେ, ଚୋରି ଡ଼କାୟତି, ନରହତ୍ୟା, ନାରୀଧର୍ଷଣ ପୂର୍ବ ତୁଳନାରେ ଏବେ କମ୍ । ଦାରିଦ୍ର୍ୟ କିମ୍ବା ଅନ୍ୟ କୌଣସି କାରଣରୁ କାହା ଘରେ ଯଦି ତାଲା ପଡ଼ିନାହିଁ, ଘରମାନଙ୍କରେ ତାଲା ପଡୁନଥିବା କଥା ସେମାନେ ଦର୍ଶାଇ ଦିଅନ୍ତୁ। ଆଜିର ଏହି ପରିସଂଖ୍ୟାନ ଯୁଗରେ ଆପେକ୍ଷିକ ପରିସଂଖ୍ୟାନ ହିଁ ସାମାଜିକ ଚେତନା । ସେହି ସାମାଜିକ ଚେତନାକୁ ସେମାନେ ଜାଗ୍ରତ କରନ୍ତୁ ।

ଯାଅ ମନ୍ତ୍ରୀବର - ଯାଅ । କାଳବିଳମ୍ୱ ନକରି ଆମ୍ଭ ପରାମର୍ଶ କାର୍ଯ୍ୟକାରୀ କର ।"

ମନ୍ତ୍ରୀବର ରାଜାଙ୍କୁ ବିଦାୟକାଳୀନ ବିନୀତ ନମସ୍କାର ଜଣାଇଦେଲାବେଳେ ହଠାତ୍ ବିଜୁଳି ଆଲୁଅ ପୂର୍ଣ୍ଣ ଶକ୍ତି ନେଇ ଜଳିଉଠିଲା, ଏବଂ ରଙ୍ଗମଞ୍ଚର ଯବନିକା ପତନ ହେବା ସଂଗେ ସଂଗେ ଜୟଦେବ ଚମକିଲା ପରି ଚେଇଁଉଠିଲେ । ସମୟ ଦେଖି ଜାଣିଲେ ରାତି ପ୍ରାୟ ଗୋଟାଏ । ରେଡ଼ିଓ ସାଁ ସାଁ କରିଚାଲିଛି । ଏତେ ରାତିରେ ସେ କ'ଣ ଅବା ଆଉ କରନ୍ତେ । ରେଡ଼ିଓ ବନ୍ଦକରି ବିଜୁଳି ଆଲୁଅ ଲିଭାଇଦେଇ ପୁଣିଥରେ ବିଛଣାରେ ଶୋଇଗଲେ ।

ପାଖ ଗାଁ ଦଣ୍ଡନାଟର ବାଜା ଏବେ ବି ଶୁଭୁଥିଲା ସ୍ପଷ୍ଟ ।

ଯଥା ସମୟରେ ଜୟଦେବଙ୍କ ନାସିକାର ହୁଇସିଲ୍ ପୁଣିଥରେ ଗର୍ଜିଉଠିଲା ଏବଂ ରଙ୍ଗମଞ୍ଚର ପରଦା ଧିରେ ଧିରେ ଉଠିଗଲା ଉପରକୁ ।

ରଙ୍ଗମଞ୍ଚ ଉପରେ ଦେଖାଦେଲେ ସ୍ୱୟଂ ଜୟଦେବ । ତାଙ୍କ ହାତରେ ଥିଲା ଖଣ୍ଡିଏ ଦୈନିକ ଖବରକାଗଜ । ସେ ଅତି ଆଗ୍ରହର ସହିତ କାଗଜର କୌଣସି ସ୍ତମ୍ଭ

ପଢ଼ି ଅତି ଉତ୍‌ଫୁଲିତ ଓ ଉଲ୍ଲସିତ ହେଉଥିଲେ । କିଛିକ୍ଷଣ ପରେ ସେ ଚିତ୍କାର କଲେ - "ଏ ଶୁଣୁଛ - ଦେଖ ଖବରକାଗଜରେ କ'ଣ ବାହାରିଛି ! ମୁଁ ତମକୁ ଯେତେବେଳେ କହୁଥିଲି, ହୀରାକୁଦ ବନ୍ଧ ନିର୍ମାଣ ଦିନର ଆମର କଠୋର ପରିଶ୍ରମ ଦିନେ ନା ଦିନେ ଜାତିର ସ୍ୱୀକୃତି ପାଇବ, ତମେ ହସି ଥଟ୍ଟା କରୁଥିଲ । ଏବେ ଦେଖ, ହୀରାକୁଦ ବନ୍ଧର ରଜତ ଜୁବିଲି କେମିତି ମହାସମାରୋହରେ ପାଳିତ ହେବାକୁ ଯାଉଛି । ନାଚଗୀତ, ଆଲୋକସଜ୍ଜା, ଆତସବାଜି ସାଂଗକୁ ଭୋଜି ଭାତ । ସେ ଦିନର କେତେ କୁଶଳୀ କର୍ମୀ । ମାନପତ୍ର ସହ ଉପଢ୍ୌକନ ମଧ୍ୟ ପାଇବେ । ଉତ୍ସବ ଆଉ ତିନିଦିନ ମାତ୍ର ବାକି । କାଲି ଆମକୁ ଯେ କୌଣସି ମତେ ଘରୁ ବାହାରିବାକୁ ପଡ଼ିବ ।"

ଜୟଦେବଙ୍କ ସ୍ତ୍ରୀ ବୋଧହୁଏ ରୁଟି ତିଆରି କରୁଥିଲେ - ପକ୍ଷ ଅନ୍ତରାଳରୁ ରଙ୍ଗମଞ୍ଚକୁ ଚାଲିଆସି ହାତ ଆଙ୍ଗୁଠି ସନ୍ଧିମାନଙ୍କରେ ଲାଖିଥିବା ଅଟା ଛଡ଼ାଇ ଛଡ଼ାଇ ପଚାରିଲେ - "କୌଣସି ନିମନ୍ତ୍ରଣ ପତ୍ର ଆସିଥିଲା କି ?"

ଜୟଦେବ 'ନା' କହିବା ପୂର୍ବରୁ ଟିକିଏ ଥତମତ ହେଲେ। ପରେ ଅପ୍ରତିଭ ଉତ୍ତର ଦେଲେ - 'କାଗଜ ସ୍ତମ୍ଭରେ କିନ୍ତୁ ଅନୁରୋଧ କରାଯାଇଛି ଯେ, ବନ୍ଧ ନିର୍ମାଣରେ ସଂପୃକ୍ତ ବ୍ୟକ୍ତିମାନେ ଯଦି ଯଥା ସମୟରେ ନିମନ୍ତ୍ରଣ ପତ୍ର ନପାଆନ୍ତି, ତେବେ ଏହାକୁ ନିମନ୍ତ୍ରଣ ପତ୍ର ବୋଲି ଧରିନେଇ ଜୁବିଲି ଉତ୍ସବରେ ଯୋଗଦେବେ ।"

ଜୟଦେବଙ୍କ ସ୍ତ୍ରୀ ତାଚ୍ଛଲ୍ୟଭରା ହସ ହସି ପଚାରିଲେ, 'ନିମନ୍ତ୍ରଣ ପତ୍ର ତ ଆସିନି, ତମମାନଙ୍କୁ ଅଭ୍ୟର୍ଥନା କିମ୍ବା ମାନପତ୍ର ଦିଆଯିବ ବୋଲି ଧରିନେଉଛ କାହିଁକି ? କାଗଜରେ କୌଣସି ନାମର ଉଲ୍ଲେଖ ଅଛି କି ?"

ଜୟଦେବଙ୍କ କଣ୍ଠସ୍ୱର ଥିଲା ଅତି ନରମ । କହିଲେ, "ଆମକୁ ଯଦି ଭୁଲିଯିବେ ତେବେ ମାନପତ୍ର ଦେବେ କାହାକୁ ? ହେଇ ପରା ଖବରକାଗଜ ସ୍ତମ୍ଭରେ ସମୟର ସ୍ୱଳ୍ପତା କଥା ଦର୍ଶାଇ ସାଧାରଣ ଅନୁରୋଧ କରାଯାଇଛି । ଆମେ ନ ଗଲେ....'

ଶ୍ରୀମତୀ ପାପୁଲି ଝାଡୁଥିଲେ। ଟିପ୍ପଣୀ କାଟିଲେ - 'ତମେ ଭୁଲିଯାଉଛ ଯେ, ଆମ ରାଜ୍ୟରେ ମଲାପରେ ଜାତି ଲୋକଙ୍କୁ ଚିହ୍ନେ ଆଉ ସ୍ମୃତି ତର୍ପଣ କରି ଶ୍ରଦ୍ଧାଞ୍ଜଳି ଦିଏ । ଗାଁ କନିଆ ପରା ସିଙ୍ଘାଣିନାକୀ ! ରଜତ ଜୁବିଲି ପରି ଏଡ଼େ ବଡ଼ ଉତ୍ସବ, ତହିଁରେ ଏମାନଙ୍କ ପାଇଁ ସମୟର ଏମିତି ଅଭାବ ପଡ଼ିଲା ଯେ, ତମକୁ ନିମନ୍ତ୍ରଣ ପତ୍ରଟିଏ ବି ଦେଇପାରିଲିନି ? ମୁଁ କହୁଛି, ତମେ ଗଲେ ତମକୁ କେହି ଚିହ୍ନିବେନି । ଖାଲି ହଟହଟା ହେବ । ଗଲେ ବୁର୍ଲାରେ କେଉଁଠି ରହିବ ଶୁଣେ ? ସବୁ ଡ଼ାକବଙ୍ଗଳା,

ଗେଷ୍ଟହାଉସ୍ ତ ମନ୍ତ୍ରୀ, ତାଙ୍କ ପାର୍ଶ୍ୱଚର ଏବଂ ବଡ଼ ବଡ଼ ହାକିମମାନଙ୍କ ପାଇଁ ରିଜର୍ଭ କରାହୋଇଯାଇଥିବ, ତୁମପରି ରିଟାୟାର୍ଡ଼ ଇଞ୍ଜିନିୟରଙ୍କୁ ପଚାରିବ କିଏ? ମୁଁ କହୁଛି - ନିମନ୍ତ୍ରଣ ପତ୍ର ନପାଇଲେ ତମେ ସେ ଉତ୍ସବକୁ ଅଯଥା ମନକଷ୍ଟ କରିବା ପାଇଁ ଯାଅନା ।'

ଜୟଦେବଙ୍କ ସ୍ତ୍ରୀ ରଙ୍ଗମଞ୍ଚର ପକ୍ଷ ଅନ୍ତରାଳକୁ ପୁଣିଥରେ ଅପସରି ଗଲାବେଳେ ଜୟଦେବଙ୍କ ମୁହଁ ଫିକା ପଡ଼ିଯାଇଥିଲା । ସେ ତାଙ୍କ ସ୍ତ୍ରୀଙ୍କ ଆଡ଼କୁ ଅନାଇ ଅଭିମାନଭରା ସ୍ୱରରେ ସ୍ୱଗତୋକ୍ତି କରୁଥିଲେ - ଯେଉଁ ବନ୍ଧ ନିର୍ମାଣରେ ଆମେ ଆମ ଜୀବନର ସର୍ବଶ୍ରେଷ୍ଠ ଅଂଶ ଅକାତରରେ ଢ଼ାଳି ଦେଇଛୁ ସାମାନ୍ୟ ନିମନ୍ତ୍ରଣ ପତ୍ରଟିଏ ପାଇଲିନି ବୋଲି ସେ ବନ୍ଧର ରଜତ ଜୁବିଲି ଉତ୍ସବକୁ ଯିବନି? ତା'ପରେ ତାଙ୍କ କଣ୍ଠସ୍ୱର ହୋଇଥିଲା ଦୃଢ଼ । ସେ କହୁଥିଲେ - 'ଯିବି, ନିଶ୍ଚୟ ଯିବି । ତମେ ନଗଲେ ନଯାଅ ।'

ସେ ପୁଣି ସ୍ୱଗତୋକ୍ତି କରି ଚାଲିଥିଲେ, "ଯେଉଁ ଇଂଜିନିୟର ମାନେ ହୀରାକୁଦ ବନ୍ଧରେ ତାଙ୍କ ଦେହର ରକ୍ତ ଢ଼ାଳିଛନ୍ତି, ମାତ୍ର ପଚିଶ ତିରିଶ ବର୍ଷରେ ଜାତି ସେମାନଙ୍କୁ ଭୁଲିଯିବ? ତେବେ ଏ ରଜତ ଜୟନ୍ତୀ ଉତ୍ସବ ହେଉଛି କାହିଁକି? ତାର ତାତ୍ପର୍ଯ୍ୟ ଅବା କ'ଣ? ତାଙ୍କପରି ଇଂଜିନିୟରମାନଙ୍କୁ ସମ୍ମାନ ନଦେଖାଇ ଏ ଉତ୍ସବ ସମ୍ଭବ ହେବ କେମିତି? ମାନପତ୍ର ତେବେ ଦେବେ କାହାକୁ? ମନକୁ ମନ ସେ କହୁଥିଲେ - ଉତ୍ସବକୁ ପଟ୍ଟନାୟକ ଆସିଥିବ, ମହାନ୍ତି ଆସିଥିବ, ତ୍ରିପାଠୀ, ପାଲିତ, ରାଓ ବି ହୁଏତ ଆସିଥିବେ । ଆଉ ହଁ ମିଶ୍ରବାବୁ! ସେ ବି ଆସିଥିବେ । ମିଶ୍ରବାବୁଙ୍କ ସଂଗରେ ଏତେବର୍ଷ ହେଲା ଦେଖାହେଇନି, ତାଙ୍କ ସାଂଗରେ ପୁଣିଥରେ ଦେଖାହେଇଯିବ। ସେ ପୁଲକିତ ହୋଇଉଠିଲେ । ମୁହଁ ନଫେଡ଼ାଇ କହିଲେ - 'ହେଲା କୌଣସି ଉପଢ଼ୌକନ ନ ମିଳିଲେ, ଫୁଲ ଚନ୍ଦନ ଟିକେ ତ ମିଳିବ । ଏମାନଙ୍କ ସଂଗରେ ତ ଦେଖା ହୋଇଯିବ ।'

ଚାରିଆଡ଼ିକି ଆଖି ବୁଲାଇ ନେଇ ସେ ଏଥର ଗୁଣୁଗୁଣାଉଥିଲେ - "ଇଂଜିନିୟରମାନଙ୍କ ଦ୍ୱାରା ଆୟୋଜିତ ଏ ଉତ୍ସବ, ସେମାନେ ତାଙ୍କ ପୂର୍ବତନ ସିନିୟର ଇଂଜିନିୟରମାନଙ୍କ ପାଇଁ କିଛି ସୁବିଧା କରିନଥିବେ? କୋଟି କୋଟି ଖର୍ଚ୍ଚ କରିବା ବାଲା ଏମାନେ - ହୁଏତ ଆମକୁ ଉପଢ଼ୌକନ ଦେବେ ରୂପା ତାରକସୀ ତିଆରି ହୀରାକୁଦ ବନ୍ଧର ଗୋଟାଏ ଗୋଟାଏ ଛୋଟ ମଡ଼େଲ୍ ।"

ମଡ଼େଲ୍‌କୁ କେଉଁଠି ରଖିବେ, ସେ ଘରର କାନ୍ଥ ଚାରିଆଡ଼େ ନଜର ବୁଲାଇ ଆଣିଲେ । ସେ ଆଲମାରି ଉପରେ ମଝାମଝି ମଡ଼େଲଟି ବେଶ୍ ମାନିବ । ମଡ଼େଲ୍‌କୁ

ଦେଖି ତାଙ୍କ ଅଣନାତି ପଣନାତିମାନେ ଦିନେ ହୁଏତ ତାଙ୍କ ଅଜା-ପଣଅଜାଙ୍କ କୀର୍ତ୍ତି ଗାନ କରି କହିବେ...

କଥନର ଅସ୍ପଷ୍ଟତା ମଧ୍ୟରେ ରଙ୍ଗମଞ୍ଚର ଆଲୋକ ଲିଭିଯାଇଥିଲା । ରଙ୍ଗମଞ୍ଚ ପୁଣିଥରେ ଆଲୋକିତ ହେଲାବେଳକୁ ପଟ୍ଟ ପରିବର୍ତ୍ତନ ହୋଇ ଦେଖାଦେଇଥିଲା ଏକ ନୂତନ ଦୃଶ୍ୟ ।

ପଛପଟେ ହୀରାକୁଦ ବନ୍ଧ । ବାରପାହାଡ଼ର ସବୁଜ ବନାନୀ ମଧ୍ୟରେ ଅଶୋକ ନିବାସ, ଜବାହର ମିନାର ଅତି ସୁନ୍ଦର ଦେଖାଯାଉଥିଲା । ପାୱାର ହାଉସ୍ ପାଖରେ ଜୁବିଲି ଉତ୍ସବର ସାଜସଜ୍ଜା ଆଖି ଝଲସାଇ ଦେଉଥିଲା । ବଡ଼ ବଡ଼ ନାଲିନେଳୀ ବିଜୁଳି ଅକ୍ଷର ଘୋଷଣା କରୁଥିଲା ହୀରାକୁଦ ବନ୍ଧର ରଜତ ଜୁବିଲି । ଧାଡ଼ିକି ଧାଡ଼ି ସାମିଆନା ଏବଂ ପିପିଲି ଚାନ୍ଦୁଆରେ ସୁଶୋଭିତ ଥିଲା ସଭାସ୍ଥଳୀ । ବରଗଡ଼ ବରପାଲିର କାରୁକାର୍ଯ୍ୟଭରା ପାଟବସ୍ତ୍ରରେ ସୁସଜ୍ଜିତ ଥିଲା ସଭାସ୍ଥଳ। କିସମ୍ କିସମ୍‌ର ରଙ୍ଗୀନ ଲାଇଟ୍ ସେ ପାଟବସ୍ତ୍ରମାନଙ୍କରେ ବିଭିନ୍ନ ଝଲକ ଫୁଟାଉଥିଲା । ସଭାସ୍ଥଳର ଚାରିଆଡ଼େ ଆଲୋକର ମାଳା। ଆମ୍ରପତ୍ର ଓ ନାରିକେଳ ବହନ କରିଥିବା ପଚିଶଟି ସୁନେଲି ଚିତ୍ରିତ କଳସୀ ମଞ୍ଚ ଧାଡ଼ିରେ ସଜ୍ଜିତ ହୋଇ ବନ୍ଧନିର୍ମାଣୋଚିତ୍ତ ପଚିଶ ବର୍ଷ ସୂଚାଉଥିଲେ। ସଭାପତିଙ୍କ ଆସନ ପଛପଟେ ନାନା ରଙ୍ଗର ପାଟବସ୍ତ୍ର ସୂର୍ଯ୍ୟୋଦୟର ଆଭାନେଇ ନୂତନ ପ୍ରଭାତର ଆଗମନୀ ଜଣାଇଦେଉଥିଲା । ରଙ୍ଗମଞ୍ଚ ପରି ବିରାଟ ଥିଲା ସେ ସଭାମଞ୍ଚ । ସଭାପତିଙ୍କ ଆସନ ସ୍ୱର୍ଣ୍ଣ ସିଂହାସନ ପରି ଦେଖାଯାଉଥିଲା । ଦୁଇପାଖରେ ମାଳେ ଭେଲ୍‌ଭେଟ୍ ଗଦିଦିଆ ଉଚ୍ଚ ଚୌକି ପଛରେ ଆଉ ଦୁଇଧାଡ଼ି ବେତ ଚେୟାର୍ ।

ଜନଗହଳି ଭିତରକୁ ସନ୍ତର୍ପଣରେ ପଶି ଆସୁଥିଲେ ଜୟଦେବ । ବନ୍ଧ ନିର୍ମାଣକାଳୀନ ଜଙ୍ଗଲ ସଫେଇ ଦିନରୁ ସାଥି ରୂପେ କାମ କରିଥିବା ପଟ୍ଟନାୟକ ଓ ମହାନ୍ତିଙ୍କୁ ସଭାସ୍ଥଳରେ ଭେଟି ଜୟଦେବ ଖୁସିରେ ପ୍ରାୟ ନାଚିଉଠିଥିଲେ । ହଠାତ୍ ଦେଖାଦେଲେ ମିଶ୍ରବାବୁ । ଜୟଦେବ ମିଶ୍ରବାବୁଙ୍କୁ କୁଣ୍ଢାଇ ଧରିଲା ବେଳେ ଜଣେ ଉଚ୍ଚପଦସ୍ଥ ଇଂଜିନିୟର ସେ ସମସ୍ତଙ୍କୁ ନମସ୍କାର କରି, "ମନ୍ତ୍ରୀମାନେ ଆସୁଛନ୍ତି - ଆପଣ ସମସ୍ତେ ନିଜ ନିଜ ଆସନ ଗ୍ରହଣ କରି ନିଅନ୍ତୁ" - କହି ଜୟଦେବଙ୍କ ସହ ତାଙ୍କ ବନ୍ଧୁମାନଙ୍କୁ ଦର୍ଶକମଣ୍ଡଳୀରେ ପଡ଼ିଥିବା କେତେକ ଚୌକି ଆଡ଼ିକି ଇଙ୍ଗିତ ଦେଲେ ।

ଟ୍ରକ୍‌ମାନଙ୍କରେ ବସିଥିବା କେତେ ଦର୍ଶକ ମନ୍ତ୍ରୀମାନଙ୍କର ଦୀର୍ଘାୟୁ କାମନା କରି ଜିନ୍ଦାବାଦ ଧ୍ୱନି ଦେଉଥିଲେ । ମାଳ ମାଳ ରକେଟ୍-ବାଣର ବିସ୍ଫୋରଣ ଜଣାଇଦେଲା

ଯେ, ସଭାପତି ଏବଂ ମୁଖ୍ୟ ଅତିଥି ସଭାସ୍ଥଳରେ ପହଞ୍ଚିଗଲେଣି । ମୁଖ୍ୟ ଅତିଥିଙ୍କ ଗହଣରେ ଚାଲିଥିଲେ ମନ୍ତ୍ରୀ ଓ ନେତୃବୃନ୍ଦ, କେତେ ବିଭାଗୀୟ ଉଚ୍ଚପଦସ୍ଥ କର୍ମଚାରୀ ।

ଜନସମାଗମର ବିପୁଳ ହର୍ଷ ଧ୍ୱନି ମଧ୍ୟରେ ସଭାମଞ୍ଚ ଉପରେ ଆସନ ଗ୍ରହଣ କଲେ ସଭାପତି, ମୁଖ୍ୟ ଅତିଥି ଏବଂ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ସହ ଏମ୍‌ପି, ଏମ୍‌ଏଲ୍‌ଏ, କମିଶନର. କଲେକ୍ଟର, ଡ଼ିଆଇଜି, ଏସ୍‌ପି ଏବଂ ମୁଖ୍ୟ ଇଂଜିନିୟରମାନେ ।

ମାଲ୍ୟାର୍ପଣ ଏବଂ ପ୍ରାରମ୍ଭିକ ସଂଗୀତ 'ବନ୍ଦେ ଉତ୍କଳ ଜନନୀ' ପରେ ସ୍ୱର୍ଗୀୟ ନେହେରୁଜୀଙ୍କ ଦ୍ୱାରା ଉଦ୍‌ଘାଟିତ ସ୍ୱାଧୀନ ଭାରତର ପ୍ରଥମ ମନ୍ଦିର ଏହି ହୀରାକୁଦ ବନ୍ଧ ପଚିଶ ବର୍ଷ ଅତିକ୍ରମ କଲା ବୋଲି ସଭାପତି ଜଣାଇ ଦେଲାବେଳେ ଜନସମାଗମର କରତାଳିରେ ସଭାସ୍ଥଳୀ କମ୍ପି ଉଠିଥିଲା । ତା'ପରେ ସଭାପତି ସୂଚନା ଦେଲେ ଯେ, ହୀରାକୁଦ ବନ୍ଧ ନିର୍ମାଣ ଆରମ୍ଭ ହେଲା ବେଳେ ଜନ୍ମଗ୍ରହଣ କରି ନଥିବା ଜଣେ ନେତା ପ୍ରଥମରେ ଭାଷଣ ଦେବେ । କଲେଜ ଛାତ୍ର ପରି ଦେଖାଯାଉଥିବା ଜଣେ ନେତା ଜଣକ 'କି ଥିଲା ଏ ରାଜ୍ୟ କି ହୋଇଛି ଆଜ'ବୋଲି କହି ତାଙ୍କ ଦଳ ଦ୍ୱାରା ନିର୍ମିତ ହୀରାକୁଦ ବନ୍ଧ ଯୋଗୁ ଏକ ମରୁଡ଼ିଗ୍ରସ୍ତ ଅଞ୍ଚଳ କିପରି ଶସ୍ୟଶ୍ୟାମଳା ଏବଂ ସ୍ୱର୍ଣ୍ଣପ୍ରସୂ ହୋଇଉଠିଥିଲା ତାର ଏକ ବିଶଦ ବିବରଣୀ ଦେଇ ଆସନ ଗ୍ରହଣ କଲାପରେ ସଭାପତି କହିଲେ – 'ହୀରାକୁଦ ନିର୍ମାଣ ବେଳେ ବସ୍ତାନି ଧରି ସ୍କୁଲକୁ ଧାଉଁଥିବା ଏବର ଜଣେ ମନ୍ତ୍ରୀ ଏଥର କିଛି କହିବେ ।' ବସ୍ତାନିଧାରୀ ମନ୍ତ୍ରୀ ତାଙ୍କ ଦଳଦ୍ୱାରା ନିର୍ମିତ ହୀରାକୁଦ ବନ୍ଧ ଯୋଗୁ ଏକ ଅନ୍ଧାରିମୂଲକରେ କିପରି ଇଂଜିନିୟରିଂ କଲେଜ, ମେଡ଼ିକାଲ କଲେଜ, ଲ' କଲେଜ, ମହିଳା କଲେଜ, ଟ୍ରେନିଂ କଲେଜ ପ୍ରଭୃତି ସହ ଏକ ବିଶ୍ୱବିଦ୍ୟାଳୟ ଗଢ଼ିଉଠିଲା ପ୍ରାଞ୍ଜଳ ଭାବରେ ବୁଝାଇଦେଲେ । ଟ୍ରକ୍‌ମାନଙ୍କରେ ବସିଥିବା ଜନତାଙ୍କ କ୍ରମାଗତ ହର୍ଷ ଧ୍ୱନି ଏବଂ ମନ୍ତ୍ରୀମାଙ୍କର ଜୟଧ୍ୱନି ମଧ୍ୟରେ ସଭାପତି ଘୋଷଣା କଲେ ଯେ, ବନ୍ଧ ନିର୍ମାଣ ବେଳେ, ବନ୍ଧ ବିରୁଦ୍ଧରେ ଯେଉଁ ତୀବ୍ର ଆନ୍ଦୋଳନ ସ୍ୱଚକ୍ଷୁରେ ଦେଖିଲା ପରେ ଦେଶରୁ ଦାରିଦ୍ର୍ୟ ଘୁଞ୍ଚାଇବା ପାଇଁ ପ୍ରାଣୋତ୍ସର୍ଗ କରିବାର ପଣ ନେଇ ଆମ ଦଳରେ ଯୋଗଦେଲେ, ସେଇ ମନ୍ତ୍ରୀ ଏବେ କିଛି କହିବେ ।

ମନ୍ତ୍ରୀ ପରେ ମନ୍ତ୍ରୀ – ସେମାନଙ୍କ ଭାଷଣ ପରେ ଆରମ୍ଭ ହେଲା ଇଞ୍ଜିନିୟରିଂ ମୁଖ୍ୟମାନଙ୍କ ଭାଷଣ । ମିଶ୍ରବାବୁ ଜୟଦେବଙ୍କ ଆଡ଼କୁ ହାତ ଠାରି ଇଙ୍ଗିତ ଦେଉଥିଲେ ଯେ, ସେମାନଙ୍କୁ ହୁଏତ ଏବେ ଡ଼ାକରା ଆସିବ । ମୁଖ୍ୟ ଇଂଜିନିୟରମାନେ ତାଙ୍କ ପରିସଂଖ୍ୟାନ ପୂର୍ଣ୍ଣ ଲମ୍ବା ଭାଷଣମାନଙ୍କରେ ସୂଚାଇ ଦେଲେ

ଯେ, ହୀରାକୁଦ ବନ୍ଧରେ ଯେତେ ମାଟିପଡ଼ିଛି, ସେତିକି ମାଟିରେ ବୁର୍ଲାରୁ କନ୍ୟାକୁମାରୀ ଯାଏଁ ଗୋଟିଏ ଚଉଡ଼ା ସଡ଼କ ତିଆରି ହୋଇପାରନ୍ତା, ଯେତେ କଂକ୍ରିଟ୍ ଢ଼ଳାହୋଇଛି, ସେଥିରେ ଗୋଟିଏ ମୋଟା କଂକ୍ରିଟ୍ ପାଇପ୍ କାଶ୍ମୀରର ଶ୍ରୀନଗରକୁ ନିଆଯାଇପାରନ୍ତା । ଯେତେ ବିଜୁଳି ଉତ୍ପାଦିତ ହେଉଛି, ସେଥିରେ ଏ ଅଞ୍ଚଳର ରାତିକୁ ଦିନ କରି ଦିଆଯାଇପାରନ୍ତା, ଇତ୍ୟାଦି, ଇତ୍ୟାଦି । ସେମାନଙ୍କ ଭିତରୁ ଜଣେ ସୂଚାଇଥିଲେ ଯେ ସ୍ୱାଧୀନ ଭାରତର ଏ କୀର୍ତ୍ତିସ୍ତମ୍ଭ ଯେଉଁମାନେ ତିଆରି କରିଥିଲେ, ସେମାନଙ୍କ ଭିତରୁ ଆୟେଙ୍ଗର, ବଶିଷ୍ଠ, ପିଲାଇ, ବାତ୍ରା ପ୍ରଭୃତି କେତେ ମରିଗଲେଣି । ଏବେ ଯେଉଁ କେତେ କୁଶଳୀ କର୍ମୀ ଜୀବିତ ଅଛନ୍ତି, ସେମାନେ ହେଲେ -

(୧) ରାମୁ ନାହାକ ।

ନାହାକବାବୁ ବନ୍ଧ ନିର୍ମାଣ ବେଳେ ହୀରାକୁଦରେ ମାଳୀ କାମ କରୁଥିଲେ । ସେ ଏବେ ହେଡ୍ ମାଳୀ ଅଛନ୍ତି । ବନ୍ଧ ନିର୍ମାଣରେ ତାଙ୍କ ଅବଦାନ ଯୋଗୁ ଆମେ ତାଙ୍କୁ ଆଜି ଏହି ମାନପତ୍ର ଏବଂ ଉପଢ଼ୌକନ ଦେଉଛୁ ।

ଘନ ଘନ କରତାଳି ମଧ୍ୟରେ ମଞ୍ଚର ପକ୍ଷ ଅନ୍ତରାଳରୁ 'ଆଗକୁ ଯା', ଆଗକୁ ଯା' ଭିତରେ ମଞ୍ଚରେ ଦେଖାଦେଲେ ଶ୍ରୀ ନାହାକ । ଦୁଇ ତିନି ଇଞ୍ଚ ବ୍ୟବଧାନରେ ଗୁନ୍ଥା ହୋଇଥିବା ଗେଣ୍ଡୁଫୁଲ ପାଖୁଡ଼ାର ମାଳା ସୁଶୋଭିତ ଶ୍ରୀ ନାହକ ମୁଖ୍ୟ ଅତିଥିଙ୍କ ହାତରୁ ଏକ ମାନପତ୍ର ସହ ଖୋର୍ଦ୍ଧା ଲୁଙ୍ଗିପରି କୌଣସି ଏକ ଉପଢ଼ୌକନ ସଂଗ୍ରହ କରି ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କରୁ କରୁ ସେଥିରୁ ବିରତ ହେଲେ ଏବଂ ଦର୍ଶକମଣ୍ଡଳୀକୁ କରଯୋଡ଼ି ଅପସରି ଯାଆନ୍ତେ ଆଉଜଣେ କୁଶଳୀ କର୍ମୀଙ୍କ ନାମ ଉଚ୍ଚାରିତ ହେଲା ।

(୨) ଶ୍ରୀ ଚମରୁ ହରିଜନ ।

ହୀରାକୁଦ ବନ୍ଧ ନିର୍ମାଣ ବେଳେ ସେ ଥିଲେ ଜଣେ ସାଧାରଣ ମେହେନ୍ତର! ଏବେ ମେହେନ୍ତର-ଜମାଦାର ଏବଂ ମେହେନ୍ତର ସଙ୍ଘ ସଭାପତି ।

ଚମରୁବାବୁ ତାଙ୍କ ମାନପତ୍ର ଓ ଉପଢ଼ୌକନ ସଂଗ୍ରହ କରି ବିଦାୟ ନେଲାପରେ ମୁଖ୍ୟ ଅତିଥି କେତେଜଣଙ୍କୁ ଘରଡ଼ିହ ପଟ୍ଟା ଏବଂ ସିଲିଂ ଉଦ୍‌ବୃତ୍ତ ଜମିର ପଟ୍ଟା ବଣ୍ଟନ କଲାପରେ ସଭାପତି ଉପସ୍ଥିତ ଜନତାକୁ ଜଣାଇଦେଲେ, ସମୟ ପ୍ରାୟ ୧ଟା ୩୦ । 'ଟିକିଏ ଡେ଼ରି ହୋଇଗଲା' କହି ସେ ମୁଖ୍ୟ ଅତିଥିଙ୍କୁ ତାଙ୍କ ଭାଷଣ ଦେବାକୁ ଅନୁରୋଧ କଲେ । ମୁଖ୍ୟ ଅତିଥି ତଥା ସଭାପତିଙ୍କ ଭାଷଣର ବିଷୟବସ୍ତୁ ଥିଲା ଯେ, ଜନକଲ୍ୟାଣ ପାଇଁ ଲୋକଙ୍କ ଦ୍ୱାରା ମନୋନୀତ ଗଣତାନ୍ତ୍ରିକ ସରକାର ଯାହାସବୁ କରିଯାଉଛନ୍ତି, ହୀରାକୁଦ ବନ୍ଧ ତହିଁର ଏକ ପ୍ରତୀକ, କଠିନ ପରିଶ୍ରମ ଦ୍ୱାରା ହିଁ ଏପରି ଜନକଲ୍ୟାଣକାରୀ ମନ୍ଦିର ସ୍ଥାପିତ ହୋଇପାରେ......

ସଭାଭଙ୍ଗ ହେବା ପରେ ଦଳବଳ ଯେତେବେଳେ ଅଶୋକ ନିବାସ ଆଡ଼କୁ ଚାଲିଲେ, ଶ୍ରୀ ପଟ୍ଟନାୟକ ବିଷାଦଭରା ମୁହଁ ନେଇ ସ୍ୱଗତୋକ୍ତି କଲାପରି କହିଉଠିଲେ, 'ଆମର ନାଁ ଗନ୍ଧ ବି ପଡ଼ିଲାନି ?' ମହାନ୍ତିର ମୁହଁରେ ମଧ ହତାଶାର ଛାୟା ଥିଲା ସ୍ପଷ୍ଟ । ମିଶ୍ରବାବୁ ତାଙ୍କ ସ୍ୱଭାବସୁଲଭ ଫୋଟକା ଫୁଟା ହସ ହସି କହିଲେ - 'ମରିବା ଆଗରୁ ଏ ରାଜ୍ୟରେ ଫୁଲ ଚନ୍ଦନ ଆଶା କରୁଛ... ନାଇଁ ? ଏଇଠି ମଲେ ଯାଇ ଶ୍ରଦ୍ଧାଞ୍ଜଳି ମିଳେ । ତମେ ଆଜି ମରିଯାଅ, ଦେଖିବ କାଲି.....'

ଜୟଦେବ ତାଙ୍କ ସ୍ତ୍ରୀଙ୍କୁ ମନେପକାଉଥିଲେ । ତାଙ୍କ ବାରଣସତ୍ତ୍ୱେ ସେ ଆସିଥିଲେ ଏ ଉତ୍ସବକୁ । ମିଶ୍ରବାବୁଙ୍କର ଏ ଟିପ୍ପଣୀରେ ସେ ବି ହସିଉଠିଲେ ।

ସନ୍ଧ୍ୟାବେଳେ ଆତସବାଜିରେ ଚିତ୍ରିତ ହୋଇଯାଇଥିଲା ବନ୍ଧ ଉପରର ଆକାଶ । ପ୍ରକମ୍ପିତ ହୋଇଥିଲା ବୁର୍ଲା ଏବଂ ହୀରାକୁଦ ସହରର ଖଣ୍ଡମଣ୍ଡଳ ।

ଏ, "ତୁମକୁ କିଏ ଜଣେ ଡ଼ାକୁଛି" ଡ଼ାକରେ ଜୟଦେବଙ୍କ ନିଦ ଭାଙ୍ଗିଗଲା । ଆଖି ମଳି ମଳି ସେ ଟେବୁଲ ଘଣ୍ଟାକୁ ଅନାଇଲେ । ସମୟ ସକାଳ ପ୍ରାୟ ସାତଟା ।

ସେହିଦିନ ଡ଼ାକପିଅନ ଚିଠିଟିଏ ଆଣିଥିଲା । ଓଡ଼ିଶା ସାହିତ୍ୟ ଏକାଡ଼େମୀର ଚିଠି । ଅନ୍ୟ କେତେ ସାହିତ୍ୟିକଙ୍କ ସଂଗରେ ତାଙ୍କୁ ବି ମାନପତ୍ର ଏବଂ ଉପଢ଼ୌକନ ଦିଆଯିବ ବୋଲି ଜଣାଇଦେବା ସଂଗେ ସଂଗେ ତାଙ୍କ ସ୍ୱୀକୃତି ପାଇଁ ଅନୁରୋଧ କରାଯାଇଥିଲା ସେ ଚିଠିରେ ।

ସ୍ୱପ୍ନରେ ମନ୍ତ୍ରୀବରଙ୍କୁ ରାଜାଙ୍କ ପରାମର୍ଶ କଥା ଜୟଦେବ ମନେପକାଉଥିଲେ । ତାଙ୍କର ଆଶଙ୍କା ହେଲା କାଳେ ଗୋଟିଏ ଡ଼ଟ୍‌ପେନ୍‌ ଏବଂ କାଗଜ ଦିସ୍ତାଏ ଉପଢ଼ୌକନ ଦେଇ ପ୍ରଗତିମୂଳକ କାର୍ଯ୍ୟାବଳୀକୁ ଲୋକଲୋଚନକୁ ଆଣିବା ପାଇଁ ତାଙ୍କୁ ଆଦେଶ ମିଶ୍ରିତ ପ୍ରୋତ୍ସାହନ ଦିଆଯିବ !

ଜୟଦେବ ଡ଼ାକ ଛାଡ଼ିଲେ - 'ଏ ଶୁଣୁଛ...'



ପ୍ରବନ୍ଧରେ ସେ ଯେତିକି କୁଶଳୀ, ତା'ଠୁଁ ବଳି କୁଶଳୀ ନିଜର ଗଳ୍ପ ସଙ୍କଳନରେ ଏବଂ ଭ୍ରମଣ କାହାଣୀରେ । ଗଲି, ଦେଖିଲି, ଏ ସବୁ ଶୁଷ୍କ ତାଲିକା ନୁହେଁ, ବ୍ୟକ୍ତିଗତ ଅବବୋଧର, ନିଜ ଆଖି, ନିଜ ହୃଦୟ ଦେଇ ଦେଖିଥିବା, ବୁଝିଥିବା ବିଦେଶର ଆଲେଖ୍ୟ ହିଁ ସେଠି ମୁଖ୍ୟ।

ସେ ଓଡ଼ିଆ ସାହିତ୍ୟକୁ ଯାହା ଦାନ କରି ସାରିଛନ୍ତି ସେଥିପାଇଁ ସବୁକାଳେ ସ୍ମରଣୀୟ ହୋଇ ରହିବେ । ତାଙ୍କର ବହୁମୁଖୀ ପ୍ରତିଭା ନୂତନ ଯୁଗର ଯୁବକ ଯୁବତୀଙ୍କ ପାଇଁ ଏକ ଉଜ୍ଜ୍ୱଳ ଆଦର୍ଶ ହୋଇ ରହିବ ।

ପଦ୍ମବିଭୂଷଣ ସୀତାକାନ୍ତ ମହାପାତ୍ର

କିଏ କହେ ଆପଣ ଇଂଜିନିୟର, ଆପଣ ଜଣେ ନିଛକ ଶିଳ୍ପୀ, କେବଳ ଶିଳ୍ପୀ, ଯାହାଙ୍କ ଶିଳ୍ପୀ-ସତ୍ତା ଏଇ ଲେଖାର ପ୍ରତି ଛତ୍ରେ ଛତ୍ରେ ପରିସ୍ଫୁଟିତ ।

କବି ଦୀପକ ମିଶ୍ର

ଏ ବିନମ୍ରତାରେ ପରିତୃପ୍ତ ପୁରୁଷଟି ଏ ଦୁନିଆ ସାଗରର ଅତଳରେ ଯେତେ ଯେତେ ବୁଡ଼ିଛି, ପ୍ରଶାନ୍ତ ନୀଳ ଆକାଶର ବ୍ୟାପ୍ତିରେ ବି ସେତେ ସେତେ ଉଡ଼ିଛି । ଅଥଚ ମୁକ୍ତ ରହିଛି ପାଦ ଥୋଇ ଆପଣା ମାଟିରେ ଯେଉଁ ପାଦ ଏକ ଯାଯାବର ବୈଷ୍ଣବର ପାଦ, ଯାହା ଦୁର୍ଦ୍ଧର୍ଷ ପ୍ରକୃତିର ପ୍ରଭବର ମୌଳତାର ଆତ୍ମୋପଲବ୍ଧି କରୁଛି, ମଣିଷର ହୃଦୟ ହୃଦୟରେ ସଂଚରି ଯାଉଛି । ଚିତ୍ତରେ ପ୍ରୀତି, ସ୍ନେହ ସୌହାର୍ଦ୍ଦ୍ୟର ପ୍ରମାଣ ବନ୍ଧା, ପ୍ରଫେସର ଭୁବନେଶ୍ୱର ବେହେରା, ସେଭଳି ଏକ ବିଶାଳ ଚିତ୍ତର ଅଧିକାରୀ ।

ଶ୍ରୀନିବାସ ଉଦଗାତା

ତାଙ୍କ ସ୍ଥପତିବିଦ୍ୟା ତଥା ଅମ୍ଳାନ ଚରିତ୍ରବଳରେ ସେ ଜଣେ ବିଶ୍ୱେଶ୍ୱରାୟା; ସ୍ନେହ ଓ ଉଚ୍ଚ ମୂଲ୍ୟବୋଧରେ ସେ ଜଣେ ବିଷ୍ଣୁ ଶର୍ମା ଯିଏ ଛାତ୍ରମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖନ୍ତି; କ୍ଷମାଶୀଳତା ଓ କରୁଣାରେ ସେ ଜଣେ ବୁଦ୍ଧ; ତଥା ଗୁରୁଦେବ ରବୀନ୍ଦ୍ରନାଥଙ୍କ ଭଳି ସେ ଦୁଇଟି ଶାନ୍ତିନିକେତନ ତିଆରି କରିଛନ୍ତି, ଆର୍.ଇ.ସି. ରାଉରକେଲା ଓ ଜ୍ୟୋତିବିହାର । ପ୍ରଫେସର ବେହେରା ଥିଲେ ଜଣେ ଅନୁଷ୍ଠାନ, ଏକ ଜୀବନ୍ତ କିମ୍ବଦନ୍ତୀ ।

ଡ଼. ନଳିନୀ ରଞ୍ଜନ ମହାନ୍ତି, ପୂର୍ବତନ ଚେୟାରମ୍ୟାନ
ହିନ୍ଦୁସ୍ତାନ ଏରୋନଟିକ୍ସ୍ ଲିମିଟେଡ୍, ବାଙ୍ଗାଲୋର